# ଜଣେ ଓଡ଼ିଆର ଆତ୍ମକଥା

(ଆତ୍ମଜୀବନୀ)

ଗୁରୁପ୍ରସାଦ ମହାନ୍ତି



**ଜଣେ ଓଡ଼ିଆର ଆତ୍ମକଥା**

(ଆତ୍ମଜୀବନୀ)

ଲେଖକ : ଡକ୍ଟର ଗୁରୁପ୍ରସାଦ ମହାନ୍ତି
ଆଳିପିଙ୍ଗଳ ନିବାସ, ବାଦାମବାଡ଼ି, କଟକ - ୧୨

ପ୍ରକାଶକ : ବିଜୟିନୀ ପବ୍ଲିକେଶନ୍ସ
ଶଙ୍କରପୁର, ଅରୁଣୋଦୟ ମାର୍କେଟ୍, କଟକ - ୧୨

ପ୍ରଥମ ପ୍ରକାଶନ : ୨୦୧୬

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ସ୍ୱସ୍ତିକ୍ ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ₹ ୩୫୦

---

**Jane Odiara Atmakatha**

(An Autobiography)

Writer : **Dr. Guruprasad Mohanty**
Alipingala Niwas, Badambadi
Cuttack - 753 012

Publisher : **Bijayinee Publications**
Shankarpur, Arunodaya Market
Cuttack - 753 012
Phone : 9439241471

1st Edition : 2016

Cover Art : Bijay Pradhan

Printed at : Swostik Printers, Cuttack

Price : ₹ 350 ISBN : 978-93-84763-99-2

## ସୂଚୀପତ୍ର

| କ୍ର.ନଂ. | ବିଷୟ | ପୃଷ୍ଠା |
|---|---|---|
| ୨୫. | ଓଡ଼ିଶା ପଶୁ ଚିକିତ୍ସା ମହାବିଦ୍ୟାଳୟ ପାଇଁ କିଛି କାର୍ଯ୍ୟ ଓ ଅବସର ଗ୍ରହଣ | ୨୮୧ |
| ୨୬. | ଉତ୍କଳ ସମ୍ମିଳନୀ ଚିନ୍ତା | ୨୮୮ |
| ୨୭. | ଆମେରିକାରେ ଉତ୍କଳ ସମ୍ମିଳନୀ | ୨୯୯ |
| ୨୮. | କଟକ ଲେଖକ ସହଯୋଗ ସମିତି | ୩୧୪ |
| ୨୯. | ଜୀବେ ହିତୈଷୀ ସଂଘ | ୩୨୯ |
| ୩୦. | ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାଶୀମଣ୍ଡଳ | ୩୩୯ |
| ୩୧. | ଉତ୍କଳ ବନ୍ଦନା | ୩୬୩ |
| ୩୨. | ବାଲିଯାତ୍ରାରେ ଉତ୍କଳ ସମ୍ମିଳନୀ ମଞ୍ଚ | ୩୭୧ |
| ୩୩. | ଦ୍ୱିତୀୟ ଥର ଆମେରିକା ଯାତ୍ରା | ୩୭୮ |
| ୩୪. | ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର | ୩୮୯-୪୦୬ |
| | ⁕ ଝାଡ଼ଖଣ୍ଡର ପୂର୍ବ-ସିଂହଭୂମି ଜିଲ୍ଲାରେ | |
| | ⁕ ପଶ୍ଚିମ-ସିଂହଭୂମ ଜିଲ୍ଲାରେ | |
| | ⁕ ଷଢେଇକଲା ଖରସୁଆଁ ଜିଲ୍ଲାରେ | |
| | ⁕ ଛତିଶଗଡ଼ ଓ ପଶ୍ଚିମବଙ୍ଗରେ | |
| ୩୫. | ମେଦିନୀପୁରରେ ଓଡ଼ିଆ ଶିକ୍ଷା ବିସ୍ତାର | ୪୦୬ |
| ୩୬. | ଝାଡ଼ଖଣ୍ଡରେ ଅନ୍ୟାନ୍ୟ କାର୍ଯ୍ୟ | ୪୧୯ |
| ୩୭. | ଉତ୍କଳ ସମ୍ମିଳନୀ ଶତବାର୍ଷିକୀ ପାଳନ | ୪୩୪ |
| ୩୮. | ଇଦ୍‌ଗା ପଡ଼ିଆ | ୪୪୩ |
| ୩୯. | ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଝାଡ଼ଖଣ୍ଡରେ କବିତା ପାଠୋତ୍ସବ | ୪୫୦ |
| ୪୦. | ଉତ୍କଳ ସମ୍ମିଳନୀରେ ଫାଟ | ୪୫୬ |
| ୪୧. | ପରବର୍ତ୍ତୀ ଅବସ୍ଥା | ୪୮୦ |
| ୪୨. | ଅନ୍ୟ ପଡ଼ୋଶୀ ରାଜ୍ୟମାନଙ୍କର ଅବସ୍ଥା | ୫୮୯ |
| ୪୩. | ପତ୍ନୀ ବିୟୋଗ | ୪୯୧ |
| ୪୪. | ଶେଷକଥା | ୪୯୯ |



# ମୁଁ ଜଣେ ଓଡ଼ିଆ

ଏକ ଓଡ଼ିଆ ପରିବାରରେ ମୋର ଜନ୍ମ । ମାତୃଗର୍ଭରୁ ଜନ୍ମ ହେବା ବେଳେ ଯେଉଁ ମାଟିକୁ ମୁଣ୍ଡିଆ ମାରି ମୁଁ ଭୂମିଷ୍ଠ ହେଲି, ସେଇ ମୋ ମାତୃଭୂମି ଓଡ଼ିଶା । ସେଇ ମାଟିରୁ ଉତ୍ପନ୍ନ ଖାଦ୍ୟଶସ୍ୟ, ପନିପରିବା ଓ ଫଳମୂଳ ଖାଇ, ସେଇ ମାଟିରୁ ଝରୁଥିବା ଜଳ ପାନ କରି ଏବଂ ତା'ରି ପବନକୁ ନିଶ୍ୱାସରେ ନେଇ ଗର୍ଭଧାରିଣୀ ମାଆ ମୋତେ ପରିପୁଷ୍ଟ କରିଥିଲା । ଭୂମିଷ୍ଠ ହେବା ପରେ ଆଜି ପର୍ଯ୍ୟନ୍ତ ମୁଁ ସେଇ ଉତ୍କଳଜନନୀ ବକ୍ଷରୁ ଉତ୍ପନ୍ନ ଖାଦ୍ୟ ପାନୀୟ ଓ ବାୟୁର ଉପଯୋଗ କରି ବଞ୍ଚି ରହିଛି । ଏଥିଲାଗି ମାତୃଭୂମି ଓଡ଼ିଶା ନିକଟରେ କେବଳ ଯେ ମୁଁ କୃତଜ୍ଞ, ସେତିକି ନୁହେଁ, ମୋ ବାପା, ଜେଜେ, ଅଣଜେଜେ, ପଣଜେଜେ ବା ଆବହମାନ କାଳରୁ ଏଇ ମାଟିର ସନ୍ତାନ ଭାବେ ଜନ୍ମ ନେଇଥିବା ମୋର ବଂଶଧରମାନେ ସମସ୍ତେ କୃତଜ୍ଞତା ସ୍ୱୀକାର କରିଛନ୍ତି ।

ଜନ୍ମ କାଳରୁ ଯେଉଁ ଭାଷା ମୁଁ ଶୁଣି ଆସିଛି ତାହା ମୋ ମାତୃଭାଷା 'ଓଡ଼ିଆ' । ଏ ଭାଷା ମୋ ମାଆର ଭାଷା । ଯେଉଁ ଭାଷାରେ ସେ ମୋତେ କଅଁଳେଇ କରି ଡାକୁଥିଲା "ନେ ମୋ ଧନ ଖାଇଦେ" । ମୋତେ ଖୁଆଇବାକୁ ବା ଶୁଆଇବାକୁ ସେ ବାପଲୋ, ଧନଲୋ, ସୁନାଲୋ ବୋଲି ଯେପରି ଆଦର କରି ଡାକୁଥିଲା, ତା ପାଟିର ସେଇ ଭାଷା ମୋର 'ମାତୃଭାଷା' । ବାପା ବୋଉ, ଭାଇ ଭଉଣୀ, ଦାଦାଖୁଡ଼ି, ମାମୁଁ ମାଇଁ, ଜେଜେ ମାଆ, ପିଉସା, ପିଉସୀ ଆଦି ମୋର ସମସ୍ତ ସମ୍ପର୍କୀୟମାନେ ମୋତେ ଯେଉଁ ଭାଷାରେ କଥା କହୁଥିଲେ, ସ୍ନେହ କରୁଥିଲେ, ଆକଟ କରୁଥିଲେ, ଭଲ କଥା ଶିଖାଉଥିଲେ ତାଙ୍କର ଭାଷା ଶୁଣି ଶୁଣି ମୁଁ କଥା କହି ଶିଖିଲି । ପରବର୍ତ୍ତୀ କାଳରେ ବିଦ୍ୟାଳୟରେ ପଢ଼ିବାକୁ ଯାଇ ସାଙ୍ଗସାଥୀ, ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ସହିତ କଥାହେବା ଛଳରେ ଯେଉଁ ଭାଷାର ସମୁଚିତ ବ୍ୟବହାର କରି ଶିଖିଲି ସେଇ ମୋ ମାତୃଭାଷା "ଓଡ଼ିଆ" ।

ଶୈଶବ କାଳରେ ମୁଁ ଯେତେବେଳେ ଅଝଟ ହେଉଥିଲି, ମୋ ବୋଉ ଆମ ଅଗଣାକୁ ନେଇ ମୋତେ ଜହ୍ନ ଓ ତାରାମାନଙ୍କୁ ଦେଖାଇ ବୁଝାଉଥିଲା । ଗୀତ

ଗାଉଥିଲା "ଆ ଜହ୍ନ ମାମୁଁ ସରଗ ଶଶୀ, ମୋ ଧନ ହାତରେ ପଡ଼ରେ ଖସି ।" ସେଇ ଗୀତରୁ ପ୍ରଥମେ ମୁଁ ଜହ୍ନମାମୁଁଙ୍କୁ ଚିହ୍ନିଥିଲି । ତା ଚାରିପାଖେ ଆକାଶରେ ବିଛେଇ ହୋଇ ପଡ଼ିଥିବା ତାରାମାନେ ମୋ ଆଡ଼େ ଚାହିଁ ଆଖି ମିଟିକା ମାରୁଥିଲେ । ସନ୍ଧ୍ୟା ସମୟରେ ଯେତେବେଳେ ନାଲି ଟହଟହ କଅଁଳ ସୁରୁଯ ପଶ୍ଚିମ ଆକାଶରେ ଫଗୁ ବୋଳିଦେଇ ଦୂର ଦିଗ୍‌ବଳୟ ତଳକୁ ଧୀରେ ଧୀରେ ଖସୁଥିଲେ, ସେତେବେଳେ ମୋ ଜେଜେମା କହୁଥିଲା "ସୂର୍ଯ୍ୟ ଦେବତା ତାଙ୍କ ମାଆ କୋଳକୁ ଯାଉଛନ୍ତି । ଏବେ ଅନ୍ଧାର ମାଡ଼ି ଆସିବ । ରାତି ହେଇଯିବ । ଏସବୁ ଚନ୍ଦ୍ର, ସୂର୍ଯ୍ୟ ଓ ତାରାମାନଙ୍କୁ ଆମ ଗାଆଁର ଆକାଶରେ ପ୍ରଥମ କରି ମୁଁ ଦେଖିଥିଲି । ସେ ଆକାଶ ମୋ ମାତୃଭୂମି ଓଡ଼ିଶାର ଆକାଶ । ସେଇ ଆକାଶରେ ଭାସି ବୁଲେ ଖଣ୍ଡ ଖଣ୍ଡ ବଉଦ । ସେ ସବୁ ବଉଦ ସାଙ୍ଗରେ ଲୁଚକାଳି ଖେଳେ ଅତି ଆଦରର ଜହ୍ନମାମୁଁ ।

ବର୍ଷା କାଳରେ ସେଇ ଆକାଶରେ ଘୋଟିଆସେ କଳାହାଣ୍ଡିଆ ବଉଦ । ଚିକ୍ ଚିକ୍ ବିଜୁଳି ମାରେ । ଘଡ଼ଘଡ଼ିର ପ୍ରଚଣ୍ଡ ଶବ୍ଦରେ ମୁଁ ଚମକି ପଡୁଥିଲି । ବୋଉ ମୋତେ ଟାଣି ନେଇ ତା କୋଳରେ ପୂରାଇଦେଇ କାନ ଦୁଇଟାକୁ ମୋର ତା ଦୁଇ ହାତରେ ଚିପି ଧରୁଥିଲା । ଝର ଝର ହୋଇ ବର୍ଷି ଯାଉଥିଲା ପାଣି । ଗାଆଁ ଦାଣ୍ଡରେ ପାଣିର ସୁଅ ଛୁଟୁଥିଲା । ସେଇ ପାଣିରେ ଭରି ଯାଉଥିଲା ଆମ ଦାଣ୍ଡ ପୋଖରୀ । ନଈରେ ଆସୁଥିଲା ବଢ଼ି । ବିଲବାଡ଼ିରେ ବର୍ଷି ଯାଇଥିବା ଜଳକୁ ପିଇଯାଉଥିଲା ମାଆ ବସୁଧା । ଶସ୍ୟ ଶ୍ୟାମଳା ହେଉଥିଲା ଧରଣୀ - "ମୋ ଜନ୍ମଭୂମି" ।

ଅନ୍ଧାର ରାତିରେ ଜେଜିମା ମୋତେ କୋଳରେ ଧରି ଆମ ଦାଣ୍ଡ ବାରଣ୍ଡାରେ ବସି ଖୁଆଇ ଦେଲାବେଳେ ଆମଘର ସାମନାରେ ଥିବା ଅନ୍ଧାରୁଆ ଆମ୍ବ ତୋଟାରେ ଉଡ଼ି ବୁଲୁଥିବା ଲକ୍ଷ ଲକ୍ଷ ଜୁଳୁଜୁଳିଆ ପୋକଙ୍କୁ ଦେଖାଏ । ଦୂରରେ ଥିବା ନଦୀବନ୍ଧରେ ଆଲୁଅ ଦେଖି ମାଆ କହେ ନଦୀ ଭିତରେ ଥିବା ମଶାଣିରୁ ଚିରୁଗୁଣୀ ଆଲୁଅକାଳି ପାଖ ଗାଆଁ ମଶାଣିକୁ ଯାଉଛି । ବାଲିଘାଇ ପୋଖରୀ କୂଳରୁ ବିଲୁଆମାନଙ୍କ ଡାକ ଶୁଭେ । ମୋତେ ଖୁଆଇ ସାରି ମାଆ ତା କୋଳରେ ମୋତେ ଆପୁଡ଼େଇ ଦେବା ବେଳେ "ଧୁଅରେ ବାୟା" ଗୀତ ଗାଇ ଶୁଆଇ ପକାଏ । ସେଇ ଗୀତ ମୋ ମାତୃଭାଷା ଓଡ଼ିଆରେ ରଚିତ ପ୍ରଥମ ସଙ୍ଗୀତ ଯାହା ମୋ ଆଖିରେ ନିଦ ଭରି ଦେଉଥିଲା ।

ଗାଆଁ ସ୍କୁଲରେ ପଢ଼ିଲା ବେଳେ ଆମ ଭୂଗୋଳ ଶିକ୍ଷକ ନେତ୍ରାନନ୍ଦ ମାଷ୍ଟ୍ରେ ଓଡ଼ିଶା ଓ ଭାରତ ମାନଚିତ୍ର ଆଙ୍କି ଦିଅନ୍ତି । କହନ୍ତି ଏଇ ତୁମ ଜନ୍ମଭୂମି ଓଡ଼ିଶା । ତୁମର ଦେଶ ଏ ଭାରତବର୍ଷ । ଯାହାର ଅଂଶ ଓଡ଼ିଶା ପ୍ରଦେଶ ତୁମର ମାଆ ହେଲେ ଭାରତବର୍ଷ ହେଉଛି ତୁମର ବୁଢ଼ୀମା ।

ସ୍କୁଲ ପାଠସାରି କଟକ ବା ଭୁବନେଶ୍ୱରରେ କଲେଜପାଠ ପଢ଼ିଲା ବେଳେ ଗାଆଁ କଥା ଖୁବ୍ ମନେ ପଡୁଥିଲା । ଆମ ଘର, ଅଗଣା, ଦାଣ୍ଡ, ଆମ୍ବତୋଟା, ଠାକୁର ଘର ଓ ଦାଣ୍ଡ ପୋଖରୀରେ ଫୁଟୁଥିବା ନାଲି, ଧଳା ବା ନୀଳ କଇଁଫୁଲ କଥା ମନେ ପଡ଼ି ପାଠରେ ମନ ଲାଗୁ ନ ଥିଲା । ବାପା, ବୋଉ, ଜେଜିମା, ଭାଇ, ଭଉଣୀ, ଦାଦୀଖୁଡ଼ି ଆଦି ଗୁରୁଜନମାନଙ୍କର ସ୍ନେହ, ସୋହାଗର ଡୋରି ମୋତେ ଯେପରି ଟାଣୁଥିଲେ ସେଇ ପୁଣ୍ୟଭୂମିକୁ ।

କଲେଜ ପାଠ ଶେଷ କରି ଯେତେବେଳେ ଉଚ୍ଚଶିକ୍ଷା ପାଇଁ ମୁଁ ଯୁକ୍ତରାଷ୍ଟ୍ର ଆମେରିକା ଯାତ୍ରାକଲି ସେତେବେଳେ ମୋ ଗାଆଁ ମାଟିରୁ ମୁଠାଏ ଲଫାଫାରେ ଭରି ସୁଟ୍‌କେଶରେ ରଖିଦେଲି । ତା ସାଙ୍ଗକୁ ଇଷ୍ଟ ଦେବତା ଗୋପଳଜୀଉଙ୍କ ଧଣ୍ଡା ତୁଳସୀରୁ ପୁଳାଏ । ଯୁକ୍ତରାଷ୍ଟ୍ର ଆମେରିକା ମାଟିରେ ପାଦ ଦେଲାମାତ୍ରେ ମନ ମୋର ଫେରିଗଲା ସାତଦରିଆ ସେପାରିରେ ଥିବା ମୋ ଜନ୍ମଭୂମି ଓଡ଼ିଶାକୁ । ଆମେରିକାର ଘରଦ୍ୱାର, ରାସ୍ତାଘାଟ, ଗଛବୃଛ, ପଶୁପକ୍ଷୀ ଓ ପାଣିପବନ ସବୁକିଛି ମୋତେ ଅଲଗା ଅଲଗା ଲାଗୁଥିଲା । ସେଠାକାର ସୁନ୍ଦର ବାତାନୁକୂଳ ଘର, ମଖମଲି ବିଛଣା, ସୁବାସିତ ଗାଧୁଆଘର ବା ସିମେଣ୍ଟର ଚଉଡ଼ା ରାସ୍ତା ସାଙ୍ଗକୁ ବିଭିନ୍ନ ଡିଜାଇନ୍‌ର ଦାମୀ କାର୍ ସବୁ ଦେଖି ମୋର ସେଥିପ୍ରତି ତିଳେ ମାତ୍ର ଆକର୍ଷଣ ନ ଥିଲା । ବରଂ ମୁଁ ଖୋଜୁଥିଲି ମୋ ଗାଆଁର ସେଇ ବଡ଼ବଡ଼ ଖୋଲା ଝରକା ଥିବା ଅଜା ଅମଳର କୋଠାଘର, ଧୂଳି ଧୂସରିତ ଗାଆଁ ଦାଣ୍ଡ, କଇଁ ଫୁଲଫୁଟା ପୋଖରୀ, ପେନ୍ଥା ପେନ୍ଥା ଆମ୍ବ ଝୁଲୁଥିବା ବଡ଼ ବଡ଼ ଗଛଭରା ଆମ୍ବତୋଟା, ଶାରଦୀୟ ଶୀତଳ ପବନରେ ଦୋହଲି ଦୋହଲି ଲହଡ଼ି ଭାଙ୍ଗୁଥିବା ସବୁଜ ଧାନକ୍ଷେତ, କୁମାର ପୂର୍ଣ୍ଣମୀର ରଜତ ଧବଳ ଜ୍ୟୋତ୍ସ୍ନାରେ ଚିକ୍‌ଚିକ୍ କରୁଥିବା ଗଙ୍ଗଶିଉଳିର ପାଟଳି ଓ ବସନ୍ତର ଚୋରା ମଳୟ ସ୍ପର୍ଶରେ ପୁଲକିତ କୋଇଲିର ମଧୁର ତାନ । ଆମେରିକାନ୍ ସାହେବୀ ଖାଦ୍ୟ ପାଟିକୁ ନେଲା ବେଳେ ମନେ ପଡୁଥିଲା ଫଗୁଣ ସକାଳର ସଜ ପଖାଳରୁ ଆମ୍ବକଷିର ବାସ୍ନା । ତା ସାଙ୍ଗକୁ ବାଡ଼ିରୁ ତୋଳା ଯାଇଥିବା ସଦ୍ୟ କୋଶିଳା ଶାଗଭଜାର ମହକ । ସନ୍ଧ୍ୟା ସମୟରେ ଆମେରିକାନ୍ ରାସ୍ତା କଡ଼ରେ ଥିବା ଉଜ୍ଜ୍ୱଳ ବିଦ୍ୟୁତ୍ ଆଲୋକ ଦେଖି ତତ୍‌କାଳୀନ କଟକ ସହରର ଶିଝୁବାଡ଼ କଡ଼ରେ ଥିବା କିରୋସିନି ଲ୍ୟାମ୍ପପୋଷ୍ଟର ଧିକି ଧିକି ଆଲୁଅ କଥା ମନେ ପଡୁଥିଲା । ମୋ ପକ୍ଷରେ ମୋ ଜନ୍ମମାଟିର ମୋହ ଥିଲା ବହୁତ ବେଶି ।

ମୁଁ ଯେଉଁଦିନ କଲମ୍ବସ୍‌ରେ ପହଞ୍ଚି ଆନ୍ତର୍ଜାତୀୟ ଛାତ୍ରାବାସରେ ରହିଲି, ସେଦିନ ଗୁଜୁରାଟରୁ ସୁରଜୀ ଶାମ୍‌ଜୀ ଗାଡ଼ା ମଧ୍ୟ ଆସି ମୋ ସହିତ ଗୋଟିଏ କୋଠରୀରେ ରହିଲେ । ଯୁକ୍ତରାଷ୍ଟ୍ର ଆମେରିକାର ସ୍ୱଚ୍ଛଳ ଜନଜୀବନ ତାଙ୍କୁ ଖୁବ୍ ଆକର୍ଷିତ କରିଥିଲା । ସେ ମୋର ବିମର୍ଷ ଭାବ ଦେଖି କହୁଥିଲେ "ଏପରି ଏକ ପରୀରାଇଜକୁ

ଆସି ଏଠି ଉଚ୍ଚଶିକ୍ଷା ପାଇବାର ସୁଯୋଗ ମିଳିବା ବହୁ ଭାଗ୍ୟର କଥା । ସେଥିପାଇଁ ଆନନ୍ଦ ନ ହୋଇ ସବୁବେଳେ ଉଦାସିଆ ରହୁଛ କାହିଁକି ? ଆମ ଦେଶ ତୁଳନାରେ ପ୍ରତି କ୍ଷେତ୍ରରେ ଏ ଦେଶର ଉତ୍କର୍ଷତା ଅନୁଭବ କର । ଏଠାକାର ବାତାବରଣରେ ଫୁର୍ତ୍ତି କର । ମାତ୍ର ମୋର ମନେ ହେଉଛି, ତୁମେ ଘର କଥା ଭାବି ଭାବି ଏସବୁ ପ୍ରତି ନଜର ଦେଉନା । ଏଠାରେ ଥିବା ଗୁଜୁରାଟି ଛାତ୍ରମାନଙ୍କୁ ଭେଟି ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ଆଶାରେ ମୋ ମନ ଉଲ୍ଲସି ଉଠୁଛି । ଉଚ୍ଚଶିକ୍ଷା ପାଇ ସାରିବା ପରେ ଏ ଦେଶରେ ରହି ମୁଁ ମଧ ଯେକୌଣସି ଆମେରିକାନ୍ ପରି ସୁଖଶାନ୍ତିରେ ରହିପାରିବି ।"

କହିଲି, ବମ୍ବେ, ଦିଲ୍ଲୀ ପରି ବଡ଼ବଡ଼ ମହାନଗରୀରେ ରହି ତୁମେ ଏ ଦେଶକୁ ଉପଭୋଗ କରିବାର ସାମର୍ଥ୍ୟ ହାସଲ କରିଛ । ମାତ୍ର ଷାଠିଏ ଦଶକରେ କଟକ ପରି ଏକ ଅନୁନ୍ନତ ସହର ତଥା ଓଡ଼ିଶା ପରି ଏକ ଗ୍ରାମ୍ୟ ପରିବେଶ ସମ୍ପନ୍ନ ରାଜ୍ୟରୁ ଆସି ମୁଁ ଏପରି ପ୍ରାଚୁର୍ଯ୍ୟକୁ ଅନୁଭବ କରିପାରୁନି । କଟକ ବା ଭୁବନେଶ୍ୱର ପରି ଓଡ଼ିଶାର ମୁଖ୍ୟ ସହରାଞ୍ଚଳକୁ ବମ୍ବେ ବା ଦିଲ୍ଲୀର ସମକକ୍ଷ କରିବାକୁ ଆହୁରି ଅର୍ଦ୍ଧ ଶତାବ୍ଦୀ ସମୟ ଲାଗିବ । ତୁମ ଗୁଜୁରାଟି ପରିବାରର ଲୋକେ ବିଗତ ଶତାଧିକ ବର୍ଷ ଧରି ପୃଥିବୀର ବିଭିନ୍ନ ଦେଶରେ ବ୍ୟବସାୟ ବାଣିଜ୍ୟ କରିଆସୁଛନ୍ତି । ତେଣୁ ବିଦେଶ ମାଟିକୁ ଯଥାଶୀଘ୍ର ନିଜର କରିନେବାକୁ ତୁମ ପକ୍ଷରେ ସହଜସାଧ କଥା, ମାତ୍ର ମୋ ପରି ଗ୍ରାମାଞ୍ଚଳର ଜଣେ ଯୁବକ ପକ୍ଷରେ ଏଭଳି ଚିନ୍ତା କରିବା ଅସମ୍ଭବ ବୋଧ ହେଉଛି। ଉଚ୍ଚଶିକ୍ଷା ଶେଷ ହେଲେ ଯଥାଶୀଘ୍ର ଦେଶକୁ ଫେରିଯିବାର ଚିନ୍ତା ମୋ ମନରେ ଘୂଣ ଖାଉଛି ।

ସୁରଜୀ କହନ୍ତି, ଏ ଦେଶରେ ପାଦ ନ ଦେଉଣୁ ତୁମେ ଦେଶକୁ ଫେରିବାର ଚିନ୍ତା କରିବା ଅଜବକଥା । ତୁମେ ଏପରି ନିର୍ବୋଧ ଚିନ୍ତା ପରିତ୍ୟାଗ କର । ଉଚ୍ଚଶିକ୍ଷା ଶେଷରେ ଏଠି ରହି ପ୍ରଚୁର ଆୟ କରି ଘରକୁ ଟଙ୍କା ପଠାଇଲେ ତୁମ ପାରିବାରିକ ଉନ୍ନତି ସହିତ ଦେଶର ଉନ୍ନତିରେ ତୁମେ ଭାଗିଦାର ହୋଇ ପାରିବ । ଏତେଗୁଡ଼ାଏ ପାଠ ପଢ଼ି ତାର ସଦୁପଯୋଗ ନ କରି ପାରିଲେ ତୁମର ସବୁଆଡୁ କ୍ଷତି ହେବ ।

ସୁରଜୀଙ୍କ ଉପଦେଶ ମୋ ଉପରେ କୌଣସି ପ୍ରଭାବ ପକାଇ ପାରି ନ ଥିଲା । କଲମ୍ବସ୍‌ରେ ମାଷ୍ଟର ଡିଗ୍ରୀ ଓ ବୃକିଂସ୍‌ରେ ଡକ୍ଟରେଟ୍ ଡିଗ୍ରୀ ପାଠ୍ୟକ୍ରମ ଶେଷ କରି ଏକ ଆମେରିକାନ୍ କମ୍ପାନୀରେ ଭଲ ଦରମାରେ ଚାକିରୀ ମିଳିବା ସତ୍ତ୍ୱେ ମୁଁ ସେ ଚାକିରୀରେ ଯୋଗ ନ ଦେଇ ଓଡ଼ିଶା ଫେରି ଆସିଲି । ଷାଠିଏ ଦଶକର ଶେଷ ଭାଗରୁ ନବେ ଦଶକ ପୂର୍ତ୍ତି ପର୍ଯ୍ୟନ୍ତ ଜଣେ ବୈଜ୍ଞାନିକ ଭାବେ ଓ ପରେ ବିଭାଗୀୟ ପ୍ରଶାସନିକ ଅଧିକାରୀ ଭାବେ ସମର୍ପିତ ଭାବେ କାର୍ଯ୍ୟ କରି ମୋ ଜନ୍ମ ଭୂମିର ସେବାରେ ନିଯୁକ୍ତ ରହିଲି ସତ, ମାତ୍ର ଆର୍ଥିକ ଅନଟନ ବଶତଃ ବହୁ କଷ୍ଟରେ ଜୀବନଟା କଟିଗଲା । ଯୁକ୍ତରାଷ୍ଟ୍ର ଆମେରିକାରେ ରହିଥିଲେ ଏପରି କଷ୍ଟ ଆଦୌ ନ ଥାନ୍ତା ।

ମୋ ଦ୍ୱାରା ଯେଉଁ ସବୁ କାର୍ଯ୍ୟ ସମାହିତ ହେଲା ତାହା ମୋ ଜନ୍ମଭୂମି ଓଡ଼ିଶାର ଉନ୍ନତିରେ ସହାୟକ ହେବାର ମାନସିକ ଶାନ୍ତି ମୁଁ ପାଇପାରିଲି । ଯୁକ୍ତରାଷ୍ଟ୍ର ଆମେରିକାରେ କାର୍ଯ୍ୟ କରି ଯଥେଷ୍ଟ ଅର୍ଥାଗମ କରିବାର ସୁଖ ତୁଳନାରେ ସରକାରୀ ଚାକିରୀ ଜରିଆରେ ମାତୃଭୂମିର ସେବା ସୌଭାଗ୍ୟକୁ ମୁଁ ଶ୍ରେୟ ମଣିଥିଲି । ଗୋଟିଏ ବିଭାଗର ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କଲାବେଳେ ସେ ବିଭାଗର କାଗଜପତ୍ରରେ ଇଂରାଜୀ ବଦଳରେ ଓଡ଼ିଆ ଭାଷାର ଉପଯୋଗ ପାଇଁ ନିର୍ଦ୍ଦେଶ ଦେବା ସହିତ ଶହ ଶହ କର୍ମଚାରୀଙ୍କୁ ଓଡ଼ିଆ ଲେଖିବାର ତାଲିମ ଦେଇଥିଲି । ମୁଁ ସେହି ପଦବୀରୁ ଅବସର ଗ୍ରହଣ କରିବା ପରେ ଯେଉଁମାନେ ନିର୍ଦ୍ଦେଶକ ଭାବେ କାର୍ଯ୍ୟ କଲେ ସେମାନେ ମାତୃଭାଷା ଓଡ଼ିଆକୁ ଘୃଣା କରି ପୁଣି ଇଂରାଜୀ ଭାଷାକୁ ପ୍ରାଧାନ୍ୟ ଦେଲେ । ଓଡ଼ିଆ ଭାଷାକୁ ଭଲ ପାଉଥିବା ରାଜ୍ୟ ମୁଖ୍ୟଙ୍କ ପାଖରେ ଗୁହାରି କଲି । ମାତ୍ର ଫଳ କିଛି ହେଲା ନାହିଁ । ଶାରୀରିକ, ମାନସିକ ଓ ଆର୍ଥିକ କ୍ଷତିକୁ ଭୁଲି ନିଷ୍ଠାପର ଭାବେ ଯାହା ସବୁ କରିଗଲି ସେସବୁ ମୋ ଆଖି ଆଗରେ ନଷ୍ଟଭ୍ରଷ୍ଟ ହୋଇଗଲା ।

ସରକାରୀ ଚାକିରୀରୁ ଅବସର ଗ୍ରହଣ କରିବା ପରେ ଅନେକ କମ୍ପାନୀ ବା ଘରୋଇ ସଂସ୍ଥା ପକ୍ଷରୁ ସେମାନଙ୍କ କାର୍ଯ୍ୟରେ ଭାଗ ନେବାପାଇଁ ମୋତେ ଆମନ୍ତ୍ରିତ କରାଯାଇଥିଲା । ସେଥିଲାଗି ମୋଟା ଅଙ୍କର ଦରମା, ଗାଡ଼ି, ବାସଗୃହ ଓ ବିଦେଶ ଯାତ୍ରା ଭଳି ଅନେକ ସୁବିଧା ପାଇବାର ପ୍ରତିଶ୍ରୁତି ମିଳିଥିଲା । ମାତ୍ର ସେସବୁ ପ୍ରତି ନଜର ନ ଦେଇ ଓଡ଼ିଆ ଭାଷା ଓ ଜାତି ଲାଗି କାର୍ଯ୍ୟ କରିବାର ଅଦମ୍ୟ ଇଚ୍ଛା ଯୋଗୁଁ ମୁଁ ଉତ୍କଳ ସମ୍ମିଳନୀରେ ଯୋଗ ଦେଲି । ୧୯୯୭ ମସିହାଠାରୁ ଆଜି ପର୍ଯ୍ୟନ୍ତ ଓଡ଼ିଆ ଜାତିର ଆଦ୍ୟମିଳନ ମଞ୍ଚ ଉତ୍କଳ ସମ୍ମିଳନୀ ପାଇଁ ମୁଁ କିଛି କରିବା ପାଇଁ ଚେଷ୍ଟା କରିଛି । ସେସବୁର ସମ୍ୟକ ବିବରଣୀ ମୋ ଆତ୍ମକଥାରେ ଲେଖିଛି ।

ଯେଉଁସବୁ କାର୍ଯ୍ୟରେ ଆଜି ପର୍ଯ୍ୟନ୍ତ ବହୁ ବର୍ଷ ବିତିଗଲାଣି ଭାବି ବସିଲେ ମନ ଭିତରେ ଏକ ଅଶାନ୍ତିର କଳାମେଘ ଛାଇଯାଏ, ଜଣେ ପରାଜିତ ସୈନିକର ମାନସିକତାକୁ ନେଇ ବଞ୍ଚିବା ଭିତରେ ମନେହୁଏ ଯେ, ଜୀବନତରୀକୁ ଯେଉଁ ନଦୀରେ ମୁଁ ଭସାଇ ଦେଲି, ଏ ପର୍ଯ୍ୟନ୍ତ ତାର କୌଣସି କୂଳ କିନାରା ପାଇଲି ନାହିଁ । ଯେତେବେଳେ କୂଳରେ ଲାଗିବା ପାଇଁ ମୁଁ ଚେଷ୍ଟା କରିଛି, ସୁଅର ପ୍ରତିକୂଳରେ ଯାଇ ଅସଫଳ ହେବା ସାର ହୋଇଛି । ଏଣିକି ଆଉ ସେ ଡଙ୍ଗା ବାହିବାର ଶକ୍ତି ନାହିଁ । ପାଲ ଚିରିଗଲାଣି, ଆହୁଲା ଫାଟିଗଲାଣି । କାତ ଆଉ ପାଉନି । ଯେଉଁ ମାଟିକୁ ମୁଣ୍ଡିଆ ମାରି ମୁଁ ଭୂମିଷ୍ଠ ହୋଇଥିଲି, କେବେ ପୁଣି ସେହି ମମତାମୟୀ ଉତ୍କଳ ଜନନୀ ମୋତେ କୋଳେଇ ନେବ, ସେଇଦିନକୁ ଅପେକ୍ଷା ।

# 'ଅତ୍ମକଥା' - ସାମାନ୍ୟ କଥନ

ଦୂର ଦିଗ୍‌ବଳୟ ତଳେ ଝାପ୍‌ସା ହୋଇ ଦିଶୁଥିବା ନୀଳ ପର୍ବତ ବକ୍ଷରୁ ବାହାରି ଆସି ଅମାନିଆଁ ନଈଟା ଧରା ପୃଷ୍ଠରେ ଅଙ୍କେଇ ବଙ୍କେଇ ବହି ଯାଉ ଯାଉ ଅନେକ ବାଧାର ସମ୍ମୁଖୀନ ହେବା ପରେ ପରିଶେଷରେ ନୀଳ ସାଗର ବୁକୁରେ ଝାସ ଦେଇ ଲୀନ ହୋଇ ଯିବା ପରି ମଣିଷ ଜୀବନଟା ବାଲ୍ୟ, କୈଶୋର, ଯୌବନ, ଜରା ଓ ବାର୍ଦ୍ଧକ୍ୟର ନାନା ଘାତ ପ୍ରତିଘାତ ମଧ୍ୟରେ ନଦୀଟିଏ ପରି ବହି ଯାଉ ଯାଉ କେତେବେଳେ ଯେ ମୃତ୍ୟୁର କରାଳଗର୍ଭରେ ବିଲୀନ ହୋଇଯାଏ, ଜାଣି ହୁଏନା । ତଥାପି ମଣିଷ ନିଜର ଜୀବଦ୍ଦଶାରେ ତା' ହଜିଲା ଅତୀତର ବାଲିପନ୍ତାରୁ ସ୍ମୃତି ରୂପକ ବାଲିଗରଡ଼ା ସବୁ ଗୋଟେଇବାକୁ ଭଲପାଏ ।

ଚପଳମତି ବାଳକର ମନଆକାଶରେ ଭରିଥାଆନ୍ତି ଅସଂଖ୍ୟ ତାରା । ସେଇ ତାରାମାନଙ୍କୁ ସେ ଚାହିଁ ଦେଖେ । ଚଲା ବଉଦ ତଳୁ ଯେତେବେଳେ ଜହ୍ନମାମୁଁ ମୁହଁ ଦେଖାନ୍ତି, ସେତେବେଳେ ହାତ ବଢ଼େଇ ସେ ଡାକେ "ଆ ଜହ୍ନମାମୁଁ ଆ" । ହେଲେ ଜହ୍ନମାମୁଁ ତା ହାତକୁ ଆସେନା । ତଥାପି ସେ ଆଶା ରଖେ ଦିନେ ହେଲେ ସେ ଜହ୍ନମାମୁଁକୁ ହାତକୁ ଆଣିବ । ଦୁନିଆଁକୁ ସେ ଭଲଭାବେ ବୁଝିପାରେନା । ତା ମନର ଦିଗ୍‌ବଳୟରେ କୈଶୋର ଯେତେବେଳେ ଜୀବନ ପ୍ରଭାତର ନବ ଅରୁଣିମା ବିଛିଦିଏ, ସେତେବେଳେ ତା ହୃଦୟବାଟିକାରେ ପ୍ରଭାତି ପବନର ଶୀକରଶୀକ୍ତ ହିଲ୍ଲୋଳ ଖେଳିଯାଏ । ତା ମନ ଗହନର ଅଫୁରନ୍ତ କଳିକା ଗୁଡ଼ିକ ଧିରେ ଧିରେ ପ୍ରସ୍ଫୁଟିତ ହୁଅନ୍ତି । ସେଇ ଫୁଲର ମନମତାଣିଆ ସୁବାସ ଜୀବନ ପ୍ରତି ତାକୁ ପ୍ରଲୁବ୍ଧ କରାଏ । ତାପରେ ଯୌବନ ଯେତେବେଳେ ତାର ପୁଷ୍ପକ ରଥରେ ଜୈତ୍ର ପତାକା ଉଡ଼ାଇ ଜୀବନର ନନ୍ଦନବନରେ ପଦାର୍ପଣ କରେ ସେତେବେଳେ ମନ ଆକାଶରେ ସୃଷ୍ଟି ହୁଏ କୁହୁକର ଅସଂଖ୍ୟ ମାୟାଜାଲ । ଯୌବନର କାଉଁରୀକାଠି ସ୍ପର୍ଶରେ ସ୍ୱପ୍ନରାଜ୍ୟରେ ଭାସିବୁଲେ ମନ । ଜୀବନ ଯାତ୍ରାର ଠିକ୍ ଏହି ମଧୁମୟ ସନ୍ଧିକ୍ଷଣରେ ଅଧିକାଂଶ ଯୁବକ ଯୁବତୀ ମାଧ୍ୟମିକ ଶିକ୍ଷା ଶେଷକରି ମହାବିଦ୍ୟାଳୟକୁ ଆସନ୍ତି ।

ଏହି ସ୍ତରରେ ଅଧିକାଂଶ ଯୁବକ ଯୁବତୀ ସେମାନଙ୍କ ସୁନେଲି ଭବିଷ୍ୟତର ମାର୍ଗ ଚୟନ କରନ୍ତି । ଯେଉଁମାନେ ମହାବିଦ୍ୟାଳୟ ସ୍ତରକୁ ଆସିପାରନ୍ତି ନାହିଁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଯୁବକ ନିଜର କୌଳିକ ବୃତ୍ତିକୁ ଆଧାର କରି ଜୀବନ ଯାତ୍ରା ଆରମ୍ଭ କରି ଦିଅନ୍ତି । ଜୀବନ ଯାତ୍ରାର ସଙ୍ଗିନୀ ହେବାପାଇଁ ସପନ ରାଇଜର ରାଜକୁମାରୀ ଉଡ଼ିଆସନ୍ତି ପୁଷ୍ପକବିମାନରେ ଆରୋହଣ କରି । ଶତ ଇନ୍ଦ୍ରଧନୁର ଆଭାରେ ରଙ୍ଗୀନ

ହୋଇ ଉଠେ ମନ ଆକାଶ । ଗଙ୍ଗା ସହିତ ଯମୁନାର ମିଳନ ହୁଏ । ଦିଗ୍‌ବଳୟ ତଳେ ନୀଳ ଆକାଶଟା ସବୁଜ ଧରିତ୍ରୀ ସହିତ ମିଶି ଏକାକାର ହୋଇଯାଏ । ମଳୟର ହିଲ୍ଲୋଳରେ ଶିହିରି ଉଠନ୍ତି ତରୁଲତା । ନବ ପଲ୍ଲବରେ ପଲ୍ଲବିତ ତମାଳ ତରୁଗଣ ରଙ୍ଗୀନ ହୋଇ ଉଠନ୍ତି । ସେହି ତରୁର ରସାଳଗହଳ ଶାଖାରେ ଲୁଚିରହି ପଞ୍ଚମ ତାନରେ ଗୀତଗାଏ କୋଇଲି । ଏହି ବସନ୍ତ ମହୋତ୍ସବରୁ ସାଂସାରିକ ଜୀବନର ଅୟମାରମ୍ଭ ହୋଇ ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ ଆଦି ବିଭିନ୍ନ ଋତୁର ପ୍ରଭାବରେ ସଂସାର ତରଣୀ ନାନା ଘାତ ପ୍ରତିଘାତର ସମ୍ମୁଖୀନ ହୋଇ କାଳର କରାଳ ସମୁଦ୍ର ବକ୍ଷରେ ଭାସିଚାଲେ ।

ତେବେ ଜୀବନଚକ୍ରର ଆବର୍ତ୍ତନରେ ଶୀତଋତୁର ରୁକ୍ଷତା ନେଇ ଯେତେବେଳେ ମଣିଷକୁ ଜରା ଆକ୍ରମଣ କରେ ସେତେବେଳେ ଜୀବନ ତରୁର ସବୁଜ ପତ୍ରାବଳିରେ ପକ୍ୱତାର ଶ୍ୱେତବର୍ଣ୍ଣ ଉକୁଟି ଉଠେ । ସେତେବେଳେ ତା ମୁଣ୍ଡରୁ ଯୌବନ ମଦୀରାର ମହୁଆନିଶା ଖସି ଆସୁଥାଏ । ସେ ଏବେ ଜୀବନର ଲକ୍ଷ୍ୟ ପ୍ରତି ଅଧିକ ସଜାଗ ହୋଇଉଠେ । ସେତେବେଳେକୁ ଜୀବନ ଆକାଶର ମଥାନ ଉପରୁ ସୂର୍ଯ୍ୟଦେବତା ପଶ୍ଚିମ ଦିଗନ୍ତ ଆଡ଼କୁ ଢଳି ଆସୁଥାନ୍ତି । ଜୀବନର ଲକ୍ଷ୍ୟକୁ ନେଇ ଏବେ ତା ମନରେ ଚେତା ପଶେ । ଅଧିକାଂଶ କ୍ଷେତ୍ରରେ ମଣିଷ ନିଜର ଲକ୍ଷ୍ୟ ହାସଲ ଦିଗରେ ଆଗେଇ ଯିବାକୁ ଅଣ୍ଟା ଭିଡ଼େ । ଏହି ଜରାଗ୍ରସ୍ତ ମଣିଷର ଅଜାଣତରେ କେତେବେଳେ ଯେ ବାର୍ଦ୍ଧକ୍ୟ ଆସି ଉପନୀତ ହୋଇଯାଏ, ତାହା ସେ ବୁଝିପାରେନା । ମଣିଷ ଜୀବନର ବସନ୍ତ ଋତୁ ତା' ଯୌବନର ନନ୍ଦନକାନନରେ ପାରିଜାତର ସୌରଭ ବିତରିତ କରୁ କରୁ କେତେବେଳେ ଯେ ଜରାଗ୍ରସ୍ତ ରକ୍ଷ ତାଳବନ ଭିତରେ ଲୀନ ହୋଇଯାଏ ତାହା ସେ ଜାଣିପାରେନା । ଏବେ ବାର୍ଦ୍ଧକ୍ୟର ଝାଞ୍ଜି ପବନରେ ଜୀବନତରୁର ପାକଳ ପତ୍ର ସବୁ ଧୀରେ ଧୀରେ ଭୂଲୁଣ୍ଠିତ ହୁଅନ୍ତି । ଜୀବନର ଋତୁଚକ୍ରରେ ଗ୍ରୀଷ୍ମଋତୁର ପ୍ରାଦୁର୍ଭାବ ଅନୁଭୂତ ହୁଏ । ଜୀବନ ଯମୁନାର ନୀଳଜଳରାଶି ପ୍ରଖର ରୌଦ୍ରତାପରେ ବାଷ୍ପିଭୂତ ହୋଇଯାଏ । ମନଗହନର ଘଞ୍ଚ ଶ୍ୟାମଳିମା ଶୁଖି ଝାଉଁଳି ମରୁଭୂମିର ବାଲିପନ୍ତାରେ ପରିଣତ ହୋଇଯାଏ । ଜୀବନସୂର୍ଯ୍ୟ ଅସ୍ତାଚଳକୁ ଗଡ଼ି ଆସୁଥାନ୍ତି । ମଣିଷ ଫେରିଚାହେଁ ତାର ଅତୀତକୁ । ସେଇ ହଜା ଅତୀତର ଦିଗନ୍ତ ବିସ୍ତାରୀ ବାଲିପନ୍ତାରେ ଅସ୍ତଗାମୀ ଜୀବନସୂର୍ଯ୍ୟର ରକ୍ତିମ କିରଣରେ ସ୍ମୃତିରୂପକ ବାଲିଗରଡ଼ା ସବୁ ଚକ୍ ଚକ୍ କରୁଥାନ୍ତି । ସାରାଜୀବନରେ ଅତୁଟ ଆଶା ଆକାଂକ୍ଷା ସବୁ ମରିଚୀକା ପରି ଶୂନ୍ୟତା ଭିତରେ ଝଲମଲ କରୁଥାଆନ୍ତି । ସେହି ଆଶାମରିଚୀକା ପଛରେ ଆଉ ଧାଇଁ ହୁଏନା । ଧାଇଁବାକୁ ମଧ୍ୟ ଶରୀରରେ ଶକ୍ତି ନଥାଏ । ତେବେ ଅତୀତର ବାଲିପନ୍ତାରୁ

ଚିକ୍‌ମିକ୍ କରୁଥିବା ସେଇ କେତେମୁଠା ବାଲିଗରଡ଼ା ଗୋଟେଇ ଆଣିବାକୁ ମଣିଷ ଭଲପାଏ । ସେସବୁକୁ ସଜେଇ ଦେଖିବାକୁ ତାକୁ ଭଲଲାଗେ । ନିଃସଙ୍ଗ ବାର୍ଦ୍ଧକ୍ୟରେ ଅତି ନିଜର ମଣିଷ ଭାବେ ଯେଉଁମାନେ ତାକୁ ଭଲପାଆନ୍ତି ସେମାନଙ୍କ ଆଗରେ ହଜା ଅତୀତର ରୋମନ୍ଥନ କରିବାକୁ ଯେତେବେଳେ ଇଚ୍ଛା ହୁଏ, ସେତେବେଳେ ତା ଜୀବନ ମରୁବାଲିରୁ ଗୋଟାଇ ରଖିଥିବା ବାଲିଗରଡ଼ା ତକ ଅତି ସନ୍ତର୍ପଣରେ ସେ ଦେଖାଇ ବସେ । ସେଇ ତାର ଜୀବନୀ ।

# ଆଳିପିଙ୍ଗଳ

ନରାଜଠାରେ ମହାନଦୀରୁ ବାହାରି କାଠଯୋଡ଼ି ନଦୀଟା କଟକ ମହାନଗରୀର ଦକ୍ଷିଣ ପାର୍ଶ୍ୱଦେଇ ସମୁଦ୍ରାଭିମୁଖୀ ହୋଇ ବହିଗଲାବେଳେ ଦଳେଇ ଘାଇ ତଳକୁ ସେଇ ନଦୀର ନାମ ହୋଇଯାଏ ଦେବୀ ନଦୀ । ଦଳେଇ ଘାଇଠାରୁ ଦେବୀନଦୀ ବନ୍ଧେ ବନ୍ଧେ ତଳକୁ ଗଲେ ପ୍ରାୟ ପନ୍ଦର କିଲୋମିଟର ପରେ ପଡ଼େ ଆଳିପିଙ୍ଗଳ । କଟକର ଯୋବ୍ରାଠାରେ ମହାନଦୀରେ ଆନିକଟ ତିଆରି ହେବାପରେ ତାଳଦଣ୍ଡା ଓ ମାଛଗାଁ କେନାଲରେ ଜଳ ଯୋଗାଇ ଦିଆଗଲା । ମାଛଗାଁ କେନାଲରୁ ଦେବୀନଦୀ ବନ୍ଧ କଡ଼େ କଡ଼େ ୧୯ ନମ୍ବର କେନାଲ ଆଳିପିଙ୍ଗଳ ଦେଇ ବଙ୍ଗୋପସାଗର ପର୍ଯ୍ୟନ୍ତ ଖୋଳାଯାଇଛି । ସେହି କେନାଲ ଓ ନଦୀବନ୍ଧର ସୁରକ୍ଷାଲାଗି ପୂର୍ତ୍ତବିଭାଗ ପକ୍ଷରୁ ଆଳିପିଙ୍ଗଳ ଠାରେ ପ୍ରାୟ ଦେଢ଼ଶହବର୍ଷ ତଳୁ ଗୋଟିଏ ଡାକବଙ୍ଗଳା ନିର୍ମିତ ହୋଇଛି । ଜଗତସିଂହପୁର ବା ହରିହରପୁରଠାରେ କାର୍ଯ୍ୟରତ ପୂର୍ତ୍ତ ବିଭାଗର ଅଫିସରମାନେ ମଝିରେ ମଝିରେ ଆଳିପିଙ୍ଗଳ ଆସି ସେହି ଡାକବଙ୍ଗଳାରେ ରହି ନଦୀବନ୍ଧ ଓ କେନାଲର ଦେଖାଶୁଣା କରୁଥିଲେ। ଏଥିଲାଗି ତତ୍କାଳୀନ ପୂର୍ତ୍ତବିଭାଗ ପକ୍ଷରୁ ଜଗତସିଂହପୁରଠାରୁ ଆଳିପିଙ୍ଗଳ ଡାକବଙ୍ଗଳା ପର୍ଯ୍ୟନ୍ତ ପ୍ରାୟ ଦେଢ଼ଶହ ବର୍ଷ ପୂର୍ବରୁ ମାଟି ରାସ୍ତା ତିଆରି ହୋଇଥିଲା । ଅବଶ୍ୟ ଏବେ ସେ ରାସ୍ତା ପିଚୁ ହୋଇଯାଇଛି । ବର୍ଷାଦିନେ ଦେବୀନଦୀରେ ପ୍ରବାହିତ ବନ୍ୟାଜଳର ହିସାବ ରଖିବା ଲାଗି ଆଳିପିଙ୍ଗଳ ଠାରେ ଗଜ ମାପ ନିଆଯାଇ ପୂର୍ତ୍ତ ବିଭାଗ ଜରିଆରେ ସରକାରଙ୍କୁ ଦୈନନ୍ଦିନ ରିପୋର୍ଟ ଦିଆଯାଏ । ତାଛଡ଼ା ସେଇ କୋଠି ହତାରେ ବର୍ଷାଜଳ ମାପ ନିଆଯାଇ ବୃଷ୍ଟିପାତ ପରିମାଣ ତଥା ପାଣିପାଗ ବିଷୟରେ ମଧ୍ୟ ଜଣାଇ ଦିଆଯାଏ । ତେଣୁ ପାଗ, ବୃଷ୍ଟିପାତ ଓ ବନ୍ୟାଜଳ ବିଷୟରେ ତଥ୍ୟଦାନ ଦୃଷ୍ଟିରୁ ସମଗ୍ର ରାଜ୍ୟରେ ଆଳିପିଙ୍ଗଳର ନାମ ସୁବିଦିତ । ଆଜି ଓଡ଼ିଶାର ଅନ୍ୟତମ ମୁଖ୍ୟ ଜିଲା ଜଗତସିଂହପୁର ସହିତ ଆଳିପିଙ୍ଗଳର ନାମ ଓତଃପ୍ରୋତ ଭାବେ ଜଡ଼ିତ ହୋଇ ଯାଇଛି ।

୧୮୦୩ ମସିହାରେ ଯେତେବେଳେ ଇଂରେଜମାନେ ଓଡ଼ିଶା ଅଧିକାର କଲେ ସେତେବେଳେ ଜଗତସିଂହପୁର ବା ଆଳିପିଙ୍ଗଳ ବୋଲି କିଛି ନଥିଲା । ଏହାର ବହୁ ପୂର୍ବରୁ ୧୬୩୩ ଖ୍ରୀଷ୍ଟାବ୍ଦରେ ଇଂରେଜ ମାନେ ଭାରତର ପୂର୍ବ ଉପକୂଳରେ ବାଣିଜ୍ୟକୋଠି ସ୍ଥାପନ କରିବା ଲାଗି ସ୍ଥାନ ଖୋଜି ଖୋଜି ଅଳକା ନଦୀ ମୁହାଣ ଦେଇ ହରିହରପୁର ପର୍ଯ୍ୟନ୍ତ ପଶିଆସି ଅଳକା କୂଳରେ ଏକ ବାଣିଜ୍ୟ କୋଠି ସ୍ଥାପନ କଲେ । ସେତେବେଳକୁ କଲିକତା ମହାନଗରୀର ସତ୍ତା ନଥିଲା । ଇଂରେଜମାନେ ଯଦି ହରିହରପୁରଠାରେ ରହିଯାଇଥାନ୍ତେ, ତାହେଲେ ଏହି ଅଞ୍ଚଳ କଲିକତା ପରି ଏକ ବିଶାଳ ମହାନଗରୀରେ ପରିଣତ ହୋଇଥାନ୍ତା । ମାତ୍ର ଅଳକାନଦୀ ମୁହାଣ କ୍ରମଶଃ ପୋତି ହୋଇ ପଡ଼ିବା ଲକ୍ଷ୍ୟ କରି ଇଂରେଜମାନେ ହରିହରପୁର ଛାଡ଼ି କଲିକତା, ଗୋବିନ୍ଦପୁର ଓ ସୂତାନଟୀ ଅଞ୍ଚଳକୁ ଚାଲିଗଲେ । ସେମାନଙ୍କର ବାଣିଜ୍ୟକୋଠି ଯେଉଁଠି ଥିଲା ସେହିସ୍ଥାନକୁ ଲୋକେ ଏବେ ଫିରିଂକୁଦ ବୋଲି କହନ୍ତି । ଏହି ଫିରିଂକୁଦ ଉପରେ ୧୯୩୪ ମସିହାରେ ସ୍ଥାପିତ ହେଲା ଶ୍ରୀକୃଷ୍ଣ ଏକାଡ଼େମୀ । ହରିହରପୁରରେ ଜାଗିର୍ ସିଂ ନାମକ ଜଣେ ପ୍ରତିପତ୍ତିଶାଳୀ ବ୍ୟକ୍ତି ଥିଲେ । ହୁଏତ ସେ ଥିଲେ ହରିହରପୁର ଅଞ୍ଚଳର ଜମିଦାର ବା ଜାଗିର୍‌ଦାର୍ । ତାଙ୍କରି ନାମାନୁସାରେ ପରବର୍ତ୍ତୀ ସମୟରେ ହରିପୁରକୁ ଜଗତସିଂହପୁର ବୋଲି କୁହାଗଲା ।

ଇଂରେଜମାନେ ହରିହରପୁର ଛାଡ଼ି ଚାଲିଯିବା ବେଳକୁ ମଧ୍ୟ ଆଳିପିଙ୍ଗଳ ନାମ ଜଣାନଥିଲା । କେବଳ ତର୍କଣୀଗଡ଼ ନାମକ ଏକ ଖଣ୍ଡାୟତ ବସ୍ତି ଥିଲା । ଏହି ବସ୍ତିର ଅଧିବାସୀମାନେ ପାଇକ ଶ୍ରେଣୀର ଲଢୁଆଲୋକ ହୋଇଥିବାରୁ ଏ ଅଞ୍ଚଳର ଲୋକଙ୍କର ଏମାନଙ୍କ ପ୍ରତି ଭୟ ଥିଲା । ହରିହରପୁରଠାରେ ଦେବୀନଦୀ ପର୍ଯ୍ୟନ୍ତ ବଣଜଙ୍ଗଲ ଭରି ରହିଥିଲା । ସେହି ଜଙ୍ଗଲ ଭିତରେ ଚାତ୍ରା, ଅତାମଳା, ଯଶୋବନ୍ତପୁର ପାଟଣା, ଖମଙ୍ଗ ଆଦି ଖଣ୍ଡେ ଖଣ୍ଡେ ଗାଆଁ ଥିଲା । ତନ୍ମଧ୍ୟରୁ ତର୍କଣୀଗଡ଼ ଅନ୍ୟତମ । ତର୍କଣୀଗଡ଼ର ଚତୁର୍ଦ୍ଦିଗରେ ଜଙ୍ଗଲ ବେଢ଼ି ରହିଥିଲା । ସେଇ ଜଙ୍ଗଲ ଭିତରେ ହରିହରପୁରଠାରୁ ଦେବୀ ନଦୀ ପର୍ଯ୍ୟନ୍ତ ପାଦଚଲା ରାସ୍ତା ଥିଲା ଓ ସେହି ରାସ୍ତା ଦେଇ ଶାସନପଦା, ଅମରପଦା, ସିଠାଳୋ, ଅଳତଳଙ୍ଗ, କସର୍ଦ୍ଦା ଆଦି ନଦୀ ସେପାରି ଗାଆଁମାନଙ୍କରୁ ଲୋକେ ହରିହରପୁର, କଟକ ଓ ଶାରଳା ପୀଠ ଝଙ୍କଡ଼କୁ ଯିବା ଆସିବା କରୁଥିଲେ ।

ଦେଶରେ ସେତେବେଳେ ପିଲାମାନଙ୍କୁ ଶିକ୍ଷା ଦେବାଲାଗି ସ୍କୁଲ ବା ବିଦ୍ୟାଳୟ ବୋଲି କିଛି ନଥିଲା । ଓଡ଼ିଶାରେ ମାଟିବଂଶ ଅବଧାନ ଓ କରଣ ବଂଶୀୟ ଲୋକେ ଗାଆଁ ଗାଆଁରେ ଚାହାଳି ଖୋଲି ପିଲାମାନଙ୍କୁ ଶିକ୍ଷା ଦେଉଥିଲେ । ଚାହାଳି ମାନଙ୍କରେ

ମାତୃଭାଷା ଓଡ଼ିଆରେ ଯୁକ୍ତାକ୍ଷର, ପଣକିଆ, କଡ଼ାଗଣ୍ଡା, ପାହିଅଣା, ଓଡ଼ାଙ୍କ, ଫେଡ଼ାଙ୍କ, ଭାନୁମତୀ ସୂତ୍ର, ମହାଜନୀ କାରବାର ଆଦି ଶିକ୍ଷା ଦିଆଯାଉଥିଲା । ତର୍କଣୀଗଡ଼ରେ ଚାହାଳି ଖୋଲି ପିଲାମାନଙ୍କୁ ଶିକ୍ଷା ଦେବାପାଇଁ ନିମାପଡ଼ା ଅଞ୍ଚଳର ଜଣେ କରଣବଂଶଜ ଅବଧାନ ଆସି ପହଞ୍ଚିଲେ। କେହି କେହି କହନ୍ତି ସେମାନେ ପ୍ରଥମେ ବାଲିକୁଦା ଥାନାର ନାଳିଅ ଗାଆଁରେ ଥିଲେ ଓ ସେଠାରୁ ତର୍କଣୀକୁ ପରେ ଆସିଥିଲେ ବୋଲି । ଗଡ଼ୁଆ ଲୋକେ ତାଙ୍କୁ ଏଠାରେ ଘରଦ୍ୱାର କରି ରହିବା ପାଇଁ ପ୍ରବର୍ତ୍ତାଇଲେ । ତର୍କଣୀଗଡ଼ର ଦକ୍ଷିଣ ପଟେ ସେ ଘର ତିଆରି କରି ରହିଲେ। ତାଙ୍କର ହୃଷୀକେଶ ଓ ହୃଦାନନ୍ଦ ବୋଲି ଦୁଇଟି ପୁଅ ଥିଲେ । ପିତାଙ୍କ ପରେ ହୃଦାନନ୍ଦ ତର୍କଣୀଗଡ଼ରେ ଚାହାଳି ଚଳାଇଲେ ମାତ୍ର ହୃଶୀକେଶ କଟକ ଯାଇ ରଘୁନାଥଜୀଉ ମନ୍ଦିର ସାମନାରେ ଚାହାଳି ଆରମ୍ଭ କଲେ । ତାଙ୍କର ପୁଅଟିଏ ହେବା ମାତ୍ରେ ପ୍ରଭୁ ରଘୁନାଥ ଜୀଉଙ୍କ ନାମାନୁସାରେ ତାର ନାମ ରଖାଗଲା 'ରଘୁନାଥ'। ବାପାଙ୍କ ପାଖରେ ରହି ରଘୁନାଥ କଟକରେ ପାଠ ପଢ଼ିଲେ । ପ୍ରାଥମିକ ଶିକ୍ଷା ଶେଷକରି ଉଚ୍ଚାଭିଳାଷୀ ରଘୁନାଥ ଏଣ୍ଟ୍ରାନ୍ସ (ମାଟ୍ରିକ୍) ପଢ଼ିବାକୁ ଚାଲିଗଲେ କଲିକତା। ସେତେବେଳେ କଟକ ବା ଓଡ଼ିଶାରେ ଏଣ୍ଟ୍ରାନ୍ସ ପଢିବାକୁ ବିଦ୍ୟାଳୟ ନଥିଲା । କଟକରୁ ଲୋକେ ପାଦରେ ଚାଲିଚାଲି ଚାନ୍ଦବାଲି ପର୍ଯ୍ୟନ୍ତ ଯାଇ ସେଠାରୁ ଷ୍ଟିମର୍ ଯୋଗେ କଲିକତା ଯିବାକୁ ପଡୁଥିଲା । ସେତେବେଳେକୁ ଇଂରେଜମାନେ ଓଡ଼ିଶା ଦଖଲ କରି କଟକଠାରେ ଓଡ଼ିଶା ଡିଭିଜନ୍‌ର ସଦର ମହକୁମା କାର୍ଯ୍ୟାଳୟ ଖୋଲିସାରିଥିଲେ । ଏଥି ସହିତ ଓଡ଼ିଶା ଡିଭିଜନ ପାଇଁ କଟକରେ ଏକ ବିଚାରାଳୟ ମଧ୍ୟ ବସାଇଥିଲେ । ଓଡ଼ିଶା ଡିଭିଜନ କାର୍ଯ୍ୟାଳୟରେ କେବଳ ବଙ୍ଗୀୟ କିରାଣୀମାନେ କାର୍ଯ୍ୟ କରୁଥିଲେ । କାରଣ ଇଂରେଜମାନଙ୍କ ତଳେ ଅଧସ୍ତନ କର୍ମଚାରୀ ଭାବେ କାମ କରିବାପାଇଁ ଇଂରାଜି ପଢ଼ିବାର ଆବଶ୍ୟକତା ଦୃଷ୍ଟେ ଏଣ୍ଟ୍ରାନ୍ସ ପାଶ୍ କରିବା ଜରୁରୀ ଥିଲା । କଟକରୁ କଲିକତା ଯାଇ ଏଣ୍ଟ୍ରାନ୍ସ ପଢ଼ିବା ଆଦୌ ସହଜ ନଥିଲା । କଲିକତାରୁ ଏଣ୍ଟ୍ରାନ୍‌ସ ପାଶ୍ କରିବା କେବଳ ସେଠାକାର ବଙ୍ଗୀୟ ଅଧିବାସୀମାନଙ୍କ ପକ୍ଷରେ ସମ୍ଭବ ହୋଇ ପାରୁଥିଲା । ଏଣ୍ଟ୍ରାନ୍ସ ପାଶ୍ କରି କଲିକତାରେ ମୁକ୍ତାରୀ ପଢ଼ିବାର ସୁଯୋଗ ଥିବାରୁ ବହୁ ବଙ୍ଗାଳି ମୁକ୍ତାର କଟକ ଆସି ଏଠା କୋର୍ଟରେ ଆଇନ୍ ବ୍ୟବସାୟ କରୁଥିଲେ । ସେହି ବଙ୍ଗୀୟ ମାନଙ୍କ ପିଲାମାନଙ୍କ ସହିତ ଏଣ୍ଟ୍ରାନ୍ସ ଶିକ୍ଷା ସମାପ୍ତକରି ରଘୁନାଥ ମୁକ୍ତାରୀ ପଢ଼ିବା ପାଇଁ ଆଶାପୋଷଣ କଲେ । ତାଙ୍କର ଉଚ୍ଚାଭିଳାଷ ଯୋଗୁଁ କଟକରୁ ବାଲେଶ୍ୱରର ଚାନ୍ଦବାଲି ପର୍ଯ୍ୟନ୍ତ ଚାଲି ଚାଲି ଯାଇ ଷ୍ଟିମର ଯୋଗେ କଲିକତା ଯିବାପାଇଁ ସେ ସକ୍ଷମ ହୋଇ ପାରିଥିଲେ । ସେଠାରେ କିପରି ଭାବେ ସେ ଏଣ୍ଟ୍ରାନ୍ସ ପଢ଼ି ମୁକ୍ତାରୀ ପାଶ୍ କଲେ ତାର ସବିଶେଷ ତଥ୍ୟ ଜଣାନାହିଁ । ତେବେ ରଘୁନାଥ

କଟକ ଫେରିବା ପରେ ପିତାଙ୍କ ନିକଟରେ ରହି ଅଦାଲତରେ କାର୍ଯ୍ୟ ଆରମ୍ଭକଲେ । କଟକର ରଘୁନାଥ ଜୀଉ ମନ୍ଦିର ସାମନାରେ ସେ ଜାଗା ଖରିଦ କରି ସେଠାରେ ରହିବା ପରେ ପୁରୀଘାଟ ଥାନା ପଛକୁ ଏକଏକର ଜାଗା ମଧ କିଣିଲେ । ଏହା ବାଦ୍ ନିଜ ଗ୍ରାମ ତର୍କଣୀଗଡ଼ର ଦକ୍ଷିଣପୂର୍ବକୁ ଦେବୀନଦୀ ବନ୍ଧ କଡ଼କୁ ଲଗାଇ ଶହଶହ ଏକର ଜମି ସେ ଖରିଦ କରିବା ସହିତ ଆଳିପିଙ୍ଗଳ, ପାଟଣା, କୋଲର, ଫୁଲହାର, ଶାଳଗାଁ, ନାଟି, କାଳଖ, ବିରିବାଟୀ ଓ ବେନୁପୁର ଆଦି ଜମିଦାରୀମାନ ମଧ କିଣିଲେ ।

ଏତେ ସମ୍ପତ୍ତି ଓ ଜମିଦାରୀର ମାଲିକ ହୋଇ ମଧ ତାଙ୍କର କୌଣସି ସନ୍ତାନ ସନ୍ତତି ନଥିବା ଯୋଗୁଁ ସେ ମନଦୁଃଖରେ ଥିଲେ । ତାଙ୍କ ପିତାଙ୍କର ଭାଇ ହୃଦାନନ୍ଦଙ୍କର ଦୁଇ ପୁଅ ଥିଲେ । ସେ ଦୁଇଭାଇଙ୍କ ମଧ୍ୟରୁ ବଡ଼ ଭାଇ ଧନେଶ୍ୱରଙ୍କ ପୁଅ ଦୀନବନ୍ଧୁଙ୍କୁ ସେ ଭଲ ପାଇ ପୋଷ୍ୟପୁତ୍ର ଭାବେ ଗ୍ରହଣ କଲେ । ତାକୁ ଆଣି କଟକରେ ରଖାଇ ପାଠପଢ଼ାଇଲେ ରଘୁବାବୁ । ଦୀନବନ୍ଧୁର ମଧ ତାଙ୍କ ଭଳି ଉଚ୍ଚାଭିଳାଷ ଥିବା ସନ୍ଧାନ ପାଇ ତାକୁ ସେ କଲିକତା ପଠାଇ ଏଣ୍ଟ୍ରାନ୍ସ ଓ ମୁକ୍ତାରୀ ପଢ଼ାଇଲେ । କଲିକତାରୁ ଶିକ୍ଷା ସମାପ୍ତ କରି ଦୀନବନ୍ଧୁ କଟକରେ ଆସି ପିତାଙ୍କ ପରି ଆଇନ ବ୍ୟବସାୟ କଲେ ।

ବିଂଶ ଶତାବ୍ଦୀର ମଧଭାଗ ପର୍ଯ୍ୟନ୍ତ ନଦୀଜଳରେ ସ୍ନାନ କରିବାକୁ ଅଧିକାଂଶ ଲୋକ ଭଲ ପାଉଥିଲେ । ରଘୁବାବୁ ମଧ ପ୍ରତିଦିନ କାଠଯୋଡ଼ି ନଦୀକୁ ଗାଧୋଇବାକୁ ଯାଉଥିଲେ । ଦିନେ ଗାଧୋଇସାରି ସେ ପୁରୀଘାଟ ଗଡ଼ାରୁ ଉଠିଲାବେଳକୁ ବୁଢ଼ୀଟିଏ ଟୋକେଇରେ କିଛି ଜିନିଷ ଭରି ତା ଉପରେ ଫୁଲ ରଖି କାନ୍ଦି କାନ୍ଦି ନଦୀ ଭିତରକୁ ଗଡ଼ିବାର ସେ ଲକ୍ଷ୍ୟ କଲେ । ରଘୁନାଥଙ୍କ ମନରେ କୌତୁହଳ ଜାତ ହେଲା । ସେ ଘରକୁ ନ ଫେରି ବୁଢ଼ୀ ପଛେ ପଛେ ପୁଣି ନଦୀ ଭିତରକୁ ଗଡ଼ିଲେ ।

ବୁଢ଼ୀ ପାଣି କୂଳରେ ଟୋକେଇଟି ରଖି ଲମ୍ବ ହୋଇ ପ୍ରଣିପାତ କଲା । ଖୁବ୍ ଜୋର୍‌ରେ ସେ କାନ୍ଦୁଥାଏ । ରଘୁନାଥ ତା' ପାଖକୁ ଯାଇ ପଚାରିଲେ 'ମାଉସୀ, ଟୋକେଇ ଭିତରେ କାହାକୁ ରଖି ତୁ ପ୍ରଣାମ କରୁଛୁ ? କାନ୍ଦୁଛୁ କାହିଁକି ? ବୁଢ଼ୀ ଲୁହ ପୋଛି କହିଲା, ଆଜି ଶେଷଥର ପାଇଁ ଏ ନଈକୁ ମୁଁ ଗାଧୋଇବାକୁ ଆସିଛି ; ମୋ କାମ ସାରିଦେଇ ଆଉ ଏଠିକି ଆସିବି ନାହିଁ ।

କାହିଁକି ଲୋ ମାଆ ? ନଦୀ ତୋର କି ଦୋଷ କରିଛି ? ତୁ କି କାମ ସାରିଦେଇ ଯିବୁ ? ଏ ଟୋକେଇରେ ଫୁଲ କାହିଁକି ଆଣିଛୁ ? କାହାକୁ ପୂଜାପାଠ କରିବୁ ?

– ବାପାରେ ମୁଁ ହୀନ କପାଳୀଟାଏ । ଆଜି ମୋ ଇଷ୍ଟ ଦେବତାଙ୍କୁ ଏ ନଈରେ ଉଜେଇଁ ଦେଇ ଯିବାକୁ ଆସିଛି । ସେ କାମ ସରିଲେ ମୋ ଜୀବନରେ ଆଉ କିଛି କାର୍ଯ୍ୟ ନାହିଁ । କାଲି ସକାଳକୁ ଆଉ ମୁଁ ନଥିବି ।

– ଆଲୋ ମାଉସୀ, କାହିଁକି ଏପରି କହୁଛୁ ? କ'ଣ ହେଇଚି ତୋର ?

– କ'ଣ ଆଉ ହୁଅନ୍ତା ? ମୋର ଘର ଦ୍ୱାର, ପିଲାଛୁଆ, ବେପାର ବଣିଜ ସବୁ ଥିଲା । ଏଇ ଠାକୁରଙ୍କୁ ଆମେ ପୂଜା କରୁଥିଲୁ । ଶେଷରେ ଇଏ ଏକା ମୋତେ ଛାଡ଼ି ବାକୀ ସମସ୍ତଙ୍କୁ ଖାଇଲା । କିଏ ଆଉ ତାର ପୂଜା କରିବ ? ତେଣୁ ୟାକୁ ମୁଁ ନଦୀରେ ଉଜେଇଁ ଦେଇଯିବି । ସମସ୍ତେ ତ ଗଲେ, ଆଉ ମୁଁ ଏକା ରହି କଅଣ କରିବି ? ୟା କାମ ସାରିଦେଲେ ମୋ କାମ ବି ସାରିବାକୁ ପଡ଼ିବ ।

ରଘୁନାଥ କହିଲେ, ତୋ ଦୁଃଖ ମୁଁ ବୁଝିପାରୁଛି । ତୋତେ ବା ମୁଁ କି ସାନ୍ତ୍ୱନା ଦେବି ? ତେବେ ଏତିକି କହିବି, ଶେଷ ସମୟରେ ମଧ ଧୈର୍ଯ୍ୟ ଧରିବା ଉଚିତ । ତୋ ଇଷ୍ଟ ଦେବାତାଙ୍କୁ ଟିକେ ମୋତେ ଦେଖେଇବୁ କି ? ପଚାରିଲେ ରଘୁନାଥ ।

ବୁଢ଼ୀ ଚୋକେଇ ଭିତରୁ ଗୋପାଳମୂର୍ତ୍ତି କାଢ଼ି ବାଲି ଉପରେ ରଖିଲା । ମୁଗୁନି ପଥରରେ ତିଆରି ସୁନ୍ଦର କୃଷ୍ଣମୂର୍ତ୍ତି । ତାପରେ ପିତଳର ରାଧାରାଣୀଙ୍କ ମୂର୍ତ୍ତିଟିଏ ମଧ କାଢ଼ି ରଖିଲା ।

ରଘୁନାଥ ସେହି ବାଲିଉପରେ ଆଣ୍ଠୁମାଡ଼ି ସେ ଯୁଗଳ ମୂର୍ତ୍ତିଙ୍କୁ ପ୍ରଣାମ କଲେ । କହିଲେ, ମାଉସୀ ୟାଙ୍କୁ ଦେଖି ମୋର କାହିଁକି ମନଟା ତରଳି ଯାଉଛି । ତୁ ଯଦି ଦୟାକରି ୟାଙ୍କୁ ମୋତେ ଦେଇଦିଅନ୍ତୁ ତାହାଲେ ମୁଁ ନେଇ ତାଙ୍କର ପୂଜା କରନ୍ତି ।

– ଆରେ ବାପା; ମୁଁ ତ ୟାଙ୍କୁ ନଈରେ ଫୋପାଡ଼ି ଦେଇ ଯିବି ବୋଲି ଆଣିଛି । ତେଣିକି ଏ ନଦୀଭିତରୁ ଯିଏ ତାଙ୍କୁ ପାଇ ନେଇଯିବ, ସେଥିରେ ମୋର କ'ଣ ଯାଏ ଆସେ ? ତୁ ନେଇଗଲେ ମୋର କୌଣସି ଆପତ୍ତି ନାହିଁ ।

ରଘୁନାଥ କହିଲେ, ଏବେ ତୋତେ ଗୋଟାଏ କଥା କହିବି; ତୁ ଖରାପ ଭାବିବୁ ନାହିଁ । ଆଜିଠାରୁ ମୁଁ ଜାଣି ତୋର ଧର୍ମପୁଅ ହେଲି । ତୋର କେହି ନାହାନ୍ତି ବୋଲି ଭାବିବୁ ନାହିଁ । ତୋର ସୁବିଧା ଅସୁବିଧା ଭଲମନ୍ଦରେ ମୋତେ ଖବର ଦେବୁ । ତୋର ଦାୟୀତ୍ୱନେବାକୁ ମୁଁ ଅଛି । ତୁ ଗାଧୋଇ ସାରିଲେ ମୋ ସାଥିରେ ଚାଲ୍ ମୋ ଘର ଦେଖିଯିବୁ । ମୁଁ ମଧ ତୋ ଘର ଦେଖି ଆସିବି ।

ବୁଢ଼ୀ ଗାଧୋଇ ସାରିବା ପରେ ରଘୁନାଥ ଠାକୁରଙ୍କୁ ମୁଣ୍ଡେଇ ଧରି ତା ସାଙ୍ଗରେ ଘରକୁ ଫେରିଲେ । କିଛି ଦିନ ପରେ ସେଇ ଠାକୁରଙ୍କୁ ଆଣି ଆଳିପିଙ୍ଗଳରେ ସେ ସ୍ଥାପନ କଲେ। ସେଇ ଗୋପାଳଜୀଉ ହେଲେ ଆଳିପିଙ୍ଗଳ କରଣ ବଂଶର ଇଷ୍ଟଦେବତା। ତାଙ୍କଲାଗି ଘରର ପଶ୍ଚିମ ପଟେ ଧୂଳିଆପିଟା ଚାଳଘର କରାଗଲା। ଜଣେ ପୂଜକଙ୍କୁ ମାସିକ ଦରମା ଦେଇ ରଖାଗଲା। ପରବର୍ତ୍ତୀ ସମୟରେ ଠାକୁରଙ୍କ ନାମରେ ଜମିବାଡ଼ି ମଧ୍ୟ ଖଞ୍ଜିଦିଆଗଲା। ଠାକୁରଙ୍କ ସେବାପୂଜା ପାଇଁ ଚନ୍ଦ୍ରମଣିପାଟଣା ଓ ରାୟଙ୍କପାଟଣା ମୌଜାର ବହୁ ପରିବାରଙ୍କ ନାମରେ ରଘୁନାଥବାବୁ ଚାଷଜମି ଖଞ୍ଜା କରିଦେଲେ। ପ୍ରତିଦିନ ଭୋଗ ଲାଗିବାପାଇଁ ଘିଅ, ଦହି, ଲହୁଣୀ ଆଦି ଯୋଗାଇବା ପାଇଁ ଗୋପାଳକ ପରିବାରମାନଙ୍କୁ ଜମି ଦିଆଗଲା । ଦୋଳ ସମୟରେ ବିମାନ କାନ୍ଧେଇବା ପାଇଁ ଆଠଟି ପରିବାର ଗୋପାଳଙ୍କୁ ଜମି ଖଞ୍ଜା ହେଲା। ବାଳଭୋଗ ପାଇଁ ଚୂଡ଼ାଭଜା, ହୁଡୁମ ଓ ଚୂଡ଼ା ଯୋଗାଇବାକୁ କେଉଟ ପରିବାରଙ୍କୁ, ବର୍ଷରେ ଦୁଇ ଚାରିଥର ଠାକୁରଙ୍କୁ ସିଂହାର କରିବାପାଇଁ ଚିତ୍ରକାର ପରିବାରଙ୍କୁ ଓ ରାସଯାତ୍ରା, ଗହ୍ମାପୂର୍ଣ୍ଣିମା ଓ ଅନ୍ୟ କେତେକ ପର୍ବପର୍ବାଣୀରେ ଗୀତ ବୋଲିବା ପାଇଁ ବ୍ରାହ୍ମଣ ଗାୟକଙ୍କୁ ସେ ଜମି ଖଞ୍ଜା କରିଥିଲେ। ଏହାଛଡ଼ା କୁମ୍ଭାରମାନେ ହାଣ୍ଡି ଦେବାପାଇଁ, ଧୋବା ଓ ଭଣ୍ଡାରୀ ମାନେ ସେବା କରିବାପାଇଁ ତାଙ୍କଠାରୁ ଜମି ମଧ୍ୟ ପାଇଥିଲେ। ରଘୁବାବୁଙ୍କ ପରେ ତାଙ୍କର ପୁତ୍ର ଦୀନବନ୍ଧୁ ମଧ୍ୟ ଚାଷ କାମ କରିବା ପାଇଁ ରୟତମାନଙ୍କୁ ଘରଡିହ କରିବା ପାଇଁ ଜମି ଦେଇଥିଲେ । ଏହି ସାହିକୁ ଏ ପର୍ଯ୍ୟନ୍ତ ରୟତ ସାହି ବୋଲି କୁହାଯାଏ । ଏହାଛଡ଼ା ଶଙ୍ଖ ବଜାଇବା ପାଇଁ ଭୋଇମାନଙ୍କୁ, ପିଆଦା କାମ କରିବା ପାଇଁ ମଳିକ ପରିବାର ଓ ବାଜା ବଜାଇବା ଲାଗି ପାଣ ସାହି ବସାଇଥିଲେ। ସେଥିପାଇଁ ଆଳିପିଙ୍ଗଳ ଗ୍ରାମରେ ଏହି ସବୁ ସାହି ପରସ୍ପରଠାରୁ ସମ୍ପୂର୍ଣ୍ଣ ଅଲଗା ହୋଇ ଯଥେଷ୍ଟ ଦୂରତାରେ ରହିଛି । କୁଟୁମ୍ବ ବଢ଼ିବା ପରେ ପରିବାର ଲୋକେ ମୂଳଘରର ପଛପଟେ ବା କଡ଼ପଟିଆ କରି ଘର କରିଛନ୍ତି। ଓଡ଼ିଶାର ଅନ୍ୟ ଗାଆଁ ଗଣ୍ଡା ପରି ଆଳିପିଙ୍ଗଳରେ ଦାଣ୍ଡିଘର ନାହିଁ ।

ରଘୁନାଥଙ୍କ ପୁତ୍ର ଦୀନବନ୍ଧୁ କଟକରେ ମୁକ୍ତାରୀ କରିବାକୁ ଲାଗିଲେ । ତାଙ୍କର ସ୍ତ୍ରୀଙ୍କ ନାମ ଥିଲା ଲକ୍ଷ୍ମୀ । ସେ ଥିଲେ ଚାରିପୁତ୍ରଙ୍କର ଜନନୀ । ସେମାନଙ୍କର ନାମ ବାଳକୃଷ୍ଣ, ନାରାୟଣ, ରାଜକିଶୋର ଓ ଦୟାନିଧି । ଏମାନଙ୍କ ମଧ୍ୟରୁ ଦ୍ୱିତୀୟପୁତ୍ର ନାରାୟଣ ଥିଲେ ପିତାଙ୍କ ପରି ଉଚ୍ଚାଭିଳାଷୀ । ତେଣୁ, ଏଣ୍ଟ୍ରାନ୍ସ ପରେ ମୁକ୍ତାରୀ ପଢ଼ିବା ପାଇଁ ପିତା ଦୀନବନ୍ଧୁ ତାଙ୍କୁ କଲିକତା ପଠାଇଦେଲେ । ଏଣ୍ଟ୍ରାନ୍ସ ପରେ ମୁକ୍ତାରୀ ନ ପଢ଼ି ନାରାୟଣ ଏଫ୍.ଏ.ଓ.ବି.ଏ. ପଢ଼ିଲେ । ବି.ଏ. ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି

ସେ ସ୍ୱର୍ଣ୍ଣପଦକ ଲାଭ କରିବା ପରେ ଇଂରାଜିରେ ଏମ୍.ଏ. ପଢ଼ିଲେ । କୃତିତ୍ୱ ସହକାରେ ଏମ.ଏ. ପରୀକ୍ଷାରେ କୃତକାର୍ଯ୍ୟ ହୋଇ କଟକ ଫେରିବାପରେ ସେ ଓଡ଼ିଶା ଡିଭିଜନର ଶିକ୍ଷା ବିଭାଗରେ ଡେପୁଟୀ ଇନ୍ସପେକ୍ଟର ପଦବୀରେ ଯୋଗ ଦେଲେ । ସେତେବେଳେ ଏମ୍.ଏ. ପଢ଼ିବା ଲୋକ କେବଳ ମଧୁବାବୁଙ୍କ ଛଡ଼ା ପ୍ରାୟ କଟକରେ କେହି ନ ଥିଲେ । ଇଂରାଜୀରେ ନାରାୟଣଙ୍କର ଅଗାଧ ଜ୍ଞାନ ଯୋଗୁ ଶିକ୍ଷା ବିଭାଗରେ ତାଙ୍କର ସୁନାମ ବଢ଼ି ଚାଲିଲା ଓ ଉପରିସ୍ଥ କର୍ମଚାରୀମାନେ ତାଙ୍କୁ ଇଂରାଜି ବିଶାରଦ ଭାବେ ମାନ୍ୟତା ଦେବାକୁ ଲାଗିଲେ ।

ନାରାୟଣଙ୍କ ବଡ଼ଭାଇ ବାଳକୃଷ୍ଣ ଓ ତଳଭାଇ ରାଜକିଶୋର ଆଳିପିଙ୍ଗଳରେ ନିମ୍ନପ୍ରାଥମିକ ଶିକ୍ଷା ସମାପ୍ତ କରି ଗାଆଁରେ ରହିଲେ । ସବା ସାନାଭାଇ ଦୟାନିଧି କଟକ ଆସି ମାଇନର୍ ପାଶ୍‌କଲେ। କଲିକତା ଯାଇ ଏଣ୍ଟ୍ରାନ୍ସ ପଢ଼ିବା ପାଇଁ ତାଙ୍କର ଉଚ୍ଚାଭିଳାଷ ନଥିଲା । ତେଣୁ ମାଇନର୍ ପାଶ୍ କରି ସେ ଶିକ୍ଷା ବିଭାଗର ସବ୍‌ଇନ୍ସପେକ୍ଟର ଭାବେ ଚାକିରୀ କଲେ ।

ନାରାୟଣ ଗଜରାଜପୁର ଚୌଧୁରୀ ବଂଶରେ ତିଳୋତ୍ତମାଙ୍କୁ ବିବାହ କରିଥିଲେ । ଜଗତସିଂହପୁର ଜିଲ୍ଲାରେ ଗଜରାଜପୁର ଏକ ବହୁ ପୁରାତନ କରଣ ବସ୍ତି । ରାମଚନ୍ଦ୍ର ନାମକ ପୁଅଟିଏ ଜନ୍ମହେବାର ସାତବର୍ଷ ପରେ ତିଳୋତ୍ତମା ମୃତ୍ୟୁବରଣ କଲେ । ସେତେବେଳେକୁ ବଙ୍ଗ- ବିହାର - ଓଡ଼ିଶା ଗୋଟିଏ ପ୍ରଦେଶ ଥାଏ । ତେଣୁ କଟକ ଡିଭିଜନରୁ ନାରଣବାବୁଙ୍କର ବିହାରର ମୁଙ୍ଗେର ଜିଲାକୁ ଡେପୁଟୀ ଡି. ଆଇ. ଭାବେ ବଦଳି ହୋଇଗଲା । ସେଠାରେ ମୁଙ୍ଗେର ରାଜପରିବାର ସହିତ ତାଙ୍କର ସମ୍ପର୍କ ହେଲା । ରାଜାଙ୍କର ଅନେକ ରାଣୀ ଥିଲେ । ତନ୍ମଧ୍ୟରୁ ଗୋଟିଏ ରାଣୀଙ୍କର ହୀରା ନାମ୍ନୀ ଝିଅଟିଏ ଥାଏ । ହୀରା ଅତ୍ୟନ୍ତ ରୂପବତୀ ଓ ଗୁଣବତୀ ଥିଲେ । ରାଜାଙ୍କର ଦେୱାନ୍ ନାରୟଣ ବାବୁଙ୍କର ପ୍ରଚଣ୍ଡ ଇଂରାଜି ଜ୍ଞାନର ସନ୍ଧାନ ପାଇ ବ୍ରିଟିଶ୍ ସରକାରଙ୍କ ସହିତ ପତ୍ରାଳାପ ଲାଗି ତାଙ୍କର ସାହାଯ୍ୟ ନେଉଥିଲେ । ତେଣୁ ତାଙ୍କୁ ରାଜ ମହଲକୁ ଡାକି ଆତିଥ୍ୟ ଦେବା ଓ ରାଜ ପରିବାର ସହିତ ସମ୍ପର୍କ କରାଇବା ଫଳରେ ହୀରାଙ୍କ ସହିତ ନାରାୟଣଙ୍କ ସମ୍ପର୍କ ସ୍ଥାପିତ ହେଲା । ମୁଙ୍ଗେରରେ ପାଞ୍ଚ ଛଅବର୍ଷ କଟାଇବା ଭିତରେ ଏହି ସମ୍ପର୍କ ବଢ଼ିଲା । ପୁଣି ଯେତେବେଳେ ନାରାୟଣଙ୍କର କଟକ ଡିଭିଜନକୁ ବଦଳି ହେଲା, ସେତେବେଳେ ତାଙ୍କ ସହିତ ହୀରା କଟକ ଚାଲି ଆସିଲେ। ସେତେବେଳକୁ ପିତା ଦୀନବନ୍ଧୁଙ୍କର ଦେହାନ୍ତ ହୋଇ ସାରିଥାଏ। ହୀରାଙ୍କୁ ନେଇ ନାରାୟଣ ତେଲେଙ୍ଗା ବଜାର କୋଠାରେ ରହିଲେ । ହରାଥିଲେ ସ୍ନେହ ଓ ମମତାମୟୀ ନାରୀ । ପୁତ୍ର ରାମଚନ୍ଦ୍ରକୁ ଗାଆଁରୁ ଆଣି ସେ ତାଙ୍କ ପାଖରେ ରଖି ପଢ଼ାଇଲେ । ହୀରାଙ୍କୁ ପାଇ ରାମଚନ୍ଦ୍ର ମାତୃବିଚ୍ଛେଦ ଦୁଃଖ ପୂରା ଭୁଲିଗଲେ ।

ଉପରିସ୍ଥ ଇଂରେଜ ହାକିମମାନଙ୍କ ସୁପାରିଶରୁ ନାରାୟଣବାବୁ ଡେପୁଟୀ ଡି.ଆଇ. ରୁ ସିଧା ରେଭେନ୍ସା କଲେଜିଏଟ୍ ସ୍କୁଲର ପ୍ରଧାନଶିକ୍ଷକ ଭାବେ ନିଯୁକ୍ତି ପାଇଲେ। ତାଙ୍କ ପୂର୍ବରୁ ବଙ୍ଗୀୟ ଶିକ୍ଷାବିତ୍‌ମାନେ ଏହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ତଥା ସହକାରୀ ଶିକ୍ଷକ ଭାବେ ନିଯୁକ୍ତି ପାଉଥିଲେ। ତାଙ୍କର ମାସିକଦରମା ସେହି ପାହ୍ୟାର ଇଂରେଜ କର୍ମଚାରୀ ମାନଙ୍କ ସହିତ ସମାନ ହୋଇଗଲା । ସେତେବେଳେ ଏହି ବିଦ୍ୟାଳୟର ମୁଖ୍ୟ ଭାଷା ବଙ୍ଗଳା ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ। ନାରାୟଣ ବାବୁ ବେଣୀମାଧବ ଦାସଙ୍କ ଠାରୁ ଦାୟିତ୍ୱ ଗ୍ରହଣ କଲେ । ସେତେବେଳକୁ ନେତାଜୀ ସୁଭାଷଚନ୍ଦ୍ର ବୋଷ ଏହି ବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀର ଛାତ୍ର ଥିଲେ । ବେଣୀମାଧବଙ୍କ ପରେ ଜଣେ ଓଡ଼ିଆଲୋକ ଯେ ଓଡ଼ିଶାର ଏହି ଏକମାତ୍ର ହାଇସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱରେ ରହିବେ ତାହା ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା। କାରଣ ଏହି ବିଦ୍ୟାଳୟରେ ଜଣେ ହେଲେ ଓଡ଼ିଆ ସହକାରୀ ଶିକ୍ଷକ ନଥିଲେ। ମାତ୍ର ନାରାୟଣ ବାବୁଙ୍କ ଇଂରାଜି ଭାଷାରେ ଅଗାଧ ପାଣ୍ଡିତ୍ୟ, ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ, ବେଶପୋଷାକ ଓ ଆଭିଜାତ୍ୟ ଯୋଗୁଁ ରେଭେନ୍ସା ଉଚ୍ଚ ବିଦ୍ୟାଳୟର ଶିକ୍ଷକ, ଛାତ୍ର ତଥା କର୍ମଚାରୀଗଣ ତାଙ୍କୁ ଉଚ୍ଚକୋଟୀର ସମ୍ମାନ ଦେଉଥିଲେ । ସେ ୧୯୧୧ ମସିହାରେ ଏହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲାବେଳକୁ ନେତାଜୀ ସୁଭାଷଚନ୍ଦ୍ର ବୋଷ ଅଷ୍ଟମ ଶ୍ରେଣୀର ଛାତ୍ର ଥିଲେ । ଏହି ବାଳକର ତୀକ୍ଷ୍ଣବୁଦ୍ଧି ଓ ପ୍ରତିଭାର ସନ୍ଧାନ ପାଇ ନାରାୟଣ ବାବୁ ତାଙ୍କୁ ଖୁବ୍ ଭଲ ପାଉଥିଲେ। ସୁଭାଷଙ୍କର ପିତା ଜାନକୀନାଥ ବୋଷ କଲେଜିଏଟ୍ ସ୍କୁଲକୁ ଆସି ନାରାୟଣବାବୁଙ୍କୁ ସୁଭାଷଙ୍କର ଗୃହଶିକ୍ଷକ ଭାବେ ଦାୟୀତ୍ୱ ନେବାକୁ ଅନୁରୋଧ କରି କହିଥିଲେ, "ବେଣୀମାଧବ ବାବୁ ମୋ' ପୁଅ ସୁଭାଷର ଗୃହଶିକ୍ଷକ ଥିଲେ । ସେ ଏଠାରୁ କଲିକତା ଚାଲିଯିବା ପରେ ଆପଣ ତାଙ୍କ ସ୍ଥାନରେ ସୁଭାଷକୁ ପଢ଼ାଇଲେ ଭଲ ହୁଅନ୍ତା ।" ମାତ୍ର ନାରାୟଣବାବୁ କହିଲେ, ମୁଁ ଏକ ଜମିଦାର ପରିବାରରୁ ସମ୍ଭୂତ । କଟକ ସହର ତଥା ନିଜର ଗ୍ରାମାଞ୍ଚଳରେ ମୋର ଯେଭଳି ସାମାଜିକ ମର୍ଯ୍ୟାଦା ଅଛି, ତଦନୁଯାୟୀ ମୁଁ ଆପଣଙ୍କ ଅନୁରୋଧ ରକ୍ଷା କରି ପାରିବି ନାହିଁ । ହେଲେ, ଏହି ବିଦ୍ୟାଳୟ ପରିସର ମଧ୍ୟରେ ସୁଭାଷ ମୋ ପାଖକୁ ଆସି ତାର ସମସ୍ତ ସନ୍ଦେହ ମୋଚନ କରିପାରିବ ଏବଂ ଆବଶ୍ୟକସ୍ଥଳେ ମୋ ତେଲେଙ୍ଗାବଜାର ବାସଗୃହକୁ ଯାଇ ତା'ର ସନ୍ଦେହ ମୋଚନ କରିପାରିବ । ଇଂରାଜିରେ ତାର ଜ୍ଞାନ ବଢ଼ାଇବାକୁ ମୁଁ ସବୁପ୍ରକାର ଚେଷ୍ଟାକରିବି । ତାହାହିଁ ସେ କରିଥିଲେ । ନାରାୟଣଙ୍କ ପରି ଜଣେ ଜ୍ଞାନୀ ପ୍ରଧାନ ଶିକ୍ଷକଙ୍କ ନିର୍ଦ୍ଦେଶନାରେ ସୁଭାଷଙ୍କର ଇଂରାଜି ଭାଷାରେ ଅଗାଧ ଜ୍ଞାନ ହୋଇ ପାରିଥିଲା । ଫଳରେ ସେ ବିଲାତ ଯାଇ ଆଇ.ସି.ଏସ୍. ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ ।

ସୁଭାଷଙ୍କ ପ୍ରତି ନାରାୟଣଙ୍କର ମମତା ଲାଗି ୧୯୧୩ ମସିହାରେ ସେହି ବିଦ୍ୟାଳୟର ବାର୍ଷିକ ଉତ୍ସବକୁ ସୁଭାଷଙ୍କ ଅନୁରୋଧ ରକ୍ଷାକରି ଇଂରେଜ କମିଶନର ସାହେବଙ୍କ ବଦଳରେ ଉତ୍କଳଗୌରବ ମଧୁସୂଦନଙ୍କୁ ସେ ମୁଖ୍ୟଅତିଥି ଭାବେ ଆମନ୍ତ୍ରିତ କରିଥିଲେ । ଏଥିପୂର୍ବରୁ କଟକ ଡିଭିଜନର ଇଂରେଜ କମିଶନରଙ୍କୁ ପ୍ରତିବର୍ଷ ଏହି ଉତ୍ସବକୁ ମୁଖ୍ୟ ଅତିଥି ଭାବେ ଆମନ୍ତ୍ରିତ କରାଯାଉଥିଲା । ପ୍ରଥମ କରି ଜଣେ ନେତୃସ୍ଥାନୀୟ ଓଡ଼ିଆ ବ୍ୟକ୍ତିଙ୍କୁ ଡକାଯିବା ଫଳରେ ବଙ୍ଗୀୟ ମାନେ ନାରାୟଣଙ୍କ ବିରୁଦ୍ଧରେ ବେନାମୀ ଦରଖାସ୍ତ ଲାଟସାହେବଙ୍କୁ ଦେଇ କଟକରୁ ତାଙ୍କର ବଦଳି କରାଇଥିଲେ । ମାତ୍ର ଚାରିବର୍ଷ ରେଭେନ୍ସା କଲେଜିଏଟ୍ ସ୍କୁଲରେ ରହିବା ପରେ ଜଣେ ଇଂରେଜ ଶିକ୍ଷାବିତ୍ ମିଷ୍ଟର୍ ହଣ୍ଡରସନ୍‌ଙ୍କୁ ଦାୟିତ୍ୱ ହସ୍ତାନ୍ତର କରି ନାରାୟଣବାବୁ ବିହାରର ପାଟନା ସହରକୁ ବଦଳି ହୋଇଗଲେ । ଚାକିରୀରୁ ଅବସର ନେବା ପର୍ଯ୍ୟନ୍ତ ସେ ପାଟନାରେ ହିଁ ରହିଲେ । ନାରାୟଣ ପ୍ରସାଦ ଥିଲେ ଅତ୍ୟନ୍ତ ସ୍ୱାଭିମାନୀ ଓ ଆତ୍ମଗର୍ବୀ । ତାଙ୍କର ବଂଶ ମର୍ଯ୍ୟଦା ଓ ଇଂରାଜି ଜ୍ଞାନ ଯୋଗୁଁ ଇଂରେଜ ଅଫିସରମାନଙ୍କୁ ମଧ୍ୟ ସେ ହେୟଜ୍ଞାନ କରୁଥିଲେ । ତାଙ୍କର ସମସାମୟିକ ବହୁ ଶିକ୍ଷାବିତ୍‌ଙ୍କୁ ମଧ୍ୟ ଏହି କାରଣରୁ ସେ ହେୟଜ୍ଞାନ କରୁଥିଲେ । ସଂସ୍କୃତ ଭାଷାରେ 'ସପ୍ତସତୀ ଚଣ୍ଡୀ' ତାଙ୍କର ମୁଖସ୍ଥ ଥିଲା ଓ ଗାଧୋଇ ସାରି ପ୍ରତିଦିନ ଅର୍ଗଳ, କବଚ, ତିଳକ ସେ ପାଠ କରୁଥିଲେ । ସଂସ୍କୃତ ପଣ୍ଡିତମାନଙ୍କର ବଡ଼ ବଡ଼ ସଭାକୁ ସେ ନିମନ୍ତ୍ରିତ ହେଉଥିଲେ । ତାଙ୍କର ମାମୁଁପୁଅ ଭାଇ ନୃସିଂହଚରଣ କାନୁନ୍‌ଗୋଙ୍କୁ ପାଖରେ ରଖି ତାଙ୍କର ପାଟନାରେ ଏମ.ଏ. ପଢ଼ିବାର ବ୍ୟବସ୍ଥା କରିଥିଲେ। ପରବର୍ତ୍ତୀ କାଳରେ ନୃସିଂହବାବୁଙ୍କର ଛାତ୍ରମାନେ ଓଡ଼ିଶାରେ ଖୁବ୍ ସୁନାମ ଅର୍ଜନ କରିଥିଲେ । ନୃସିଂହବାବୁ ଜଣେ ଅଭିଜ୍ଞ ଶିକ୍ଷକ ଭାବେ ଓଡ଼ିଶାରେ ଖୁବ୍ ସୁନାମ ଅର୍ଜନ କରିଛନ୍ତି । ତାଙ୍କର ଛାତ୍ରମାନଙ୍କ ଉଦ୍ୟମରେ "ନୃସିଂହଚରଣ କାନୁନ୍‌ଗୋ"ଙ୍କ ଜୀବନୀ ପ୍ରକାଶ ପାଇଛି । ସେହି ଜୀବନୀରେ ନାରାୟଣପ୍ରସାଦଙ୍କ ବିଷୟରେ ଯାହା ଲେଖାଅଛି; ତାହା ଏହିପରି - ପ୍ରିୟ ଛାତ୍ର ସୁଭାଷଚନ୍ଦ୍ର (ନେତାଜୀ)ଙ୍କ ଅନୁରୋଧ ରକ୍ଷାକରି ରେଭେନ୍ସା କଲେଜିଏଟ ସ୍କୁଲର ବାର୍ଷିକଉତ୍ସବକୁ ମୁଖ୍ୟଅତିଥି ଭାବେ ଓଡ଼ିଶା ଡିଭିଜନର କମିଶନର ସାହେବଙ୍କ ବଦଳରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କୁ ନିମନ୍ତ୍ରଣ କରିବା ଫଳରେ କଟକରୁ ପାଟନାକୁ ନାରାୟଣବାବୁଙ୍କର ବଦଳି କରି ଦିଆଗଲା । ତଥାପି ମଧ୍ୟ ଇଂରେଜମାନଙ୍କ ତୁଳନାରେ ତାଙ୍କର ଜ୍ଞାନଗାରିମାର ଆତ୍ମଗର୍ବ ବା ସ୍ୱାଭିମାନରେ କୌଣସି ଆଞ୍ଚ ଆସିନଥିଲା । ବେଳେ ବେଳେ ସେ କହୁଥିଲେ, ଭାରତ ସ୍ୱାଧୀନ ହେବା ପରେ ଜ୍ଞାନଗାରିମା ଦୃଷ୍ଟିରୁ ଏହି ଇଂରେଜ ଅଫିସରମାନେ ମୋର ରୋଷେୟା ପଦରେ ମଧ୍ୟ ରହିବାର ଯୋଗ୍ୟତା ନାହିଁ। ଯେ କେହି ଇଂରେଜ ପ୍ରଶାସକଙ୍କ

ତୁଳନାରେ ତାଙ୍କର ଇଂରାଜି ଜ୍ଞାନ ଅଧିକ ବୋଲି ସେ ଦାବୀ କରୁଥିଲେ । ଏସବୁର ସୁରାକ୍ ପାଇ ତାଙ୍କର ବଙ୍ଗୀୟ ପ୍ରତିପକ୍ଷମାନେ ଇଂରେଜ ଅଫିସରମାନଙ୍କ ପାଖକୁ ବେନାମୀ ଚିଠି ପଠାଉଥିଲେ ।

ଥରେ ଭାଇସ୍‌ରାୟଙ୍କ କାର୍ଯ୍ୟାଳୟରୁ ପାଟନାସ୍ଥିତ ଶିକ୍ଷାବିଭାଗ ନିର୍ଦ୍ଦେଶକଙ୍କ ପାଖକୁ ବିହାର-ଓଡ଼ିଶାରେ ଇଂରାଜିଶିକ୍ଷା ପ୍ରସାରଣ ବିଷୟକ ଏକ ରିପୋର୍ଟ ପଠାଇବାକୁ ସାତଦିନିଆ ନୋଟିସ୍ ଆସିଲା । ସେତେବେଳେ ଶିକ୍ଷାବିଭାଗରେ ନିର୍ଦ୍ଦେଶକ ଥାଆନ୍ତି ମିଷ୍ଟର ଫକ୍ସ । ସେ ତାଙ୍କ ତଳିଆ କର୍ମଚାରୀମାନଙ୍କୁ ଡକାଇ ଦୁଇଦିନ ଭିତରେ ଏକ ଚମତ୍କାର ରିପୋର୍ଟ ଲେଖି ଆଣିବାକୁ କହିଲେ । ମାତ୍ର କେହି ଏକ ସର୍ବାଙ୍ଗ ସୁନ୍ଦର ରିପୋର୍ଟ ଲେଖିପାରିଲେ ନାହିଁ। ଫକ୍ସ ସାହେବ ଖୁବ୍ ବିରକ୍ତ ହେଲେ । ଆଉ ମାତ୍ର ତିନିଦିନ ଅଛି । ସାହେବ ଚିନ୍ତାରେ ପଡ଼ିଗଲେ । ତାଙ୍କ କାର୍ଯ୍ୟାଳୟର ମୁଖ୍ୟ ଲୋକମାନେ କହିଲେ, ଏପରି ରିପୋର୍ଟ କେବଳ ନାରାୟଣବାବୁ ଲେଖିଦେଇ ପାରିବେ । ତେଣୁ ଫକ୍ସ ସାହେବ ନାରାୟଣଙ୍କୁ ଡକାଇଲେ । ନାରାୟଣବାବୁ କହିଲେ, ମୁଁ ନିଜେ ବସି ଏତେବଡ଼ ରିପୋର୍ଟ ଲେଖି ପାରିବି ନାହିଁ। ମୁଁ ରିପୋର୍ଟ ଡାକିବି ଓ ଅନ୍ୟ କେହି ଲେଖିବେ । ତେବେ ଯିଏ ଲେଖିବ, ସେ ମୋ ଇଂରାଜୀ ବୁଝି ଠିକ୍ ଭାବେ ଲେଖିପାରିବାକୁ ସକ୍ଷମ ଥିବା ଦରକାର । ନାରାୟଣବାବୁଙ୍କ ଇଂରାଜି ବୁଝିଲାପରି କେହି ଲୋକ ମିଳିଲେନାହିଁ । ସାହେବ ବ୍ୟସ୍ତ ହୋଇ ପଡ଼ିଲେ । ନାରାୟଣବାବୁ କହିଲେ ସେଭଳି ଲୋକ ହେଉଛି ମୋ ମାମୁଁପୁଅ ଭାଇ ନୃସିଂହ ଚରଣ କାନୁନ୍‌ଗୋ । ମୁଁ ରିପୋର୍ଟ ଡାକିବି ଓ ନୃସିଂହ ଲେଖିବ। ନାରାୟଣଙ୍କ ପାଖରେ ରହି ସେତେବେଳେ ନୃସିଂହବାବୁ ଏମ୍.ଏ. ପଢୁଥାଆନ୍ତି । ଫକ୍ସ ସାହେବ କହିଲେ ଆପଣ ମୋ ବୈଠକଖାନାରେ ବସି ଏ କାର୍ଯ୍ୟ କରନ୍ତୁ । ତାହାଲେ ମୁଁ ଏଥିପ୍ରତି ଟିକେ ନଜର ରଖିପାରିବି ।

ତାହାହିଁ ହେଲା । ନାରାୟଣ ବାବୁଙ୍କ ପାଇଁ ଗୁଡ଼ାଖୁ ହୁକା ଲଗାଇ ଦେଇ ଫକ୍ସଙ୍କ ପିଅନ ଜଗିବସିଲା । ଆରାମ ଚେୟାର୍‌ରେ ବସି ନାରାୟଣ ବାବୁ ରିପୋର୍ଟ ଡାକିଲେ ଓ ନୃସିଂହବାବୁ ଲେଖିବା ଆରମ୍ଭ କରିଦେଲେ । ରାତିସାରା ରିପୋର୍ଟ ଲେଖାଚାଲିଥାଏ । ଫକ୍ସ ସାହେବଙ୍କ ଆଖିରେ ନିଦ ନାହିଁ । ସେ ଘଣ୍ଟାଏ ଦେଢ଼ଘଣ୍ଟା ଛାଡ଼ି ଆସି ଦେଖିଯାଉଥାନ୍ତି । ନାରୟଣ ପ୍ରସାଦ ଅଫିମ ଖାଆନ୍ତି ବୋଲି ସେ ଶୁଣିଥାନ୍ତି । ତେଣୁ ରାତିରେ କାଳେ ସେ ନିଶାଗ୍ରସ୍ତ ହୋଇ ଶୋଇଯିବେ, ଏଇ ଭୟ ଫକ୍ସ ସାହେବଙ୍କୁ ବ୍ୟତିବ୍ୟସ୍ତ କରୁଥାଏ । ରାତି ପାହିଆସିଲା । ମାତ୍ର ରିପୋର୍ଟ ଲେଖା ସରିଲା ନାହିଁ । ଫକ୍ସ ସାହେବ ପଚାରିଲେ, ଆଉ କେତେ ସମୟ ଲାଗିବ ?

ନାରାୟଣ ପ୍ରସାଦ କହିଲେ, ଆଉ ମାତ୍ର ଦୁଇଘଣ୍ଟାର କାମ । ଆମେ ଘରକୁ ଯାଇ ନିତ୍ୟକର୍ମ ସାରି ଜଳଖିଆ ଖାଇ ଆସିଲେ ପୁଣି ରିପୋର୍ଟ ଲେଖା ଆରମ୍ଭହେବ । ଫକ୍ସ ସାହେବ କହିଲେ, ଆପଣ ଆଜି ମୋର ଅତିଥି ହେବେ । ଏଇଠି ନିତ୍ୟକର୍ମ ସାରନ୍ତୁ । ଜଳଖିଆ ଖାଇସାରି ଲେଖା ଆରମ୍ଭ କରିବେ । ନାରୟଣବାବୁ କହିଲେ, ଆପଣଙ୍କ ଖାନ୍‌ସମାଙ୍କ ଦ୍ୱାରା ତିଆରି ଜଳଖିଆ ନୃସିଂହର ଚଳିଯିବ । ମାତ୍ର ମୁଁ କେବଳ ଲୁଚି, ରାବିଡ଼ି ଓ ସନ୍ତୁଳା ଖାଏ । ଚାରିଖଣ୍ଡ ଲୁଚିରେ ଅଧଭରିଏ ଅଫିମ ପଡ଼ି ଦଳା ହୋଇ ଛଣା ହେବ । ଲୁଚି ପୂରା ଲାଲ୍ ହୋଇଗଲେ ରାବିଡ଼ି ଓ ସନ୍ତୁଳା ସହିତ ସେତକ ମୋର ଚଳିଯିବ ।

ଏକଥା ଶୁଣି ଫକ୍ସସାହେବ ତାଙ୍କ ରୋଷେଇଘରେ ଖାନ୍‌ସମା ପାଖରେ ବସି ଲୁଚି, ସନ୍ତୁଳା କରି ରାବିଡ଼ି ସହିତ ନାରାୟଣ ବାବୁଙ୍କୁ ପରଶିଲେ । ଜଳଖିଆ ଖାଇସାରି ରିପୋର୍ଟ ଲେଖା ଆରମ୍ଭ ହେଲା ଓ ମଧ୍ୟାହ୍ନ ପୂର୍ବରୁ ତାହା ଭାଇସ୍‌ରାଏଙ୍କ ପାଖକୁ ପଠାଇଦିଆଗଲା । ପରବର୍ତ୍ତୀ ସମୟରେ ନାରାୟଣବାବୁ ତାଙ୍କ ବଙ୍ଗୀୟ ପ୍ରତିପକ୍ଷମାନଙ୍କୁ କହିବାର ଶୁଣାଗଲା - "ଆପଣମାନେ ମୋତେ ନିଶାଖୋର ଇଂରେଜ ବିରୋଧି ବୋଲି ପ୍ରଚାର କରୁଛନ୍ତି । ମାତ୍ର ଆପଣମାନଙ୍କ ଇଂରେଜ ପ୍ରଭୁ ନିଜ ହାତରେ ଅଫିମଦଳି ମୋ ପାଇଁ ଲୁଚିଛାଣି ଖୁଆଉଛନ୍ତି । ଏଥିରେ ମୋର ବା ଦୋଷ କ'ଣ ?"

ସଂସ୍କୃତ ଓ ଇଂରାଜୀ ଭାଷାରେ ନାରାୟଣ ବାବୁଙ୍କର ପାଣ୍ଡିତ୍ୟ ଥିଲେ ମଧ୍ୟ ନିଜର ମାତୃଭାଷା ଓଡ଼ିଆ ପ୍ରତି ତାଙ୍କର ପ୍ରବଳ ନିଷ୍ଠା ଥିଲା । ତେଣୁ ତାଙ୍କର ବଙ୍ଗୀୟ ପ୍ରତିପକ୍ଷମାନେ ଈର୍ଷାପରାୟଣ ହୋଇ ଉପରିସ୍ଥ ଇଂରେଜ କର୍ମକର୍ତ୍ତାଙ୍କୁ ଯେତେ ବେନାମୀ ଚିଠି ଲେଖି ପଠାଉଥିଲେ ସେଥିପ୍ରତି ନାରାୟଣଙ୍କର ଭ୍ରୂକ୍ଷେପ ନଥିଲା । କାରଣ ଇଂରାଜୀ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଯୋଗୁଁ ଇଂରେଜ ପ୍ରଶାସକମାନଙ୍କର ତାଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଥିଲା । କଟକ କଲେଜିଏଟ୍ ସ୍କୁଲରେ ସେ କଡ଼ା ନିର୍ଦ୍ଦେଶ ଦେଇଥିଲେ ଯେ, ତାଙ୍କ ସହିତ କେହି କଥା ହେବାକୁ ଚାହିଁଲେ ଇଂରାଜୀ ନହେଲେ ଓଡ଼ିଆ ଭାଷାରେ ହିଁ କଥାହେବେ । ଅନ୍ୟ କୌଣସି ଭାଷାରେ କଥା ହେବାକୁ ସେ ଭଲ ପାଉ ନଥିଲେ । ତେଣୁ ବଙ୍ଗାଳୀ ଶିକ୍ଷକଗୋଷ୍ଠୀ ତାଙ୍କ ବିରୁଦ୍ଧରେ ଇଂରେଜ ପ୍ରଶାସକଙ୍କୁ ଅନେକ ବେନାମି ଚିଠି ଲେଖି ପଠାଉଥିଲେ । ସେତେବେଳେ ପ୍ରତି ଗାଆଁରୁ ଯୁବକମାନେ କଲିକତା ନୋହିଲେ ଜାମସେଦପୁର ଯାଇ କଳକାରଖାନାରେ ଚାକିରୀ କରୁଥିଲେ । ଆମ ସାହିରୁ ଗୋବିନ୍ଦ ନାମକ ତାଙ୍କର ଜଣେ ସମ୍ପର୍କୀୟ ଭାଇ କଲିକତାରେ ଚାକିରୀ କରୁଥିଲେ । ନାରାୟଣବାବୁ ପ୍ରତି ଛୁଟିରେ ଆଳିପିଙ୍ଗଳ ଯାଆନ୍ତି । କୋଠା ବାରଣ୍ଡାରେ ଆରାମ ଚୌକି ଉପରେ ବସି

ଗୁଡ଼ାଖୁ ହୁକା ଟାଣନ୍ତି । ସେଦିନ ଗୋବିନ୍ଦ ଆସି ପ୍ରଣାମ କଲେ । ନାରାୟଣ, ପଚାରିଲେ, ତୁ କେବେ ଗାଆଁକୁ ଆସିଲୁ ? ସେ କହିଲେ, "ଆମି କାଲ୍ ଏସେଛି" । ନାରାୟଣ ଚୌକୀ ଛାଡ଼ି ଉଠିଯାଇ ତାଙ୍କୁ ଏକ ଶକ୍ତ ଜାବୁଡ଼ା ମାରି କହିଲେ, "କେତେଟା ଦିନ କଲିକତାରେ ରହି ନିଜର ଭାଷା ଭୂଲିଯାଇଛୁ । ଆଉ କିଛି ବର୍ଷ ପରେ ନିଜ ବାପ ମାଆଙ୍କୁ ବି ଭୁଲି ବଙ୍ଗାଳୀ ବାପମାଆଙ୍କୁ ଆଦରିବୁ" । ନିଜର ମାତୃଭାଷା ଓ ଜନ୍ମମାଟି ପାଇଁ ତାଙ୍କର ପ୍ରବଳ ସ୍ୱାଭିମାନ ଥିଲା। ଦୀର୍ଘକାଳ ଧରି କଟକଠାରୁ ବହୁ ଦୂର ପାଟନା ସହରରେ ରହିବା ସତ୍ତ୍ୱେ ତାଙ୍କର ସ୍ୱାଭିମାନ ଓ ଦାମ୍ଭିକତା ବଜାୟ ରଖି ଉପରିସ୍ଥ ଇଂରେଜ କର୍ମଚାରୀମାନଙ୍କୁ ତାଙ୍କର କଟକ ବଦଳି ହେବାପାଇଁ କେବେହେଲେ ଅନୁନୟ କରିନଥିଲେ ।

ନାରାୟଣବାବୁଙ୍କର ଦ୍ୱିତୀୟ ପତ୍ନୀ ହୀରା କଟକରେ ରହିବା ପରେ ପୁଅ ରାମଚନ୍ଦ୍ରଙ୍କୁ ଆଣି ପାଖରେ ରଖି ପାଠ ପଢ଼ାଇବାର ବ୍ୟବସ୍ଥା କରିଥିଲେ । ସାବତ ପୁଅକୁ ସେ ପ୍ରାଣ ଦେଇ ଭଲ ପାଉଥିଲେ । ତେଣୁ ତାକୁ ସେ ଗେଲବସର କରି ଯଥେଷ୍ଟ ପଇସାପତ୍ର ଦେଇ ଅତ୍ୟନ୍ତ ବଦଖର୍ଚ୍ଚି କରିଦେଲେ । ୧୯୧୧ ମସିହାଠାରୁ ନାରାୟଣଙ୍କ ଦରମା ଇଂରେଜ କର୍ମଚାରୀ ମାନଙ୍କ ସହିତ ସମାନ ହୋଇଯାଇଥିଲା । ସେ ମାସକୁ ପାଞ୍ଚଶହ ଟଙ୍କା ଦରମା ପାଉଥିଲେ । ସେତେବେଳ ପ୍ରାଥମିକ ବିଦ୍ୟାଳୟର ଜଣେ ଶିକ୍ଷକର ଦରମା ମାତ୍ର ଏକଟଙ୍କା ଥିଲା । ମାଆଙ୍କ ଠାରୁ ପଇସା ନେଇ ରାମଚନ୍ଦ୍ର ସାଙ୍ଗସାଥୀମାନଙ୍କ ସହିତ ଖୁସି ମଜାରେ ଉଡ଼ାଉଥିଲେ । ପାଠପଢ଼ାରେ ତାଙ୍କର ମନ ନଥିଲା । ତାଙ୍କ ପାଇଁ ଗୃହ ଶିକ୍ଷକ ନିଯୁକ୍ତ ହୋଇଥିଲେ ସତ; ମାତ୍ର ପାଠପଢ଼ାରେ ଖଇଚ ଦେଖିଲେ ଶିକ୍ଷକ ତାଙ୍କପ୍ରତି କଡ଼ାନଜର ଦେବାକୁ ପଶ୍ଚାତ୍‌ପଦ ହେଉଥିଲେ । କାରଣ ସାବତ ମାଆ ହୀରା ପୁଅକୁ ଏତେ ଭଲ ପାଉଥିଲେ ଯେ, ତାକୁ ସବୁବେଳେ ଖୁସିରେ ରଖିବା ପାଇଁ ସେ ସତତ ଚେଷ୍ଟିତା ଥିଲେ । ତେଣୁ ରାମଚନ୍ଦ୍ର ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ସେଥିଲାଗି ନାରାୟଣ ବାବୁ ବହୁତ ଅଶାନ୍ତି ହେଉଥିଲେ । ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ରାମଚନ୍ଦ୍ର ଗାଆଁକୁ ଆସି ଜମିବାଡ଼ି ଓ ଜମିଦାରୀ ବୁଝାଶୁଝା କଲେ । ଏହାର ତିନି ଚାରିବର୍ଷ ପରେ ହୀରା ଇହଲୀଳା ସମ୍ବରଣ କଲେ । ସେତେବେଳେକୁ ନାରାୟଣଙ୍କ ବୟସ ଥିଲା ପଚାଶବର୍ଷ । ତାଙ୍କର ଭାଇମାନେ ନୋଦା ଗ୍ରାମର ପଦ୍ମାବତୀ ନାମ୍ନୀ ଝିଅଟିକୁ ପୁଣି ତାଙ୍କ ସହିତ ବିବାହ କରାଇଦେଲେ । ବିବାହବେଳକୁ ନାରାୟଣଙ୍କୁ ହୋଇଥିଲା ବାଉନ ବର୍ଷ ଓ ପଦ୍ମାବତୀକୁ ମାତ୍ର ତେର ବର୍ଷ ବୟସ । ନାରାୟଣ ବାବୁ ୫୫ ବର୍ଷ ବୟସରେ ସରକାରୀ କାର୍ଯ୍ୟରୁ ଅବସର ନେଇ କଟକବସାରେ ଆସି ରହିଲେ ।

୧୯୦୫ ମସିହାରେ ଆଳିପିଙ୍ଗଳସ୍ଥ ପୈତୃକ ଚାଳଘର ଭାଙ୍ଗି ସେ କୋଠା ତୋଳିଥିଲେ । ଦୋଳ, ଦଶହରା, ରାସଯାତ୍ରା ଆଦି ପର୍ବପର୍ବାଣିରେ ସେ ଆସି ଆଳିପିଙ୍ଗଳରେ ରହୁଥିଲେ ।

କଟକ ସହରର ଦକ୍ଷିଣ ପୂର୍ବରେ କାଠଯୋଡ଼ି ନଦୀ ଆରପଟେ ବୟାଳିଶ ମୌଜା ଅଛି । ଏହି ଅଞ୍ଚଳରେ ବେଣ୍ଟକାର ଗ୍ରାମ ଏକ ବଡ଼ କରଣ ବସ୍ତି ଓ ସେଠାରେ ବହୁ ଶିକ୍ଷିତ ପରିବାରର ଲୋକେ ସେତେବେଳେ ଭଲ ଭଲ ସରକାରୀ ଚାକିରୀ କରିଥିଲେ । ତନ୍ମଧ୍ୟରୁ ଶ୍ରୀ ବଳଦେବ ଦାସ ଥିଲେ ଜଣେ ଇଂଜିନିୟର । ସେ ଜଗତସିଂହପୁର ଉପଖଣ୍ଡ ଦାୟିତ୍ୱରେ ଥିଲେ । ତାଙ୍କୁ ରାସ୍ତାଘାଟ ଓ କେନାଲ ବିଭାଗର ବଡ଼ବାବୁ କୁହାଯାଉଥିଲା । କନ୍ଦରପୁର ଠାରୁ ତଳକୁ ଯେତେ ରାସ୍ତାଘାଟ ଓ କେନାଲ ଅଛି, ସେସବୁର ରକ୍ଷଣାବେକ୍ଷଣା କାର୍ଯ୍ୟ ଦାୟିତ୍ୱରେ ଥିଲେ ବଳଦେବ ବାବୁ । ତାଙ୍କର ଅଧରମଣୀ ବୋଲି ଝିଅ; ଭୂଦେବ ଓ ଅକ୍ଷୟ ନାମରେ ଦୁଇପୁଅ ଥିଲେ । ସେକାଳରେ ଖାନ୍‌ଦାନି ପରିବାରରେ ବନ୍ଧୁ କରିବା ଲୋକମାନଙ୍କର ଲକ୍ଷ୍ୟ ଥିଲା । ତେଣୁ ନାରାୟଣ ବାବୁଙ୍କ ଏକମାତ୍ର ପୁତ୍ର ରାମଚନ୍ଦ୍ରଙ୍କୁ ଜ୍ୱାଇଁ କରିବାକୁ ବଳଦେବ ଇଚ୍ଛା ବ୍ୟକ୍ତ କଲେ । ସେ ଯାଇ ରାମଚନ୍ଦ୍ରର ବଡ଼ବାପା ବାଳକୃଷ୍ଣ, ଦାଦା ରାଜକିଶୋର ଓ ଦୟାନିଧିଙ୍କ ସହିତ କଥା ହେବା ପରେ ନାରାୟଣଙ୍କ ସମ୍ମତି ନେଲେ । କନ୍ୟାସୁନା ସହିତ ଯାନି ଯୌତୁକ ଦେବା ସଙ୍ଗେ ସଙ୍ଗେ ପଚିଶ ଜଣ କୁଣିଆଁ ସାଆନ୍ତଙ୍କୁ ମର୍ଯ୍ୟାଦା ଦେବାକୁ ମଧ୍ୟ ବଳଦେବ ରାଜି ହେଲେ । ସାଆନ୍ତ ମର୍ଯ୍ୟାଦା କହିଲେ ଗୋଟିଏ ସବାରୀରେ ଜଣେ ମୁଖ୍ୟ କୁଣିଆଁଙ୍କ ସହିତ ଜଣେ ବାରିକ ଓ ସବାରୀ କାନ୍ଧେଇ ଆସିଥିବା ଆଠଜଣ ଗଉଡ଼ଙ୍କୁ ଦୁଇଦିନ କାଳ ସୁଖାଦ୍ୟ ପରଶିବା ସହିତ ସମସ୍ତଙ୍କ ପାଇଁ ମୂଲ୍ୟବାନ୍ ଲୁଗା ଓ ବିଦାକୀ ଦେବାର ବ୍ୟବସ୍ଥା । କୁଣିଆଁ ସାଆନ୍ତଙ୍କ ପାଇଁ ଖଟ ମାଠ ଶେଯ ତକିଆ ଆଦିର ଯୋଗାଡ଼ କରି ବିଦାହେଲାବେଳେ ହଳେ ପାଟଯୋଡ଼ ଦେବା ହେଲା ସାଆନ୍ତ ମର୍ଯ୍ୟାଦା। ବର ସାଙ୍ଗରେ ଗାଆଁରୁ ବାଜା, ରୋଷଣି ଓ ବାଣ ମାରିବା ଲୋକେ ଯାଇ କନ୍ୟା ଘରେ ଖିଆପିଆ କରିବା ସହିତ ସେମାନଙ୍କୁ ପାରିତୋଷିକ ଦେବା ବହୁ ଖର୍ଚ୍ଚସାପେକ୍ଷ ଥିଲା । ବାହାଘର ପାଇଁ ଆଳିପିଙ୍ଗଳରୁ ବର ସହିତ ଭାଇ ବନ୍ଧୁ ବାରିକ ପୁରୋହିତ ଓ ପଚିଶ ଜଣ ସାଆନ୍ତ କୁଣିଆଁ ଯିବାର ବ୍ୟବସ୍ଥା ହୋଇଥିଲା । ପଚିଶଟି ସବାରୀ କାନ୍ଧେଇ ଥିବା ଦୁଇଶହ ଗଉଡ଼ ସାଆନ୍ତ କୁଣିଆ ଓ ପଚିଶ ଜଣ ବାରିକଙ୍କୁ ମିଶାଇ ପ୍ରାୟ ତିନିଶହ ଲୋକ ଆଳିପିଙ୍ଗଳରୁ ବେଣ୍ଟକାର ଯାଇ ରାମଚନ୍ଦ୍ରଙ୍କ ବିବାହ ସମ୍ପନ୍ନ କରିଥିଲେ । ସେହି ବିଭାଘର ଦେଖିଥିବା ସାନସାନ ପିଲାମାନେ ଯେଉଁମାନେ ମୋ ହେତୁ ପାଇଲାବେଳକୁ ସେ ଗାଆଁରେ

ବୟସ୍କ ମୁରବୀ ଲୋକ ଭାବେ ମର୍ଯ୍ୟାଦା ପାଉଥିଲେ ସେମାନେ ଅଧରୀଦେଈର ବାହାଘର କଥା ଭୁଲି ପାରିନଥିଲେ । କଟକ ନୂଆବଜାର ଠାରୁ ଛଅ କିଲୋମିଟର ବ୍ୟାପୀ ରୋଷଣୀ ହୋଇଥିଲା ଓ ପାଞ୍ଚକୋଶ ଦୂରରୁ ଦୁଇଶହ ଗଉଡ଼ଙ୍କର ସବାରୀ କାନ୍ଧିଆ ଡାକ ବେଣ୍ଟକାର ଗାଆଁକୁ ଶୁଭୁଥିଲା ବୋଲି ସେମାନେ କହନ୍ତି । ଆଜିକାଲି ବାହାଘର ମାନଙ୍କରେ ମାଳ ମାଳ କାର ଜିପ୍ ବା ଟ୍ରେକର ଆଦି ଯାଉଛି । ମାତ୍ର ସେକାଳରେ ପଚିଶଟି ସବାରୀ ନେଇ 'ବରଯାତ୍ରୀ' ଯିବା ଖୁବ୍ କ୍ୱଚିତ୍ ଲୋକଙ୍କ ଭାଗ୍ୟରେ ଜୁଟୁଥିଲା ।

ରାମବାବୁ ଗାଆଁରେ ଥାଇ ଜମିଦାରୀ ଓ ଋଷବାସ ବୁଝୁଥିଲେ । ତାଙ୍କ ଜମିଦାରୀ ହିସାବପତ୍ର ରଖିବା ଦାୟୀତ୍ୱରେ ତିନିଜଣ ଗୁମାସ୍ତା ଥିଲେ । ତାଙ୍କ ପିତା ନାରାୟଣଙ୍କ ମୃତ୍ୟୁ ପୂର୍ବରୁ ଦାଦା ରାଜକିଶୋର ଦେହତ୍ୟାଗ କରିଥିଲେ । ତାଙ୍କର ତିନିପୁଅ ଓ ଛଅ ଝିଅ ଥିଲେ । ତାଙ୍କର ବଡ଼ ଦୁଇପୁଅ ରେଭେନ୍ସା ମହାବିଦ୍ୟାଳୟରେ ପଢ଼ିଲାବେଳେ ସେମାନଙ୍କର ମୃତ୍ୟୁ ହୋଇଥିଲା । ସାନପୁଅ ଉଚ୍ଛବାନନ୍ଦ ବିବାହ କରିବାର ପାଞ୍ଚବର୍ଷ ପରେ ଇହଲୀଳା ସମ୍ବରଣ କରିବା ହେତୁ ରାମଚନ୍ଦ୍ରଙ୍କ ଉପରେ ଅବିବାହିତା ଛଅ ଭଉଣୀ ଓ ନିଃସନ୍ତାନ ଭାଇବୋହୂଙ୍କର ଦାୟୀତ୍ୱ ରହିଲା । ତାଙ୍କର ସାନଦାଦା ଦୟାନିଧି ବାବୁଙ୍କର କେବଳ ପାଞ୍ଚଝିଅ ଥିଲେ । ସେ ମଧ ତିନିଥର ବିବାହ କରିଥିଲେ ।

ତୃତୀୟ ବିବାହ କଲାବେଳକୁ ଦୟାନିଧିଙ୍କୁ ଅଠଋଳିଶ ବର୍ଷ ବୟସ ହୋଇଥିଲା । କଟକ ଜିଲାର ନିଆଳିଥାନା ଅନ୍ତର୍ଗତ ସୁନ୍ଦର୍ଦା ଗ୍ରାମର କାନୁନ୍‌ଗୋ ପରିବାରରେ ରାଧାଶ୍ୟାମ କାନୁନ୍‌ଗୋଙ୍କର ପାଶୋରା ନାମ୍ନୀ ସୁନ୍ଦରୀ ଝିଅଟିକୁ ବିବାହ କରିବାର ମାତ୍ର ଛଅବର୍ଷ ପରେ ତାଙ୍କର ମୃତ୍ୟୁ ହେଲା । ସେତେବେଳେକୁ ପାଶୋରାଙ୍କ ବୟସ ମାତ୍ର ବାଇଶିବର୍ଷ । ସେ ଥିଲେ କଇଁଫୁଲ ପରି ତୋଫା ଗୋରା । ତାଙ୍କର ଗଠନ ଖୁବ୍ ସୁନ୍ଦର ଥିଲା । ଯୌବନର ପ୍ରଥମ ପର୍ଯ୍ୟାୟରେ ବିଧବା ହୋଇ ସାରାଜୀବନ ବହୁକଷ୍ଟରେ ସେ ବିତାଇଥିଲେ । ସେତେବେଳେ ଅଧିକାଂଶ ଧନୀ ଜମିଦାରଙ୍କ ପତ୍ନୀ ବିୟୋଗ ପରେ ସୁନ୍ଦରୀଝିଅମାନଙ୍କୁ ବାଛି ବିବାହ କରିବା ଏକ ଖାନ୍‌ଦାନୀ ଥିଲା । ଝିଅମାନଙ୍କର ମତାମତ ପ୍ରତି ଦୃଷ୍ଟି ନଦେଇ ବାପା ଦାଦାମାନେ ବଡ଼ଘରେ ବନ୍ଧୁ କରିବା ଆଶାରେ ସେମାନଙ୍କର ବୈବାହିକ ଜୀବନ ନଷ୍ଟ କରି ଦେଉଥିଲେ । କେବଳ ପାଶୋରା କାହିଁକି ତାଙ୍କର ବଡ଼ଜାଆ ପଦ୍ମାବତୀ ମଧେ ଅଳ୍ପ ବୟସରେ ବିଧବା ହୋଇଥିଲେ । ପାଶୋରାଙ୍କର ହରିପ୍ରିୟା ନାମ୍ନୀ ଏକ ମାତ୍ର ଶିଶୁକନ୍ୟା ସହିତ ଋରିଜଣ ସାବତ ଝିଅ ଥିଲେ, ତେଣୁ ରାମଚନ୍ଦ୍ରଙ୍କ ଉପରେ ଦୁଇ ଦାଦାଙ୍କର ଏଗାର ଝିଅଙ୍କ ବିବାହ ଦାୟିତ୍ୱ ସାଙ୍ଗକୁ ନିଜର ସାବତ ମାଆ ପଦ୍ମାବତୀଙ୍କର

ଦୁଇ ଝିଅଙ୍କର ଦାୟିତ୍ୱ ମଧ୍ୟ ନ୍ୟସ୍ତ ହୋଇଥିଲା । ପଦ୍ମାବତୀ ମଧ୍ୟ ପାଶୋରାଙ୍କ ପରି ଅତ୍ୟନ୍ତ ସୁନ୍ଦରୀ ଥିଲେ । ପଚାଶରୁ ଊର୍ଦ୍ଧ ବୟସ୍କ ବରକୁ ତେର ବର୍ଷର କନିଆଁ । ସେ ମଧ୍ୟ ସାତବର୍ଷ ପରେ ବିଧବା ହୋଇଗଲେ । ଦୁଇ ଦୁଇ ଜଣ ଯୁବତୀ ବିଧବା ମାଆ ଓ ଖୁଡ଼ିଙ୍କ ସହିତ ସେମାନଙ୍କ ଅବିବାହିତା ଝିଅମାନଙ୍କୁ ବାହାତୋଳା କରିବାରେ ରାମବାବୁ ଶତାଧିକ ଏକର ଜମିବାଡ଼ି ବିକ୍ରୀ କରିଦେଇଥିଲେ ।

ରାମବାବୁଙ୍କର ତିନିପୁଅ ଓ ପାଞ୍ଚଝିଅ ହୋଇଥିଲେ । ମାତ୍ର ତିନିପୁଅ ଓ ତିନିଝିଅଙ୍କର ଅପ୍ରାପ୍ତ ବୟସରେ ମୃତ୍ୟୁ ଘଟିଥିଲା । ତେଣୁ ତାଙ୍କର କେବଳ ପ୍ରମିଳା ଓ ଉର୍ମିଳା ନାମ୍ନୀ ଆଉ ଦୁଇଟି ଝିଅ ରହିଲେ । ଅପୁତ୍ରିକ ହୋଇ ସେ ଖୁବ୍ ଦୁଃଖରେ ରହୁଥିଲେ । ଦୟାନିଧି, ରାଜକିଶୋର ଓ ନାରାୟଣ ତିନିଭାଇଙ୍କର କେବଳ ରାମଚନ୍ଦ୍ର ଏକମାତ୍ର ଥିଲେ ଦାୟାଦ । ମାତ୍ର ରାମଚନ୍ଦ୍ରଙ୍କର ପୁଅଟିଏ ନଥିବା ହେତୁ କିପରି ଏ ବଂଶରକ୍ଷା ହେବ, ସେହି ଚିନ୍ତାରେ ସ୍ୱାମୀସ୍ତ୍ରୀ ଦୁହେଁ ଚିନ୍ତାଗ୍ରସ୍ତ ହୋଇ ପଡୁଥିଲେ ।

ରାମବାବୁ ଥିଲେ ଛଅଶହ ଏକର ଜମିର ମାଲିକ । ଆଳିପିଙ୍ଗଳ, ରାୟଙ୍କପାଟଣା, ଖମଙ୍ଗ, ଅଢ଼ଙ୍ଗା, କୋଲର, ଶାଳଗାଁ, ନାଟି ଓ କାଳଖ ଆଦି ମୌଜାରେ ତାଙ୍କର ଧାନ ଆଦାୟ ହୋଇ ଖଣିରେ ସାଇତା ହେଉଥିଲା । ହେଲେ ଭଉଣୀ ମାନଙ୍କର ବିବାହ ଉତ୍ସବ ପାଇଁ ସେ ବହୁତ ଜମି ବିକ୍ରୀ କରିଦେଲେ । ଯାନିଯାତ୍ରା, ମେଳା ମହୋତ୍ସବ ଓ ଠାକୁରଙ୍କ ପର୍ବପର୍ବାଣୀରେ ମଧ୍ୟ ସେ ବହୁତ ଅର୍ଥବ୍ୟୟ କରୁଥିଲେ । ସେଥିଲାଗି ତାଙ୍କୁ ଜମି ବିକ୍ରୀ କରିବାକୁ ପଡୁଥିଲା । ପ୍ରତିବର୍ଷ ପ୍ରଜାମାନଙ୍କଠାରୁ ଖଜଣା ଆଦାୟ କରାଯାଇ ସରକାରଙ୍କୁ ପଇଠ କରିବାର କଥା । ତା ନହେଲେ ଜମିଦାରୀ ନିଲାମ ହୋଇଯିବାର ଭୟ ଥାଏ । ରାମବାବୁ ଅତ୍ୟନ୍ତ ଶାନ୍ତ, ସରଳ ଓ ଅମାୟିକ ବ୍ୟକ୍ତି ହୋଇଥିବାରୁ କାହାପ୍ରତି ଅନ୍ୟାୟ ଅବିଚାର କରିବା ସପକ୍ଷରେ ସେ ନଥିଲେ । ଅନେକ ପ୍ରଜା ସେମାନଙ୍କର ଦାରିଦ୍ର୍ୟ, ଦୁଃଖ ବା ରୋଗାବସ୍ଥା ଦର୍ଶାଇ ଖଜଣା ଦେଇପାରୁ ନଥିଲେ ମଧ୍ୟ ସେମାନଙ୍କ ପ୍ରତି କୌଣସି ଜୋରଜୁଲମ ନକରି ନିଜର ଜମି ବିକ୍ରୀ କରି ସରକାରୀ ଦେୟ ପଇଠ କରିବାକୁ ସେ ଗୁମାସ୍ତା ମାନଙ୍କୁ କହୁଥିଲେ । ଫଳରେ ଗୁମାସ୍ତାମାନେ ମଧ୍ୟ ଏହାର ଫାଇଦା ଉଠାଇବାକୁ ଲାଗିଲେ ।

ପ୍ରତିବର୍ଷ ଦୁଇ ତିନି ଦଳ ଯାତ୍ରା ପାର୍ଟି ବା ଅପେରା ପାର୍ଟି ଗାଆଁକୁ ଆସୁଥିଲେ । ଘର ସାମନାରେ ଦୁଇ ତିନି ରାତି ଯାତ୍ରା ହେଉଥିଲା । ଗ୍ରାମବାସୀ ଓ ପ୍ରଜାପାଟକ ଜ୍ଞାତିବନ୍ଧୁମାନଙ୍କ ମେଳରେ ବାବୁ ସପରିବାର ବସି ଯାତ୍ରା ଉପଭୋଗ କରୁଥିଲେ ସେହିପରି ବର୍ଷକୁ ଥରେ ଦୁଇଥର ଲଢ଼େଇପାଲା ମଧ୍ୟ ହେଉଥିଲା । ଏସବୁ ପାଇଁ

ବହୁତ ଜମି ବିକ୍ରି କରିବା ପାଇଁ ଆବଶ୍ୟକ ପଡୁଥିଲା । ଲୋକେ ଜାଣିଥିଲେ ଯେ, ବର୍ଷରେ ଦୁଇ ଚାରିଥର ବାବୁଙ୍କ ଜମି ବିକ୍ରୀ ହେବ । ସେଥିପାଇଁ ଅଧିକାଂଶ ଲୋକ ସଜାଗ ରହୁଥିଲେ । ଜମି କିଣିବାକୁ ହେଲେ ଗୁମାସ୍ତାମାନଙ୍କୁ ହାତେଇବାକୁ ହେଉଥିଲା । ପାଞ୍ଚ ଟଙ୍କାର ଜମିକୁ ଦୁଇଟଙ୍କାରେ ବା ଟଙ୍କାଏ ଦରରେ କିଣାଇ ଦେବାକୁ ଗୁମାସ୍ତାଏ ଆଠଣା କିଳାପୋତେଇ ନେଉଥିଲେ । ଅଳ୍ପ ପଇସାରେ ଜମି କିଣିବାକୁ କେମିତି ଆଚରଣ କରିବାକୁ ପଡ଼େ ସେକଥା ଗୁମାସ୍ତାଏ ଆଗରୁ ତାଲିମ ଦେଇ କାର୍ଯ୍ୟ ହାସଲ କରୁଥିଲେ ।

ବାବୁ କିମ୍ବା ସାଆନ୍ତାଣୀଙ୍କ ମନ ନେବା ହେଲା ପ୍ରଧାନ କଥା । ଜମି କିଣିବା ଲୋକର ଏଇଟା ହେଲା ପ୍ରଥମ କାର୍ଯ୍ୟ । କିଛି ଉପହାର ନେଇ ବାବୁଙ୍କ ଆଗରେ ରଖି ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲେ ପ୍ରଥମେ ତାଙ୍କର ଶୁଭଦୃଷ୍ଟି ପଡ଼ିବ । ତାପରେ କହି ବୋଲି, ଥରକୁ ତିନିଥର ତାଙ୍କ ପାଖକୁ ଆସି ନିଜର ହୋଇପାରିଲେ ଜମିର ଦାମ୍ କମାଇବା ଆହୁରି ସହଜ ହେବ । ବାବୁଙ୍କୁ ସୁବିଧା ଦେଖି ନିଜର ଅଭାବ ଅସୁବିଧା କଥାକହି ତାଙ୍କର ସହୃଦୟତା ହାସଲ କରିବା ପରେ ମୌକା ଦେଖି ଗୁମାସ୍ତାଏ ଶସ୍ତାରେ ତାଙ୍କୁ ଜମି କିଣାଇ ଦେବାରେ ସାହାଯ୍ୟ କରିପାରିବେ । ହେଲେ ସେ ସମୟରେ ବହୁ ଜମିଦାର ପ୍ରଜାମାନଙ୍କ ଜମି ଜବରଦଖଲ କରି ସେମାନଙ୍କର ଧାନ ମୁଗ ଆଦି ଉତ୍ପାଦିତ ଶସ୍ୟକୁ ଜୋର ଜବରଦସ୍ତ କରି ଛଡ଼ାଇ ନେଇଯାଉଥିଲେ । ମାତ୍ର ରାମବାବୁ ଏ ସବୁର ବିରୋଧୀ ଥିଲେ । ତାଙ୍କ ଗୁମାସ୍ତାମାନେ କେବେ କେବେ ପ୍ରଜାମାନଙ୍କୁ ଶୋଷଣ କରିବା ଜାଣିପାରିଲେ ସେ ବିରକ୍ତ ହେଉଥିଲେ। ତେଣୁ ଗୁମାସ୍ତାମାନେ ପ୍ରଜାମାନଙ୍କୁ ଜମି କିଣାଇଦେଇ ବେଶ୍ ଦୁଇପଇସା ହାତ ଚିକ୍କଣ କରୁଥିଲେ ।

ବାବୁଙ୍କୁ ନିଜର କରିବା ପାଇଁ ପ୍ରଜାମାନଙ୍କ ଭିତରେ ପ୍ରତିଯୋଗିତା ହେଉଥିଲା, କିଏ ମାଛଟାଏ, କିଏ ବାଡ଼ିବାଇଗଣ ବିଶାଏ, କିଏ ମିଠେଇ ଦିପୁଞ୍ଜା ବା କିଏ ଭଲ ବସାଦହି ଠେକିଏ ଧରି ବାବୁଙ୍କ ପାଖକୁ ଆସନ୍ତି । କେତେ ଲୋକ ଅନେକ ପ୍ରସଂଶା କରି ଖୋସାମତ କଲାବେଳେ କେହିକେହି ତାଙ୍କ ନିଜର ଦୁଃଖ ଅସୁବିଧା କଥା କହି ବାବୁଙ୍କ ଦୟାର ପାତ୍ର ହେବାକୁ ଚେଷ୍ଟା କରୁଥିଲେ। କେହିବା ନିର୍ମାଲ୍ୟ ଟିକେ ଆଣି ବାବୁଆଣିଙ୍କ ହାତରେ ଦେଇ ଧର୍ମପୁଅ ବା ଝିଅ ହୋଇ ପଡୁଥିଲେ । ଯେତେବେଳେ ଜମି ବିକ୍ରୀ ପ୍ରସଙ୍ଗ ପଡ଼େ ସେତେବେଳେ ଗୁମାସ୍ତାଏ ଏଭଳି ଲୋକମାନଙ୍କର ଘର, ବାଡ଼ି, ବିଲ ବା କିଆରୀକୁ ଲଗାଇ ବିକ୍ରୀ ହେବାକୁ ଥିବା ଜମିକୁ ସଂପୃକ୍ତ ଲୋକମାନଙ୍କୁ ଦେବା ଲାଗି ଓକିଲାତି କରି ସଫଳକାମ ହୁଅନ୍ତି । ଏ ବାବଦ

ସେମାନଙ୍କର ଭଲ ଉପାର୍ଜନ ହୁଏ । ଆଉ କେହି ସେ ଜମିର ଦର ବଢ଼ାଇ କିଣିବାକୁ ଚେଷ୍ଟା କଲେ ପୂର୍ବରୁ ଧରମପୁଅ ବା ଝିଅ ହୋଇଥିବା ଲୋକ ପାଖରେ ଜମିର ମୂଲ୍ୟ କମିଯାଏ । ଦର ବଢ଼ାବଢ଼ି କାମ ଦିଏ ନାହିଁ । ଏପରିଭାବେ ଶହ ଶହ ଏକର ଜମି ବିକ୍ରୀ ହୋଇ ଚାଲିଥାଏ । ପିତା ନାରାୟଣବାବୁ ମଧ୍ୟ ତାଙ୍କର ତୃତୀୟ ପତ୍ନୀ ପଦ୍ମାବତୀଙ୍କୁ କହିଥିଲେ, ରାମା ମଣିଷ ହେଲାନାହିଁ । ପିତୃପିତାଙ୍କ ଅଚଳାଚଳ ସମ୍ପତ୍ତି ସବୁ ସେ ବିକି ଖାଇବ । ତାଙ୍କ କଥା ସତ୍ୟ ହେଲା ।

# ଗୁରୁ ଗୋସେଇଁ

କଟକରୁ ଜଗତସିଂହପୁର ଯିବାବେଳେ ବାଟରେ ବାଲିଆ ପଡ଼େ । ବାଲିଆର ଦକ୍ଷିଣ ପଶ୍ଚିମରେ ବିଲୁଆଖାଇ ନଈ । ଏହି ନଦୀ ଆରପଟେ ଅଛି ବାଇଶି ମୌଜା ଅଞ୍ଚଳ । ଏହି ଅଞ୍ଚଳରେ ପୂରଣ; ବାସନ୍ଦରା, ମଇନ୍ଦିପୁର ଓ ଡିହସାଇବିରି ଆଦି ଗ୍ରାମ ଗୁଡ଼ିକ ଅଛି । ଡିହସାଇବିରି ଗ୍ରାମର ଗଣେଶ ମିଶ୍ର ଥିଲେ ଜଣେ ବିଦ୍ୱାନ ପଣ୍ଡିତ । ନିର୍ଭୁଲ୍ ଜ୍ୟୋତିଷ ଗଣନା ଓ କବିରାଜି ଶାସ୍ତ୍ରରେ ତାଙ୍କର ପାରଦର୍ଶିତା ଯୋଗୁ କେବଳ ସେ ଅଞ୍ଚଳରେ କାହିଁକି, ସୁଦୂର ଗାଙ୍ଗପୁର ରାଜ୍ୟରେ ମଧ୍ୟ ତାଙ୍କର ସୁନାମ ପ୍ରସାରିତ ହୋଇଥିଲା। ସେ ଥିଲେ ଜଣେ ଶ୍ୟାମାନନ୍ଦୀ ବୈଷ୍ଣବ । ସଂସ୍କୃତ ଶାସ୍ତ୍ରରେ ତାଙ୍କର ପାଣ୍ଡିତ୍ୟ ଯୋଗୁ ଗୀତା, ଭାଗବତ ଆଦି ଶାସ୍ତ୍ରପୁରାଣ ମାନଙ୍କରେ ତାଙ୍କର ଅଗାଧ ଜ୍ଞାନ ଥିଲା ।

ରାମବାବୁଙ୍କ ପିତା ନାରାୟଣ ପ୍ରସାଦଙ୍କ ମାମୁଁ ଥିଲେ ଉତ୍ତାରଣ ଗ୍ରାମର ଧନେଶ୍ୱର କାନୁନ୍‌ଗୋ । ଗଣେଶ ମିଶ୍ରେ ପିଲାଦିନେ ଧନେଶ୍ୱରଙ୍କ ଠାରୁ ସଂସ୍କୃତ ଶିକ୍ଷା ପାଇଥିଲେ । ତେଣୁ ତାଙ୍କର ଦୁଇପୁଅ କିଶୋରୀ ଚରଣ ଓ ନୃସିଂହ ଚରଣଙ୍କ ସହିତ ମିଶ୍ରଙ୍କର ନିବିଡ଼ ବନ୍ଧୁତା ଥିଲା । ନାରାୟଣ ବାବୁ ତାଙ୍କର ଦୁଇ ମାମୁଁପୁଅ ଭାଇଙ୍କୁ ଆଣି ପାଖରେ ରଖି କଲେଜ ପାଠ ପଢ଼ାଇଥିଲେ । ତାଙ୍କର ମୃତ୍ୟୁ ପରେ କିଶୋରୀ ଚରଣ ଅଧିକାଂଶ ସମୟ ଆଳିପିଙ୍ଗଳରେ ଆସି ରହୁଥିଲେ । ସେତେବେଳ ସ୍ୱାଧୀନତା ଆନ୍ଦୋଳନରେ କିଶୋରୀବାବୁ ଯୋଗଦେଇ ଗୋପବନ୍ଧୁ ଚୌଧୁରୀ, ରମାଦେବୀ ଓ ନବକୃଷ୍ଣ ଚୌଧୁରୀଙ୍କ ସହିତ ଅଳକା ଆଶ୍ରମରେ ଆନ୍ଦୋଳନକାରୀମାନଙ୍କୁ ଶିକ୍ଷା ଦେଉଥିଲେ । ତେଣୁ ଅଧିକାଂଶ ଦିନ କିଶୋରୀବାବୁ ଆଳିପିଙ୍ଗଳରେ ରାମବାବୁଙ୍କ ଘରେରହି ଅଳକାଶ୍ରମକୁ ଯିବାଆସିବା କରୁଥିଲେ । ତାଙ୍କର ଗଣେଶ୍ୱର ମିଶ୍ରଙ୍କ ସହିତ ବନ୍ଧୁତା ଥିବାରୁ ବେଳେ ବେଳେ ମିଶ୍ରେ ଆଳିପିଙ୍ଗଳ ଆସି ଇଷ୍ଟଦେବତା

ଗୋପାଳଜୀଉଙ୍କ ମନ୍ଦିରରେ ରହୁଥିଲେ । ତାଙ୍କର ଆଧ୍ୟାତ୍ମିକ ଶକ୍ତିରେ ପ୍ରଭାବିତ ହୋଇ ରାମବାବୁଙ୍କ ପତ୍ନୀ ଅଧରମଣୀ ପଣ୍ଡିତ ମହାଶୟଙ୍କ ଠାରୁ ଦୀକ୍ଷା ନେବାକୁ ଆଗ୍ରହୀ ହେଲେ । ଗୁରୁଦେବଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଥିଲା । ପ୍ରତ୍ୟହ କିଛି ସମୟ ଗୁରୁଦେବଙ୍କ ପାଖରେ ବସି ଧର୍ମୋପଦେଶ ଶୁଣିବାକୁ ଅଧରମଣୀଙ୍କର ପ୍ରବଳ ଆଗ୍ରହ ଯୋଗୁଁ ମିଶ୍ରେଆପଣେ ଶ୍ରୀ ଗୋପାଳଜୀଉଙ୍କ ମନ୍ଦିର ପ୍ରାଙ୍ଗଣରେ ବର୍ଷର ଅଧିକାଂଶ ସମୟ ଅତିବାହିତ କରୁଥିଲେ । ଅଧରମଣୀ ପ୍ରତିଦିନ ଗୁରୁଦେବଙ୍କ ପାଦ ଧୋଇ ପାଦୋଦକ ନ ପିଇଲେ ଅନ୍ନଜଳ ସ୍ପର୍ଶ କରୁନଥିଲେ । ଆଳିପିଙ୍ଗଳ ଓ ଆଖପାଖ ଗ୍ରାମର ଲୋକମାନେ ପଣ୍ଡିତ ମହାଶୟଙ୍କୁ ଗୁରୁ ଗୋସେଇଁ ବୋଲି ଡାକୁ ଥିଲେ । ଦେହମୁଣ୍ଡ ବେମାର ଆରାମରେ ଆଳିପିଙ୍ଗଳ ଓ ଆଖପାଖ ଗ୍ରାମର ଲୋକେ ତାଙ୍କ ପାଖକୁ ଆସି କବିରାଜି ଔଷଧ ନେଉଥିଲେ । ଜାତକ ଦେଖାଇ ନିଜର ଓ ପରିବାରର ଅନ୍ୟମାନଙ୍କର ଭବିଷ୍ୟତ ବିଷୟରେ ଜାଣୁଥିଲେ ।

ଅଧରମଣୀଙ୍କର ସର୍ବଦା ବିଷର୍ଣ୍ଣ ଭାବ ଦେଖି ଗୁରୁଦେବ କହିଲେ, ଇଷ୍ଟ ଦେବତା ଗୋପାଳଜୀଉଙ୍କ ପାଦପଦ୍ମରେ ଭକ୍ତି ରଖିଲେ ତାଙ୍କ ଦୟାରୁ ତୋର ଦୁଃଖ ଅତିଶୀଘ୍ର ଦୂର ହୋଇଯିବ । ଏବେ ରାମବାବୁଙ୍କୁ ଚାଳିଶବର୍ଷ ପୂରିଲା । ଆଉ ଦୁଇ ବର୍ଷରେ ତୋର କୋଳ ମଣ୍ଡନ କରିବ ପୁତ୍ର ସନ୍ତାନଟିଏ । ଅଧରମଣୀଙ୍କ ଚକ୍ଷୁରୁ ଲୁହ ବୋହିପଡ଼ିଲା । ସେ କହିଲେ ପାଞ୍ଚ ପାଞ୍ଚଟା ପୁଅ ହେଲେ । କେହି ବଞ୍ଚିଲେ ନାହିଁ । ଆଉ ଏ ବୟସରେ ପୁଅଟିଏ ମୋତେ ସୁଖ ଦେବ କି ଦୁଃଖ ଦେବାକୁ ଆସିବ ଆପଣ ଜାଣନ୍ତି। ଗୁରୁଦେବ ଟିକେ ନୀରବରେ ବସି ପୁଣି କହିଲେ, ଯେଉଁ ସବୁ ଦୁଃଖ ତୁ ପାଇଲୁ ତାହା କେବଳ ତୋ ପାଇଁ ନଥିଲା, ତୋ ଶ୍ୱଶୁରଙ୍କର ତିନିଭାଇଙ୍କ ପରିବାରରେ କୌଣସି ପୁତ୍ର ସନ୍ତାନ ନ ବଞ୍ଚିବାର କାରଣ ହେଉଛି, ବ୍ରହ୍ମ ଅଭିଶାପ । ଜଣେ ବ୍ରାହ୍ମଣର ଅଭିଶାପରୁ ନାରାୟଣ, ରାଜକିଶୋର ଓ ଦୟାନିଧି ତିନିଭାଇଙ୍କର ପରିବାର ପୁତ୍ରହୀନ ହୋଇପଡ଼ିଛି ।

ଅଧରମଣୀ ଆଶ୍ଚର୍ଯ୍ୟ ହେଲାପରି କହିଲେ ନନା ! ଆପଣ ଯାହା କହୁଛନ୍ତି, ସେ ବିଷୟରେ ବହୁ ପୂର୍ବରୁ ମୁଁ ଶୁଣିଥିଲି । ଆପଣ ସର୍ବଜ୍ଞାତା । ସବୁକଥା ଆପଣଙ୍କୁ ଜଣା ଅଛି, ତେବେ ଏ ପରିବାର ଯଦି ଅଭିଶାପର ଫଳ ଭୋଗ କରୁଛି, ତା'ହେଲେ ଦୁଇବର୍ଷ ପରେ ଯେଉଁ ପିଲାଟି ଆସିବ, ସେ କ'ଣ ଏ ଅଭିଶାପରୁ ମୁକ୍ତି ପାଇପାରିବ ?

ଗୁରୁଦେବଙ୍କ ମୁହଁରେ ହସ ଫୁଟି ଉଠିଲା, ସେ କହିଲେ ତୋ ଠାରୁ ଏତେଶୀଘ୍ର ଏପରି ଏକ ପ୍ରଶ୍ନ ମୁଁ ଆଶା କରିନଥିଲି । ତୁ ଅତ୍ୟନ୍ତ ବୁଦ୍ଧିମତୀ ଝିଅ । ଯାହା କିଛି ଘଟୁଛି, ଘଟିଯାଇଛି ବା ଘଟିବ, ସବୁ ସେଇ ପ୍ରଭୁ ଗୋପାଳଙ୍କ ଇଚ୍ଛାରେ । ସେ

ନିଶ୍ଚୟ ତୋର କୁଳରକ୍ଷା କରିବେ । ଏହି ଅଭିଶାପ ଯେଉଁ ସ୍ଥାନରେ ନ ପଡ଼ିଛି, ତୋ ପୁଅଟି ସେଇଠି ଜନ୍ମ ହୋଇ ତୋର କୋଳମଣ୍ଡନ କରିବ ।

ଗୁରୁଦେବଙ୍କ ପାଦଧରି ପ୍ରଣାମ କରୁ କରୁ ଅଧରମଣୀ କହିଲେ ନନା, ଆପଣଙ୍କ କଥାରୁ ମୁଁ କିଛି ବୁଝିପାରୁନାହିଁ । ଏ ବିଷୟରେ ଆହୁରି ଜାଣିବା ପାଇଁ ମୋ ମନ ଉଦ୍‌ବିଗ୍ନ ହୋଇ ଉଠୁଛି । ଗୁରୁଦେବ କହିଲେ, ମୋତେ ଯାହା ଦେଖାଗଲା, ତାହାହିଁ ତୋତେ କହିଲି । ଆଉ ଅଧିକ ମୁଁ ଏବେ ଦେଖିପାରୁନି । ତୁ ପ୍ରଭୁ ଗୋପାଳଙ୍କ ପାଖରେ ପ୍ରଣାମ କରି ତାଙ୍କରି ଉପରେ ସବୁ ଛାଡ଼ିଦେ । ସେ ସବୁ କିଛି କରିବେ ।

ଗୁରୁଦେବଙ୍କ ଭବିଷ୍ୟତ ବାଣୀ ଶୁଣିବା ପରେ ଅଧରମଣୀଙ୍କର ଉଦ୍‌ବେଗ ବଢ଼ି ଚାଲିଲା । ତାଙ୍କ ଭାଗ୍ୟରେ ପୁଅଟିଏ ଅଛି, ମାତ୍ର ସେ ତାର ଜନ୍ମଦାତ୍ରୀ ନୁହଁନ୍ତି । କେଉଁଠୁ ପିଲାଟିଏ ଆସିବ ? ତାର ଜନ୍ମଦାତ୍ରୀ କିଏ ? ସବୁ ସେଇ ଗୁରୁଦେବ ଜାଣନ୍ତି । ତାଙ୍କର ଇଚ୍ଛା ହୁଏ ସେ ପ୍ରତିଦିନ ଗୁରୁଦେବଙ୍କ ଶ୍ରୀଚରଣ ଧୋଇ ପାଦୋଦକ ପାଇଲାବେଳେ ଏ ବିଷୟରେ ତାଙ୍କୁ କିଛି ପଚାରିବାକୁ । ମାତ୍ର ଭରଷି ପାରନ୍ତି ନାହିଁ । ପ୍ରତିଦିନ ସେ ଇଷ୍ଟଦେବ ଗୋପାଳଜୀଉଙ୍କ ଦର୍ଶନ କରି ଘିଅଦୀପ ଜାଳନ୍ତି । ତାଙ୍କର କୁଳରକ୍ଷା ହେଉ, ଏହାହିଁ ସେ ଠାକୁରଙ୍କୁ ପ୍ରାର୍ଥନା କରନ୍ତି । ଏଇଭଳି ପ୍ରାୟ ଦୁଇ ତିନିମାସ ବିତିଗଲା ।

ଦିନେ ସନ୍ଧ୍ୟାବେଳେ ଠାକୁରଙ୍କ ଆଳତିସରିବା ପରେ ଗୁରୁଦେବ ଅଧରମଣୀଙ୍କୁ ଡକାଇ ପଠାଇଲେ । ସାଙ୍ଗରେ ରାମବାବୁ ଆସିବେ ବୋଲି ଖବର ଗଲା । ସ୍ୱାମୀସ୍ତ୍ରୀ ଦୁହେଁ ତାଙ୍କ ପାଖକୁ ଯିବା ବେଳକୁ ଆଉ ଯେତେଲୋକ ତାଙ୍କ ପାଖରେ ଥିଲେ ସମସ୍ତଙ୍କୁ ବିଦାୟ କରିଦେଇ କେବଳ ଏ ଦୁଇଜଣଙ୍କୁ ବସାଇଲେ । ସେ ରାମବାବୁଙ୍କୁ ପଚାରିଲେ - ଆପଣଙ୍କ ଜେଜେ କେଉଁଠୁ ପୁଅ ହୋଇ ଆସିଥିଲେ ?

– ଆଜ୍ଞା ସେ ଧନେଶ୍ୱର ମହାନ୍ତିଙ୍କ ଘରୁ ପୁଅ ହୋଇ ଆସିଥିଲେ । ତାଙ୍କର ଦୁଇପୁଅଙ୍କ ମଧ୍ୟରୁ ବଡ଼ ପୁଅ ଦୀନବନ୍ଧୁଙ୍କୁ ଆମ ଅଣଜେଜେ ରଘୁନାଥ ମହାନ୍ତି ପୁଅ କରି ଆଣି ଓକିଲାତି ପଢ଼ାଇଲେ । ତେଣୁ ରଘୁମହାନ୍ତିଙ୍କ ପରେ ଦୀନବନ୍ଧୁବାବୁ ମୁକ୍ତାର ହେଲେ । ଲୋକେ ତାଙ୍କୁ ଗୋରା ମୁକ୍ତିଆର ବୋଲି ଡାକୁଥିଲେ । ଆମ ବାପା ସେଇ ଗୋରା ମୁକ୍ତିଆରଙ୍କର ଦ୍ୱିତୀୟ ପୁତ୍ର ।

– ସେ ବଂଶରେ କିଏ ଅଛନ୍ତି ? ପଚାରିଲେ ଗୁରୁଦେବ ।

ଆମ ଜେଜେ ପୁଅ ହୋଇ ଆସିବା ପରେ ଧନେଶ୍ୱର ମହାନ୍ତିଙ୍କର ସାନପୁଅ ଇଶ୍ୱର ସେ ବଂଶରେ ରହିଲେ । ତାଙ୍କ ନାତି ବଳରାମ ଏବେ କଲିକତାରେ ଚାକିରି କରୁଛି ।

– ବଳରାମର କେତୋଟି ପିଲା ଅଛନ୍ତି ? ପଚାରିଲେ ଗୁରୁଦେବ ।

– ତାର କେବଳ ଝିଅଟିଏ ଅଛି । ଆଉ କୌଣସି ପିଲା ନାହାନ୍ତି । ଗୁରୁଦେବ ହସିଦେଇ କହିଲେ, ବଳରାମର ପୁଅଟିଏ ହେଲେ ସେଇ ତୁମର କୁଳରକ୍ଷା କରିବ ।

ଅଧରମଣୀଙ୍କ ମୁହଁ ଶୁଖିଗଲା । ସେ ପଚାରିଲେ ନନା ! ଯାହାର ପୁଅ ନାହିଁ, କିମ୍ବା ହେବାର କୌଣସି ଚିହ୍ନବର୍ଣ୍ଣ ନାହିଁ, ତାର ଯଦି ଭବିଷ୍ୟତରେ ପୁଅଟିଏ ହେବ, ତେବେ ସେ ତା ନିଜର କୁଳରକ୍ଷା ନକରି ଆମକୁ କାହିଁକି ସେ ପୁଅଟିକୁ ଦେବେ ? ଏହା କ'ଣ ସମ୍ଭବ ?

ଗୁରୁଦେବ କହିଲେ, ଦେଖ ମା! ମୋତେ ଯାହା ଦିଶିଲା ସେୟା କହିଲି । ସବୁ ସେଇ ଗୋପଳଙ୍କର ଇଚ୍ଛା ! ଏଇ ଦୁଇବର୍ଷ ଭିତରେ ତୋର କୋଳମଣ୍ଡନ ହେବାର କଥା ମୁଁ ଜାଣିପାରୁଛି । ତୁ ସେଥିଲାଗି ଚିନ୍ତା କରନା । ଯାହା ଭବିତବ୍ୟ ତାହାହିଁ ଘଟିବ । ପ୍ରଭୁ ଗୋପାଳଙ୍କର ଦୟା ଉପରେ ଭରସା କର । ସେ ତୁମ ଗୁହାରୀ ଶୁଣିବେ । କଥାଟା ରାମବାବୁଙ୍କ ସାବତ ମା ପଦ୍ମାବତୀ ଓ ଖୁଡ଼ୀ ପାଶୋରାଙ୍କ କାନକୁ ଗଲା । ସେତେବେଳକୁ ପଦ୍ମାବତୀଙ୍କର ଦୁଇ ଝିଅ ଖୋକି ଓ ବେଙ୍ଗ ବିଭା ହୋଇ ସାରିଥିଲେ । ପାଶୋରାଙ୍କର ଚାରିଜଣ ସାବତଝିଅଙ୍କ ବିବାହ ମଧ୍ୟ ସରିଥିଲା । ତାଙ୍କର ନିଜ ଜନ୍ମକଲା ଝିଅ ହରିପ୍ରିୟା (ଠୁକ) ବିବାହ ଯୋଗ୍ୟା ହୋଇ ଘରେ ଥିଲା । ରାମବାବୁଙ୍କର ବଡ଼ ଝିଅ ପ୍ରମିଳାର ମଧ୍ୟ ସେଇବର୍ଷ ବିବାହ ସରିଥାଏ । କେବଳ ଏଗାର ବର୍ଷର ସାନଝିଅ ଉର୍ମିଳା ଘରେ ଥାଏ । ଏସବୁ କଥା ଜାଣି ସବୁଠୁଁ ଖୁସି ହେଲେ ହରିପ୍ରିୟା (ଠୁକ)। ସେ ବଳରାମଙ୍କ ଘରକୁ ଧାଇଁ ଯାଇ ଖୁସି ଖବରଟା ପ୍ରଥମେ ତାଙ୍କ ସ୍ତ୍ରୀ ଉମାଙ୍କୁ ଜଣାଇ ଦେଲେ ।

– ଆଲୋ ଉମା ଭାଉଜ! ତୁ କ'ଣ ଗର୍ଭବତୀ ହୋଇଛୁ ? ଫେଁ କରି ହସି ଉଠିଲେ ଉମା । ଆଗୋ ତମର କାହିଁକି ମୋ ଗର୍ଭଚିନ୍ତା ପଡ଼ିଛି ? ନିଜେ ବାହାତୋ଼ଳା ହୋଇ କେମିତି ଶୀଘ୍ର ଗର୍ଭବତୀ ହେବ ସେୟା ଚିନ୍ତାକର । ମୋ ଗର୍ଭରୁ ତୁମକୁ କ'ଣ ମିଳିବ ?

– ତମ ଗର୍ଭରୁ ଆମକୁ ମିଳିବ ବୋଲିତ ତ ଏକଥା ତୁମକୁ ପଚାରିଲି । ନୋହିଲେ କାହିଁକି ପଚାରନ୍ତି ?

– କଅଣ ମିଳିବ କହୁନା !

– ଆରେ ଆମର ପୁଅ ତୁମ ଗର୍ଭରେ ଅଛି । କହିଲେ ଠୁକ । ପୁଣିଥରେ ହସି ଉଠିଲେ ଉମା । ପଚାରିଲେ ତମ ପୁଅଟା କେମିତି ମୋ ଗର୍ଭରେ ରହିଲା ? ଯଦି

ଥାଏ ତାହେଲେ ନେଇ ଯାଉନ । ମୁଁ କ'ଣ ତୁମକୁ ଅଟକାଇ ପାରିବି ? ଠୁକ କହିଲେ, ମୁଁ ମିଛ କହୁନି ଭାଉଜ । ଏକଥା ମୁଁ ବୋଉଠୁ ଶୁଣି ଆସିଲି ।

– କି ଅଜବ କଥା କହୁଚ ? ଖୁଡ଼ୀଙ୍କ ପରି ଗୁରୁଜନ ଲୋକ ତୁମକୁ ଏପରି କଥା କହିବା ମୋର ବିଶ୍ୱାସ ହେଉନି । କହିଲେ ଉମା ।

ଚୁପ୍‌ଚୁପ୍ ଉମାଙ୍କ କାନରେ ଠୁକ କହିଲେ ଭାଉଜ ! ଏକଥା ଗୁରୁ ଗୋସେଇଁ କହିଛନ୍ତି । ତୁମ ଗର୍ଭରେ ଯେଉଁ ପୁଅ ହେବ ସେ ଆମର ବଂଶ ରକ୍ଷା କରିବ ।

ହସି ଦେଇ ଉମା କହିଲେ, ଗୋଟିଏ ବୋଲି ଝିଅ କ୍ଷମା ଆସି ସାତ ବର୍ଷର ହେଲାଣି । ଆଉ କୌଣସି ପିଲା ହେବାର ଚିହ୍ନ ବର୍ଣ୍ଣ ନାହିଁ । ସେଥିରେ ପୁଣି ନନା କହୁଛନ୍ତି ତୁମ ପୁଅ ଏ ଘରେ ଜନ୍ମ ହେବ । ସେ ତ ଜଣେ ସିଦ୍ଧପୁରୁଷ । ତାଙ୍କ କଥା ସତ ହୋଇପାରେ । ସେତେବେଳକୁ ତୁମେ ବାହାତୋଳା ହୋଇ ପରଗୋତ୍ରୀ ହୋଇ ସାରିଥିବ । ଆଉ ପୁଅ ନେବାକୁ ଆସିବ କିଏ ?

ଏଭଳି ଥଟ୍ଟା ପରିହାସରେ ସେ ଦିନଟା ବିତିଗଲା । ମାତ୍ର ସମୟ କାହାକୁ ଅପେକ୍ଷା କରେନା । ତା'ପରେ ଛଅ ସାତମାସ ବିତିଗଲା । ସତକୁ ସତ ଉମା ଗର୍ଭବତୀ ହେଲେ । ମଝିରେ ମଝିରେ ଠୁକ ଆସି ଉମାଙ୍କୁ ପୁଅ କଥା ଚେତାଇ ଦେଇ ଯାଆନ୍ତି । ଉମା ହସି ଦେଇ କହନ୍ତି, ଝିଅ ହେବ କି ପୁଅ ହେବ ଜଣାନାହିଁ । ଯାହା ହେବ ତୁମେ ନେଇଯିବ ।

ମଝିରେ ମଝିରେ ବଳରାମ କଲିକତାରୁ ଘରକୁ ଆସନ୍ତି । ଉମା ତାଙ୍କୁ ସବୁ କଥା କହନ୍ତି । ସେ ମଧ୍ୟ କଥାଟାକୁ ହସରେ ଉଡ଼େଇ ଦିଅନ୍ତି । ମାତ୍ର ସେଥର ତାଙ୍କୁ ଅଧରମଣୀ ଡକାଇ ପଠାଇଲେ । ଭାଉଜଙ୍କ ଡାକରା ପାଇ ବଳରାମ ତାଙ୍କ ପାଖକୁ ଗଲେ । ଅଧରମଣୀ କହିଲେ, ବଳି ! ତୁମକୁ ଗୋଟିଏ କଥା କହିବି । ମୋ କଥା ତୁମେ ବିଶ୍ୱାସ କରିବ କି ? ବଳି ହସିଦେଇ କହିଲେ, ଭାଉଜ ! ତୁମେ ଯାହା କହିବ, କିଛି କିଛି ମୋ କାନରେ ବାଜିଛି । ତେବେ, ଏହାର ସତ୍ୟାସତ୍ୟ କେବଳ ଗୁରୁଗୋସେଇଁ କହିପାରିବେ । ଅଧରମଣୀ କହିଲେ, ଆଜି ସନ୍ଧ୍ୟାରେ ଆସ ତାଙ୍କ ପାଖକୁ ଯିବା । ତାଙ୍କ ମୁହଁରୁ ଶୁଣିଲେ ଆମ ମନରେ ଉଦ୍‌ବେଗ ରହିବ ନାହିଁ ।

ସେଦିନ ଅଧରମଣୀ ଓ ବଳରାମ ଗୁରୁ ଗୋସେଇଁଙ୍କ ପାଖକୁ ଗଲେ । ଗୁରୁ କହିଲେ, ଯାହା ମୋତେ ଦେଖାଗଲା, ତାହାହିଁ ମୁଁ କହିଚି । ଏଣିକି ତୁମ ମାନଙ୍କ ଇଚ୍ଛା । ବଳରାମ କହିଲେ, ଭବିଷ୍ୟତ ଯାହା ହେବାର ଥିବ ସେଥିରେ କେହି ବାଧା ସୃଷ୍ଟି କରିପାରିବେ ନାହିଁ । ତେବେ, ମୋର ଗୋଟିଏ ପ୍ରଶ୍ନ ଥିଲା ।

ଗୁରୁ କହିଲେ, କ'ଣ ପଚାରିବା କଥା ପଚାର ।

– ମୋର କେବଳ ଝିଅଟିଏ ଅଛି । ଏଥର ଯେଉଁ ପୁଅଟିଏ ହେବ, ସେଇଟି ଯଦି ଭାଇଙ୍କର କୁଳ ରକ୍ଷା କରେ, ତାହେଲେ ମୋର କିଏ କୁଳରକ୍ଷା କରିବ? ପଚାରିଲେ ବଳରାମ ।

ହସିଦେଇ ଗୁରୁଦେବ କହିଲେ, ଏ ପୁଅଟି ରାମବାବୁଙ୍କ ଘରକୁ ଆସିବାର କିଛି ବର୍ଷ ପରେ ତୁମର ପୁଣି ପୁଅଟିଏ ହେବ । ସେଇ ତୁମର କୁଳରକ୍ଷା କରିବ ।

ଅଧରମଣୀ ପଚାରିଲେ, ଏଥର କ'ଣ କହୁଚ ? ଯାହା କହିବ ତୁମର ମନକଥା ପରିଷ୍କାର ଭାବେ ନନାଙ୍କ ଆଗରେ କହ । ତୁମର ସବୁ ସଂଶୟ ସେ ମୋଚନ କରିବେ ।

ବଳରାମ କହିଲେ, ନାଇଁ ଭାଉଜ, ମୋର ଆଉ କିଛି ଦରକାର ନାହିଁ । ଯାହା ଘଟିବାର ଅଛି, ସେ ସବୁକଥା ନନା ଜାଣିପାରୁଛନ୍ତି । ତାଙ୍କ କଥା ମୋର ଶିରୋଧାର୍ଯ୍ୟ । ଉଭୟ କୁଳ ରକ୍ଷା ହେବାପାଇଁ ଠାକୁରଙ୍କର ଯାହା ବରାଦ ଅଛି ନନା ସେକଥା କହିଦେଲେ । ତେଣୁ ତୁମ ପୁଅ ତୁମ ଘରକୁ ଆସିବ । ଅଧରମଣି କହିଲେ, ଦେଖ ବଳି, ମୋ ପୁଅକୁ ଉମା ଗର୍ଭରେ ଧରିଛି । ତେଣୁ ତା ପାଇଁ ଯାହା ଯେତେବେଳେ ଦରକାର ହେବ, ସେସବୁ ମୁଁ ବ୍ୟବସ୍ଥା କରିବି । ତୁମେ ସେଥିପାଇଁ କିଛି ମନେ କରିବ ନାହିଁ, କିମ୍ବା ମୋର ଦବା ନବାକୁ ଭୁଲ ବୁଝିବ ନାହିଁ ।

ସେଇଦିନ ଠାରୁ ରାମବାବୁଙ୍କ ଘରେ ଯାହା ଭଲମନ୍ଦ ହୁଏ ଅଧରମଣୀ ତହିଁରୁ ଉମାପାଇଁ ପଠାନ୍ତି । ମାଛ, ମାଂସ, ପିଠାପଣା, ଦୁଧ, ଦହି, ମିଠା ଆଦି ଯାହା ଯେତେବେଳେ ହୁଏ ଉମାପାଇଁ ପଠାଇଦେବାକୁ ସେ ଭୁଲନ୍ତି ନାହିଁ । ମାସ କେତେଟା ବିତିଗଲା ପରେ ପୁତ୍ର ସନ୍ତାନଟିଏ ପ୍ରସବ କଲେ ଉମା । ପୁଅର ଏକୋଇଶିଆ ଜାକଜମକରେ କରିବାକୁ ରାମବାବୁଙ୍କ ଘରେ ଯୋଗାଡ଼ ଚାଲିଲା । ବନ୍ଧୁବାନ୍ଧବଙ୍କ ଘରକୁ ଖବର ଗଲା । ଗୁମାସ୍ତାମାନେ ଗାଆଁ ଗାଆଁ ବୁଲି ଖବର ଦେଇ ପ୍ରଜାପାଟକମାନଙ୍କୁ ଭୋଜି ପାଇଁ ନିମନ୍ତ୍ରଣ କଲେ । କଲିକତାରୁ ବଳରାମ ଆସି ପହଞ୍ଚିଲେ ।

ଏକୋଶିଆଦିନ ପୁରୋହିତ, ପୁଝାରୀ, ଅବଧାନ ଆସି ରାମବାବୁଙ୍କର ଘରେ ସତ୍ୟନାରାୟଣ ପୂଜାର ବ୍ୟବସ୍ଥା କଲେ । ସକାଳୁ ଖନ୍ଦା ଲାଗି ଚାରି ପାଞ୍ଚହଜାର ଲୋକଙ୍କ ପାଇଁ ଭୋଜିଭାତ ବ୍ୟବସ୍ଥା କରାଗଲା । ଜ୍ଞାତି ବନ୍ଧୁମାନେ ଆସି ପହଞ୍ଚିଲେ । ପାଞ୍ଜି ଦେଖି ଶୁଭ ଲଗ୍ନ ସ୍ଥିର କରାଯାଇ ନାମ ସଂକୀର୍ତ୍ତନ, ବାଜା, ବାଣ ରୋଷଣି

କରି ପୁରୋହିତ, ଗୁରୁଦେବ, ପୁଝାରୀ ଓ ଅବଧାନଙ୍କ ସହିତ ରାମବାବୁ ବଳରାମଙ୍କ ଘରକୁ ଗଲେ ।

ଚଉରା ଉପରେ କଳସ ସ୍ଥାପନ କରି ଦୁଆର ମୁହଁରେ କଦଳୀ ଗଛ ପୋତି, ଉମା ଓ ବଳରାମଙ୍କ ସହିତ ତାଙ୍କ ପରିବାରର ସଦସ୍ୟମାନେ ନୂଆ ଲୁଗାପଟା ପିନ୍ଧି ପୁଅକୁ ନୂଆ ଶେଜ ବିଛଣାରେ ଶୁଆଇ ଅପେକ୍ଷାରେ ଥାଆନ୍ତି । ପୁରୋହିତଙ୍କ ଗହଣରେ ଗୁରୁଦେବ ଯାଇ ଉମା ଓ ବଳରାମଙ୍କୁ ପଚାରିଲେ - ତୁମର ସମ୍ପର୍କିତ ଭାଇ ରାମଚନ୍ଦ୍ରଙ୍କର ପୁତ୍ର ସନ୍ତାନ ନଥିବାରୁ ସେ ତୁମକୁ ଏ ପୁଅଟି ମାଗୁଛନ୍ତି । ତୁମେ ଦୁହେଁ ସ୍ୱଚ୍ଛ ମନରେ ପୁଅଟିକୁ ତାଙ୍କୁ ଦାନ କରିବ କି ? ଦୁହେଁ ସମ୍ମତି ପ୍ରକାଶ କଲେ । ଗୁରୁଦେବ କହିଲେ ଧର୍ମକୁ ସାକ୍ଷୀରଖି ତ୍ରିବାର ସତ୍ୟ କର । ତଦନୁଯାୟୀ ପୁରୋହିତ ମନ୍ତ୍ର ଉଚ୍ଚାରଣ କରି କଳସ ପାଖରେ କର୍ମ କରୁଥାନ୍ତି । ଉମାଙ୍କ କୋଳରୁ ପୁଅକୁ ଆଣି ବଳରାମ ଧର୍ମକୁ ଅନାଇଁ ରାମଚନ୍ଦ୍ରଙ୍କ ହାତରେ ଟେକିଦେଲେ । ଅବଧାନେ ମଙ୍ଗଳାଷ୍ଟକ ପଢ଼ିଲେ । ଶଙ୍ଖ ହୁଳହୁଳି ହରିବୋଲ ଧ୍ୱନି ଭିତରେ ସଂକୀର୍ତ୍ତନ ଓ ବାଦ୍ୟନାଦ ସହିତ ନୂଆପୁଅକୁ ରାମବାବୁ ଆଣି ଇଷ୍ଟଦେବତା ଗୋପାଳଜୀଉଙ୍କ ଦର୍ଶନ କଲେ ଓ ପୁଅ ଉପରେ ଠାକୁରଙ୍କ ପାଦୋଦକ ସିଞ୍ଚନ କରି ଧଣ୍ଡାମାଳ ପିନ୍ଧାଇ ସମସ୍ତଙ୍କ ଗହଣରେ ଘରକୁ ଆଣି ଦ୍ୱାରଦେଶରେ ଅପେକ୍ଷା କରିଥିବା ଅଧରମଣୀଙ୍କ କୋଳରେ ଶୁଆଇ ଦେଲେ ।

ସନ୍ଧ୍ୟାବେଳେ ସତ୍ୟନାରାୟଣ ପୂଜା ହେଲା । ଗୁରୁଦେବଙ୍କ କୃପାରୁ ପୁଅଟିକୁ ପାଇଥିବାରୁ ଅଧରମଣୀ ତାର ନାମ ରଖିଲେ "ଗୁରୁପ୍ରସାଦ" । ଭୋଜିଭାତରେ ଧୂମ୍ ଉଡ଼ିଲା । ହଣ୍ଡା ହଣ୍ଡା ଶିରିଣି, ଚୂଡ଼ାଘସା, ମିଷ୍ଟାନ୍ନ ସାଙ୍ଗକୁ ଭାତ, ଡାଲି, ତରକାରୀ, କ୍ଷିରୀ ଇତ୍ୟାଦି ରନ୍ଧାଯାଇ ହଜାର ହଜାର ଲୋକଙ୍କୁ ଆପ୍ୟାୟିତ କରାଗଲା । ତିନିଜଣ ଯାକ ଗୁମାସ୍ତା ସେମାନଙ୍କ ଇଲାକାରୁ ଜମି ବିକ୍ରୀ କରି ଏଥିପାଇଁ ଯଥେଷ୍ଟ ଟଙ୍କା ଆଣି ବାବୁଙ୍କୁ ପଇଠ କଲେ । ବ୍ରାହ୍ମଣ, ବୈଷ୍ଣବ, ଯୋଗୀ ଭିକାରୀମାନଙ୍କୁ ଦାନଧ୍ୟାନ କରାଗଲା ।

ଉମା ତାଙ୍କ ପୁଅଟିକୁ ଦାନ କରିଦେବା ପରେ ଅଧରମଣୀ ପୁଅର ମାଆ ହେଲେ ସିନା, କିନ୍ତୁ ପୁଅକୁ କ୍ଷୀର ଦେବାପାଇଁ ଉମାଙ୍କର ଆବଶ୍ୟକତା ପଡ଼ିଲା । ଦିନକୁ ପାଞ୍ଚ ସାତ ଥର ଆସି ସେ କ୍ଷୀର ଦେଇଯାଆନ୍ତି । ରାତି ନଅ ଦଶଟା ବେଳକୁ ପୁଅ ଶୋଇଯିବା ପରେ ସେ ଘରକୁ ଯାଆନ୍ତି ସିନା ମାତ୍ର ରାତିରେ କାଳେ ପୁଅ ଉଠି କାନ୍ଦୁଥିବ, ଏଇ ଚିନ୍ତାରେ ତାଙ୍କୁ ନିଦ ହୁଏନା । ସତକୁ ସତ ବେଳେ ବେଳେ ରାତିରେ ପୁଅ ଉଠି କାନ୍ଦେ । ଅଧରମଣୀ ଆପଣା ବକ୍ଷରୁ ସ୍ତନ୍ୟପାନ କରାଇବାର

ଛଳନା କରି ଶିଶୁପୁତ୍ରକୁ ବୁଝାଇବାକୁ ଚେଷ୍ଟା କରନ୍ତି । ଅତି ଅବୁଝା ହେଲେ ଉମାଙ୍କୁ ଡାକିବାକୁ ପଡ଼େ । ଏଇଭଳି ଦୁଇ ତିନିମାସ ବିତିଯିବା ପରେ ରାତିବେଳା ପୁଅକୁ ସମ୍ଭାଳି ରଖିବା ସମ୍ଭବ ହୋଇ ପାରିଲା । ପୁଅ ଛଅମାସର ହେବା ପରେ କ୍ଷୀର ଖୁଆଇବାର ବ୍ୟବସ୍ଥା ବାତିଲ କରି ଦିଆଗଲା । ଅଧରମଣୀଙ୍କୁ ସାହାଯ୍ୟ କରିବାକୁ ଶୁକୀ ମାଆ ବୋଲି ଦାସୀଟିଏ ପୁଅପାଇଁ ଖଞ୍ଜା ହୋଇ ରହିଲା । ସେଥିଲାଗି ଉମା ଓ ଟିକିପୁଅ ଦୁହେଁ ଅନେକ କଷ୍ଟ ପାଇଲେ । ମାତୃସ୍ତନ୍ୟ ନପାଇ ପୁଅ ଯେତିକି କଷ୍ଟ ପାଇଲା, ନିଜ ସ୍ତନ୍ୟରୁ ଝରୁଥିବା ଦୁଗ୍ଧତକ ନିଷ୍କାସିତ କରି ନପାରି ସେଇ ଚାପର ବେଦନାରେ ଉମାଙ୍କର ଶାରୀରିକ କଷ୍ଟ ମଧ୍ୟ ପ୍ରବଳ ହେଲା ।

ଶୁକୀମାଆ ଟିକିପୁଅକୁ ତେଲ ଘଷି ଦେବା, ହଳଦୀ ଲଗେଇ ଦେବା, ଗାଧୋଇ ଦେବା, ତାପାଇଁ ଘଡ଼ି ଭାତ ବସେଇବା, ଗୋଡ଼ରେ ପକେଇ ଶୁଆଇବା ଆଦି ବହୁତ କାମ କରେ । ଉମାଙ୍କର ଆଉ ଆବଶ୍ୟକତା ନଥାଏ । ପୁଅ ପାଖକୁ ଆସି ତାକୁ ଟିକେ ଗେଲ କରିବାକୁ ବା ସ୍ତନ୍ୟପାନ୍ କରାଇବାକୁ ବିକଳ ହୁଅନ୍ତି ଉମା । ମାତ୍ର ପୂର୍ବପରି ସେ ଆଉ ସୁଯୋଗ ପାଆନ୍ତି ନାହିଁ । ତେଣୁ ତାଙ୍କ ଆଖିରୁ ସବୁବେଳେ ଲୁହ ଝରେ । ଗୋପାଳଜୀଉଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ସେ କେବଳ ପୁଅର ମଙ୍ଗଳକାମନା କରନ୍ତି । ବେଳେବେଳେ ମନ ବୁଝାଇବାକୁ ଗୁରୁଗୋସେଇଁଙ୍କୁ ପ୍ରଣାମ କରିଆସିବାକୁ ଯାଆନ୍ତି । ଗୁରୁ କହନ୍ତି, ଯେଉଁ ଜିନିଷ ତୋର ନୁହେଁ ସେଥିପାଇଁ ମନଦୁଃଖ କରିବା ଠିକ୍ ନୁହେଁ । ତୁ କେବଳ ତାଙ୍କ ପୁଅର ମଙ୍ଗଳ ଚିନ୍ତାକର । ତୋ ପୁଅ ଆସିବା ପାଇଁ ଆହୁରି କିଛି ବର୍ଷ ବାକୀ ଅଛି । ସବୁ ଠିକ୍ ହୋଇଯିବ । କେବଳ ତୁମ ଇଷ୍ଟଦେବତା ଗୋପାଳଙ୍କ ପ୍ରତି ଲୟ ରଖ ।

ସାତବର୍ଷ ପରେ ଉମାଙ୍କର ପୁଅଟିଏ ହେଲା, ତାର ନାମ ରଖିଲେ ଜାନକୀପ୍ରସାଦ । ଡାକନାମ ଦେଲେ କୁନା । ପୁଅଟି ବଳରାମଙ୍କର କୁଳରକ୍ଷା କଲା ।

## ପିଲାଦିନ

ଗୁରୁ ଜେଜେ ଜାତକ ତିଆରି କରିଦେଲେ । ମୀନରାଶି, କୁମ୍ଭ ଲଗ୍ନ, ଉତ୍ତର ଭାଦ୍ର ନକ୍ଷତ୍ର । ମଙ୍ଗଳ ଓ ବୃହସ୍ପତି ଏକାଦଶରେ । ଜାତକ ଅନୁସାର ନାମ ହେଲା 'ଝସକେତନ' । ଏକୋଇଶାରେ ନାମ ଦିଆଯାଇଥିଲା 'ଗୁରୁପ୍ରସାଦ'। ଜମିଦାର ବାବୁ ବହୁବର୍ଷ ପରେ ପୁଅଟିଏ ପାଇଛନ୍ତି ବୋଲି ବୟୋବୃଦ୍ଧ ପ୍ରଜାପାଟକମାନେ ଆସି

ଆଶୀର୍ବାଦ କଲାବେଳେ କହନ୍ତି "ବୁଢ଼ାଟିଏ ହେଇଥା । ମୋ ପାଚିଲାବାଳ ନେ । ବିଶାଶଏ ବର୍ଷ ପରମାୟୁ ହେଉ ।" ତେଣୁ ଡାକନାମ ହେଲା 'ବୁଢ଼ାବାବୁ' । ଆହୁରି ଗେଲବେସର କରି ସମସ୍ତେ ଡାକିଲେ 'ବୁଢୁ' - 'ବୁଢୁବାବୁ' ।

ଆଠ ଦଶ ମାସ ଭିତରେ ରାମବାବୁଙ୍କ ଖୁଡ଼ୀ ପାଶୋରାଙ୍କ ଜନ୍ମିତ ଝିଅ 'ଠୁକ'ର ବାହାଘର ହେଲା । ମଣ୍ଡାସାହିର ଭିକାରୀଚରଣ ମହାନ୍ତି ସେତେବେଳେ ରାଜସ୍ୱ ବିଭାଗରେ ଚାକିରୀ କରୁଥାନ୍ତି । ପ୍ରଥମ ବିବାହର ପାଞ୍ଚବର୍ଷ ପରେ ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହୋଇଯାଇଥିଲା । 'ଠୁକ' ହେଲେ ତାଙ୍କର ଦ୍ୱିତୀୟ ପତ୍ନୀ ।

ଠୁକ ଅପା ବୁଢୁକୁ ଖୁବ୍ ଭଲ ପାଉଥିଲା । ସେଇ ଜାଣି ପୁଅଟାକୁ ଆଣିବା ପାଇଁ ଉମା ଭାଉଜ ସାଙ୍ଗେ ଦିନରାତି ଲଗେଇଥିଲା । ତେଣୁ ଅଧିକାଂଶ ସମୟରେ ସେ ତାକୁ କୋଳରେ ଧରିଥାଏ । ବିବାହ ପରେ ବିଦା ହୋଇଯିବା ପୂର୍ବରୁ ସେ ତାକୁ କୋଳରେ ଧରି ବହୁତ କାନ୍ଦିଲା । ତା ବୋଉକୁ କହିଗଲା ଭାଇ ଭାଉଜ ସିନା ପୁଅ କରିଛନ୍ତି; ହେଲେ, ତୁ ତାକୁ ଚାହିଁଥିବୁ । ତା ବିବାହର ଛଅମାସ ନ ପୁରୁଣୁ ଚାରିଆଡ଼େ ବସନ୍ତ ରୋଗ ବ୍ୟାପିଲା । ନବ ବିବାହିତା ବୋହୂଟା ମଧ୍ୟ ସେ ରୋଗରୁ ରକ୍ଷା ପାଇପାରିଲା ନାହିଁ । ସମସ୍ତଙ୍କୁ ଶୋକସାଗରରେ ଭସାଇ ଦେଇ ଠୁକଅପା ଆରପାରିକୁ ଚାଲିଗଲା । ତାର ମୃତ୍ୟୁ ଖବର ପାଇ ମାଆ ପାଶୋରାଦେବୀ ଅନ୍ନଜଳ ତ୍ୟାଗକଲେ । ଯେତେ ଯିଏ ବୁଝାଇଲେ ସେ ଜଳସ୍ପର୍ଶ କଲେ ନାହିଁ । କହିଲେ, ଷୋଳବର୍ଷ ବୟସରେ ବାଉନ ବର୍ଷର ବୃଦ୍ଧଙ୍କ ହାତ ଧରିଥିଲି । ବାଇଶି ବର୍ଷରେ ବିଧବା ହେଲି। ହେଲେ, କେବଳ ଗୋଟିଏ ବୋଲି ଝିଅ 'ଠୁକ'କୁ ଚାହିଁ ମୁଁ ବଞ୍ଚିଥିଲି । ଆଉ କାହିଁକି ବଞ୍ଚିବି? ଏ ଜୀବନରେ ଆଉ କି ସୁଖ ଅଛି ? ସମସ୍ତେ ବୁଝାଇ ବୁଝାଇ ଥକିଗଲେ । ତାଙ୍କର ସେଇ ଏକା ଜିଦ୍ । ଯାହାକୁ ଚାହିଁ ବଞ୍ଚି ରହିଥିଲି, ସିଏ ତ ଗଲା । ଆଉ କାହିଁକି ମୁଁ ରହିବି ? ଯେତେ ଯିଏ କହିଲେ କାହାରି କଥା ରହିଲା ନାହିଁ । ଶେଷରେ ଗୁରୁ ଗୋସେଇଁ ଆସିଲେ । ଗୀତା, ଭାଗବତ, ଶାସ୍ତ୍ର ପୁରାଣରୁ ଅନେକ ଶ୍ଳୋକ ପଢ଼ି ସେ ପାଶୋରାଙ୍କୁ ଧୈର୍ଯ୍ୟ ଧରିବାକୁ କହିଲେ । ଶେଷରେ କହିଲେ, ତୁମର ଅଲିଅଳି ଝିଅ ଠୁକ ଯେତେବେଳେ ବିଦାହୋଇ ଶାଶୁ ଘରକୁ ଗଲା, ସେ ତୁମକୁ ନିଶ୍ଚୟ କିଛି କହି ଯାଇଛି । ତୁମେ ସେ କଥା ମନେ ପକାଅ । ପାଶୋରା ମନେ ପକାଇବାକୁ ଚେଷ୍ଟା କଲେ । ମାତ୍ର ତାଙ୍କର କିଛି ମନେ ପଡ଼ିଲା ନାହିଁ। ଗୁରୁଦେବ ତାଙ୍କର ଶିଷ୍ୟା ଅଧରମଣୀକୁ କହିଲେ, ପୁଅକୁ ଆଣି ତାଙ୍କ କୋଳରେ ଦିଅ । ପାଶୋରାଙ୍କ କୋଳରେ ପୁଅକୁ ବସାଇ ଦିଆଗଲା । ଗୁରୁଦେବ ପଚାରିଲେ ଏଥର ମନେ ପଡୁଛି ? ପାଶୋରା ପୁଅକୁ କୁଣ୍ଢାଇ ଭୋ ଭୋ କରି କାନ୍ଦି

ଉଠିଲେ । କହିଲେ, ମୋର ଲକ୍ଷ୍ମୀ ପ୍ରତିମା ପରି ଝିଅ ଚାଲିଗଲା । ଏ ବକଟକୁ ନେଇ ମୁଁ କ'ଣ କରିବି ? ଗୁରୁଦେବ କହିଲେ, ଠିକ କହିଯାଇଛି, ଏଇଆକୁ ତୁମେ ଚାହିଁଥିବ । ତେଣୁ ତାକୁ ଚାହିଁ ତୁମର ଦିନ କଟିଯିବ । ଠିକ ଯେତିକି ଦିନ ପାଇଁ ଆସିଥିଲା, ସେତିକି ପୂରଣ କରି ସେ ଚାଲିଗଲା । ତାପାଇଁ ଆଉ ଆତ୍ମାକୁ କଷ୍ଟ ଦିଅନା । ଗୁରୁଦେବଙ୍କ କଥା ଶୁଣି ଧୈର୍ଯ୍ୟ ଧରିଲେ ପାଶୋରା । ସେ ଦିନ ରାତିରେ ଅଧରମଣି ପୁଅକୁ ଆଣି ଖୁଡ଼ୀଙ୍କ କୋଳରେ ଦେଇଗଲେ । କହିଲେ, ଏଣିକି ପୁଅ ତୁମ ପାଖେ ଶୋଇବ ।

ସେଇ ଦିନରୁ ପାଶୋରା ହେଲେ ମୋର ସବୁ କିଛି । ତାଙ୍କର ସେବା କରିବା ପାଇଁ ଜିରୀ ବୋଲି ସ୍ତ୍ରୀଲୋକଟିଏ ଥାଏ । ବୋଉ (ଅଧରମଣୀଙ୍କ) ପାଖରେ ଥାଏ ଶୁରୁଜୀ । ଆଉ ମୋ ପାଇଁ ବନ୍ଧା ଥାଏ ଶୁକୀମାଆ । ସକାଳୁ ଉଠିଲେ ଦାନ୍ତ ଘଷେଇବା, ତେଲ ହଳଦୀ ଲଗେଇ ଦେବା, ଖାଇବା ଜିନିଷ ତିଆରି କରିବା, ଲୁଗାପଟା ଧୁଆଧୋଇ, ବିଛଣା ସଜାଡ଼ିବା ଇତ୍ୟାଦି ସବୁ କାମ ଶୁକିମା କରେ । ପୂର୍ବରୁ ବୋଉର (ଅଧରମଣି) ବରାଦ ଅନୁସାରେ ସବୁ ହେଉଥିଲା । ଏଣିକି ମାଆ (ପାଶୋରା) ସେ ସବୁ ବିଷୟରେ ଅଧିକ ଧ୍ୟାନ ଦେଲେ । ପୁଅ ପାଇଁ କେତେବେଳେ କେଉଁ କାମ ହେବ, ସେ ସବୁ ବରାଦ କରୁଥିଲେ ପାଶୋରା ।

ଏଇଭଳି ଚାରି ଛ ମାସ ବିତିଯିବା ପରେ ସେ ତାଙ୍କ ଗୁମାସ୍ତା ରାମଜେନାଙ୍କୁ ଡାକି ତାଙ୍କର ଜମିବାଡ଼ି, ଜମିଦାରୀ, ଲାଖରାଜି ଇତ୍ୟାଦିର ତାଲିକା ପ୍ରସ୍ତୁତ କରିବା ପାଇଁ କହିଲେ । ପ୍ରାୟ ମାସେ ଦୁଇମାସ ଭିତରେ ସବୁ କାଗଜପତ୍ର ଠିକ୍ ହୋଇଗଲା । ପାଶୋରା କହିଲେ, ଜଣେ ନବସିନ୍ଧା ଡାକି ଏସବୁ ବୁଲୁ ନାମରେ ଦତ୍ତପତ୍ର କରିଦେବାକୁ କବଲା ପ୍ରସ୍ତୁତ କର । ବାପାବୋଉ ତାଙ୍କୁ ଅନେକ ବୁଝାଇଲେ । କହିଲେ, ଖୁଡ଼ୀ ! ଏଡ଼େ ଛୋଟ ପିଲାଟା ନାଆଁରେ କାହିଁକି ସବୁ ସମ୍ପତ୍ତି କରିଦେବ? ତାକୁ ନଅ ଦଶବର୍ଷ ହେବାଯାଏଁ ଅପେକ୍ଷା କର । ଏତେ ତରତର କାହିଁକି ?

ପାଶୋରା କହିଲେ, ସମୟ ଚକ୍ରରେ ପଡ଼ି ମୁଁ ସବୁକିଛି ହରେଇଲି । ଏବେ ଏଇ ଶିଶୁଟିକୁ ଆଶ୍ରୟ କରି ବଞ୍ଚିବାକୁ ହେବ । ଏବେ ସେ ମୋର ସବୁକିଛି । ମୋ ନାଆଁରେ ସମ୍ପତ୍ତି ରହିବା ଅପେକ୍ଷା ତା ନାଆଁରେ ହେଉ । ଲକ୍ଷ୍ମୀପ୍ରତିମା ପରି ଝିଅ ମୋର ବାଇଶି ବର୍ଷରେ ଚାଲିଗଲା । ମୋର ଏ ଅଲୋଡ଼ା ଜୀବନଟା କେତେବେଳେ ଚାଲିଯିବ କିଏ ଜାଣେ ? ଏବେ ବଞ୍ଚି ଥାଉଥାଉ ତା ନାଆଁରେ ସବୁ କିଛି କରିଦେଲେ ମୁଁ ନିଶ୍ଚିନ୍ତ ହେବି । ତାଙ୍କରି କଥା ଅନୁସାରେ ଜମିବାଡ଼ି, ଜମିଦାରୀ, ଲାଖରାଜି ଓ ସିକିମ୍ ପ୍ରଜା ସତ୍ତ୍ୱ ଆଦି ଠିକ୍ ଠାକ୍ ତର୍ଜମା କରାଯାଇ ପଚାଶପୃଷ୍ଠାର

ଏକ ଦଲିଲ ତିଆରି ହେଲା । ରାମଗୁମାସ୍ତା, ଜଗୁଗୁମାସ୍ତା ବାପା ଓ ଗାଆଁର କେତେକ ମୁରବୀ ସ୍ଥାନୀୟ ଲୋକଙ୍କ ସହିତ ସବାରୀରେ ମାଆ ପାଶୋରାଦେଇ ରେଜିଷ୍ଟ୍ରିଖାନା ଦେବୀଦେଉଳ ଯାଇ ମୋ ନାଆଁରେ ସମସ୍ତ ସମ୍ପତ୍ତି କବଲା କରିଦେଇ ଆସିଲେ ।

ବର୍ଷକୁ ଥରେ ମାଆ ତା ବାପଘର ସୁନ୍ଦର୍ଦ୍ଧାକୁ ଯାଏ । ସାଙ୍ଗରେ ମୋତେ ନେଇଯାଏ । ଗଉଡ଼ମାନେ ସବାରୀରେ ଆମକୁ ନେଇ ସୁନ୍ଦର୍ଦ୍ଧାରେ ଛାଡ଼ିଦେଇ ଆସନ୍ତି । ପୁଣି ସାତ ଆଠଦିନ ପରେ ଯାଇ ନେଇ ଆସନ୍ତି । ମାଆର ଭାଇ ବଂଶୀଧର କାନୁନ୍‌ଗୋ ପହଙ୍ଗାରେ ଶିକ୍ଷକତା କରୁଥାଆନ୍ତି । ତାଙ୍କର ଦୁଇପୁଅ ନୃସିଂହଚରଣ ଓ ପ୍ରଭୁଚରଣ ଗାଆଁ ସ୍କୁଲରେ ପଢୁଥାଆନ୍ତି । ପରବର୍ତ୍ତୀ ସମୟରେ ମାଆର ପୁତୁରା ନୃସିଂହବାବୁ ପୋଲିସ୍ ଡିଏସ୍‌ପି ଓ ପ୍ରଭୁଚରଣ ହେଲେ ସୁପରିଣ୍ଟେଣ୍ଡିଙ୍ଗ ଇଞ୍ଜିନିୟର । ମାଆ ତା ବାପଘର ଗାଆଁକୁ ଭାରୀ ଭଲପାଏ । ଇଷ୍ଟଦେବତା ଗୋପୀନାଥଙ୍କ ଦର୍ଶନ କରି ତାଙ୍କର ପ୍ରସାଦ ପାଇବା ଓ ଗାଆଁ ସାରା ବୁଲି ସମ୍ପର୍କୀୟ ମାନଙ୍କୁ ସଙ୍ଖୁଳିବାକୁ ତାକୁ ଆନନ୍ଦ ଲାଗେ । ସୁନ୍ଦର୍ଦ୍ଧାରେ ସମସ୍ତେ ତାକୁ ମୂଷାଅପା ବୋଲି ଡାକନ୍ତି ଓ ସମସ୍ତେ ତାକୁ ଖୁବ୍ ଭଲ ପାଆନ୍ତି । ଠିକଣା ଦିନରେ ଗଉଡ଼ମାନେ ଯାଇ ଆମକୁ ପୁଣି ସବାରୀରେ ଆଳିପିଙ୍ଗଳ ନେଇ ଆସନ୍ତି । ମାଆ ମୋତେ ବହୁତ ଭଲ ପାଉଥିଲା । ଦୃଷ୍ଟିରୁ ଅନ୍ତର କରିବାକୁ ସେ ଆଦୌ ଚାହୁଁ ନଥିଲା । କାହାରି ସହିତ କଳିଝଗଡ଼ା ନକରିବାକୁ ସେ ବରାବର ଉପଦେଶ ହେଉଥିଲା । ବଡ଼ମାନଙ୍କୁ ଭକ୍ତି କରିବା ଓ ସାଙ୍ଗସାଥିଙ୍କ ସହିତ ଭଲ ବ୍ୟବହାର କରିବାକୁ ମୋତେ ସେ ଶିଖାଇ ଥିଲା । ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇ ବୟସ୍କମାନଙ୍କର ଆଶୀର୍ବାଦ ପାଇବାକୁ ଉପଦେଶ ଦେଉଥିଲା ସେ ।

ତିନିବର୍ଷ ବୟସ ହେବା ପରେ କାଶୀମାଷ୍ଟ୍ରେ ମୋତେ ପଢ଼ାଇବାକୁ ଆସିଲେ । ଆମ ଘର ସାମନାରେ ଦାଣ୍ଡପୋଖରୀ ଓ ଆମ୍ବତୋଟା । ସେ ମୁଣ୍ଡରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ। ସେଇ ବିଦ୍ୟାଳୟରେ କାଶୀନାଥ ସାହୁ ଜଣେ ବୟସ୍କ ଶିକ୍ଷକ। ସେ ଆମ ଠାକୁରଙ୍କ ସଂକୀର୍ତ୍ତନ ମଣ୍ଡଳିର ମୁଖ୍ୟ ଗାୟକ । ଖଣ୍ଡମଣ୍ଡଳର ଜଣେ ପୋଖତ ସଂକୀର୍ତ୍ତନ ଗାୟକ ଭାବେ ତାଙ୍କର ଖ୍ୟାତିଥିଲା । ତେବେ ସ୍କୁଲରେ ସେ ପିଲାମାନଙ୍କୁ ଅଙ୍କ ଓ ସାହିତ୍ୟ ପଢ଼ାନ୍ତି । ମାଷ୍ଟ୍ରେ ମୋତେ ଅକ୍ଷର ଶିଖାଇବାକୁ ଆରମ୍ଭ କଲେ । ସନ୍ଧ୍ୟାବେଳେ ଛୋଟ ଛୋଟ ମାନସାଙ୍କ ପଚାରନ୍ତି । ବାପା ଥାଆନ୍ତି ସ୍କୁଲର ପରିଚାଳନା କମିଟି ସଭାପତି ଓ ତେର ନମ୍ବର ୟୁନିୟନ୍‌ର ପ୍ରେସିଡେଣ୍ଟ ।

ଇଂରେଜ ଅମଳରେ ପ୍ରତି ଥାନାକୁ କେତେକ ୟୁନିଅନରେ ବିଭକ୍ତ କରାଯାଇଥାଏ । ପ୍ରତି ୟୁନିଅନରେ ଚୌକିଦାରୀ ଟିକସ ଦେଉଥିବା ଲୋକମାନଙ୍କ

ମଧ୍ୟରୁ ଜଣେ ପ୍ରେସିଡେଣ୍ଟ ବା ସଭାପତି ନିର୍ବାଚିତ ହୁଅନ୍ତି । ଆଜିକାର ପଞ୍ଚାୟତ ସମିତି ଅଧ୍ୟକ୍ଷଙ୍କ ଠାରୁ ତତ୍‌କାଳୀନ ୟୁନିଅନ (ସଭାପତି) ପ୍ରେସିଡେଣ୍ଟ ଅଧିକ ପ୍ରତିପତ୍ତିଶାଳୀ ଥିଲେ । ବାପା ଥିଲେ ତେର ନମ୍ବର ୟୁନିଅନର ସଭାପତି । ପ୍ରତିଦିନ ସକାଳୁ ତେରନମ୍ବର ୟୁନିଅନର ଚୌକିଦାରମାନେ ଆମ ଦାଣ୍ଡରେ ଆସି ଜମା ହୁଅନ୍ତି । ସେମାନଙ୍କ ଉପରେ ଜଣେ ଦଫାଦାର ଥାଆନ୍ତି । ସେ ସକାଳ ସାତଟା ସୁଦ୍ଧା ଚୌକିଦାର ମାନଙ୍କର ଉପସ୍ଥାନ ଖାତା ନେଇ ଥାନାକୁ ଯାଆନ୍ତି। ଗାଆଁ ମାନଙ୍କରେ ଯାହା କିଛି ଘଟିଥାଏ ସେସବୁ ଘଟଣା ଚୌକିଦାରମାନେ ଜଣାଇବା ପରେ ସମସ୍ତ ବିଷୟ ଲେଖି ଥାନାକୁ ଜଣାଇ ଦିଆଯାଏ । ଚୋରି, ଡକାୟତି, ମାଡ଼ ଫଉଜଦାରୀ, ଜନ୍ମମୃତ୍ୟୁ, ଅପମୃତ୍ୟୁ, ଦୁର୍ଘଟଣା ଆଦି ପ୍ରତିଘଟଣା ପ୍ରେସିଡେଣ୍ଟଙ୍କ ଦସ୍ତଖତରେ ଚିଠି ହୋଇ ଥାନାକୁ ଯାଏ । ପ୍ରେସିଡେଣ୍ଟଙ୍କୁ ସାହାଯ୍ୟ କରିବାକୁ ଜଣେ ତହସିଲଦାର୍ ଥାଆନ୍ତି । ସେ ସବୁ ଲେଖାଲେଖି କରି ଦସ୍ତଖତ୍ ପାଇଁ ପେଶ୍ କରନ୍ତି । ପ୍ରତିଦିନ ଭୋର ସାତଟା ଠାରୁ ଦିନ ଦଶଟା ପର୍ଯ୍ୟନ୍ତ ଆମ ଦାଣ୍ଡରେ ଏକ ଦରବାର ବସେ । ବାପା ଆରାମଚୌକିରେ ବସିଥାନ୍ତି । ପାଖ ଚୌକିରେ ତହସିଲଦାର ଦଫାଦାର, ଆଞ୍ଚଳିକ କେତେଜଣ ଭଦ୍ରଲୋକ ବସି ବିଭିନ୍ନ ଗାଆଁରେ ଘଟିଯାଇଥିବା ଘଟଣାବଳୀର ସମୀକ୍ଷା କରି ନିଷ୍ପତ୍ତି ନିଅନ୍ତି । ବେଳେବେଳେ ପାରିବାରିକ ଗଣ୍ଡଗୋଳ ଘଟିଲେ ଗଣ୍ଡଗୋଳକାରୀ ବ୍ୟକ୍ତି ବିରୁଦ୍ଧରେ ପ୍ରତିପକ୍ଷ ଫେରାଦ ହେବାକୁ ଆସନ୍ତି । ଆପତ୍ତି ଅଭିଯୋଗ ଶୁଣିବା ପରେ ଗଣ୍ଡଗୋଳକାରୀ ଲୋକକୁ ଡାକିଆଣିବାକୁ ପିଆଦାଙ୍କୁ ପଠାଯାଏ । ଦୁଇଜଣ ପିଆଦା ଉପସ୍ଥିତ ଥାଆନ୍ତି । ବାପାଙ୍କ ପାଖରେ ଭଗିମଲିକ ଓ ଜନମୁଭୋଇ ନାମକ ଦୁଇଜଣ ପିଆଦା ଥାଆନ୍ତି । ସେମାନେ ଜମିଦାରୀ ଶିରସ୍ତାରୁ ଖର୍ଚ୍ଚ ପାଆନ୍ତି । ଗୁମାସ୍ତାଙ୍କ ଇଙ୍ଗିତରେ ସେମାନେ ପରିଚାଳିତ ହୁଅନ୍ତି ।

ଗାଆଁ ଗଣ୍ଡାରେ ମାଡ଼ ଫଉଜଦାରୀ, ଆତ୍ମହତ୍ୟା, ଭ୍ରୁଣହତ୍ୟା ବା ଯାହା କିଛି ଅଘଟଣ ଘଟିଲେ ୟୁନିଅନ ପ୍ରେସିଡେଣ୍ଟ ସରଜମିନ୍ ତଦନ୍ତ କରି ଘଟଣାକୁ ମିମାଂସା କରିଦେବାକୁ ଉଦ୍ୟମ କରନ୍ତି । ଯଦି ସ୍ଥାନୀୟ ଭଦ୍ରଲୋକ ମାନଙ୍କର ଉପସ୍ଥିତିରେ ଘଟଣାଟା ମେଣ୍ଟିଗଲା ତେବେ ପୋଲିସ୍ ହସ୍ତକ୍ଷେପର ଆବଶ୍ୟକତା ନଥାଏ । ତେଣୁ ଭୋର୍ ସକାଳୁ ଆମ ଦାଣ୍ଡରେ ଭିଡ଼ ଲାଗିଯାଏ । ସରଜମିନ ତଦନ୍ତର ଆବଶ୍ୟକତା ଥିଲେ ବାପା ସଂପୃକ୍ତ ଗାଆଁକୁ ଯାଇ ତଦନ୍ତ କରନ୍ତି । ଉପରବେଳା ପ୍ରାୟ ଅପରାହ୍ଣ ୪ /୫ ଟା ବେଳକୁ ଆମ ଗାଆଁ କିମ୍ବା ପାଖ ଗାଆଁ ମାନଙ୍କରେ ପାରିବାରିକ କଳହ ସବୁର ବିଚାର ହୁଏ । ଭାଇ-ଭାଇ, ସ୍ୱାମୀ-ସ୍ତ୍ରୀ, ପିତାପୁତ୍ର କିମ୍ବା ପରିବାର ପରିବାର ମଧ୍ୟରେ ବିବାଦ ସୃଷ୍ଟି ହେଲେ କେହି ଯଦି ଅନ୍ୟ ବିରୁଦ୍ଧରେ ଆସି ବାପାଙ୍କ ପାଖରେ

ଫେରାଦ ହୁଏ, ତେବେ ପିଆଦାମାନେ ଯାଇ ଅପରପକ୍ଷକୁ ଡାକିଆଣନ୍ତି । ପାଖ ପଡ଼ୋଶୀ କେତେଜଣ ଭଦ୍ରଲୋକ ବସି ବିଚାର କରନ୍ତି । ଭୁଲ୍ କରିଥିବା ଲୋକ ସବୁରି ସାମନାରେ ଅପରପକ୍ଷଙ୍କୁ କ୍ଷମାଭିକ୍ଷା କରେ । ତାପରେ ସେମାନେ ମିଳିମିଶି ଯାଆନ୍ତି । ବାପା ଅତ୍ୟନ୍ତ ସରଳ ଓ ନିରୀହ ପ୍ରକୃତିର ହୋଇଥିବାରୁ ଲୋକମାନଙ୍କୁ ଅର୍ଥଦଣ୍ଡରେ ନ ପକାଇ ସରଳ ଭାବରେ ସ୍ଥାନୀୟ ଭଦ୍ରଲୋକମାନଙ୍କ ସାହାଯ୍ୟରେ ଅଧିକାଂଶ ମାମଲା ସହଜରେ ଫଏସଲା କରି ଦିଅନ୍ତି । ଲୋକମାନଙ୍କୁ ଅର୍ଥଦଣ୍ଡ ବା ଶାରୀରିକ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼େ ନାହିଁ । ତେଣୁ ବାପାଙ୍କ ପ୍ରତି ଅଧିକାଂଶ ଲୋକଙ୍କର ଶ୍ରଦ୍ଧା ଓ ସମ୍ମାନ ଥାଏ । ଲୋକେ କହନ୍ତି ରାମବାବୁ - ରାମଚନ୍ଦ୍ର ମହାପ୍ରଭୁ । ଇଂରେଜ ଶାସନ କାଳରେ ରାଜା ଜମିଦାରମାନଙ୍କର ପ୍ରବଳ ପ୍ରତିପତ୍ତି ଥିଲା । ବହୁ ଦୁଷ୍ଟ ରାଜବଂଶୀୟ ଲୋକେ ଓ ଜମିଦାରମାନେ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ । ମାତ୍ର ରାମବାବୁଙ୍କ ପ୍ରଜାମାନେ ତାଙ୍କଠାରୁ ସମ୍ପତ୍ତି କିଣିବାକୁ ପଇସା ଜମେଇ ରଖିବାକୁ ସର୍ବଦା ଚେଷ୍ଟିତ ରହୁଥିଲେ । କୌଣସି ପ୍ରଜାଉପରେ ଜୁଲମ ବା ଅତ୍ୟାଚାର କରିବା କଥା ଶୁଣା ନଥିଲା ।

ଆଜିକାଲି ଯେଉଁଭଳି ଗାଆଁଗଣ୍ଡାମାନଙ୍କରେ ଲୋକସଂଖ୍ୟା ପ୍ରବଳ ବଢ଼ିଛି, ସେତେବେଳେ ସେପରି ନଥିଲା। ଗାଆଁମାନଙ୍କ ସଂଖ୍ୟା ମଧ୍ୟ ସୀମିତ ଥିଲା । ଛତିଶ ପାଟକ ବା ଜାତି ଅନୁସାରେ ଲୋକେ କୌଳିକ ବ୍ୟବସାୟ କରି ଚଳୁଥିଲେ । କେଉଟମାନେ ଚୂଡ଼ା ଓ ହୁଡୁମ ଭାଜି, ମାଛ ଧରି ବିକ୍ରି କରୁଥିଲେ । ଗୁଡ଼ିଆମାନେ ମିଷ୍ଟାନ୍ନ ତିଆରି କରିବା, ତେଲି ଘରେ ସୋରିଷ, ରାଶି, ବାଦାମ ଆଦି ତେଲ ମିଳିବା, ତନ୍ତୀ ଲୁଗା ବୁଣିବା, କମାର ଲୁହା ଜିନିଷ ଯୋଗାଉ ଥିଲେ । ଛୋଟ ବଡ଼ ହୋଇ ଗାଆଁ ସବୁ ଥିଲା । ଗାଆଁମାନଙ୍କ ଭିତରେ ମାଇଲ ମାଇଲ ଧରି ବଡ଼ ବଡ଼ ଗହୀର ବିଲ ଥିଲା । ସେ ସବୁର ଆୟତନ ଏତେ ବଡ଼ ଥିଲା ଯେ ଗୋଟିଏ ପଟେ ଥାଇ ଗହୀର ଆର ପଟକୁ ଚାହିଁଲେ ସେପଟର ଗାଆଁ ସବୁ ଝାପ୍‌ସା ହୋଇ ଦିଶୁଥିଲା । ପ୍ରାୟ ତିନିଚାରିଖଣ୍ଡ ଗାଆଁ ଭିତରୁ କୌଣସି ଗୋଟିଏ ଗାଆଁରେ ଖୋଜିଲେ କୋଠାଘରଟାଏ ଦେଖିବା ସ୍ୱପ୍ନ ଥିଲା । ଅଧିକାଂଶ ଗାଆଁରେ ସବୁଗୁଡ଼ିକ ଘର ଚାଳଘର ହୋଇଥିବାରୁ ନିଆଁ ଥିଲା ପ୍ରଧାନ ବିପଦ । ଗାଆଁର ଗୋଟିଏ ମୁଣ୍ଡରେ ନିଆଁ ଲାଗିଲେ ଯଦି ପ୍ରବଳ ପବନ ହେଲା, ତେବେ ଆରମୁଣ୍ଡ ପର୍ଯ୍ୟନ୍ତ ଘର ସବୁ ରକ୍ଷା ପାଇବା ଅସମ୍ଭବ ହୋଇ ପଡୁଥିଲା । ଆଜିକାଲି ଗହୀର ମଝିରେ ରାସ୍ତା ଯାଇ ରାସ୍ତା କଡ଼ରେ ଲୋକେ ଘରଦ୍ୱାର କରିଗଲେଣି । ଆଉ ବଡ଼ ବଡ଼ ଗହୀର ନାହିଁ ।

ସେତେବେଳେ ଗାଆଁର ଅଧିକାଂଶ ଲୋକ ଦରିଦ୍ର ଥିଲେ । ବିଶେଷ କରି ହରିଜନ ଓ ଆଦିବାସୀ ଲୋକେ ଥିଲେ ଅତି ଗରିବ । ମୂଳ ମଜୁରୀ ହାର ଖୁବ୍ କମ୍

ଥିଲା । ଗୋଟିଏ ଟଙ୍କାକୁ ଷୋଳ ଅଣା ଥିଲା । ଜଣେ ଲୋକ ଦିନସାରା କାମ କରି ମାତ୍ର ଏକଅଣା ମଜୁରୀ ପାଉଥିଲା । ମୋତେ ଦଶବର୍ଷ ବୟସ ହେବା ଭିତରେ ମୂଲିଆ ମଜୁରୀ ଏକ ଅଣାରୁ, ଛଅ ପଇସା, ତାପରେ ଦୁଇଅଣା ଓ ଚାରିଅଣା ପର୍ଯ୍ୟନ୍ତ ବଢ଼ିଥିଲା । ଏତିକି ମଜୁରୀ ପାଇ ଲୋକେ ପେଟପୂରା ଖାଇବାକୁ ପାଉ ନଥିଲେ । ଗୋଟିଏ ଗୋଟିଏ ପରିବାର ଓଳିଏ ଖାଇଲେ ତିନିବେଳା ଉପବାସ ରହୁଥିଲେ । ଆମ ଠାକୁର ପୂଝାରୀ ମାସକୁ ଦୁଇଟଙ୍କା ଦରମା ପାଉଥିଲେ ଓ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକଙ୍କ ମାସିକ ଦରମା ଥିଲା ମାତ୍ର ପାଞ୍ଚଟଙ୍କା ।

ବର୍ଷକୁ ଦୁଇଥର ଆମ କଚେରୀ ଘରେ ପ୍ରଜାମାନଙ୍କର ଭିଡ଼ ହୁଏ। ସେମାନେ ଖଜଣା ଦେବାକୁ ଆସନ୍ତି । ଜଗୁଗୁମାସ୍ତା, ରାମଗୁମାସ୍ତା ଓ ବିନଗୁମାସ୍ତା ବସି ଲୋକଙ୍କ ଠାରୁ ସେମାନଙ୍କ ଭୂସମ୍ପତ୍ତି ଉପରେ ଧାର୍ଯ୍ୟ ଟିକସ ବା ଖଜଣା ଅସୁଲ କରନ୍ତି । ଏହି ସମୟକୁ 'ନାଟବନ୍ଦୀ' କୁହାଯାଉଥିଲା । ଆଳିପିଙ୍ଗଳ ଓ ପାଖ ଗାଆଁର ଲୋକମାନେ କଚେରୀଘରକୁ ଆସି ଖଜଣା ଦିଅନ୍ତି । ଦୂରଦୂରାନ୍ତ ମୌଜାମାନଙ୍କୁ ଗୁମାସ୍ତାମାନେ ଯାଇ ଆସି ନଥିବା ଲୋକଙ୍କଠାରୁ ଖଜଣା ଆଦାୟ କରନ୍ତି । ବର୍ଷର ଦୁଇଟି ନିର୍ଦ୍ଦିଷ୍ଟ ତାରିଖରେ ଆଦାୟ ହୋଇଥିବା ଖଜଣା ସବୁ ସରକାରୀ ଟ୍ରେଜେରୀରେ ଜମା ଦିଆଯାଏ । କାର୍ତ୍ତିକ ଆରମ୍ଭରେ ପ୍ରଥମ କିସ୍ତିରେ ସବୁ ପଇଠ ନହୋଇ ପାରିଲେ ଦୋଳ ପୂର୍ବରୁ ବାକୀତକ ଦାଖଲ ହୁଏ । ଏଥିରେ ତ୍ରୁଟି ହେଲେ ଜମିଦାରୀ ନିଲାମ ହୋଇଯିବା କଥା ।

ମୁଁ ପାଞ୍ଚ ଛଅ ବର୍ଷର ହେଲା ବେଳକୁ ନାଟବନ୍ଦୀ ବେଳେ କେତେବେଳେ କେମିତି କଚେରୀ ଘରକୁ ପଶିଯାଏ । ଯେଉଁ ପ୍ରଜାମାନେ ଖଜଣା ଦେବାକୁ ବସିଥାନ୍ତି, ସେମାନଙ୍କ ଭିତରେ ଚନ୍ଦବୁଢ଼ୀ, ବେଙ୍ଗମାଆ ବା ବେଲାନାଥଙ୍କ ପରି ଗରିବ ଲୋକଙ୍କୁ ଦେଖିଲେ ଗୁମାସ୍ତାଙ୍କୁ ଡାକି ଏମାନଙ୍କଠାରୁ ଖଜଣା ନ ଦେବାକୁ କହେ । ଜଗୁ ଗୁମାସ୍ତା ତାଙ୍କ ଚଷମା ଟେକି ମୋ ଆଡ଼କୁ ଚାହିଁ କହନ୍ତି ଠିକ୍ ଅଛି! ତମ କଥା ମୁଁ ଶୁଣିଲି । ଏଥର ତୁମେ ଘରକୁ ଯାଅ । ମୁଁ ସେମାନଙ୍କଠାରୁ ଖଜଣା ନେବି ନାହିଁ । ମାତ୍ର ସତ କି ମିଛ ଜାଣିବା ପାଇଁ ସେମାନେ ବସି ରହନ୍ତି । ତେଣୁ ଗୁମାସ୍ତାଏ କହନ୍ତି; ଆଉ କାହିଁକି ବସିଲ? ଛୁଆ ଜମିଦାର ତ ତୁମ ଖଜଣା ଛାଡ଼ କରିଦେଲେ । ଏଥର ଘରକୁ ଯାଅ । ଚନ୍ଦବୁଢ଼ୀ ମୋତେ କାଖେଇ ଧରି ଆଣି ଘରେ ଛାଡ଼ି ଦେଇ ବହୁତ ଆଶୀର୍ବାଦ କରେ । ବେଙ୍ଗ ମାଆ କହେ, ମୋ ବାବୁର କୋଟି ପରମାୟୁ ହେଉ ।

ଗୁମାସ୍ତାଏ ଘର ଭିତରକୁ ପଶି ଆସି ମାଆକୁ କହନ୍ତି ଖୁଡ଼ି! ବୁଢୁବାବୁ ମୋତେ ଖଜଣା ଆଦାୟ କରାଇ ଦେବେ ନାହିଁ । ଏତେ ଲୋକଙ୍କ ଭିତରେ ଜଣକୁ ଛାଡ଼

କଲେ ଅନ୍ୟମାନେ ମଧ୍ୟ ନାନା ଅଭାବ ଅସୁବିଧା ଦେଖାଇ ଖଜଣା ଦେବେ ନାହିଁ । ମାଆ କହେ; ହଉ, ତା କଥାଟା ରଖ । ଦୁଃଖୀ ଦରିଦ୍ରଙ୍କୁ ଦୟା କଲେ ସେମାନେ କଲ୍ୟାଣ କରିବେ । ଗୁମାସ୍ତା କହନ୍ତି; ଏଣିକି ତମ ଇଚ୍ଛା ! ଜମି ବିକ୍ରୀ ହୋଇ ଖଜଣା ପଇଠ ହେଉଛି । ମୋର ଏଥିରେ ଯାଏ ଆସେ କେତେ ?

ମୋ ବାପା ରାମବାବୁ ମଧ୍ୟ ବହୁ ଲୋକଙ୍କର ଖଜଣା ଛାଡ଼ କରିବାର ମୁଁ ଦେଖିଛି । ପ୍ରତିବର୍ଷ ଜମି ବିକ୍ରୀ ହୋଇ ଖଜଣା ନିଅଣ୍ଟ ଭରଣା କରାଯାଏ । ଏମିତି କିଛି ବର୍ଷ ଚାଲିବା ପରେ ଦେଶ ସ୍ୱାଧୀନ ହେଲା । ତାପରେ ଜମିଦାରୀ ଉଠିଗଲା ।

ସେ କାଳରେ ଶିଶୁ ଜନ୍ମ ହାର ଯେତିକି ଅଧିକ ଥିଲା ମୃତ୍ୟୁ ହାର ମଧ୍ୟ ସେତିକି ଥିଲା କହିଲେ ଭୁଲ୍ ହେବନି । ବହୁ ପରିବାରରେ ଅତି କମ୍‌ରେ ତିନି ଚାରିଟି ପିଲା ଜନ୍ମ ହେଉଥିଲେ। ଗୋଟିଏ ଗୋଟିଏ ପରିବାରରେ ଦଶରୁ ପନ୍ଦରଟି ପିଲା ହେବାର ମଧ୍ୟ ମୁଁ ଦେଖିଛି। ହେଲେ, ପ୍ରତିବର୍ଷ ହଇଜା, ବସନ୍ତ, ହାଡ଼ଫୁଟି, ମିଳିମିଳା ଆଦି ସଂକ୍ରାମକ ରୋଗରେ ପଡ଼ି ବହୁ ଶିଶୁଙ୍କର ମୃତ୍ୟୁ ହେଉଥିଲା । ହଇଜା, ବା ବସନ୍ତ ରୋଗ ଆସିଲେ ଗାଆଁସବୁ ପଦା ହୋଇ ଯାଉଥିଲା । ଗୋଟିଏ ଗୋଟିଏ ପରିବାର ଏହି ରୋଗରେ ପୁରା ନିଶ୍ଚିହ୍ନ ହୋଇଯାଉଥିଲେ । ବସନ୍ତ ରୋଗରେ ଲୋକମାନଙ୍କର ମୁହଁ କଦାକାର ହୋଇ ଯାଉଥିଲା । ଅନେକ ଲୋକଙ୍କ ଆଖିରେ ବସନ୍ତ ହୋଇ ଆଖି ନଷ୍ଟ ହୋଇ ଯାଉଥିଲା । ମ୍ୟାଲେରିଆ, ବାତଜ୍ୱର, ପାଳିଜ୍ୱର, ଯକ୍ଷ୍ମା ଓ କୁଷ୍ଠ ଆଦି ରୋଗ ପ୍ରତି ଗାଆଁରେ ଥିଲା। ଟାଇଫଏଡ଼, ପିଲୁହା, କୁଷ୍ଠ ଓ ଯକ୍ଷ୍ମା ଆଦି ରୋଗ ପାଇଁ ଔଷଧ ନଥିଲା । ଏସବୁ ରୋଗ ଆରମ୍ଭ ହେଲେ ଆରୋଗ୍ୟ ହେବା ଅତ୍ୟନ୍ତ ଦୁଃସାଧ୍ୟ ଥିଲା । ଜନ୍ମ ତୁଳନାରେ ମୃତ୍ୟୁହାର ବଢ଼ିଯାଉଥିଲା ।

ଗାଆଁଗଣ୍ଡାରେ କେବେଳ ଆୟୁର୍ବେଦ ବା କବିରାଜି ଚିକିତ୍ସାର ସୁବିଧା ଥିଲା । ଏଲୋପାଥି ବା ହୋମିଓପାଥିକ୍ ଚିକିତ୍ସାର ସୁବିଧା ସହଜସାଧ୍ୟ ନଥିଲା । ଓଡ଼ିଶାରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଏକମାତ୍ର ଏଲୋପାଥି ଚିକିତ୍ସାଶାସ୍ତ୍ର ଶିକ୍ଷାଦାନକାରୀ ମହାବିଦ୍ୟାଳୟ ଥିଲା ଓ ସେଠାରେ ଏଲ୍.ଏମ.ପି. ଡିପ୍ଲୋମା ପାଇଁ ଖୁବ୍ କମ୍ ସଂଖ୍ୟକ ଛାତ୍ର ଅଧ୍ୟୟନ କରୁଥିଲେ । ସେତେବେଳେ ଜଗତସିଂହପୁରରେ ଗୋଟିଏ ସରକାରୀ ଡାକ୍ତରଖାନା ଥିଲା । ସେଠି ଜଣେ ଏଲ୍.ଏମ୍.ପି. ଡାକ୍ତର ଥାଆନ୍ତି । ଲୋକସଂଖ୍ୟା ତୁଳନାରେ ଏହି ଡାକ୍ତରଖାନାଟି ସମୁଦ୍ରକୁ ଶଙ୍ଖେ ପଣା ପରି ଥିଲା । ଅଧିକାଂଶ ଲୋକ କବିରାଜି ଓ ହୋମିଓପାଥି ଚିକିତ୍ସାର ସାହାଯ୍ୟ ନେଉଥିଲେ । ଏବେ ଜଗତସିଂହପୁର ଡାକ୍ତରଖାନା ଖୁବ୍ ବଢ଼ିଯାଇଛି । ଏହା ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍‌ର ଏକ ଶାଖା ଭାବେ କାର୍ଯ୍ୟ କରୁଛି । କଟକରେ ଥିବା ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ

କଲେଜ ପରି ସେତେବେଳେ ଓଡ଼ିଶାରେ ଆୟୁର୍ବେଦ ବା ହୋମିଓପାଥି ଶିକ୍ଷା ଦେବାପାଇଁ କୌଣସି ଶିକ୍ଷାନୁଷ୍ଠାନ ନଥିଲା । ତେଣୁ ସାଧାରଣ ଲୋକେ ଚିକିତ୍ସା ସୁଯୋଗ ପାଇପାରୁନଥିଲେ। ରୋଗବ୍ୟାଧିରେ ପଡ଼ିଲେ ଗରିବ ଲୋକେ ଔଷଧ ଆଣିବା କଥା ଦୂରେ ଥାଉ ଚିନି ବା ମିଶ୍ରି ପାଣି ଟିକେ ମଧ୍ୟ ପିଇବାକୁ ପାଉ ନ ଥିଲେ। ଆଜିକାଲି ଭଳି, କମଳା, ଅଙ୍ଗୁର, ସେଓ, ଆଦି ଫଳ କିଣିବାକୁ ସୁବିଧା ନଥିଲା । ଗାଆଁ ଲୋକେ ଏସବୁ ଫଳ ଦେଖିବାକୁ ପାଉ ନ ଥିଲେ । କେବଳ କଟକ ବା ପୁରୀ ଭଳି ସହରମାନଙ୍କରେ ଏହି ଫଳସବୁ ମିଳୁଥିଲା । ସଞ୍ଜ ହେଲେ ଲୋକେ ଡିବି ବା ଲଣ୍ଠନ ଜାଳିବା ପାଇଁ କିରୋସିନ୍ କିଣିବାକୁ ପାଉନଥିଲେ । ଚିନି, କିରୋସିନ୍, ମିଶ୍ରି, ଗହମ ଓ ମଇଦା ଆଦି ସେତେବେଳେ କଣ୍ଟ୍ରୋଲ୍ ସାମଗ୍ରୀ ଥିଲା । ଏସବୁ ଜିନିଷ ପାଇବା ଲାଗି ପରିମିଟ୍ କରିବାକୁ ପଡୁଥିଲା । ତେଣୁ ଗରିବ ଲୋକଙ୍କ ପକ୍ଷରେ ଏସବୁ ଜିନିଷ ପାଇବା ଅସମ୍ଭବ ଥିଲା । ରୋଗ ବ୍ୟାଧିରେ ପଡ଼ି ଚିନିପାଣିରେ ଲେମ୍ବୁ ଚିପୁଡ଼ି ସର୍‌ବତ୍ ଟିକେ ପିଇବାକୁ ପାଇବା ସାଧାରଣ ଲୋକଙ୍କ ପକ୍ଷରେ ଅତି ସୌଭାଗ୍ୟର କଥା ଥିଲା।

ଚାରିବର୍ଷ ବୟସରେ ଆମ ଗାଆଁ ପ୍ରାଥମିକ ବିଦ୍ୟାଳୟରେ ମୋର ନାଆଁ ଲେଖା ହେଲା । ଏ ଅଞ୍ଚଳରେ ପଚିଶ ତିରିଶ ଖଣ୍ଡ ଗାଆଁ ଭିତରେ ଏହା ଥିଲା ଏକମାତ୍ର ପ୍ରାଥମିକ ବିଦ୍ୟାଳୟ। ପୂର୍ବରୁ ଏହା ଏକ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଥିଲା। ମୋର ଜେଜେ ନାରୟଣ ପ୍ରସାଦ ମହାନ୍ତି ଡେପୁଟୀ ଇନସ୍ପେକ୍ଟର ଥିଲାବେଳେ ୧୯୦୫ ମସିହାରେ ଏହାକୁ ପ୍ରାଥମିକ ବିଦ୍ୟାଳୟରେ ପରିଣତ କରାଇଥିଲେ। ତେଣୁ ଏହା ଥିଲା ଜଗତସିଂହପୁର ଥାନାର ସର୍ବପୁରାତନ ପ୍ରାଥମିକ ବିଦ୍ୟାଳୟ । ମୁଁ ବିଦ୍ୟାଳୟରେ ନାମ ଲେଖାଇଲା ବେଳକୁ ଶ୍ରୀ ବାସୁଦେବ ପତି ନାମକ ଜଣେ ସଂସ୍କୃତଜ୍ଞ ପଣ୍ଡିତ ଥିଲେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ପଞ୍ଚମ ଶ୍ରେଣୀ ଛାତ୍ରଛାତ୍ରୀଙ୍କୁ ପଢ଼ାଇଲାବେଳେ ଭୂଗୋଳଶିକ୍ଷକ ନେତ୍ରାନନ୍ଦ ପତି ପୃଥିବୀର ଆକାର କମଳାଲେମ୍ବୁ ପରି ଗୋଲ୍ ବୋଲି ପଢ଼ାଇଲେ। ଏହା ଶୁଣି ଆମ ସାହିର ଜଣେ ମୋର ସମ୍ପର୍କୀୟ ଦାଦା ଯାଇ ପ୍ରଧାନଶିକ୍ଷକଙ୍କୁ ଏଭଳି ଭୁଲ୍ ଶିକ୍ଷା ନ ଦେବା ପାଇଁ ତାଗିଦ୍ କଲେ । ସେ କହିଲେ ପୃଥିବୀଟା ଯଦି ଗୋଲ୍ ହୋଇଥାନ୍ତା, ତାହେଲେ ସର୍ପରାଜ ବାସୁକୀ କିପରି ତାକୁ ଧରି ରଖିଥାନ୍ତେ ? ସମଗ୍ର ସଂସାରଟା ଜଳାର୍ଣ୍ଣବ ହୋଇଛି । ଜଳ ଉପରେ ଧରିତ୍ରୀ ଓ ପୃଥବୀ ଉପରେ ଆକାଶ ବା ସ୍ୱର୍ଗଲୋକ ଅଛି । ତେଣୁ ତୁମେ ପିଲାଙ୍କୁ ଏଭଳି ଭ୍ରମାତ୍ମକ ଶିକ୍ଷା ଦେବା ଠିକ୍ ନୁହେଁ । ସେ ଯେପରି ରାଗିକରି ଯାଇଥିଲେ କୌଣସି ଶିକ୍ଷକ ତାଙ୍କୁ ବୁଝାଇବାକୁ ସାହସ କଲେ ନାହିଁ । ସେତେବେଳେ ଗାଆଁ ଗହଳିରେ ଅଧିକାଂଶ ଲୋକଙ୍କର ଏହିଭଳି ଧାରଣା ଥିଲା ।

ବିଦ୍ୟାଳୟର ଦ୍ୱିତୀୟ ଶିକ୍ଷକ ଶ୍ରୀ ପଦ୍ମଚରଣ ଜେନା ଆମ ଘରେ ରହି ମୋତେ ଟିଉସନ୍ କରୁଥିଲେ । ବାସୁମାଷ୍ଟ୍ରଙ୍କ ପରେ ସେ ହେଲେ ଆମ ବିଦ୍ୟାଳୟର ପ୍ରଧାନ ଶିକ୍ଷକ। ଶିକ୍ଷକତା କରିବା ସାଙ୍ଗକୁ ସେ ଚିନି, କିରାସିନି, ଅଟା, ମଇଦା ଆଦି ବାଣ୍ଟିବା ଦାୟିତ୍ୱରେ ରହି ଲୋକଙ୍କୁ ଏ ସବୁ କିଣିବାକୁ ପରମିଟ୍ ଦେଉଥିଲେ । ତାଙ୍କ ଶିକ୍ଷକତ୍ୱରେ ମୁଁ ଉଚ୍ଚ ପ୍ରାଥମିକ ଶିକ୍ଷା ସମାପ୍ତ କଲି ।

# ସ୍ୱାଧୀନତା ସଂଗ୍ରାମର ବ୍ୟଥା

ରେଭେନ୍ସା କଲେଜିଏଟ ସ୍କୁଲରୁ ମୋ ଜେଜେ ନାରାୟଣବାବୁଙ୍କର ଓଡ଼ିଶା ଡିଭିଜନ ଛାଡ଼ି ପାଟନା ବଦଳି ହେବା ପୂର୍ବରୁ ଏର୍ସମା ଥାନାର ମାଧବାନନ୍ଦ ନାୟକ ଜଣେ ବିଦ୍ୟାଳୟ ପରିଦର୍ଶକ ଭାବେ ନୂଆକରି ଚାକିରୀରେ ଯୋଗ ଦେଇଥାନ୍ତି । ତେଲେଙ୍ଗା ବଜାର ବାଙ୍ଗିସାହିରେ ତାଙ୍କର ବସା । ସେ ନାରାୟଣବାବୁଙ୍କୁ ମଝିରେ ମଝିରେ ଯାଇ ଭେଟୁଥିଲେ । ଶିକ୍ଷାବିଭାଗର ଜଣେ ଅଫିସର ଭାବେ ଆମ ପରିବାର ସହିତ ତାଙ୍କର ଜଣାଶୁଣା ଥିବାରୁ ତାଙ୍କ ପୁଅ ଗୌରୀଶ୍ୟାମ ସହିତ ମୋର ବଡ଼ ଭଉଣୀ ପ୍ରମିଳାଙ୍କର ବିବାହ ସମ୍ପନ୍ନ ହେଲା । ସେତେବେଳକୁ ଗୌରୀଶ୍ୟାମବାବୁ ସ୍ୱାଧୀନତା ସଂଗ୍ରାମରେ ମାତି ଥାଆନ୍ତି । ସମଗ୍ର ଭାରତବର୍ଷରେ ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିବା ଲାଗି ଆନ୍ଦୋଳନ ଚାଲିଥାଏ । ଏଥିରେ ନେତୃତ୍ୱ ନେଇଥାନ୍ତି ମାହାତ୍ମା ଗାନ୍ଧୀ । ଏରସମା ପରି ଓଡ଼ିଶାର ଏକ ଅନ୍ଧାରୀ ମୂଲକରେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନର ବହ୍ନି ହୁତ୍‌ହୁତ୍ ହୋଇ ଜଳୁଥାଏ । ଏହି ବହ୍ନି ଜଳାଇବାର ମଶାଲ ଧରି ଗାଆଁକୁ ଗାଆଁ ବୁଲୁଥାଆନ୍ତି ଗୌରୀଶ୍ୟାମ । ଗାଆଁକୁ ଗାଆଁ ବୁଲି ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିବା ଓ ଅଧିକରୁ ଅଧିକ ଯୁବକମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାକୁ ପ୍ରବର୍ତ୍ତାଇବା ପାଇଁ ଲାଗି ପଡ଼ିଥିଲେ ସେ । ପିଲାଟି ଦିନରୁ ଗାନ୍ଧିଜୀଙ୍କ ଆଦର୍ଶରେ ଖଦଡ଼ ପିନ୍ଧି, ସୂତାକାଟି ସ୍ୱାଧୀନତାର ବାର୍ତ୍ତା ପ୍ରଚାର କାର୍ଯ୍ୟରେ ସେ ଲାଗିପଡ଼ିଥାନ୍ତି । ବିବାହ ପ୍ରତି ତାଙ୍କର ଆଦୌ ଆକର୍ଷଣ ନଥିଲା । ମାତ୍ର ସେ ମାଟ୍ରିକ୍ ପାଶ୍ କରିବା ପୂର୍ବରୁ ତାଙ୍କ ପିତାଙ୍କର ଦେହାନ୍ତ ହେବାରୁ ଘରର ସମସ୍ତ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ବଡ଼ବାପା ଦୁର୍ଗାଚରଣ ବାବୁଙ୍କର ଚାପରେ ସେ ବିବାହ କରିବାକୁ ରାଜି ହେଲେ । ବିବାହ ପରେ ମଧ୍ୟ ସ୍ୱାଧୀନତା ସଂଗ୍ରାମ କାର୍ଯ୍ୟରେ ଲାଗିପଡ଼ିଥିଲେ ସେ ।

ତାଙ୍କ ଗାଆଁର ସମବୟସ୍କ ଯୁବକ ମାନଙ୍କୁ ନେଇ ସେ ଗଢ଼ିଥିଲେ ଶାନ୍ତି ସେବକ ସମିତି । ପାଖ ଆଖ ଗାଆଁ ମାନଙ୍କରେ ମଧ୍ୟ ଯୁବଗୋଷ୍ଠୀଙ୍କୁ ଏକତ୍ରିତ କରି ସ୍ୱାଧୀନତା ସଂଗ୍ରାମରେ ନିୟୋଜିତ କରିବାରେ ସେ ସଫଳକାମ ହୋଇଥିଲେ । ୧୯୪୨

ମସିହା ଅଗଷ୍ଟ ମାସ ୯ତାରିଖରେ ଜାତୀୟ କଂଗ୍ରେସ ପକ୍ଷରୁ ଅସହଯୋଗ ଆନ୍ଦୋଳନ ଡାକରା ଦିଆଗଲା । କଂଗ୍ରେସର ତୁଙ୍ଗ ନେତା ମହାତ୍ମା ଗାନ୍ଧି ଭାରତୀୟମାନଙ୍କୁ "କର ଅବା ମର" ଆହ୍ୱାନ ଦେଲେ । ସେ କାଳରେ ଏରସମା ଅଞ୍ଚଳ ଅତ୍ୟନ୍ତ ଦୁର୍ଗମ ଥିଲା । କଟକ ଠାରୁ ତିର୍ତ୍ତୋଲ ପର୍ଯ୍ୟନ୍ତ ଥିଲା କଚ୍ଚା ସଡ଼କ । ମାତ୍ର ତିର୍ତ୍ତୋଲ ଠାରୁ ତଳକୁ ରାସ୍ତା ଘାଟର ସୁବିଧା ନଥିଲା । ପାରାଦ୍ୱୀପ ଥିଲା ସବୁଠାରୁ ଦୁର୍ଗମ ସ୍ଥାନ । ତିର୍ତ୍ତୋଲ ଠାରୁ ପ୍ରାୟ ଦଶ ମାଇଲ ଦୂରରେ ଥିଲା ତିରଣ ଡାକବଙ୍ଗଳା । ତିରଣର ଅନ୍ୟନାମ ମଧ୍ୟ ଜଗନ୍ନାଥ ପୁର । ସରକାରୀ ଲୋକେ ଏରସମା ଗଲେ ଏହି ତିରଣ ଡାକବଙ୍ଗଳରେ ରହୁଥିଲେ ।

ଇଂରେଜ ସରକାର ବିରୁଦ୍ଧରେ ଆନ୍ଦୋଳନ ପରିପ୍ରେକ୍ଷୀରେ ଶାନ୍ତି ସେବକ ସମିତିର ସଦସ୍ୟ ମାନଙ୍କୁ ନେଇ ସେପ୍ଟେମ୍ବର ମାସ ୨ ତାରିଖ ରାତିରେ ଗୌରୀଶ୍ୟାମ ଯାଇ ସେହି ଡାକବଙ୍ଗଳରେ ନିଆଁ ଲଗାଇ ପୋଡ଼ିଦେଲେ । ଡାକବଙ୍ଗଳାକୁ ଲଗାଇ ମୁସଲମାନ ବସ୍ତି ଅଛି । ସେ କାଳରେ ଇଂରେଜ ସରକାର ମୁସଲମାନ ମାନଙ୍କୁ ବିଶ୍ୱାସ କରୁଥିବାରୁ ଡାକବଙ୍ଗଳା ପୋଡ଼ି ପରେ ପୋଲିସ୍ ପକ୍ଷରୁ କୌଣସି ତତ୍ପରତା ପ୍ରକାଶ ପାଇଲା ନାହିଁ । ଏହା ଦେଖି ଶାନ୍ତି ସେବକ ସମିତିର ସଭ୍ୟମାନେ ଆଶ୍ୱସ୍ତ ହେଲେ । ସେମାନଙ୍କର ସାହସ ଅନେକ ବଢ଼ିଗଲା । କଥା ହେଲା, ଏହି ସପ୍ତାହ ମଧ୍ୟରେ ଏରସମା ଥାନା ପୋଡ଼ାହେବ । ଏଥିଲାଗି ଶାନ୍ତି ସେବକ ସମିତିର ସଭ୍ୟମାନେ ଗାଆଁକୁ ଗାଆଁ ବୁଲି ଯୁବକମାନଙ୍କୁ ଏକଯୁଟ କରିବାରେ ଲାଗିଲେ । କଥାହେଲା, ସେପ୍ଟେମ୍ବର ଛଅ ତାରିଖ ସକାଳୁ ଏରସମା ଥାନା ପୋଡ଼ିଦିଆଯିବ । ତେଣୁ ସେପ୍ଟେମ୍ବର ୫ ତାରିଖ ସନ୍ଧ୍ୟାରେ ଶାନ୍ତିସେବକ ସମିତିର ସଭ୍ୟମାନେ ପାଖ ଗାଆଁ ମାନଙ୍କୁ ଯାଇ ଯୁବକମାନଙ୍କୁ ଏରସମା ଥାନାପଡ଼ିଆରେ ନେଇ ଏକତ୍ରିତ କରିବାକୁ ଲାଗିପଡ଼ିଲେ । ଗୌରୀଶ୍ୟାମଙ୍କର ଟ୍ୱକ୍ଷ ଗାଆଁ ପଏଦାରେ ଖମାର ଘର ଥାଏ । ସେ ଗାଆଁର ବହୁ ପରିବାର ତାଙ୍କ ବିଲରେ ଖଟି କୁଟୁମ୍ବ ପୋଷନ୍ତି । ତେଣୁ ଗୌରୀଶ୍ୟାମ ପଏଦା ଯାଇ ଗାଆଁର ଅଧିକାଂଶ ଯୁବକଙ୍କୁ ଏକତ୍ରିତ କରି ସେମାନଙ୍କୁ ଧରି ପାଖ ଗାଆଁକୁ ଗଲେ । ପ୍ରତି ଗାଆଁରୁ ଦଳ ଦଳ ଯୁବକ ଠେଙ୍ଗାବାଡ଼ି, ଲଣ୍ଠନ ଆଦି ହାତରେ ଧରି ଏରସମା ଥାନା ପାଖ ପଡ଼ିଆକୁ ଚାଲିଲେ। ପାହାନ୍ତା ବେଳକୁ ପ୍ରାୟ ସହସ୍ରାଧିକ ଲୋକ ସେ ପଡ଼ିଆରେ ରୁଣ୍ଡ ହୋଇଥିଲେ । ସମସ୍ତଙ୍କୁ ନେଇ ମହାତ୍ମାଗାନ୍ଧିଙ୍କ ଜୟ, ସ୍ୱାଧୀନ ଭାରତ କୀ ଜୟ, ଭାରତମାତା କୀ ଜୟ ଆଦି ନାରା ଦେଇ ଗୌରୀଶ୍ୟାମ ଥାନା ଆଡ଼କୁ ଚାଲିଲେ । ଥାନାରେ ମାତ୍ର ପାଞ୍ଚ ଛଅ ଜଣ କନେଷ୍ଟବଳ ଓ ଥାନାବାବୁ ଏତେ ଲୋକଙ୍କୁ ଦେଖି କୌଣସି ରକମର କାର୍ଯ୍ୟାନୁଷ୍ଠାନ

କରିବାକୁ ସାହସ କଲେ ନାହିଁ । ଗୌରୀଶ୍ୟାମ ଥାନାବାବୁଙ୍କୁ ବିନୟର ସହିତ ପୋଲିସ ଚାକିରୀ ଛାଡ଼ି ସ୍ୱାଧୀନତା ଆନ୍ଦୋଳନର ଝାସ ଦେବାକୁ ଅନୁରୋଧ କରିବା ସମୟରେ ସାଙ୍ଗରେ ଥିବା ଯୁବକମାନେ ଥାନାରେ କିରୋସିନି ଢାଳି ନିଆଁ ଲଗାଇ ଦେଇଥିଲେ । ଏରସମାଥାନା ପୋଡ଼ିଜଳି ପାଉଁଶ ହୋଇଗଲା ।

ସେପ୍ଟେମ୍ବର ୧୦ ତାରିଖ ଦିନ ଗୌରୀଶ୍ୟାମ ଭାଇ ତାଙ୍କ ପଏଦା ଖମାର ଘରେ ତାଙ୍କ କୁଟୁମ୍ବରେ ମରିଥିବା ଜଣେ ସର୍ମ୍ପକୀୟଙ୍କ ଶୁଦ୍ଧିକ୍ରିୟା ସାରି ଖାଇ ବସିଲା ବେଳେ ପୋଲିସ ଯାଇ ତାଙ୍କୁ ଗିରଫ କଲା । ଥାନା ପୋଡ଼ି ଦିନ ରାତିରେ ତାଙ୍କ ଗୋଡ଼ ମୋଡ଼ି ହୋଇ ଫୁଲି ଯାଇଥିବା ଯୋଗୁଁ ତାଙ୍କୁ ଗୋଟିଏ ଶଗଡ଼ରେ ବସାଇ ତିର୍ତ୍ତୋଲ ଥାନାକୁ ନିଆଗଲା । ଥାନାରେ ପେଶାଓ୍ୱାର୍ ଅଞ୍ଚଳର ମିଲିଟାରୀ ପୋଲିସ୍‌ମାନେ ବନ୍ଦୀ ଯୁବକମାନଙ୍କୁ ପ୍ରବଳ ମାଡ଼ ଦେଲେ । ମାତ୍ର ଥାନାବାବୁ ସଂଗ୍ରାମୀ ନେତା ଗୌରୀଶ୍ୟାମଙ୍କୁ ହାଜତରେ ତାଲା ପକାଇ ରଖି ଦେବାରୁ ସେମାନେ ତାଙ୍କୁ ଆକ୍ରମଣ କରି ପାରିଲେ ନାହିଁ । ମାତ୍ର ସନ୍ଧ୍ୟାବେଳେ ପୋଲିସ୍ ଘେରରେ ସମସ୍ତଙ୍କୁ ନେଇ ତିର୍ତ୍ତୋଲ୍ ଲକ୍ ପାଖରେ ବସ୍‌ରେ ବସିବାକୁ ଛାଡ଼ି ଆସିଲା ବେଳେ ଦୁଇଜଣ ମିଲିଟାରୀ ପୋଲିସ୍ ଗୌରୀଶ୍ୟାମଙ୍କ ଉପରେ ବିଧା ଗୋଇଠା ବୃଷ୍ଟି କରିଦେଇଗଲେ । ସେ ଯନ୍ତ୍ରଣାରେ ଛଟପଟ ହୋଇ ତଳେ ପଡ଼ିଯିବା ପରେ ତାଙ୍କ ଛାତି ଉପରେ ଚଢ଼ି ସେମାନେ କୁଦି ଦେଇଗଲେ । ପାଟିରୁ ତାଙ୍କର ଝଲ୍‌କା ଝଲ୍‌କା ରକ୍ତ ବାନ୍ତି ହୋଇଗଲା । ସେ ଆଉ ଉଠିପାରୁ ନଥିଲେ । ପୋଲିସମାନେ ତାଙ୍କୁ ଟେକି ନେଇ ଅନ୍ୟ ବନ୍ଦୀମାନଙ୍କ ସହିତ ବସ୍‌ରେ ବସାଇ ଦେବାପରେ ସମସ୍ତଙ୍କୁ ନେଇ ବସ୍‌ଟି କଟକ ଚାଲିଆସିଲା । ଓ.ଏମ୍.ପି. ବାରାକ୍‌ରେ କିଛି ସମୟ ରହିବାପରେ ରାତି ବାରଟା ବେଳକୁ ସେମାନଙ୍କୁ କୋର୍ଟ ହାଜତକୁ ନିଆଗଲା । ସେତେବେଳକୁ ଗୌରୀଶ୍ୟାମଙ୍କ ଛାତିରେ ଭୀଷଣ ଯନ୍ତ୍ରଣା ହେଉଥାଏ । ରାତି ପାହିବା ପର୍ଯ୍ୟନ୍ତ ସେ ବଞ୍ଚି ପାରିବେ କି ନାହିଁ ସେ ଭରସା ତାଙ୍କର ନଥାଏ । କୋର୍ଟ ହାଜତରେ ସମସ୍ତଙ୍କର ନାମ ଗ୍ରାମ ଠିକଣା ଆଦି ଲେଖାଇ ପାହାନ୍ତା ବେଳକୁ ଜେଲ୍ ହାଜତକୁ ନିଆଗଲା । ତାପରଦିନ ମଧ୍ୟାହ୍ନ ବେଳକୁ ସମସ୍ତଙ୍କୁ କଟକ ଜେଲ୍‌ର ୧୫ ନମ୍ବର ଓ୍ୱାର୍ଡ଼ରେ ନେଇ ରଖାଗଲା । ଗାଆଁରେ ଏସବୁ ଖବର ଠିକ୍ ଭାବେ ଜାଣିବାର କୌଣସି ଉପାୟ ନଥିଲା । ତେଣୁ ଚାରିଆଡ଼େ ଗୁଜବ ହେଲା ଯେ ସେଦିନ ରାତିରେ ଗୌରୀଶ୍ୟାମ ନାୟକଙ୍କୁ ପୋଲିସ୍ ଗୁଳିକରି ମାରିଦେଇଛି ।

ଏପରି ଏକ ଉଡ଼ା ଖବର ଆମ ଗାଆଁରେ ପହଞ୍ଚିବା ପରେ ଆମ ଘରେ କାନ୍ଦ ବୋବାଳି ପଡ଼ିଗଲା । ବାପା, ବୋଉ, ମାଆ ଓ ଦେଇ ଭୋଭୋ କରି କାନ୍ଦିଉଠିଲେ ।

ବୋଉ ମୁଣ୍ଡ ପିଟି କାନ୍ଦିବା ଫଳରେ ତାର ମୁଣ୍ଡ ଫୁଲିଯାଇଥାଏ । ସମସ୍ତଙ୍କ ସହିତ ମିଶି ମୁଁ ମଧ୍ୟ କାନ୍ଦିବାରେ ଲାଗିଲି । ଗାଆଁ ସାରା ଲୋକେ ଆସି ଗଦା ହେଲେ । ଗୁରୁଜେଜେ ଖବର ପାଇ ତାଙ୍କର ଦୁଇ ପୁଅ ଗୌରାଙ୍ଗ ଓ ଅଦ୍ୱୈତ ଦୁଇ ଭାଇଙ୍କୁ ପଠାଇଲେ । ବୋଉକୁ ପ୍ରବୋଧନା ଦେଇ ଗୌରାଙ୍ଗମାମୁଁ କହିଲେ, ନନାଙ୍କୁ ମୁଁ ଏ ବିଷୟରେ ପ୍ରଶ୍ନ ପଚାରିଥିଲି । ସେ ଗଣନା କରି କହିଲେ, ଗୌରୀଶ୍ୟାମ ଜୀବିତ ଅଛି, ତେଣୁ ତା ବିଷୟରେ ଠିକ୍ ଭାବେ ବୁଝି ଆସିବାକୁ ଲୋକ ଆପିଲା ଯାଆନ୍ତୁ ।

ବୋଉ କହିଲା, ଏବେ ମୋ ବଡ଼ଝିଅ ଓ ନାତିଙ୍କ ଅବସ୍ଥା କଅଣ ଥିବ? ଶୀଘ୍ର ସବାରୀ ଗଉଡ଼ ଯାଇ ସେମାନଙ୍କୁ ନେଇ ଆସନ୍ତୁ । ଅତିଶୀଘ୍ର ଝିଅ ଓ ନାତି ଆସି ପହଞ୍ଚିଲେ ଏ ଘରେ ଚୂଲି ଲାଗିବ । ଜ୍ୱାଇଁବାବୁଙ୍କୁ ପୋଲିସ ଗୁଳି କରି ଦେଇଛି ଶୁଣି ଗାଆଁ ସାରା ଲୋକେ ଆହା ଆହା କରୁଥାନ୍ତି ।

ରାତି ପାହାନ୍ତା ସୁଦ୍ଧା ସବାରୀ ଗଉଡ଼ ଲେଉଟାଣି ପଡ଼ିଲେ। ଘରେ ପୁଣି କାନ୍ଦ ବୋବାଳି ପଡ଼ିଲା । ବଡ଼ଅପାକୁ ଧରି ବୋଉ ଓ ମାଆ ଦୁହେଁ ବାହୁନି ଉଠିଲେ । ବାପା, ଦେଇ ଓ ମୁଁ ସଭିଏଁ କାନ୍ଦୁଥାଉ । ସାହିର ସ୍ତ୍ରୀ ଲୋକମାନେ ଧାଇଁଆସି କାନ୍ଦଣା ବନ୍ଦ କରାଇଲେ । ଭଣଜା କୁନାକୁ ସେତେବେଳେ ତିନିବର୍ଷ ବୟସ । ମୋଠାରୁ ସେ ଦଶମାସ ବୟସରେ ସାନ । ଆମେ ଦୁହେଁ ସାଙ୍ଗ ହୋଇଗଲୁ । ମୁଁ ତାକୁ ପଚାରେ ତୋ ବାପା କୁଆଡ଼େ ଗଲେ ? ସେ କହେ ବାପାକୁ ପୁଲିସି ନେଇଗଲା । ଏତିକି ଆମେ ବୁଝୁଥାଉ ।

ବଡ଼ଅପା ଆସି ଗାଧୋଇପାଧୋଇ ମାଆ ସାଙ୍ଗରେ ଗୁରୁଜେଜେଙ୍କୁ ପ୍ରଣାମ କରି ଆସିବାକୁ ଗଲା । ଜେଜେ ତାର ରାଶି ନକ୍ଷତ୍ର ଗଣନା କରି କହିଲେ, ତୋର ସଧବା କୋଷ୍ଠୀ । ତେଣୁ ଗୌରୀଶ୍ୟାମର ଜୀବନ ଉପରେ କୌଣସି ଭୟ ନାହିଁ । ମାତ୍ର ସ୍ୱାମୀସ୍ତ୍ରୀ ଦୁହିଁଙ୍କର ଶନିଦଶା ପଡ଼ିଥିବାରୁ ଈଶ୍ୱର ଆରାଧନା କରିବାକୁ ପଡ଼ିବ। ଇଷ୍ଟଦେବତା ଗୋପାଳଜୀଉଙ୍କ ଠାରେ ପ୍ରତି ଦିନ ଘିଅଦୀପ ବସିଲା । ହନୁମାନ ମହାବୀର ଓ ଠାକୁରାଣୀଙ୍କର ପୂଜା ହେଲା ଓ ଅନ୍ୟ କେତେ ଦେବାଦେବୀ ପୀଠରେ ମଧ୍ୟ ପୂଜା କରାଗଲା ।

ଜ୍ୱାଇଁବାବୁଙ୍କ ଖବର ବୁଝିଆସିବାକୁ ଦୁଇଖଣ୍ଡ ଶଗଡ଼ରେ ସପନିଦାଦା, ଧଡ଼ିଦାଦା ଓ ଜଗୁ ଗୁମାସ୍ତା କଟକ ଗଲେ । କାଳଖ ଜମିଦାରୀରୁ ଆଦାୟ କରାଯାଇଥିବା ସବୁତକ ଖଜଣାଟଙ୍କା ସେମାନଙ୍କୁ ଦିଆଗଲା । ଇତିମଧ୍ୟରେ ଜମି ବିକ୍ରୀ ହୋଇ ସେସବୁ ଖଜଣା ଭରଣା କରାଯିବା କଥା ସ୍ଥିର ହେଲା । ଗୁମାସ୍ତାମାନେ ଲୋକଙ୍କୁ

କହି ବୁଲିଲେ ଯେ, ଜ୍ୱାଇଁବାବୁଙ୍କ ପାଇଁ ଜମିଦାରଙ୍କର ଟଙ୍କା ଦରକାର । ତେଣୁ ଜମିସବୁ ବିକ୍ରୀ ହେବ । ସେସବୁ କିଣିବା ପାଇଁ ପଇସା ଠୁଳ କରିବା ଦରକାର । ଲୋକେ ଧାନମୁଗ ବିକ୍ରିକରି ଶସ୍ତାରେ ଜମି କିଣିବାକୁ ଗୁମାସ୍ତାଙ୍କ ପଛରେ ଧାଇଁଲେ ।

ଚାରି ଛଅଦିନ ପରେ କଟକରୁ ଶଗଡ଼ ଫେରିଲା । ସପନିଦାଦା କହିଲେ, ଗୌରୀଶ୍ୟାମ ସହିତ ଏରସମାର ୭୫ ଜଣ ଜେଲ୍‌ରେ ଅଛନ୍ତି । ସେମାନଙ୍କ ବିରୁଦ୍ଧରେ ବିଭିନ୍ନ ଦଫାରେ ମକଦ୍ଦମା ଦାଏର୍ ହେଲାଣି । ମାତ୍ର ଜ୍ୱାଇଁବାବୁଙ୍କ ବିରୁଦ୍ଧରେ ପୋଲିସ୍ ମାନଙ୍କୁ ନିଆଁରେ ପୋଡ଼ି ମାରିଦେବାର ଉଦ୍ୟମ କରିଥିବା ଦଫା ଅତି ଗୁରୁତର । ମଣିଷ ମାରିଦବା ଯାହା କାହାକୁ ମାରିବା ପାଇଁ ଉଦ୍ୟମ କରିବା ମଧ୍ୟ ସେଇଆ । ତେଣୁ ତାଙ୍କୁ ଫାଶୀ ବା କଳାପାଣି ପାରି ହେବାର ଦଣ୍ଡ ମିଳିବା ସମ୍ଭାବନା ଅଛି । ଫାଶୀ ପାଇବା କିଛି ବିଚିତ୍ର କଥା ନୁହେଁ । କଳାପାଣି ପାର ହୋଇ ଆଣ୍ଡାମାନ ଜେଲ୍‌କୁ ଗଲେ ମରିବା ଯାଏଁ ପଶୁ ଜନ୍ତୁ ପରି ପିଞ୍ଜରା ଭିତରେ ପଶି ବଞ୍ଚିବାକୁ ହେବ ।  ସେଠୁ ଉଦ୍ଧୁରିବା ଅସମ୍ଭବ । ଭଲ ଭଲ ଓକିଲ ଦେଇ ମକଦ୍ଦମା ଲଢ଼ିବାକୁ ହେବ । ଦରକାର ପଡ଼ିଲେ କଲିକତା ହାଇକୋର୍ଟରେ ଅପିଲ କରିବାକୁ ପଡ଼ିବ ।

ଏସବୁ ଖବର ଶୁଣି ଘରେ ପୁଣି କାନ୍ଦ ବୋବାଳି ଆରମ୍ଭ ହେଲା । ଗାଆଁ ସାରା ଲୋକେ ନାନାକଥା ଭୁଟୁଭାଟ୍ ହେଲେ । ଗାଆଁର ମୁରବୀ ସ୍ଥାନୀୟ ଲୋକେ ପରାମର୍ଶ ଦେଲେ ଯେ, ଜ୍ୱାଇଁବାବୁଙ୍କ ନାମରେ ଯେଉଁ ମକଦ୍ଦମା ହେବ ସେଥିରେ ନାମୀ ଓକିଲମାନଙ୍କୁ ଲଢ଼ାଇଲେ ଏସବୁ ଦଣ୍ଡରୁ ରକ୍ଷା ମିଳିପାରେ। କଟକରେ କିଏ ନାମଜାଦା ଓକିଲ ସେକଥା ବୁଝିବା ଦରକାର । ତା ସାଙ୍ଗକୁ କଲିକତାରୁ ମଧ୍ୟ ନାମୀ ଓକିଲଙ୍କୁ ଆଣି ମକଦ୍ଦମା ଲଢ଼ି ହେବ । ତେବେ ଏସବୁ ବୁଝିବା ପାଇଁ ବାବୁ ନିଜେ କଟକ ଯାଆନ୍ତୁ ।

ସବୁଠୁଁ ବଡ଼ କଥା ହେଲା ଜେଜେଙ୍କର ଅନେକ ଛାତ୍ର ଏବେ ବଡ଼ ବଡ଼ ହାକିମ ଏବଂ ଓକିଲ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ କେତେ ଜଣ ମଧ୍ୟ ବାପାଙ୍କ ସାଙ୍ଗରେ ପାଠ ପଢୁଥିଲେ । ତେଣୁ କଥା ଠିକ୍ ହେଲା, ସମସ୍ତ ପରିବାର କଟକ ଯାଇ ଜ୍ୱାଇଁବାବୁଙ୍କୁ ଦେଖିବା ସହିତ ମକଦ୍ଦମା ଲଢ଼ିବା ବିଷୟରେ ଚେଷ୍ଟା କରାଯିବ । ତେବେ ଏସବୁ କାମ ମୂଳରେ ଅର୍ଥ ବିନିଯୋଗ କରିବା କଥା ଆଗ । ସବୁ ଗୁମାସ୍ତା ମାନଙ୍କୁ ଡାକି ଟଙ୍କା ଯୋଗାଡ଼ କରିବାକୁ କୁହାଗଲା । ନାଟି କାଳଖ ଦାୟିତ୍ୱରେ ଥିବା ରାମଗୁମାସ୍ତା କହିଲେ, ଏବେ କଟକ ଯାଇ ଓକିଲ ମୁକ୍ତାର ହାକିମ ମାନଙ୍କୁ ଭେଟିବା ପାଇଁ ଯେତିକି ଟଙ୍କା ଦରକାର ସେତକ ଜମି ବିକ୍ରୀ କରି ଟଙ୍କା ଯୋଗାଡ଼

ହେଉ। ତାପରେ ମକଦ୍ଦମା ଚାଲିଲେ କଟକ କିମ୍ବା କଲିକତା ଯେ କୌଣସି ଜାଗାରୁ ନାମଜାଦା ଓକିଲଙ୍କୁ ଲଗାଇବାକୁ ଯେତେଟଙ୍କା ଦରକାର ସେସବୁ ମୋ ଇଲାକାରୁ ଯୋଗାଡ଼ ହେବ । ଏବେଠାରୁ ମୁଁ ଜମି କିଣିବା ଲୋକ ଠିକ୍ କରି ରଖିବି । ପନ୍ଦର ଦିନ ଆଗରୁ ଖବର ପାଇଲେ ମୁଁ ଜମି ବିକ୍ରୀ କରି ଟଙ୍କା ଦେବି । ଅଢଙ୍ଗା ଜମି ବାବଦ ବିନ ଗୁମାସ୍ତା ଟଙ୍କା ଆଣି ଦେଲେ । ଆମେ କଟକରୁ ଫେରିଲେ ଜମି କବଲା ହେବ ।

ଆମେ କଟକ ଯିବା ପାଇଁ ତିନିଟା ଶଗଡ଼ ସଜା ହେଲା । ପ୍ରଥମ ଶଗଡ଼ରେ ବାପା, ବୋଉ ଓ ମୁଁ । ମଝି ଶଗଡ଼ରେ ବଡ଼ ଅପା, ଦେଇ ଓ ଭଣଜା କୁନା । ଶେଷ ଶଗଡ଼ରେ ରାଧୁ ପୁଝାରୀ ଓ ଜଗୁ ଗୁମାସ୍ତା । ସେଇ ଶଗଡ଼ରେ ଚାଉଳ, ପରିବା, ଡାଲି, ହାଣ୍ଡି କୁଣ୍ଡେଇ, ଚୁଡ଼ା, ଉଖୁଡ଼ା, କଦଳୀ, ମିଠେଇ, କଦଳୀପତ୍ର, ଜାଳକାଠ ଆଦି ଲଦା ହୋଇଥାଏ । ଅଲେଖ ପଲାଉରଙ୍କୁ ମିଶାଇ ତିନିଜଣ ଶଗଡ଼ିଆ ତିନିଜଣ ଦଣ୍ଡାଧରାଳି ଓ ଜନମୁଦୋଇ ସାଙ୍ଗକୁ ଭଗି ମଳିକ ପିଆଦା ଦୁହେଁ ଚିତାଏ ଉଚ୍ଚର ଠେଙ୍ଗାମାନ ଧରି ଜଣେ ଶଗଡ଼ ସାମନାରେ ଓ ଜଣେ ଶଗଡ଼ ପଛପଟେ ଧମ୍ ଧମ୍ ତଡ଼ା ପକେଇ ଚାଲିଲେ । ରାତି ଦିଘଡ଼ି ସୁଦ୍ଧା ଆମେ ସବୁ ଖିଆପିଆ ସାରି ଶଗଡ଼ରେ ବସିଲୁ । ଭୋର ସକାଳୁ ସିଦ୍ଧେଶ୍ୱରପୁର ବାବୁପୋଖରୀ ବରଗଛ ମୂଳେ ଶଗଡ଼ ଭିଡ଼ା ହେଲା । ଦାନ୍ତଘସା ଗାଧୁଆପାଧୁଆ ପରେ ଜଳଖିଆ ପର୍ବ ସେଇ ଗଛମୂଳେ ସରିଗଲା । ବଡ଼ଅପା ଓ ବୋଉ ଆଦୌ କିଛି ଖାଉ ନଥାନ୍ତି । ଶୀଘ୍ର କଟକରେ ପହଞ୍ଚି ଗୌରୀଶ୍ୟାମଙ୍କୁ ଦେଖିଲେ ଯାଇ ପେଟକୁ ଦାନା ଯିବ । ରାଧୁ ପୁଝାରୀ ଭାତ ତରକାରୀ ବସେଇ ଯଥା ଶୀଘ୍ର ରୋଷେଇ ସାରିଲେ। ଶଗଡ଼ିଆ ମାନେ ବଳଦଙ୍କୁ ଖୁଆଇ ସାରି ନଡ଼ା ପକେଇ ଦେଲେ । ଦିନ ପ୍ରାୟ ଦଶଟା ସୁଦ୍ଧା ପୁଣି କଟକ ଅଭିମୁଖେ ଶଗଡ଼ ଚାଲିଲା ।

ରାତି ଦିଘଡ଼ି ସୁଦ୍ଧା ଶାଳଗାଁ ଶ୍ରୀଚରଣ ସ୍ୱାଇଁଙ୍କ କଦମରସୁଲ ପାଖ ବସାଘରେ ଆମେ ପହଞ୍ଚିଲୁ । ସେଠି ରାତି ରହଣି ବ୍ୟବସ୍ଥା ହେଲା । ଶ୍ରୀଚରଣ ବାବୁ ଯାଇ ବଙ୍ଗାଳି ସାହି ଦୀନବନ୍ଧୁ ସାହୁ  ଓକିଲଙ୍କ ସାହିତ କଥା ହୋଇ ଆସିଲେ । ତା ପରଦିନ ସକାଳୁ ବାପା ଯାଇ ଓକିଲଙ୍କୁ ସହିତ କଥା ହେଲେ । କଟକରେ ବାପାଙ୍କର ସହପାଠୀ ଦୁଇଜଣ ଓକିଲଙ୍କ ଘରକୁ ଯାଇ ସେମାନଙ୍କ ସହିତ ଜ୍ୱାଇଁ ବାବୁଙ୍କ ବିଷୟରେ ଆଲୋଚନା ହେଲା ।

ସମସ୍ତଙ୍କର ସେଇ ଗୋଟିଏ କଥା । ଜ୍ୱାଇଁବାବୁଙ୍କ ମକଦ୍ଦମା ଅତି ଜଟିଳ । ସେ କେବଳ ଆଇନ ଅମାନ୍ୟ କରି ନାହାନ୍ତି । ଡାକବଙ୍ଗଳା ଓ ଥାନାରେ ନିଆଁ ଲଗାଇ

ଲୋକମାନଙ୍କୁ ମାରିଦେବାକୁ ଚେଷ୍ଟା କରିଛନ୍ତି । ଅତି ଗୁରୁତର ଅଭିଯୋଗ ତାଙ୍କ ବିରୁଦ୍ଧରେ ହୋଇଛି, ବ୍ରିଟିଶ୍ ରାଜତ୍ୱରେ ରାଜଦ୍ରୋହ ସାଙ୍ଗକୁ ହିଂସାକାଣ୍ଡ ଘଟାଇବା ଲୋକର ଫାଶୀଦଣ୍ଡ ହେବାର ଭୟ ଅନେକ ବେଶୀ ।

ବାପା ତାଙ୍କର ସହପାଠୀ ଓକିଲବାବୁଙ୍କୁ ଧରି ଭୋ ଭୋ କରି କାନ୍ଦି ଉଠିଲେ । କଅଣ କରିବି ? ମୋ ଜ୍ୱାଇଁ ବଞ୍ଚିବ କେମିତି ? ପିଲାଟା ଅନ୍ୟମାନଙ୍କ ପରି ଚାଲାଖ ଚତୁର ହେଲାନାହିଁ । ସବୁଆଡ଼େ ସ୍ୱାଧୀନତା ଆନ୍ଦୋଳନ ଚାଲିଛି । ଲୋକେ ସାବଧାନ ହୋଇ ଆନ୍ଦୋଳନ କରୁଛନ୍ତି । ମାତ୍ର ନିଆଁକୁ ଡେଇଁବାକୁ କେହି ସାହାସ କରୁ ନାହାନ୍ତି । ଦିନଟାରେ ଶହ ଶହ ଲୋକ ଥାନା ପୋଡ଼ିଲେ । ନାଆଁ ହେଲା ଗୌରୀଶ୍ୟାମର । ଲୋକେ କହୁଛନ୍ତି ଗୌରୀଶ୍ୟାମ ବାବୁ ଆମକୁ ଜବରଦସ୍ତ କରି ଥାନା ପୋଡ଼ିବାକୁ ଟାଣି ନେଇଗଲେ । ତେଣୁ ସେମାନଙ୍କ ବୟାନ ଅନୁସାରେ ଗୌରୀଶ୍ୟାମ ହେଉଛନ୍ତି ଥାନାପୋଡ଼ିର ମୁଖ୍ୟ ଆସାମୀ ।

ବାପା ଫାଶୀଦଣ୍ଡ କଥା ଶୁଣି ଭାଙ୍ଗି ପଡ଼ିଲେ । ସେ ଓକିଲବାବୁଙ୍କ ହାତଧରି ନେହୁରା ହୋଇ କହିଲେ; ମୋ ଜ୍ୱାଇଁଙ୍କୁ ବଞ୍ଚାଅ । ଯାହା ଟଙ୍କା ପଇସା ଦରକାର ତାର ବ୍ୟବସ୍ଥା ମୁଁ କରିବି । ଓକିଲ ବାବୁ ପ୍ରବୋଧନା ଦେଇ କହିଲେ, ଆପଣ ଧୈର୍ଯ୍ୟ ଧରନ୍ତୁ । ମକଦ୍ଦମାଟା ଆମେ ସହଜେ ଛାଡ଼ିବା ନାହିଁ । କଲିକତା ହାଇକୋର୍ଟ ପର୍ଯ୍ୟନ୍ତ ଲଢ଼ିବା । କଲିକତାରୁ ନାମଜାଦା ଓକିଲଙ୍କୁ ଆଣି ତଳକୋର୍ଟରେ ମଧ୍ୟ ଜବାବ ସୁଆଲ କରାଇବା, ଆପଣ ଏମିତି ଅଧୈର୍ଯ୍ୟ ହେଲେ ଚଳିବ ନାହିଁ । ଘରେ ସମସ୍ତଙ୍କୁ ଦମ୍ଭ ଦିଅନ୍ତୁ । ଆପଣଙ୍କ ଜ୍ୱାଇଁର କୌଣସି କ୍ଷତି ହେବନାହିଁ । ପ୍ରଥମେ ସମସ୍ତେ ଯାଇ ଜେଲ୍‌ରେ ଜ୍ୱାଇଁବାବୁଙ୍କୁ ଦେଖି ଆସନ୍ତୁ ।

ସେଦିନ ଉପରବେଳା ଗୋଟିଏ ଘୋଡ଼ାଗାଡ଼ି ଭଡ଼ା କରି ଆମେ ସବୁ କଟକ ଜେଲ୍‌କୁ ଗଲୁ । ଶ୍ରୀଚରଣ ବାବୁ ଜେଲର୍ ବାବୁଙ୍କୁ ନେଇ ଓକିଲ ଲେଖିଥିବା ଦରଖାସ୍ତ ଦେଲେ । ଠିକ୍ ତିନିଟା ବେଳକୁ ଜେଲ୍. କବାଟ ଖୋଲିଲା । ଆମେ ସବୁ ଭିତର ଫାଟକ ଦେଇ ଅତିଥି ଗୃହକୁ ପଶିଲୁ । ସେଠି ତଳେ ସତରଞ୍ଜି ବିଛା ଯାଇଥାଏ । ସମସ୍ତେ ସତରଞ୍ଜି ଉପରେ ବସି ଅପେକ୍ଷା କଲୁ । ଭିତର ଦ୍ୱାର ଖୋଲିଗଲା । ହସହସ ମୁହଁରେ ଗୌରୀଶ୍ୟାମ ଭାଇ ଆସି ବାପାବୋଉଙ୍କୁ ପ୍ରଣାମ କଲେ । କୁନା ଓ ମୁଁ ତାଙ୍କ ପାଖକୁ ଲାଗି କରି ବସିଲୁ । ସେ ଆମ ମୁଣ୍ଡକୁ ଆଉଁସି ଦେଲେ । ବୋଉ ଓ ବଡ଼୍‌ଅପା କାନ୍ଦୁଥାଆନ୍ତି । ଦେଈ ମଧ୍ୟ କାନ୍ଦୁଥାଏ । ସେ ସମସ୍ତଙ୍କୁ ବୁଝାଇଲେ । ଜେଲ୍‌ରେ ଯେଉଁ ସବୁ ନାମଜାଦା ନେତା ଥିଲେ ସେମାନଙ୍କର ନାମ କହି, ସମସ୍ତଙ୍କ ଗହଣରେ ସେ ଖୁବ୍ ଭଲରେ ଅଛନ୍ତି ବୋଲି କହିଲେ । ଖାଇବା ପିଇବା କଥା ବୋଉ ପଚାରିଲା ।

ସେ ହସି ହସି ସବୁ ଭଲ ବୋଲି କହିଲେ । ବଡ଼ଅପାକୁ କହିଲେ, କୁନା ମାମୁଁ ଘରେ ରହି ପାଠପଢ଼ା ଆରମ୍ଭ କରୁ । ମାମୁଁ ଭଣଜା ଦୁହେଁ ଏକାଠି ପଢ଼ିଲେ ସୁବିଧା ହେବ । ଅଳ୍ପ କିଛି କଥା ହେବା ଭିତରେ କେତେବେଳେ ଯେ ଚଟ୍ କରି ସମୟ ହୋଇଗଲା, ଜାଣି ହେଲାନାହିଁ । ସହକାରୀ ଜେଲର୍ ଆସି ଠିଆ ହେଲେ । ଜେଲ୍ କବାଟ ଖୋଲିଗଲା ଓ ଭାଇଁବାବୁ କହିଲେ ମୋ ପାଇଁ ଆଦୌ ବ୍ୟସ୍ତ ହେବନାହିଁ । ଆଉ ଥରେ ଦେଖା ହେଲାବେଳକୁ ୩ / ୪ ମାସ ସମୟ ଲାଗିବ ।

ଦେଇ, ବଡ଼ଅପା ଓ ବୋଉ ଆଖିରୁ ଲୁହ ପୋଛି ପୋଛି ଜେଲ୍ ବାହାରକୁ ଆସିଲେ । ଆମେ ସବୁ ଶ୍ରୀଚରଣ ବାବୁଙ୍କ ବସାଘରକୁ ଲେଉଟି ଆସିଲୁ । ରାତିରେ ପୁଣି ବାପା ଓକିଲମାନଙ୍କ ପାଖକୁ ଗଲେ। ଖିଆପିଆ ସରିବା ପରେ ରାତି ଦଶଟା ସୁଦ୍ଧା ଗାଆଁ ଅଭିମୁଖେ ଶଗଡ଼ ସବୁ ଲେଉଟାଣି ପଡ଼ିଲା।

ଗାଆଁରେ ପହଞ୍ଚି ମକଦ୍ଦମା ଖର୍ଚ୍ଚ ପାଇଁ ଜମି ବିକ୍ରୀ ଆରମ୍ଭ ହୋଇଗଲା । ଚରିଆଡ଼େ ଖୁବ ମହରଗ ପଡ଼ିଥାଏ । ଲୋକେ ବହୁତ୍ କଷ୍ଟରେ ଚଳୁଥାନ୍ତି । ଲୋକଙ୍କ ହାତରେ ଆଦୌ ପଇସା ନଥାଏ । ତଥାପି ତିନିଜଣ ଯାକ ଗୁମାସ୍ତା ଜମିବିକ୍ରୀ କରି ଟଙ୍କା ଆଣି ଦେବା ପାଇଁ ଲାଗି ପଡ଼ିଲେ । ଗୁଣ୍ଠେ ଜମି ବିକ୍ରୀ କଲେ ଦୁଇଟଙ୍କା ବା ତିନିଟଙ୍କା ମିଳୁଥାଏ । ପ୍ରଥମ ଦଫାରେ ପାଞ୍ଚ ଛଅ ଏକର ଜମି ବିକ୍ରୀ ହୋଇ ଯାହା ଟଙ୍କା ମିଳିଲା, ବାପା କଟକ ଯାଇ ଦୁଇଜଣ ନାମଦାଜା ଓକିଲଙ୍କୁ ମକଦ୍ଦମା ଲଢ଼ିବାକୁ ସେମାନଙ୍କର ଫିସ୍ ଦେଇ ଆସିଲେ। ଏହା ପରେ ପ୍ରତିଥର ମକଦ୍ଦମା ତାରିଖ ପଡ଼ିବା ପୂର୍ବଦିନ ଆମର ଯେକୌଣସି ଗୁମାସ୍ତା ଯାଇ ଶ୍ରୀଚରଣ ସ୍ୱାଇଁଙ୍କୁ ସାଙ୍ଗରେ ନେଇ ଓକିଲବାବୁଙ୍କ ପାଖକୁ ଯାଉଥିଲେ ଓ ତାରିଖ ଦିନ କଅଣ ହେଲା ଜାଣି ବାପାଙ୍କୁ ଆସି ଖବର ଦେଉଥିଲେ। ଆମେ ପ୍ରତି ଦୁଇମାସ, ଅଢ଼େଇମାସ ଛଡ଼ାରେ କଟକ ଯାଇ ଭାଇଁବାବୁଙ୍କୁ ଜେଲ୍‌ରେ ସାକ୍ଷାତ କରୁଥିଲୁ।

ମକଦ୍ଦମା ବର୍ଷେ କାଳ ଚାଲିଲା । ସେଇ ବର୍ଷକ ଭିତରେ ଆମର ପନ୍ଦର ଷୋଳ ଏକର ଜମି ବିକ୍ରୀ ହୋଇଗଲା । ହେଲେ, ରାୟ ବାହାରିବା ପରେ ଆମ ପରିବାର ପାଇଁ ହର୍ଷ ବିଷାଦ ଯୋଗ ସୃଷ୍ଟି ହୋଇଥିଲା। ଗୌରୀଶ୍ୟାମ ଭାଇ ଫାଶୀଦଣ୍ଡରୁ ମୁକ୍ତି ପାଇଯିବା ଖବର ଆମ ପାଇଁ ଯେତିକି ସୁଖକର ଥିଲା, ତାଠାରୁ ଶତଗୁଣ ଦୁଃଖ ଆଣି ଦେଇଥିଲା ତାଙ୍କ ପନ୍ଦର ବର୍ଷ ଜେଲ ଦଣ୍ଡ ସମ୍ବାଦ । ତା ସାଙ୍ଗକୁ ଆହୁରି ପାଞ୍ଚ ହଜାର ଟଙ୍କା ଜୋରିମାନା ମଧ୍ୟ ହୋଇଥିଲା । ଜୋରିମାନା ନ ଦେଇ ପାରିଲେ ପୁଣି ପାଞ୍ଚବର୍ଷ ସଜା ଭୋଗିବାକୁ ଆଦେଶ ହୋଇଥିଲା ।

ସେତେବେଳେ ଗୌରୀଶ୍ୟାମ ଭାଇଙ୍କ ଖବର ନେଇ ବହୁ ସ୍ୱାଧୀନତା ସଂଗ୍ରାମୀ ଆମ ଘରକୁ ଆସୁଥିଲେ। ବାଗଲପୁରର ଗୌରାଙ୍ଗଚରଣ ଦାସ ନିଆଳିର ନୀଳମଣି ପ୍ରଧାନ, ହାଜିପୁରର ଶ୍ୟାମ କାନୁନ୍‌ଗୋ; ପୁନଙ୍ଗର ପ୍ରିୟନାଥ ଦେ ଆଦି ସଂଗ୍ରାମୀମାନେ ଆସି ଆମ ଘରେ ରହନ୍ତି ଓ ସ୍ୱାଧୀନତା ସଂଗ୍ରାମରେ ଯେମିତି ହେଉ ଆମର ଜୟ ହେବ ବୋଲି ଆଶା ଦିଅନ୍ତି । ତାଙ୍କ ଠାରୁ ଶୁଣି ବାପା ବୋଉଙ୍କ ମନରେ ଟିକେ ଦମ୍ଭ ଆସେ । ଫାଶୀଦଣ୍ଡ ବଦଳରେ ଦୀର୍ଘକାଳ ଜେଲ ହେବାର ଖବର ପାଇ ଆମେ ସମସ୍ତେ ପୁଣି କଟକ ଯାଇ ଜେଲ୍‌ରେ ଗୌରୀଶ୍ୟାମ ଭାଇଙ୍କୁ ଭେଟିଲୁ । ବାପା କହିଲେ ମୋର ସମସ୍ତ ଜମିବାଡ଼ି ବିକ୍ରୀ କରିଦେବି ପଛକେ, କଲିକତା ହାଇକୋର୍ଟ ରେ ଏହି ରାୟ ବିରୁଦ୍ଧରେ ଅପିଲ୍ କରିବି । ମାତ୍ର ଗୌରୀଶ୍ୟାମ ଭାଇ ତାଙ୍କୁ ମନା କଲେ, କହିଲେ। ଲକ୍ଷ ଲକ୍ଷ କଂଗ୍ରେସ ନେତା ଅସହଯୋଗ ଆନ୍ଦୋଳନ କରି ଜେଲଦଣ୍ଡ ଭୋଗୁଛନ୍ତି । ଏବେ ସାରା ଦେଶରେ ନିଆଁ ଜଳୁଛି । ଯୁବକମାନେ ସ୍କୁଲ କଲେଜ ଛାଡ଼ି ଏବେ ସ୍ୱାଧୀନତା ଆନ୍ଦୋଳନକୁ ବ୍ୟାପକ କଲେଣି । ସବୁଦିନେ ଆମେ ଏସବୁ ବିଷୟରେ ଖବର ପାଉଛୁ । ତେଣୁ ଆପଣ ଟିକେ ଅପେକ୍ଷା କରନ୍ତୁ । ଏଇ ବର୍ଷେ ଦୁଇବର୍ଷ ଭିତରେ କଅଣ ଘଟିବ କହି ହେବ ନାହିଁ । ଅଯଥାରେ ଜମିବାଡ଼ି ବିକ୍ରୀ କରି ସର୍ବସ୍ୱାନ୍ତ ହୁଅନ୍ତୁ ନାହିଁ । ତାଙ୍କଠାରୁ ଏକଥା ଶୁଣି ବାପାବୋଉ ଓ ବଡ଼ ଅପା ମନରେ ଅନେକ ଆଶା ନେଇ ଫେରିଲେ ।

ତେବେ ପ୍ରତି ଦୁଇ ତିନି ମାସରେ ଥରେ ଜେଲକୁ ଯାଇ ଗୌରୀଶ୍ୟାମ ଭାଇଙ୍କୁ ଭେଟିବା ଆମ ଲାଗି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ରାତି ପାହିଲେ ବାପାବୋଉ ଦିନ ଗଣୁଥିଲେ; ପନ୍ଦରବର୍ଷ କେମିତି କଟିବ? ସେତେବେଳକୁ ବଡ଼ଅପା ଓ ଭଣଜାକୁନା କେମିତି ଥିବେ! ସେମାନଙ୍କ ଦୁଃଖ ସୁଖ ଦେଖିବା ପାଇଁ ବାପାବୋଉ ବଞ୍ଚିଥିବେ କି ନାହିଁ ! ବଡ଼ଅପାର ଦୁଇ ନଣନ୍ଦ ଓ ଦିଅରଙ୍କ ଅବସ୍ଥା କଅଣ ଥିବ? ଆଉ ତେଣିକି ଚିନ୍ତା କରି ହେଉନଥିଲା । ଗୌରୀଶ୍ୟାମ ଭାଇ ସ୍ୱାଧୀନତା ଆନ୍ଦୋଳନ କରି ଦୁଇଟି ପରିବାରଙ୍କୁ ଅନେକ ଦୁଃଖ କଷ୍ଟ ଓ ମାନସିକ ଯନ୍ତ୍ରଣା ଭିତରେ ଛଟପଟ କରି ଦେଇଗଲେ । ତଥାପି ସେ କେଉଁଦିନ ଜେଲ୍‌ରୁ ଖଲାସ ହେବେ ବୋଲି ଦୁଇଟି ପରିବାରର ସଦସ୍ୟମାନେ ଦିନ ଗଣୁଥିଲେ । ହେଲେ, ଈଶ୍ୱରଙ୍କ ଦୟାରୁ ଅସମ୍ଭବ ସମ୍ଭବ ହେଲା । ସଅଁରା କୋଠିରେ ପେଟ୍ରୋଲ କାମ କରୁଥିବା କୋଲର ମାଆଁର ଦୁର୍ଗାଚରଣ ସାହୁ ଆସି ଖବର ଦେଲେ ଗୌରୀଶ୍ୟାମ ଜେଲ୍‌ରୁ ଖଲାସ ହୋଇଛନ୍ତି । ଘରେ କେହି ଏକଥା ବିଶ୍ୱାସ କରୁ ନଥିଲେ । ସତ୍ୟାସତ୍ୟ ବୁଝିବାକୁ ସାଙ୍ଗେ ସାଙ୍ଗେ ଜଣେ ଲୋକ ହାତରେ କିଛି ପନିପରିବା ଦେଇ ଆପିଲା ହାଜିପୁର ପଠାଗଲା ।

ପରଦିନ ସନ୍ଧ୍ୟାସୁଦ୍ଧା ସେ ଫେରିଆସି ଖବର ଦେଲା ଯେ, ଗୌରିଶ୍ୟାମ ବାବୁ ଘରକୁ ଫେରି ଆସିଛନ୍ତି । ତାଙ୍କ ଘରେ ଭୋଜିଭାତ ଲାଗି ରହିଛି । କେବଳ ଯେ ଗୌରୀଶ୍ୟାମ ଜେଲ୍‌ରୁ ଖଲାସ ହେଲେ ସେ କଥା ନୁହେଁ । ଭାରତବର୍ଷର ସବୁ ଜେଲ୍‌ରୁ ସବୁତକ ରାଜନୈତିକ ବନ୍ଦୀଙ୍କୁ ଖଲାସ କରି ଦିଆଯାଇଥିଲା ଓ ଏହାର ଚାରିବର୍ଷ ପରେ ଦେଶ ସ୍ୱାଧୀନ ହେଲା । ମାତ୍ର ଦେଶର ଏହି ସ୍ୱାଧୀନତା ଯଜ୍ଞରେ ଆମ ପରିବାରର ସମସ୍ତ ସୁଖ ଶାନ୍ତି ଆହୁତି ଦିଆସରିଥିଲା । ମକଦ୍ଦମା ଲଢ଼ି କଚେରୀ ଓ ଜେଲ୍‌କୁ ଦୌଡ଼ି ଦୌଡ଼ି ଓକିଲ ମୁକ୍ତାର ହାକିମହୁକୁମାଙ୍କ ପଛରେ ଘୂରି ବୁଲିବା ପାଇଁ ହେଉ କିମ୍ବା ଏସବୁ ଚିନ୍ତା କରିବା ପାଇଁ ମଧ୍ୟ କେହି ସମର୍ଥ ନଥିଲେ । ଗୌରୀଶ୍ୟାମ ଥିଲେ ତାଙ୍କ ଘରର ମୁରବୀ । ଘରେ ତାଙ୍କର ବୃଦ୍ଧା ବଡ଼ବୋଉ, ବିଧବା ମାଆ, ସାନଭାଇ ଓ ଦୁଇସାନଭଉଣୀ ଥିଲେ । ତେଣୁ ମୋ ବଡ଼ଭଉଣୀ ଓ ଭଣଜା କୁନାଙ୍କୁ ଆଣି ଆମଘରେ ରଖି ସେମାନଙ୍କର ସୁଖଦୁଃଖ ପ୍ରତି ବିଶେଷ ଧ୍ୟାନ ଦିଆଯାଇଥିଲା ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଦେଶ ସ୍ୱାଧୀନ ହେବା ଖବର ପାଇ ଆମ ଗାଆଁର ଲୋକମାନେ ଆମ ଘରେ ଆସି ରୁଣ୍ଡ ହୋଇଗଲେ । ଆମ ଠାକୁର ଘରୁ ସଂକୀର୍ତ୍ତନ, ଶଙ୍ଖ, ତୁରୀ ଆଦି ନେଇ ଗାଆଁ ଲୋକେ ଢୋଲ, ତେଲିଙ୍ଗିବାଜା ଆଦି ବଜାଇ ଗାଆଁସାରା ବୁଲି ଭାରତମାତା, ମହତ୍ମାଗାନ୍ଧି, ସୁଭାଷ ବୋଷ ଓ ନେହେରୁ ଆଦିଙ୍କ ଜୟଗାନ କରିବା ସହିତ ଗାଆଁ ପରିକ୍ରମା କରି ଠାକୁରଙ୍କ ପାଖକୁ ଲେଉଟିବା ବେଳକୁ ଭୋଗରାଗ କରାଯାଇ ସମସ୍ତଙ୍କୁ ଖାଇବାକୁ ଦିଆଯାଇଥିଲା ।

## ପ୍ରାଥମିକ ଶିକ୍ଷାପରେ

ଜେଲ୍‌ରୁ ଖଲାସ ହେବାପରେ ଗୌରୀଶ୍ୟାମଭାଇ ସାଂସାରିକ ସୁଖରେ ମସ୍‌ଗୁଲ ହୋଇଯିବେ ବୋଲି ସମସ୍ତେ ଭାବିଥିଲେ । କାରଣ, ସ୍ୱାଧୀନତା ସଂଗ୍ରାମରେ ବ୍ୟସ୍ତ ରହି ସେ ଦାମ୍ପତ୍ୟ ସୁଖକୁ ସମ୍ପୂର୍ଣ୍ଣ ଜଳାଞ୍ଜଳି ଦେଇଥିଲେ । ଏବେ ଆଉ ଘର ଛାଡ଼ି ଲୁଚି, ଲୁଚି ବୁଲିବାର ଭୟ ତାଙ୍କର ନଥିଲା । ସମାଜ ଦୃଷ୍ଟିରେ ସେଥିଲେ ସ୍ୱାଧୀନତା ସଂଗ୍ରାମର ଜଣେ ବୀର ସେନାପତି । ସ୍ୱାମୀ ସୁଖରୁ ବଞ୍ଚିତା ମୋର ବଡ଼ ଭଉଣୀ ପ୍ରମିଳା ମଧ୍ୟ ପରିବାରର ବିଭିନ୍ନ ଚାପ ସହି ସ୍ୱାମୀ ବିରହରେ ବହୁ ବିନିଦ୍ର ରଜନୀ କଟାଇବା ପରେ ଏବେ ସ୍ୱାମୀଙ୍କୁ ପାଖରେ ପାଇ ପ୍ରାଣ ଭରି ସଂସାର ସୁଖ

ଉପଭୋଗ କରିବାର ସ୍ୱପ୍ନ ଦେଖୁଥିଲା । ତା ହୃଦୟର ନନ୍ଦନବନରେ ନବ ପ୍ରସ୍ଫୁଟିତ ପାରିଜାତର ମନମତାଣିଆ ମହକ ଚତୁର୍ଦ୍ଦିଗ ଚହଟାଇ ଦେଉଥିଲା ବେଳେ ମହାକାଳର କରାଳ ଘୂର୍ଣ୍ଣିରେ ସବୁକିଛି ଓଲଟପାଲଟ ହୋଇଯାଇଥିଲା । ମଣିଷର ସବୁ ସ୍ୱପ୍ନ ସାକାର ହୁଏନା । ପ୍ରମିଳାଙ୍କର ଦାମ୍ପତ୍ୟ ସୁଖର ଏତେ ଶୀଘ୍ର ଯେ ଯବନିକା ପତନ ହୋଇପାରେ, ତାହା କେହି କଳ୍ପନା କରିନଥିଲେ । ଗୌରୀଶ୍ୟାମ ଭାଇ ଜେଲ୍‌ରୁ ଖଲାସ ହେବାପରେ ମୋ ବଡ଼ଅପା ଗର୍ଭବତୀ ହେଲା । ସେହି ଅବସ୍ଥାରେ ତାକୁ ଜ୍ୱର ହେଲା ଓ ସେଇ ଜ୍ୱରରେ ତାର ଦେହାନ୍ତ ହେଲା । ଆମ ପରିବାର ପାଇଁ ଏହା ଥିଲା ଅତ୍ୟନ୍ତ ମର୍ମନ୍ତୁଦ ଘଟଣା । ଯାହାପାଇଁ ମୋ ବାପା ସର୍ବସ୍ୱାନ୍ତ ହେଲେ, ସେ ଆମକୁ ଶୋକସନ୍ତପ୍ତ କରିଦେଇ ଆଖି ବୁଜିଦେଲା । ସେତେବେଳକୁ ଦେଈର ବିବାହ ପ୍ରସ୍ତାବ ଅନେକ ଆଡ଼େ ପଡ଼ିଥାଏ । ଦୀର୍ଘ ପାଞ୍ଚବର୍ଷ ଧରି କଷ୍ଟଦାୟକ ବିନିଦ୍ର ରଜନୀ ଅତିବାହିତ କରିବା ପରେ ପୁଣି ଏକ ମାଙ୍ଗଳିକ କାର୍ଯ୍ୟ କରିବାର ଆଶା ଅଚିରେ ମଉଳିଗଲା । ବଡ଼ଝିଅକୁ ଝୁରିଝୁରି ବାପାବୋଉ ଦିନ କାଟୁଥିବା ବେଳେ ଅକସ୍ମାତ୍ ଗୌରୀଶ୍ୟାମ ଭାଇ ଆସି ଆମ ଘରେ ପହଞ୍ଚି ମୋ ମାଆ ଓ ଦେଈଙ୍କୁ ପୁଅ କୁନାର ଭବିଷ୍ୟତ କଥା କହି ତା ପାଇଁ ଦେଈକୁ ବିବାହ କରିବା ପ୍ରସ୍ତାବ ରଖିଲେ । ତା ନହେଲେ ଅନ୍ୟ କେଉଁଠି ସେ ବିବାହ କରିବେ ନାହିଁ ଓ ଯଦି ସେପରି ହୁଏ ତେବେ ପୁଅର ଭବିଷ୍ୟତ ଅନ୍ଧକାରମୟ ହେବ ବୋଲି ସେ ଆଶଙ୍କା ବ୍ୟକ୍ତ କଲେ । ନାତିର ଭବିଷ୍ୟତ କଥା ଚିନ୍ତା କରି ବାପାବୋଉ ଏ ପ୍ରସ୍ତାବରେ ରାଜି ହେଲେ ଓ ଦେଈ ସହିତ ତାଙ୍କର ବିବାହ ହେଲା । ସେତେବେଳେ ମୁଁ ତୃତୀୟ ଶ୍ରେଣୀରେ ପଢୁଥାଏ ।

ଏହାର ଦୁଇବର୍ଷ ପରେ ମୁଁ ପ୍ରାଥମିକ ଶିକ୍ଷା ସମାପ୍ତ କଲି । ତାପରେ ମାଇନର ସ୍କୁଲରେ ପଢ଼ିବା କଥା । ଆମ ଘରଠାରୁ ପାଞ୍ଚ କିଲୋମିଟର ଦୂରରେ ଜଗତସିଂହପୁର ମାଇନର ସ୍କୁଲ । ସେତକ ବାଟ ଚାଲି ଚାଲି ଯାଇ ପାଠ ପଢ଼ିବା ମୋ ପକ୍ଷେ ସମ୍ଭବ ହେବନାହିଁ ବୋଲି ବାପାବୋଉ ଚିନ୍ତାରେ ପଡ଼ିଲେ । ବୋଉ କହିଲା, ମୋ ବାପଘର ଗାଆଁରେ ମାଇନର ସ୍କୁଲ ଅଛି । ସେଇଠି ପଢ଼ାଇବାର ବ୍ୟବସ୍ଥା କରିବା ।

କଟକର ଖପୁରିଆଠାରୁ ପାଞ୍ଚ କିଲୋମିଟର ଦୂର ବେଣ୍ଟକାର ଗାଆଁରେ ମୋ ମାମୁଁ ଘର । ବଡ଼ମାମୁଁ ଭୂଦେବ ଚରଣ ଦାସ ବିଦ୍ୟୁତ୍ ଉତ୍ପାଦନ ବିଭାଗରେ ବଡ଼ବାବୁ ଥାଆନ୍ତି । କଟକର ଜୋବ୍ରାଠାରେ ଏହି ବିଭାଗର ଥର୍ମାଲ୍ ଷ୍ଟେସନ୍ ଥାଏ । ସେଇ କାର୍ଯ୍ୟାଳୟରେ ମାମୁଁ ଚାକିରୀ କରୁଥାନ୍ତି । ଜୋବ୍ରାଠାରେ ସରକାରୀ କ୍ୱାର୍ଟର୍‌ରେ ସେ ରହନ୍ତି । ସାନମାମୁଁ ଅକ୍ଷୟକୁମାର ଦାସ ପିଡବ୍ଲୁଡ଼ି ଅଫିସ୍‌ରେ ଟାଇପିଷ୍ଟ ଥାଆନ୍ତି । ସେ

ପ୍ରତିଦିନ ବେଣ୍ଟକାରରୁ ସାଇକେଲ୍‌ରେ କଟକ ଯିବାଆସିବା କରନ୍ତି । ବଡ଼ମାମୁଁ ବେଣ୍ଟକାର ମାଇନର୍ ସ୍କୁଲର ସେକ୍ରେଟାରୀ ଥାଆନ୍ତି । ତାଙ୍କ ଘର ସାମନାରେ ମାଇନର୍ ସ୍କୁଲ ।

ବୋଉ କହିଲା ପୁଅ ବେଣ୍ଟକାରରେ ରହି ମାଇନର୍ ପଢ଼ିବ । ମାତ୍ର ମାଆ ମୋତେ ପାଖରୁ ଛାଡ଼ିବା ପାଇଁ ରାଜି ନଥାଏ । ଏତେ ସାନପିଲାଟା ଜଗତସିଂହପୁର ଯିବାଆସିବା କରି ପଢ଼ିବା ଅପେକ୍ଷା ବେଣ୍ଟକାରରେ ମାମୁଁଘରେ ରହି ପଢ଼ିବା ଉଚିତ ହେବ ଭାବି ସେ ମଧ୍ୟ ବୋଉ କଥାରେ ରାଜି ହେଲା । ବାପାବୋଉ ମୋତେ ସାଙ୍ଗରେ ନେଇ ମାମୁଁଘରେ ଛାଡ଼ି ଦେଇ ଗଲେ । ମୁଁ ବେଣ୍ଟକାରରେ ରହିଲି ।

ଷଷ୍ଠଶ୍ରେଣୀରେ ମୋ ନାଆଁ ଲେଖା ହେଲା । ବେଣ୍ଟକାର ମାଇନର୍ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ଥାଆନ୍ତି ଗୋଲକବାବୁ ଓ ଗଣିତ ଶିକ୍ଷକ ମନସୁଲ୍ ବାବୁ । ମାମୁଁଙ୍କ ଅନୁରୋଧ କ୍ରମେ ଦୁହେଁ ମୋତେ ଟିଉସନ୍ କଲେ । ହେଲେ, ପାଠପଢ଼ାରେ ମୋର ଆଦୌ ମନଲାଗିଲା ନାହିଁ । ସବୁବେଳେ ବାପା ବୋଉ ମାଆ ଓ ଗାଆଁ କଥା ମୋର ମନେ ପଡ଼ିଲା । ବେଳେବେଳେ ମୋତେ କାନ୍ଦ ଲାଗେ । ମୁଁ ଲୁଚେଇ ଲୁଚେଇ କାନ୍ଦେ । ଆମ ଘରର ଚଳଣି, ଆଦବକାଇଦା, ପୁନିଅଁ ପର୍ବ, ଲୋକସମ୍ପର୍କ ଆଦି ମନକୁ ଆସେ ।

ଖାଇବା ପିଇବାରେ ମୋର ଆଦୌ ମନ ଲାଗେନାହିଁ । ଖାଇବା ବେଳେ ଆମ ଘରର ଖାଇବା ପିଲବା କଥା ମୁଁ ଝୁରିହୁଏ । ରାତିରେ ଶୋଇଲାବେଳେ ମଧ୍ୟ ମୁଁ ବାପା ବୋଉ, ମାଆଙ୍କୁ ସ୍ୱପ୍ନ ଦେଖେ । ଛୋଟ ପିଲା ହେଲେ ବି ଗାଆଁରେ ମୁଁ ଲୋକମାନଙ୍କ ଠାରୁ ଯେତିକି ସମ୍ମାନ ପାଉଥିଲି, ଏଠି ସେସବୁ ନଥାଏ । ବେଣ୍ଟକାରର ଅଧିକାଂଶ ଲୋକ ମୋର ମାମୁଁ ହିସାବ ହୁଅନ୍ତି । ଅଧରୀ ଦେଈର ପୁଅ ଭାବରେ ସେଠି ମୋର ପରିଚୟ । ଅବଶ୍ୟ ମୋତେ ସମସ୍ତେ ଭଲ ପାଆନ୍ତି । ଖାଇବା ପିଇବା ମୋତେ ଆଦୌ ରୁଚେ ନାହିଁ । ଏଠାରେ ତିନିମାସ ପଢ଼ିବା ପରେ ଦଶହରା ଛୁଟି ହେଲା । ବେଣ୍ଟକାର ପ୍ରାଥମିକ ବିଦ୍ୟାଳୟର ଅର୍ଜୁନି ମାଷ୍ଟ୍ରଙ୍କ ସାଙ୍ଗରେ ମୁଁ ଆମଗାଆଁକୁ ଗଲି । ମୋତେ ଦେଖି ମାଆ ଖୁବ୍ କାନ୍ଦିଲା । ସେ କହିଲା ତିନିଟା ମାସ ମାମୁଁଘରେ ରହି ପୁଅ ମୋର ଖୁବ୍ ଝଡ଼ି ଯାଇଛି । କଳାକାଠ ପଡ଼ି ଯାଇଛି । ଆଉ ସେ ବେଣ୍ଟକାର ଯିବ ନାହିଁ । ଗାଆଁରୁ ଜଗତସିଂହପୁର ଯିବାଆସିବା କରି ଷଷ୍ଠ ଶ୍ରେଣୀରେ ପଢ଼ିବ । ବାପାବୋଉ ମଧ୍ୟ ମୋତେ ଆଉ ପାଖରୁ ଛାଡ଼ିବେନାହିଁ ବୋଲି ନିଷ୍ପତ୍ତି ନେଲେ । ଗୁରୁଜେଜେଙ୍କ ସାନପୁଅ ଗଦୁମାମୁ ମଧ୍ୟ ଗାଆଁରୁ ଚାଲିଚାଲି ଜଗତସିଂହପୁର ଯାଉଛନ୍ତି । ତାଙ୍କ ସାଙ୍ଗରେ ଯିବା ଆସିବା କରି ହେବ ।

ଆମ ଖମାରେଇ ଅଲେଖ ପଲାଉର ବେଣ୍ଟକାର ଯାଇ ମୋର ଟ୍ରାନ୍ସଫର ସାର୍ଟିଫିକେଟ ସହିତ ଟ୍ରଙ୍କପତ୍ର ନେଇ ଆସିଲା । ମୁଁ ଆମ ଗାଆଁରୁ ଜଗତସିଂହପୁର ଯିବା ଆସିବା କରି ପାଠ ପଢୁଥିବା ପିଲାମାନଙ୍କ ସାଙ୍ଗରେ ପ୍ରତିଦିନ ସ୍କୁଲକୁ ଯାଇ ପଢ଼ିଲି । ବେଣ୍ଟକାର ମାଇନର୍ ସ୍କୁଲରେ ମୁଁ ଠିକ୍ ଭାବେ ପାଠ ପଢ଼ିନଥିବା ଯୋଗୁଁ ଷଷ୍ଠ ଶ୍ରେଣୀ ଷାଣ୍ମାସିକ ପରୀକ୍ଷାରେ ଭଲ କଲିନାହିଁ । ତେଣୁ ଜଗତସିଂହପୁରରେ ରହି ଟିଉସନ୍ ହେବା କଥା ବାପା ଚିନ୍ତା କଲେ ।

ଜଗତସିଂହପୁରରେ ଗୋଟିଏ ଘରଭଡ଼ା ନିଆଗଲା । ମୋ ମାଆ ପାଶୋରାଦେଈ ଓ ଜନ୍ମଦାତ୍ରୀ ଉମାଖୁଡ଼ୀର ଶାଶୁ (ବଳିବୋଉ ମାଆ) ଦୁହେଁ ମୋ ସହିତ ସେଠି ରହିଲେ । ରୋଷେଇ କରିବାକୁ ଗୋଟିଏ ବ୍ରାହ୍ମଣ ପିଲା ମଧ୍ୟ ସେଠି ରହିଲା । ଗୁରୁଜେଜେଙ୍କ ସାନପୁଅ ଗଦାଧର (ଗଦୁମାମୁଁ) ମୋ ସାଙ୍ଗରେ ଏକା ଶ୍ରେଣୀରେ ପଢୁଥାନ୍ତି । ସେ ମଧ୍ୟ ଆମ ସାଙ୍ଗରେ ରହିଲେ । ମୁଁ ଓ ଗଦୁମାମୁଁ ଏକାଠି ପଢୁ । ଖରାବେଳେ ମୁଁ ମାଇନର୍ ସ୍କୁଲର ଜଣେ ଶିକ୍ଷକଙ୍କ ପାଖକୁ ଟିଉସନ୍ ହେବାକୁ ଯାଏ । ବାର୍ଷିକ ପରୀକ୍ଷା ସରିବା ପରେ ଆମେ ଘରକୁ ଫେରି ଆସିଲୁ । ପୁଣି ଗାଆଁରୁ ଯିବା ଆସିବା କରି ସ୍କୁଲ୍‌ରେ ପଢ଼ିଲି ।

ସେ ବର୍ଷ ଗ୍ରୀଷ୍ମଛୁଟିରେ ଆମ ମାଇନର ସ୍କୁଲଟା ଜଗତସିଂହପୁର ଶ୍ରୀକୃଷ୍ଣ ଏକାଡ଼େମୀ ସହିତ ମିଶିଗଲା । ଆମେ ପଢୁଥିବା ବିଦ୍ୟାଳୟରେ ବାଳିକା ମଧ୍ୟବିଦ୍ୟାଳୟ ଆରମ୍ଭ ହେଲା । ଆମକୁ ପଢ଼ାଉଥିବା ଶିକ୍ଷକମାନଙ୍କୁ ଅନ୍ୟ ବିଦ୍ୟାଳୟ ମାନଙ୍କୁ ବଦଳି କରିଦିଆଗଲା । ସେତେବେଳେ ଶ୍ରୀକୃଷ୍ଣ ଏକାଡ଼େମୀର ପ୍ରଧାନ ଶିକ୍ଷକ ଥାଆନ୍ତି ଶ୍ରୀ ନୃସିଂହ ଚରଣ କାନୁନ୍‌ଗୋ । ମୋ ଜେଜେ ନାରାୟଣ ପ୍ରସାଦଙ୍କର ସେ ମାମୁଁ ପୁଅ ଭାଇ । ତାଙ୍କରି ପାଖରେ ରହି ସେ ଶିକ୍ଷାଲାଭ କରିଥିଲେ । ତେଣୁ ନାତି ହିସାବରେ ସେ ମୋତେ ଖୁବ୍ ଭଲ ପାଆନ୍ତି ।

ସେହିବର୍ଷ ଗ୍ରୀଷ୍ମଛୁଟିରେ ଦେଈ ତା ବଡ଼ ପୁଅ କୁନାକୁ ନେଇ ଆମ ଘରେ ଆସି ରହିଲା । ଗୌରୀଶ୍ୟାମ ଭାଇ ଜେଲ୍‌ରେ ଥିଲାବେଳେ କୁନା ଓ ବଡ଼ଅପା ଆମ ଘରେ ରହୁଥିଲେ । ତେଣୁ ବୋଉ କହିଲା କୁନା ଏଠି ରହି ପଢୁ । ମାମୁଁ ଭଣଜା ଦୁହେଁ ଏକାଠି ଜଗତସିଂହପୁର ଯିବା ଆସିବା କରିବେ । ତେଣୁ କୁନାକୁ ଛାଡ଼ିଦେଇ ଦେଈ ତା ଶାଶୁଘରକୁ ଫେରିଗଲା । ଆମ ଦୁହିଁଙ୍କୁ ଟିଉସନ କରିବା ପାଇଁ ଜଣେ ଗୃହ ଶିକ୍ଷକର ଆବଶ୍ୟକତା ଅନୁଭୂତ ହେଲା ।

ସେତେବେଳେ ଶ୍ରୀକୃଷ୍ଣ ଏକାଡ଼େମୀ ପରି ହାଇସ୍କୁଲ ଏ ଅଞ୍ଚଳରେ ଅନ୍ୟ କେଉଁଠି ନଥିଲା । ପିଲମାନେ ଆଠ ଦଶକିଲୋମିଟର ଦୂରରୁ ଯାଇ ସେଠାରେ ପଢୁଥିଲେ । ଆମଘର ଠାରୁ ତିନି କିଲୋମିଟର ଦୂରସ୍ଥ ଅମରପଡ଼ାରୁ ଦେବେନ୍ଦ୍ରନାଥ ଦାସ ସେହି ବିଦ୍ୟାଳୟର ଦଶମ ଶ୍ରେଣୀରେ ପଢୁଥାନ୍ତି । ସେ ପ୍ରତିଦିନ ଆଠ କିଲୋମିଟର ବାଟ ଚାଲିଚାଲି ଶ୍ରୀକୃଷ୍ଣ ଏକାଡ଼େମୀରେ ପଢ଼ନ୍ତି । ଦେବୀନଦୀ ପାରିହେଲେ ଅମରପଡ଼ା । ଆମ ଗାଆଁଠାରୁ ଆହୁରି ତିନି କିଲୋମିଟର ଦୂର। ନଦୀରେ ବଢ଼ି ପାଣି ଆସିଲେ ଧୋୟା ଅଞ୍ଚଳର ପିଲାମାନେ ଡଙ୍ଗା ପାରି ହେବାକୁ ବହୁ ଅସୁବିଧା ଭୋଗ କରନ୍ତି । ନଦୀ ସେପାରି ଛାତ୍ରମାନେ ସକାଳ ଆଠଟାରୁ ବାହାରି ଡଙ୍ଗାପାର ହୋଇ ବିଦ୍ୟାଳୟରେ ଦଶଟାସୁଦ୍ଧା ପହଞ୍ଚି ପାରନ୍ତି । ଛୁଟିପରେ ଡଙ୍ଗା ପାର ହୋଇ ଘରେ ପହଞ୍ଚିଲା ବେଳକୁ ରାତି ଆଠଟା ବାଜେ । ବେଳେବେଳେ ଝଡ଼ି ବର୍ଷା ଦିନରେ ଡଙ୍ଗା ପାଇବା କଷ୍ଟକର ହୋଇପଡ଼େ । ତେଣୁ ନଦୀ ସେପାରିର ଛାତ୍ରମାନେ ରାତିରେ ଘରକୁ ଫେରିନପାରି ସାଙ୍ଗ ପଲାଙ୍କ ଘରେ ରାତି ବିତାଇବାକୁ ବାଧ୍ଯ ହୁଅନ୍ତି ।

ଦେବବାବୁ ଆମର ଦୂର ସମ୍ପର୍କୀୟ ବନ୍ଧୁ । ତାଙ୍କ ବୋଉ ମୋ ପିଉସୀର ନଣନ୍ଦ । ତେଣୁ ସେ ଆମଘରେ ରହି ସ୍କୁଲକୁ ଯିବା ଆସିବା କରିବାକୁ ଚାହିଁଲେ । ମୋତେ ଓ କୁନାକୁ ପାଠପଢ଼ାରେ ସାହାଯ୍ୟ କରିବେ ବୋଲି ମଧ୍ୟ କଥା ହେଲା । ତା ବଦଳରେ ବାପା ତାଙ୍କର ସ୍କୁଲ ଦରମା ଓ ହାତଖର୍ଚ୍ଚ ଦେବେ । ସେ ଖୁବ୍ ମେଧାବୀ ଛାତ୍ର ଥିଲେ । ଆମ ଦୁହିଁଙ୍କୁ ସେ ପ୍ରତିଦିନ ସକାଳେ ଘଣ୍ଟାଏ ଓ ସନ୍ଧ୍ୟାରେ ଘଣ୍ଟାଏ ପଢ଼ାଇ ସାରି ନିଜ ପାଠ ପଢ଼ନ୍ତି । ମୋତେ ସେ ଗଣିତ ଓ ଇଂରାଜୀ ପଢ଼ାନ୍ତି । ସେ ଖୁବ୍ ଭଲ ପଢ଼ାଉ ଥିଲେ । ଫଳରେ ମୋର ସେ ଦୁଇ ବିଷୟରେ ଯଥେଷ୍ଟ ଉନ୍ନତି ହେଲା । ସପ୍ତମ ଶ୍ରେଣୀ ବାର୍ଷିକ ପରୀକ୍ଷାରେ ମୁଁ ଗଣିତରେ ୯୭ ନମ୍ବର ରଖିଲି । କୁନା ଟିକେ ଚଗଲା ଥାଏ । ତଥାପି ତାର ମଧ୍ୟ ପଢ଼ାରେ ଉନ୍ନତି ହେଲା । ତାପର ବର୍ଷ ଦେବବାବୁଙ୍କର ଏକାଦଶ ଶ୍ରେଣୀ ଓ ସେ ମାଟ୍ରିକ୍ ପରୀକ୍ଷା ଦେବାକୁ ପଢ଼ାପଢ଼ିରେ ଲାଗି ପଡ଼ିଲେ । ତେଣୁ ଆମକୁ ଟିଉସନ କରିବା ସମ୍ଭବ ହେଲା ନାହିଁ । ମାତ୍ର ତାଙ୍କ ପରୀକ୍ଷା ପରେ ଆମର ବାର୍ଷିକ ପରୀକ୍ଷା ଦୁଇମାସ ଡେରିରେ ହେଉଥିବା ଯୋଗୁଁ ମାଟ୍ରିକ୍ ପରୀକ୍ଷା ସାରି ଆମ ପାଖେ ରହି ପଢ଼ାଇବାରେ ସମସ୍ତ ସମୟ ଦେବେ ବୋଲି କଥା ହେଲା ।

ମୋର ଆତ୍ମବିଶ୍ବାସ ଯଥେଷ୍ଟ ବଢ଼ି ଯାଇଥାଏ । ଭଲ ପାଠପଢ଼ା ସାଙ୍ଗକୁ ପୂଜାପାର୍ବଣ ଓ ବିଦ୍ୟାଳୟର ବାର୍ଷିକ ଉତ୍ସବରେ ଶ୍ରେଣୀରେ ନେତୃତ୍ୱ ନେଉଥିବା

ଯୋଗୁଁ ଶିକ୍ଷକମାନେ ମୋତେ ବହୁତ ଭଲ ପାଉଥିଲେ । ତାଛଡ଼ା ବିଦ୍ୟାଳୟରେ ପାଠପଢ଼ା ଆରମ୍ଭ ହେବା ପୂର୍ବରୁ ପ୍ରାର୍ଥନା ବେଳେ ମୁଁ ପ୍ରଥମେ ଗାଇବା ପରେ ସମସ୍ତ ଛାତ୍ରଛାତ୍ରୀ ପାଳିଧରି ପ୍ରାର୍ଥନା ଗାଉଥିଲେ । ମୋର କଣ୍ଠ ଅତ୍ୟନ୍ତ ମଧୁର ଥିବାରୁ ଶିକ୍ଷକମାନେ ମୁଁ ପ୍ରାର୍ଥନା ଗାଇବାକୁ ଖୁବ୍ ପସନ୍ଦ କରୁଥିଲେ । ଅଷ୍ଟମଶ୍ରେଣୀରେ ଆମର ଶ୍ରେଣୀଶିକ୍ଷକ ସବୁ ଛାତ୍ରଛାତ୍ରୀଙ୍କୁ ଗଳ୍ପ ଓ କବିତା ଲେଖି ଆଣିବାକୁ କହିଲେ । ଆମ ଉପର ଶ୍ରେଣୀରେ ଆଜିର ଖ୍ୟାତନାମା ଲେଖକ ବିଭୂତି ପଟ୍ଟନାୟକ ପଢୁଥାଆନ୍ତି । ସେ ମଧ ଅଷ୍ଟମଶ୍ରେଣୀରୁ ଗପ ଲେଖିବା ଆରମ୍ଭ କରିଥିଲେ । ତାଙ୍କର ଗଳ୍ପ 'ମୀନାବଜାର'ରେ ବାହାରୁଥାଏ । ଆମ ଶ୍ରେଣୀ ପିଲାମାନେ ଦଶବାରଟି ଗଳ୍ପ ଓ କବିତା ଲେଖି ଆଣିଦେଲେ । ମୁଁ 'ବର୍ଷା' ଶୀର୍ଷକ ଏକ କବିତା ଲେଖିଥାଏ । ଶ୍ରେଣୀଶିକ୍ଷକ ସେସବୁ ଲେଖାକୁ ଗୋଲ ଗୋଲ ଅକ୍ଷରରେ ଗୋଟିଏ ଖାତାରେ ଲେଖି ଆଣିବା ପାଇଁ ଜଣେ ଛାତ୍ରକୁ ଆଦେଶ ଦେଲେ । ତାଙ୍କ କ୍ଲାସ୍‌ରେ ଦୁଇ ତିନି ଦିନ ଧରି ଲେଖାଗୁଡ଼ିକ ପଢ଼ାଯାଇ ସଂଶୋଧିତ ହେଲା ଓ ଏକନୂଆ ଖାତାରେ ଲେଖାଗଲା । ସେହି ହାତଲେଖା ପତ୍ରିକାର ନାମ ରହିଲା 'ଅଳକା' । କାରଣ ଆମ ବିଦ୍ୟାଳୟଟି ଅଳକାନଦୀ ତୀରସ୍ଥ ଇଂରେଜମାନଙ୍କର ପରିତ୍ୟକ୍ତ ସ୍ଥାନ ଫିରିଂକୁଦ ଉପରେ ଅବସ୍ଥିତ । ସେସମୟରେ ଲୋକେ ଇଂରେଜମାନଙ୍କୁ ଫିରିଙ୍ଗି ବୋଲି କହୁଥିଲେ । ତେଣୁ ଏହି ସ୍ଥାନକୁ ଫିରିଂକୁଦ କୁହାଯାଉଥିଲା । ଆମର ଶ୍ରେଣୀ ପତ୍ରିକାଟି ଅଳକା ନଦୀ ନାମରେ ନାମିତ ହେଲା ।

ଅଷ୍ଟମଶ୍ରେଣୀରୁ ମୁଁ କବିତା ଲେଖିବା ଆରମ୍ଭ କଲି । ମଝିରେ ମଝିରେ କବିତା ଲେଖିସାରି ବୋଉକୁ ଦେଖାଏ । ବୋଉ ଖୁବ୍ ସାହିତ୍ୟାନୁରାଗୀ ଥିଲା । ପ୍ରତିଦିନ ଖାଇ ସାରି ଖରାବେଳେ ସେ ରାମାୟଣ, ମହାଭାରତ ଓ ବଙ୍ଗଳା ବହି ସବୁ ପଢ଼େ । ବୈଦେହୀଶ ବିଳାସ, ଲାବଣ୍ୟବତୀ, ରସକଲ୍ଲୋଳ, ବିଦଗ୍ଧଚିନ୍ତାମଣି ଓ ଗୀତଗୋବିନ୍ଦ ଆଦିରୁ ଯାହା ପଚାରିଲେ ବୋଉ ଠିକ୍ ଭାବେ ବୁଝାଇ ଦିଏ । ପ୍ରତିଦିନ କିଛି ବହି ନପଢ଼ିଲେ ସେ ଶୋଇପାରେନା । ତେଣୁ ସାହିତ୍ୟ ପ୍ରତି ମୋର ଅନୁରାଗ ବଢ଼ିଲା । ସାହିତ୍ୟ ଓ ସଂସ୍କୃତରେ ମୋର ଭଲ ହେବା ଯୋଗୁଁ ଆମ ସ୍କୁଲର ସାନ ପଣ୍ଡିତେ ଓ ବଡ଼ ପଣ୍ଡିତେ ମୋତେ ଖୁବ୍ ଭଲ ପାଉଥିଲେ । ବଡ଼ ପଣ୍ଡିତ ଶ୍ରୀ ବାଲୁଙ୍କେଶ୍ୱର ଆଚାର୍ଯ୍ୟ ମୋତେ ଥଟ୍ଟାରେ ଡାକନ୍ତି 'କରଣ ସାଆନ୍ତେ' । ବିଦ୍ୟାଳୟର ବକ୍ତୃତା ପ୍ରତିଯୋଗିତାରେ ମଧ ମୁଁ ଭାଗ ନିଏ। ମୋର ସହପାଠୀ ଗଦୁମାମୁଁ (ଗଦାଧର ମିଶ୍ର) ଜଣେ ଭଲ ବକ୍ତା ଥିଲେ । ଆମ ଶ୍ରେଣୀରୁ ଆମେ ଦୁହେଁ ବକ୍ତୃତା ପ୍ରତିଯୋଗିତାରେ ଭାଗ ନେଉ । ଅଷ୍ଟମ ଶ୍ରେଣୀ ଠାରୁ ଯେକୌଣସି କାର୍ଯ୍ୟରେ ମୁଁ ଆଗଚଲା ହୋଇ

ବାହାରି ପଡୁଥିଲି । ଗଣେଶପୂଜା ଓ ସରସ୍ୱତୀ ପୂଜାରେ ସଜାସଜି, ଭୋଜିର ଦାୟିତ୍ୱ ତଥା ବିଦ୍ୟାଳୟରେ ଡ୍ରାମା କରିବା କାମରେ ଅନେକ ଦାୟିତ୍ୱ ନେଇ ସୁଚାରୁରୂପେ ତୁଲାଉଥିଲି । ଜଗତସିଂହପୁର ସୋମନାଥ ହାଟରେ ପ୍ରତିବର୍ଷ ମକରଯାତ୍ରା ହୁଏ । ମକରସଂକ୍ରାନ୍ତି ଦିନଠାରୁ ପ୍ରାୟ ଦୁଇ ତିନି ସପ୍ତାହ ଧରି ଖୁବ୍ ଜାକଜମକରେ ଏହି ଯାତ୍ରା ହୁଏ । ତିନିଦିନ ଧରି ଦିନ ଓ ରାତିରେ ଯାତ୍ରା ବା ଅପେରା ହୁଏ । ସେଥିଲାଗି ତିନିଦଳ ଯାତ୍ରା ପାର୍ଟି ଆସି ଯାତ୍ରା କରନ୍ତି । ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଥିଏଟର ଓ ଗୋଟିଏ ସିନେମା ମଧ୍ୟ ପଡ଼େ । ବର୍ଷେ ବର୍ଷେ ସର୍କସ ଦଳ ମଧ୍ୟ ଆସନ୍ତି । ପ୍ରତିଦିନ ଲକ୍ଷାଧିକ ଲୋକ ମକରଯାତ୍ରାକୁ ଆସୁଥିଲେ। ଦୋକାନ ବଜାରରେ ଭରିଯାଏ ସୋମନାଥହାଟ ପରିସର । ଧାଡ଼ି ଧାଡ଼ି ହୋଇ ଦୋକାନ ସବୁ ବସିଯାଏ । ଶୀତକାଳୀନ ସୁନ୍ଦର ପାଗରେ ଦିନ ରାତି ଚବିଶଘଣ୍ଟା ଯାତ୍ରୀ ମାନଙ୍କର ଭିଡ଼ ଲାଗି ରହିଥାଏ ।

ଆମ ବିଦ୍ୟାଳୟର ସାତଶହ ପଚାଶ ଜଣ ଛାତ୍ରଙ୍କ ମଧ୍ୟରୁ ପ୍ରାୟ ଶହେଜଣ ଛାତ୍ର ମକର ଯାତ୍ରାରେ ସ୍ୱେଚ୍ଛାସେବକ ଭାବେ କାମ କରନ୍ତି । ପ୍ରତି ସ୍ୱେଚ୍ଛାସେବକ ହାତରେ ଠେଙ୍ଗା, ବେକରେ ରଙ୍ଗୀନ୍ ରୁମାଲ ଓ ଛାତିରେ ବ୍ୟାଜ୍ ଲଗାଯାଇ ଥାଏ । ଆମ କ୍ରୀଡ଼ା ଶିକ୍ଷକଙ୍କ ଅଧିନାୟକତ୍ୱରେ ସ୍ୱେଚ୍ଛାସେବକମାନେ ସକାଳ ଦଶଟାରୁ ରାତି ଦଶଟା ପର୍ଯ୍ୟନ୍ତ କାମ କରନ୍ତି । ଅଷ୍ଟମଶ୍ରେଣୀରୁ ମୁଁ ଜଣେ ସ୍ୱେଚ୍ଛାସେବକ ଭାବେ ମକର ଯାତ୍ରାରେ କାମ କରିବା ଆରମ୍ଭ କଲି । କାମରେ ମୋର ନିଷ୍ଠା ଦେଖି ଆମ ଶିକ୍ଷକ ମୋତେ ଗୋଟିଏ ଗ୍ରୁପ୍ ଲିଡ଼ର ବା ଦଳପତି ଭାବେ କାର୍ଯ୍ୟ କରିବାକୁ କହୁଥିଲେ । ଖୁବ୍ ଅଳ୍ପ ବୟସରୁ ମୋ ମନରେ ଦାୟିତ୍ୱବୋଧ ଓ କର୍ମନିଷ୍ଠା ଜାତ ହୋଇଥିଲା । ଆମ ଶ୍ରେଣୀରେ ମଧ୍ୟ ମୋର ସହପାଠୀମାନେ ଯେ କୌଣସି ସାମୁହିକ କାର୍ଯ୍ୟରେ ମୋ ମତକୁ ସମ୍ମାନ ଦେଉଥାଆନ୍ତି ।

ଦୋଳପରେ ଖରାଟାଣ ହୋଇଆସେ । ତତଲା ବାଲିରାସ୍ତାରେ ପାଞ୍ଚ କିଲୋମିଟର ଚାଲି ଚାଲି ଘରକୁ ଫେରିବାକୁ କଷ୍ଟ ଲାଗେ । ତେଣୁ ଦୋଳପରେ ବିଦ୍ୟାଳୟଠାରୁ ଏକ କିଲୋମିଟର ଦୂର ଗାଲୁପଡ଼ାରେ ଆମେ ସାତ ଆଠଜଣ ପିଲା ମେସ୍ କରି ପରୀକ୍ଷା ଶେଷ ହେବାଯାଏ ରହୁ । ଆମ ଗାଆଁରୁ ଜଣେ ବ୍ରାହ୍ମଣ ପିଲା ରୋଷେଇ ଦାୟିତ୍ୱରେ ଥାଏ। ମେସ୍ ଚଳାଇବାର ସମସ୍ତ ଦାୟିତ୍ୱ ମୋ ଉପରେ । ତେର ବର୍ଷ ବୟସରୁ ପ୍ରତିଦିନର ହିସାବ ଲେଖିବା, ହାଟ ବଜାର ବା ଦୋକାନ ସଉଦା କରିବା, ମାସଶେଷରେ ସମସ୍ତ ଖର୍ଚ୍ଚ ହିସାବ କରି ପ୍ରତିପିଲାକୁ ତାର ଦେୟ ବିଷୟରେ ବୁଝାଇବା କାର୍ଯ୍ୟ ମୁଁ ସୁଚାରୁରୂପେ ସମ୍ପାଦନ କରୁଥିଲି । ମୋର ଗୃହ ଶିକ୍ଷକ ଦେବଭାଇ ମାଟ୍ରିକ୍ ପରୀକ୍ଷା ଦେଇ ସାରି ଆମ ମେସ୍‌ରେ ଆସି ରହିଲେ । ସେ

ମୋତେ ଓ କୁନା (ଭଣଜା)କୁ ଉପରବେଳା ଓ ସନ୍ଧ୍ୟାରେ ପଢ଼ାନ୍ତି । ଆମକୁ ମାତ୍ର ଗୋଟିଏ ବର୍ଷ ପଢ଼ାଇବା ପରେ ମୋର ଏତେ ପରିବର୍ତ୍ତନ ଲକ୍ଷ୍ୟ କରି ସେ ଭାରି ଖୁସି ହୁଅନ୍ତି । ନବମ ଶ୍ରେଣୀରେ ଆମ ବିଦ୍ୟାଳୟରେ ଥିଏଟର କରାଇଲୁ । ସେଥିଲାଗି ଟଙ୍କା ପଇସା ଆଦାୟ କରିବା ପାଇଁ ଓ ସମସ୍ତ ଆୟୋଜନ କରିବାରେ ଉପର ଶ୍ରେଣୀର କେତେକ ଛାତ୍ରଙ୍କ ସହିତ ମୁଁ ମଧ୍ୟ ସହଯୋଗ କଲି । ଦଶମ ଶ୍ରେଣୀରେ ଆମ ବିଦ୍ୟାଳୟରେ ଅଷ୍ଟପ୍ରହରୀ ନାମ ଯଜ୍ଞ ହେଲା । ଆମ ଗାଆଁ ଠାକୁରଙ୍କ ପାଖରେ ପ୍ରତିଦିନ ଯେଉଁଭଳି କୀର୍ତ୍ତନ ହୁଏ ତାହା ଦେଖି ଓ ଶୁଣି ଶୁଣି ମୁଁ ମୃଦଙ୍ଗ ବଜାଇବା ଶିଖି ଯାଇଥିଲି । ଆମ ଶ୍ରେଣୀର କିଛି ଛାତ୍ରଙ୍କୁ ଧରି ଆମର ଏକ କୀର୍ତ୍ତନ ଦଳ ପ୍ରତି ଚରିଘଣ୍ଟା ବ୍ୟବଧାନରେ ନାମ କୀର୍ତ୍ତନ କଲୁ। ବିଦ୍ୟାଳୟର ଶିକ୍ଷକମାନେ ଏହା ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ଗଣେଶପୂଜା ଓ ସରସ୍ୱତୀ ପୂଜା ବେଳେ ପୂଜାର ଆୟୋଜନ ତଥା ରୋଷେଇବାସ, ନାମ ସଂକୀର୍ତ୍ତନ, ଖାଇବା ପିଇବାର ଯୋଗାଡ଼, ତଥା ମୂର୍ତ୍ତି ବିସର୍ଜନ ବେଳେ ଶୋଭାଯାତ୍ରାର ଦାୟିତ୍ୱରେ ମଧ୍ୟ ମୁଁ ରହୁଥିଲି । ତେଣୁ ତଳ ଶ୍ରେଣୀର ଛାତ୍ରଛାତ୍ରୀମାନେ ମୋତେ ବଡ଼ଭାଇର ସମ୍ମାନ ଦେଉଥିଲେ। ଆମ ଭିତରେ ସତେ ଯେପରି ଏକ ପାରିବାରିକ ସମ୍ପର୍କ ଥିଲାପରି ଲାଗୁଥିଲା । ଶିକ୍ଷକମାନଙ୍କର ଆଦର ସୋହାଗ ସାଙ୍ଗକୁ ବିଦ୍ୟାଳୟର ଅଧିକାଂଶ ଛାତ୍ରଛାତ୍ରୀଙ୍କ ସ୍ନେହ ସହାନୁଭୂତି ପାଇବାର ସୌଭାଗ୍ୟ ମୋ ଲାଗି ଯଥେଷ୍ଟ ପ୍ରେରଣାଦାୟକ ଥିଲା ।

ଅଷ୍ଟମ ଶ୍ରେଣୀରେ ପଢ଼ିବା ଦିନରୁ ବାପା ମୋ ପାଇଁ ଗୋଟିଏ ହରକ୍ୟୁଲେସ୍ ସାଇକେଲ କିଣି ଦେଇଥିଲେ । ସେହି ସାଇକେଲ୍‌ରେ ପ୍ରତିଦିନ ଘରୁ ବିଦ୍ୟାଳୟକୁ ଯିବା ଆସିବା କରୁଥିଲି ।

ଗାଆଁରେ ଶୀତ ସକାଳଟା ମୋତେ ଭାରି ଭଲଲାଗେ । କାଉ, କୋଇଲି, କୁମ୍ଭାଟୁଆ ଆଦି ଚଢ଼େଇମାନଙ୍କ କାକଳି ସାଙ୍ଗକୁ ଆମ ବାରିକୁ ଲାଗି ରହିଥିବା ଛୋଟିଆ ବଣ ଭିତରୁ କଜଳପାତି, ବଗ, ଘୁକାଳିକା, ଡାହୁକ ଓ ବଣି ଆଦି ପକ୍ଷୀମାନଙ୍କର କିଚିରିମିଚିରି ଶବ୍ଦରେ ନିଦ ଭାଙ୍ଗିଗଲେ ଉଠିପଡ଼ି ଦାନ୍ତ ଘଷିଦେଇ ମୁଁ ଦାଣ୍ଡକୁ ବାହାରିପଡ଼େ । ଶୀତଦିନ ଭୋର ସକାଳେ ଆମ କଚେରୀ ଘର ସାମନାରେ କଅଁଳଖରା ବିଛାଡ଼ି ହୋଇ ପଡ଼ିଥାଏ । ବାପା, ବଡ଼ବାପା, ପାଣୁଜେଜେ, ସପନିଦାଦା, କପିଳଦାଦି, ବିଶିଜେଜେ, ସୁଦର୍ଶନ ଦାଦି ପ୍ରଭୃତି ସେଇ ଖରାରେ ଆସି ବସନ୍ତି । ମୋ ସାଙ୍ଗକୁ ପ୍ରଫୁଲଭାଇ, କୁନା, ରମେଶଦାଦି ପ୍ରଭୃତି ପିଲାମାନେ ସମସ୍ତଙ୍କ ସାଙ୍ଗରେ ବସି ଖରାପୋଉଁ । ସେତେବେଳେ ଶୀତଦିନେ ଗୋବରାଚଢ଼େଇ ଲଢ଼େଇ କରିବା ଗୋଟିଏ

ମଜ୍ଜା ଥିଲା । ଭଲକରି ଶୀତ ପଡ଼ିଗଲେ ଅଶ୍ୱତ୍ଥ ଗଛର ଅଠା ସଂଗ୍ରହ କରି ରନ୍ଧାଯାଏ । ବାଉଁଶ ଚିରି ସରୁ ସରୁ ଖଡ଼ିକା ପରି ମୁଠା ମୁଠା କରି ସେ ସବୁକୁ ଏହି ଅଠାରେ ବୁଡ଼ାଇ ଗୋଟିଏ ବାଉଁଶ ନଳ ଭିତରେ ରଖାଯାଏ । ଯେଉଁ ଲୋକ ମାନଙ୍କର ଗୋବରାଚଢ଼େଇ ଧରିବାର ଦକ୍ଷତା ଅଛି, ସେମାନେ ଚୂଡ଼ା ଗୁଡ଼ ବାନ୍ଧି ଜଙ୍ଗଲିଆ ଅଞ୍ଚଳ ମାନଙ୍କରେ ବୁଲି ଗୋବରାଚଢ଼େଇର ସନ୍ଧାନ ନିଅନ୍ତି । ଯେଉଁସବୁ ଡାଳରେ ସେହି ଚଢ଼େଇ ଆସି ବସୁଛନ୍ତି, ସେହି ଡାଳରେ ଏହି ଅଠାକାଠି ଗୁଡ଼ିକ ଖଞ୍ଜି ଦିଆଯାଏ । ଚଢ଼େଇମାନେ ଆସି ବସି ପଡ଼ିବା ମାତ୍ରେ ସେମାନଙ୍କ ଦେହରେ ଅଠା ଲାଗି ଗଲେ ତଳକୁ ଖସିପଡ଼ନ୍ତି । ଏହି ଲୋକମାନେ ସେ ଚଢ଼େଇକୁ ଧରି ତା ଅଣ୍ଟାରେ ସରୁ ଡୋର ବାନ୍ଧି ନେଇ ଆସନ୍ତି । ଚଢ଼େଇଟି ଗୋଟିଏ ଲମ୍ବା କାଠି ଉପରେ ବସେ । ସେ କାଠିରେ ତା ଅଣ୍ଟା ଦଉଡ଼ିଟା ବନ୍ଧା ହୋଇଥାଏ । ଚଢ଼େଇକୁ ଚୁଡ଼ା କଦଳୀ ଖାଇବାକୁ ଦିଆଯାଏ । ସେମାନେ ପାଚିଲା କଦଳୀ, ଭଇଁଚି କାକୁଡ଼ି ଓ ଛୋଟ ପାଚିଲା ଫଳ ଖାଇ ରହନ୍ତି । ଶୀତ ସକାଳେ କଚେରୀଘର ସାମନାରେ ଆମେ ସବୁ ବସିଲାବେଳେ ସମସ୍ତଙ୍କ ହାତରେ ଗୋଟିଏ ଗୋଟିଏ ଚଢ଼େଇ ବସାଇ ଦିଆଯାଏ । ମଣିଷ ହାତରେ ବସିବା ଓ ମଣିଷ ଠାରୁ ଖାଇବାର ଅଭ୍ୟାସ ହୋଇଗଲେ ସେମାନଙ୍କ ଭିତରେ ଲଢ଼େଇ କରିବାକୁ ବ୍ୟବସ୍ଥା କରାହୁଏ । ଚଢ଼େଇମାନଙ୍କ ଭିତରେ ଲଢ଼େଇ କରି ଯାହାର ଚଢ଼େଇ ଜିତିଯାଏ ସେ ବିଜୟ ଗର୍ବରେ ଖୁବ୍ ଆନନ୍ଦ ପାଏ । ଲଢ଼େଇର ସ୍ଥାନ ଘୋଷଣା କରାଯାଇଥାଏ । ସେଦିନ ସକାଳୁ ଚଢ଼େଇମାନଙ୍କୁ କିଛି ଖାଇବାକୁ ଦିଆଯାଏନାହିଁ । ଗୋଟିଏ ବଡ଼ ହେଁସ ପକାଇ ଚାରିକଡ଼ରେ ଚଢ଼େଇ ଧରି ଲୋକମାନେ ବସନ୍ତି । ଗୋଟିଏ ପାଚିଲା କଦଳୀ ଦେଖାଇ ଦୁଇଟି ଚଢ଼େଇଙ୍କୁ ଛାଡ଼ି ଦିଆଯାଏ । କଦଳୀ ଖାଇବାକୁ ଦୁହେଁ ଲଢ଼ି ବସନ୍ତି । ଗୋଟିକୁ ଆରଟି ତଳେ ପକାଇ ତା ନଖରେ ମାଡ଼ିବସେ । ଥଣ୍ଟରେ ପରସ୍ପର କାମୁଡ଼ାକାମୁଡ଼ି ହୁଅନ୍ତି । ଯିଏ ପରାସ୍ତ ହୁଏ, ସେ ତା ଲୋକ ହାତକୁ ପଳାଇ ଆସେ । ଜିଣିଥିବା ଚଢ଼େଇପାଖକୁ ପୁଣି ଗୋଟିଏ ନୂଆ ଚଢ଼େଇକୁ ଛାଡ଼ି ଦିଆଯାଏ । ମକର ସଂକ୍ରାନ୍ତି ଠାରୁ ଅଗିଜଳା ପୂର୍ଣ୍ଣମୀ ପର୍ଯ୍ୟନ୍ତ ପ୍ରତି ସପ୍ତାହରେ ଗୋବରା ଚଢ଼େଇ ଲଢ଼େଇ ହୁଏ । ମାଘ ପୂର୍ଣ୍ଣିମା ପରେ ସବୁତକ ଚଢ଼େଇଙ୍କୁ ଉଡ଼ାଇ ଦିଆଯାଏ । ସେମାନେ ପୁଣି ତାଙ୍କ ଜାଗାକୁ ଫେରି ଯାଆନ୍ତି । ପୌଷ ଓ ମାଘ ଦୁଇମାସ ଧରି ଗୋବରା ଚଢ଼େଇଙ୍କ ଯତ୍ନ ନେବାରେ ଆମ ସାହିର ଲୋକମାନେ ଲାଗି ଯାଆନ୍ତି । ଛୋଟ ଛୋଟ ଚଢ଼େଇ ଗୁଡ଼ିକ ନିଜ ନିଜ ଭିତରେ ଏମିତି ଲଢ଼େଇ କରିବା ଦେଖି ଭାରି ମଜା ଲାଗେ । ସେମାନଙ୍କ ଅଣ୍ଟାର ଡୋର କାଟି ଦେଇ ଉଡ଼ାଇ ଦେବା ଦିନ ମୋତେ ବହୁତ ଖୁସି ଲାଗେ ।

ପ୍ରତିବର୍ଷ ବାର୍ଷିକ ପରୀକ୍ଷା ଶେଷରେ ମୁଁ ସାଇକେଲରେ ମୋ ଭଉଣୀଘର ଏରସମା ହାଜିପୁରକୁ ବୁଲିଯାଉଥିଲି । ଓଡ଼ିଶାର ରାଜଧାନୀ କଟକରୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେବା ପରେ ଦୁଇ ନମ୍ବର ୟୁନିଟସ୍ଥ ବର୍ତ୍ତମାନର ସର୍ଦ୍ଦାର ପଟେଲ ହଲ୍‌ରେ ଅନୁଷ୍ଠିତ ଓଡ଼ିଶାର ପ୍ରଥମ ବିଧାନ ସଭାରେ ମୋ ଭିଣୋଇ ଗୌରୀଶ୍ୟାମ ନାୟକ ବିଧାୟକ ଥାଆନ୍ତି । ମୋ ଉଭଣୀ ସେଠି ଥିଲାବେଳେ ଗ୍ରୀଷ୍ମଛୁଟିରେ ମୋର ପ୍ରାୟ ଆଠଦଶଦିନ ଭୁବନେଶ୍ୱରରେ କଟେ । ସେତେବେଳେ ଭୁବନେଶ୍ୱର ମହାନଗରୀ ନୂଆ କରି ଗଢ଼ି ଉଠୁଥାଏ । ଷ୍ଟେସନ ପାଖରେ ମାଷ୍ଟର କ୍ୟାଣ୍ଟିନ୍ ଛକ, ରାଜମହଲଛକ ଓ ରୂପାଲି ଛକକୁ ନେଇ ଛୋଟ ସହରଟି ସୀମିତ ଥାଏ । ଆଜିର ବିଧାନସଭା, ସଚିବାଳୟ ବା ରାଜଭବନ ଆଦି ତିଆରି ହୋଇନଥାଏ । ସର୍ଦ୍ଦାର ପଟେଲ ହଲ୍ ପାଖ ବସଷ୍ଟାଣ୍ଡରେ (ପୁରୁଣା ବସ୍‌ଷ୍ଟାଣ୍ଡରେ) ଓହ୍ଲାଇ ପାଖରେ ଥିବା ବିଧାୟକ କଲୋନୀକୁ ଚାଲିଯାଇ ଭଉଣୀ ପାଖରେ ରହୁଥିଲି ମୁଁ । ସବୁ ଆଡ଼େ କୋଠାବାଡ଼ି ତିଆରି କାମ ଚାଲିଥାଏ । ୧, ୨ ଓ ୩ ନମ୍ବର ୟୁନିଟ ଅଧା ଅଧା ତିଆରି ସରିଥାଏ । ରାଜଧାନୀ ଥାନା ପାଖରେ ହାଟବସେ । ଆଜିର ୪ ନମ୍ବର ୟୁନିଟ ବା ରବୀନ୍ଦ୍ର ମଣ୍ଡପ ଜାଗାରେ ଜଙ୍ଗଲ ଥାଏ । ତେଣିକି ଯିବାକୁ ଭୟ ଲାଗୁଥାଏ । ଆଜିର ରାଜଭବନ ଅଞ୍ଚଳରେ ଥାଏ ଘଞ୍ଚ ଜଙ୍ଗଲ ଓ ସେଇ ଜଙ୍ଗଲ କଡ଼େ କଡ଼େ ଖଣ୍ଡଗିରି ଦେଇ ଖୋର୍ଦ୍ଧାକୁ ନାଲିମାଟି ରାସ୍ତା ଥାଏ । ପୁରୁଣା ଭୁବନେଶ୍ୱର ବା ଲିଙ୍ଗରାଜ ମନ୍ଦିରକୁ ମଧ୍ୟ ନାଲିମାଟି ରାସ୍ତାଥାଏ, ଆମେ ରିକ୍ସାରେ ଯାଇ ଲିଙ୍ଗରାଜଙ୍କ ଦର୍ଶନ କରିଆସୁ । କଟକ ତୁଳନାରେ ନୂଆ ରାଜଧାନୀ ଭୁବନେଶ୍ୱରଟା ଖୁବ୍ ଛୋଟ ଲାଗୁଥାଏ ।

ଗାଆଁରେ ଇଷ୍ଟ ଦେବତା ଶ୍ରୀ ଗୋପାଳଜୀଉଙ୍କ ପ୍ରତି ଆମର ପ୍ରବଳ ନିଷ୍ଠା । ପ୍ରତିଦିନ ସନ୍ଧ୍ୟାବେଳେ ମୁଁ ବିଦ୍ୟାଳୟରୁ ଫେରିବା ପରେ ଗୋଡ଼ହାତ ଧୋଇ ଠାକୁର ଘରକୁ ଯାଏ । ଗୋପାଳଜୀଉଙ୍କ ଆଳତୀ ବେଳେ ମୁଁ ଘଣ୍ଟ ବଜାଏ ଓ ଆଳତୀ ପରେ ଠାକୁରଙ୍କ ବାଘମୁହଁରେ ବସି ଗୀତଗୋବିନ୍ଦ ଗାଏ । ପୁଝାରୀ ସମସ୍ତଙ୍କୁ ପାଦୁକ ଦେଇ ସାରି ମୋତେ ପାଦୁକ ଦିଅନ୍ତି । ସେହିପରି ସକାଳେ ମଧ୍ୟ ଗାଧୋଇ ସାରି ଠାକୁରଙ୍କ ଦର୍ଶନପରେ ପାଦୁକ ପାଇସାରି ମୁଁ ଭାତଖିଆସାରି ବିଦ୍ୟାଳୟକୁ ଯାଏ। ଶ୍ରୀଗୋପାଳଜୀଉ ଆମର ଇଷ୍ଟ ଦେବତା । ଯାହା କିଛି ହେବ, ସେସବୁ ତାଙ୍କରି ଇଚ୍ଛାରେ ହିଁ ସମ୍ଭବ । ଦେହ ମୁଣ୍ଡ ବେମାର ଆରାମରେ ଠାକୁରଙ୍କ ପାଦତଳେ ତୁଳସୀ ଚଢ଼ାଇବାକୁ ପୁଝାରୀଙ୍କୁ କୁହାଯାଏ । ପରୀକ୍ଷାବେଳେ ପୁଝାରୀ ଠାକୁରଙ୍କ ପାଦତଳେ ତୁଳସୀ ଚଢ଼ାଇ ପରୀକ୍ଷାରେ କେମିତି ଭଲହେବ ବୋଲି ଜଣାନ୍ତି ।

ମୋ ପିଲାଦିନେ ମ୍ୟାଲେରିଆ ଜ୍ୱର ଥିଲା ଏକ ସାଧାରଣ ରୋଗ । ପ୍ରତି ତିନି ଚାରି ମାସରେ ଦୁଇତିନି ଧରି ମ୍ୟାଲେରିଆ ଜ୍ୱର ହୁଏ । ଗୁରୁଜେଜେ କବିରାଜି ଔଷଧ

ଦିଅନ୍ତି । ସେଇ ଔଷଧରେ ଜ୍ୱର ଭଲ ହୋଇଯାଏ । ଗାଆଁ ସାରା ଲୋକେ ଗୁରୁଜେଜେଙ୍କଠାରୁ ଔଷଧ ନିଅନ୍ତି । ସେତେବେଳେ ଟାଇଫଏଡ୍, ଯକ୍ଷ୍ମା, ବସନ୍ତ, ହଇଜା ଆଦି ରୋଗ ଥିଲା ଅତ୍ୟନ୍ତ ମାରାତ୍ମକ । ସେ ସବୁ ରୋଗ ପାଇଁ ଔଷଧ ନଥିଲା । ଟାଇଫଏଡ୍ ରୋଗ ହେଲେ ବଞ୍ଚିବା ଅସମ୍ଭବ ଥିଲା । ହଇଜା ବା ବସନ୍ତରୋଗ ଆରମ୍ଭ ହେଲେ ଗାଆଁମାନଙ୍କରେ ବହୁ ପରିବାର ନିଶ୍ଚିହ୍ନ ହୋଇ ଯାଉଥିଲେ । ତଥାପି ଗୁରୁଜେଜେଙ୍କ ଔଷଧରେ ଆଖପାଖ ପଚାଶଖଣ୍ଡ ଗାଆଁର ଲୋକେ ଭଲ ହେଉଥିଲେ । ତାଙ୍କ ବଡ଼ପୁଅ ଗୌରସୁନ୍ଦର ମିଶ୍ର ଓ ମଝିଆଁ ପୁଅ ଅଦ୍ୱୈତପ୍ରସାଦ ମିଶ୍ର ଗାଆଁଗାଆଁ ବୁଲି କବିରାଜି, ହୋମିଓପାଥି ଓ ବାୟୋକେମିକ୍ ଔଷଧମାନ ପ୍ରୟୋଗ କରି ଅଧିକାଂଶ ଲୋକଙ୍କୁ ଆରୋଗ୍ୟ କରୁଥିଲେ ।

ସ୍ୱାଧୀନତାର ପରବର୍ତ୍ତୀ ସମୟରେ ହିନ୍ଦୀଭାଷାକୁ ରାଷ୍ଟ୍ରଭାଷାଭାବେ ଦେଶର ସମସ୍ତ ରାଜ୍ୟମାନଙ୍କରେ ପ୍ରଚଳନ କରାଇବା ଲାଗି ଏକ ରାଷ୍ଟ୍ରଭାଷା ପ୍ରଚାର ସମିତି କେନ୍ଦ୍ର ସରକାରଙ୍କ ସହାୟତାରେ କାର୍ଯ୍ୟରତ ଥିଲା । ଓଡ଼ିଶାରେ ହିନ୍ଦୀ ଶିକ୍ଷାର ପ୍ରସାର ଲାଗି ପ୍ରାରମ୍ଭିକ, ପ୍ରବେଶ, ପରିଚୟ, କୋବିଦ ଓ ରତ୍ନ ପାଠ୍ୟକ୍ରମ ମାନ ପ୍ରଚଳନ ହୋଇଥାଏ । ଅନେକ ସ୍ୱାଧୀନତା ସଂଗ୍ରାମୀ ଓ ଦେଶଭକ୍ତମାନେ ହିନ୍ଦୀ ଶିକ୍ଷାର ପ୍ରଚଳନ ଲାଗି ଏସବୁ ପାଠ୍ୟକ୍ରମ ଘରୋଇଭାବେ ପ୍ରସାରିତ କରିବାକୁ ସାହାଯ୍ୟ କରୁଥାନ୍ତି । ଗୁରୁଜେଜେଙ୍କ ସାନପୁଅ ଗଦୁମାମୁଁ ଏସବୁ ପାଠ୍ୟକ୍ରମରେ ନାମ ଲେଖାଇଲା ବେଳେ ତାଙ୍କ ସହିତ ମୁଁ ମଧ ସାମିଲ ହେଲି । ଆମେ ଦୁହେଁ ପ୍ରତି ରବିବାର ଦିନ ଜଗତସିଂହପୁର ଯାଇ ସେଠାକାର ଉଚ୍ଚ ପ୍ରାଥମିକ ବାଳିକା ବିଦ୍ୟାଳୟର ଶିକ୍ଷକ ବ୍ରହ୍ମାନନ୍ଦ ଚୌଧୁରୀଙ୍କ ପାଖରେ ହିନ୍ଦୀ ପ୍ରାରମ୍ଭିକ, ପ୍ରବେଶ ଓ ପରିଚୟ ପାଠ୍ୟକ୍ରମମାନ ପଢ଼ି ରାଷ୍ଟ୍ରଭାଷା ପ୍ରଚାର ସମିତି ଜରିଆରେ ପରୀକ୍ଷା ଦେଇ କୃତକାର୍ଯ୍ୟ ହେଲୁ ।

ମୁଁ ମାଇନର୍ ସ୍କୁଲ୍‌ରେ ପଢ଼ିବା ପର୍ଯ୍ୟନ୍ତ ଆମ ଘରେ ବ୍ରାହ୍ମଣ ପୁଝାରୀମାନେ ରୋଷେଇ କରୁଥିଲେ । ମୋର ହେତୁ ପାଇଲା ବେଳକୁ ରାଧୁପୁଝାରୀ ରୋଷେଇ ଦାୟିତ୍ୱରେ ଥିଲେ । ତାପରେ ଗଣେଶ ପୂଝାରୀ ଓ ତାଙ୍କ ପରେ ବାଇଧର ପୁଝାରୀ ରୋଷେଇ ଦାୟିତ୍ୱରେ ରହିଲେ । ସେମାନେ ରୋଷେଇ ସାରି ବଡ଼ବଡୁଆଙ୍କ ପାଖରେ ନୈବେଦ୍ୟ ଦେଇସାରି ଖାଇବା ପାଇଁ ବାଢ଼ି ଦେଉଥିଲେ । ରୋଷେଇ ଘରର ଐଶ୍ୟାନ୍ୟ କୋଣରେ ବଡ଼ବଡୁଆଙ୍କ ପିଣ୍ଡି ଥାଏ । ପ୍ରତିଦିନ ରୋଷେଇ ଘର ଗୋବରରେ ଲିପା ହୁଏ । ପୁଝାରୀ ବଡ଼ ବଡୁଆଙ୍କୁ ମନ୍ତ୍ରସ୍ନାନ କରାଇ ସଞ୍ଜ ଦିଅନ୍ତି । ପୁଣିଥରେ ସନ୍ଧ୍ୟାରେ ସଞ୍ଜ ଦିଆଯାଏ । ମାଛ ମାଂସ ଆଦି ଆମିଷ ରୋଷେଇ ହେଲେ କୋଠା ଖଞ୍ଜା ଉତ୍ତରକୁ ଥିବା ଚାଳଘର ପିଣ୍ଡାରେ ଯେଉଁ ଚୂଲି ଥାଏ, ସେଇଠି ହୁଏ ।

ବୋଉ ଆମିଷ ତରକାରୀ ରାନ୍ଧିଦିଏ । ନୋହିଲେ ସାହିରୁ କେହି ଖୁଡ଼ୀ ବା ମାଆ ସେଠାରେ ବସି ମାଛ ଭାଜିବା କିମ୍ବା ମାଂସ କଷିବା କାମ କରନ୍ତି । ପ୍ରତ୍ୟେକ ଦିନ ଆମ ଘରେ କେହି ନା କେହି ଅତିଥି ଅଭ୍ୟାଗତ ଖାଇବାକୁ ଆସନ୍ତି । ଯୋଗୀମାନେ ଭିକ୍ଷା କରି ଆସି ଖିଆପିଆବେଳେ ପହଞ୍ଚିଲେ ସେମାନଙ୍କୁ ଖାଇବାକୁ ଦିଆଯାଏ । ଅଲେଖ ଧର୍ମାବଲମ୍ବୀ ସାଧୁସନ୍ନ୍ୟାସୀ ମାନେ ଆମଘରେ ଅନ୍ନ ଭିକ୍ଷା କରନ୍ତି । ଏହାଛଡ଼ା ପାଖଆଖ ଗାଆଁର ଗରିବ ପ୍ରାପ୍ତବୟସ୍କ ଲୋକେ ମଧ୍ୟ ଆସି ପହଞ୍ଚିଲେ ବୋଉ ବା ମାଆ ସେମାନଙ୍କୁ ଖାଇବା ପାଇଁ ଡାକନ୍ତି । ସେମାନେ ଖାଇସାରିବା ପରେ ମୋତେ ଆଶୀର୍ବାଦ କରନ୍ତି । ବ୍ରାହ୍ମଣ, ବୈଷ୍ଣବ ବା ବୟସ୍କ ଲୋକଙ୍କୁ ମୁଁ ପ୍ରଣାମ କରି ସାରିଲେ କିଛି ଦକ୍ଷିଣା ମୋ ହାତରେ ମାଆ ସେମାନଙ୍କୁ ଦିଏ । ତାଛଡ଼ା ବେଳେ ବେଳେ ନାଗା ସନ୍ନ୍ୟାସୀ ମାନେ ରଥଯାତ୍ରା ଦେଖି ଉତ୍ତର ଭାରତକୁ ବାହୁଡ଼ିବା ବାଟରେ ଆମ ଗାଆଁକୁ ଆସି ଡେରା ପକାନ୍ତି । ସେମାନଙ୍କ ଲାଗି ଠାକୁରଙ୍କ ପାଖରେ ଖନ୍ଦା ଲାଗେ । ଧୂନୀ ଲଗାଇବା ପାଇଁ ଧୂନୀ କୁଣ୍ଡ ତିଆରି ହୁଏ । କାଠ ଯୋଗାଇ ଦିଆଯାଏ । ସେମାନେ ଯିବାବେଳେ ଦକ୍ଷିଣା ନିଅନ୍ତି । ଏସବୁ ବାବଦ ଅନେକ ଟଙ୍କା ଖର୍ଚ୍ଚ ହୁଏ । ଗୁମାସ୍ତା ମାନେ ଜମି ବିକ୍ରୀ କରି ଟଙ୍କା ଭରଣା କରନ୍ତି ।

ଆମ ଘରର ଦୈନନ୍ଦିନ ବଡ଼ କାମ ହେଲା ପାନଭଙ୍ଗା । ବାପା, ବୋଉ, ମାଆ ଓ ଗୁରୁଜେଜେଙ୍କର ପାନଡ଼ବା ଥାଏ । ସେମାନେ ଦିନକୁ ଦଶବାର ଖଣ୍ଡ ଲେଖାଏଁ ପାନ ଖାଆନ୍ତି । ଠାକୁରଙ୍କ ପାଇଁ ଦୁଇବେଳାର ବିଡ଼ିଆପାନ ଓ ଅତିଥି ଅଭ୍ୟାଗତ, କୁଣିଆଁ ମଇତ୍ର ମାନଙ୍କ ପାଇଁ ପାନ ଭାଙ୍ଗିବା ଥିଲା ଗୋଟାଏ ବଡ଼ କାମ । ଏଥିଲାଗି ସକାଳ ଆଠଟା ସୁଦ୍ଧା ତଳ ସାହିରୁ ବାପାଙ୍କର ଖୁଡ଼ୀ ବା ଦେଢେଇ ହିସାବର ବୟସ୍କ ମହିଳା ଦୁଇଜଣ ଆସି ପାନ ସବୁ ଧୋଇ ଚିରି ଚୂନ ଲଗାଇ ତାଳପତ୍ର ଛପା ଉପରେ ରଖି ତହିଁରେ ଖଇର ଦେଇ, ଗୁଆ, ଗୁଣ୍ଡି, ମସଲା ସବୁ ପକାଇ ଭାଙ୍ଗିସାରି ସବୁରି ପାନଡବାରେ ସଜାଇ ରଖନ୍ତି । ଗୁଆ ଭାଙ୍ଗିବା ପାଇଁ ଜଣେ ଲୋକ ସକାଳୁ ଘଣ୍ଟାଏ ବା ଅଧିକ ସମୟ ବସେ । ଆଲ୍‌ମୀରାରେ ଗୁଣ୍ଡିବୋତଲ ସବୁ ରଖାଯାଇଥାଏ ।

ବର୍ଷରେ ଦୁଇତିନିଥର ଗୁଣ୍ଡି ତିଆରି ହୁଏ । ସେଥିଲାଗି ପ୍ରାୟ ସପ୍ତାହେ କାଳ କାମ ଲାଗେ । ଧନିଆଁ ଧୋଇ ଛାଣି ଶୁଖାଇବା, ଧୂଆଁପତ୍ର ଶୁଖାଇ ଗୁଣ୍ଡ କରିବା, ପାନମଧୁରୀ ଚୂଆ, ଲବଙ୍ଗ ଓ ଜାୟିତ୍ରୀ ଗୁଣ୍ଡ କରି ରଖିବା ପାଇଁ ସାତ-ଆଠଦିନ କାମ ଲାଗେ । ଗୁଣ୍ଡି ତିଆରି ସରିଲେ ବୋତଲ ମାନଙ୍କରେ ଭରି ଗୋଟାଏ କାଠିରେ ସେସବୁ ଖୁନ୍ଦି ସାରି ଠିପି ଦେଇ ତା ଉପରେ ଜଉ ତରଳାଇ ମୁଦ ଦେବାପରେ ସାଇତି ରଖାଯାଏ । ଖରାଦିନେ କିଆ କିମ୍ବା କେତକୀ ଫୁଲ ଫୁଟିଲେ ଖଇର ତିଆରି

ହୋଇ ରହେ । ଖଇର ଗୁଣ୍ଡକରି ସେଥିରେ ଗୁଜୁରାତି, ଲବଙ୍ଗ ଆଦି ମସଲାଗୁଣ୍ଡ ମିଶାଇ କେତେକୀ ପାଖୁଡ଼ାରେ ଚୂଆ ଲଗାଇ ଗୁଡ଼ାଇ ଖରାରେ ଶୁଖାଇ ରଖାଯାଏ । ଶିପଚୂନ ଆସି ରନ୍ଧା ହୋଇ ହାଣ୍ଡିରେ ରହେ । ତହିଁରୁ ପୁଳାଏ ଆଣି ପାନଭଙ୍ଗା ପେଡ଼ି ଭିତରେ ଗୋଟାଏ ଛୋଟ ଘଡ଼ିରେ ରଖାଯାଏ । ପ୍ରତି ହାଟପାଳିରେ ଦୁଇଶହ ପାନ ଆଣି ଧୋଇ ସାରି ପଲମରେ ସଜାଇ ରଖି ତା ଉପରେ ଓଦାକନା ଢାଙ୍କି ଦିଆଯାଏ । ପ୍ରତିଦିନ ପାନ ଭାଙ୍ଗିବା ଗୋଟାଏ ମୁଖ୍ୟକାମ ଭାବେ ଆମଘରେ ଗଣାଯାଏ । ପ୍ରତ୍ୟେକ ପାନ ଖାଉଥିବା ଲୋକ ପାଇଁ କଂସା ବା ପିତ୍ତଳର ପିକଦାନୀ ମଧ୍ୟ ଥାଏ । ଏଠି ସେଠି ପାନଛେପ ନ ପକାଇ କେବଳ ପିକଦାନୀରେ ସମସ୍ତେ ପକାନ୍ତି ଓ ପ୍ରତିଦିନ ସକାଳେ ସେ ଦାନୀ ଧୁଆ ମଜା ହୋଇ ପରିଷ୍କାର କରାଯାଏ । ଗୁରୁଜେଜେଙ୍କ ପାଇଁ ପ୍ରତିଦିନ ଯିଏ ପାନ ନେଇଯାଏ, ସେ ଗୋଟିଏ ରୂପା ଗିନାରେ ତାଙ୍କର ପାଦଧୁଆ ପାଣି ନେଇକରି ଆସେ । ବୋଉ ସେ ପାଣି ପିଇ ସାରିଲେ ଖିଆପିଆ କରେ ।

ପ୍ରତିଦିନ ସ୍କୁଲରୁ ଆସି ଖାଇସାରିଲେ ମୁଁ ଖେଳିବାକୁ ଯାଏ । ଆମେ ସବୁ ଫୁଟବଲ୍ ଖେଳୁ । ବେଳେବେଳେ ଯଥେଷ୍ଟ ସଂଖ୍ୟକ ପିଲା ନଥିଲେ ଅଳ୍ପ ପିଲାରେ ଆମେ ବାଗୁଡ଼ି, ଲୁଣପଟି, ବୋହୂଚୋରୀ ଓ ଗୁଡ଼େଇ ଆଦି ଦେଶୀଖେଳ ଖେଳୁ । ଗ୍ରୀଷ୍ମଛୁଟି ସମୟରେ ରଜପର୍ବ ପଡ଼େ । ରଜ ତିନିଦିନଯାକ ଗାଆଁ ପିଲାମାନଙ୍କୁ ନେଇ ମୁଁ ବାଗୁଡ଼ି, ଲୁଣପଟି, ଗୁଡ଼େଇ ଆଦି ଦେଶୀ ଖେଳ ଖେଳେ । ଆମେ ସବୁ ଖେଳିଲା ବେଳେ ଜଣେ ଡେଙ୍ଗୁରାବାଲା ବସି ଡେଙ୍ଗୁରା ବଜାଏ । ହାର୍ ଜିତ୍ ବେଳେ ଜୋର୍‌ରେ ଡେଙ୍ଗୁରା ବାଜେ । ଗାଆଁ ଲୋକମାନେ ଠିଆହୋଇ ଖେଳ ଦେଖନ୍ତି । ସକାଳ ଆଠଟାରୁ ଦିନ ପ୍ରାୟ ଗୋଟାଏ ଦୁଇଟା ପର୍ଯ୍ୟନ୍ତ ଖେଳ ହୁଏ । ପୁଣି ଘରକୁ ଆସି ଖାଇସାରି ଉପରବେଳା ଚାରିଟା ସୁଦ୍ଧା ଖେଳ ଆରମ୍ଭ ହୋଇ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଚାଲେ । ଘରକୁ ଫେରିଲା ବେଳକୁ ପୁରା ହାଲିଆ ଲାଗୁଥାଏ । ଯାହା ଦିଟା ଖାଇଦେଇ ନିଘୋଡ଼ ନିଦରେ ଶୋଇଗଲେ ପୁଣି ସକାଳୁ ଉଠି ଖେଳପଡ଼ିଆରେ ହାଜର ହୋଇଯାଉ । ଏଭଳି ରଜ ତିନିଦିନ ଖେଳି ଖେଳି ଦିନ କଟିଯାଏ । ମୁରବୀ ଲୋକମାନେ ରଜବେଳେ ତାସ୍, ପଶା ବା ଗଞ୍ଜପା ଆଦି ଖେଳରେ ମାତି ଯାଆନ୍ତି । ଅବିବାହିତା ଝିଅମାନେ ଗାଆଁର ଗୋଟିଏ ବଡ଼ ଘରେ ଏକ ବଡ଼ ବିଛଣା ପାରି ସେଇ ଘରେ ଏକାଠି ରହି ରଜ ପାଳନ୍ତି।  ସେମାନେ ରଜ ତିନିଦିନ ଖାଲିପାଦରେ ଚାଲନ୍ତି ନାହିଁ । ସବୁରି ଘରୁ ପିଠାପଣା, ମୁଢ଼ି, ଉଖୁଡ଼ା, ନଡ଼ିଆ, ଆମ୍ବ, ପଣସ, ସପୁରୀ ଆଦି ଫଳ ସେଇ ଘରକୁ ଆସେ । ଝିଅମାନେ ସେସବୁ ବାଣ୍ଟି ଖିଆପିଆ କରି ତିନିଦିନ ଧରି

ସେ ଘରେ ତାସ୍, କାଞ୍ଚିଅଁଳା, ଲୁଡୁ ଆଦି ଖେଳି ଆନନ୍ଦରେ ରଜ ଉତ୍ସବ ପାଳନ କରନ୍ତି । ଅନ୍ୟ ଜାତିର ଝିଅମାନେ ଗାଆଁ ମୁଣ୍ଡ ବରଗଛ ବା ତୋଟାରେ ଥିବା ବଡ଼ଗଛ ଡାଳରେ ଦୋଳିବାନ୍ଧି ଖେଳନ୍ତି । ହେଲେ, ଆଜିକାଲି ରଜପର୍ବ ଆଉ ସେପରି ଢଙ୍ଗରେ ପାଳିତ ହେଉନାହିଁ । ଝିଅମାନେ କେବଳ ନୂଆଲୁଗା ପିନ୍ଧିବା ଛଡ଼ା ପୂର୍ବପରି ଏକାଠି ହୋଇ ଖେଳୁ ନାହାନ୍ତି । ଗାଆଁମାନଙ୍କରେ ଆଉ ବଡ଼ବଡ଼ ବରଗଛ ନାହିଁ କିମ୍ବା ଛାୟା ପ୍ରଦାନକାରୀ ବଡ଼ ବଡ଼ ଆମ୍ବତୋଟା ନାହିଁ ।

୧୯୫୩ ମସିହାରେ ମୋର ଏକାଦଶ ଶ୍ରେଣୀ ହେଲା । ଗାଆଁକୁ ଆଉ ଯିବା ଆସିବା ନକରି ହଷ୍ଟେଲରେ ରହି ପଢ଼ିବା ପାଇଁ ବ୍ୟବସ୍ଥା ହେଲା । ଜଗତସିଂହପୁର ବଡ଼ ବଜାରରେ ଆମ ସ୍କୁଲର ହଷ୍ଟେଲ ଥାଏ । ଶ୍ରୀ ଧନେଶ୍ୱର ମହାନ୍ତି ଇଂରାଜୀ ଶିକ୍ଷକ ସେହି ହଷ୍ଟେଲ ଦାୟିତ୍ୱରେ ଥାଆନ୍ତି । ସେ ଥିଲେ ନିଗମାନନ୍ଦଙ୍କ ଭକ୍ତ । ପ୍ରତିଦିନ ସନ୍ଧ୍ୟାରେ ଏକାଠି ବସି ଆମେ ପ୍ରାର୍ଥନା ଗାଉ । ଧନେଶ୍ୱର ବାବୁ ଆମକୁ ପନ୍ଦର କୋଡ଼ିଏ ମିନିଟ୍ ପାଇଁ ଧର୍ମ ଶିକ୍ଷା ଦିଅନ୍ତି । ଠାକୁର ନିଗମାନନ୍ଦଙ୍କ ବିଷୟରେ ମଧ୍ୟ ନାନା କଥା କହନ୍ତି । ହଷ୍ଟେଲରେ ରହିବାର ମାସକ ପରେ ଦିନେ ସ୍କୁଲରୁ ଫେରି ଦେଖେ ତ ମୋର ବିଛଣାପତ୍ର ଓ ଟ୍ରଙ୍କ୍ ମୋ କୋଠରୀରେ ନାହିଁ । ମୁଁ ଯାଇ ଧନେଶ୍ୱର ସାର୍‌ଙ୍କୁ କହିଲି । ସେ କହିଲେ ବିଦ୍ୟାଳୟର ସମ୍ପାଦକ ଆସି ତୁମ ଜିନିଷପତ୍ର ତାଙ୍କ ଘରକୁ ନେଇ ଯାଇଛନ୍ତି । ତୁମେ ତାଙ୍କ ଘରକୁ ଯାଅ ।

ବିଦ୍ୟାଳୟର ସମ୍ପାଦକ ଥିଲେ ଶ୍ରୀ ଶ୍ୟାମାଚରଣ ମହାପାତ୍ର (ନିଲୁବାବୁ) । ତାଙ୍କର ବାପା ଶ୍ରୀକୃଷ୍ଣ ମହାପାତ୍ର ଆମ ହାଇସ୍କୁଲର ପ୍ରତିଷ୍ଠାତା । ଶ୍ରୀକୃଷ୍ଣ ମହାପାତ୍ରଙ୍କ ମଝିଆଁପୁଅ ମୋର ନିଜ ପିଉସା । ସେ ଓ ମୋ ପିଉସୀ ଦୁହେଁ ଯାଜପୁର ଜିଲାର ସୁକିନ୍ଦାରେ ରହନ୍ତି । ନିଲୁ ପିଉସା ତାଙ୍କର ବଡ଼ଭାଇ । ତାଙ୍କ ସ୍ତ୍ରୀ ପାର୍ବତୀ ଦେବୀ ମୋ ପିଉସୀର ବଡ଼ ଯାଆ । ଅତ୍ୟନ୍ତ ସ୍ନେହୀ ଓ ସନ୍ତାନ ବତ୍ସଳା ସେ । ମୋର ହଷ୍ଟେଲ୍‌ରେ ରହିବା କଥା ଶୁଣି ପାର୍ବତୀ ଅପା ପିଉସାଙ୍କୁ କହି ମୋର ଜିନିଷପତ୍ର ଘରକୁ ନେଇ ଯାଇଛି । ମୁଁ ଯାଇ ଅପାକୁ ପ୍ରଣାମ କଲି । ସେ କହିଲା ତୋର ପିଉସୀ ଘର ଥାଉ ଥାଉ ତୁ ହଷ୍ଟେଲରେ ରହିବା ଠିକ୍ ନୁହେଁ । ଆଜିଠାରୁ ତୁ ଏଇଠି ରହିବୁ । ନିଲୁ ପିଉସାଙ୍କର ପାଞ୍ଚ ପୁଅ । ସୋମଭାଇ, ରଘୁଭାଇ, ଗୋପି ଭାଇ, ବିଶ୍ୱନାଥ ଭାଇ ଓ ରମାନାଥ (ବାବୁ) ଭାଇ । ବାବୁ ଭାଇ ମୋ ସାଙ୍ଗରେ ପଢୁଥାଏ । ପିଉସା କହିଲେ, ତୁମେ ଦୁହେଁ ଏକାଠି ପଢ଼ । ପିଉସାଙ୍କୁ ଦେଖିଲେ ଡର ଲାଗେ । ତାଙ୍କ ସାମନାକୁ ଯାଇ ହୁଏନା । ପାର୍ବତୀ ଅପା କଲ୍ୟାଣମୟୀ ଦେବୀ ପ୍ରତିମା ପରି ମଣିଷ । ତାର ବଡ଼ଝିଅ ବୁଢ଼ୀଅପା ବିବାହ କରିଥାଏ । ଘରେ ଥାଆନ୍ତି ଶୁକ ଅପା, ବେଙ୍ଗ, କୁନି ଓ ମନି ।

ରଘୁଭାଇ ମୋର ଅଷ୍ଟମ ଶ୍ରେଣୀ ବର୍ଷ ବିବାହ କରିଥିଲେ । ତାଙ୍କ ସ୍ତ୍ରୀ ଶୈଳଭାଉଜ ଓଡ଼ିଶାର ଖ୍ୟାତନାମା ସାହିତ୍ୟିକ ଶ୍ରୀ ହୃଦାନନ୍ଦ ରାୟଙ୍କର ଦେଢ଼ଶାଶୁ । ଆମ ସମସ୍ତଙ୍କର ଖାଇବା ଖବର ସେ ବୁଝନ୍ତି । ଜଣେ ପୁଝାରୀ ରୋଷେଇ ଦାୟିତ୍ୱରେ ଥାଆନ୍ତି । ମାତ୍ର ଶୈଳଭାଉଜଙ୍କ ଫରମାସ୍ ଅନୁଯାୟୀ ରୋଷେଇ ହୁଏ । ଏତେ ଭାଇ ଭଉଣୀଙ୍କ ମେଳରେ ମୋତେ ପିଉସାଙ୍କର ଘର ଖୁବ୍ ଭଲ ଲାଗେ । ଖୁବ୍ ଶୀଘ୍ର ମାଟ୍ରିକ୍ ପରୀକ୍ଷା ପାଖେଇ ଆସିଲା । ଟେଷ୍ଟ ପରୀକ୍ଷା ପରେ ମୁଁ ପିଉସାଘର ଛାଡ଼ି ଆମ ଘରକୁ ଚାଲିଆସିଲି । କଟକର ଖ୍ରୀଷ୍ଟ କଲିଜିଏଟ ସ୍କୁଲରେ ଆମର ପରୀକ୍ଷା କେନ୍ଦ୍ର ପଡ଼ିଥାଏ । ପରୀକ୍ଷା ଦୁଇଦିନ ଥାଇ ଆମେ ଯାଇ ବାଙ୍କାବଜାର ଧର୍ମଶାଳାରେ ରହିଲୁ । ପ୍ରାୟ ପଚାଶ ଜଣ ପରୀକ୍ଷାର୍ଥୀଙ୍କ ସହିତ ଦୁଇଜଣ ଶିକ୍ଷକ, ରୋଷେୟା ଓ ଦୁଇଜଣ ସାହାଯ୍ୟକାରୀ ଆମ ସହିତ ଧର୍ମଶାଳାରେ ରହିଲେ । ଚାରିଦିନ ପରୀକ୍ଷା ଚାଲିଲା । ପରୀକ୍ଷା ସରିବା ଦିନ ମୁଁ ମୋ ଜିନିଷପତ୍ର ନେଇ ଜୋବ୍ରା ଯାଇ ମାମୁଁଙ୍କ ବସାରେ ରହିଲି । ଗାଆଁରୁ ପ୍ରଫୁଲ୍ଲ ଭାଇ ଆସି ପହଞ୍ଚିଲେ । ଆମେ ଦୁହେଁ ସାଇକେଲ୍‌ରେ ଚୌଦ୍ୱାର ମିଲ୍ ଦେଖିବାକୁ ଗଲୁ । ସେତେବେଳେ ଚୌଦ୍ୱାର ଲୁଗାକଳ ଥିଲା ଏ ଅଞ୍ଚଳର ଖ୍ୟାତନାମା ଶିଳ୍ପାଞ୍ଚଳ । ସେଠୁ ଫେରିଆସି ତାପରଦିନ ଟ୍ରେନ୍‌ରେ ଚଣ୍ଡୀଖୋଲ ଯାଇ ବୁଲି ଆସିଲୁ । ଗାଆଁକୁ ଫେରି ଅନେକ ବନ୍ଧୁଘରକୁ ମୁଁ ବୁଲିବାକୁ ଗଲି । ଏରସମା ହାଜିପୁର ଭଉଣୀଘର, ତେନ୍ତୁଳିପଦା ପିଉସୀଘର, କୋଶିଦା ମାହାଙ୍ଗାରେ ଦୀନବନ୍ଧୁ ମାମୁଁଙ୍କ ଘର ଓ ନୋଦାରେ ପିଉସୀ ଟୁଆଁଅପା ଘରକୁ ଯାଇ ସବୁଠି କିଛି କିଛି ଦିନ କଟାଇ ଘରକୁ ଫେରିଲି । ଜୁନ୍ ମାସରେ ପରୀକ୍ଷାଫଳ ବାହାରିଲା ।

ସେତେବେଳେ 'ସମାଜ', 'ପ୍ରଜାତନ୍ତ୍ର' ଓ 'ମାତୃଭୂମି' ତିନି ଖବର କାଗଜରେ ଓଡ଼ିଶାର ସମସ୍ତ ହାଇସ୍କୁଲର ପରୀକ୍ଷାଫଳ ପ୍ରକାଶିତ ହେଉଥିଲା । ପ୍ରତି ହାଇସ୍କୁଲରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀମାନଙ୍କର ନାମ ଓ ଡିଭିଜନ ପ୍ରକାଶ ପାଉଥିଲା । ଆମର ସେ ବର୍ଷ ୧୯୫୪ ମସିହା ବାର୍ଷିକ ପରୀକ୍ଷାରେ ପ୍ରାୟ ୨୮୦୦୦ ପରୀକ୍ଷାର୍ଥୀ କୃତକାର୍ଯ୍ୟ ହୋଇଥିଲେ । ତନ୍ମଧ୍ୟରୁ ମାତ୍ର ୮୫୭ ଛାତ୍ରଛାତ୍ରୀ ପ୍ରଥମଶ୍ରେଣୀ, ପ୍ରାୟ ୪୫୦୦ଦ୍ୱିତୀୟ ଶ୍ରେଣୀ ଓ ଅନ୍ୟମାନେ ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଆମ ବିଦ୍ୟାଳୟରୁ ମାତ୍ର ଜଣେ ଛାତ୍ର ପ୍ରଥମ ଶ୍ରେଣୀ ପାଇଥିଲେ । ମୁଁ ଦ୍ୱିତୀୟ ଶ୍ରେଣୀ ପାଇଥିଲି । ପ୍ରଥମ ଶ୍ରେଣୀକୁ ମୋର ୨୫ ନମ୍ବର କମ୍ ରହିଲା । କଟକରେ କଲେଜ ଶିକ୍ଷା ପାଇବା ଲାଗି ମୁଁ ରେଭେନ୍ସା ଓ ଷ୍ଟୁଆର୍ଟ କଲେଜକୁ ଦରଖାସ୍ତ କରିଥିଲି । ରେଭେନ୍ସା କଲେଜରେ ଆଇଏସ୍‌ସି ପଢ଼ିବାକୁ ନାମ ଲେଖାଇଲି ।

# କଲେଜ ଶିକ୍ଷା

ରେଭେନ୍ସା କଲେଜରେ ଦୁଇବର୍ଷ ପଢ଼ିବାକୁ ଯାହା ଖର୍ଚ୍ଚ ପଡ଼ିବ ସେ ବିଷୟରେ ବାପାବୋଉଙ୍କର ମୁଣ୍ଡବ୍ୟଥା ହେଲା । ଯାହା ଯେତେବେଳେ ଦରକାର ସେଥିପାଇଁ ଜମି ବିକ୍ରୀ ଚାଲିଛି । ମାତ୍ର ଜମିର ପରିମାଣ କମି କମି ଆସିଲାଣି। ପୁଅର ପ୍ରତିମାସରେ ଟଙ୍କା ଦରକାର । ତେଣୁ କଥା ହେଲା ଆଇ.ଏସ୍.ସି ଦୁଇବର୍ଷ ପଢ଼ିବା ପାଇଁ ଖର୍ଚ୍ଚ ହିସାବ କରି ଏକ କାଳୀନ ଜମି ବିକ୍ରୀ କରି ପୁଅକୁ ଟଙ୍କା ଦେଇଥିଲେ ସେ ତାର ସ୍ୱାଧୀନ ଭାବେ ଚଳିବ । କିଶୋରୀ ଜେଜେଙ୍କ ମଝିଆଁ ପୁଅ ନିତାଇଚନ୍ଦ୍ର କାନୁନ୍‌ଗୋ ସେତେବେଳେ କଟକ ସେକ୍ରେଟେରୀଏଟ୍‌ରେ ଚାକିରି କରିଥାନ୍ତି । ତାଙ୍କୁ ଗୋଟିଏ ଏକର ଜମି ହଜାରେ ଟଙ୍କାକୁ ବିକ୍ରୀ କରାଗଲା । ସେ କହିଲେ ଏକାକାଳୀନ ସବୁତକ ଟଙ୍କା ମୁଁ ଦେଇ ପାରିବି ନାହିଁ । ପ୍ରତିମାସରେ ବୁଲୁକୁ ଚାଳିଶ ଟଙ୍କା ଦେବି । ଆଇ.ଏସ୍‌ସି. ପାଠ୍ୟ ସରିଲାବେଳକୁ ତାଙ୍କର ସମସ୍ତ ଦେୟ ପରିଶୋଧ ହୋଇଯିବ । ତାହାହିଁ ହେଲା। ନିତାଇ ଦାଦାଙ୍କ ନାମରେ ଜମି କବଲା ହେଲା ଓ ପ୍ରତିମାସରେ ଦରମା ପାଇ ସେ ମୋତେ ଚାଳିଶ ଟଙ୍କା ହାରରେ ଦେଇ ଚାଲିଲେ ।

ମୋର ସବୁ ଜିନିଷପତ୍ର ସହିତ ସାଇକେଲଟି ବସ୍‌ରେ ପକାଇ କଟକ ଚାଲିଆସିଲି । ଗାଆଁ ଛାଡ଼ି ଆସିଲା ବେଳକୁ ମନ ବହୁତ ଦୁଃଖ ହେଲା । ବାପା ବୋଉ, ମାଆ ଓ ସାହିର ସମସ୍ତଙ୍କର ସ୍ନେହ ସହାନୁଭୂତି ଭିତରେ ଖୁବ୍ ଆରାମରେ ଦିନ କଟିଯାଉଥିଲା । ପ୍ରତିଦିନ ଇଷ୍ଟ ଦେବତା ଗୋପାଳଙ୍କ ଦର୍ଶନ ସାଙ୍ଗକୁ ପର୍ବ ପର୍ବାଣି, ଯାନିଯାତ୍ରାର ମଉଜ ଏଇଠୁ ସରିଯିବାପରି ଲାଗୁଥାଏ । ବୋଉ କହିଲା, ମନ ଦେଇ ପାଠପଢ଼ିଲେ ତୁ ଏ ବଂଶର ପୂର୍ବ ମର୍ଯ୍ୟାଦା ଫେରାଇ ଆଣିବୁ । ତୋର ଜେଜେ, ଅଣଜେଜେ ଓ ପଣଜେଜେ ଆଦି ସମସ୍ତେ ସେଇ କଟକରେ ପାଠପଢ଼ି ଚାକରି କରିଥିଲେ । ମୁଁ ଯେ ସେମାନଙ୍କ ପରି ହୋଇପାରିବି, ସେପରି ଭାବନା ମୋ ମନ ଭିତରେ ନଥାଏ । ପାଠପଢ଼ା ସାରି ରୋଜଗାରକ୍ଷମ ହେଲେ କିପରି ଆମର ଜମିବିକ୍ରୀ ବନ୍ଦ ହେବ ସେଇ ଚିନ୍ତା ମୋତେ ଘାରୁଥାଏ । ମାସକୁ ଚାଳିଶିଟା ଟଙ୍କା ମୋର ମୁଣ୍ଡାମୁଣ୍ଡି ଖର୍ଚ୍ଚ ତୁଲାଉଥିଲା ।

ସେତେବେଳେ କଲେଜ ଦରମା ମାସକୁ ଟ୧୪ (ଚଉଦଟଙ୍କା) ପଡୁଥାଏ । ବାକୀ ଟ୨୬ରେ ଖାଇପିଇ ରହିବାକୁହେବ । କଲେଜ ହଷ୍ଟେଲ୍‌ରେ ଅଧିକ ଖର୍ଚ୍ଚ ପଡ଼ିବ । ତେଣୁ ମୁଁ ଭିଣୋଇଙ୍କର ତେଲେଙ୍ଗାବଜାର ବାଂଫିସାହିସ୍ଥ ଆପିଲା ବସାରେ ରହିଲି । ସେଠି ତାଙ୍କର ଦାଦା ପୁଅ ଭାଇ ନିରଞ୍ଜନ ପଟ୍ଟନାୟକ ଓ ପୂର୍ଣ୍ଣଚନ୍ଦ୍ର

ପଟ୍ଟନାୟକ ରହି କଟକରେ ସରକାରୀ ଚାକିରୀ କରୁଥାନ୍ତି । ମୋର ସେଠାରେ ରହିବା କଥା ଶୁଣି ମୋ ଭଉଣୀ ତାର ବଡ଼ପୁଅ କୁନାକୁ ସେଠାରେ ରଖାଇ ରାଣୀହାଟ ହାଇସ୍କୁଲରେ ପଢ଼ାଇଲା। ଭିଣୋଇ ଏରସମାର ବିଧାୟକ ଭାବେ ଗାଆଁ ଓ ଭୁବନେଶ୍ୱରରେ ରହିବା ମଝିରେ ବେଳେ ବେଳେ ଆପିଲା ବସାରେ ରହନ୍ତି । କୁନା ପାଇଁ ସେ ମାସିକ ଖର୍ଚ୍ଚ ଦେଇଯାନ୍ତି । ନୀରଭାଇଙ୍କ ଶଳା ଶ୍ରୀଧର କାନୁନ୍‌ଗୋ ମଧ୍ୟ ଆମ ସହିତ ରହି କଟକ ଇଂଜିନିୟରିଂ ସ୍କୁଲରେ ପଢୁଥାନ୍ତି । ଆପିଲାବସାରେ ଆମେ ୫ / ୬ ଜଣ ରହୁ । ଗୁରୁଚରଣ ସ୍ୱାଇଁ ନାମକ ଜଣେ ଯୁବକ ରୋଷେଇ କରି ଆମକୁ ଖାଇବାକୁ ଦେଉଥାନ୍ତି। ନୀରଭାଇ ମେସ୍ ଚଳାନ୍ତି ଓ ମୁଁ ପ୍ରତିମାସରେ ମୋ ଖର୍ଚ୍ଚ ତାଙ୍କୁ ପଇଠ କରିଦିଏ ।

ପ୍ରତିଦିନ ସକାଳ ୯ଟାରୁ ୧୦ ଟା ଭିତରେ ସାଇକେଲରେ ବାଙ୍ଗିସାହିରୁ ମୁଁ କଲେଜ ଯାଏ । ଝାଞ୍ଜିରୀମଙ୍ଗଳା ଦେଇ ବାଦାମବାଡ଼ି ରାସ୍ତାକୁ ଉଠି ଦୋଳମୁଣ୍ଡେଇ ଛକରୁ ମହାତାବରୋଡ଼୍ ଦେଇ ଛତ୍ରବଜାର ବାଟେ ରେଭେନ୍ସା କଲେଜକୁ ଯିବାକୁ ହୁଏ । ସେତେବେଳେ ଖାନ୍‌ନଗର ମଇଳା ଖାତରେ ସାରା କଟକ ସହରର ମଇଳା ପଡୁଥାଏ । ସେ କାଳରେ କଟକରେ ଉଠା ପାଇଖାନାର ପ୍ରଚଳନ ଥିଲା । ପାଇଖାନାରେ ମଳତ୍ୟାଗ କଲେ ସେ ସବୁ ଗଦା ହୋଇ ରହୁଥିଲା । ମେହେନ୍ତରମାନେ ପ୍ରତିଦିନ ସକାଳେ ସେ ସବୁକୁ ଟୋକେଇରେ ଭରି ମୁଣ୍ଡରେ ବୋହିଆଣି ମଇଳା ଖାତରେ ଜମା କରୁଥିଲେ । ସେଥିରୁ ପ୍ରବଳ ଦୁର୍ଗନ୍ଧ ହେଉଥିଲା । ଝାଞ୍ଜିରୀମଙ୍ଗଳା ମନ୍ଦିର ପାଖରୁ ଅଳ୍ପ ବାଟ ଆସିବା ପରେ ଭୀଷଣ ଦୁର୍ଗନ୍ଧ ହୁଏ । ନାକରେ ରୁମାଲ୍ ଦେଇ ରାସ୍ତା ଉପରକୁ ଉଠି ଦୋଳମୁଣ୍ଡେଇ ପାଖାପାଖି ହେବା ଯାଏଁ ନିଶ୍ୱାସ ବନ୍ଦ କରି ଅତି କଷ୍ଟରେ ଆମେ ଯାଉ । ବେଳେ ବେଳେ ଦକ୍ଷିଣାପବନ ଦେଲେ ଏ ରାସ୍ତାରେ ଆଦୌ ଫେରି ହୁଏନା । ତେଣୁ ଦୋଳମୁଣ୍ଡେଇ ଛକରୁ ପିଠାପୁର ରାସ୍ତାରେ ଆସି ଝୋଲାସାହି ଛକରୁ ବଙ୍ଗାଳିସାହି ଦେଇ ବାଙ୍ଗିସାହି ଆସିବାକୁ ହୁଏ । ସେତେବେଳ ଝାଞ୍ଜିରୀମଙ୍ଗଳା ଗଡ଼ାଠାରୁ ଦୋଳମୁଣ୍ଡେଇ ପର୍ଯ୍ୟନ୍ତ ଡାହାଣ ପାଖେ କେବଳ ବିଲ ଥାଏ । ଆଜିର ବାଦାମବାଡ଼ି ବସ୍ତି ବା ଲିଙ୍କ୍‌ରୋଡ଼୍ ରାସ୍ତା ଆଦିର ଚିହ୍ନବର୍ଣ୍ଣ ନଥାଏ । କାଠଯୋଡ଼ି ନଦୀବନ୍ଧ କଡ଼ରେ ଖାନ୍‌ନଗର ଗାଆଁ ଓ ଦୋଳମୁଣ୍ଡେଇ ରାସ୍ତାର ଡାହାଣପଟେ ବିଲ ଭିତରେ ଶଙ୍କରପୁର ଓ କମଳପୁର ଗାଆଁ ଦିଶେ। ଏସବୁ ଗାଆଁର ଲୋକେ ମୁଖ୍ୟତଃ ପରିବା ଚାଷ କରି କଟକ ସହର ଲୋକମାନଙ୍କୁ ପରିବା ଯୋଗାନ୍ତି । ଶଙ୍କରପୁର ବା କମଳପୁରକୁ ଛତ୍ରବଜାରପଟୁ ରାସ୍ତା ଥାଏ । ଦୋଳମୁଣ୍ଡେଇରୁ ରାଣୀହାଟ ଯିବା ରାସ୍ତାରେ ବଜ୍ରକବାଟି ଅଞ୍ଚଳଟା ଜନଶୂନ୍ୟ

ଜଣାପଡ଼େ । ଖରାବେଳେ ଓ ସନ୍ଧ୍ୟାପରେ ବଜ୍ରକବାଟି ପୋଲ ଦେଇ ଯିବାକୁ ସେତେବେଳେ ଭୟ ହେଉଥିଲା। ଆଜିର ଫ୍ରେଣ୍ଡସ୍ କଲୋନୀ, ସାଆନ୍ତ ସାହି, ମହାନଦୀ ବିହାର, ଲେବର୍ କଲୋନୀ, ନାରାୟଣ ମିଶ୍ରଗଳି ବା ପ୍ରଫେସରପଡ଼ା ଆଦି ବସ୍ତିଗୁଡ଼ିକର ଚିହ୍ନବର୍ଣ୍ଣ ନଥିଲା । ଆଜିର ମର୍କତନଗର ବା ସି.ଡ଼ି.ଏ. ଅଞ୍ଚଳକୁ ମହାନଦୀ ପଠା ବୋଲି କୁହାଯାଉଥିଲା । ସେଠାରେ କେବଳ ପରିବା ଚାଷ ହେଉଥିଲା ।

ଜଗତସିଂହପୁର ବା ତିର୍ତ୍ତୋଲ ଆଡୁ ବସ୍‌ଗୁଡ଼ିକ ନାଲିରାସ୍ତାରେ ଓ.ଏମ୍.ପି. ଛକ ଦେଇ ରେଭେନ୍ସା କଲେଜ, ରାଣୀହାଟ, ବକ୍ସିବଜାର ଓ ଦରଘାବଜାର ଦେଇ ଗୌରୀଶଙ୍କର ପାର୍କ ପାଖ ବରଗଛମୂଳେ ରହନ୍ତି । ପୁଣି ପାର୍କ ପାଖରୁ ବସ୍ ବାହାରି କଲେଜଛକ ଦେଇ ଭୁବନେଶ୍ୱର, ଜଗତସିଂହପୁର ଓ ତିର୍ତ୍ତୋଲକୁ ଯାଏ । ସେତେବେଳେ ପାରାଦ୍ୱୀପର ଚିହ୍ନବର୍ଣ୍ଣ ନଥାଏ । କୁଜଙ୍ଗ ବା ଏରସମା ଅଞ୍ଚଳର ଲୋକେ ତିର୍ତ୍ତୋଲ ଆସି କଟକକୁ ବସ୍ ଧରନ୍ତି । ମହାନଦୀରେ ପୋଲ ନଥାଏ । ତେଣୁ ଜୋବ୍ରାଘାଟରୁ କେନ୍ଦ୍ରାପଡ଼ା ଓ ଚୌଦ୍ୱାରକୁ ଲଞ୍ଚ୍‌ରେ ଲୋକେ ଯାଆନ୍ତି । ରେଳଗାଡ଼ିରେ ଆସିଲେ କଟକ ଷ୍ଟେସନରେ ଓହ୍ଲାଇ ଲୋକେ ଜଗତପୁର ବା ନିର୍ଗୁଣ୍ଡିଠାରୁ କେନ୍ଦ୍ରାପଡ଼ା, ଢେଙ୍କାନାଳ, ସମ୍ବଲପୁର ବା ଅନୁଗୁଳକୁ ବସ୍ ଧରନ୍ତି । ନୂଆକରି ଭୁବନେଶ୍ୱରରେ ରାଜଧାନୀ ହେବାଯୋଗୁଁ କେବଳ କାଠଯୋଡ଼ି ଓ କୁଆଖାଇ ନଦୀ ଉପରେ ପୋଲ ତିଆରି ହୋଇଥାଏ । ପୂର୍ବରୁ କଟକ ଥିଲା ଓଡ଼ିଶାର ରାଜଧାନୀ । ତେଣୁ ସବୁତକ ସରକାରୀ କାର୍ଯ୍ୟାଳୟ କଟକରେ ଥାଏ । ଧୀରେ ଧୀରେ ସେସବୁ ଉଠିଯାଉଥାଏ ନୂଆ ରାଜଧାନୀକୁ । ରେଭେନ୍ସା କଲେଜ ହଲ୍‌ଟା ଥିଲା ବିଧାନସଭା ଓ ବର୍ତ୍ତମାନର ବାରବାଟୀ ଷ୍ଟାଡ଼ିୟମ୍‌କୁ ଲାଗି ଓଡ଼ିଶା ସେକ୍ରେଟେରୀଏଟ୍ ଥିଲା । କଟକର ରାସ୍ତାଘାଟରେ ବିଜୁଳି ଆଲୁଅ ନଥାଏ । ଜୋବ୍ରା ଇଲେକ୍ଟ୍ରି ସପ୍ଲାଇ କମ୍ପାନୀ ପକ୍ଷରୁ କେବଳ କଟକ ମେଡ଼ିକାଲ୍‌କୁ ବିଦ୍ୟୁତ୍ ଯୋଗାଣର ବ୍ୟବସ୍ଥା ଥାଏ । କଟକ ସହରର ଅଧିକାଂଶ ଅଞ୍ଚଳରେ ବିଜୁଳି ନଥାଏ । ଆପିଲାବସାରେ ଆମେ ସବୁ ଲଣ୍ଠନ ଆଲୁଅ ଓ ତାଳପତ୍ରବିଞ୍ଚଣାର ବ୍ୟବହାର କରୁଥାଉ । ରାସ୍ତାରେ କିରୋସିନି ବତୀଖୁଣ୍ଟ ଥାଏ । ସଞ୍ଜ ହେଲାବେଳକୁ ମ୍ୟୁନିସିପାଲିଟି ପକ୍ଷରୁ ଲୋକ ଆସି ବତୀଖୁଣ୍ଟରେ ଚଢ଼ି ପୁରୁଣା ଲ୍ୟାମ୍ପକୁ ନେଇ ତା ଜାଗାରେ ସଫା ହୋଇ କିରାସିନି ଭରା ଥିବା ଲ୍ୟାମ୍ପ ଲଗାଇ ଦେଇ ଯାଏ । କଲେଜଛକ ଠାରୁ ଚାନ୍ଦିନୀଚୌକ ପର୍ଯ୍ୟନ୍ତ ରାସ୍ତାରେ ବିଜୁଳିଖୁଣ୍ଟିମାନ ବସାଯାଇ ଆଲୁଅ ଜଳିଲା । କଟକ ସହରର ମୁଖ୍ୟ ଯାନବାହାନ ଥାଏ ହାତଟଣା ରିକ୍ସା, ସାଇକେଲ ରିକ୍ସା, ବଳଦଗାଡ଼ି ଓ ଘୋଡ଼ାଗାଡ଼ି । ବଡ଼ ବଡ଼ ସରକାରୀ ଅଫିସର ବା ବ୍ୟବସାୟୀଙ୍କର ଛୋଟ ଛୋଟ ବିଲାତି (ଅଷ୍ଟିନ୍)

କାର୍ ଥାଏ । ସରକାରୀ ଅଫିସ୍ ମାନଙ୍କରେ ମୁଖ୍ୟତଃ ଜିପ୍ ଦିଆଯାଇଥାଏ । ଅଧିକାଂଶ କଲେଜ ଛାତ୍ର ସାଇକେଲ ବ୍ୟବହାର କରୁଥାନ୍ତି । କଟକ ଭିତରେ ହାତଟଣା ରିକ୍ସା ବା ସାଇକେଲ ରିକ୍ସାରେ ଯିବାକୁ ହେଲେ ଦୂରତା ଅନୁସାରେ ଦୁଇ ଅଣାରୁ ଆଠଅଣା ପର୍ଯ୍ୟନ୍ତ ରିକ୍ସାଭଡ଼ା ଦେବାକୁ ପଡୁଥିଲା । ଘୋଡ଼ାଗାଡ଼ି ବା ବଗିର ଭଡ଼ା ଆଠଅଣାରୁ ପାଞ୍ଚଟଙ୍କା ପର୍ଯ୍ୟନ୍ତ ଥିଲା । ଭୁବନେଶ୍ୱରକୁ ପିଚୁ ରାସ୍ତା ହେଲାବେଳେ କଲେଜଛକ, ମଙ୍ଗଳାବାଗ, ମଣିସାହୁ ଛକ, ବକ୍ସିବଜାର, ଚୌଧୁରୀବଜାର ଦେଇ ଚାନ୍ଦନୀଚୌକ ପର୍ଯ୍ୟନ୍ତ ରାସ୍ତାଟା ପିଚୁ ହୋଇଗଲା । ଅନ୍ୟ ରାସ୍ତା ସବୁ ଧୀରେ ଧୀରେ ପିଚୁ ହେଲା । ଦୋଳମୁଣ୍ଡେଇରୁ ଛତ୍ରବଜାରପୋଲ ପର୍ଯ୍ୟନ୍ତ ମହତାବରୋଡ଼ ରାସ୍ତାଟା ପ୍ରଥମ କରି ସିମେଣ୍ଟ କରାଗଲା । ତତ୍‌କାଳୀନ କଟକ ସହରର ଲୋକସଂଖ୍ୟା ପ୍ରାୟ ଦେଢ଼ଲକ୍ଷ ପର୍ଯ୍ୟନ୍ତ ଥିଲା ।

ଏହି ସହରରେ ସାତଟି ମାତ୍ର କଲେଜ ଥିଲା ଯଥା- ରେଭେନ୍ସା, ଖ୍ରୀଷ୍ଟକଲେଜ, ଷ୍ଟୁଆର୍ଟକଲେଜ ଓ ଶୈଳବାଳା ମହିଳା ମହାବିଦ୍ୟାଳୟ । ଏହାଛଡ଼ା ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜ, ମଧୁସୂଦନ ଆଇନ କଲେଜ ଓ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ ମଧ୍ୟ ଥିଲା । ରେଭେନ୍ସା ଥିଲା ସବୁଠାରୁ ବଡ଼ କଲେଜ । ଏହି ମହାବିଦ୍ୟାଳୟରେ ସେତେବେଳେ ପ୍ରାୟ ଦୁଇହଜାର ଛାତ୍ର ପଢୁଥିଲେ। ବାକି ବାରଟି ଜିଲା ସଦର ମହକୁମାରେ ଓ ଭଦ୍ରକ ବା ପାରଳାଖେମୁଣ୍ଡି ଭଳି ଉପଖଣ୍ଡ ସଦର ମହକୁମାରେ ମଧ୍ୟ କଲେଜ ଥିଲା । ୧୯୪୪ ମସିହାରୁ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ସାମନାରେ ଥିବା ବର୍ତ୍ତମାନ କର୍କଟରୋଗ ଆଉଟ୍‌ଡୋର୍ କୋଠାରେ ଏହାର କାର୍ଯ୍ୟାଳୟ ଥିଲା। ଷାଠିଏ ଦଶକ ପ୍ରାରମ୍ଭରେ ଏହା ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେବାପରେ ଏହି କୋଠିରେ କର୍କଟ ରୋଗ ବିଭାଗର ଆଉଟ୍‌ଡ଼ୋର ଓ ନିଦାନ ବିଭାଗ କାର୍ଯ୍ୟ ଚଳୁଅଛି ।

କଲେଜରେ ପଢ଼ିବା ସାଙ୍ଗେ ସାଙ୍ଗେ ମୁଁ ଏନ୍.ସି.ସି.ରେ ଯୋଗଦେଲି । ପ୍ରତି ରବିବାର ଭୋର ସାତଟାରୁ ଆସି କନିକାଲାଇବ୍ରେରୀ ପଛପାଖ ପଡ଼ିଆରେ ଡ୍ରୀଲ୍ କରୁ । ୧୯୫୫ ମସିହା ସେପ୍ଟେମ୍ବର ମାସରେ ମହାନଦୀ ଓ ତାର ଶାଖାନଦୀ ମାନଙ୍କରେ ପ୍ରବଳ ବଢ଼ି ଆସି ଦଳେଇଘାଇ ଭାଙ୍ଗିଗଲା । ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ଏନ୍.ସି.ସି ପକ୍ଷରୁ କି ପ୍ରକାର ସେବା ଯୋଗାଇ ଦିଆଯିବ ତାହା ଅନୁଧ୍ୟାନ କରିବାକୁ ଦୁଇଟି ଏନ୍.ସି.ସି. ଟ୍ରକ୍‌ରେ ଆମେ ପ୍ରାୟ ଷାଠିଏ ଜଣ କ୍ୟାଡ଼େଟ୍ ଓ ଚାରିଜଣ ଅଫିସର କଇଜଙ୍ଗା ପର୍ଯ୍ୟନ୍ତ ଆସିଲୁ । ଦଳେଇଘାଇ ସାଙ୍ଗକୁ କଇଜଙ୍ଗାଠାରେ ମଧ୍ୟ ଏକ ବଡ଼ ଘାଇ ହୋଇଥାଏ । ବନ୍ୟା ସ୍ରୋତରେ ପ୍ରତି ମୁହୂର୍ତ୍ତରେ ଘାଇର ଦୁଇପଟ

ଖାଇଯାଇ ଘାଇମୁହଁ ବଢ଼ିବଢ଼ି ଚାଲି ଥାଏ । କଇଜଙ୍ଗାଠାରୁ ତିନି କିଲୋମିଟର ଦୂରରେ ଦଳେଇ ଘାଇ । ଏହି ଦୁଇ ଘାଇ ଦେଇ ବନ୍ୟାଜଳ ପ୍ରବଳ ବେଗରେ ଛୁଟିଥାଏ । କଇଜଙ୍ଗା ବା ଆଖପାଖ ଗାଆଁର ଘରଦ୍ୱାର, ତୋଟା ବଗିଚା ଆଦି ଭାସିଯିବା ପରି ମନେ ହେଉଥାଏ । ଭାବିଲି, ଆମ ଗାଆଁର ମଧ୍ୟ ପତ୍ତା ନଥିବ। ଗାଆଁ କଥା ଭାବି ମନରେ ବହୁତ ଦୁଃଖ ହେଲା । ମନ ହେଉଥାଏ ଘାଇରେ ପହଁରିଯାଇ ନଦୀ ବନ୍ଧେ ବନ୍ଧେ ଆମ ଗାଆଁକୁ ଦୌଡ଼ି ଦୌଡ଼ି ଚାଲିଯିବାକୁ । ଦୁଇଘଣ୍ଟା ପର୍ଯ୍ୟନ୍ତ ସେଠାରେ ରହିବା ପରେ ଆମେସବୁ କଲେଜକୁ ଫେରି ଆସିଲୁ । ଆପିଲାବସାରେ ପହଞ୍ଚି ମୁଁ ସାଙ୍ଗେ ସାଙ୍ଗେ ବଙ୍ଗାଳିସାହିସ୍ଥ ନିତାଇଦାଦାଙ୍କ ବସାକୁ ଆସିଲି । ସେ ଅଫିସରୁ ଫେରି ଲୁଗାପଟା ବଦଳୁଥାନ୍ତି । ମୁଁ ଦେଖି ଆସିଥିବା କଇଜଙ୍ଗା ଘାଇ କଥା କହିଲି । ସେ କହିଲେ "କାଲି ସକାଳ ଆଠଟା ସମୟରେ ପୁରୀଘାଟରୁ ଏକ ଚାଉଳ ଡଙ୍ଗା ଆମ ଗାଆଁକୁ ଯିବ । ସେଇ ଡଙ୍ଗାରେ ମୁଁ ଯାଉଚି । ତା ପରଦିନ ପୁଣି ସନ୍ଧ୍ୟା ସୁଦ୍ଧା କଟକ ଫେରି ଆସିବି । ମୁଁ କହିଲି, ଦାଦା ଆପଣଙ୍କ ସାଙ୍ଗରେ ମୋତେ ନିଅନ୍ତୁ । ମୁଁ ଟିକେ ସମସ୍ତଙ୍କୁ ଦେଖି ଆସିବି । ସେ ରାଜିହେଲେ ।

ରାତିସାରା ଗାଆଁ କଥା ମନେପଡ଼ି ମୋତେ ନିଦ ନଥାଏ । ବାପା, ବୋଉ, ମାଆଙ୍କ ସହିତ ବଡ଼ବାପା, ଦାଦା, ଖୁଡ଼ି, ଭାଇଭଉଣୀ, ପୁତରାଝିଆରୀ, ମାଆ ଜେଜେ ଆଦି ଆମ ସାହିର ସମସ୍ତଙ୍କ କଥା ମନେ ପଡୁଥାଏ । ଆମ କୁମ୍ଭାରସାହି, ସାହୁସାହି, ବିଲସାହି, ଜେନାସାହି, ବାଉରିସାହି, ଆଦିର ଲୋକମାନେ କେମିତିଥିବେ ସେଇ ଚିନ୍ତାରେ ରାତିସାରା ମୁଁ ଛଟପଟ ହେଉଥାଏ । ମାତ୍ର ଦୁଇମାସ ତଳେ କଲେଜରେ ପଢ଼ିବାକୁ ମୁଁ ଗାଆଁଛାଡ଼ି କଟକ ଆସିଛି । ଏଇ କେତେଟା ଦିନ ଭିତରେ ମୋ ଗାଆଁର ମଧୁର ସ୍ମୃତି ସବୁବେଳେ ମୋ ମନକୁ ଆନ୍ଦୋଳିତ କରୁଥାଏ । ବାପା, ବୋଉ, ମାଆଙ୍କର ସ୍ନେହଶ୍ରଦ୍ଧା ଭିତରେ ଘରେ ରହିବାର ମାଧୁର୍ଯ୍ୟ, ଦାଣ୍ଡପୋଖରୀରେ କଇଁଫୁଲର ଖିଲ୍‌ଖିଲ୍ ହସ, ପୋଖରୀକୂଳ ଆମ୍ବତୋଟାର ଶୀତଳ ଛାଇରେ ବାଗୁଡ଼ି, ଲୁଣପଟି, ଗୁଡ଼େଇ ଖେଳ, ଠାକୁରଙ୍କ ସଞ୍ଜ ଆଳତି ଦୃଶ୍ୟ, ବାଲିଘାଇରେ ପହଁରିବାର ମଜ୍ଜା, ଦେବୀନଦୀରେ ଖରାଦିନ ସକାଳଗାଧୁଆ, ବେଲବଣର ମାଳତୀ ଲଟାରେ ଦୋଳି ଖେଳିବାର ଆନନ୍ଦ, ଶୀତ ସକାଳେ ବାପା, ଦାଦା, ଜେଜେ, ବଡ଼ବାପା ଆଦିଙ୍କ ଗହଣରେ ଖରାପୋଇଁବାର ମଜା, ଆଦି ସବୁକିଛି ମନପରଦାରେ ଭାସି ଉଠେ । ବାପା ଦାଦାଙ୍କ ଠାରୁ ବିଗତ ଶହେବର୍ଷ ଭିତରେ କେବେ ନଦୀବନ୍ଧ ଭାଙ୍ଗିବା କଥା ଶୁଣା ନଥିଲା । ନଦୀବଢ଼ି ହେଲେ ଜଗତସିଂହପୁର ପାଖଆଖରୁ ଲୋକେ ବଢ଼ି ଦେଖିବାକୁ ଆମ ଗାଆଁ ଆଳିପିଙ୍ଗଳକୁ ଆସୁଥିଲେ । ଆଜି ପ୍ରଥମ କରି ନଦୀବନ୍ଧ ଭାଙ୍ଗି

ଘରଦ୍ୱାର ଭସେଇ ନେବାର କରାଳ ଦୃଶ୍ୟ ଦେଖି ଭାବୁଥିଲି, ମୋ ଗାଆଁ କ'ଣ ସତରେ ଆଉ ଥିବ ? ରାତିସାରା ଇଷ୍ଟ ଦେବତା ଗୋପାଳଙ୍କୁ ଡାକୁଥିଲି; ପ୍ରଭୁ! ଦଳେଇ ଘାଇ ବନ୍ୟା ଯେମିତି ଆମ ଗାଆଁର କିଛି କ୍ଷତି ନକରୁ । କୌଣସି ରକମ ରାତି ପାହିବା ମାତ୍ରେ ନିତ୍ୟକର୍ମ ସାରି ନିତାଇଦାଦାଙ୍କ ବସାକୁ ଗଲି । ଆମେ ଦୁହେଁ ପୁରୀଘାଟ ଗଲୁ । ଗୋଟିଏ ବଡ଼ ନାଆରେ ପ୍ରାୟ ତିନିଶହ ବସ୍ତା ଚାଉଳ ବୋଝେଇ ହୋଇଥାଏ । ଆଠ ଦଶ ଜଣ ନାଉରୀ ଆହୁଲା ପାଖରେ ଓ ଆହୁରି ସାତଆଠ ଜଣ କାତ, ମଙ୍ଗ ଦାୟିତ୍ୱରେ ଥାଆନ୍ତି । ଆମେ ନାଆରେ ବସିବା ମାତ୍ରେ ନାଉରୀମାନେ କାଠଯୋଡ଼ି ନଦୀ ମଝିକୁ ନାଆ ମେଲି ଦେଲେ । ବଢ଼ିପାଣି ସୁଅରେ ନାଆଟା ତଳକୁ ଭାସି ଚାଲିଲା । ନାଉରୀମାନେ ଆହୁଲା ଓ ମଙ୍ଗ ଧରି ନାଆକୁ ନଈ ମଝିରେ ଚଳାଉଥାନ୍ତି । ଏତେ ଦୂର ବାଟ ଡଙ୍ଗାରେ ବସି ଯିବାର ମୋର ପ୍ରଥମ ଅନୁଭୂତି । ନଦୀର ଦୁଇ କୂଳରେ ଥିବା ଗାଆଁ ସବୁ ପାଣି ଧାରରେ ଥିବା ପରି ଦିଶୁଥାଏ । ଦଳେଇ ଘାଇର ଦୁଇ ମାଇଲ ପୂର୍ବରୁ ନାଉରୀମାନେ ନାଆକୁ ଘାଇର ଅପର ପାର୍ଶ୍ୱରେ ଧୀରେ ଧୀରେ ବାହିବାକୁ ଚେଷ୍ଟା କଲେ । ଘାଇ ପାଖେଇ ଆସିବାମାତ୍ରେ ସତର୍କତାର ସହିତ ନାଆକୁ ଆରପାଖ କୂଳକୁ ନେଇ ପ୍ରାୟ ଦୁଇତିନି କିଲୋମିଟର ମଝି ସୁଅଠାରୁ ଦୂରରେ ରଖି ଚଳାଇବାପରେ ପୁଣି ନଈ ମଝିକୁ ଆଣି ତଳକୁ ବାହି ନିଆଗଲା । ସନ୍ଧ୍ୟାପୂର୍ବରୁ ଆଳିପିଙ୍ଗଳ ଗଜତୁଠରେ ନାଆ ଲାଗିଲା । ନାଆରୁ ଡେଇପଡ଼ି ମୁଁ ନଈବନ୍ଧକୁ ଚାଲିଲି । ମଳିକ ସାହି, ଜେନା ସାହି ଓ ବିଲ ସାହିର ଲୋକମାନେ ବନ୍ଧ ଉପରେ ଅଖା ଘେରାଇ ଆଶ୍ରୟ ନେଇଥାନ୍ତି । ପଚାରିଲି, ଅନ୍ୟ ସାହିର ଲୋକେ କେଉଁଠି ସବୁ ଅଛନ୍ତି ? ସେମାନେ କହିଲେ, ସେମାନେ ବିପଦମୁକ୍ତ ଅଛନ୍ତି । କାରଣ ଦଳେଇ ଘାଇ ପାଣି ଆମ ଆଡ଼େ ଆସିନାହିଁ । ଏଇ ଗଜତୁଠରୁ ଦୁଇ କିଲୋମିଟର ତଳେ ଫୁଲାର ଠାରେ ଘାଇ ହୋଇଛି । ତେଣୁ ନାଳବନ୍ଧ ଦକ୍ଷିଣକୁ ଥିବା ସାହିବସ୍ତି ମାନଙ୍କରେ ବଢ଼ିପାଣି ପଶିଛି । ନାଳବନ୍ଧ ଉତ୍ତରକୁ ପାଣି ଯାଇନାହିଁ ।

ମୋତେ ଦେଖି ବାପା ବୋଉ ଆଶ୍ଚର୍ଯ୍ୟ ହୋଇଗଲେ । ନିତାଇଦାଦାଙ୍କ ସାଙ୍ଗରେ ମୁଁ ଆସିଛି ଶୁଣି ଆଶ୍ୱସ୍ତ ହେଲେ । ସାହି ସାରା ସମସ୍ତଙ୍କ ଘରକୁ ଯାଇ ଶଙ୍ଖୁଳି ଆସିଲି । ମୋ ଉପରେ ସବୁରି ସ୍ନେହ ଆଦର ଓ ଆର୍ଶୀବାଦ ବର୍ଷିଗଲା । ସମସ୍ତଙ୍କୁ ବିପଦମୁକ୍ତ ଦେଖି ବଡ଼ ଆନନ୍ଦରେ ମୋର ସେ ରାତିଟା ବିତିଗଲା । ତାପରଦିନ ଦିନ ଦଶଟା ସୁଦ୍ଧା ଚାଉଳବସ୍ତାସବୁ ରିଲିଫ୍ ଦାୟିତ୍ୱରେ ଥିବା ଅଫିସରଙ୍କୁ ଜିମା ଦେବା ପରେ ମୁଁ; ନିତାଇଦାଦା ଓ ଆଉ କେତେଜଣ କଟକ ଆସିବା ଲୋକଙ୍କୁ ନେଇ ନାଆରେ ବସିଲୁ । ସୁଅର ବିପରୀତ ଦିଗରେ ନାଆ ବାହି ଆସିବାକୁ ନାଉରୀମାନେ

ବହୁତ ଶ୍ରମ ସ୍ୱୀକାରକରି ରାତି ପ୍ରାୟ ଆଠଟାସୁଦ୍ଧା କଟକର ପୁରୀଘାଟ ଠାରେ ପହଞ୍ଚିଲେ । ତାପରଦିନ ଠାରୁ କଲେଜ ଯାଇ ପଢ଼ାପଢ଼ି କଲି ।

ସେବର୍ଷ ଭାରତର ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ କଟକ ଆସିଲେ । କଟକର ବାଲିଯାତ୍ରା ପଡ଼ିଆରେ ସାଧାରଣ ସଭା ହେଲା । ଲକ୍ଷ ଲକ୍ଷ ଲୋକ ସେ ପଡ଼ିଆରେ ଭରି ରହି ତାଙ୍କର ବକ୍ତୃତା ଶୁଣିଲେ । ରେଭେନ୍ସା କଲେଜକୁ ଆସି ନେହେରୁ ବିଭିନ୍ନ ବିଭାଗ ବୁଲି ଦେଖିଲେ । ଆମେ ଏନ୍.ସି.ସି. କ୍ୟାଡ଼େଟ୍‌ମାନେ ତାଙ୍କୁ ବନ୍ଧୁକ ସଲାମି ଦେଲୁ । କଲେଜର କେନ୍ଦ୍ର ସ୍ଥଳରେ ଥିବା 'ସୂର୍ଯ୍ୟଘଡ଼ି' ଦେଖି ସେ ଖୁସି ହେଲେ । ବାମାଚରଣ ଦାସ ଥାଆନ୍ତି ଆମ କଲେଜର ଅଧକ୍ଷ । ନେହେରୁଙ୍କ ସହିତ ଡିପିଆଇ, କଲେଜଅଧକ୍ଷ, ଶିକ୍ଷାମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ କଲେଜରେ ବୁଲୁଥାଆନ୍ତି । ଆମେ ସବୁ ଦୂରରେ ଥାଇ ଦେଖୁଥାଉ । ସମସ୍ତଙ୍କ ଭିତରେ ନେହେରୁ ଗେଡ଼ା ଜଣାପଡୁଥାଆନ୍ତି । ଏଇ ଗେଡ଼ା ଲୋକଟି ଏତେବଡ଼ ଦେଶର ପ୍ରଧାନମନ୍ତ୍ରୀ ତଥା ସମଗ୍ର ବିଶ୍ୱରେ ଜଣେ ଶାନ୍ତିକାମୀ ଖ୍ୟାତନାମା ନେତା ଭାବେ ଯେ ଏତେ ସୁନାମ ଅର୍ଜନ କରି ପାରନ୍ତି ସେଇକଥା ଅନେକ ଛାତ୍ରଙ୍କ ଠାରୁ ଶୁଣିବାକୁ ମିଳୁଥାଏ ।

ଗାଁରୁ ମୋ ସାଇକେଲଟି କଟକ ନେଇଆସି ଆପିଲା ବସାରୁ ମୁଁ ରେଭେନ୍‌ସା କଲେଜକୁ ଯିବା ଆସିବା କରେ । ସାଇକେଲଟି ଖରାପ ହେଲେ ବାଙ୍କିସାହି ଛକରେ ସାଇକେଲ ମରାମତି ଦୋକାନ କରିଥିବା ନିଧିଆ ପାଖେ ମୁଁ କାମ କରାଏ । ଦିନେ ସକାଳୁ ଉଠି ପଢ଼ାପଢ଼ି ସାରି କଲେଜ ଯିବାକୁ ବାହାରିଲା ବେଳକୁ ଦେଖିଲି ସାଇକେଲଟି ନାହିଁ । ସେହି ବସାରେ ରହୁଥିବା ସମସ୍ତଙ୍କୁ ପଚାରିଲି । ସେମାନେ କେହି ଜାଣିନାହାନ୍ତି ବୋଲି କହିଲେ । ପୂର୍ଣ୍ଣଭାଇ କହିଲେ, କାଲି ସନ୍ଧ୍ୟାରେ ସାଇକେଲ ଦୋକାନୀ ନିଧିଆ ଇଆଡ଼େ ଆସିଥିଲା । ମୁଁ ଶୁଣିଛି ସେ ଚୋରୀ ସାଇକେଲ କାରବାର କରେ । ତୁ ଥାନାରେ ଏତାଲା ଦେଇଦେ । ପୋଲିସ୍ ପଚାରିଲେ ନିଧିଆକୁ ସନ୍ଦେହ କରୁଛୁ ବୋଲି କହିବୁ । ପୁରୀଘାଟ ଯାଇ ଥାନାରେ ସାଇକେଲ ଚୋରୀ ଯିବା କଥା ଏତାଲା ଦେଲି। ବାଧହୋଇ ଚାଲି ଚାଲି ମୋତେ କଲେଜ ଯିବାକୁ ପଡ଼ିଲା । ଦୁଇଦିନ ପରେ ଦିନେ ସନ୍ଧ୍ୟାରେ ମୁଁ କଲେଜରୁ ଫେରିଲା ବେଳକୁ ନିଧିଆ ଆସି ପହଞ୍ଚିଲା । କହିଲା, ବାବୁ ! ତୁମ ସାଇକେଲ ମୁଁ ନେଇଛି ବୋଲି ତୁମେ ଥାନାରେ କହିଛ । କାହିଁକି ମୋ ଉପରେ ତୁମର ସନ୍ଦେହ ହେଉଛି ? ତୁମେ ଆମ ଅଞ୍ଚଳର ଜମିଦାରଙ୍କ ପୁଅ । ତୁମ ପ୍ରତି ମୋର ସମ୍ମାନ ରହିଛି। ମୁଁ ଗରିବ ଲୋକ । ପୋଲିସ୍ ମୋତେ ଆଜି ଦିନସାରା ନେଇ ଥାନାରେ ବସାଇ ରଖିଲା ।

ମୋର ରୋଜଗାର ବନ୍ଦ ହେଲା । ମୁଁ ଚଳିବି କେମିତି ? ମୁଁ ତୁମ ସାଇକେଲ ନେଇଚି ବୋଲି ଯଦି ତୁମର ହୃଦ୍‌ବୋଧ ହେଉଛି, ତାହେଲେ ମୋତେ କୁହ, ମୁଁ ଜମି ବିକ୍ରିକରି ତୁମ ପାଇଁ ଗୋଟାଏ ସାଇକେଲ ଆଣିଦେବି । ମୁଁ ନିରୀହ ଲୋକ । ମୋତେ ଆଉ କଲବଲ କରନା । ତା କଥା ଶୁଣି ମୁଁ ପୂର୍ଣ୍ଣଭାଇଙ୍କୁ ପଚାରିଲି, କଅଣ କରିବି ? ସେ କହିଲେ; ନିଧିଆ ଯଦି କହୁଛି, ତାହେଲେ ଗୋଟାଏ ସାଇକେଲ ଆଣିଦଉ । ଥାନାରେ କହି ତାକୁ ଛାଡ଼ିବାକୁ କହ । ନିଧିଆ ମୋ ସାଇକେଲ ନେଇଥିବା କଥା କେବଳ ସନ୍ଦେହ ଘେରରେ ଅଛି । ଏ ବିଷୟ ସଠିକ୍ ଭାବରେ ଜଣା ନାହିଁ । ତେଣୁ ତାକୁ ଗୋଟାଏ ସାଇକେଲ ଆଣି ଦେବାକୁ କହିବା ମୋ ପକ୍ଷରେ ସମ୍ଭବ ନଥିଲା । ମୁଁ ଥାନାକୁ ଯାଇ ନିଧିଆକୁ ଛାଡ଼ିଦେବାକୁ ଲେଖିଦେଇ ଆସିଲି ।

ଷାଣ୍ମାସିକ ପରୀକ୍ଷାରେ ସେତେ ଭଲ ହେଲା ନାହିଁ । କାରଣ ଆପିଲାବସାରେ ଏକା ବସି ପଢ଼ିଲାବେଳେ କୌଣସି ବିଷୟରେ ସନ୍ଦେହ ହେଲେ କାହାକୁ ପଚାରିବୁଝିବାର ସୁବିଧା ନଥାଏ । ତେଣୁ ବାର୍ଷିକ ପରୀକ୍ଷା ମାସେ ଥାଇ ରେଭେନ୍ସା କଲେଜ ପୂର୍ବ ଛାତ୍ରାବାସରେ ରହୁଥିବା ମୋର ହାଇସ୍କୁଲ ସହପାଠୀ ଶ୍ୟାମସୁନ୍ଦର ମହାରଣା ଓ ଗୌରାଙ୍ଗ ବେହେରାଙ୍କ ରୁମ୍‌ରେ ରହି ସେମାନଙ୍କ ସହିତ ଆଲୋଚନା କରି ପଢ଼ିବାର ବ୍ୟବସ୍ଥା କଲି । ପ୍ରତିଦିନ କଲେଜ ଛୁଟିପରେ ପଢ଼ାପଢ଼ି ସାରି ରାତି ଦଶଟା ବେଳକୁ ଆପିଲାବସାକୁ ଆସି ଖାଇପିଇ ଶୋଇଯାଏ । ପରୀକ୍ଷା ସରିଲାପରେ କଲେଜ ଛୁଟି ହେଲେ କେମିତି ଗାଆଁକୁ ଆସିବି ସେଇ ଚିନ୍ତା ମୋ ମନରେ ଥାଏ । ଗାଆଁଟା ମୋତେ ଖୁବ୍ ଭଲ ଲାଗେ । ବାପା, ବୋଉ ଓ ମାଆଙ୍କର ସ୍ନେହ ସହିତ ସାହିସାରା ସବୁ ସମ୍ପର୍କୀୟମାନଙ୍କ ସ୍ନେହଆଦର ମୋତେ ପାଗଳ କରେ । ଖାଇସାରି ଖଟଉପରେ ଶୋଇ ଝରକାବାଟେ ଦାଣ୍ଡ ପୋଖରୀକୁ ଚାହିଁଲେ ନାଲି, ନେଳି ଓ ଧଳା ରଙ୍ଗର କଇଁଫୁଲସବୁ ପବନର ହିଲ୍ଲୋଳରେ ଯେପରି ହଲି ହଲି ନାଚୁଥାଆନ୍ତି ସେ ଦୃଶ୍ୟ ମୋ ମନରେ ଯୁଗପତ୍ ଆନନ୍ଦ ସୃଷ୍ଟି କରେ । ଦେବୀନଦୀ ପଟୁ ବହି ଆସୁଥିବା ଦକ୍ଷିଣାପବନ ସେହି ପୋଖରୀର ନୀଳୀଜଳରାଶି ଉପରେ ଯେଉଁ ମାଳମାଳ ତରଙ୍ଗ ସୃଷ୍ଟି କରେ ସେହି ତରଙ୍ଗ ଉପରେ ପ୍ରତିଫଳିତ ଅପରାହ୍ନ ସୂର୍ଯ୍ୟଙ୍କ ତୀର୍ଯ୍ୟକ କିରଣ ଯେଉଁଳି ଚିକ୍‌ମିକ୍ ଦିଶୁଥାଏ ତାହା ଦେଖିବାକୁ ଭାରି ଖୁସି ଲାଗେ । ପୋଖରୀ କୂଳରେ ଥିବା ଶିଳପତିଆ ଆମ୍ବଗଛ ଡାଳରେ ଶଙ୍ଖଚିଲ ବସା କରିଥାଏ । ସେଇ ଯୋଡ଼ି ମଧ୍ୟରୁ ଗୋଟିଏ ଚିଲ ଅଧିକାଂଶ ସମୟ ଡାଳରେ ବସିଥିବାର ଦେଖିବାକୁ ମିଳେ। ଖରାଦିନେ ସାମନାରେ ଥିବା କୃଷ୍ଣଚୂଡ଼ା ଗଛଟା ନାଲି ନାଲି ଫୁଲରେ ଭରି ଯାଇଥାଏ । ଦକ୍ଷିଣା ପବନରେ ଡାଳ ହଲିଗଲେ ଫୁଲସବୁ ଟପ୍ ଟପ୍ ତଳେ ପଡ଼ିଯାଏ । ବର୍ଷା

ଋତୁରେ ଆମ ଦାଣ୍ଡର ପଶ୍ଚିମ ପଟକୁ ଠାକୁରଘର ସାମନାରେ ଥିବା କଦମ୍ବ ଗଛଟା ଭରିଯାଇଥାଏ ଫୁଲରେ । ଆକାଶରେ ଘନକୃଷ୍ଣ ମେଘମାଳା ଦେଖି ସତେଯେପରି ଉତ୍‌ଫୁଲ୍ଲିତ ହୋଇ ଖିଲି ଖିଲି ହସରେ ଫାଟି ପଡୁଥାଏ କଦମ୍ବ ତରୁ ।

ଗାଆଁରେ ଗ୍ରୀଷ୍ମକାଳୀନ ଚନ୍ଦ୍ରପକ୍ଷ ରାତିଟା ଆହୁରି ଭଲ ଲାଗେ । ଖରା ନଇଁଲାବେଳକୁ ନଈକୂଳିଆ ଥଣ୍ଡା ପବନରେ ବୈଶାଖମାସର ଖରାଧାସରେ ତାତିଥିବା ପୃଥିବୀଟା ଶୀତଳ ହୋଇଆସେ। ଦାଣ୍ଡ ବାରଣ୍ଡାରେ ସପ ବିଛେଇ ଆମେ ସବୁ ଗଡ଼ିପଡୁ । ମୋ ସାଙ୍ଗକୁ ପାଣୁଜେଜେ, ମହନିଜେଜେ, ସପନିଦାଦା ଓ ପୁଝାରୀ ଆଦି ଆମ ବାରଣ୍ଡାରେ ଶୁଅନ୍ତି । ଜହ୍ନ ଆଲୁଅରେ ତୋଫା ଦିଶୁଥାଏ ଚତୁର୍ଦ୍ଦିଗ। ରାସ୍ତା ଉପରେ ଥିବା ସାଇଁପୋଲ ଉପରେ ବସି କେହି ଜଣେ ବଇଁଶୀ ବଜାଏ । ସେ ବଂଶୀର ସୁନ୍ଦର ମୂର୍ଚ୍ଛନା ପୁଲକିତ କରେ ମନ। ଲୋକଟା ପ୍ରାୟ ଘଣ୍ଟାଏ କାଳ ବସି ବଂଶୀ ବଜାଉ ଥାଏ । ବେଳେ ବେଳେ ସେଇ ବଂଶୀ ଶୁଣି ଶୁଣି ମୋ ଆଖିକୁ ନିଦ ଆସିଯାଏ। ବାରଣ୍ଡାରେ ଶୋଇଲାବେଳେ ପାଣୁଜେଜେ ଓ ପୁଝାରୀ ଏଣୁ ତେଣୁ ଗପ କହନ୍ତି । ସେମାନଙ୍କଠୁଁ ଭୂତଗପ ଶୁଣିବାକୁ ଭାରୀ ମଜା ଲାଗେ। ପାଣୁଜେଜେ ମାଳିକାରେ ଥିବା ଅଚ୍ୟୁତାନନ୍ଦ ମହାପୁରୁଷଙ୍କ ଭବିଷ୍ୟତ ବାଣୀ ବିଷୟରେ ନାନା କଥା ସେ କହନ୍ତି। ବେଳେ ବେଳେ ରାତି ଅଧିଆ ନିଦ ଭାଙ୍ଗିଯାଏ । ବାଲିଘାଇ ମଶାଣି ତଳୁ ବିଲୁଆମାନେ ରଡ଼ି ଛାଡୁଥାନ୍ତି - ହୁକେ ହୋ, ହୁକୋ ହୋ, ହୁକେ ହୁକେ ହୋ। ପଶ୍ଚିମ ଆକାଶକୁ ଢଳି ଯାଇଥାନ୍ତି ଚନ୍ଦ୍ରମା । କଦମ୍ବ ଗଛ ଫାଙ୍କ ଦେଇ ବାରଣ୍ଡାରେ ଜହ୍ନ ଆଲୁଅ ପଡ଼ିଥାଏ । ମୋ ପାଖରେ ଶୋଇଥିବା ଲୋକମାନେ ଶୋଇ ଘୁଙ୍ଗୁଡ଼ି ମାରୁଥାନ୍ତି । ଉଠିପଡ଼ି ମୁଁ ବିଛଣାରେ ବସେ । ସପଟାକୁ ଜହ୍ନ ଆଲୁଅକୁ ଟାଣି ନେଇ ଚନ୍ଦ୍ରକୁ ଚାହିଁ ଶୋଇବାକୁ ଇଚ୍ଛା ହୁଏ । ଆମ୍ବ ତୋଟା ଦେଇ ସୁଲୁସୁଲିଆ ଦକ୍ଷିଣା ପବନ ଦେହକୁ ଛୁଇଁଯାଉଥାଏ । ଗାଆଁର ସେଇ ପ୍ରାକୃତିକ ପରିବେଶକୁ ମନଭରି ଉପଭୋଗ କରେ ମୁଁ । କିଛି ସମୟ ପରେ ପୁଣି ନିଦ ଆସିଯାଏ । ଭୋର ସକାଳୁ କାଉ କୋଇଲିଙ୍କ ରାବରେ ନିଦ ଭାଙ୍ଗିଯାଏ । କୃଷ୍ଣଚୂଡ଼ା ଗଛର ପତ୍ରହୀନ ଡାଳରେ ବସି ବଣିଚଢ଼େଇ ଗୁଡ଼ାକ କିଚିରିମିଚିରି ହେଉଥାନ୍ତି । ବାରଣ୍ଡାରୁ ସପତକିଆ ଉଠାଇ ନେଇ ମୁଁ ପୁଣି ଘର ଭିତରେ ଥିବା ଖଟ ଉପରେ ଯାଇ ଗଡ଼ିପଡ଼େ । କିଛି ସମୟ ଗଡ଼ିବା ଭିତରେ ଝରକା ଦେଇ ବହି ଆସୁଥିବା ଦକ୍ଷିଣାପବନରେ ପୁଣି ମୋ ଆଖିକୁ ନିଦ ଆସିଯାଏ । ଉଠିଲାବେଳକୁ ଦୁଆରେ ଖରା ପଡ଼ିଯାଇଥାଏ ।

ଅଳ୍ପ କେତେଟା ସପ୍ତାହ ଖରାଛୁଟି ପରେ ପୁଣି କଲେଜ ଖୋଲିଗଲା । ବହିପତ୍ର ଓ ଲୁଗାପଟା ଧରି କଟକ ଯାଇ ଆଫିଲା ବସାରେ ରହିଲି । ପଢ଼ାପଢ଼ି

ଜୋର୍‌ସୋର୍‌ରେ ଚାଲିଲା । ଦଶହରାପରେ ପ୍ରିଟେଷ୍ଟ ପରୀକ୍ଷା। ତେଣୁ ଠିକ୍ ଭାବେ ପଢ଼ିବାକୁ ହେବ। ମାତ୍ର ସେପ୍ଟେମ୍ବର ପ୍ରଥମ ସପ୍ତାହରେ ରାତି ପ୍ରାୟ ନଅଟାବେଳକୁ ଖବର ଆସିଲା ମୋ ଭିଣୋଇ ଗୌରୀଶ୍ୟାମ ନାୟକଙ୍କର ଜିପ୍ ଦୁର୍ଘଟଣାରେ ହାତ ଓ ପଞ୍ଜରାହାଡ଼ ଭାଙ୍ଗି ଯାଇଛି । ଆମେ ସବୁ କଟକ ମେଡ଼ିକାଲକୁ ଧାଇଁଲୁ । ଗୌରୀଶ୍ୟାମ ଭାଇ ଏରସମାର ବିଧାୟକ ଭାବେ ପାରାଦ୍ୱୀପରେ ବନ୍ଦର ପାଇଁ ଲାଗିଥିଲେ । ଭାରତ ସରକାରଙ୍କର ଏକ ବିଶେଷଜ୍ଞ ଦଳ ପାରାଦ୍ୱୀପ ଦେଖିବାକୁ ଆସିଲେ । ସେତେବେଳେ ପାରାଦ୍ୱୀପରେ କେବଳ ବତୀଘରଟି ଥାଏ । ସେଇ ବତୀଘର ପର୍ଯ୍ୟନ୍ତ ଯାଇ ପହଞ୍ଚିପାରିବା ଅତ୍ୟନ୍ତ କଷ୍ଟସାଧ୍ୟ ଥାଏ । ନଦୀ ଭିତରେ ଡଙ୍ଗାରେ ଗଲେ ପାରାଦ୍ୱୀପରେ ପହଞ୍ଚିବାକୁ ବହୁତ ସମୟ ଲାଗେ । ତଥାପି ଏଠାରେ ଗୋଟିଏ ବନ୍ଦର କରିବା ଥିଲା ବିଜୁପଟ୍ଟନାୟକଙ୍କର ଏକ ସ୍ୱପ୍ନ । ସେ ପ୍ରଥମ କରି କେନ୍ଦ୍ରମନ୍ତ୍ରୀ ଥିବା ବେଳେ ଏ ପ୍ରସ୍ତାବ ରାଜ୍ୟ ସରକାରଙ୍କ ପକ୍ଷରୁ ଆଗତ କରାଇଥିଲେ । ଏରସମାର ବିଧାୟକ ଭାବେ ଗୌରୀଶ୍ୟାମ ଭାଇ ଏ ବିଷୟରେ ଅନେକ ସର୍ଭେ କରାଇ ରିପୋର୍ଟ ଦାଖଲ କରିଥିଲେ । ତିର୍ତ୍ତୋଲ ଠାରୁ କୁଜଙ୍ଗ ରାସ୍ତାଟା ତିଆରି ଚାଲିଥାଏ । ଭୂତମୁଣ୍ଡେଇ ଠାରୁ ଭାରତ ସରକାରଙ୍କ ବିଶେଷଜ୍ଞ ଦଳକୁ ଡଙ୍ଗାରେ ନେଇ ମୁହାଣ ମୁହଁ ଓ ବତୀଘର ବୁଲାଇ ସାରି ଫେରିଲା ବେଳକୁ ମୁହଁସଞ୍ଜ ହୋଇ ଆସୁଥାଏ । ଜିପ୍‌ରେ ବସି କଟକ ଫେରନ୍ତା ବାଟରେ ଗୋଟିଏ ଗାଈ ସହିତ ଧକ୍କା ହୋଇ ଜିପ୍‌ଟା ରାସ୍ତାକଡ଼କୁ ଲେଉଟି ପଡ଼ିଲା । ଡ୍ରାଇଭର ବାମପଟେ ବସିଥିବା ଗୌରୀଶ୍ୟାମ ବାବୁ ଜିପ୍‌ରୁ ଖସି ପଡ଼ିଲେ ଓ ତାଙ୍କ ଉପରେ ଜିପ୍‌ଟା ଲଦି ହୋଇଗଲା । ଜିପ୍ ଚାପାରେ ତାଙ୍କର ଡାହାଣ ବାହୁ ଓ ଦୁଇ ତିନିଟା ପଞ୍ଜରା ହାଡ଼ ଭାଙ୍ଗିଗଲା । ସେ ଅଚେତ୍ ହୋଇପଡ଼ିଥିଲେ । ତାଙ୍କୁ ଆଣି ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ସର୍ଜରୀ ବିଭାଗରେ ଚିକିତ୍ସା କରାଗଲା ।

ସେହି ରାତିଟା ତାଙ୍କ ସହିତ ନୀରଭାଇ ଓ ବିଷ୍ଣୁଭାଇ ରହି ଚିକିତ୍ସା କରାଇ ସକାଳୁ ଫେରିଲେ । ତାପରଦିନ କଲେଜରୁ ଫେରି ମୁଁ ମେଡ଼ିକାଲ ଗଲି । ମୋତେ ତାଙ୍କ ପାଖରେ ରହିବାକୁ ପଡ଼ିଲା । ଏଣିକି ପ୍ରତିଦିନ କଲେଜରୁ ଫେରି ମୁଁ ରାତିରେ ଗୌରୀଶ୍ୟାମ ଭାଇଙ୍କ ପାଖରେ ରହିଲି । ପନ୍ଦରଦିନ ପରେ ମେଡ଼ିକାଲରୁ ସେ ଘରକୁ ଆସିଲେ । ଟେଷ୍ଟ ପରୀକ୍ଷା ପାଇଁ ମୁଁ ଲାଗି ପଡ଼ିଲି । ଦଶହରା ଛୁଟିରେ ମୁଁ ଆଉ ଗାଆଁକୁ ନ ଯାଇ ଆପିଲା ବସାରେ ରହି ପଢ଼ିଲି । ଡିସେମ୍ବର ମାସରେ ଆମର ଟେଷ୍ଟ ପରୀକ୍ଷା ଥାଏ । ଆପିଲା ବସାରେ ଗୌରୀଶ୍ୟାମ ଭାଇ ରହୁଥିବାରୁ ଏରସମା ଅଞ୍ଚଳରୁ ଲୋକମାନଙ୍କର ଧାଡ଼ି ଛୁଟେ । ରାତି ନଅଟା ପର୍ଯ୍ୟନ୍ତ ଯିବା ଆସିବା ଲାଗି ରହିଥାଏ ।

ତେଣୁ ମୁଁ ପୂର୍ବପରି ରେଭେନ୍ସା କଲେଜର ପୂର୍ବଛାତ୍ରାବାସରେ ମୋର ସହପାଠୀମାନଙ୍କ ରୁମ୍‌ରେ ରହି ପଢ଼ାପଢ଼ି କରେ ଓ ରାତି ଦଶଟାପରେ ବସାକୁ ଫେରି ଖିଆପିଆ କରି ଶୋଇଯାଏ ।

ଟେଷ୍ଟପରୀକ୍ଷା ସରିଗଲା । ଏଣିକି ବାର୍ଷିକ ପରୀକ୍ଷା ପାଇଁ ପଢ଼ାପଢ଼ି କରିବା କଥା । ସୀମା କମିଶନଙ୍କ ରିପୋର୍ଟ ବାହାରିଲା । ସେହି ରିପୋର୍ଟ ଅନୁଯାୟୀ ଷଢ଼େଇକଳା - ଖରସୁଆଁ ଅଞ୍ଚଳ ବିହାର ସହିତ ସ୍ଥାୟୀ ଭାବେ ମିଶିଯିବାକୁ କେନ୍ଦ୍ର ସରକାର ନିଷ୍ପତ୍ତି ନେଲେ । ଓଡ଼ିଶାରେ ପ୍ରବଳ ପ୍ରତିକ୍ରିୟା ହେଲା । ଓଡ଼ିଶା ବିଧାନ ସଭାର ଜରୁରୀ ଅଧିବେଶନ ବସିଲା । ଗୌରୀଶ୍ୟାମ ଭାଇ ବିଧାନସଭାରେ ଯୋଗଦେବାକୁ ବାହାରିଲେ । ମୁଁ ତାଙ୍କୁ ପଚାରିଲି, ଭାଇ! ଆପଣ କ'ଣ କରିବେ? ସେ କହିଲେ ଏ ନିଷ୍ପତ୍ତିର ବିରୋଧ କରାଯିବ ।

ତାପରଦିନ ସନ୍ଧ୍ୟାରେ ଗୌରୀଶ୍ୟାମ ଭାଇ ଭୁବନେଶ୍ୱରରୁ ଫେରିଲେ । କହିଲେ, ବିଧାନସଭାର ସମସ୍ତ ବିଧାୟକ ଏହି ନିଷ୍ପତ୍ତି ବିରୁଦ୍ଧରେ ସମୂହ ଇସ୍ତଫା ଦେଇଛୁ । ଆଜି ମୁଖ୍ୟମନ୍ତ୍ରୀ ଆମ ଇସ୍ତଫାପତ୍ର ସବୁ ଧରି ଦିଲ୍ଲୀ ଯାଇଛନ୍ତି । ପ୍ରଧାନମନ୍ତ୍ରୀଙ୍କୁ ଭେଟି ତାଙ୍କ ହାତରେ ଦେବେ । କେନ୍ଦ୍ର ସରକାରଙ୍କ ଓଡ଼ିଶା ପ୍ରତି ଅବିଚାର ଯୋଗୁଁ ଛାତ୍ର ଆନ୍ଦୋଳନ ଆରମ୍ଭ ହୋଇଗଲା। ଆମ କଲେଜରେ ସଭା ହେଲା । ଆମେ ସବୁ ପଟୁଆରରେ ଯାଇ ସହର ପରିକ୍ରମା କଲୁ । ଷଢ଼େଇକଳା ଖରସୁଆଁ ଓଡ଼ିଶାରେ ନମିଶିଲେ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବିକ୍ଷୋଭ ଓ ସଭାସମିତି ଚାଲିବ । ପ୍ରତିଦିନ ଆମ ସଭାରେ ଯଦୁମଣି ମଙ୍ଗରାଜ, ରାମକୃଷ୍ଣ ପତି, ପଣ୍ଡିତ ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ମନମୋହନ ମିଶ୍ର ଆଦି ନେତାମାନେ ଆସି ଭାଷଣ ଦିଅନ୍ତି । କଟକର ସବୁ କଲେଜ ଓ ସ୍କୁଲମାନଙ୍କରେ ପ୍ରତିବାଦ ସଭା ହେଲା ।

ଦିନବେଳା ପ୍ରାୟ ତିନି ଚାରିଘଣ୍ଟା ଆନ୍ଦୋଳନ, ବିକ୍ଷୋଭ, ସଭାସମିତି କାମରେ ଯାଏ । ସନ୍ଧ୍ୟାପରେ ମୁଁ ପଢ଼ାପଢ଼ି କରେ । ମୁଣ୍ଡ ଉପରେ ଆଇଏସ୍‌ସି ପରୀକ୍ଷା । ଆଉ ମାତ୍ର ଦୁଇ ଅଢ଼େଇ ମାସ ରହିଲା । ଦିଲ୍ଲୀରୁ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଫେରି ଆସିଲେ । ସେ ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତିଙ୍କୁ ଭେଟି ଅପଦସ୍ଥ ହେଲେ । ସେମାନଙ୍କଠାରୁ ଗାଳି ଖାଇଲେ । ବିଧାୟକ ମାନଙ୍କର ଇସ୍ତଫାପତ୍ର ନେହେରୁ ତାଙ୍କ ମୁହଁ ଉପରକୁ ଫିଙ୍ଗିଦେଲେ । ଦୃଢ଼ ହସ୍ତରେ ଛାତ୍ରଆନ୍ଦୋଳନ ଦମନ କରିବାକୁ କେତେ ହଜାର ସୈନ୍ୟଙ୍କୁ ମଧ ଓଡ଼ିଶା ପଠାଗଲା । କେନ୍ଦ୍ରୀୟ ନେତାଙ୍କୁ ଭୟ କରି ଆମ ମୁଖ୍ୟମନ୍ତ୍ରୀ ସୈନ୍ୟସାମନ୍ତ ଧରି ଓଡ଼ିଶା ଫେରିବା ଆମ ପକ୍ଷରେ ଅତ୍ୟନ୍ତ ଅପମାନଜନକ ଥିଲା ।

ଏଇ ନବକୃଷ୍ଣ ଚୌଧୁରୀ ଯେ ଇଂରେଜ ସରକାର ବିରୁଦ୍ଧରେ ଆନ୍ଦୋଳନ କରି ଦେଶକୁ ସ୍ୱାଧୀନ କରିଥିଲେ ସେ ବିଶ୍ୱାସ ଆମ ମନରେ ଆଉ ନଥିଲା । ଯିଏ ଇଂରେଜ ସରକାରଙ୍କୁ ଭୟ କରିନଥିଲା, ସେ ନେହେରୁ ଓ ରାଜେନ୍ଦ୍ର ପ୍ରସାଦଙ୍କ ନାଲି ଆଖି ଦେଖି ମାଇଚିଆଙ୍କ ପରି ବିଧାୟକମାନଙ୍କର ଇସ୍ତଫା ଧରି ଓଡ଼ିଶା ଫେରିବା କେବଳ ଓଡ଼ିଶା ବିଧାନସଭା ନୁହେଁ, ସମଗ୍ର ଓଡ଼ିଆ ଜାତି ପ୍ରତି ଘୋର ଅପମାନ ମନେ ହେଉଥିଲା । କଂଗ୍ରେସ ହାଇକମାଣ୍ଡଙ୍କ ଅଧୀନରେ ଗୋଟିଏ ଦଳ ଥାଇପାରେ, ମାତ୍ର ଗୋଟିଏ ଜାତି ନୁହେଁ । ଗୋଟିଏ ତ୍ୟାଗୀ ପରିବାରରୁ ସମ୍ଭୂତ ଜଣେ ରାଜନେତା ମାତୃଭୂମି ଓଡ଼ିଶା ତଥା ଓଡ଼ିଆ ଜାତି ଲାଗି ନିଜର ମୁଖ୍ୟମନ୍ତ୍ରୀତ୍ୱ ତ୍ୟାଗ କରିପାରିଥାନ୍ତେ । ନେହେରୁ ବା ରାଜେନ୍ଦ୍ର ପ୍ରସାଦଙ୍କୁ ସେ କହିଥାନ୍ତେ, ଓଡ଼ିଶା ପ୍ରତି ଏହି ଅନ୍ୟାୟ ପାଇଁ ମୁଁ ମୁଖ୍ୟମନ୍ତ୍ରୀ ପଦରୁ ବର୍ତ୍ତମାନ ଇସ୍ତଫା ଦେଉଛି । ମାତ୍ର ତାହା ନ କରି ଓଡ଼ିଶାରେ ସୀମା ଆନ୍ଦୋଳନ ଦବାଇ ଦେବା ପାଇଁ ସୈନ୍ୟବାହିନୀ ସହିତ ଗୁଳିଗୁଳା ଆଣି ସଗର୍ବେ ଓଡ଼ିଶା ଫେରି ଆସି ଅତ୍ୟାଚାରୀ କଂଗ୍ରେସ ଶାସନ ଚଳାଇରଖିଲେ । ଏ ଖବର ପାଇ ମୁଁ ମୋର ଭିଣୋଇ ତତ୍କାଳୀନ ଏରସମା ବିଧାୟକ ଗୌରୀଶ୍ୟାମ ନାୟକଙ୍କୁ ପ୍ରବଳ ସମାଲୋଚନା କଲି । ହେଲେ କାହାଠାରୁ କିଛି ଶୁଣିବା ଅବସ୍ଥାରେ ସେ ନଥିଲେ ।

ଆମ କଲେଜର ଛାତ୍ର ୟୁନିୟନ ସଭାପତି ଗିରିଜାଭୂଷଣ ପଟ୍ଟନାୟକ ଓ ପୂର୍ବତନ ସଭାପତି ହରିଶ୍ଚନ୍ଦ୍ର ବକ୍ସିପାତ୍ର ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇଥାନ୍ତି । ଆମେ ସବୁ ରେଡ଼ିଓ ଷ୍ଟେସନ ଘେରାଉ କଲୁ । ପୋଲିସ ପକ୍ଷରୁ ଲୁହାବୁହା ବାଷ୍ପ ଛଡ଼ାଗଲା । ନିଶ୍ୱାସ ନେବାରେ ପ୍ରବଳ ଯନ୍ତ୍ରଣା ହେଲା । ଆଖି ଭୀଷଣ ପୋଡ଼ିଉଠି ଲୁହ ବୋହିଲା । ଆମେ ସବୁ ଷ୍ଟୁଆର୍ଟ କଲେଜ ପାଚେରୀ ଡେଇଁ ମୁକ୍ତ ପବନରେ ନିଶ୍ୱାସ ନେବାକୁ ଚେଷ୍ଟାକଲୁ । ଗୁଳି ଫୁଟିବାର ଶବ୍ଦ ଶୁଭିଲା । ସେଇ ଗୁଳିରେ ସୁନୀଲ ଦେ ନାମକ ଜଣେ ଯୁବକ ଟଳି ପଡ଼ିଲେ । ଛାତ୍ରମାନେ ଛତ୍ରଭଙ୍ଗ ଦେଇ ପଳାଇଗଲେ । ମୁଁ ଘରକୁ ଫେରି ଗୌରୀଶ୍ୟାମ ଭାଇଙ୍କୁ ଗାଳିଦେଲି । କହିଲି, ତୁମକୁ ଲଜ୍ୟାନାହିଁ । ଇସ୍ତଫା ତ ଦେଇ ପାରିଲ ନାହିଁ, ଏଣେ ଛାତ୍ରମାନଙ୍କୁ ଗୁଳି କରି ମାରୁଚ ? ସେ କହିଲେ ଏ ଦେଶଟା ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତିଙ୍କ ଇଙ୍ଗିତରେ ଚାଲିଛି । ରାଜେନ୍ଦ୍ର ପ୍ରସାଦ ଯାହା ଚାହିଁବେ ସେୟା ହେବ । ସେମାନଙ୍କ ଆଗରେ ନବକୃଷ୍ଣ ଚୌଧୁରୀ ମୂଷା ପରି ବ୍ୟକ୍ତିତ୍ୱ । ତେଣୁ ଛାତ୍ର ଆନ୍ଦୋଳନ ସଫଳ ହେବନାହିଁ । ତୁମେମାନେ ପାଠପଢ଼ାରେ ମନଦିଅ । ଅଯଥାରେ ସମୟ ନଷ୍ଟ କରି ଲାଭ ନାହିଁ । ମୁଁ ତାଙ୍କୁ ଏଣୁ ତେଣୁ କହି ଗାଳି ଦେବାକୁ ଚେଷ୍ଟା କଲି । ସେ ହସି ଦେଇ କହିଲେ ମୁଁ ଜଣେ ବିଧାୟକ ମାତ୍ର ।

ଏ ଦିଗରେ କିଛି କରିପାରିବି ନାହିଁ । କଂଗ୍ରେସ ହାଇକମାଣ୍ଡ ଯାହା କହିବେ ତାହାହିଁ ହେବ । ମୋତେ ଗାଳି ଦେଇ କିଛି ଲାଭ ନାହିଁ ।

ତାପରଦିନ ଅପରାହ୍ନ ତିନିଟାରେ ସୁନୀଲ ଦେଙ୍କ ଶବ ଶୋଭାଯାତ୍ରା ହେଲା । ମେଡ଼ିକାଲରୁ ତାଙ୍କର ଶବକୁ ଖାନନଗର ଶ୍ମଶାନକୁ ପଟୁଆରରେ ଆଣିଲାବେଳେ ଆଠ ଦଶହଜାର ଛାତ୍ରଛାତ୍ରୀ ସରକାର ବିରୋଧୀ ଧ୍ୱନି ମାନଦେଇ ଶୋଭାଯାତ୍ରାରେ ଯାଉଥାନ୍ତି । ଶୋଭାଯାତ୍ରା ଆଗରେ ଗୋଟିଏ ଘୋଡ଼ାଗାଡ଼ିରେ ଛାତ୍ରୀମାନେ ବସି "ବନ୍ଦେ ଉତ୍କଳ ଜନନୀ" ଗାଇ ଗାଇ ଚାଲିଥାନ୍ତି । ସେହି ସଙ୍ଗୀତ ମୋ ମନରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କରୁଥାଏ । ମାତୃଭୂମି ପାଇଁ ଜୀବନ ଉତ୍ସର୍ଗ କରିନେବାକୁ ମନ ହେଉଥାଏ । ଓଡ଼ିଆଜାତି ପ୍ରତି କେନ୍ଦ୍ରସରକାର ଯେଉଁଭଳି ଅବିଚାର କଲେ ତାର ପ୍ରତିଶୋଧ ନେବାପାଇଁ ମନରେ ଉନ୍ମାଦନା ସୃଷ୍ଟି ହେଉଥାଏ ।

ପ୍ରବଳ ମନଦୁଃଖରେ ମୁଁ ଆପିଲାବସାକୁ ଫେରିଲି । ପାଠପଢ଼ାରେ ଆଦୌ ମନ ଲାଗିଲା ନାହିଁ । ଛାତ୍ର ଆନ୍ଦୋଳନ ମଳିନ ପଡ଼ିଗଲା । ମୁଣ୍ଡ ଉପରେ ବିଶ୍ୱବିଦ୍ୟାଳୟ ପରୀକ୍ଷା। ଯଥାସାଧ୍ୟ ଚେଷ୍ଟା କରି ପରୀକ୍ଷା ପାଇଁ ଲାଗିପଡ଼ିଲି ।

## ବୈଷୟିକ ଶିକ୍ଷା

ଆଇ.ଏସ୍.ସି. ପରୀକ୍ଷା ଦେଇସାରି ଗାଆଁକୁ ଗଲି । ଏହାପରେ ଭବିଷ୍ୟତଟା କେଉଁ ରଙ୍ଗ ନେବ ସେଇ ଚିନ୍ତା ମନକୁ ଘାରୁଥାଏ । ପରୀକ୍ଷାରେ ଯାହା କରିଛି ତାର ସମୀକ୍ଷା କରି ଦେଖିଲି ଯେ ଦ୍ୱିତୀୟ ଶ୍ରେଣୀ ପାଇବି । ବୁର୍ଲାରେ ଇଞ୍ଜିନିୟରିଂ କଲେଜ ଆରମ୍ଭ ହୋଇଥାଏ । କଟକଠାରେ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟ ମଧ୍ୟ ନୂଆ କରି ଖୋଲିଥାଏ । ରେଭେନ୍ସା କଲେଜରେ ବି.ଏସ.ସି. ପଢ଼ିଲେ ଭୂତତ୍ତ୍ୱବିଜ୍ଞାନ, ପ୍ରାଣୀ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ ବା ଭାରତୀୟ ଜଙ୍ଗଲ ପ୍ରଶାସନିକ ସେବା ଆଦିରେ ଅନେକ ସୁବିଧାଜନକ ଭବିଷ୍ୟତ ଆଶା ଅଛି । ମୋର କେତେ ଜଣ ସହପାଠି ଟେକ୍ସଟାଇଲ୍ ଟେକ୍ନୋଲୋଜି ବା ବୟନ ଶାସ୍ତ୍ର ଅଧ୍ୟୟନ କରିବାକୁ ମନସ୍ଥ କରିଥାନ୍ତି । ତେବେ ସବୁ ମୂଳରେ ଅର୍ଥ ବିନିଯୋଗର ଆବଶ୍ୟକତା ରହିଥାଏ । ଇଞ୍ଜିନିୟରିଂ ପଢ଼ିଲେ ମାସକୁ ଦେଢ଼ଶହରୁ ଦୁଇଶହ ଟଙ୍କା ଦରକାର । ବି.ଏସ.ସି. ପଢ଼ିଲେ ଆପିଲାବସାରେ ରହି ମାସକୁ ପଚାଶ ଷାଠିଏ ଟଙ୍କାରେ ଚଳିଯିବ । ତେବେ ବିଏସ୍‌ସି ପରେ ଆଉ ଦୁଇବର୍ଷ ହାତରୁ ଖର୍ଚ୍ଚ କରି ପଢ଼ିବାକୁ ପଡ଼ିପାରେ ।

ଏଣେ ମୋ ଉଚ୍ଚଶିକ୍ଷା ପାଇଁ ଖର୍ଚ୍ଚ ବାବଦ ବିକ୍ରୀ କରିବାକୁ ବାପାଙ୍କର ଆଉ ଜମିବାଡ଼ି ନାହିଁ । ଆଉ ମାତ୍ର ଦଶପନ୍ଦର ଏକର ଜମି ବିକିବା ପଇଁ ରହିଛି । ମୁଁ ଉପାର୍ଜନକ୍ଷମ ନହେବା ପର୍ଯ୍ୟନ୍ତ ପରିବାରର ଚଳିବା ପାଇଁ ବାପା ନିଶ୍ଚୟ ଜମି ବିକ୍ରୀ କରିବେ । ତାଙ୍କର କିଛି ହିସାବ କିତାବ ନାହିଁ । ବିଗତ ଚାଳିଷ ବର୍ଷ ଭିତରେ ଆମ ଅଞ୍ଚଳର ଲୋକେ ବାପାଙ୍କ ଠାରୁ ଛଅଶହ ଏକର ଜମି କିଣି ସାରିଛନ୍ତି । ତହିଁରୁ ଅଧିକାଂଶ ଶାଗମାଛ ଦରରେ ଯାଇଛି । ଗୁମାସ୍ତାମାନେ ମଧ୍ୟ ନାନା ମସୁଧା କରି ସେମାନଙ୍କ ନାମରେ ଅନେକ ସମ୍ପତ୍ତି କରି ନେଇଛନ୍ତି । ଏଣିକି ଯାହା ବା ଜମି ଅଛି, କିଣିବା ପାଇଁ ଲୋକଙ୍କର ଅଭାବ ନାହିଁ । ଆଉ ଆମ ଘରେ କେହି ଗୁମାସ୍ତା ମଧ୍ୟ ନାହାନ୍ତି। ଏବେ ଯାହା କରାଯିବ ମୋତେ ଭାବିଚିନ୍ତି କରିବାକୁ ହେବ ।

ଏସବୁ କଥା ଭାବି ବେଳେବେଳେ ମୁଁ ଚିନ୍ତାଗ୍ରସ୍ତ ହୋଇପଡ଼େ । ମାଆ ପଚାରେ କାହିଁକି ବିରସ ମନରେ ବସିଛୁ ? କ'ଣ ଭାବୁଛୁ ? ମୁଁ ତାକୁ କିଛି କହେନାହିଁ । ସେ ଯାଇ ବାପାଙ୍କୁ କହେ, ରାମ ! ପୁଅ କାହିଁକି ଆଜିକାଲି ମନମାରି ବସୁଛି ? ବୋଉ ଆସି ପଚାରେ, କଅଣ ପରୀକ୍ଷା ଫଳ କଥା ଭାବୁଚୁ କି ? ମୁଁ କିଛି କହି ପାରେ ନାହିଁ, ବାପା କହନ୍ତି, ତାକୁ କହ, ମନ ଦୁଃଖ କରିବ ନାହିଁ । ସେ ଯାହା ଚାହିଁବ ପଢୁ । ମୁଁ ତାକୁ ପଢ଼େଇବି । ଯାହା ଜମିବାଡ଼ି ଅଛି ତା ପାଠପଢ଼ା ପାଇଁ ବିକ୍ରୀ କରିଦେବି। ମୁଁ ମାଆକୁ ଡାକି କହେ, ମାଆଲୋ ! ବାପାଙ୍କୁ କହ ଜମି ବିକ୍ରୀ କଥା କହିବେ ନାହିଁ । ଦରକାର ହେଲେ ବିକିବା କଥା ମୁଁ କହିବି । ଆମର ଜମି ବହୁତ କମି ଆସିଲାଣି । ତେଣୁ ଏବେଠାରୁ ସେସବୁ ଚିନ୍ତା କରିବା ଭଲ ନୁହେଁ । ବୋଉ କହେ, ସେ ଯାହା କହୁଛି ଠିକ୍ କହୁଛି । ତାକୁ ପାଠ ପଢ଼ାରେ ସାହାଯ୍ୟ କରିବାକୁ ଆମର କେବଳ କେତେମାଣ ଚାଷଜମି ଛଡ଼ା ଆଉ ବା କ'ଣ ସମ୍ବଳ ଅଛି ? ସେ ଛୋଟପିଲା ଥିଲା । କିଛି ବୁଝିପାରୁ ନଥିଲା । ଏବେ କଲେଜରେ ପଢ଼ିଲାଣି । ସବୁ କଥା ବିଚାର କରି ପାରୁଛି । ତେଣୁ ସେ ଯାହା କହୁଛି ସେଥିରେ ଭୁଲ୍ ନାହିଁ । ତଥାପି ତାର ପାଠପଢ଼ା ପାଇଁ ଯେପରି ହେଲେ ଖର୍ଚ୍ଚ ଯୋଗାଇବାକୁ ହେବ ।

ପରୀକ୍ଷାଫଳ ବାହାରିବା ପୂର୍ବରୁ କଲେଜ ମାନଙ୍କରେ ନାମ ଲେଖାଇବାକୁ ଦରଖାସ୍ତ ଫର୍ମ ଆଣିବା ପାଇଁ କଟକ ଗଲି । ରେଭେନ୍ସା କଲେଜରେ ଆମ ଗାଆଁ ପାଖ ଶାସନପଦାର ବିଷ୍ଣୁଚରଣ ଯୋଶୀ ଦେଖାହେଲେ । ସେ ନୂଆକରି ଖୋଲିଥିବା ଭେଟେରିନାରୀ କଲେଜରେ ପଢୁଥାନ୍ତି । ସେ ଆଇ.ଏସ୍.ସି. ପାଶ୍ କରି ନିଆଳି ହାଇସ୍କୁଲରେ ଶିକ୍ଷକତା କରୁଥିଲେ । ଗତବର୍ଷ ପଶୁପାଳନ ନିର୍ଦ୍ଦେଶାଳୟ ହତା ଭିତରେ ଭେଟେରିନାରି କଲେଜ ଖୋଲିବାପରେ ସେ ଆସି ନାମ ଲେଖାଇଲେ ।

ସମୁଦାୟ ୪୫ ସିଟ୍ ବିଶିଷ୍ଟ ଏହି କଲେଜରେ ପାଠପଢ଼ାଇବାର ସମସ୍ତ ସୁବିଧା ନଥିବାରୁ ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜରେ କେତେକ ପାଠ୍ୟ ପଢ଼ାହେଉଥାଏ । ନୂଆ କଲେଜଟା ଦେଖି ସେଇଠି ପଢ଼ିବା କଥା ଚିନ୍ତା କରିବାକୁ ସେ ମୋତେ ଡାକିଲେ । କହିଲି, ବାପା ବୋଉଙ୍କୁ ପଚାରି ପଶୁଚିକିତ୍ସା ବିଜ୍ଞାନ ପଢ଼ିବା ବିଷୟରେ ନିଷ୍ପତ୍ତି ନେବି । ସେ କହିଲେ, ଆସ ଫର୍ମ ନେଇଯିବ । ପରୀକ୍ଷା ଫଳ ବାହାରିବା ପରେ ଫର୍ମ ପୂରଣକରି ପକାଇ ଦେବ । ଯଦି ସିଟ୍ ମିଳିଯାଏ, ତାହାହେଲେ ଘରେ ସମସ୍ତଙ୍କ ମତାମତ ନେଇ ଏ ପାଠ ପଢ଼ିବ । ନୋହିଲେ ନାହିଁ । ଏବେ ଫର୍ମଟା ନ ନେଇ ଚାଲିଗଲେ ପରେ ଆଉ ଥରେ ଏଥିଲାଗି କଟକ ଆସିବା ସମ୍ଭବ ହୋଇନପାରେ ।

ତାଙ୍କ ସହିତ ଯାଇ ନୂଆ କଲେଜ ଦେଖିଲି । ଫାଟକ ପାଖକୁ ଲାଗି ଅଧକ୍ଷଙ୍କ ପ୍ରକୋଷ୍ଠ । ବୋର୍ଡ଼ରେ ତାଙ୍କର ନାମ ଲେଖାଯାଇଥାଏ, - ଡକ୍ଟର ଗଣେଶ୍ୱର ବିଶ୍ୱାଳ, ଡିଭିଏମ୍ ଏମ୍.ଏସ୍, ପିଏଚ୍ ଡ଼ି (ମିଚିଗାନ, ଆମେରିକା) । ପ୍ରଥମ କରି ଜଣେ ଆମେରିକା ଫେରନ୍ତା ଅଧାପକଙ୍କର ସନ୍ଧାନ ପାଇଲି । ରେଭେନ୍ସାରେ ପଢ଼ାଉଥିବା ଅଧିକାଂଶ ବିଭାଗୀୟ ମୁଖ୍ୟ ବିଲାତ ଫେରନ୍ତା ଲୋକ । ସେଠାରେ କୌଣସି ଅଧାପକ ଆମେରିକାରେ ପଢ଼ିଥିବାର ଜାଣିନଥିଲି । ଡକ୍ଟର ବିଶ୍ୱାଳଙ୍କୁ ଦେଖିବାପାଇଁ ମନ ହେଉଥାଏ । ଯୋଶୀବାବୁ କହିଲେ, ଚିଠା ଖଣ୍ଡେ ଲେଖି ପଠାଅ । ସେ ଡାକିବେ । ମୁଁ ପିଅନକୁ ମୋ ନାମ ଲେଖି ଚିଠା ଖଣ୍ଡେ ଦେଲି । ପ୍ରାୟ ପନ୍ଦର ମିନିଟ୍ ପରେ ମୋତେ ଡାକରା ଆସିଲା ।

ପ୍ରକୋଷ୍ଠ ଭିତରେ ଦେଖିଲି, ଜଣେ ସୌମ୍ୟକାନ୍ତ ପୁରୁଷ । ଆମେରିକାନ୍ ସୁଟ୍ ପିନ୍ଧିଛନ୍ତି ଓ ଟାଇ ଭିଡ଼ିଛନ୍ତି । ଆଖିରେ ଚଷମା । ସ୍ମିତହସି ମୋତେ ପରିଚୟ ପଚାରିଲେ । ପରିଚୟ ଜାଣିସାରି ପଚାରିଲେ ତୁମେ କ'ଣ ଏ କଲେଜରେ ପଢ଼ିବାକୁ ଆଗ୍ରହୀ ? କହିଲି ହଁ । ସେ କହିଲେ, ଫର୍ମ ନେଇଯାଅ । କଲେଜରୁ ଚିଠି ପାଇଲେ ଏଠାକୁ ଆସି ଇଣ୍ଟରଭିଉ ଦେବ । ସେଥିରେ ତୁମର ଦକ୍ଷତା ଦେଖି ତୁମକୁ ବଛାଯିବ । ବଛାବଛି ପରୀକ୍ଷାରେ ତୁମେ ଯଦି ପ୍ରଥମ ପାଞ୍ଚ ଜଣଙ୍କ ଭିତରେ ରହିବ ତାହାଲେ ତୁମେ ବୃତ୍ତି ପାଇବାକୁ ବିବେଚିତ ହେବ । ବୃତ୍ତି ପାଇଲେ ତୁମ ପାଇଁ କଲେଜ ଦରମା ଛାଡ଼ କରାଯିବ ।

ତାଙ୍କର କଥାଶୁଣି ମୋତେ ଖୁବ୍ ଭଲ ଲାଗିଲା । କଲେଜ ଅଫିସ୍‌ରୁ ଫର୍ମ ନେଇ ଚାଲିଆସିଲି । ଏଥି ସହିତ ବି.ଏସ୍.ସି., ବି.କମ୍., ଓ ବି.ଏସ୍.ସି.ଏଜି ପଢ଼ିବାକୁ ଫର୍ମ ସବୁ ଯୋଗାଡ଼ କରି ଘରକୁ ଫେରିଲି । ଆଠ ଦଶ ଦିନ ଭିତରେ ବୁର୍ଲା ଇଂଜିନିୟରିଂ

ଓ ପିଲାନି ଇଂଜିନିୟରିଂ କଲେଜରୁ ମଧ୍ୟ ଫର୍ମ ଆସିଗଲା । ପରୀକ୍ଷାଫଳ ବାହାରିବା ମାତ୍ରେ ଫର୍ମ ସବୁ ପୂରଣ କରି ବିଭିନ୍ନ କଲେଜକୁ ପଠାଇ ଦେଲି ।

ପ୍ରାୟ ପନ୍ଦରଦିନ ପରେ ରେଭେନ୍ସା କଲେଜରୁ ସିଟ୍ ମିଳିବାର ଚିଠି ଆସିଲା । ତାପରେ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରୁ ଇଣ୍ଟରଭିଉ ଦେବାକୁ ଚିଠି ମିଳିଗଲା । ଇଂଜିନିୟରିଂରେ ସିଟ୍ ପାଇବା ପାଇଁ ଅପେକ୍ଷା କରିଥାଏ। ଇଷ୍ଟ ଦେବତା ଗୋପାଳଜୀଉଙ୍କ ଘରଛପର ହେବାର ସମୟ ଆସିଗଲା । ତେଣୁ ଠାକୁରଙ୍କୁ ଆମ କୋଠା ଘରର ପୂର୍ବପଟ କଣଘରେ ଆଣି ରଖାଗଲା। ରଘୁପୁଝାରୀ ଠାକୁରଙ୍କ ସେବା କରୁଥାନ୍ତି। ଗତ ଦଶବର୍ଷ ଧରି ସେ ଠାକୁରଙ୍କ ସେବା କରି ଆସୁଛନ୍ତି । ତାଙ୍କପୂର୍ବରୁ କୋଲର ଗାଆଁର ବୀରପୁଝାରୀ ଠାକୁର ସେବା ଦାୟିତ୍ୱରେ ଥିଲେ। ମାତ୍ର ରଘୁପୁଝାରୀ ମୋତେ ସାତଆଠ ବର୍ଷ ବୟସ ହେବାଦିନରୁ ଠାକୁରଙ୍କ ଦାୟିତ୍ୱରେ ଥାଇ ଅଧିକାଂଶ ଦିନରେ ମୋ ପାଇଁ ଠାକୁରଙ୍କ ପାଖେ ଘିଅଦୀପ ଦିଅନ୍ତି, ତୁଳସୀ ଚଢ଼ାନ୍ତି କିମ୍ବା କନ୍ଦ ଲହୁଣୀ ଭୋଗ କରନ୍ତି। ପ୍ରତିଦିନ ଆଳତୀ ପରେ ଠାକୁରଙ୍କ ପାଖରେ ମୁଁ ଗୀତଗୋବିନ୍ଦ ଗାଏ ।

ସେଦିନ ସନ୍ଧ୍ୟାରେ ଠାକୁରଙ୍କ ଆଳତୀ ସମୟରେ ଘଣ୍ଟ ବଜାଇସାରି ପୁଝାରୀଙ୍କୁ କହିଲି, ଟିକେ ଠାକୁରଙ୍କୁ ପଚାର ମୁଁ କେଉଁ କଲେଜରେ ପଢ଼ିଲେ ଭବିଷ୍ୟତରେ ଏ ପରିବାରର ଉପଯୁକ୍ତ ଦାୟାଦ ଭାବେ ଗଣ୍ୟ ହୋଇ ପାରିବି। ପୁଝାରୀ କହିଲେ, ଏଇ କଥା ? ତୁମେ ଗୋଟାଏ କାମ କର । ଯାହା ପଢ଼ିବାକୁ ତୁମେ ଦରଖାସ୍ତ କରିଚ ସେ ସବୁର ତାଲିକା କରିଆଣ । ଠାକୁରଙ୍କୁ ପଚାରିବା ତହିଁରୁ କେଉଁଟା ଠିକ୍ ? ମୁଁ ଗୋଟାଏ କାଗଜରେ ସବୁ ଲେଖି ନେଇ ପୁଝାରୀଙ୍କୁ ଦେଲି । ସେ କହିଲେ, ଏଥିରେ ତ ଏତେ କଥା ଲେଖିଚ ଠାକୁର କେଉଁଟାକୁ ବାଛିବେ ? ତମେ ଧର୍ମ ଗୁଳା ପକାଅ । ତହିଁରୁ ଯେଉଁଟା ଠିକ୍ ସେଇ ଗୁଳାଟି ସେ ଉଠାଇ ନେବେ। ମୁଁ ସେଇଠି ବସି କାଗଜ ଚିରିବାକୁ ଲାଗିଲି । ପୁଝାରୀ କହିଲେ, ବାବୁ ! ଆଜି କିଛି ପଚାରିବା ନାହିଁ । କାଲି ସକାଳୁ ତୁମେ ଗାଧୋଇ ସାରି ଆସ । ଠାକୁର ଗାଧୋଇ ସଜ ହୋଇ ବସିଥିବେ । ବାଳଭୋଗ ସରିବ । ତାପରେ ଏଇଠି ବସି କାଗଜରେ ଲେଖି ମୋତେ ଦେଇଦେଲେ ମୁଁ ତାଙ୍କୁ ପଚାରିବି ।

ରାତିଟା କେମିତି ପାହିବ, ସେଇ ଚିନ୍ତାରେ ମୁଁ ଥାଏ । କାଲି ସକାଳୁ ପ୍ରଭୁ ଗୋପାଳଜୀଉ ମୋର ଭାଗ୍ୟ ନିର୍ଦ୍ଧାରଣ କରିବେ । ମୁଁ କେଉଁ ପାଠ ପଢ଼ିବି ସେ କହିବେ, ତାପରଦିନ ସକାଳୁ ଉଠି ଦାନ୍ତ ଘସିସାରି ପୁଝାରୀଙ୍କ ସାଙ୍ଗରେ ବାଲିଘାଇକୁ ଗାଧୋଇ ଗଲି । ଗାଧୋଇ ସାରି ଠାକୁର ଘରକୁ ଗଲି । ପୁଝାରୀ ଠାକୁରଙ୍କୁ ଗାଧୋଇ

ଦେଇ ଚିତାକରାଇ ସିଂହାସନରେ ବସାଇଲେ । ବାଳଭୋଗ ଅର୍ପଣ କରିସାରି ମୋତେ କହିଲେ, ଏଥର ତୁମ କଥା ଗୋପାଳିଆକୁ ପଚାରିବା ।

ମୁଁ କାଗଜ ଓ କଲମ ପୂଝାରୀଙ୍କୁ ଦେଲି । ସେ ଠାକୁରଙ୍କୁ ଛୁଆଇଁ ଦେଇ ମୋତେ ଦେଇ କହିଲେ, ଯାହା ସବୁ ପଢ଼ିବା କଥା ଅଲଗା ଅଲଗା କାଗଜରେ ଲେଖି ସବୁତକ ଦିଅ । ମୁଁ କାଗଜ ଚିରି ଛୋଟ ଛୋଟ କରି ତହିଁରେ B.A / B.Sc / B.com. / B.E. / B.V.sc ଲେଖି ପୁଡ଼ା ବାନ୍ଧି ପୂଝାରୀଙ୍କୁ ଦେଲି । ସେ ନେଇ ସବୁତକ ଠାକୁରଙ୍କ ହାତରେ ରଖି ଦେଲେ । କହିଲେ, ଦେଖ୍ ଗୋପାଳିଆ ! ବୁଢ଼ାବାବୁ ତୋ ଆଳତୀ ବେଳେ ଘଣ୍ଟ ବଜାଏ, ତୋ ପାଖେ ଗୀତଗୋବିନ୍ଦ ବୋଲେ, ତୋ ଉପରେ ସେ ଭରସା କରିଚି । ତାର ଭବିଷ୍ୟତ କ'ଣ ହେବ ତୁ କହିବୁ । ଭୁଲ୍ ତୁଲ୍ କରିବୁ ନାହିଁ । ଠିକ୍ କଥା କହିବୁ ।

କହିଲି, ପୂଝାରୀ ! ଠାକୁରଙ୍କୁ ଧମକାଇଲା ପରି କହିବାଟା ଭଲ ନୁହେଁ । ତାଙ୍କୁ ଭକ୍ତିରେ କୁହ । ପୂଝାରୀ କହିଲେ, ହଇଓ ମୁଁ କାହିଁକି ତାକୁ ଖୋସାମତ କରିବି ? ତାର ଏତେ ସେବା କରୁଚି, ତାପାଖେ ଦିନରାତି ପଡ଼ିଛି । ତାର ମହିମା କିଛି ଜାଣିଲି ନାହିଁ । କେତେ ଖୋସାମତି କରିବା ? ଏଣିକି ତପେ ବର ନୋହିଲେ କୋପେ ବର । ତମେ ତାକୁ ଏବେ ଭକ୍ତିରେ ଡାକୁଛ। ସେ ତମ ଭବିଷ୍ୟତ କଥା ଠିକ୍ କହିବ କି ନାହିଁ ଦେଖିବା ।

ମୁଁ ହାତଯୋଡ଼ି ଠାକୁରଙ୍କ ସାମନାରେ ବସିଥାଏ । ପ୍ରାୟ ଅଧଘଣ୍ଟାଏ ବିତିଗଲା । ପୂଝାରୀ ଚୂଲି ଲଗାଇ ରୋଷେଇ ବସାଇ ସାରି ଫେରିଲେ। ଖୁସି ହେଇ ସେ କହିଲେ, ଦେଖ ବାବୁ ଗୋପାଳିଆ ଖଣ୍ଡେ କାଗଜ ତଳେ ପକାଇ ଦେଇଛି । ସେଥିରେ କଅଣ ।ଅଛି ଦେଖ । ସେ ଖଣ୍ଡକ ଆଣି ମୁଣ୍ଡରେ ମାରି ଦେଖିଲି - "B.V.SC. । ମନଟା ଫିକା ପଡ଼ିଗଲା । ଯେଉଁ ପଶୁ ଚିକିତ୍ସା ପାଠ ପଢ଼ିବାକୁ ମୋର ଆଦୌ ସ୍ପୃହା ନାହିଁ; ଗୋପାଳଜୀ ମୋତେ ସେଇଆ ପଢ଼ିବାକୁ ନିର୍ଦ୍ଦେଶ ଦେଲେ ।

ପୂଝାରୀ ପଚାରିଲେ, କ'ଣ ଗୋପାଳିଆ ତୁମକୁ ଠିକ୍ କହିଲା ? କହିଲି, ନାଇଁ, ଏ ପାଠ ପ୍ରତି ମୋର ସେତେ ସ୍ପୃହା ନାହିଁ। ବାପାଙ୍କର ମଧ୍ୟ ଏଥିରେ ଇଚ୍ଛା ନାହିଁ । ଠାକୁର ମୋ ପାଇଁ ସେଇ ବାଟ ଦେଖାଉଛନ୍ତି ।

ପୂଝାରୀ ସବୁତକ କାଗଜ ଏକାଠି କରି ଠାକୁରଙ୍କ ହାତରୁ ଉଠାଇ ଆଣି କହିଲେ, ଆରେ ଗୋପଳିଆ ତୁ ଗୋଟିଏ ଦଗାଦିଆ ଠାକୁର । ତୁ ଏମିତି କ'ଣ ବୁଢ଼ାବାବୁକୁ କହିଲୁ ? ଆରେ ସେ କେତେ ଆଗ୍ରହରେ ତୋତେ ପଚାରିଲା, ତୁ କ'ଣ ତା ଭବିଷ୍ୟତ ଦେଖିପାରୁନୁ ? ଯେଉଁ ପାଠ ପଢ଼ିବାକୁ ତାର ଆଗ୍ରହ ନାହିଁ କି ଘରେ

କାହାର ଆଗ୍ରହ ନାହିଁ, ତୁ ସେଇ ପାଠ ପଢ଼ିବାକୁ କହୁଛୁ ? ଠିକ୍ ଅଛି ତୁ ଭାବିଚିନ୍ତି ଆଉ ଥରେ କହ ।

ପୁଣି ଥରେ ସବୁତକ କାଗଜ ଏକାଠି କରି ଠାକୁରଙ୍କ ହାତରେ ଦେଇ ପୁଝାରୀ କବାଟ ବନ୍ଦ କରି ଆଣିଲେ । କହିଲେ, ବାବୁ ତମେ ଆଉ ଘଣ୍ଟାଏ ଛାଡ଼ି ଆସ । ମୁଁ ରୋଷେଇ ସାରିଦିଏଁ । ଭୋଗ ଲଗାଇଲା ବେଳକୁ ତମେ ଆସିବ । ଗୋପାଳିଆ ନିଶ୍ଚୟ ଠିକ୍ ଭାବେ ବିଚାର କରି ସେତେବେଳେକୁ କହିବ ।

ମୁଁ ଆସି ଆରଘରେ ବସିଲି । ମନ ଆଉ କେଉଁଠି ନଥାଏ । ଠାକୁର ଯାହା ନିର୍ଦ୍ଦେଶ ଦେଲେ ତାହା କ'ଣ ଭୁଲ୍ ? ପୁଣି ଥରେ ତାଙ୍କ ହାତରେ କାଗଜ ଦେବା ପରେ ଯାହା ସେ କହିବେ । ଯଦି ଅଲଗା କିଛି ହୋଇଥାଏ ତାହେଲେ ଆଗକଥା ଠିକ୍ କି ପଛ କଥା ଠିକ୍ କିପରି ଜାଣିବା ? ହୁଏତ ପୁଣିଥରେ ପଚାରିବାକୁ ହେବ । ହେଲେ ତୃତୀୟ ଥର ଯେ, ଆଉ କେଉଁ କାଗଜ ନ ଉଠିବ ସେଥିରେ କେଉଁ ଭରସା ଅଛି ? ଏମିତି ନାନା କଥା ମନକୁ ଆସୁଥାଏ ।। ତେବେ ଆମର ଇଷ୍ଟ ଦେବତା ପ୍ରଭୁ ଗୋପାଳଜୀଙ୍କ ଆର୍ଶୀବାଦ ନେଇ ଜୀବନ ପଥରେ ଆଗେଇ ବାକୁ ମୋର ପ୍ରବଳ ଇଚ୍ଛା ଥାଏ । ରୋଷେଇ ସାରି ଦେଇ ପୁଝାରୀ ଡାକିଲେ ବାବୁ! ଆସ ଦେଖିବା ମୁଁ ଯାଇ ପ୍ରଭୁ ଗୋପାଳଜୀଉଙ୍କୁ ପ୍ରଣାମ କରି ହାତ ଯୋଡ଼ି ବସିଲି । ପୁଝାରୀ ଠାକୁରଙ୍କ ପାଖକୁ ଯାଇ କହିଲେ, ଆରେ ଏ ଠାକୁର ତ ଏଥରକ କିଛି କାଗଜ ପକେଇ ନାହାନ୍ତି। ଠିକ୍ ଅଛି; ଏବେ ଅନ୍ନ ଭୋଗ କରିବା । ଆଜି ଥାଉ, କାଲି ପୁଣି ପଚାରିବା। ଏହା କହି ପୁଝାରୀ ଠାକୁରଙ୍କ ବେକରୁ ଫୁଲମାଳ ଓ ହାତରୁ ବଂଶୀ କାଢ଼ିବା ପାଇଁ ଫୁଲମାଳଟି ଧରିବା ମାତ୍ରେ ଗୋଟିଏ କାଗଜ ପୁଡ଼ା ଖସିପଡ଼ିଲା। ହସିଦେଇ ସେ କହିଲେ, ଦେଖବାବୁ ଆଉ ସବୁ କାଗଜ ଗୋପାଳିଆ ରଖିଦେଇ ଏ ଗୋଟିକ ଖାସାଇ ଦେଲା । ପଢ଼ିଲ ଏଥିରେ କ'ଣ ଅଛି ! ଏହା କହି ସେ କାଗଜ ଆଣି ମୋ ହାତରେ ଦେଲେ ।

କେଉଁ ବାଟରେ ମୋ ଜୀବନଟା ଗତି କରିବ ପ୍ରଭୁ ଗୋପାଳ ସେହି ସୂଚନା ଦେବେ ବୋଲି ମୋ ମନରେ ଭୟ ଆସି ଯାଇଥାଏ । ଥର ଥର ହାତରେ କାଗଜଟି ଖୋଇ ଦେଖିଲି ସେଇ B.V.SC ଲେଖାଥିବା କାଗଜ। କହିଲି, ପୁଝାରୀ ଏଥିରେ ପୁଣି ସେଇ କଥା ବାହାରିଲା।

ପୁଝାରୀ ଗମ୍ଭୀର ହୋଇଯାଇ କହିଲେ ବାବୁ ! ଗୋପାଳିଆ ଦୁଇଥର ଯାହା କହିଲାଣି ସେଇଟା ତାର ଇଚ୍ଛା । ତମର ଇଚ୍ଛା ଥାଉ ନ ଥାଉ, ଏଇଟା ତାର

ନିର୍ଦ୍ଦେଶ । ଆଉ ତାକୁ ଏ ବିଷୟରେ କିଛି ପଚାରିବାର ନାହିଁ । ଏଣିକି ଯାହା କରିବ ଭାବିଚିନ୍ତି କର । ସେଦିନ ରାତିରେ ମୁଁ ଭଲକରି ଶୋଇ ପାରିଲି ନାହିଁ । ପଶୁଚିକିତ୍ସା ମହାବିଦ୍ୟାଳୟରେ ମୋତେ ପଢ଼ାଇବାକୁ ବାପାଙ୍କର ଇଚ୍ଛା ନାହିଁ । ସେ ଚାହାନ୍ତି, ତାଙ୍କ ଜେଜେ ଓ ଠାକୁର ଜେଜେଙ୍କ (ମୋ ଅଣଜେଜେ ) ପରି ମୁଁ ଓକିଲାତି କରିବି। ମୁକ୍ତିଆରଙ୍କ ବଂଶରେ ପୁଣି ସେଇ ପେଶାକୁ ସମ୍ବଳ କରି ମୋ ଭାଗ୍ୟରେ ଥିଲେ ମୁଁ ଜଣେ ବିଚାରକ ଆସନ ମଧ୍ୟ ଅଳଙ୍କୃତ କରିପାରିବା ଥିଲା ବାପାଙ୍କର ସ୍ୱପ୍ନ । ମାତ୍ର ଇଷ୍ଟଦେବତା ଗୋପାଳଜୀଉଙ୍କ ନିର୍ଦ୍ଦେଶ ଅନ୍ୟରକମ। କଅଣ କରିବି ଚିନ୍ତା କରିପାରୁ ନଥାଏ। ବି.ଏ. ପଢ଼ିବାକୁ ଫର୍ମ ପୂରଣ କରିନାହିଁ। ଯାହା କରାଯିବ ବି.ଏସ୍ ସି ପରେ ଓକିଲାତି ପଢ଼ିବା କଥା। ଚିନ୍ତା କରିବାକୁ ହେବ। ତେବେ ପଶୁଚିକିତ୍ସା ମହାବିଦ୍ୟାଳୟରେ ନାମ ଲେଖାଇବାକୁ ସାକ୍ଷାତ୍କାର ପାଇଁ ଆଉ ମାତ୍ର ଦୁଇଟା ଦିନ ବାକୀ ଅଛି । ଭାବିଲି; ପ୍ରଭୁ ଗୋପାଳଙ୍କର ନିର୍ଦ୍ଦେଶ ମାନିବାକୁ ହେବ ।

ସାକ୍ଷାତ୍କାର ଦିନ ଭୋର ସକାଳୁ ନିତ୍ୟକର୍ମ ସାରି ଠାକୁରଙ୍କୁ ପ୍ରଣାମ କରି କଟକ ବାହାରିଗଲି । ମଙ୍ଗଳାବାଗ ଠାରେ ଥିବା ପଶୁଚିକିତ୍ସା ନିର୍ଦ୍ଦେଶାଳୟ ହତା ଭିତରେ ଅସ୍ଥାୟୀ ଭାବେ ତିଆରି ହୋଇଥିବା ମହାବିଦ୍ୟାଳୟ ଷ୍ଟାଫ କମନ୍ ରୁମ୍‌ରେ ସାକ୍ଷାତ୍କାର ଲାଗି ବ୍ୟବସ୍ଥା ହୋଇଥାଏ । ଦିନ ଏଗାରଟା ଠାରୁ ପାଞ୍ଚଟା ପର୍ଯ୍ୟନ୍ତ ସାକ୍ଷାତ୍କାର ଚାଲିଲା । ତାପରଦିନ ଦଶଟା ସୁଦ୍ଧା ଫଳାଫଳ ପ୍ରକାଶ ପାଇବ ବୋଲି ସୂଚନା ଦିଆଯାଇଥାଏ । ସେଦିନ ସାକ୍ଷାତକାର ସାରି ମୁଁ ଆପିଲା ବସାରେ ରହିଲି । ପରଦିନ ଦଶଟା ସୁଦ୍ଧା ପଶୁଚିକିତ୍ସା ।ମହାବିଦ୍ୟାଳୟକୁ ଯାଇ ଦେଖେତ ମୋ ନାଆଁଟା ଚତୁର୍ଥ ସ୍ଥାନରେ ଅଛି । କଲେଜ ଅଫିସରୁ ବୁଝିଲି ଯେ, ପ୍ରଥମ ପାଞ୍ଚଜଣଙ୍କୁ ଛାତ୍ରବୃତ୍ତି ମିଳିବ। ସେମାନଙ୍କର କଲେଜ ଦରମା ଛାଡ଼ ହେବ । ପ୍ରତିବର୍ଷ ବିଶ୍ୱବିଦ୍ୟାଳୟ ପରୀକ୍ଷା ପରେ ପରୀକ୍ଷା ଫଳ ଅନୁସାରେ ପ୍ରଥମ ପାଞ୍ଚଜଣଙ୍କୁ ବୃତ୍ତି ଦିଆଯିବ । ତେଣୁ ଏ ବର୍ଷସାରା ମୋତେ ବୃତ୍ତି ମିଳିବ ଓ ତାପରେ ବାର୍ଷିକ ପରୀକ୍ଷା ଫଳ ଉପରେ ଆସନ୍ତା ବର୍ଷ କଥାଟା ନିର୍ଭର କରିବ । କଲେଜ ଅଫିସରେ ବଡ଼ବାବୁଙ୍କୁ ପଚାରିଲି, ଯଦି ଆସନ୍ତା ବର୍ଷ ପ୍ରଥମ ପାଞ୍ଚଜଣଙ୍କ ଭିତରେ ରହି ନପାରିଲି ତାହାରେ ଆସନ୍ତା ବର୍ଷ ପୂରା ଖର୍ଚ୍ଚ କ'ଣ ନିଜ ହାତରୁ ଦେବାକୁ ହେବ ? ସେ କହିଲେ,ତୁମେ କଲେଜରେ ନାମ ଲେଖାଇ ସାରିବା ପରେ ଲୋନ୍ ଷ୍ଟାଇପେଣ୍ଡ ପାଇବାକୁ ଦରଖାସ୍ତ କରିବ। ଯଦି ଛାତ୍ର ବୃତ୍ତି ନ ମିଳେ ତେବେ ଲୋନ୍ ଷ୍ଟାଇପେଣ୍ଡ ପାଇ ପାଠପଢ଼ା ଖର୍ଚ୍ଚ ଚଳିଯିବ ।

ଘରକୁ ଫେରି ଆସିଲି। ମାଆ ମୋତେ ଗୋଟିଏ ଟେଲିଗ୍ରାମ ବଢ଼ାଇ ଦେଇ କହିଲା, ପୋଷ୍ଟ ପିଅନ ଏ ଖଣ୍ଡକ ଦେଇ ଯାଇଚି । ଖୋଲି ଦେଖିଲି, ପିଲାନୀ

ଇଞ୍ଜିନିୟରିଂ କଲେଜରୁ ଆସିଛି । Immediately come with five hundred Rupees. ଟେଲିଗ୍ରାମଟା ପାଇ ମୁଁ ଡରିଗଲି । ବାପା ଶୁଣିଲେ କାହା ପାଖରୁ ଟଙ୍କା ଆଣି ଜମି ବିକ୍ରୀ କରିବାର ମସୁଧା କରିବେ । ଏପରି ତରବରିଆ କାମକୁ ଏତିକି ଟଙ୍କା ଲାଗି ଗୋଟିଏ ଏକର ଜମି ବିକିବାକୁ ହେବ । ଇଞ୍ଜିନିୟରିଂ ଶିକ୍ଷା ସରିଲା ବେଳକୁ ହୁଏତ ଆମର ସବୁତକ ଜମି ବିକ୍ରୀ ସରିଥିବ । କାରଣ ବାପା କହିଛନ୍ତି ସବୁ ଜମିବାଡ଼ି ବିକିଦେଇ ପୁଅକୁ ପାଠ ପଢ଼େଇବି । ଟେଲିଗ୍ରାମଟା ଧରି ସିଧା ଠାକୁର ଘରକୁ ଗଲି । ଠାକୁରଙ୍କ ଆଗରେ ସେ କାଗଜ ଖଣ୍ଡକ ଚିରିଦେଇ ପ୍ରଣାମ କରି କହିଲି, ତୁମେ ମୋର ମଙ୍ଗଳ ପାଇଁ ଯାହା ବ୍ୟବସ୍ଥା କରିଛ ମୋତେ ସେଇ ବାଟରେ ଯିବାକୁ ଦିଅ । ମୋ ଦ୍ୱାରା ଏ ପରିବାରର ଉନ୍ନତି ହେଉ ଓ ତୁମ ଇଚ୍ଛାମତେ ସମାଜ ପାଇଁ ମଙ୍ଗଳଜନକ କାର୍ଯ୍ୟ ହେଉ ଏହାହିଁ ମୋର ପ୍ରାର୍ଥନା ।

ଏବେ ବୁଝିଲି, ଠାକୁର ମୋତେ ଉଚିତ୍ ବାଟ ବତେଇଛନ୍ତି । ତାଙ୍କରି ନିର୍ଦ୍ଦେଶରେ ସମଗ୍ର ପୃଥିବୀ ଚଳୁଛି । ତାଙ୍କର ଇଚ୍ଛା ନହେଲେ ଗଛରୁ ପତ୍ରଟାଏ ଝଡ଼େ ନାହିଁ । ତେଣୁ କେବଳ ମୋତେ ସେ ନିର୍ଦ୍ଦେଶ ଦେଇନାହାନ୍ତି । ମୋ ପାଇଁ ବୃତ୍ତି ଖଞ୍ଜି ଦେଇଛନ୍ତି । ବାପାଙ୍କ ଉପରେ ବୋଝ ନହୋଇ ମୋତେ ତାଙ୍କ ନିର୍ଦ୍ଦେଶିତ ପଥରେ ଚାଲିବାକୁ ଦେଇଛନ୍ତି ।

ଆଉ କିଛି ଚିନ୍ତା ନକରି ମୁଁ ପଶୁଚିକିତ୍ସା ମହାବିଦ୍ୟାଳୟରେ ଯାଇ ନାମ ଲେଖାଇଲି । ତିନିମାସ ପରେ ମୋତେ ଛାତ୍ରବୃତ୍ତି ଟଙ୍କା ମିଳିଲା । ମୁଁ ଆପିଲାବସା ଛାଡ଼ି ଥୋରିଆ ସାହିରେ ଥିବା ପଶୁଚିକିତ୍ସା ମହାବିଦ୍ୟାଳୟର ହଷ୍ଟେଲରେ ଯାଇ ରହିଲି । ସେତେବେଳେ ଭୁବନେଶ୍ୱରରେ ପଶୁଚିକିତ୍ସା ମହାବିଦ୍ୟାଳୟର ତିଆରି କାର୍ଯ୍ୟ ଚାଲିଥାଏ। କଟକଠାରେ ଅସ୍ଥାୟୀଭାବେ ପାଠପଢ଼ା ହେଉଥାଏ । ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜରେ ଆମର ଶରୀର ବିଜ୍ଞାନ କ୍ଲାସ୍ ଚାଲିଥାଏ । ସେହି କଲେଜର ବାୟୋକେମିଷ୍ଟ୍ରି ଅଧ୍ୟାପକ, ନ୍ୟୁରୋଲଜି ଅଧ୍ୟାପକ ଓ ଶରୀରବିଜ୍ଞାନ ଅଧ୍ୟାପକମାନେ ଆମକୁ ପଢ଼ାଉଥାନ୍ତି । ସେ ବର୍ଷ ସର୍ବଭାରତୀୟ ଯୁବଉତ୍ସବ ଅନୁଷ୍ଠିତ ହେଲା । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ନୃତ୍ୟ, ଗୀତ, ଅଭିନୟ ଆଦିରେ ଭାଗ ନେବା ପାଇଁ ସାତ ଆଠ ଜଣ ଛାତ୍ର ବଛା ହେଲେ । କଲେଜରେ ନୂଆ କରି ଏକ କ୍ରିକେଟ୍ ଟିମ୍ ସୃଷ୍ଟି ହେଲା । ମୋର ଦ୍ୱିତୀୟ ବାର୍ଷିକ ପଶୁପାଳନ ବିଜ୍ଞାନ ଶ୍ରେଣୀ ବେଳକୁ ଛାତ୍ରସଂସଦ ଗଠିତ ହୋଇ ଏହାର ପ୍ରଥମ ନିର୍ବାଚନ ହେଲା । ମୁଁ ସହକାରୀ ସଂପାଦକ ଭାବେ ନିର୍ବାଚିତ ହେଲି ।

ସେତେବେଳେ ପଶୁଚିକିତ୍ସକ ମାନଙ୍କ ଦରମା ମାସକୁ ମାତ୍ର ୧୩୫ ଟଙ୍କା

ଥାଏ । ହେଲେ, ଡାକ୍ତର ଓ ଇଞ୍ଜିନିୟର ମାନଙ୍କ ଦରମା ୨୦୦ ଟଙ୍କାରୁ ଆରମ୍ଭ ହେଉଥାଏ । ବେଳେ ବେଳେ ଏହି ପାଠ ପାଇଁ ମୋର ବାପାଙ୍କର ଅଶାନ୍ତି ହେବା କଥା ମନେ ପଡ଼େ । ମୁଁ ସାଙ୍ଗମାନଙ୍କୁ କହେ, ଏହି କଲେଜରୁ ପାଶ୍ କରି ମେଡ଼ିକାଲ ଡାକ୍ତରଙ୍କ ଠାରୁ କମ୍ ଦରମା ପାଇ ଚାକିରୀ କରିବା ଆମ ପକ୍ଷେ ଅପମାନ ଜନକ ବିଷୟ, କାରଣ, ଆଇ.ଏସ୍.ସି. ପରେ ଆମେ ଏ ପାଠ ପଢୁଛେ । ଆଇ.ଏସ୍.ସି. ପରେ ଆମ ସହପାଠୀମାନେ ମେଡ଼ିକାଲ ଓ ଇଞ୍ଜିନିୟରିଂ ପଢୁଛନ୍ତି । ସେମାନେ ଯେତିକି ବର୍ଷ ପଢୁଛନ୍ତି, ଆମେ ମଧ୍ୟ ସେତିକି ବର୍ଷ ପଢୁଛୁ । ଏବେ ମେଡ଼ିକାଲ କଲେଜର ଅଧ୍ୟାପକମାନେ ମଧ୍ୟ ଆମକୁ ପଢ଼ାଉଛନ୍ତି । ହେଲେ, ଆମେ ଏ ପାଠ୍ୟ ଶେଷ କରି ଡାକ୍ତର ବା ଇଞ୍ଜିନିୟରଙ୍କଠାରୁ କମ୍ ଦରମା ପାଇବା ଖୁବ୍ ଅପମାନଜନକ। ତେଣୁ ମୁଁ ଯଥାଶୀଘ୍ର ଏ ପାଠ ଛାଡ଼ି ଅନ୍ୟ ଦିଗରେ ଚେଷ୍ଟା କରିବି ।

ଦିନେ ସନ୍ଧ୍ୟାରେ ଆମ କୋଠରୀର ବନ୍ଧୁ ମାନଙ୍କୁ ଏଇ କଥା କହିଲାବେଳେ ଆମ ଉପର ଶ୍ରେଣୀର ଦୁଇଜଣ ଛାତ୍ର ଆସି ମୋ କଥା ଶୁଣିଲେ । ସେମାନେ କହିଲେ, ଗୁରୁ ଯାହା କହୁଛି ଠିକ୍ କଥା । ସେ ଏକା କାହିଁକି କଲେଜ ଛାଡ଼ିବ, ଆମେ ସମସ୍ତେ କାହିଁକି ନଛାଡ଼ି ପାରିବା ? ଏପରି ଆଲୋଚନା ଅନ୍ୟମାନେ ଶୁଣିବା ପରେ ଆମେ ଛାତ୍ର ସଂସଦର ଏକ ସଭା ଡାକିଲୁ । ଆମର ନିଷ୍ପତ୍ତି ହେଲା ଯେ, ଏ ବିଷୟ ଆମେ କଲେଜର ଅଧ୍ୟକ୍ଷଙ୍କୁ ଜଣାଇ ବିଭାଗୀୟ ଡାକ୍ତରମାନଙ୍କର ଦରମା ବଢ଼ାଇବା ପାଇଁ ସରକାରଙ୍କୁ ଲେଖିବାକୁ କହିବା । ଧାର୍ଯ୍ୟ ସମୟ ଭିତରେ ସରକାର ନ ଶୁଣିଲେ ଆମେ ସମସ୍ତେ କଲେଜ ଛାଡ଼ିବା ପାଇଁ ଅଧ୍ୟକ୍ଷ ମହାଶୟଙ୍କୁ ଦରଖାସ୍ତ ଦେବା ।

ଛାତ୍ରସଂସଦ ପକ୍ଷରୁ ସଭାପତି ଶରତ ସାହୁ, ସମ୍ପାଦକ ଜୟରାମ ଦାସ୍ ଓ ମୁଁ (ସହ ସମ୍ପାଦକ) ଯାଇ ଅଧ୍ୟକ୍ଷଙ୍କୁ ଭେଟିଲୁ । ସେ ଆମ କଥା ଶୁଣି କହିଲେ, ତୁମର ଦାବୀ ଯଥାର୍ଥ । ମାତ୍ର ଛାତ୍ରମାନେ ବିଭାଗୀୟ କର୍ମଚାରୀଙ୍କ ଦରମା ବଢ଼ାଇବା କଥା କହିବା ଅସଙ୍ଗତ ମନେ ହେଉଛି । ଆମେ କହିଲୁ, କାଲି ସକାଳେ ଆମେ ସେଇ ବିଭାଗରେ କାର୍ଯ୍ୟ କରିବୁ । ଥରେ ଯନ୍ତାରେ ପଶିବା ପରେ ଆଉ ବାହାରିବା ସମ୍ଭବ ହେବ ନାହିଁ । ବରଂ ଆମର ବର୍ଷେ ବା ଦୁଇ ବର୍ଷ ଏହି ମହାବିଦ୍ୟାଳୟରେ ନଷ୍ଟ କରି ଦେବା ପରେ ଅନ୍ୟ ବାଟ ଖୋଜି ଜୀବନର ଗତିପଥ ବଦଳାଇ ହେବ । ଅଧ୍ୟକ୍ଷ ମହାଶୟ ସାଙ୍ଗେ ସାଙ୍ଗେ ବିଭାଗୀୟ ନିର୍ଦ୍ଦେଶକ, ସଚିବ ଓ ମନ୍ତ୍ରୀଙ୍କୁ ଏକଥା ଜଣାଇଦେଲେ । ମାତ୍ର ଫଳ କିଛି ହେଲାନାହିଁ ।

ଆଠଦିନ ଛାଡ଼ି ଆମେ ସମସ୍ତେ କଲେଜ ଛାଡ଼ିବା ପାଇଁ ଅଧ୍ୟକ୍ଷଙ୍କୁ ଦରଖାସ୍ତ ଦେଲୁ । ପୁଣି ଆଠଦିନ ଛାଡ଼ି ସମସ୍ତେ ଶ୍ରେଣୀ ବର୍ଜନ କଲୁ । ସେତେବେଳେ

ପଶୁପାଳନ ବିଭାଗଟା ବିକାଶ ବିଭାଗ (Development) ଅଧୀନରେ ଥାଏ । ବାବୁ ଶ୍ରୀ ରାଧାନାଥ ରଥ ଓଡ଼ିଶାର ବିକାଶ ମନ୍ତ୍ରୀ ଥାଆନ୍ତି । ପନ୍ଦର ଦିନ ପରେ ମନ୍ତ୍ରୀ ଶ୍ରୀ ରଥ ଆମକୁ ଡକାଇ ପଠାଇଲେ । ସେ ନିମଚୌଢ଼ିର ଏକ ଭଡ଼ା ଘରେ ରହୁଥାନ୍ତି । ଛାତ୍ରସଂସଦ ସଭାପତି ଶରତ ସାହୁ, ସଂପାଦକ ଜୟରାମ ଦାସ, ଉପସଭାପତି ହୃଷୀ ମହାପାତ୍ର ଓ ମୁଁ ଯାଇ ତାଙ୍କୁ ଭେଟିଲୁ ।

ଆମକୁ ଦେଖି ସେ ରାଗିଯାଇ ନାଲି ପଡ଼ିଗଲେ। ବାପାମାଆଙ୍କ ପଇସା ଶ୍ରାଦ୍ଧ କରି କଲେଜ ନଯାଇ କାହିଁକି ବୁଲୁଚ ବୋଲି ଆମକୁ ଦୁଷ୍ଟ, କୁଳାଙ୍ଗାର, ପାଜି, ସୈତାନ କରି ଯାହା ପାଟିକୁ ଆସିଲା ବକିଗଲେ। ତାଙ୍କର ରାଗ ଦେଖି ଆମ ପାଟିରୁ କଥା ବାହାରୁ ନଥାଏ । ମୁଁ ସାହସବାନ୍ଧି କହିଲି ମେଡ଼ିକାଲ ବା ଇଂଜିନିୟରିଂ ପଢ଼ିବାକୁ ଆଇ.ଏସ୍.ସି ପରେ ଯେତିକି ପଢ଼ିବାକୁ ପଡୁଛି ଆମେ ମଧ୍ୟ ସେତିକି ପଢୁଛୁ । ତେଣୁ ଡାକ୍ତର ବା ଇଂଜିନିୟରମାନଙ୍କ ସହିତ ସମାନ ହାରରେ ଦରମା ନପାଇଲେ ଏତେଗୁଡ଼ାଏ ବର୍ଷ ଏ କଲେଜରେ ନପଢ଼ି ବରଂ ଏତିକିରୁ ଏ ପାଠ ଛାଡ଼ି ଅନ୍ୟ ପାଠ୍ୟକ୍ରମରେ ନାମ ଲେଖାଇଲେ ଭବିଷ୍ୟତ ଜୀବନରେ ଆଉ ଅନୁତାପ କରିବାକୁ ହେବ ନାହିଁ । ତାପରେ ଅନ୍ୟମାନେ ମଧ୍ୟ ନିଜ ନିଜର ଭବିଷ୍ୟତ ବିଷୟରେ କହିଲେ । ମନ୍ତ୍ରୀ ମହୋଦୟ ଆମ କଥା ଶୁଣି ଟିକେ ଚିନ୍ତା କଲାଭଳି ଗୁମ୍ ରହିଲେ । ତାପରେ କହିଲେ, ଠିକ୍ ଅଛି ତୁମେମାନେ କାଲିଠାରୁ କଲେଜରେ ଯୋଗଦିଅ ତୁମକଥା ମୁଁ ବୁଝିବି ।

ଆମେ ହଷ୍ଟେଲକୁ ଫେରିବା ପରେ ସନ୍ଧ୍ୟାରେ ସବୁ ଛାତ୍ର ଏକତ୍ରିତ ହୋଇ ଆଲୋଚନା କଲେ । କଥା ହେଲା, ଆମେ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ସାରି ଯାହା କିଛି ନିଷ୍ପତ୍ତି ନେବା । ଦୁଇ ଦିନ ଭିତରେ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କୁ ଭେଟିଲୁ। ମୋ ଭିଣୋଇ ଗୌରୀଶ୍ୟାମ ନାୟକ ବେଳେବେଳେ ଟଙ୍କା ଆଣିବା ପାଇଁ ମୋତେ କଟକର ତତ୍କାଳୀନ ବିଧାୟକ ବିରେନ୍ ମିତ୍ରଙ୍କ ପାଖକୁ ପଠାଉଥିଲେ । ମୁଁ ତାଙ୍କ ପାଖକୁ ଯାଇ ସବୁ କଥା କହି ମୁଖ୍ୟମନ୍ତ୍ରୀଙ୍କ ସହିତ ଆମକୁ ଭେଟାଇଦେବାକୁ ଅନୁରୋଧ କରିଥିଲି। ବିରେନ୍ ବାବୁ ସବୁକଥା ଶୁଣି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଆମକୁ ଡକାଇଲେ ଓ ଏହି ଆଲୋଚନା ବେଳେ ବୀରେନ୍ ମିତ୍ର ଆମ ସପକ୍ଷରେ ମଧ୍ୟ ମୁଖ୍ୟମନ୍ତ୍ରୀଙ୍କୁ କହିଲେ । ଶେଷରେ ବୀରେନ୍ ବାବୁଙ୍କଠୁ ବୁଝିଲୁ ଯେ, ମୁଖ୍ୟମନ୍ତ୍ରୀ ନିଶ୍ଚୟ ଏ ଦିଗରେ କିଛି କରିବେ। ତେଣୁ ଆଉ ସମୟ ନଷ୍ଟ ନକରି କଲେଜରେ ଯୋଗ ଦେବା ଉଚିତ ହେବ । ତାହାହିଁ ହେଲା। ପରବର୍ତ୍ତୀ ବିଧାନସଭା ଅଧିବେଶନରେ ପଶୁଚିକିତ୍ସକମାନଙ୍କୁ ସବ୍‌ଡେପୁଟୀ ପାହ୍ୟାର ଦରମା ଦିଆଯିବାର ବିଲ୍

ପାଶ୍ ହେଲା । ଏ ଖବର ପାଇ ମହାବିଦ୍ୟାଳୟର ଛାତ୍ରମାନଙ୍କ ଭିତରେ ଆନନ୍ଦର ଲହରୀ ଖେଳିଗଲା। ମାତ୍ର ଦୁଇବର୍ଷର ପ୍ରାୟ ନବେ ଜଣ ଛାତ୍ରଙ୍କର ଯୁକ୍ତିଯୁକ୍ତ ନିଷ୍ପତ୍ତି ଯୋଗୁଁ ରାଜ୍ୟ ସରକାର ଏହାର ପ୍ରାସଙ୍ଗିକତା ଉପଲବ୍ଧି କରି ଉଚିତ୍ ପଦକ୍ଷେପ ନେଲେ।

ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଆମକୁ ପାରାସାଇଟୋଲୋଜି ପଢ଼ାଉଥିବା ଡଃ କୃଷ୍ଣମୋହନ ଦାସ ଉଚ୍ଚଶିକ୍ଷା ପାଇଁ ଆମେରିକା ଗଲେ । ସେ ଥିଲେ ମୋର ଦାଦା ଝିଅ ଭଉଣୀର ସ୍ୱାମୀଙ୍କ ସହପାଠୀ । ତେଣୁ ବେଳେ ବେଳେ ମୋତେ ସେ ଥଟ୍ଟା କରୁଥିଲେ । ସେ କଟକ ଛାଡ଼ିବା ପୂର୍ବରୁ ଆଉ ତାଙ୍କ ସାଙ୍ଗେ ଦେଖା ହେଲା ନାହିଁ । ଅବଶ୍ୟ ପରବର୍ତ୍ତୀ ସମୟରେ ଯେତେବେଳେ ମୁଁ ଯାଇ ନ୍ୟୁୟର୍କ ବିମାନ ବନ୍ଦରରେ ପହଞ୍ଚିଲି, ଆମେରିକାରେ ପ୍ରଥମ ଦିନଟି ତାଙ୍କରି ଘରେ ମୁଁ କଟାଇଥିଲି । ସେ ଆମେରିକାରେ ପହଞ୍ଚିବା ପରେ ଆମ କଲେଜର ଅଧ୍ୟାପକ ଡଃ ଭାଗବତ ପଣ୍ଡା ମେରିଲାଣ୍ଡ ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ପାଇଁ ଆମେରିକା ଗଲେ । ଏମାନଙ୍କର ଆମେରିକା ଯିବା ଦେଖି ମୁଁ ଭାବୁଥିଲି ଇଷ୍ଟ ଦେବତା ଗୋପାଳଜୀଉ ହୁଏତ ଏହିଭଳି ଆମେରିକାରେ ମୋ ଉଚ୍ଚଶିକ୍ଷା ପାଇବାର ବ୍ୟବସ୍ଥା ରଖିଥାଇ ପାରନ୍ତି ।

ତଳ ସାହିର ଗୋବିନ୍ଦ ଜେଜେ କଲିକତାରେ ଚାକିରୀ କରୁଥିଲେ । ତାଙ୍କ ପୁଅର ନାଁ ସୁର । ସେ ମଧ୍ୟ ତାଙ୍କ ବାପାଙ୍କ ସାଙ୍ଗେ କଲିକତା ଯାଇ ସେଇଠି ଚାକିରୀ କଲେ । ଗୋବିନ୍ଦ ଜେଜେଙ୍କ ମୃତ୍ୟୁପରେ ସୁର ଦାଦା କଲିକତାରେ ରହିଲେ । ଘରେ କେବଳ ମାଆବୁଢ଼ୀ । ଗୋବିନ୍ଦ ଜେଜେଙ୍କ ତଳ ଭାଇର ପୁଅ ରସଲକୋଣ୍ଡାରେ ଚାକିରୀ କଲାବେଳେ ଭଲ ଝିଅଟିଏ ଠିକ୍ କରି ଚିଠି ଦେଲେ । ସୁରବୋଉ କଲିକତାକୁ ଟେଲିଗ୍ରାମ କରି ପୁଅକୁ ଡକାଇ ପଠାଇଲା । ରସଲକୋଣ୍ଡା ଯାଇ ଝିଅଟିକୁ ବାହା ହୋଇ ସୁର ଦାଦା ଗାଆଁକୁ ଫେରିଲେ । ସେତେବେଳକୁ ମୁଁ ମାଟ୍ରିକ ପଢୁଥାଏ । ବିବାହ ପରେ ସେ ଗାଆଁରେ ରହିଲେ । ମାତ୍ର ରୋଜଗାର ବିନା ସେ ଘରେ ବସି ରହିଲେ । ମାଆ ବୁଢ଼ୀ ପୁଣି ବାଧ କରି ପୁଅକୁ କଲିକତା ପଠାଇଲା । ଚାକିରୀ କରି ଟଙ୍କା ନ ପଠାଇଲେ ବୋହୂଟି ଚଳିବ କେମିତି ? ସୁର ଦାଦା କଲିକତା ଚାଲିଗଲେ । ମାତ୍ର ଟଙ୍କା ପଠାଇବାକୁ ଭୁଲିଗଲେ । ମାଆବୁଢ଼ୀ ଓ ନୂଆବୋହୂ ଦୁହେଁ ଖୁବ୍ ଅଭାବରେ ରହନ୍ତି । ସୁରିଆ ବୋଉମା ମୋ ସାଙ୍ଗରେ ତୁଳସୀ ବସିଥାଏ । ଇତି ମଧ୍ୟରେ ଅଭାବ ଅସୁବିଧାରେ ୨/୩ ବର୍ଷ ଏମିତି କଟିଗଲା । ମୁଁ ମାଟ୍ରିକ ପାଶ୍ କରି କଲେଜରେ ପଢ଼ିଲି । ମୁଁ ଗାଆଁକୁ ଗଲେ ବୁଢ଼ୀ ମୋ ସାଙ୍ଗରେ ଲଗାଏ, ମୋ ବୋହୂକୁ ଚାକିରୀ କରାଇ ଦେ, ସେ ତାର ପେଟ ପାଳୁ । ପଶୁ ଚିକିତ୍ସା କଲେଜରେ ପଢ଼ିଲା ବେଳେ ଶୁଣିଲି ଯେ, ଏ ବିଭାଗକୁ ଔଷଧ ବିକ୍ରୀ କରିବାକୁ ଯେଉଁ ସବୁ

କମ୍ପାନୀ ଅଛନ୍ତି ତନ୍ମଧ୍ୟରୁ କୃଷ୍ଣପ୍ରିୟା ରଥ ବୋଲି ଜଣେ ଔଷଧ ଯୋଗାଣକାରୀଙ୍କର ଗୋଟିଏ ଅମ୍ବର ଚରଖା ତାଲିମ କେନ୍ଦ୍ର ଅଛି । ସେ କଥା ଶୁଣି ଦିନେ ଭୁବନେଶ୍ୱର ଯାଇ କେଦାରଗୌରୀଠାରେ କୃଷ୍ଣପ୍ରିୟା ରଥଙ୍କ ଅମ୍ବର ଚରଖା ତାଲିମ କେନ୍ଦ୍ରରେ ପହଞ୍ଚିଲି । ସେ ମୋତେ ସେଠାକୁ ଯିବାର କାରଣ ପଚାରିଲେ । କହିଲି, ମୋର ଗୋଟିଏ ଖୁଡ଼ୀ ବହୁତ ଅଭାବରେ ଅଛି । ଆପଣଙ୍କ ତାଲିମ କେନ୍ଦ୍ରରେ ତାକୁ ଚାକିରୀ ଦିଅନ୍ତୁ । ଶ୍ରୀମତୀ ରଥ କହିଲେ, ତାଙ୍କୁ ଏଠିକି ନେଇଆସ । ଏଠି ଅମ୍ବର ଚରଖା ତାଲିମ ପାଇ ସାରିଲେ ଖଦୀବୋର୍ଡ଼ ତରଫରୁ କିଛି ଦରମା ପାଇ କୌଣସି ଏକ କେନ୍ଦ୍ର ଚଳାଇବେ । ଏକଥା ଶୁଣି ସେହି ଶନିବାର ଗାଆଁକୁ ଯାଇ ଖୁଡ଼ୀକୁ ମୋ ସାଙ୍ଗରେ ନେଇ ଆସିବାକୁ ଗଲି । ମୁରବୀ ଲୋକେ ସାହିର ଗୋଟିଏ ବୋହୂ ଘରୁ ଗୋଡ଼ କାଢ଼ିବା ବିରୁଦ୍ଧରେ ମତ ଦେଲେ । କହିଲି, ଯେଉଁମାନେ ତାକୁ ଚାକିରୀ କରିବାକୁ ବାରଣ କରୁଛନ୍ତି, ସେମାନେ ତାକୁ ଚଳାଇବାରେ ସାହାଯ୍ୟ କରନ୍ତୁ । ଭିକ ନ ଦେଇ ଥାଳ ଭାଙ୍ଗିବା ନ୍ୟାୟରେ ଯୁବତୀ ବୋହୂଟାକୁ କଲବଲ ନ କରନ୍ତୁ । ତା ଶାଶୁ କହିଲା, ମୋ ତୁଳସୀ ତାକୁ ଯେଉଁଠି ରଖାଇବ ସେ ରହୁ । ମୋ ସାଙ୍ଗେ ଅଭାବ ଅସୁବିଧାରେ ସେ ଆଉ ରହିପାରିବ ନାହିଁ ।

ତାକୁ ସାଙ୍ଗରେ ଧରି ରବିବାର ଦିନ କଟକ ଆସି ସନ୍ଧ୍ୟା ସୁଦ୍ଧା ଭୁବନେଶ୍ୱର କେଦାରଗୌରୀ ଅମ୍ବର ଚରଖା ତାଲିମ କେନ୍ଦ୍ରକୁ ନେଇଗଲି । କୃଷ୍ଣପ୍ରିୟା ରଥ ତାକୁ ନେଇ ତାଲିମ ଦେବା ପରେ କେନ୍ଦ୍ରାପଡ଼ା ଅମ୍ବର ଚରଖା କେନ୍ଦ୍ରରେ ଚାକିରୀ କରାଇ ଦେଲେ । ସେ ଚାକିରୀ ପାଇବା ଖବର ପାଇ କଲିକତାରୁ ସୁରଦାଦା ଆସି ତା ପାଖେ ରହିଲେ । ଆଉ କଲିକତା ଗଲେ ନାହିଁ । ଏକଥା ଦେଖି ଗାଆଁର ଅନେକ ବେକାର ଯୁବକ ସେମାନଙ୍କୁ କୋଉଠି ରଖାଇ ଦେବାକୁ ମୋ ସାଙ୍ଗେ ଲାଗିଲେ । କହିଲି, ମୁଁ ନିଜେ ପାଠ ପଢ଼ି ସେପରି ଯୋଗ୍ୟ ହୋଇ ସାରିଲେ ତୁମ କଥା ବୁଝିବି । ହେଲେ ଆମ ଗାଆଁ ଓ ଆଖପାଖ ଗାଆଁର ଲୋକେ ବେମାରି ପଡ଼ି କଟକ ମେଡ଼ିକାଲକୁ ଆସିଲେ ପ୍ରଥମେ ମୋ ପାଖକୁ ଆସୁଥିଲେ । ସେମାନଙ୍କୁ ନେଇ ମେଡ଼ିକାଲ କଲେଜର ପ୍ରଫେସରମାନଙ୍କୁ ଦେଖାଇ ଚିକିତ୍ସାର ବନ୍ଦୋବସ୍ତ କରିବା ଥିଲା ମୋର କାମ ।

ଆମର ତୃତୀୟ ବାର୍ଷିକ ପଶୁଚିକିତ୍ସା ବିଜ୍ଞାନ ଶ୍ରେଣୀ ବେଳକୁ ଭୁବନେଶ୍ୱରରେ ପଶୁ ଚିକିତ୍ସା ମହାବିଦ୍ୟାଳୟ ତିଆରି ସରି ଆସୁଥାଏ । ଯେକୌଣସି ସମୟରେ ଆମେ କଟକ ଛାଡ଼ି ଭୁବନେଶ୍ୱର ଚାଲିଯିବାର ବାର୍ତ୍ତା ପ୍ରଚାର ହେଉଥାଏ । ଦଶହରା ଛୁଟିରେ ମୁଁ ଗାଆଁକୁ ଗଲି । ମାଆ କହିଲା, ଏ ବର୍ଷ ତୋ ବାପାବୋଉ ବାହାଘର କରିଦେବେ

ବୋଲି କହୁଛନ୍ତି । ପଚାରିଲି କାହା ବାହାଘର ? ମା' କହିଲା, ତୋତେ ବାହା କରିଦେବାକୁ ତାଙ୍କର ଇଚ୍ଛା । କହିଲି, ତୁମେମାନେ କ'ଣ ପାଗଳ ହେଇଚ ନା କ'ଣ ? ମୋର ଆଉ ଦୁଇବର୍ଷ ପାଠପଢ଼ା ଅଛି । ପାଠ ପଢ଼ା ସାରି ଚାକିରୀ କଲାପରେ ସେମାନେ ଯାହା କରିବା କଥା କରନ୍ତୁ । ମାତ୍ର ଏବେ କାହିଁକି ସେ କଥା ପଡ଼ିଛି ? ମାଆ କହିଲା, ବହୁତ ପ୍ରସ୍ତାବ ଆସୁଛି, ସେମାନେ ଝିଅ ଦେଖିବାକୁ ଡାକୁଛନ୍ତି । ତୋ ବୋଉ ଝିଅ ଦେଖିବାକୁ ଚାହୁଁଛି । ଲୋକମାନେ ତାଙ୍କୁ ବ୍ୟସ୍ତ କରୁଛନ୍ତି । କହିଲି, ମୋ ପାଠପଢ଼ାରେ ବ୍ୟାଘାତ ଘଟାଇବା କଥା ତୁମେ ଚିନ୍ତା କରନା । ଦୁଇବର୍ଷ ପରେ ତୁମେ ବାହାଘର କଥା ଚିନ୍ତା କରିବ । ହେଲେ ଏବେଠାରୁ ଯଦି ମୋ ପାଠପଢ଼ାରେ ବାଧା ସୃଷ୍ଟି କରାଯାଏ ତେବେ ମୋର ଭବିଷ୍ୟତ ଅନ୍ଧକାରଚ୍ଛନ୍ନ ହୋଇଯିବ ।

ଛୁଟିପରେ ମୁଁ କଟକ ଫେରି ପାଠପଢ଼ାରେ ଲାଗିଲି। ଡିସେମ୍ବର ମାସରେ ବଡ଼ଦିନ ଛୁଟି ହେଲା। ଗାଆଁକୁ ଗଲି। ମାଆ କହିଲା, ମାସକ ତଳେ ମହମ୍ମଦିଆ ବଜାରରେ ରହୁଥିବା ମୋର ଦାଦାଝିଅ ଭଉଣୀ କ୍ଷେତ୍ରମଣି ଆସିଥିଲା। ତା ଘର ପାଖେ କେନ୍ଦ୍ରାପଡ଼ାର ଜଣେ ଲୋକ ରହୁଛନ୍ତି । ତାଙ୍କର ବଡ଼ଝିଅ ବିଷୟରେ ସେ ପ୍ରସ୍ତାବ ଦେଇଛି । ସେ ଫେରିଯାଇ କଟକରୁ ଗାଡ଼ି ପଠାଇଥିଲା । ତୋ ବାପା ବୋଉ ଯାଇ ଝିଅଟିକୁ ଦେଖି ଆସିଛନ୍ତି । ତାଙ୍କ ମନକୁ ପାଇଛି । ତୁ ସେ ଝିଅଟିକୁ ଦେଖିଲେ ଯାହା ହେବ । କହିଲି, ଏସବୁ କରିବା ଠିକ୍ ହେଲା ନାହିଁ । ଆଉ ଗୋଟାଏ ବର୍ଷ ପରେ ଦେଖାଦେଖି ଆରମ୍ଭ କରିଥିଲେ ହୋଇଥାନ୍ତା । ବୋଉ କାହିଁକି ଏମିତି କରୁଛି ? ମାଆ କହିଲା, କ୍ଷେତ୍ରମଣି ମୋର ଭଉଣୀ ଯୋଗୁଁ ବାପା ବୋଉ ତାକୁ ମାଉସୀ ବୋଲି ସମ୍ମାନ କରନ୍ତି। ତେଣୁ ତା କଥା ଭାଙ୍ଗି ପାରିଲେ ନାହିଁ । କ୍ଷେତ ଓ ତା ସ୍ୱାମୀ ରଘୁବାବୁ ତୋତେ ବହୁତ ଭଲ ପାଆନ୍ତି । ତେଣୁ ଭଲ ପ୍ରସ୍ତାବଟିଏ ହାତଛଡ଼ା କରିବାକୁ ଚାହାଁନ୍ତି ନାହିଁ । ଏସବୁ କଥାରେ ମୋତେ ବିରକ୍ତ ନକରିବାକୁ ମାଆକୁ କହିଲି ।

ପିଲାଦିନୁ ମୁଁ କ୍ଷେତଅପା ପରିବାରକୁ ଜାଣିଛି । ସେମାନେ ସୁନ୍ଦର୍ଦ୍ଧା ଆସିଲେ ଆମ ଘରକୁ ଆଗେ ଆସନ୍ତି । ତାପରେ ଏଠୁ ସୁନ୍ଦର୍ଦା ଯାଆନ୍ତି । ତାଙ୍କ ବଡ଼ଝିଅ ଲିଲି ଓ ବଡ଼ପୁଅ ସାନୁଙ୍କ ସାଙ୍ଗେ ମୁଁ ଖେଳେ। ରେଭେନ୍ସା କଲେଜରେ ପଢ଼ିଲାବେଳେ ତାଙ୍କ ଘରକୁ ଥରେ ଦୁଇଥର ଯାଇଛି । ତାଙ୍କ ପରିବାର ସହିତ ମୁଁ ବେଶ୍ ଜଣାଶୁଣା । ତେଣୁ ସେମାନଙ୍କ ପ୍ରତି ମୁଁ ବିରକ୍ତି ପ୍ରକାଶ କରିପାରୁନଥାଏ । ଭାବିଲି ଏସବୁ କଥାରେ ପ୍ରାଧାନ୍ୟ ନଦେଲେ ଛାଏଁ ଛାଏଁ ବନ୍ଦ ହୋଇଯିବ ।

ବଡ଼ଦିନ ଛୁଟି ପରେ ବାର୍ଷିକ ପରୀକ୍ଷା ପାଇଁ ପଢ଼ାପଢ଼ି ଆରମ୍ଭ ହୋଇଯାଏ । ରବିବାର ଦିନ ଉପରବେଳା ମୁଁ ପିଉସୀ ପୁଅ ଭାଇଙ୍କ ଘର ଓ ଆପିଲା ବସା ଆଡ଼େ

ବୁଲିଯାଏ । ସନ୍ଧ୍ୟାରେ ଫେରି ଆସି ପଢ଼ିବସେ । ହଷ୍ଟେଲ ରୁମ୍‌ରେ ଆମେ ଚାରିଜଣ ରହୁଥାଉ । ମୋ ସହିତ (ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି) ଖଗେଶ୍ୱର ପ୍ରଧାନ, (ଭାରତୀୟ ପକ୍ଷୀ ଗବେଷଣା ପ୍ରତିଷ୍ଠାନର ପୂର୍ବତନ ନିର୍ଦ୍ଦେଶକ) ଶରତ ମହାପାତ୍ର ଓ (ପଶୁପାଳନ ବିଭାଗର ପୂର୍ବତନ ମୁଖ୍ୟ ଜିଲା ପଶୁ ଚିକିତ୍ସା ଅଧିକାରୀ) ବିଶ୍ୱନାଥ ଆଚାର୍ଯ୍ୟ ଗୋଟିଏ ରୁମ୍‌ରେ ରହୁଥାନ୍ତି। ଏ ତିନିଜଣ ସାଙ୍ଗ ହୋଇ ପାର୍କ, ସିନେମା ହଲ୍ ଓ ବଜାର ଆଡ଼େ ବୁଲି ଯାଆନ୍ତି । ମାତ୍ର ସିନେମା ହଲ୍ ଆଡ଼େ ଯିବାକୁ ମୋତେ ଆଦୌ ଭଲ ଲାଗେନା ।

ଦିନେ ରବିବାର ସନ୍ଧ୍ୟାରେ ମୁଁ ହଷ୍ଟେଲକୁ ଫେରି ଦେଖିଲି ମୋ ଟେବୁଲ ଉପରେ ଏକ ବଡ଼ ଟିଫିନ୍ କ୍ୟାରିୟର ରଖା ଯାଇଛି । ମୋ ରୁମ୍ ସାଙ୍ଗ ମାନଙ୍କୁ ପଚାରିଲି କିଏ ଯାକୁ ଏଠି ରଖିଛି । ସେମାନେ କହିଲେ ଜଣେ ଯୁବକ ସହିତ ଦୁଇଟି ଝିଅ ଆସିଥିଲେ । ସେମାନେ ଏ ଟିଫିନ୍ କ୍ୟାରିୟର୍‌ରେ ନାନା ଜାତିର ପିଠା ଆଣିଥିଲେ । ପାଖରୁମ୍‌ର ସାଙ୍ଗ ମାନଙ୍କ ସହିତ ମିଶି ଆମେ ସବୁ ଖାଇ ଦେଇଛୁ । ତୁମ ଭାଗ ରଖାଯାଇଛି, ଖାଇନିଅ । କହିଲି, କିଏ ପିଠା ଆଣିଛି ନ ଜାଣି ମୋ ପକ୍ଷରେ ପିଠା ଖାଇବା ଠିକ୍ ହେବନାହିଁ ।

ଶରତ ମହାପାତ୍ର କହିଲେ, ଆମ ସହିତ ସେମାନଙ୍କର ବନ୍ଧୁତା ନଥିଲେ କାହିଁକି ସେମାନେ ପିଠା ଆଣି ଆସିଥାନ୍ତେ ? ତେଣୁ ତୁମ ଭାଗ ପିଠାତକ ଖାଇସାରିଲେ ସେମାନଙ୍କ ବିଷୟରେ ଜାଣିବ । ବାହାରେ ବୁଲି ବୁଲି ଆସିବା ପରେ ପିଠା ଦେଖି ଆଉ ଅପେକ୍ଷା କରିବାର ଧୈର୍ଯ୍ୟ ନଥିଲା । ମୋପାଇଁ ଦୁଇ ତିନିଟା ପିଠା ରଖାଯାଇଥିଲା । ସେତକ ଖାଇଦେଇ ପଚାରିଲି ଏବେ କଥାଟା କୁହ ।

ଶରତ କହିଲେ ଏସବୁ ପିଠା ତୁମ ପାଇଁ ଆସିଥିଲା । ତୁମର ସମ୍ପର୍କୀୟ କିଏ ରଘୁବାବୁ ଏଠି ଅଛନ୍ତି । ତାଙ୍କ ପୁଅ ଆସିଥିଲେ । ଝିଅ ଦୁଇଟି ତୁମକୁ ଦେଖିବାକୁ ଆସିଥିଲେ । ତୁମ ପାଇଁ ବିବାହ ପ୍ରସ୍ତାବ ଅଛି । ଖଗେଶ୍ୱର(ଡକ୍ଟର ଖଗେଶ୍ୱର ପ୍ରଧାନ ଓଡ଼ିଶା କୃଷି ବୈଷୟିକ ବିଶ୍ୱ ବିଦ୍ୟାଳୟର କୁଳପତି ଥିଲେ । ସେ ଜଣେ ଆନ୍ତର୍ଜାତୀୟ ସ୍ତରର ପ୍ରସିଦ୍ଧ ବୈଜ୍ଞାନିକ)ଙ୍କ ଗାଆଁ ପାଖରେ ସେମାନଙ୍କର ଗାଆଁ । ତେଣୁ ଯାଙ୍କର ସେମାନେ ନିଜ ଲୋକ। ଆମେ କହିଛୁ ଆଉ ପିଠା ଆଣି ଆସ । ବାହାଘର ନିଶ୍ଚୟ ହେବ ।

ପାଖ ରୁମ୍‌ରୁ ଈଶାନ୍ ପଟ୍ଟନାୟକ ବାହାରି ଆସି କହିଲେ, ତୁମେ ଟିକେ ଦୟା କରି ଚୁପ୍ ରୁହ । ଜଣେ ଆମ ପାଇଁ ପିଠା ଆଣିଆସୁଛି । ଆମେ ଖାଉଚୁ । ତୁମ ଭାଗ

ରଖି ଦିଆଯାଉଛି । ତୁମକୁ ଯେତିକି କୁହାଯିବ ସେତିକି କର । ତୁମ ବିବାହ ପ୍ରସ୍ତାବ ପାଇଁ ଦୁଇ ଚାରିଥର ଆମେ ପିଠାପଣା ଖାଇସାରି ତାପରେ ଯାହା ଠିକ୍ ହେବ ତାହା କରିବା । ସେମାନେ କହିଛନ୍ତି ପୁଣି ରବିବାର ଦିନ ଆସିବେ । କହିଲି, ମୁଁ ତ ରବିବାର ଗାଆଁକୁ ଯିବାକୁ ଭାବୁଛି । ଖଗେଶ୍ୱର କହିଲେ, ତାହାହେଲେ ତ ଆହୁରି ଭଲକଥା । ସେଦିନ ଯାହା ପିଠାପଣା ଆସିବ ତୁମର ସେଥିରେ ଭାଗ ନାହିଁ । ପୁଣି ଆଉ ଦିନେ ସେମାନଙ୍କୁ ଆସିବାକୁ କହିବା । ବିଶ୍ୱନାଥ କହିଲେ, କିହୋ ଆମର ମଉଜରେ ତୁମେ କାହିଁକି ହସ୍ତକ୍ଷେପ କରୁଚ ? ତୁମେ ତୁମ କାମରେ ଯାଅ। ଏଇ ମୌକାରେ ଆମକୁ ଯେତିକି ପିଠାପଣା ମିଳୁଚି ମିଳିଯାଉ । ସମସ୍ତେ ହସିଲେ ।

ଶନିବାର ଉପରବେଳା ଗାଆଁକୁ ଗଲି । ଏସବୁକଥା ମାଆକୁ କହିଲି । ସେ କହିଲା ଇତିମଧ୍ୟରେ ସେ ଝିଅର ଜେଜେ ଆସିଥିଲେ । ଆମ ଘରଦ୍ୱାର ଦେଖି ଯାଇଛନ୍ତି । ତାଙ୍କର ଇଚ୍ଛା ଏଇ ଖରାମାସାରେ ବାହାଘର କରିବାକୁ । ଏସବୁ ଶୁଣି ମୁଁ କହିଲି, ଏମିତି ହେଲେ ମୋର ପାଠପଢ଼ାରେ ତୁମେମାନେ ଜାଣିଶୁଣି ବ୍ୟାଘାତ ସୃଷ୍ଟି କରୁଚ । ପରୀକ୍ଷାରେ ମୁଁ ଯଦି ଫେଲ୍ ହୋଇଯାଏ ତେବେ ତମର ସବୁ ଯୋଜନା ଫସର ଫାଟି ଯିବ । କହିଲି, କ୍ଷେତଅପା ତୋର ସାନଭଉଣୀ । ତାଙ୍କୁ ଏସବୁ କଥା ବୁଝେଇ କହିବା ତୋର ଦାୟିତ୍ୱ ।

ମାଆ କହିଲା, ତୋ ବୋଉ ବାପାଙ୍କୁ କହିବି । ସେମାନେ ଯାହା କରିବେ ବୁଝି ବିଚାରି କରନ୍ତୁ । ସର୍ବୋପରି ଗୁରୁଜେଜେ ଅଛନ୍ତି । ତାଙ୍କୁ ନପଚାରି କିଛି ହେବ ନାହିଁ । ତୋର ଜାତକ ଦେଖି ସେ ଯାହା କହିବେ ତାହା କରାଯିବ । ତେଣୁ ତୁ ଏସବୁ ବିଷୟରେ ମୁଣ୍ଡ ନ ଖେଳାଇ ପାଠପଢ଼ାରେ ମନ ଦେ ।

## ବିବାହ ଓ ଦୁର୍ଘଟଣା

କଟକ ଫେରି ଖବର ପାଇଲି ଯେ, ରବିବାର ଦିନ ପୁଣି ଥରେ ପିଠାପଣା ନେଇ ରଘୁବାବୁଙ୍କ ପୁଅ ସାଙ୍ଗରେ ଆଉ ଜଣେ କିଶୋର ଆସିଥିଲା । ସେ ପିଲାଟି ଝିଅମାନଙ୍କର ଭାଇ । ସେ ଏବର୍ଷ ମାଟ୍ରିକ୍ ପରୀକ୍ଷା ଦେଉଛି । ସେମାନେ ଏଥର ଯେଉଁ ପିଠା ସବୁ ଆଣିଥିଲେ; ମୋ ସହପାଠିମାନେ ସେସବୁ ବାଣ୍ଟି ଖାଇଛନ୍ତି । କଥା ଦେଇଛନ୍ତି ଯେ, ଆମ ଭିତରୁ ଯିଏ ହେଲେ ଗୁରୁବାବୁଙ୍କୁ ନେଇ ତୁମ ଘରକୁ ଯିବ । ସେମାନଙ୍କ ଉପରେ ମୁଁ ଭୀଷଣ ବିରକ୍ତ ହେଲି । ଶରତ କହିଲେ, ଏସବୁରେ ତମର କିଛି ଯାଏ ଆସେ ନାହିଁ । ସେମାନେ ପିଠା ଆଣି ଆସୁଛନ୍ତି । ଆମର ଖାଇବା କଥା ।

ସେଥିପାଇଁ ଯାହା କିଛି ପ୍ରତିଶ୍ରୁତି ଦିଆଯାଉଛି ସେ ସବୁରେ ତମର କିଛି କହିବାର ନାହିଁ । ତାଙ୍କ ଘରକୁ ଯିବା ପାଇଁ କେହି ତୁମକୁ ବାଧ କରୁନି । ସେମାନେ ଯେତେବେଳେ ଏଠିକି ଆସିବେ, ସେତେବେଳେ ତୁମେ ଏଠିଥିଲେ, ତୁମକୁ ଉପର ମହଲାରେ ଲୁଚେଇ ଦିଆଯିବ । ତେଣୁ ତୁମେ ଏସବୁରେ ମୁଣ୍ଡ ଖେଳାଅନା ।

ଏହିପରି ଆମ ହଷ୍ଟେଲ୍‌ରେ ମୋ ସାଙ୍ଗମାନେ ଏ ପ୍ରସ୍ତାବରୁ ବେଶ୍ ମଜା ଉଠାଇଲେ । ତେଣେ ଆମ ଗାଆଁରେ ମଧ ତଦ୍ରୂପ ଅବସ୍ଥା । ଆମ ପରିବାରରେ ଦୀର୍ଘ ତିରିଶିବର୍ଷ ଭିତରେ କୌଣସି ବିବାହ ଯୋଗ୍ୟ ପୁଅ ନଥିଲେ । ତେଣୁ ସାହିରେ ବଡ଼ବାପା, ଦାଦା, ଜେଜେ ଆଦି ଗୁରୁଜନମାନେ ଶୀଘ୍ର ବାହାଘରଟା କରିବା ଯୋଗାଡ଼ରେ ଲାଗି ପଡ଼ିଲେ । ବିଭିନ୍ନ ଆଡୁ ଅନେକ ପ୍ରସ୍ତାବ ଆସିଲା । ମୋତେ ଦେଖିବା ପାଇଁ କେହି କେହି ଆସି ଆମ ହଷ୍ଟେଲରେ ପହଞ୍ଚି ଯାଉଥିଲେ । ମୋ କୋଠରୀରେ ଥିବା ସାଙ୍ଗମାନଙ୍କୁ କହିଲି, ଯିଏ ଆସିବ ମୁଁ ହଷ୍ଟେଲ୍‌ରେ ନାହିଁ ବୋଲି କହି ଫେରାଇ ଦେବ। ମାତ୍ର ଅନ୍ୟ ରୁମ୍‌ର ପିଲାମାନେ ବେଳେବେଳେ ଅଜଣା ଲୋକଙ୍କୁ ମୋ ରୁମ୍‌କୁ ଡାକି ଆଣୁଥିଲେ । ତେଣେ ମୁଣ୍ଡ ଉପରେ ବାର୍ଷିକ ପରୀକ୍ଷା । ଆମ ପାଠ୍ୟକ୍ରମରେ ପ୍ରତିବର୍ଷ ବିଶ୍ୱବିଦ୍ୟାଳୟ ପକ୍ଷରୁ ବାର୍ଷିକ ପରୀକ୍ଷା ହୁଏ । ଏଥିରେ ଅସଫଳ ଛାତ୍ରମାନେ ପୁଣି ସପ୍ଲିମେଣ୍ଟାରୀ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୁଅନ୍ତି ।

ପରୀକ୍ଷା ପୂର୍ବରୁ ଆଉ ଗାଆଁକୁ ନ ଯାଇ ବୋଉ ପାଖକୁ ଚିଠି ଲେଖି ବାହାଘର ପ୍ରହସନ ବନ୍ଦ କରିବାକୁ ଜଣାଇଦେଲି । ଏଥର ପରୀକ୍ଷାରେ ଯଦି ମୋର ଖରାପ ହୁଏ ତେବେ ତୁମେମାନେ ଦାୟୀ ହେବ ବୋଲି ମଧ ଲେଖିଲି । ମୋ ଚିଠି ପାଇ ବାପା ଗୋପାଳଜୀଉଙ୍କ ଭୋଗ, ତୁଳସୀ ଓ ଧଣ୍ଡାମାଳ ନେଇ ରବିବାରିଆ ମୋ ପାଖକୁ ଆସିଲେ। ଏସବୁ ବିଷୟରେ ବାପା ମୋତେ କ'ଣ ବା କହିବେ? କେବଳ କହିଲେ, ତୁ ମନଲଗାଇ ପାଠପଢ଼ି ପରୀକ୍ଷା ଦେ । ଗୋପାଳଙ୍କ ଦୟାରୁ ସବୁ ଠିକ୍ ହୋଇଯିବ ।

ବାପା କଟକ ଆସିଲେ ଗ୍ରାଣ୍ଡ ହୋଟେଲ୍ କିମ୍ବା କାଳିକା ହୋଟେଲ୍‌ରେ ମାଂସ ତରକାରୀ ଓ ଚିଙ୍ଗୁଡ଼ି ଚପ୍ ଖାଇବାକୁ ଭଲ ପାଆନ୍ତି । ସେଦିନ ମୋତେ ଡାକିନେଇ ହୋଟେଲ୍‌ରେ ଖୁଆଇଲେ । ତାଙ୍କୁ ବସ୍‌ରେ ବସାଇଦେଇ ହଷ୍ଟେଲକୁ ଫେରିଲି । ମୋ ସହିତ ଆସି ଟିକେ ବିଶ୍ରାମ ନେଇ ଉପରବେଳା ଘରକୁ ଫେରିବାକୁ ଯେତେ ଡାକିଲି ବାପା ଆସିଲେ ନାହିଁ । ମନଟା ଭଲ ଲାଗିଲା ନାହିଁ ।

ଖୁବ୍ ବଦଖର୍ଚ୍ଚୀ ଲୋକ ସେ । ଖାଇବା, ପିଇବା. ନାଚତାମସା, ଭୋଜିଭାତ କରିବାରେ ତାଙ୍କର ଆନନ୍ଦ। ପିଲାଟି ଦିନରୁ ବାପା ନାରାୟଣ ପ୍ରସାଦ ମହାନ୍ତିଙ୍କର

ଏକମାତ୍ର ଗେହ୍ଲା ପୁଅ ଭାବେ ତାଙ୍କ ସାବତମାଆ ହୀରାଙ୍କର ସେ ଅତି ପ୍ରିୟ ଥିଲେ । ସେ କାଳରେ ପାଞ୍ଚଟଙ୍କା ବା ଦଶଟଙ୍କିଆ ନୋଟ୍ ନଥିଲା । ଜେଜେ ଇଂରେଜ ଅଫିସର ମାନଙ୍କ ପରି ମାସରେ ଯେଉଁ ପାଞ୍ଚଶହ ଟଙ୍କା ଦରମା ପାଉଥିଲେ ସେସବୁ କେବଳ ମୁଦ୍ରା ଆକାରରେ ମିଳୁଥିଲା । ପାଞ୍ଚଟଙ୍କାର ମୁଦ୍ରା ଗୋଟିଏ ଗୋଟିଏ ତୋଡ଼ା ଭାବରେ ବନ୍ଧାହୋଇ ଆସୁଥିଲା । ସେଇ ତୋଡ଼ାରୁ ବାପା ଖର୍ଚ୍ଚ କରିବାକୁ ନେଉଥିଲେ । ସେତେବେଳେ ପାଞ୍ଚଟଙ୍କାର ମୂଲ୍ୟ ବହୁତ ବେଶୀ । ବାପା ତାଙ୍କ ସାଙ୍ଗମାନଙ୍କ ସହିତ କଟକର ଭଲ ହୋଟେଲ୍‌ରେ ବସି ମାଂସ, ମାଛ, ପରଟା ଆଦି ଖାଇ ମଉଜ କରୁଥିଲେ । ଇଚ୍ଛା ହୁଏ, ମୋର ଏମିତି ବହୁତ ରୋଜଗାର ହୁଅନ୍ତାକି, ବାପାଙ୍କୁ ନେଇ ବଡ଼ ବଡ଼ ହୋଟେଲ୍‌ରେ ଖୁଆନ୍ତି । ମାତ୍ର ମୋର ସ୍ୱପ୍ନ ସାର୍ଥକ ହେଲାନାହିଁ । ଜେଜେଙ୍କ ମୃତ୍ୟୁ ପରଠୁଁ ଏ ପର୍ଯ୍ୟନ୍ତ ସେ ଛଅଶହ ଏକର ଜମି ବିକ୍ରୀ କରି ମଉଜରେ ରହିବାକୁ ପ୍ରୟାସ କରିଛନ୍ତି । ଏଇ ବର୍ଷେ ଦୁଇବର୍ଷ ଭିତରେ ମୁଁ ଯଦି ଉପାର୍ଜନକ୍ଷମ ନହୁଏ ତେବେ ତାଙ୍କର ଦୁଃସମୟ ଆରମ୍ଭ ହୋଇଯିବ । ବାପା ଅତ୍ୟନ୍ତ ସରଳ ଉଦାର ଓ ଅମାୟୀକ ବ୍ୟକ୍ତି । ଯିଏ ଯାହା କହିଲା ସହଜରେ କଥାଟା ଗ୍ରହଣ କରିନିଅନ୍ତି । ତାଙ୍କ ମୁହଁରେ ହସ ଦେଖିବାକୁ ମୋତେ ଭଲ ଲାଗେ । ତେଣୁ ସେ ଜମିବାଡ଼ି ବିକ୍ରୀ କରିଦେଲେ କେହି ଯଦି ମୋତେ ତାଙ୍କୁ ବାରଣ କରିବାକୁ କହେ, ମୁଁ ସେ କଥା ଶୁଣେ ନାହିଁ । ବାପା ତାଙ୍କନାମରେ ଥିବା ଜମିବାଡ଼ି ବିକିବା ପରେ ମୋ ନାମରେ ମାଆ ଯେଉଁସବୁ ଜମି ଲେଖିଦେଇଥିଲା, ସେସବୁ ବିକ୍ରୀ କରିବାରେ ଲାଗିଛନ୍ତି । ସାହିରେ ଅନେକ ଲୋକ ମୋତେ ଏକଥା କହି ଆଉ ଅଧିକ ମୋ ଜମିରୁ ବିକ୍ରୀ ନକରିବାକୁ ବାପାଙ୍କୁ କହିବା ପାଇଁ ଉପଦେଶ ଦିଅନ୍ତି । ମାତ୍ର କାଳେ ତାଙ୍କ ମନରେ କଷ୍ଟ ହେବ ବୋଲି ମୁଁ କିଛି କହେ ନାହିଁ । ଏଇ ବର୍ଷେ ଦୁଇବର୍ଷ ଭିତରେ ମୁଁ ଉପାର୍ଜନକ୍ଷମ ହେଲେ ତାଙ୍କର ଦୁଃଖ ଯିବ । ବାପାଙ୍କ କଥା ମନେ ପଡ଼ି ପଢ଼ାରେ ସେଦିନ ମନ ଲାଗିଲା ନାହିଁ । ବସ୍‌ରେ ବସିବା ପୂର୍ବରୁ ବାପା କହିଲେ, ତୁ ଆଇ.ଏସ୍.ସି. ପଢ଼ିବାବେଳେ ରେଭେନ୍ସା କଲେଜର ଅଧ୍ୟକ୍ଷ ଥିଲେ ବାମା ଚରଣ ଦାସ । ତାଙ୍କର ବଡ଼ପୁଅ ଭାଇ ବିପ୍ରଚରଣ ଦାସ ଥିଲେ ବ୍ରିଟିଶ ଅମଳର ନାମଜାଦା ଜିଲାଜଜ୍ । ସେ ରହନ୍ତି ଖଟ୍‌ବିନ୍ ସାହିରେ । ବାମାବାବୁ ଓ ଶ୍ୟାମାବାବୁଙ୍କ ଘର ବିପ୍ରବାବୁଙ୍କ ଘର ପାଖରେ । ବିପ୍ରବାବୁ ତୋତେ ଦେଖିବାକୁ ଚାହାଁନ୍ତି । ବାପା, କହିଲେ, ଆମ ସହିତ ସମ୍ପର୍କ କରିବାକୁ ବହୁତ ଲୋକ ଲାଳାୟିତ । ସେଇ ସୂତ୍ରରେ ହୁଏତ ତୋତେ ଦେଖିବାକୁ ତାଙ୍କର ଇଚ୍ଛା । କଟକର ଜଣେ ଗଣ୍ୟମାନ୍ୟ ଲୋକଙ୍କ ସହିତ ଦେଖା କରିବା ଖରାପ କଥା ନୁହେଁ । ତୁ ଯିବୁ । ଏକଥା ଶୁଣି ମୁଁ ବାପାଙ୍କୁ କିଛି କହିପାରିଲି ନାହିଁ ।

ଏହାର ଠିକ୍ ଆଠ ଦିନ ପରେ ରବିବାରିଆ ଖରାବେଳେ ଗୋଟିଏ ପିଲା ଆସି ଆମ ହଷ୍ଟେଲ୍‌ରେ ପହଞ୍ଚି ମୋତେ ଖୋଜିଲା । ମୋ ପାଖକୁ ଆସିବାର କାରଣ କ'ଣ ପଚାରିବାରେ ସେ କହିଲା; ବିପ୍ରବାବୁ ତାକୁ ପଠାଇଛନ୍ତି । ତା ସହିତ ଯିବାକୁ ମୋର ଆଦୌ ଇଚ୍ଛା ନଥାଏ । ତଥାପି ବାପାଙ୍କ ନିର୍ଦ୍ଦେଶ କଥା ଭାବି ମୁଁ ଗଲି ।

ଖଟ୍‌ବିନ୍ ସାହିରେ ବିପ୍ରବାବୁଙ୍କର ଖୁବ୍ ବଡ଼ ହତା । ତାଙ୍କ ବୈଠକ ଖାନାରେ ମୋତେ ବସାଇ ଦେଇ ପିଲାଟି ଯାଇ ତାଙ୍କୁ ଖବର ଦେଲା । ସେ ଆସି ମୋ ସାମନାରେ ଥିବା ଆରାମ ଚୌକୀରେ ବସି ପଡ଼ିଲେ । ତାଙ୍କୁ ମୁଁ ପ୍ରଣାମ କଲି । ପଚାରିଲେ, -ତୁ ରାମବାବୁଙ୍କ ପୁଅ ନା? କହିଲି ହଁ ।

- ଆଚ୍ଛା ନାରାୟଣ ବାବୁ ତୋର କ'ଣ ହୁଅନ୍ତି?

- ସେ ମୋର ଜେଜେବାପା ।

- ତୁ ତାଙ୍କୁ ଦେଖିଛୁ?

- ନାଁ ମୋ ଜନ୍ମର ବହୁ ବର୍ଷ ପୂର୍ବରୁ ତାଙ୍କର ମୃତ୍ୟୁ ହୋଇଛି ।

- ଆଚ୍ଛା, ହୀରାଙ୍କୁ ତୁ ଦେଖିଛୁ ?

କହିଲି, ହୀରା କଥା ମୁଁ ଜାଣେନା । ପଦ୍ମାବତୀ ଜେଜେଙ୍କର ପଛ ସ୍ତ୍ରୀ ।

ବିପ୍ର ବାବୁ ହସି ଦେଇ କହିଲେ। ହୀରା ଥିଲେ ମୁଙ୍ଗେର ରାଜପରିବାରର ଝିଅ । ନାରାୟଣ ବାବୁ ତାଙ୍କୁ ଆଣି କଟକ ବସାରେ ରଖିଥିଲେ । ମୁଁ ତାଙ୍କୁ ଦେଖିଛି । ସେ ଅତ୍ୟନ୍ତ ସୁନ୍ଦରୀ ଥିଲେ ।

ପଚାରିଲି, ଆପଣ କ'ଣ ଜେଜେଙ୍କ ପାଖକୁ ଯାଉଥିଲେ ?

ବିପ୍ରବାବୁ କହିଲେ; ଆମ ଦାଦା ଥିଲେ ତୁମ ଜେଜେଙ୍କର ହେଡ୍‌କ୍ଲର୍କ । ଦାଦା ହେଉଛନ୍ତି ବାମାଚରଣ ଓ ଶ୍ୟାମାଚରଣଙ୍କ ବାପା। ଦାଦାଙ୍କ ସାଙ୍ଗେ ତାଙ୍କ ଘରକୁ ଯାଇଛି । ହୀରା ଅତ୍ୟନ୍ତ ସ୍ନେହଶୀଳା ଥିଲେ । ମୁଁ ଗଲେ ବଡ଼ବଡ଼ ମିଠା ଖାଇବାକୁ ଦିଅନ୍ତି । ତୋର ପାଠ କେବେ ସରିବ?

- ଆଉ ଦେଢ଼ବର୍ଷ ପରେ ବି.ଭି.ଏସ୍‌ସି ସରିଯିବ । ମାତ୍ର ତାପରେ ମୁଁ ଉଚ୍ଚଶିକ୍ଷା ପାଇଁ ଚେଷ୍ଟା କରିବି ।

ଏତିକିବେଳେ ଆଉ ଜଣେ ଭଦ୍ରଲୋକ ଆସି ପହଞ୍ଚିଲେ । ବିପ୍ରବାବୁ କହିଲେ, ଇଏ ମୋର ସାନ ସତ୍ତୁ - ଯୋଗେନ୍ଦ୍ର ନାଥ ମହାନ୍ତି, ଉଠିପଡ଼ି ତାଙ୍କୁ ପ୍ରଣାମ କଲି,

ବିପ୍ରବାବୁ କହିଲେ, ଯୋଗୀ; ନାରଣବାବୁଙ୍କ ନାତିକୁ ଦେଖି ମୁଁ ବହୁତ ଖୁସି । ପିଲାଟିର ବଂଶ ପରମ୍ପରା ଅନୁସାରେ ତାର ଖୁବ୍ ଉଚ୍ଚ ଆକାଂକ୍ଷା ରହିଛି । ତାର ଭବିଷ୍ୟତ ଅତ୍ୟନ୍ତ ଉଜ୍ଜ୍ୱଳମୟ ହେବ । ଏଥିରେ ଆଦୌ ସନ୍ଦେହ ନାହିଁ । ଭାବିଲି, ବୋଧହୁଏ ମୋ ବିବାହ ବିଷୟରେ ଏ ସବୁ ଦେଖା ସାକ୍ଷାତ ହେଉଛି । ଆଉ ବସିବାକୁ ମୋତେ ଭଲ ଲାଗିଲା ନାହିଁ। ମୁଁ ଉଠି ଠିଆ ହେଲି । ବିପ୍ରବାବୁ କହିଲେ, ଯା, ପଢ଼ାପଢ଼ି କର । ତୁମ ବଂଶର ମର୍ଯ୍ୟଦା ରକ୍ଷା କର ।

ପ୍ରାୟ ଦେଢ଼ମାସ ପରେ ପରୀକ୍ଷା ଆରମ୍ଭ ହୋଇଗଲା । ଥିଓରି ପରେ ପ୍ରାକ୍ଟିକାଲ୍ ପାଇଁ ପୁଣି ଚିନ୍ତା । ସେଥିଲାଗି କଲିକତା, ବମ୍ବେ, ପାଟନା, ମାନ୍ଦ୍ରାଜ ଓ ହାଇଦ୍ରାବାଦ ଆଦି ପଶୁଚିକିତ୍ସା ମହାବିଦ୍ୟାଳୟ ମାନଙ୍କରୁ ପରୀକ୍ଷକମାନେ ଆସନ୍ତି। ସେମାନଙ୍କ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେବା ଅସଲ କଥା । ତେଣୁ ପାଠ୍ୟକ୍ରମ ବାହାରେ ବିଭିନ୍ନ ବିଷୟରେ ଛପା ଯାଉଥିବା ବୈଷୟିକ ପତ୍ରିକାମାନ ପଢ଼ିବାକୁ ଲାଇବ୍ରେରୀକୁ ଯିବା ଉଚିତ । ଆମ ଉପରବ୍ୟାଚ୍ ଛାତ୍ରମାନଙ୍କୁ ପଚାରି ସେମାନଙ୍କ ଅଭିଜ୍ଞତା ବା ପୂର୍ବବର୍ଷ ପରୀକ୍ଷକମାନଙ୍କ ପ୍ରଶ୍ନ ସବୁ ବୁଝି ପ୍ରସ୍ତୁତ ହେବାକୁ ପଡ଼ିବ । କାରଣ ଓଡ଼ିଶା ପଶୁ ଚିକିତ୍ସା ମହାବିଦ୍ୟାଳୟର ଆମେ ମାତ୍ର ଦ୍ୱିତୀୟ ବ୍ୟାଚ୍‌ର ପରୀକ୍ଷାର୍ଥୀ । ଆମ ଉପର ବ୍ୟାଚ୍ ଛାତ୍ରମାନେ ଏବର୍ଷ ଶେଷ ପରୀକ୍ଷା ଦେବେ। ସେମାନଙ୍କ ମଧ୍ୟରୁ କେତେ ଜଣ ଛାତ୍ର ଗତବର୍ଷ ବାର୍ଷିକ ଓ ସପ୍ଲିମେଣ୍ଟାରୀ ଉଭୟ ପରୀକ୍ଷାରେ ଫେଲ୍ ହୋଇ ଏବେ ଆମ ସାଙ୍ଗେ ପଢୁଛନ୍ତି । ତେଣୁ ଖୁବ୍ ଡର ଲାଗୁଥାଏ । ତଥାପି ପାଠପଢ଼ାରେ ଲାଗି ପଡ଼ିଲି । ପରୀକ୍ଷା ସରିଗଲା । ଆସନ୍ତା ଜୁଲାଇ ଅଧାବେଳକୁ ଆମର କଲେଜ କାର୍ଯ୍ୟାଳୟ ସହିତ ସମସ୍ତ ବିଭାଗ ଭୁବନେଶ୍ୱରସ୍ଥ କୃଷି କଲେଜକୁ ଲାଗି ନୂଆ କରି ଗଢ଼ା ହୋଇଥିବା ପଶୁଚିକିତ୍ସା ମହାବିଦ୍ୟାଳୟ ପରିସରକୁ ସ୍ଥାନାନ୍ତରିତ ହେବ । ତେଣୁ ସମସ୍ତ ଅଧ୍ୟାପକ ଓ କର୍ମଚାରୀମାନେ ଲାଗିପଡ଼ିଥାନ୍ତି । ଆମ ପାଇଁ ନୂଆ ହଷ୍ଟେଲ ତିଆରି ହୋଇଛି । କଟକରେ ଥିବା ତିନିଟା ହଷ୍ଟେଲ୍‌ର ସମସ୍ତ ଆସବାବପତ୍ର ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେବ । ତେଣୁ ପରୀକ୍ଷା ପରେ ହଷ୍ଟେଲ ସବୁ ବନ୍ଦ ହୋଇଗଲା । ସମସ୍ତ ଛାତ୍ର ନିଜ ନିଜର ଗାଆଁକୁ ଚାଲିଗଲେ ।

ଗାଆଁରେ ପହଞ୍ଚି ଦେଖେ ତ ମୋ ବାହାଘର କଥାଟା ମୁଖ୍ୟ ପ୍ରସଙ୍ଗ ହୋଇଛି । ଅନେକ ପ୍ରସ୍ତାବ ଆସୁଛି। ବାପା, ବଡ଼ବାପା, ସପନିଦାଦା, କପିଳଦାଦା, ଭାଇ, ପାଣ୍ଡୁଜେଜେ, ସୁଦର୍ଶନଦାଦି ପ୍ରଭୃତି ପ୍ରାୟ ପ୍ରତିଦିନ ଏ ବିଷୟରେ ଆଲୋଚନା ଚଳାଇଛନ୍ତି । ମୁଁ ମାଆକୁ ଡାକି ଏସବୁ ବନ୍ଦ କରିବାକୁ କହିଲି । ଆସନ୍ତା ବର୍ଷ ମୋର ଶେଷ ପରୀକ୍ଷା ସରିଗଲେ ତାପରେ ଯାହା କରିବାକଥା କର ବୋଲି କହିଲି ।

ମାଆ କହିଲା, ଆମର କେଉଁଠି ଜବାବ ଦିଆ ଯାଇନାହିଁ। ଏପର୍ଯ୍ୟନ୍ତ କଟକରୁ ମୋ ଦାଦାଝିଅ ଭଉଣୀ କ୍ଷେତ୍ରମଣି ଓ ତାର ସ୍ୱାମୀ ରଘୁବାବୁ ଯେଉଁ ପ୍ରସ୍ତାବ ଦେଇଥିଲେ ସେମାନେ ବାହାଘର କରି ଦେବାକୁ ଜୋର୍ କରୁଛନ୍ତି । ସେ ଝିଅଟି ତ ତୋ ବୋଉର ପସନ୍ଦ ହୋଇଥିଲା ; ତେଣୁ ତାଙ୍କ ପକ୍ଷରୁ ବାରମ୍ବାର ଲୋକ ଆସୁଛନ୍ତି । ନିଜେ ରଘୁବାବୁ ଦୁଇଥର ଆସି ଗଲେଣି, ତୋ ବୋଉ ଗୁରୁଜେଜେଙ୍କୁ ଜାତକ ଦେଖାଇଥିଲେ । ସେ କହିଲେ ଏଇ ଆଷାଢ଼ ମାସ ଭିତରେ ନିଶ୍ଚୟ ବାହାଘର ହୋଇଯିବ । ତାଙ୍କ କଥାକୁ ଟାଳି ଦେଇ ହେବନାହିଁ । ତେଣୁ ତୋ ବାପା ବୋଉ ଏଥି ମଧ୍ୟରେ ଜବାବ ଦେବେ ବୋଲି ଭାବୁଛନ୍ତି । କ୍ଷେତ୍ରମଣି ବାପାବୋଉଙ୍କ ମାଉସୀ ହିସାବରେ ଗୁରୁଜନ ସ୍ଥାନୀୟା । ସେ ଯାହା କରୁଛି ବୁଝି ବିଚାରି କରୁଛି । ତୁ ଆଉ କୌଣସି କଥାରେ ବିରକ୍ତ ନହୋଇ ସବୁ ସେଇ ପ୍ରଭୁ ଗୋପାଳଜୀଉଙ୍କ ଉପରେ ଭରସା ରଖ । ତାଙ୍କର ଯାହା ଇଚ୍ଛା ତାହାହିଁ ହେବ । କ୍ଷେତ୍ରମଣି କହୁଥିଲା ଏଥିମଧ୍ୟରେ ତୁ ନିଜେ ଯାଇ ଝିଅକୁ ଟିକେ ଦେଖିଆସିବାକୁ ସେମାନେ ଚାହାଁନ୍ତି । ତୋର ଯଦି ପସନ୍ଦ ନହେଲା, ତେବେ ଏ ପ୍ରସ୍ତାବ ଭାଙ୍ଗିଦେବା । ମାତ୍ର ତୋ ବୋଉର ପସନ୍ଦ ହୋଇସାରିଛି ବୋଲି ସେମାନେ ଏତେ ଆଗେଇଛନ୍ତି ।

ଦିନେ ରବିବାରିଆ ରଘୁବାବୁ ଆସି ପହଁଚିଲେ । ସେଦିନ ସନ୍ଧ୍ୟାରେ ଆମ ସାହିର ସବୁ ମୁରବୀ ସ୍ଥାନୀୟ ଲୋକମାନେ ବସି ତାଙ୍କ ସହିତ କଥାଭାଷା ହେଲେ । ମୋର କଲେଜ ଖୋଲିବା ପୂର୍ବରୁ ବାହାଘର କାମଟା ସାରିଦେବାକୁ ମତ ଦେଲେ ରଘୁବାବୁ । ଗୁରୁଜେଜେଙ୍କୁ ପଚରାଗଲା । ସେ ଗଣନା କରି ଜୁଲାଇ ଦୁଇ ତାରିଖକୁ ଦିନଧାର୍ଯ୍ୟ କଲେ । ଏସବୁ ଦେଖି ମୁଁ ମାଆକୁ ଡାକି କହିଲି, ତୁମର ସେଠି ବାହାଘର କରିବା କଥାହେଲେ ମୋର କିଛି କହିବାର ନାହିଁ । ମାତ୍ର ଆଉ ଗୋଟାଏ ବର୍ଷ ଗଡ଼ାଇ ଦେଲେ ମୋର ଶେଷ ପରୀକ୍ଷା ପରେ ଯାହା କଲେ ଚଳିବ । କାରଣ ଏସବୁ ମୋର ପାଠପଢ଼ାରେ ବ୍ୟାଘାତ ସୃଷ୍ଟି କରିବ । ଶେଷବର୍ଷ ପରୀକ୍ଷାରେ ମୁଁ ଫେଲ୍ ହୋଇ ଯିବାର ଭୟ ଅଛି ।

ମାଆ କହିଲା, ତୋ ବୋଉ ଯାହା କରେ ସବୁକଥା ଗୁରୁଜେଜେଙ୍କୁ ପଚାରି ତାଙ୍କର ଉପଦେଶ ନିଏ । ତେଣୁ ସେ ତାଙ୍କୁ ପଚାରି ସବୁ ଠିକ୍ କରିଛି । ଗୁରୁଜେଜେ କହିଛନ୍ତି ଏଇ ଭିତରେ ନିଶ୍ଚିତ ବିବାହ ଯୋଗ ଅଛି । ବିବାହପରେ ତୋର ସବୁ ମଙ୍ଗଳ ହେବ। ସବୁ କ୍ଷେତ୍ରରେ ଉନ୍ନତି ଘଟିବ । ତେଣୁ ତୋ ବୋଉ ଏଥିରେ ଲାଗି ପଡ଼ିଛି । ତାକୁ କିଛି କହିଲେ ସେ ବିରକ୍ତ ହେବ । ସେପଟେ କ୍ଷେତ ଓ ରଘୁବାବୁ ସବୁ ବୁଝୁଛନ୍ତି । ସେମାନେ କହିଛନ୍ତି ବିବାହ ପରେ ବୋହୂ ତା ବାପଘରେ ରହିବ ।

ତୁ ଯେମିତି କଲେଜରେ ପଢୁଛୁ ସେମିତି ପଢ଼ିବୁ । ତୋର ଶେଷ ପରୀକ୍ଷା ପର୍ଯ୍ୟନ୍ତ ଆମ ଘରକୁ ବୋହୂ ଆସିବ ନାହିଁ । ଦେଖିଲି, ମୋ ହାତରେ ଆଉ କିଛି ନାହିଁ । ବୋଉ ସାଙ୍ଗେ କିଛି କଥା ହେବାକୁ ଚାହିଁଲେ ସେ ଶୁଣୁନାହିଁ । କହୁଛି, ସବୁ ସେଇ ଗୁରୁଦେବ ଓ ଇଷ୍ଟଦେବତା ଗୋପାଳଙ୍କ ହାତରେ । ବାପା ଅତ୍ୟନ୍ତ ସରଳ ଓ ଅମାୟୀକ ଲୋକ । କିଛି କଥା କହିଲେ ତାଙ୍କ ମନରେ ଦୁଃଖ ହେବ। ସେ ବେଶ୍ ଖୁସି ହେଉଛନ୍ତି । ଘରକୁ ବୋହୂ ଆସିବ । ଝିଅପରି କାରବାର ହେବ । ଘରେ କଅଁଳା ପିଲାର ପାଟି ଶୁଭିବ । ଘରେ ଭୋଜିଭାତ ଓ ପୂଜା ପାର୍ବଣର ଆନନ୍ଦ ଅନୁଭୂତ ହେବ । ହେଲେ, ଏସବୁରେ ମୋର ସୁଖ ନଥିଲା । କେବଳ ବାପା ବୋଉଙ୍କ ସୁଖପାଇଁ ଏସବୁ ହେଉଥିଲା । ସେମାନଙ୍କୁ ମୁଁ କଡ଼ା ଭାଷାରେ କିଛି କହିପାରୁ ନଥିଲି । ଯାହା କହୁଥିଲି କେବଳ ମାଆକୁ । ମାତ୍ର ମାଆ ମଧ୍ୟ ସେମାନଙ୍କ ସୁଖରେ ବାଧା ଦେବାକୁ ଋହୁଁ ନଥିଲା।

ମହାପ୍ରସାଦ ନିର୍ବନ୍ଧ ପରେ ସ୍ୱୀକାର ଆସିଲା । କନ୍ୟା ପକ୍ଷରୁ ଜ୍ୱାଇଁ ନିମନ୍ତଣ ଯୋଡ଼, ହାର, ମୁଦି, ଗରା, କୁଣ୍ଡ, ପିଲିସଜ, ଥାଳି ଗାଲିଚ଼ ନେଇ ବାରିକ ପୁରୋହିତ ଓ କୁଣିଆଁ ଆସି କର୍ମ କର୍ମାଣି କରି ଫେରିଗଲେ । ତାପରେ ୧୯୫୯ ମସିହା ଜୁଲାଇ ମାସ ଦୁଇ ତାରିଖରେ ବିବାହ ତିଥିରେ ଆଳିପିଙ୍ଗଳରୁ ଦୁଇଟି ବସ୍‌ରେ ବରଯାତ୍ରୀ ଓ ଗୋଟିଏ କାର୍‌ରେ ବର ଯାଇ ତେଲେଙ୍ଗା ବଜାର ସ୍ଥିତ ବାମସାହି ବସାରେ ପ୍ରାୟ ରାତି ଦଶଟା ସୁଦ୍ଧା ପହଞ୍ଚି ସେଇଠୁ ବାଜା ବାଣ ଓ ରୋଷଣି ସହ ରାତି ପ୍ରାୟ ଦୁଇଟା ସୁଦ୍ଧା କନ୍ୟାଗୃହ ମହମ୍ମଦିଆ ବଜାରରେ ପହଞ୍ଚିଲେ। ବରଯାତ୍ରୀମାନେ ଖାଇଲାବେଳକୁ ରାତିପ୍ରାୟ ତିନିଟା । ସାଙ୍ଗେ ସାଙ୍ଗେ ବିବାହକର୍ମ ଆରମ୍ଭ ହେଲା । ବେଦୀ ଉପରକୁ ଯିବା ପର୍ଯ୍ୟନ୍ତ ମୋତେ କିଛି ଲାଗୁ ନଥିଲା । ଯନ୍ତ୍ର ଚାଳିତ ରୋବୋଟ୍ ପରି ମାଆ କଥାରେ ମୁଁ ଏ ପର୍ଯ୍ୟନ୍ତ ଚାଲିଆସିଲି । ଯେତେବେଳେ ସମସ୍ତଙ୍କ ସାମ୍ନାରେ ମୁଁ ବିବାହ ବେଦୀରେ ବସିଲି, ସେତେବେଳେ ମୁଁ ଅନୁଭବ କଲି ଯେ, ଏବେ ମୁଁ ସାଂସାରିକ ଶୃଙ୍ଖଳରେ ଆବଦ୍ଧ ହେବାକୁ ଯାଉଛି । ମୋର ସାଙ୍ଗସାଥିମାନେ ଅବିବାହିତ ରହି ଯେପରି ମୁକ୍ତ ଜୀବନଯାପନ କରୁଛନ୍ତି; ମୋ ପକ୍ଷରେ ଆଉ ସେ ସୁଖ ରହିବ ନାହିଁ । ମୋ ବୟସର ଅନ୍ୟ ଯୁବକମାନଙ୍କଠାରୁ ଅଲଗା ହୋଇ ଏବେଠାରୁ ମୋତେ ସଂସାରୀ ହେବାକୁ ପଡ଼ିବ । ଏଇ ମୁହୂର୍ତ୍ତରୁ ମୋର ସ୍ୱାଧୀନ କୌମାର ଜୀବନର ଅବସାନ ଘଟିଲା । ମନଟା ପ୍ରବଳ ଦୁଃଖରେ ଭାରାକ୍ରାନ୍ତ ହୋଇ ଆସୁଥାଏ । ଫାଶୀ ଆସାମୀକୁ ଜେଲ୍ କର୍ତ୍ତୃପକ୍ଷ ଫାଶୀଖୁଣ୍ଟକୁ ନେଇଯିବା ପରି ବାରିକ ମୋ ହାତରେ ଚାଉଳ ଆଞ୍ଜୁଳି ଦେଇ ମୋତେ ବେଦୀ ଉପରକୁ ନେଇଯାଉଥିଲା । ସାମନାରେ ସବୁ

ଗୁରୁଜନମାନେ ବସିଥାଆନ୍ତି। ଯନ୍ତ୍ରଚାଳିତବତ୍ ମୁଁ ଯାଇ ବେଦୀରେ ବସି ପଡ଼ିଲି । ମୋର ଇଚ୍ଛା ବିରୁଦ୍ଧରେ ଏସବୁ ଯେ କଅଣ ଘଟି ଯାଉଛି; ସେଥିଲାଗି ମୁଁ ଇଷ୍ଟ ଦେବତା ଗୋପାଳଜୀଉଙ୍କୁ ସ୍ମରଣ କରି ତାଙ୍କରି ଇଚ୍ଛା ପୂରଣ ହେବାକୁ ପ୍ରାର୍ଥନା କରୁଥିଲି । ପ୍ରାୟ ଚାରି ଘଣ୍ଟା ପରେ ବିବାହ କାର୍ଯ୍ୟ ସମାପ୍ତ ହେଲା । ସେତେବେଳକୁ ପ୍ରାୟ ସକାଳ ଆଠଟା । ହେଲେ ମୁଁ ଅନୁଭବ କରୁଥାଏ ଯେ ସ୍ୱାମୀ ହେବାର ଯୋଗ୍ୟତା ମୋର ଏ ପର୍ଯ୍ୟନ୍ତ ହୋଇନାହିଁ । କାରଣ ବିବାହ ପରେ ନବପରିଣିତା ପତ୍ନୀକୁ ସନ୍ତୁଷ୍ଟ କରିବା ପାଇଁ ସାମାନ୍ୟ କାଚମୁଠାଏ କିଣିଦେବାର ଶକ୍ତି ମୋର ନାହିଁ । ସ୍ତ୍ରୀକୁ କୌଣସି ଯାତ୍ରା ପର୍ବରେ ବୁଲାଇବାର ସୁବିଧା ବା ସାମର୍ଥ୍ୟ ମୋର ନାହିଁ । ଗ୍ରୀଷ୍ମ ଛୁଟିରେ ବିବାହ କାର୍ଯ୍ୟ ସାରିଦେଇ କଲେଜ ଖୋଲିବା ମାତ୍ରେ ମୁଁ ପାଠପଢ଼ାରେ ନିୟୋଜିତ ହେବି । ଏ ବିବାହ କେବଳ ଦୁଇଟି ପରିବାରର ଖୁସି ପାଇଁ ହେଉଛି । ମୋ ବାପା ବୋଉ ବୋହୂଟିଏ ପାଇ ଖୁସି ହେବେ ଓ ଶ୍ୱଶୁର ଘର ଲୋକେ ବଡ଼ଝିଅର ବିବାହ ସମ୍ପନ୍ନ କରି ଦାୟିତ୍ୱରୁ ମୁକ୍ତ ହେବାର ଆନନ୍ଦ ଉପଭୋଗ କରିବେ ।

ବିବାହ କର୍ମ ପରେ ସକାଳେ ମହାପ୍ରସାଦ ସେବା ହେଲା । ବରଯାତ୍ରୀମାନେ ସମସ୍ତେ ମହାପ୍ରସାଦ ସେବାରେ ବସିପଡ଼ିଲେ । ମୋର ବାଡ଼ବାପାଙ୍କ ପୁଅ ଭାଇ ମୋତେ ବରଯାତ୍ରୀମାନଙ୍କ ସହିତ ବସିବାକୁ ଡାକିଲେ । ମାତ୍ର ବାପା ଓ ବଡ଼ବାପା କହିଲେ, ସେ କାଲି ଉପବାସରେ ଥାଇ ରାତି ଅନିଦ୍ରା ହୋଇଛି, ତେଣୁ ସେ ଦହି ପଖାଳ ଖାଇବାକୁ ଯାଉ ।

ଏସବୁ ଚିନ୍ତା କରିବା ଭିତରେ ଦାନ୍ତପତ୍ର ଘସି ଗାଧୋଇ ସାରି ଗାଧୁଆ ସୁଟ୍‌କେଶ୍ ଖୋଲି ନୂଆ ସାର୍ଟ ପ୍ୟାଣ୍ଟ ପରିଧାନ କରିବା ପରେ କନ୍ୟାଘର ପକ୍ଷରୁ ପଖାଳ ଖାଇବାକୁ ଡାକରା ଆସିଲା । ସ୍ୱର୍ଣ୍ଣଲତା ଓ ଗୀତାଞ୍ଜଳି ଦୁଇ ଶାଳି ଆସି ମୋତେ ଟାଣୁ ଥାଆନ୍ତି । ସ୍ୱର୍ଣ୍ଣଲତା ସେତେବେଳେ ଅଷ୍ଟମ ଶ୍ରେଣୀରେ ପଢୁଥାଆନ୍ତି । ଗୀତା ମଧ୍ୟ ଷଷ୍ଠ ଶ୍ରେଣୀର ଛାତ୍ରୀ । ଏହା ପୂର୍ବରୁ ଦୁହେଁ ପିଠାପଣା ନେଇ ଆମ ହଷ୍ଟେଲକୁ ଦୁଇ ତିନିଥର ଯାଇ ସାରିଛନ୍ତି। ମୋ ସହପାଠୀମାନଙ୍କ ସହିତ ଏ ଦୁହେଁ ବେଶ୍ ପରିଚିତ । ଗୀତା ତଳେ ଚତୁର୍ଥ ଶ୍ରେଣୀରେ ପଢୁଥିବା ଗୋଟିଏ ଭାଇ (ରଞ୍ଜୁ) । ତା ତଳେ ଛଅବର୍ଷର ଭଉଣୀ ବେବି ଓ ବେବି ତଳେ ରୁନୁ ଓ ରତୁ ଦୁଇଭାଇ । ରତୁ ସେତେବେଳକୁ ମାତ୍ର ବର୍ଷକର ପିଲା । ଏପରି ସେମାନେ ଚାରିଭାଇ ଓ ଚାରି ଭଉଣୀ । ମୋତେ ଦେଖି ବେବି ଆନନ୍ଦରେ ନାଚୁଥାଏ । ସକାଳେ ମହାପ୍ରସାଦ ସେବା ସାରି ବରଯାତ୍ରୀମାନେ ଫେରିଗଲେ । ବାପା, ନିତାଇଦାଦା, ମାମୁଁ ଇତ୍ୟାଦି ଆମର ପାରିବାରିକ ଲୋକ

ପ୍ରାୟ ଘାରି ଛଅଜଣ ପର୍ଯ୍ୟନ୍ତ ରହି ବରକନ୍ୟାଙ୍କୁ ନେଇ ଅପରାହ୍ଣ ଘରିଟା ସୁଦ୍ଧା ଗାଆଁକୁ ଫେରିଲେ ।

ଆମଘରେ ମୋ ଭଉଣୀ, ପିଉସୀ, ସେମାନଙ୍କ ପିଲାଛୁଆ ଓ ମାମୁଁଘର ଲୋକଙ୍କର ଭିଡ଼ ଥାଏ । ତା ସାଙ୍ଗକୁ ଗାଆଁ ଲୋକଙ୍କ ଗହଳି ମଧ ଲାଗିଗଲା । ଚତୁର୍ଥୀ ସପ୍ତମଙ୍ଗଳା ପର୍ଯ୍ୟନ୍ତ ଅନ୍ୟାନ୍ୟ ବନ୍ଧୁବାନ୍ଧବଙ୍କ ଯିବା ଆସିବା ଭିତରେ ଘରଟା ଆନନ୍ଦ ମୁଖର ହୋଇଥାଏ । ଦିନବେଳେ ମୁଁ ଶୋଇବା ଘରକୁ ଯିବାକୁ ମାଆ ମୋତେ ମନା କରିଥାଏ । ରାତି ପ୍ରାୟ ଏଗାରଟା ପରେ ସ୍ନେହଲତାଙ୍କ ସହିତ ମୋର ଭେଟ ହୁଏ । ତାଙ୍କର ଜନ୍ମ କେନ୍ଦ୍ରାପଡ଼ାର ହାଟବାଣପୁର ଗ୍ରାମରେ । ବାପାବୋଉ ଭାଇ ଓ ଦୁଇ ଭଉଣୀଙ୍କ ସହିତ ଦଶବର୍ଷ ବୟସ ପର୍ଯ୍ୟନ୍ତ ଗାଆଁରେ ସେ ଥିଲେ । ଗାଆଁର ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷା ସମାପ୍ତ କରିବା ପରେ ତାଙ୍କ ଗାଆଁଠାରୁ ତିନି କିଲୋମିଟର ଦୂରସ୍ଥ ଦୋହଳିର ଶ୍ରୀ ବନମାଳି ବ୍ରହ୍ମଚାରୀଙ୍କ ଘରେ ରହି ତଳଭାଇ ରମେଶ ସହିତ ସେ ଚତୁର୍ଥ ଶ୍ରେଣୀରେ ପଢ଼ିଲେ। ସେତେବେଳେ ଶ୍ରୀ ବ୍ରହ୍ମଚାରୀ ଦୋହଳିଠାରେ ମାଇନର୍ ସ୍କୁଲ ଆରମ୍ଭ କରିଥାନ୍ତି । ଭାଇ ଭଉଣୀ ଦୁହେଁ ତାଙ୍କ ଘରେ ରହି ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଲେ । ବ୍ରହ୍ମଚାରୀଙ୍କ ଝିଅ କମଳାଅପା ଏ ଦୁହିଁଙ୍କୁ ଦେଖାଶୁଣା କରୁଥାନ୍ତି ।

ସ୍ନେହଲତାଙ୍କ ମଉସା ଶ୍ରୀ ବିପ୍ରଚରଣ ଦାସ ସେତେବେଳେ କଟକରେ ମୁନ୍‌ସିଫ ମାଜିଷ୍ଟ୍ରେଟ୍ ଥାଆନ୍ତି । ତାଙ୍କର ଏକମାତ୍ର ସଢୁ ଯୋଗେନ୍ଦ୍ରଙ୍କୁ କଟକ ଅଣାଇ କୌଣସି ବ୍ୟବସାୟରେ ଲଗାଇବା ପାଇଁ ଚେଷ୍ଟା କରୁଥିଲେ ବିପ୍ରବାବୁ । ତେଣୁ ଯୋଗିବାବୁ ବଡ଼ଝିଅ ସ୍ନେହଲତା ଓ ପୁଅ ରମେଶଙ୍କୁ ନେଇ କଟକ ଆସିଲେ । କଟକରେ ସେ ସିମେଣ୍ଟ ବ୍ୟବସାୟ ଆରମ୍ଭ କଲେ ଓ ଝିଅ ସ୍ନେହଲତାଙ୍କୁ ରେଭେନ୍ସା ବାଳିକା ବିଦ୍ୟାଳୟରେ ଷଷ୍ଠ ଶ୍ରେଣୀରେ ପଢ଼ାଇଲେ । ରମେଶ ପଢ଼ିଲା ମିଶନ୍ ସ୍କୁଲରେ । ସେମାନେ ମହମ୍ମଦିଆ ବଜାରରେ ଘରଭଡ଼ା ନେଇ ରହିବା ପରେ ତାଙ୍କ ବୋଉଙ୍କ ସହିତ ସାନ ଦୁଇଭଉଣୀ ସ୍ୱର୍ଣ୍ଣଲତା ଓ ଗୀତାଞ୍ଜଳି କଟକ ଆସିଲେ । କଟକରେ ତାଙ୍କର ଆଉ ତିନିଭାଇ ଓ ଗୋଟିଏ ଭଉଣୀର ଜନ୍ମ ହେଲା । ସ୍ନେହଲତାଙ୍କ ବିବାହର ପୂର୍ବବର୍ଷ ସବା ସାନଭାଇ ରଜତ୍‌ର ଜନ୍ମ ହୋଇଥିଲା । ତେଣୁ ଭାଇଭଉଣୀମାନଙ୍କ ସହିତ ମାଆଙ୍କୁ ଘରକାମରେ ସେ ଦୀର୍ଘଦିନ ଧରି ସାହାଯ୍ୟକରି ଆସୁଥିଲେ। ମାଟ୍ରିକ୍ ପର୍ଯ୍ୟନ୍ତ ପଢ଼ାଶେଷ କରି ଆଉ ସେ କଲେଜ ଯାଇନାହାନ୍ତି। ମୋ ବୋଉର ଆକଳନ ଅନୁଯାୟୀ ଘରକରଣାରେ ସେ ବେଶ୍ ଦକ୍ଷ ଓ ଶାଶୁ ଶଶୁର, ଆଇଶାଶୁଙ୍କ ପ୍ରତି ଯଥୋଚିତ କର୍ତ୍ତବ୍ୟ ସମ୍ପାଦନ କରିବାରେ ତାଙ୍କର ତ୍ରୁଟି ନଥିଲା ।

ଗାଆଁରେ ମାତ୍ର ପନ୍ଦରଦିନ ପର୍ଯ୍ୟନ୍ତ ରହିବା ପରେ ଆମର କଲେଜ ଖୋଲିଗଲା । ଏଥର ଆଉ କଟକ ନଯାଇ ସିଧା ଭୁବନେଶ୍ୱର ଗଲି । ଆଜିର ସୂଚନା ଭବନ (ଜୟଦେବ ଭବନ) ପଛପଟେ ଥିଲା ବସ୍‌ଷ୍ଟାଣ୍ଡ । ସେଠି ଓହ୍ଲାଇ ରିକ୍ସାରେ ଶିରିପୁର ଛକକୁ ଗଲେ ପଶୁଚିକିତ୍ସା ମହାବିଦ୍ୟାଳୟ । ଶିରିପୁର ଦେଇ ପାଞ୍ଚନମ୍ବର ଜାତୀୟ ରାଜପଥ ଖଣ୍ଡଗିରି ଧାରେ ଧାରେ ଖୋର୍ଦ୍ଧାକୁ ରାସ୍ତା ପଡ଼ିଥାଏ। ପାଖକୁ ଲାଗି କୃଷି ମହାବିଦ୍ୟାଳୟ ଓ ଫାର୍ମ । କଲେଜ ଅଫିସ ପାଖକୁ ଛାଡ଼ି ଛାଡ଼ି ବିଭିନ୍ନ ବିଭାଗ ସବୁ ପଶ୍ଚିମରୁ ପୂର୍ବକୁ ଦୁଇଧାଡ଼ି ହୋଇ ତିଆରି ହୋଇଛି । ପଶ୍ଚିମପଟେ ଆମର ଛାତ୍ରାବାସ । ମୋର ରୁମ୍‌ମେଟ୍‌ମାନଙ୍କୁ ଖୋଜିଲି । ସେମାନେ ଉପରମହଲାରେ ଥିବା ଷାଠିଏ ନମ୍ବର ରୁମ୍‌ରେ ରହିଛନ୍ତି । ଶରତ୍ ମହାପାତ୍ର ଓ ବିଶ୍ୱନାଥ ଆଚାର୍ଯ୍ୟଙ୍କ ସାଙ୍ଗକୁ ନୂଆ ସାଥି ବିପିନ୍ ମହାପାତ୍ର ଅଛନ୍ତି । ମୋ ପାଇଁ ଗୋଟିଏ ଖଟ ଛାଡ଼ି ଦେଇଛନ୍ତି । ଖଗେଶ୍ୱର ପ୍ରଧାନ ଗୋଟିକିଆ କୋଠରୀଟିଏ ନେଇ ଆମଠୁଁ ଅଲଗା ହୋଇ ରହିଛନ୍ତି । କୋଠରୀ ଭିତରେ ଆଲୋକ ଓ ପବନର ପ୍ରାଚୁର୍ଯ୍ୟ । ଝରକା ଖୋଲି ଦେବା ମାତ୍ରେ ଦକ୍ଷିଣା ପବନର ମୃଦୁ ହିଲ୍ଲୋଳରେ ପୁଲକିତ ହେଉଥାଏ ମନ । ତଳମହଲାରେ ଉତ୍ତରପଟକୁ ଦୁଇଟା ମେସ୍ ଓ କ୍ୟାଣ୍ଟିନ୍ ଥାଏ । ସକାଳ ଓ ସନ୍ଧ୍ୟାରେ କ୍ୟାଣ୍ଟିନ୍‌ରେ ଚା ଓ ଜଳଖିଆ ଖାଇବାକୁ ମିଳେ । ଆଠଟାରୁ ବାରଟା ପର୍ଯ୍ୟନ୍ତ କଲେଜରେ ପାଠପଢ଼ା ହୁଏ । ତାପରେ ଦୁଇଟା ପର୍ଯ୍ୟନ୍ତ ଖାଇବା ଛୁଟି । ମେସ୍‌ରେ ଖାଇସାରି ଅଳ୍ପ ସମୟ ବିଶ୍ରାମ ନେବାପରେ ପୁଣି ଅପରାହ୍ଣ ଦୁଇଟାରୁ ପାଞ୍ଚଟା ପର୍ଯ୍ୟନ୍ତ କଲେଜ ପଢ଼ା । ସାନ୍ଧ୍ୟ ଜଳଖିଆ ପରେ ରୁମ୍‌ରେ ବସି ପଢ଼ାରେ ଲାଗିଯାଉ । କଟକ ତୁଳନାରେ ଭୁବନେଶ୍ୱର ପାଣିପବନ ଖୁବ୍ ସ୍ୱାସ୍ଥ୍ୟକର ବୋଧ ହେଉଥାଏ । କୃଷି କଲେଜ ପରେ ଖଣ୍ଡଗିରି ପର୍ଯ୍ୟନ୍ତ ଫାର୍ମ ଓ ବୁଦିବୁଦିକିଆ ଜଙ୍ଗଲ । ଖଣ୍ଡଗିରିଠାରୁ ଦିଗନ୍ତ ବିସ୍ତାରୀ ଚନ୍ଦକା ଜଙ୍ଗଲ ହାତୀ, ବାଘ, ଭାଲୁ ଆଦି ବଣ୍ୟପ୍ରାଣୀରେ ଭରପୂର ଥାଏ । ଖଣ୍ଡଗିରି ପର୍ଯ୍ୟନ୍ତ ରାସ୍ତା ଦୁଇକଡ଼ରେ ମଝିରେ ମଝିରେ ଗୋଟିଏ ଦୁଇଟି ଗାଆଁ ଥାଏ । ସାନ୍ଧ୍ୟ ଜଳଖିଆ ସାରି ଫାର୍ମ ଆଡ଼େ ବୁଲିଆସିବାକୁ ଭଲ ଲାଗେ ।

କଲେଜ ଖୋଲିବାର ଦୁଇତିନିମାସ ପରେ ମହାବିଦ୍ୟାଳୟର ଉଦ୍‌ଘାଟନ ଉତ୍ସବ ହେଲା । ମୁଖ୍ୟ ଅତିଥିଭାବେ କେନ୍ଦ୍ର ଅର୍ଥମନ୍ତ୍ରୀ ମୋରାର୍ଜୀ ଦେଶାଇ ଆସିଥାନ୍ତି । ଆମେ ଛାତ୍ରମାନେ ଧଳା ପ୍ୟାଣ୍ଟ ଓ ସାର୍ଟ ସହିତ ଲାଲ୍‌ରଙ୍ଗର ଟାଇ ଭିଡ଼ି ରାସ୍ତାର ଦୁଇ କଡ଼ରେ ଠିଆ ହୋଇଥାଉ । ଶ୍ରୀଯୁକ୍ତ ଦେଶାଇ ମୋ ଆଡ଼କୁ ଆଗେଇ ଆସି ଟାଇଟାକୁ ଧରି ହଲାଇଦେଇ ପଚାରିଲେ "ଇସ୍‌କୋ ଲଗାନେକା ଜରୁରତ୍ କ୍ୟା ହୈ ? ହମାରେ ଦେଶ୍ ଛୋଡ଼୍ କର ଇଂଲିଶ୍ ଲୋକ ଚଲେଗୟେ । ଅବ୍ ଉନ୍ ଲୋଗୋଁକା ଡ୍ରେସ୍‌କା ମତ୍‌ଲବ୍ କ୍ୟା ହୈ ?"

ମୁଁ କିଛି ନକହି କେବଳ ହସି ଦେଲି । ସାଙ୍ଗମାନେ ମୋତେ ବେଢ଼ିଯାଇ ପଚାରିଲେ, ବୁଢ଼ା ତୋ ଟାଇ କାହିଁକି ଭିଡୁଥିଲା ? କହିଲି, ରକ୍ଷା ହୋଇଗଲା । ବୁଢ଼ା କେବଳ ଟାଇ ଟା ଭିଡ଼ି ଦେଇଛି । ଜାବୁଡ଼ା ମାରିନି । ସେହି ଉତ୍ସବ ଉପଲକ୍ଷେ ଆମେ ସବୁ ଥିଏଟରରେ ମାତିଲୁ ।

ଉଦ୍‌ଘାଟନ ଉତ୍ସବ ପରେ ମହାବିଦ୍ୟାଳୟରେ ଯଥାରୀତି ପଢ଼ାପଢ଼ି ଚାଲିଲା । ସେତିକିବେଳେ ଆମ କଲେଜର ଅଧକ୍ଷ ଡଃ ଗଣେଶ୍ୱର ବିଶ୍ୱାଳଙ୍କର ବିଭାଗୀୟ ନିର୍ଦ୍ଦେଶକ ଭାବେ ପଦୋନ୍ନତି ହେଲା । ସେ ଯାଇ କଟକର ମଙ୍ଗଳାବାଗସ୍ଥିତ ପଶୁଚିକିତ୍ସା ନିର୍ଦ୍ଦେଶାଳୟରେ ନିର୍ଦ୍ଦେଶକ ପଦବୀରେ ଯୋଗଦେଲେ । ସେ ଅତ୍ୟନ୍ତ ଛାତ୍ରବତ୍ସଳ ଥିଲେ । ତେଣୁ ତାଙ୍କର ଅନୁପସ୍ଥିତି ଅଧିକାଂଶ ଛାତ୍ରଙ୍କୁ ଭଲ ଲାଗୁନଥାଏ । ସେ ବିଭାଗୀୟ ନିର୍ଦ୍ଦେଶକ ହେବାପରେ ଆମର ଭାରତଭ୍ରମଣ (Excursion) ପାଇଁ ଅର୍ଥ ମଞ୍ଜୁର କଲେ । ମଝିରେ ମଝିରେ ଶନିବାରିଆ ଦେଖି ମୁଁ ଗାଆଁକୁ ଯାଏ । ଉପରବେଳା କ୍ଲାସ୍‌ରେ ଯୋଗ ନଦେଇ ବସ୍‌ରେ କଟକ ଓ କଟକରୁ ଜଗତସିଂହପୁର ଯାଇ ସେଠୁ ରିକ୍ସାରେ ଗାଆଁରେ ପହଞ୍ଚିଲା ବେଳକୁ ରାତି ପ୍ରାୟ ଆଠ ନଅଟା ହୋଇଯାଏ । ସ୍ନେହଲତା ବହୁତ ଖୁସି ହୁଅନ୍ତି । ହେଲେ, ମୋତେ ଖୁବ୍ ବାଧା ଲାଗେ । ପୁଣି ରବିବାର ରାତି ନ ପାହୁଣୁ ଜଗତସିଂହପୁରରୁ ବସ୍ ଧରି କଟକ ଆସି ସେଠୁ ଭୁବନେଶ୍ୱରରେ ପହଞ୍ଚି କ୍ଲାସ୍‌ରେ ଯୋଗଦେଲା ବେଳକୁ ଦଶଟା ପାଖାପାଖି ହୋଇଥାଏ । ତେଣୁ ମାଆ କହିଲା, ବୋହୂକୁ ତା ବାପଘରକୁ ପଠାଇ ଦିଅ । ଏଠି ରହି ସେ କଅଣ କରିବ? ବାପା ବୋଉ ତା କଥାରେ ରାଜି ହେଲେ । କଥା ହେଲା, ଦଶହରା ପରେ ବୋହୂ ତା ବାପଘରେ ରହିବ । ଇତି ମଧ୍ୟରେ ସ୍ନେହଲତା ଗର୍ଭବତୀ ହେବାର ଲକ୍ଷଣ ପ୍ରକାଶ ପାଇଲା । ଆମ ଘରେ ସମସ୍ତେ ଛୁଆଟିଏ ଆସିବାର ଆଶାରେ ଖୁସି ହେଉଥାନ୍ତି । ମାତ୍ର ମୋ ମନରେ ସରାଗ ନଥାଏ ।

ଦଶହରା ଛୁଟିରେ ମୁଁ ଗାଆଁକୁ ଗଲାବେଳେ ସ୍ନେହଲତା ମୋର ବିରସ ଭାବ ଦେଖି ପଚାରିଲେ, ତୁମେ କାହିଁକି ଅସୁଖୀ ହେଉଛ? କହିଲି, ଛାତ୍ରବସ୍ଥାରେ ମୁଁ ବିବାହ କଲି । ସ୍ତ୍ରୀ ପାଇଁ ବ୍ଲାଉଜଟାଏ କିଣି ଦେବାର ଶକ୍ତି ମୋର ନାହିଁ । ସେଥିରେ ପୁଣି ପିଲାଟିଏ ହେବ । ବାପର କର୍ତ୍ତବ୍ୟ କରିବା ଶକ୍ତି ମୋର ନଥିବ । ଏସବୁ ଭାବି ପାଠପଢ଼ାରେ ମୋର ମନ ରହୁନାହିଁ । ପରୀକ୍ଷାରେ କ'ଣ ହେବ ଈଶ୍ୱର ଜାଣନ୍ତି । ସ୍ନେହ ମୋତେ ବୋଧଦେଇ କହିଲେ, ତୁମେ ତୁମ ନିଜ ଇଚ୍ଛାରେ ବିବାହ କରିନା । ତୁମ ବାପାବୋଉ ଓ ମୋ ବାପାବୋଉ ସବୁ ଜାଣିଶୁଣି ଏହା କରାଇଛନ୍ତି । ତେଣୁ ସବୁକଥା ସେମାନଙ୍କ ଉପରେ ଛାଡ଼ିଦେଇ ତୁମେ ପାଠପଢ଼ାରେ ଲାଗିପଡ଼ । ବର୍ଷଟାଏ

ବିତିଗଲେ ତୁମେ ନିଜ ଗୋଡ଼ରେ ଠିଆ ହେବ । ସେ ପର୍ଯ୍ୟନ୍ତ ମୋ ଦାୟିତ୍ୱ ତୁମ ଉପରେ ନାହିଁ । ପିଲାଟିଏ ହେଲେ ମଧ୍ୟ ସେଇମାନେ ବୁଝିବେ । ଏସବୁ କଥାରେ ତୁମେ ଚିନ୍ତାଗ୍ରସ୍ତ ହେବା ଠିକ୍ ନୁହେଁ । ଏକଥା ଜାଣିଲେ ମୋ ବାପା ବୋଉଙ୍କ ମନଦୁଃଖ ହେବ । ଦଶହରା ପରେ ମୁଁ ଆମ ଘରକୁ ଚାଲିଯିବି । ଭୁବନେଶ୍ୱରରୁ କଟକ ଆସିବାରେ ତୁମ ପକ୍ଷରେ ସୁବିଧାଜନକ ହେବ । ଆର୍ଥିକ ଦିଗରୁ ମଧ୍ୟ ତୁମର ସୁବିଧା ହୋଇଯିବ । ଏଇ ଭଳି ବର୍ଷଟାଏ ବିତିଯିବା ପରେ ତେଣିକି ଆଉ ଚିନ୍ତା ନଥିବ।

କଟକରୁ ପର୍ବପର୍ବାଣିରେ ଶ୍ୱଶୁରଘରୁ ବହୁତ ଜିନିଷ ଆସେ । ରଜ, ସାବିତ୍ରୀ, ଗହ୍ମାପୂର୍ଣ୍ଣମୀ, ଦଶହରା କୁମାର ପୂର୍ଣ୍ଣମୀ ଆଦି ପର୍ବରେ ଯାହା ସବୁ ଭାରବେଭାର ଆସେ ସାହି ସାରା ବଣ୍ଟାହୁଏ । ଲୋକେ ଖୁସି ହୁଅନ୍ତି । ଘରେ ଏଇଭଳି ଚାଲିଲେ ବାପା ସବୁଠାରୁ ବେଶୀ ଖୁସି। ଖାଇବା ପିଇବା ଦିଆନିଆରେ ତାଙ୍କର ବେଶୀ ଆନନ୍ଦ । କୁମାର ପୂର୍ଣ୍ଣମୀ ପରେ ଗାଆଁରୁ ମୁଁ କଲେଜକୁ ଚାଲିଆସିଲି । ସାତଆଠ ଦିନ ଛାଡ଼ି ସ୍ନେହଲତାଙ୍କୁ ନେଇ ବାପା କଟକଆସି ତାଙ୍କଘରେ ଛାଡ଼ି ଦେଇଗଲେ ।

ଦୀପାବଳି ପରେ ଆମ ଶେଷବର୍ଷ ଛାତ୍ରମାନଙ୍କର ଉତ୍ତରଭାରତ ଭ୍ରମଣ ପାଇଁ ନୋଟିସ୍ ଜାରୀ ହେଲା । ଆମ ସହିତ ମେଡ଼ିସିନ୍ ବିଭାଗର ମୁଖ୍ୟ ଡଃ ଶିବପ୍ରସାଦ ମିଶ୍ର ଓ ପାଥୋଲୋଜି ବିଭାଗୀୟ ମୁଖ୍ୟ ଡାକ୍ତର ଲୋକନାଥ ଦାସ ଦୁଇଜଣ ଅଧ୍ୟାପକ ଯିବା କଥା ହେଲା । ଦୀପାବଳି ଉତ୍ସବର ଗୋଟିଏ ସପ୍ତାହ ପରେ ଆମେ ପ୍ରାୟ ଚାଳିଶଜଣ ଛାତ୍ର ଉତ୍ତର ଭାରତ ଭ୍ରମଣରେ ବାହାରିଲୁ । ପୁରୀ ଏକ୍ସପ୍ରେସରେ କଲିକତା ଯାଇ ବେଙ୍ଗଲ୍ ଭେଟେରିନାରୀ କଲେଜ ଛାତ୍ରାବାସରେ ରହିଲୁ । ସେ ମହାବିଦ୍ୟାଳୟ ପରିଦର୍ଶନ ପରେ ତାପରଦିନ ହାରିନ୍‌ଘାଟା ଯାଇ ସରକାରୀ ଦୁଗ୍ଧ ଉତ୍ପାଦନ ଫାର୍ମ ଦେଖିଲୁ । ଏଥିପୂର୍ବରୁ ମୁଁ ଓଡ଼ିଶା ବାହାରକୁ ଯିବାର ସୁଯୋଗ ପାଇନଥିଲି । କଲିକତାରେ ଆମ ଗାଆଁରୁ ବହୁଲୋକ ଆସି ଝୋଟକଳମାନଙ୍କରେ କାମ କରୁଥିଲେ । ଆଜି ପ୍ରଥମକରି କଲିକତା ଦେଖିବାର ସୁଯୋଗ ମୋତେ ମିଳିଲା । ବନ୍ଧୁମାନଙ୍କ ଗହଣରେ ମା’କାଳୀଙ୍କର ଦର୍ଶନ ଓ ରାମକୃଷ୍ଣ ପରମହଂସଙ୍କ ବେଲୁଡ଼ମଠ ଦେଖି ମୁଁ କୃତ୍ୟକୃତ୍ୟ ହେଲି । ଏଥିସହିତ ଚିଡ଼ିଆଖାନା ଓ ଯାଦୁଘର ମୋ ପାଇଁ ବେଶ୍ ଆମୋଦଦାୟକ ଥିଲା । ଓଡ଼ିଶାର ନନ୍ଦନକାନନ ସେତେବେଳେ ନଥିଲା । ତାପରଦିନ କଲିକତାର ସମସ୍ତ ଦର୍ଶନୀୟ ସ୍ଥାନ ବୁଲିସାରି ରାତି ଟ୍ରେନ୍‌ରେ ପାଟନା ଭେଟେର୍‌ନାରୀ କଲେଜକୁ ଗଲୁ । ସେଠାରେ ଦୁଇଦିନ ରହି ସବୁ ଦେଖାଦେଖିକରି ଗଲୁ ବନାରସ୍ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ରହି ସେଠାକାର ପଶୁପାଳନ ମହାବିଦ୍ୟାଳୟ ସମେତ ସେହି ପ୍ରଖ୍ୟାତ ବିଶ୍ୱ ବିଦ୍ୟାଳୟର ବିଭିନ୍ନ ବିଭାଗ ବୁଲିସାରି କାଶୀବିଶ୍ୱନାଥଙ୍କ

ମନ୍ଦିର ଦଶାଶ୍ବମେଧ ଘାଟ ଆଦି ବୁଲାବୁଲି କରି ରାତି ଦଶଟା ସୁଦ୍ଧା କୃଷି ମହାବିଦ୍ୟାଳୟ ଛାତ୍ରାବାସରେ ଯାଇ ରହିଲୁ । ବନାରସ ବିଷୟରେ ମୁଁ ଶୁଣିଥିଲି ଓ ଏହା ଭାରତବର୍ଷର ବିଦ୍ୟାନଗରୀ ବୋଲି ଜାଣିଥିଲି । ବନାରସ ହିନ୍ଦୁ ବିଶ୍ଵବିଦ୍ୟାଳୟ ମାଆ ସରସ୍ଵତୀଙ୍କ ଆବାସସ୍ଥଳ । ସତ୍ୟଯୁଗରେ ରାଜା ହରିଶ୍ଚନ୍ଦ୍ର ଏହି ପବିତ୍ର ଶ୍ମଶାନରେ ଜଗୁଆଳ କାର୍ଯ୍ୟ କରୁଥିଲେ । ଏହି ପବିତ୍ର ନଗରୀ କୈଳାସପତି ଶିବଙ୍କର ବାସ ସ୍ଥାନ । ଗଙ୍ଗାଜଳ ମୁଣ୍ଡରେ ଛିଞ୍ଚି ହୋଇ ନିଜକୁ ପବିତ୍ର କଲି । ବନାରସରେ ଦୁଇଦିନ ରହି ଆମେ ଆଲାହାବାଦ ଗଲୁ । ଗାନ୍ଧିଙ୍କ ପଟ୍ଟଶିଷ୍ୟ ପ୍ରଧାନମନ୍ତ୍ରୀ ଜବାହାର ଲାଲ୍ ନେହେରୁଙ୍କ ଜନ୍ମସ୍ଥାନ ଏ ସହର ।

ପରଦିନ ପଡ଼ିଥାଏ ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା । ଆମପାଇଁ ଦୁଇଟି ଡଙ୍ଗା ଭଡ଼ାରେ ନିଆଗଲା । ଯମୁନା ନଦୀରେ ଡଙ୍ଗାରେ ଯାଇ ଆମେ ତ୍ରିବେଣୀ ସଂଗମ ସ୍ଥଳରେ ଓହ୍ଲାଇଲୁ । ତ୍ରିବେଣୀ ସ୍ନାନ ପାଇଁ ସେଠାରେ ଲକ୍ଷାଧିକ ଲୋକଙ୍କର ସମାଗମ । ଆମେ ସବୁ ଡଙ୍ଗାରେ ପୋଷାକ ବଦଳି ସଂଗମରେ ସ୍ନାନ କରିବାକୁ ଗଲୁ । ବାମ ପାର୍ଶ୍ଵରେ ପତିତପାବନୀ ଗଙ୍ଗାଙ୍କର ପ୍ରଖର ସ୍ରୋତ ସହିତ ଦକ୍ଷିଣ ପାର୍ଶ୍ଵରୁ ଧୀରଗାମିନୀ ଯମୁନାଙ୍କର ନୀଳଜଳସ୍ରୋତ ମିଳିତ ହୋଇଛି । ସରସ୍ଵତୀନଦୀର ଗୁପ୍ତଧାର ସହିତ ମିଶି ସେଠାରେ ସୃଷ୍ଟି ହୋଇଛି ଗଙ୍ଗା, ଯମୁନା, ସରସ୍ଵତୀଙ୍କର ତ୍ରିବେଣୀ ଧାରା । ସେହି ପବିତ୍ର ଜଳରେ ପୂର୍ଣ୍ଣିମା ପରି ପୁଣ୍ୟତିଥିରେ ସ୍ନାନ କରିବା ଲାଗି ଶହ ଶହ ଡଙ୍ଗାରେ ଯାତ୍ରୀମାନେ ଆସି ପହଞ୍ଚୁଛନ୍ତି । ସେହି ବାଲିପନ୍ତାର ଯେଉଁ କୋଣରେ ଦୁଇନଦୀଙ୍କର ମିଳନ ହୋଇଛି, ମୁଁ ସେ ସ୍ଥାନକୁ ଯାଇ ଦେଖିଲି । ବାମପାର୍ଶ୍ଵରେ ଗଙ୍ଗାଙ୍କର ବିସ୍ତୀର୍ଣ୍ଣ ଧୂସର ଜଳରାଶି ଓ ଦକ୍ଷିଣ ପାର୍ଶ୍ଵରେ ଯମୁନାଙ୍କର ନୀଳଜଳରାଶିର ମିଳିତ ସ୍ରୋତ ବହୁ ଦୂର ପର୍ଯ୍ୟନ୍ତ ଦୃଷ୍ଟି ଗୋଚର ହେଉଛି । ମାତ୍ର ଲୋକମାନେ ଗଙ୍ଗାରେ ନ ଗାଧୋଇ ଯମୁନା ଜଳରେ ସ୍ନାନ କରୁଛନ୍ତି । ମୋ ସହିତ ସହପାଠୀ ଗୋବିନ୍ଦ ମିଶ୍ର ଥାଆନ୍ତି । ଡାକିଲି ଗୋବିନ୍ଦ ଭାଇନା ଆସ ସେ ସଙ୍ଗମ ସ୍ଥଳରେ ଗାଧୋଇବା । ସେ କହିଲେ, ସମସ୍ତେ ତ ଯମୁନାରେ ଗାଧୋଉଛନ୍ତି, ତୁମେ ସଙ୍ଗମ ସ୍ଥଳରେ ଗାଧୋଇବାକୁ କାହିଁକି ମନ କରୁଛ ? କହିଲି, ତ୍ରିବେଣୀ ସଙ୍ଗମ ଅର୍ଥ କେବଳ ଯମୁନା ନୁହେଁ, ସେହି ସ୍ଥାନରେ ସରସ୍ଵତୀ ମଧ୍ୟ ଗୁପ୍ତରେ ମଧ୍ୟ ଥିବେ । ଗୋବିନ୍ଦ ବାବୁ କହିଲେ ନାଇଁ ମୁଁ ସେଠିକି ଯିବିନାହିଁ । ଆମର ଅନ୍ୟସବୁ ସହପାଠୀ ଯମୁନାରେ ଗାଧୋଇବାରେ ବ୍ୟସ୍ତ । ଲକ୍ଷ ଲକ୍ଷ ଲୋକଙ୍କ ସମାବେଶରେ ପ୍ରବଳ ଘୋ ଘୋ ଶବ୍ଦ ହେଉଥାଏ । ପାଖଲୋକଙ୍କୁ ବଡ଼ପାଟିରେ ନ କହିଲେ କିଛି ଶୁଭୁନଥାଏ ।

ମୁଁ ଏକା ଏକା ତ୍ରିବେଣୀ ସଂଗମକୁ ଚାଲିଲି । ଅଳ୍ପ ପାଣିରେ ଠିଆ ହୋଇ ତ୍ରିବେଣୀ ଜଳରେ ସ୍ନାନ କରିବାକୁ ଆଣ୍ଠୁଏ ପାଣିରେ ପଶିଗଲି । ସେଠି ଠିଆ ହୋଇ

ସାମନାରେ ବୋହି ଯାଉଥିବା ମିଳିତ ଧାରାକୁ ଲକ୍ଷ୍ୟ କଲାବେଳେ ପଛରୁ ଜଣେ ବୟସ୍କ ଲୋକ ପାଟି କରି ଡାକିଲେ - ହେ ବେଟା, ଉଧର ମତ୍ ଯାଓ । ଏକଥା ଶୁଣି ମୁଁ ସେହି ଜଳରୁ ଟିକେ ମୁଣ୍ଡରେ ଛିଞ୍ଚି ହୋଇ ଫେରି ଆସିବାକୁ ବୁଲିପଡ଼ିଲି । ମାତ୍ର ବୁଲି ପଡ଼ିବା ମାତ୍ରେ ମୋ ଗୋଡ଼ତଳୁ ବାଲି ଖସିଗଲା ଓ ମୁଁ ଆଣ୍ଠୁଏ ପାଣିକୁ ତଡ଼ି ହୋଇଗଲି । ତାପରେ ମୁଁ ଜୋର୍‌ରେ ଡାକିଲି - ବଚାଓ, ବଚାଓ, ବଚାଓ ।

ଗୋବିନ୍ଦ ବାବୁ ମୋ ଆଡ଼େ ଚାହିଁ ଲୋକଙ୍କୁ ଡାକିବାକୁ ଧାଇଁଲେ । ମାତ୍ର ଆଉ ଅଧିକ ସମୟ ମୁଁ ସେଠି ଠିଆ ହୋଇ ପାରିଲି ନାହିଁ । ଉପରେ ଦୁଇନଦୀର ଜଳସ୍ରୋତ ମିଳିତ ହେବା ପରି ଦେଖାଗଲେ ମଧ ତଳେ ଗଙ୍ଗାନଦୀର ପ୍ରଖର ଜଳସ୍ରୋତ ମୋ ଗୋଡ଼କୁ ଠେଲି ନେଉଥାଏ । କ୍ରମେ ମୁଁ ଛାତିଏ ପାଣିରେ କେତେ ସେକେଣ୍ଡ ପାଇଁ ଠିଆହେବାକୁ ଚେଷ୍ଟା କରି ଆଉ ପାରିଲି ନାହିଁ । ସେହି ପ୍ରଖରସ୍ରୋତ ମୋତେ ଭସାଇ ନେଇଗଲା । ଜଳସ୍ରୋତ ମୋତେ ବୁଡ଼ାଇବା ପୂର୍ବରୁ ମୁଁ ଚିତ୍ ପହଁରା ଦେଇ ଉପରେ ଭାସିବାକୁ ଚେଷ୍ଟା କଲି । ପ୍ରାୟ ଦୁଇ ମିନିଟ୍ ଚିତ୍ ହୋଇ ପହଁରିବା ପରେ ପଛକୁ ଚାହିଁ ଦେଖିଲି, ସଙ୍ଗମ ଠାରୁ ମୁଁ ଅନେକ ଦୂରକୁ ଭାସି ଗଲିଣି । ସେଠାକାର ଘୋ ଘୋ କୋଳାହଳ ଆଉ ଶୁଣା ଯାଉ ନାହିଁ । ଆଉ ଦଶ ପନ୍ଦର ମିନିଟ୍ ଡେରି କଲେ ମୁଁ ହୁଏତ ବହୁ ଦୂରକୁ ଭାସିଯିବି। ଦେଖିଲି ଯମୁନାର ନୀଳ ଜଳ ସ୍ରୋତରୁ ଦୂରେଇ ଯାଇ ମୁଁ ଗଙ୍ଗାନଦୀର ପ୍ରଖର ସୁଅରେ ଭାସି ଯାଉଛି । ଭାବିଲି, ମୋର ମୃତ୍ୟୁ ସୁନିଶ୍ଚିତ । ଆଉ କେହି ମୋତେ ରକ୍ଷା କରିପାରିବେ ନାହିଁ । ଅଳ୍ପ କେତେଟା ମାସ ତଳେ ମୋର ବିବାହ ସରିଛି । ଝିଅଟା ଆଜୀବନ ବିଧବା ହୋଇ ରହିବ । ମୋ ବାପା ବୋଉ ଓ ମାଆ ଅନେକ ଆଶା କରିଥିଲେ। ସେମାନେ ମଧ ଅରକ୍ଷ ହୋଇଯିବେ ।

ଇଷ୍ଟଦେବତା ଗୋପାଳଜୀଉଙ୍କୁ ସ୍ମରଣ କଲି । ଏତେ ଗୁଡ଼ାଏ ଲୋକଙ୍କର ଜୀବନ ମୋ ଉପରେ ନିର୍ଭର କରେ । ପ୍ରଭୋ ମୋତେ ରକ୍ଷାକର । ଗୋପାଳଙ୍କୁ ସ୍ମରଣକରି ଗଙ୍ଗାରୁ ଯମୁନା ଭିତରକୁ ଯିବାପାଇଁ ମୋର ସମସ୍ତ ବଳ ଖଟାଇ ବୁଡ଼ା ପହଁରା ଦେଇ ଯମୁନା ଭିତରକୁ ପଶିଗଲି । ଆଖି ଫିଟାଇ ଦେଖିଲି ମୁଁ ଯମୁନା ଜଳରେ ଭାସୁଛି । ଯମୁନାର ଧିରସ୍ରୋତରେ ଟିକେ ବିଶ୍ରାମ ନେବାକୁ ପୁଣି ଚିତ୍ ହୋଇ ପହଁରିଲି । ବଳ ସଂଗ୍ରହ କରି ହୁଏତ କୂଳରେ ପହଞ୍ଚିବାକୁ ଚେଷ୍ଟା କରିବି । ମୋତେ ଖୁବ୍ ହାଲିଆ ଲାଗୁଥାଏ । ଲୁଙ୍ଗିଟାକୁ ଭିଡ଼ି ପିନ୍ଧିବାକୁ ଚେଷ୍ଟା କଲି । ତଉଲିଆଟା ଭାସି ଯାଇଥାଏ । ଆଖି ଦୁଇଟା ବୁଜି ହୋଇ ଆସୁଥାଏ । ଟିକିଏ ଆଖି ବୁଜି ଜଳସ୍ରୋତରେ ଭାସିବାକୁ ଚେଷ୍ଟା କରୁଥାଏ । ମୋ ମୁଣ୍ଡରେ ଗୋଟାଏ ଠେଙ୍ଗା ବାଜିଲା ପରି ଲାଗିଲା ।

ଆଖି ଫିଟେଇ ଦେଖିଲି, ଗୋଟାଏ ଡଙ୍ଗାର ନାଉରୀ ମୋ ଆଡ଼କୁ କାତ ବଢ଼ାଉଛି । ମୋତେ ଶୁଭୁଥାଏ "ପକଡ଼୍‌ଲୋ, ପକଡ଼୍ ଲୋ ।" କାତଟାକୁ ଜାବୁଡ଼ି ଧରିଲି । ନାଉରୀ ମୋତେ ଡଙ୍ଗା ଉପରକୁ ଉଠାଇନେଲେ । ଦେଖିଲି, ସମସ୍ତେ ଗେରୁଆଲୁଗା ପିନ୍ଧିଥିବା ସନ୍ନ୍ୟାସୀ । ଡଙ୍ଗା ଭିତରେ ଗୋପାଳ ଓ ରାଧାଙ୍କର ଯୁଗଳ ମୂର୍ତ୍ତି । ସାମନାରେ ଆଣ୍ଠୁଆ ଗୋପାଳ। ଠିକ୍ ଯେମିତି ଆମ ଗୋପାଳଜୀଉ ଠାକୁର । ମନେ ମନେ ପ୍ରଶ୍ନ କଲି । ପ୍ରଭୁ ! ତୁମେ କେମିତି ଏଠିକି ଆସିଲ ? ନିଶ୍ଚୟ ମୋ ଡାକଶୁଣି ସେ ପହଞ୍ଚି ଯାଇଛନ୍ତି । ଦ୍ରୌପ୍ରଦୀଙ୍କ ଡାକଶୁଣି ସେ ଦ୍ୱାରକାରୁ ଧାଇଁ ଯାଇ ତାଙ୍କୁ କୋଟିବସ୍ତ୍ର ଦାନ କରିଥିଲେ । ଏବେ ହୁଏତ ମୋ ଡାକଶୁଣି ଆଳିପଙ୍ଗଳ ଛାଡ଼ି ଏଠିକି ପଳାଇ ଆସିଛନ୍ତି । ମୁଁ ଆଣ୍ଠୁ ମାଡ଼ି ତାଙ୍କୁ ପ୍ରଣାମ କଲି । ଜଣେ ସନ୍ନ୍ୟାସୀ କହିଲେ "ଯେ ତୁମ୍‌କୋ ବଚେଲିଆ ।" ମୁଁ କିଛି ଉତ୍ତର ନଦେଇ ମନେ ମନେ ଭାବୁଥାଏ "ହଁ ୟାଙ୍କୁ ଇ ତ ମୁଁ ଡାକିଥିଲି । ସେ ସାକ୍ଷାତ୍ ଆସି ମୋତେ ଏତେ ଶୀଘ୍ର ଉଦ୍ଧାର କରିବେ ବୋଲି ମୋର ବିଶ୍ୱାସ ନଥିଲା ।" ଜଣେ ସନ୍ନ୍ୟାସୀ ମୋ ହାତରେ ଭୋଗଟିକେ ଦେଇ ପଚାରିଲେ "ବେଟା ତୁମ କହାଁସେ ଆୟେ ହୋ ?" କହିଲି, ପୁରୀଧାମ୍ ସେ । ସାଧୁ ଜଣକ ହାତଯୋଡ଼ି କହିଲେ, "ଜୟ ଜଗନ୍ନାଥ ସ୍ୱାମୀକି ।" ଯମୁନା ସ୍ରୋତର ପ୍ରତିକୂଳରେ ଡଙ୍ଗାବାହି ସାଧୁମାନେ ମୋତେ ସଙ୍ଗମ ସ୍ଥଳକୁ ନେଇଗଲେ । କହିଲି, "ବାବା! ମେରେ ସାଥ୍ ପ୍ରଫେସର୍ ଲୋଗ୍ ହେଁ । ମେରା ସାଥୀ ଲୋଗ୍ ଭି ହେଁ । ୟେ ଲୋଗ୍ ଆପ୍‌କୋ ମିଲେଙ୍ଗେ । ଆପ୍‌ନେ ମୁଝେ ବଚାୟା ।" ସେ ସାଧୁ କହିଲେ, "ନେହିଁ ବାବା; ହମ୍ କିସିସେ ନେହିଁ ମିଲେଙ୍ଗେ । ଠାକୁର୍ ଜୀ କା ପୂଜା ଦେର୍ ହୋ ଯାତା ହୈ । ତୁମ୍ ପୋଲିସ କା ନାଓ ପର୍ ଚଲେ ଯାଓ ।" ସାଙ୍ଗେ ସାଙ୍ଗେ ପୋଲିସ ଡଙ୍ଗା ସେଠି ପହଞ୍ଚିଗଲା । ଅନିଚ୍ଛାସତ୍ତ୍ୱେ ମୁଁ ସାଧୁମାନଙ୍କ ଡଙ୍ଗାରୁ ସେ ଡଙ୍ଗାକୁ ଡେଇଁ ପଡ଼ିଲି । ପୋଲିସ୍ ମୋର ନାଆଁ, ଗାଆଁ, ଠିକଣା ସବୁ ଲେଖିନେଲା । ମୁଁ ସେ ଡଙ୍ଗାରୁ ଓହ୍ଲାଇ ସାଥୀମାନଙ୍କୁ ଖୋଜିଲି । ଗୋଟିଏ ସ୍ଥାନରେ ସମସ୍ତେ ଏକାଠି ହୋଇ ଠିଆ ହୋଇଥାନ୍ତି । ଏପରି ଏକ ଦୁର୍ଘଟଣା ଘଟିବା ପରେ ଆଉ ପରିଭ୍ରମଣରେ ନଯାଇ ଏଇଠୁ ଫେରିଯିବାକୁ ଦୁଇ ଅଧ୍ୟାପକ ମୋ ସାଥିମାନଙ୍କୁ ଜଣାଇ ଦେଇଥାନ୍ତି । ସମସ୍ତେ ଅନେକ ଚିନ୍ତାଶୀଳ ହୋଇ ପଡ଼ିଥାନ୍ତି ।

ମୋତେ ଦେଖି ସେମାନେ ଖୁସି ହୋଇଗଲେ । କାହିଁକି ତୁ ଏପରି କଲୁ ବୋଲି ଅନେକ ବନ୍ଧୁ ପ୍ରଶ୍ନ କଲେ । ହେଲେ, ମୋର ଆଉ କୌଣସି ଉତ୍ତର ନଥିଲା । ଅଧ୍ୟାପକ ଶିବକୁମାର ମିଶ୍ର କହିଲେ, ତୁମକୁ ଯେଉଁମାନେ ଉଦ୍ଧାର କଲେ, ସେମାନଙ୍କୁ କିଛି ଟଙ୍କା ଦେଇ ଧନ୍ୟବାଦ ଜଣାଇବା । କହିଲି, ଆପଣ ସେମାନଙ୍କୁ

ପାଇବେ ନାହିଁ । ସେମାନେ ମୋତେ ଛାଡ଼ି ଦେଇ ଯମୁନା ଭିତରେ ଡଙ୍ଗା ବାହି ଚାଲିଯାଇଛନ୍ତି, ଆମେ ସବୁ ନୈନି କୃଷି ବିଜ୍ଞାନ କଲେଜ ଛାତ୍ରାବାସକୁ ଫେରି ଆସିଲୁ। ହେଲେ ମୁଁ ଭାବୁଥିଲି ଇଷ୍ଟଦେବତା ଗୋପାଳଜୀଉଙ୍କ କଥା । ବିପଦ ବେଳେ ସେ ଯମୁନାରେ ପ୍ରକଟ ହୋଇ ମୋତେ ଉଦ୍ଧାର କଲେ । ଯଦି ସାଧାରଣ ସାଧୁ ହୋଇଥାନ୍ତେ, ତେବେ ମୋତେ ସେମାନଙ୍କ ଡଙ୍ଗାରୁ ଓହ୍ଲାଇ ଦେଇ ପଳାଇ ଯାଇ ନଥାନ୍ତେ । ସେ ନିଶ୍ଚୟ ମୋର ଆରାଧ୍ୟ ଦେବତା ଗୋପାଳଜୀଉ ।

ତାପରଦିନ ଲକ୍ଷ୍ନୌ ଗଲୁ । ଲକ୍ଷ୍ନୌ ପଶୁଚିକିତ୍ସା ମହାବିଦ୍ୟାଳୟ ହଷ୍ଟେଲରେ ଆମ ରହଣି । ନବାବମାନଙ୍କର ସହର । ଧନାଢ଼୍ୟ ମୁସଲମାନଙ୍କର ଭୋଗ ବିଳାସମୟ ନଗରୀ ଲକ୍ଷ୍ନୌ । ପ୍ରତ୍ୟହ ସନ୍ଧ୍ୟାରେ ଲସ୍ୟମୟୀ ଚପଳଛନ୍ଦା ନର୍ତ୍ତକୀମାନଙ୍କର ରୁଣୁଝୁଣୁ ନୂପୁର ଧ୍ୱନିରେ ଶବ୍ଦାୟିତ ହୁଏ ଏ ସହରର ବିଶିଷ୍ଟ କୋଠାସବୁ। ଦେଶର ବିଭିନ୍ନ ପ୍ରାନ୍ତରୁ ସୌଖୀନ ଧନୀ ଯୁବକମାନଙ୍କର ସମାଗମ ହୁଏ ଏଇ ସବୁ କୋଠାରେ । ମୋ ସହପାଠୀମାନଙ୍କ ମଧ୍ୟରୁ କେତେଜଣ ଆମ ଦାୟିତ୍ୱରେ ଥିବା ପ୍ରଫେସରମାନଙ୍କୁ ନଜଣାଇ ରାତି ନଅଟା ପରେ ଚୁପ୍‌ଚାପ୍ ବାହରି ଗଲେ ଏଇ କୋଠାମାନଙ୍କ ସନ୍ଧାନରେ ।

ଏସବୁ ଦିଗରେ ମୋର ଅନାଗ୍ରହ ଯୋଗୁଁ ମୋତେ କେହି ଡାକନ୍ତି ନାହିଁ । ମାତ୍ର ତାପରଦିନ ସକାଳୁ ସାଥୀମାନଙ୍କର ଟୁପ୍ ଟାପ୍ ଫୁସ୍‌ଫାସ୍ ଶୁଣି ମୁଁ ଏକଥା ଜାଣିବାକୁ ପାଇଲି । ତେବେ ଏଠାକାର ଭୁଲ୍‌ଭୁଲେୟାଁ ଦେଖି ମୁଁ ଚକିତ ହୋଇ ଯାଇଥିଲି । ତା' ଭିତରେ ଗୋଟିଏ ପଟେ ପଶିଗଲେ କେଉଁଠି ବାହରିବାକୁ ହେବ ଖୋଜି ପାଇବା ଅତି କଷ୍ଟକର । ବହୁ ସଂଖ୍ୟକ ଅତର ଦୋକାନ ଏ ସହରରେ। ମୁଲେଇବାକୁ ଭୟ ଲାଗୁଥାଏ । ଟିକି ଟିକି ଅତର ଶିଶିଗୁଡ଼ିକର ମୂଲ୍ୟ କୋଡ଼ିଏ ଟଙ୍କାରୁ ଏକହଜାର ଟଙ୍କା ପର୍ଯ୍ୟନ୍ତ । ରାସ୍ତାକଡ଼ରେ ଥିବା ଭୋଜନାଳୟ ମାନଙ୍କରେ ପଶିଗଲା ବେଳକୁ ବଡ଼ ବଡ଼ ପ୍ଲେଟରେ ମାଂସ ଖାଉଥିବା ଲୋକଙ୍କୁ ଦେଖିବାକୁ ମିଳେ । ଥାଳିକଡ଼ରେ ଖୁବ୍ ବଡ଼ ବଡ଼ ହାଡ଼ ସବୁ ପଡ଼ିଥିବା ଦେଖି ଭୟରେ ମୁଁ ପଦାକୁ ବାହାରି ଆସିଲି ।

ଗୋଟିଏ ଦିନ ରହଣିପରେ ପରଦିନ ସନ୍ଧ୍ୟାରେ ଲକ୍ଷ୍ନୌରୁ ମିଟର ଗଜ୍ ଟ୍ରେନ୍‌ରେ ଆମେ ଇଜ୍ଜତ ନଗର ବାହାରିଗଲୁ । ରାତିସାରା ଟ୍ରେନ୍‌ରେ ଶୋଇ ଶୋଇ ସକାଳ ସାତଟା ସୁଦ୍ଧା ବରେଲି ରେଳଷ୍ଟେସନରୁ ଟାଙ୍ଗାରେ ଯାଇ ଭାରତୀୟ ପଶୁଚିକିତ୍ସା ଗବେଷଣା ପ୍ରତିଷ୍ଠାନ ହଷ୍ଟେଲରେ ଯାଇ ରହିଲୁ । ପଶୁଚିକିତ୍ସା ସମ୍ବନ୍ଧୀୟ ବିଭିନ୍ନ ବିଷୟରେ ଏଠାରେ ଏମ୍‌ଭିଏସ୍‌ସି ଓ ପି.ଏଚ୍.ଡ଼ି ଡିଗ୍ରୀ ପାଇବା ଲାଗି ବହୁ ଛାତ୍ର

ଅଧ୍ୟୟନ ରତ । ସେମାନଙ୍କ ମଧ୍ୟରୁ ଅନେକ ଓଡ଼ିଆଛାତ୍ରଙ୍କ ସହିତ ସେଠାରେ ସାକ୍ଷାତ ହେଲା । ସେମାନେ ଆମକୁ ନେଇ ବିଭିନ୍ନ ଗବେଷଣାଗାର ମାନ ଦେଖାଇଲେ । ଇଜ୍ଜତ୍ ନଗରର ୮୫ ମାଇଲ ଦୂରରେ ନୈନିତାଲ ଗ୍ରୀଷ୍ମନିବାସ । ସେହି ଅନୁଷ୍ଠାନର ଗୋଟିଏ ବସ୍‌ରେ ତାପର'ଦିନ ଭୋର ସାତଟାରୁ ଆମେ ନୈନିତାଲ ବାହାରିଗଲୁ । ହିମାଳୟ ପାଦଦେଶରେ ଏହା ଏକ ପାହାଡ଼ିଆ ସହର । ସୁନ୍ଦର ହ୍ରଦକୁ ବେଷ୍ଟନ କରି ରହିଥିବା ପାହାଡ଼ ଉପରେ ଧାଡ଼ି ଧାଡ଼ି ଗ୍ରୀଷ୍ମନିବାସ। ଦେଶର ବିଭିନ୍ନ ପ୍ରାନ୍ତରେ ଥିବା ବଡ଼ ବଡ଼ ବ୍ୟବସାୟୀ, ରାଜା ମହାରାଜା ଓ ଧନୀ ବ୍ୟକ୍ତିମାନଙ୍କର ଗ୍ରୀଷ୍ମକାଳୀନ ଆବାସସ୍ଥଳ । ଉତ୍ତର ପ୍ରଦେଶ ସରକାରଙ୍କର ମଧ୍ୟ ଅନେକ କୋଠାବାଡ଼ି ଏଇ ସ୍ଥାନରେ ଅଛି । ପାହାଡ଼ର ପାଦଦେଶରେ ହ୍ରଦକୁ ଲାଗି ରହିଥିବା ରାସ୍ତାର ଫୁଟ୍‌ପାଥ୍‌ରେ ବୁଲି ବୁଲି ନୈନିତାଲ ହ୍ରଦର ଦୃଶ୍ୟ ଉପଭୋଗ କଲି । ସନ୍ଧ୍ୟାରେ ଇଜ୍ଜତ୍‌ନଗର ଫେରିଆସି ତାପରଦିନ ଗଲୁ ମଥୁରା ।

ମଥୁରା ପଶୁଚିକିତ୍ସା ମହାବିଦ୍ୟାଳୟ ଛାତ୍ରାବାସରେ ରହି ପ୍ରଥମେ ସେ ଅନୁଷ୍ଠାନର ବିଭିନ୍ନ ବିଭାଗ ବୁଲି ଦେଖିଲୁ । ଏହା ଦେଶର ଅନ୍ୟତମ ପ୍ରଖ୍ୟାତ ପଶୁଚିକିତ୍ସା ବିଜ୍ଞାନ କଲେଜ୍ । ଓଡ଼ିଶାର ବହୁ ବରିଷ୍ଠ ପଶୁଚିକିତ୍ସାବିତ୍ ଏହି ମହାବିଦାଳୟର ଛାତ୍ର । ଅନୁଷ୍ଠାନଟି ବୁଲି ଦେଖିବାପରେ ପରଦିନ ସକାଳୁ ଆମେ କେତେଗୁଡ଼ିଏ ଟାଙ୍ଗା ଭଡ଼ା କରି ବୃନ୍ଦାବନ ଗଲୁ । ଇଷ୍ଟଦେବତା ଶ୍ରୀ ଗୋପାଳଜୀଉଙ୍କର ପବିତ୍ର ଲୀଳାସ୍ଥଳ ବୃନ୍ଦାବନ । ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କର ପଟ୍ଟଶିଷ୍ୟ ଶ୍ରୀଳ ସନାତନ ଗୋସ୍ୱାମୀ ଓ ରୂପ ଗୋସ୍ୱାମୀ ଭଗବାନ୍ ଶ୍ରୀକୃଷ୍ଣଙ୍କର ବିଭିନ୍ନ ଲୀଳାର ସୂଚନା ଦେଇ ଗୋକୁଳ, ବଂଶୀବଟ, ବସ୍ତ୍ରହରଣ , କାଳୀୟଦଳନ, ରାସବାଟିକା; ଗିରିଗୋବର୍ଦ୍ଧନ, ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ନନ୍ଦଗ୍ରାମ ବର୍ଷଣା ଆଦି କୃଷ୍ଣ ଲୀଳାସ୍ଥଳିମାନ ଚିହ୍ନଟ କରିଛନ୍ତି । ଆମେ ଯାଇ ଶ୍ୟାମସୁନ୍ଦର, ମଦନମୋହନ, ଗୋବିନ୍ଦ, ଗୋପିନାଥଆଦି ମନ୍ଦିରମାନ ଦର୍ଶନ ପରେ ରାସସ୍ଥଳି ଦେଖି ସାରି ଗୋକୁଳ ଗଲୁ । ଗୋକୁଳ ବା ଗୋପନଗରୀ ଦେଖି ପ୍ରଭୁ ଏହିଠାରେ ବାଲ୍ୟକାଳ କଟାଇଥିଲେ ଭାବି ମନରେ ମୋର ପ୍ରବଳ ଭାବାବେଗ ସୃଷ୍ଟି ହେଲା । ଯାହାଙ୍କ ଦୟାରୁ ମୋର ଜନ୍ମ ଓ ଗଙ୍ଗାନଦୀରୁ ମୋତେ ଉଦ୍ଧାର କରିବା ପାଇଁ ଯିଏ ଯମୁନା ବକ୍ଷରେ ନାଆବାହି ଆସିଥିଲେ। ତାଙ୍କର ବାଲ୍ୟଲୀଳା ସ୍ଥଳିର ସରୁ ଧୂଳିରୁ ମୋ ମୁଣ୍ଡରେ ବୋଳି ହୋଇ ଗୋଟିଏ କାଗଜରେ ସେହି ଧୂଳିରୁ କିଛି ଆମ ଗୋପାଳଜୀଉ ମନ୍ଦିର ସିଂହାସନ ତଳେ ବିଛାଇ ଦେବାକୁ ପକେଟରେ ରଖିଲି । ବୃନ୍ଦାବନର ମିଷ୍ଟାନ୍ନ ଦୋକାନମାନଙ୍କରେ କଡ଼େଇ କଡ଼େଇ ଦୁଧ ଆଉଟା ହେଉଥିବା ଦେଖି ସେଥିରୁ କେତେ ଗ୍ଲାସ୍ ପିଇବାକୁ ଆନନ୍ଦ ଲାଗିଲା । ଦୋକାନୀ ଦୁଧ ଗ୍ଲାସ୍‌ରେ

ମେଞ୍ଚାଏ ସର ପକାଇ ପିଇବାକୁ ଦେଉଥାନ୍ତି । ତାଛଡ଼ା ସେ ଦୋକାନରେ ସରପୁଳି, ପେଡ଼ା ଓ ରାବିଡ଼ି ଖାଇ ସେଦିନର କ୍ଷୁଧା ନିବାରିତ ହେଲା । ପ୍ରତି ମନ୍ଦିରରେ ପ୍ରଭୁଙ୍କୁ ପ୍ରଣାମ କଲାବେଳେ ମନେ ମନେ କହିଲି ଗଙ୍ଗାନଦୀରୁ ମୋତେ ଉଦ୍ଧାର କଲ । ମାତ୍ର ଜୀବନରେ କିଛି ଭଲ କାମ ମୋଦ୍ୱାରା କରାଇ ଏ ଜୀବନକୁ ସାର୍ଥକ କର । ଧନ, ଜନ, ଗୋପ ଲକ୍ଷ୍ମୀ ଆଦି କିଛି ତୁମକୁ ମୁଁ ମାଗୁନାହିଁ । ତୁମରି କାର୍ଯ୍ୟରେ ଏ ଜୀବନ ବ୍ୟବହୃତ ହେଉ ।

ମଥୁରାରୁ ଆମେ ଦିଲ୍ଲୀ ଗଲୁ । ସେଠି ଦୁଇଦିନ ରହି ଲାଲ୍‌କିଲ୍ଲା, କୁତବମୀନାର, ରାଜଘାଟ, ପାର୍ଲାମେଣ୍ଟ, ଇଣ୍ଡିଆଗେଟ୍, ରାଷ୍ଟ୍ରପତି ଭବନ ଆଦି ଗଲୁ, ତାପରଦିନ ଆଗ୍ରା ଓ ଫତେପୁର ସିକ୍ରୀ ଆଦି ବୁଲିଗଲୁ । ସେତେବେଳେ ଦିଲ୍ଲୀରେ ଥିବା ବିଭିନ୍ନ କେନ୍ଦ୍ରୀୟ କାର୍ଯ୍ୟାଳୟ ମାନ ତିଆରି ହେଉଥାଏ । ବିଭିନ୍ନ ମନ୍ତ୍ରଣାଳୟ ମାନଙ୍କର ନୂଆ କୋଠା ସବୁ ଗଢ଼ା ଚାଲିଥାଏ । ତଥାପି ତତ୍କାଳୀନ କଟକ ବା ଭୁବନେଶ୍ୱର ତୁଳନାରେ ଦିଲ୍ଲୀ ମହାନଗରୀ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ଆଜି ମଧ୍ୟ ତୁଳନା କଲେ ସେହିଭଳି ପାର୍ଥକ୍ୟ ଦେଖାଯାଏ ।

ଦିଲ୍ଲୀରୁ ଆମେ ବମ୍ବେ ଚାଲିଗଲୁ । ବମ୍ବେ ପଶୁଚିକିତ୍ସା ମହାବିଦ୍ୟାଳୟ ହେଉଛି ଭାରତବର୍ଷର ସର୍ବ ପୁରାତନ ଭେଟେରିନାରୀ କଲେଜ । ସେଠାକାର ପ୍ରାଣୀ ଚିକିତ୍ସାଳୟକୁ ନାମଜାଦା ଚିତ୍ରତାରକାମାନେ ସେମାନଙ୍କ କୁକୁର, ବିଲେଇ ଆଦି ପୋଷ୍ୟଜୀବଙ୍କୁ ନେଇ ଆସନ୍ତି । ତେଣୁ ପ୍ରଫେସରମାନଙ୍କ ସହିତ ସେମାନେ ପରିଚିତ । ସେମାନଙ୍କ ଚେଷ୍ଟାରେ ଆମେ କେତେ ଷ୍ଟୁଡ଼ିଓ ବୁଲି ସୁଟିଂ ଦେଖିଲୁ । ଏହାଛଡ଼ା ମେରାଇନ୍ ଡ୍ରାଇଭ୍, ହାଙ୍ଗିଙ୍ଗ୍ ଗାର୍ଡ଼େନ ଓ ଗେଟ୍‌ୱେ ଅଫ୍ ଇଣ୍ଡିଆ ପରି ସ୍ଥାନ ସବୁ ବୁଲି ବୁଲି ରାତି ନଅଟା ସୁଦ୍ଧା ହଷ୍ଟେଲ୍‌କୁ ଫେରିଲା ବେଳକୁ ଜଣେ ସହପାଠୀ ନଥିବାର ଜାଣିବାକୁ ପାଇଲୁ । ଅଧ୍ୟାପକ ଶିବ କୁମାର ମିଶ୍ର ସେହି କଲେଜର ଅଧ୍ୟକ୍ଷଙ୍କୁ ଏହା ଜଣାଇବାରୁ ସେ ପୋଲିସ୍‌କୁ ଫୋନ୍ କରି ଜାଣିବାକୁ ପାଇଲେ ଯେ ଷ୍ଟ୍ରୀଟ୍ ରୋମିଓ ଆକ୍ଟ ଅନୁସାରେ ପୋଲିସ୍ ତାକୁ ଧରିନେଇ ଥାନାରେ ରଖିଛନ୍ତି । ସାଙ୍ଗେ ସାଙ୍ଗେ ଥାନାକୁ ଯାଇ ଏକଶହ ଟଙ୍କା ଜୋରିମାନା ଦେଇ ତାଙ୍କୁ ମୁକୁଳାଇ ଅଣାଗଲା ।

ପରଦିନ ଓଡ଼ିଶା ଫେରିବା ବାଟରେ ହାଇଦ୍ରାବାଦଠାରେ ରହି ସାଲାର୍‌ଜଙ୍ଗ୍ ମ୍ୟୁଜିୟମ୍ ଓ ଚାରମିନାର୍ ଆଦି କେତେକ ଦର୍ଶନୀୟ ସ୍ଥାନ ଦେଖିଲୁ । ସାଲାର୍‌ଜଙ୍ଗ୍ ମ୍ୟୁଜିୟମ୍ ମୋ ପାଇଁ ଅତୀବ ବିସ୍ମୟକର ଥିଲା । 'ହାଇଦ୍ରାବାଦ' ନିଜାମଙ୍କର ମନ୍ତ୍ରୀ ସାଲାର୍‌ଜଙ୍ଗଙ୍କର ତିନିପୁରୁଷ ଧରି ଏହି ଯାଦୁଘର ପାଇଁ ପୃଥିବୀର ବିଭିନ୍ନ ଦେଶରୁ ବହୁ

ବିଚିତ୍ର ଦ୍ରବ୍ୟ ସଂଗ୍ରହ କରି ସର୍ବ ସାଧାରଣଙ୍କ ଦର୍ଶନାର୍ଥେ ଏଠାରେ ରଖିଛନ୍ତି । ବହୁ ବିଚିତ୍ରକର୍ମା ସ୍ଥପତି ମାନଙ୍କ ଦ୍ୱାରା କାରୁକାର୍ଯ୍ୟ ଖଚିତ ଜିନିଷ ଓ ଟିକି ଟିକି ଶସ୍ୟ ଦାନାରେ ଖୋଦିତ ସୁନ୍ଦର ମୂର୍ତ୍ତି ସବୁ ଦେଖିଲେ ସେ ସ୍ଥାନ ଛାଡ଼ି ଆସିବାକୁ ମନହୁଏ ନାହିଁ । ଏତେ ସଂଖ୍ୟକ ଦେଖିବା ଜିନିଷ ଏଠାରେ ଅଛି ଯେ ଗୋଟିଏ ଦିନରେ ସବୁ ଭଲଭାବେ ଦେଖିପାରିବା ଅସମ୍ଭବ। ହାଇଦ୍ରାବାଦରେ ଦିନିଟିଏ କଟାଇ ତାପରଦିନ ଆମେ ଭୁବନେଶ୍ୱର ଫେରି ଆସିଲୁ ।

ଘରକୁ ଫେରି ଶୁଣିଲି ଯେ, ଯେଉଁଦିନ ମୋର ସଙ୍ଗମ ଠାରେ ଦୁର୍ଘଟଣା ଘଟିଲା, ତା ପୂର୍ବଦିନ ରାତିରେ ମୋ ଶ୍ୱଶୁର ଏକ ଅଶୁଭ ସ୍ୱପ୍ନ ଦେଖି ସକାଳୁ ଉଠି ସ୍ନାନାଦି ପରେ ଗଡ଼ଗଡ଼ିଆ ମହାଦେବଙ୍କ ମନ୍ଦିରରେ ଭୋଗ ଓ ପାଣିଲାଗି କରିଥିଲେ । ଆମ ଗୁରୁଜେଜେ ଏକଥା ଶୁଣି କହିଲେ, ଏବେ ତାର ବାଇଶିବର୍ଷ ଚାଲିଛି । ଏହି ଯୋଡ଼ାବର୍ଷରେ ତାର ଆକସ୍ମିକ ଦୁର୍ଘଟଣା ହେବାର ଥିଲା । ଯେଉଁ ସ୍ଥାନରେ ଦୁର୍ଘଟଣା ଘଟିଲା, ସେଠାରୁ କେହି ଜୀବନ ବଞ୍ଚାଇ ଫେରି ପାରନ୍ତି ନାହିଁ । ଏ ଜନ୍ମର କୌଣସି ଅପୂରଣୀୟ ଅଭିଳାଷ ପରଜନ୍ମରେ ପୂରଣ କରିବା ଲାଗି ମଧ୍ୟ ଲୋକେ ସେହି ସ୍ଥାନରେ ଝାସ ଦେଇ ପ୍ରାଣତ୍ୟାଗ କରନ୍ତି ।

ମହାଭାରତରେ ବର୍ଣ୍ଣିତ ଅଛି; ଭୀଷ୍ମଦେବ ତାଙ୍କର ସାବତଭାଇ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କୁ ବିବାହ ଦେବାକୁ ଅମ୍ବା, ଅମ୍ବିକା ଓ ଅମ୍ବାଳିକାଙ୍କୁ ସ୍ୱୟମ୍ବର ସଭାରୁ ଅପହରଣ କରି ଘେନି ଆସିବା ପରେ ଅମ୍ବା ତାଙ୍କୁ ବିବାହ କରିବା ଲାଗି ଜିଦ୍ କଲେ । ମାତ୍ର ଭୀଷ୍ମ ତାଙ୍କର ପ୍ରତିଜ୍ଞା ରକ୍ଷା କରିବା ଲାଗି ଏହି ବିବାହ ପ୍ରସ୍ତାବକୁ ଅସ୍ୱୀକାର କରିବାରୁ ଅମ୍ବା ତାଙ୍କ ଉପରେ ପ୍ରତିଶୋଧ ନେବାକୁ ଯାଇ ସଙ୍ଗମରେ ଆତ୍ମ ବିସର୍ଜନ ଦେଲେ । ଆତ୍ମତ୍ୟାଗ କଲାବେଳେ ସେ ପରଜନ୍ମରେ ଭୀଷ୍ମଙ୍କ ମୃତ୍ୟୁର କାରଣ ହେବେ ବୋଲି କାମନା କରିଥିବାରୁ ଶିଖଣ୍ଡୀ ରୂପେ ଜନ୍ମ ନେଇ ମହାଭାରତ ଯୁଦ୍ଧରେ ଭୀଷ୍ମ ତାଙ୍କୁ ଦେଖି ଅସ୍ତ୍ରତ୍ୟାଗ କରିଥିଲେ ଓ ତାଙ୍କର ମନୋକାମନା ପୂର୍ଣ୍ଣ ହେଲା ।

ଗୁରୁଜେଜେ କହିଲେ ସ୍ୱୟଂ ଗୋପାଳଜୀଉ ତୋତେ ଉଦ୍ଧାର କରିଛନ୍ତି । ତାଙ୍କ ଛଡ଼ା ଆଉ କାହାର ଏଭଳି ଶକ୍ତି ନାହିଁ । ତୋ ପ୍ରତି ତାଙ୍କର ଆର୍ଶୀବାଦ ଅଛି ଓ ତୋ ଜରିଆରେ ତାଙ୍କର କିଛି ମହତ କାର୍ଯ୍ୟ ସାଧିତ ହୋଇପାରେ । ତେଣୁ ସେଥିପ୍ରତି ଧ୍ୟାନ ଦେଇଥିବୁ ।

ଆମର ଭାରତ ଭ୍ରମଣ ପରେ ଜୋର୍ ପଢ଼ାପଢ଼ି ଲାଗିଗଲା । ଶେଷବର୍ଷ ପରୀକ୍ଷା ପାଇଁ ସମସ୍ତେ ଲାଗି ପଡ଼ିଲେ । ପ୍ରତି ରବିବାର ଓ ଛୁଟିଦିନ ମାନଙ୍କରେ ଆମେ

କଟକ, ପୁରୀ, ପିପିଲି, ଖୋର୍ଦ୍ଧା ଆଦି ବଡ଼ ବଡ଼ ପଶୁଚିକିତ୍ସାଳୟକୁ ଯାଇ ଚିକିତ୍ସା ବିଷୟକ ତାଲିମ ନେଉଥାଉ । ମଝିରେ ମଝିରେ ମୁଁ କଟକ ଆସି ଶ୍ୱଶୁରଘରେ ରହେ । ସ୍ନେହଲତାଙ୍କୁ ବାପା ସେଠି ଛାଡ଼ିଦେଇ ଯିବାପରେ ସେ ବରାବର ମୋ' ଆସିବାକୁ ଅପେକ୍ଷା କରିଥାନ୍ତି । ସେ ଗର୍ଭବତୀ ଥାଆନ୍ତି । ମୁଁ କଟକ ଛାଡ଼ିଲା ବେଳକୁ ତାଙ୍କର ସାନ ଦୁଇ ଭଉଣୀ ମୋତେ ପ୍ରତି ଶନିବାର ଆସିବା ପାଇଁ ଅନୁରୋଧ କରନ୍ତି । ସେ ପରିବାର ସ୍ନେହରେ ମୁଁ କ୍ରମଶଃ ବାନ୍ଧି ହୋଇ ପଡୁଥିଲି । ଅପ୍ରେଲ ମାସ ଆରମ୍ଭରୁ ଥିଓରି ପରୀକ୍ଷା ଆରମ୍ଭ ହୋଇଗଲା । ମାସ ଶେଷ ଆଡ଼କୁ ପ୍ରାକ୍ଟିକାଲ ପରୀକ୍ଷା ମଧ୍ୟ ଚାଲିଲା । ପରୀକ୍ଷା ସରିବା ପରେ ମୁଁ କଟକରେ କିଛି ଦିନ ରହି ଗାଆଁକୁ ଗଲି । ସେତେବେଳେକୁ ସ୍ନେହଲତାଙ୍କର ଗର୍ଭାବସ୍ଥା ଗୁରୁତର। ସେ ଡାକ୍ତର ନିରୁପମା ରଥଙ୍କ ଚିକିତ୍ସାରେ ଥାଆନ୍ତି । ମୁଁ ଉଭୟ ଗାଆଁ ଓ କଟକ ଦୁଇଆଡ଼େ ହେଉଥାଏ । ପରୀକ୍ଷା ଫଳ ବାହାରିବାକୁ କେବଳ ଅପେକ୍ଷା । ତାପରେ ସାଙ୍ଗେ ସାଙ୍ଗେ ଚାକିରୀ ମିଳିବ ।

ଜ୍ୟେଷ୍ଠ ପୂର୍ଣ୍ଣିମା ପୂର୍ବରାତ୍ରିରେ ସ୍ନେହଲତାଙ୍କର ଗର୍ଭବେଦନା ଅନୁଭୂତ ହେଲା । ଶ୍ୱଶୁର ଧାଇଁଲେ ଡାକ୍ତରଙ୍କ ପାଖକୁ । ଘଣ୍ଟାକ ଭିତରେ ଡାକ୍ତର ଆସି ଦେଖି କହିଲେ, ଏବେ ଆଠମାସ ହୋଇଛି । ଏଇଟା ଜନ୍ମ କରିବାର ସମୟ ନୁହେଁ । ତେଣୁ ଔଷଧ ଖାଇ ଶୋଇଯାଉ । ଏ ଲକ୍ଷଣ ବନ୍ଦ ହୋଇଯିବ ।

ତାପରଦିନ ଦେବସ୍ନାନ ପୂର୍ଣ୍ଣିମା । ଦିନପ୍ରାୟ ଦଶଟା ସୁଦ୍ଧା ପୁଣି ଗର୍ଭକଷ୍ଟ ଅନୁଭୂତ ହେଲା । ଶ୍ୱଶୁର ଧାଇଁଲେ ଡାକ୍ତରଙ୍କ ପାଖକୁ । ମାତ୍ର ଡାକ୍ତର ଆସିବା ପୂର୍ବରୁ ଅତ୍ୟନ୍ତ ଦୁର୍ବଳ ଶୀର୍ଣ୍ଣକାୟ ଛୋଟ ଝିଅଟିଏ ଜନ୍ମ ହେଲା । ଡାକ୍ତର ଆସି ଦେଖିଲେ ଓ ତାଙ୍କର ଯାହା କରିବାର ଥିଲା କରିଦେଇ କହିଲେ ଶିଶୁଟି ଜନ୍ମ ସମୟର ଏକମାସ ପୂର୍ବରୁ ଭୂମିଷ୍ଠ ହୋଇଛି । ତା ମୁଣ୍ଡର ହାଡ଼ ସମ୍ପୂର୍ଣ୍ଣ ବଢ଼ିନାହିଁ । ପିଲାଟି ଅତ୍ୟନ୍ତ ଦୁର୍ବଳ ହେବ।

ମୋତେ ଖୁବ୍ ଖରାପ ଲାଗୁଥାଏ । ଏପର୍ଯ୍ୟନ୍ତ ମୋର ପରୀକ୍ଷା ଫଳ ବାହାରି ନାହିଁ । ଚାକିରୀ ପାଇବାକୁ ଡେରିଅଛି । ନିଜ ସ୍ତ୍ରୀ ପାଇଁ ଔଷଧଖର୍ଚ୍ଚ କିମ୍ବା ପ୍ରଥମ ପିଲାଟିର ଜନ୍ମ ସମୟରେ ପଇସାଟିଏ ଖର୍ଚ୍ଚ କରିବାର ଶକ୍ତି ମୋର ନାହିଁ । ଏପରିସ୍ଥଳେ ବିବାହ କରି ଗୋଟିଏ ପିଲାର ବାପ ହେବାର ଆନନ୍ଦ ମୋର ନଥିଲା । ଏତେ କମ୍ ବୟସରେ ପିତୃତ୍ୱ ଲାଭ ଯେପରି ମୋ ପକ୍ଷରେ ଲଜ୍ଜାଜନକ ମନେ ହେଉଥିଲା । ମାତ୍ର ଗୁରୁଜନମାନେ କହିଲେ; ଏବେ ଯେଉଁଟା ତୁମକୁ ଖରାପ ଲାଗୁଛି ପରିଣତ ବୟସରେ ତାହା ତୁମପାଇଁ କଲ୍ୟାଣପ୍ରଦ ହେବ। ତୁମେ ଚାକିରୀରୁ ଅବସର ନେବାର ବହୁ ପୂର୍ବରୁ ତୁମ ପିଲାମାନେ ମଣିଷ ହୋଇଯିବେ । ସେମାନେ ତୁମକୁ

ସାହାଯ୍ୟ କରିବାକୁ ଆଗେଇ ଆସିବେ । ଯେଉଁମାନେ ଡେରିରେ ବିବାହ କରନ୍ତି, ସେମାନେ ଅବସର ଗ୍ରହଣ କଲାବେଳକୁ ପିଲାମାନେ ସାନସାନ ହୋଇଥାନ୍ତି । ତେଣୁ ବହୁଲୋକ ଚିନ୍ତାଗ୍ରସ୍ତ ହୋଇ ଦୁଃଖରେ କାଳାତିପାତ କରନ୍ତି । ଝିଅ ଜନ୍ମ ହେବାର ସମ୍ବାଦ ପାଇ ଗାଆଁରୁ ମାଆ ଓ ବାପା ଆସି ପହଞ୍ଚିଲେ । ଦେବସ୍ନାନ ପୂର୍ଣ୍ଣିମାରେ ତାର ଜନ୍ମ ହୋଇଥିବାରୁ ନାଆ ଦେଲେ "ଦେବଶ୍ରୀ" । ଝିଅ ଜନ୍ମର ପ୍ରାୟ କୋଡ଼ିଏ ଦିନ ପରେ ଆମର ପରୀକ୍ଷା ଫଳ ପ୍ରକାଶ ପାଇଲା । ଉତ୍କଳ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟ ଆଜିର କର୍କଟରୋଗ ପ୍ରତିଷ୍ଠାନର ଆଉଟ୍‌ଡ଼ୋର ଜାଗାରେ ହିଁ ଥିଲା । ଆମେ ସବୁ ସେହି କାର୍ଯ୍ୟାଳୟକୁ ଯାଇ ପ୍ରୋଭିଜନାଲ ସାର୍ଟିଫିକେଟ ଓ ନମ୍ବର ତାଲିକା ଆଣି ମଙ୍ଗଳବାଗସ୍ଥ ପଶୁପାଳନ ନିର୍ଦ୍ଦେଶାଳୟରେ ଚାକିରୀ ପାଇଁ ଦରଖାସ୍ତ ଦେଲୁ ।

## ଚାକିରୀ ଓ ଉଚ୍ଚଶିକ୍ଷା ପାଇଁ ଚେଷ୍ଟା

ଯଦିଓ ଆମେ ୪୬ ଜଣ ଛାତ୍ର ପଶୁଚିକିତ୍ସା ଶେଷବର୍ଷର ପରୀକ୍ଷା ଦେଇଥିଲୁ ତହିଁରୁ ମାତ୍ର ୩୮ ଜଣ ପରୀକ୍ଷାରେ କୃତକାର୍ଯ୍ୟ ହେଲେ । ମୋର ସ୍ଥାନ ଥିଲା ଚତୁର୍ଥ । ଆମ ଶ୍ରେଣୀରେ ୧୫ ଜଣ ଓଡ଼ିଶା ବାହାରର ଛାତ୍ର ଥିଲେ। ସେମାନଙ୍କ ମଧ୍ୟରୁ ୪ ଜଣ ରାଜସ୍ଥାନୀ, ୩ ଜଣ କେରଳୀ, ୩ ଜଣ କର୍ଣ୍ଣାଟକୀ, ୨ ଜଣ ଉତ୍ତର ପ୍ରଦେଶ, ୨ ଜଣ ମେଦିନୀପୁରୀ ଓ ଜଣେ ହିମାଚଳ ପ୍ରଦେଶରୁ ଥିଲେ । କୃତକାର୍ଯ୍ୟ ହୋଇଥିବା ଛାତ୍ରମାନଙ୍କ ମଧ୍ୟରେ ଦଶ ଜଣ ବାହାର ଛାତ୍ର ଥିଲେ । ସେମାନେ ତାଙ୍କ ରାଜ୍ୟକୁ ଫେରିଗଲେ । ଓଡ଼ିଶା ପଶୁପାଳନ ବିଭାଗରେ କାର୍ଯ୍ୟ କରିବାକୁ ଆମେ ୨୮ ଜଣ ଦରଖାସ୍ତ ଦେଲୁ । ମେଦିନୀପୁରୀ ଦୁଇଜଣ ଛାତ୍ର ମଧ୍ୟ ଓଡ଼ିଶାରେ ଚାକିରୀ ପାଇଁ ଆବେଦନ କଲେ ।

ଦରଖାସ୍ତ ଦେଇସାରି ଏ ଖବର ଘରେ ଜଣାଇବାକୁ ଗାଆଁକୁ ଗଲି । ବାପା, ବୋଉ ଓ ମାଆ ଖୁବ୍ ଖୁସି ହେଲେ । ଇଷ୍ଟ ଦେବତା ଗୋପାଳଜୀଉଙ୍କ ପାଖରେ ଭୋଗ ଅର୍ପଣ କରାଗଲା । ବାପା ପଚାରିଲେ କେଉଁଠି ତୋ ଚାକିରୀ ହେବ? କହିଲି ସେ ବିଷୟରେ ଆମ ବିଭାଗର ନିର୍ଦ୍ଦେଶକ ନିଷ୍ପତ୍ତି ନେବେ । ବୋଉ କହିଲା, ତମର ପ୍ରିନ୍ସିପାଲ ପରା ଏବେ ସେଇ ଦାୟିତ୍ୱରେ ଅଛନ୍ତି। ତୁ ଟିକେ ଯାଇ ତାଙ୍କୁ ଭେଟି ଦେଇ ଆମ ଦୁଃଖକଥା କହ । ପଚାରିଲି, ତମର କ'ଣ ଦୁଃଖ ଅଛି? ସେ କହିଲା, ତୁ ଆମର ଗୋଟିଏ ବୋଲି ପୁଅ । ଆମେସବୁ ବୁଢ଼ାବୁଢ଼ୀ ହେଲୁଣି । ପାଖ ଆଖରେ ତୋର ଚାକିରୀ ନ ହେଲେ ଆମ ଖବର କିଏ ବୁଝିବ?

କଟକ ଫେରିଆସି ପଶୁପାଳନ ନିର୍ଦ୍ଦେଶାଳୟକୁ ଯାଇ ନିର୍ଦ୍ଦେଶକ ଡକ୍ଟର ଗଣେଶ୍ୱର ବିଶ୍ୱାଳଙ୍କୁ ଭେଟିଲି । ସେ ପଚାରିଲେ, କଅଣ ହେଲା ? କହିଲି ପାଖ ଆଖରେ କେଉଁଠି ମୋର ଚାକିରୀ ହେବା ପାଇଁ ବାପା ବୋଉ ଆପଣଙ୍କୁ ଅନୁରୋଧ ଜଣାଇଛନ୍ତି । ସେ ମୋ ଆଡ଼େ କଟମଟ କରି ଚାହିଁ କହିଲେ, ତୁ ଯେତେବେଳେ କଲେଜରେ ନାମ ଲେଖାଇଲୁ ତୋ ବାପା କଅଣ କହିଥିଲେ ?

ତାଙ୍କଠାରୁ ଏ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଦୀର୍ଘ ଚାରିବର୍ଷ ତଳର କଥା ଏବେ ତାଙ୍କର ମନେ ଅଛି । ମୁଁ ଚୁପ୍ ରହିଲି । ସେ ପୁଣି ପଚାରିଲେ ତୋ ବାପା ପରା ଜମିଦାର ଲୋକ ? ତୋତେ ପଶୁଡାକ୍ତର ଭାବେ ସେ ପରା ଦେଖିବାକୁ ଚାହାନ୍ତି ନାହିଁ? ଏବେ ତୋର ଚାକିରୀ କ'ଣ ହେବ? ପଚାରିଲି, ତାହେଲେ ମୁଁ କ'ଣ କରିବି ?

ସେ କହିଲେ, ଯା ଉଚ୍ଚଶିକ୍ଷା ପାଇବାକୁ ଚେଷ୍ଟା କର । ଯୁକ୍ତରାଷ୍ଟ୍ର ଆମେରିକା ଯାଇ ଡିଗ୍ରୀ ହାସଲ କର । ସେଠି ମଧ୍ୟ ତୁ ବଡ଼ ଚାକିରୀ ପାଇବୁ । କହିଲି ସାର୍ । ମୋ ବାପାଙ୍କର ଆର୍ଥିକସ୍ଥିତି ଭଲନାହିଁ । ମୁଁ ଯୁକ୍ତରାଷ୍ଟ୍ର ଆମେରିକାରେ ପାଠ ପଢ଼ିବାକୁ ପଇସା କେଉଁଠୁ ପାଇବି? ସେ କହିଲେ, ଇଚ୍ଛା ଥିଲେ ସବୁ ହେବ । ଉଚ୍ଚାଭିଳାଷୀ ହୁଅ । ତାହେଲେ ଜୀବନରେ ଭଲମଣିଷ ହେବୁ ।

ମୁଁ ପଶୁଚିକିତ୍ସା ବିଜ୍ଞାନ ପଢ଼ିବା ପାଇଁ ମୋବାପା ଆଦୌ ରାଜି ନଥିଲେ । ଏ କଲେଜରେ ମୁଁ ନାମ ଲେଖାଇବା ଯୋଗୁଁ ବାପାଙ୍କ ମନରେ ବହୁତ ଦୁଃଖ ହେଲା । ସେ ଭାବିଲେ; ତାଙ୍କର ଆର୍ଥିକ ଅବସ୍ଥା ଖରାପ ହେତୁ ମୁଁ ବାଧ ହୋଇ ଏ ପାଠ ପଢ଼ିଲି । ମୋ ସାଙ୍ଗମାନଙ୍କ ଆଗରେ ଏ କଥା କହି ମୁଁ କଲେଜ ଛାଡ଼ି ଦେବାକୁ ଦରଖାସ୍ତ ମଧ୍ୟ କରିଥିଲି । ଏ ସବୁ କଥା ଡକ୍ଟର ବିଶ୍ୱାଳଙ୍କର ପୂରା ମନେ ଥିଲା । ତେଣୁ ତାଙ୍କୁ ମୁଁ ଆଉ କିଛି କହି ପାରିଲି ନାହିଁ ।

ତାଙ୍କୁ ପ୍ରଣାମ କରି ଚାଲି ଆସିଲି । ସେଇଦିନ ଆମକୁ ଚାକିରୀରେ ଯୋଗ ଦେବାପାଇଁ ଚିଠି ମିଳିଗଲା । ତାପରଦିନ ଆମେ କଟକ ଜିଲା ପଶୁ ଚିକିତ୍ସା ଅଧିକାରୀଙ୍କ (ଡ଼ିଭିଓ) କାର୍ଯ୍ୟାଳୟରେ ଯୋଗ ଦେଲୁ । କଟକରେ ତିନିଚାରି ସ୍ଥାନରେ ଆମର ତାଲିମ୍ ନେବାର ହେଲା । ତାପରେ ଅନୁଗୁଳରେ ମଧ୍ୟ ତାଲିମ ନେଲୁ । ଏଇ ଭିତରେ ଦୁଇମାସ ବିତିଗଲା । କଟକ ଡି.ଭି.ଓ. ଙ୍କ କାର୍ଯ୍ୟାଳୟରୁ ଦରମା ମିଳୁଥାଏ । ତାଲିମ ଶେଷରେ ବିଭିନ୍ନ ଜିଲାରେ କାର୍ଯ୍ୟରେ ଯୋଗ ଦେବା ଲାଗି ଆଦେଶ ନାମା ବାହାରିଗଲା । ମୋ ସହିତ ଅନ୍ୟ ଜଣେ ସହପାଠୀଙ୍କର ସୁନ୍ଦରଗଡ଼ ଡି.ଭି.ଓଙ୍କ ଅଧୀନରେ କାର୍ଯ୍ୟ କରିବାକୁ ଚିଠି ମିଳିଗଲା । ମଝିରେ ସାତଦିନ ସମୟ ଥାଏ ।

ଗାଆଁକୁ ଯାଇ ଇଷ୍ଟ ଦେବତା ଗୋପାଳଙ୍କ ଦର୍ଶନ କରି ବାପାବୋଉଙ୍କ ଠାରୁ ବିଦାୟ ନେଇ ଆସିଲି । ଏତେ ଦୂରରେ ମୁଁ ରହିବା କଥା ଶୁଣି ସେମାନଙ୍କ ମନରେ ଦୁଃଖ ଭରିଥାଏ । ଶ୍ୱଶୁରାଳୟରେ ମଧ୍ୟ ସେଇ ଅବସ୍ଥା । ସେଠାରେ ସ୍ନେହଲତା ଓ ଟିକିଝିଅଙ୍କୁ ଛାଡ଼ି ସୁନ୍ଦରଗଡ଼ ଯାତ୍ରା କଲି ।

ସେତେବେଳେ ମହାନଦୀ ଓ ବିରୂପା ନଦୀ ଉପରେ ପୋଲ ନଥାଏ । ନିର୍ଗୁଣ୍ଡିରୁ ସମ୍ବଲପୁର, ସୁନ୍ଦରଗଡ଼, କେନ୍ଦୁଝର ଓ ବଲାଙ୍ଗୀର ଆଦି ସ୍ଥାନକୁ ବସ୍ ଚାଲୁଥାଏ । ଯୋବ୍ରାଘାଟରୁ ଲଞ୍ଚରେ ମହାନଦୀ ପାର ହୋଇ ଜଗତପୁର ପହଞ୍ଚି ସେଠାରୁ ରିକ୍ସାରେ ନିର୍ଗୁଣ୍ଡି ଯାଇ ସନ୍ଧ୍ୟା ଛଅଟାବେଳକୁ ସୁନ୍ଦରଗଡ଼ ବସ୍ ଧରିଲି । ରାସ୍ତା ଅତ୍ୟନ୍ତ ସଂକୀର୍ଣ୍ଣ ଥାଏ । ତାପରଦିନ ଆଠଟା ସୁଦ୍ଧା ବସ୍‌ଟି ସୁନ୍ଦରଗଡ଼ରେ ପହଞ୍ଚିଲା । ପଶୁଚିକିତ୍ସାଳୟରେ ପହଞ୍ଚି ଡାକ୍ତର କୁର୍ମନାଥ ପଟ୍ଟନାୟକଙ୍କୁ ଦେଖା କଲି । ସେ ମୋତେ ସାଥିରେ ନେଇ ଡିଭିଓଙ୍କ ସହିତ ଭେଟ କରାଇଲେ । ଡାକ୍ତର ରାଧାକୃଷ୍ଣ ସାହୁ ଡିଭିଓ ଥାଆନ୍ତି । ସେ ମୋତେ ସାନପିଲା ପରି ବ୍ୟବହାର କଲେ । ମୋ ବିଷୟରେ ସବୁ ଜାଣିବା ପରେ ପଚାରିଲେ ଯଦି ତମ ଘର ଆଳିପିଙ୍ଗଳ ବୋଲି କହୁଛୁ ତାହାଲେ, ତୁମେ ସେ ଜମିଦାର ବାବୁଙ୍କ ପୁଅ କି ? କହିଲି ହଁ । ସେ ଚୌକୀରୁ ଉଠି ମୋତେ କୁଣ୍ଢାଇ ପକାଇ କହିଲେ, ପନ୍ଦରବର୍ଷ ତଳେ ମୁଁ ଜଗତସିଂହପୁର ପଶୁଚିକିତ୍ସାଳୟରେ ଥିଲି। ବହୁବାର ତୁମ ଘରେ ମୋର ଖିଆପିଆ ହୁଏ। ତୁମ ବାପା ଅତ୍ୟନ୍ତ ଭଦ୍ରଲୋକ । ତୁମେ ଏତେ ବଡ଼ ଖାନ୍‌ଦାନି ବଂଶର ପିଲା ହୋଇ ଚାକିରୀ କରିବାକୁ ଏତେ ବାଟ ଆସିଲ କେମିତି ? ତୁମ ପାଇଁ ସେଇଭଳି ଗୋଟେ ଭଲ ଜାଗା ଦରକାର । ମୋତେ ସେ ବଣେଇ ଯିବାପାଇଁ କହିଲେ । ସୁନ୍ଦରଗଡ଼ ଜିଲ୍ଲାର ଏକ ବଡ଼ ସବ୍‌ଡ଼ିଭିଜନ (ଉପଖଣ୍ଡ) ବଣେଇଗଡ । ଡାକବଙ୍ଗଳା ହତାକୁ ଲାଗି ପଶୁଚିକିତ୍ସାଳୟ । ପାଖରେ ହାଇସ୍କୁଲ ଓ ବ୍ଲକ୍ କଲୋନୀ ଅଛି । ସ୍ଥାନୀୟ ଅଫିସରମାନଙ୍କ ମଧ୍ୟରେ ଖୁବ୍ ମେଳ ଥାଏ । ଡାକ୍ତର ସାହୁ କହିଲେ ସେଠି ନୂଆ କ୍ୱାଟର୍ ତିଆରି ହୋଇଛି । ସେ ଜାଗାଟା ତୁମକୁ ଖୁବ୍ ଭଲ ଲାଗିବ ।

ଘରଠୁଁ ତିନିଶହ କିଲୋମିଟର ଦୂରକୁ ଆସିବା ପରେ ଆଉ ଦୁଇଶହ କିଲୋମିଟର ଯିବା ପାଇଁ ମୋର ଆପତ୍ତି ନଥିଲା । ସୁନ୍ଦରଗଡ଼ରୁ ରାଉରକେଲା ଆସି ସେଠାରେ ପଶୁଚିକିତ୍ସକଙ୍କ ଘରେ ରାତ୍ରିଯାପନ କଲି । ତାପରଦିନ ଭୋର ସାତଟାରେ ବଣାଇଗଡ଼କୁ ବସ୍ ଧରିଲି । ବସ୍‌ର କଣ୍ଡକ୍‌ଟର କହିଲେ, ତୁମ୍‌କେଲା ଘାଟ ଠାରେ ବସ୍ ରହିବ । ସେହି ଘାଟରେ ବ୍ରାହ୍ମଣୀନଦୀ ପାରହୋଇ ଆରପାଖେ ବଣେଇରେ ପହଞ୍ଚିବା କଥା । ଦୁଇଦିନ ତଳେ ତୁମ୍‌କେଲା ଘାଟରେ ଗୋଟିଏ ଡଙ୍ଗାବୁଡ଼ି ଯାଇ ଦୁଇଜଣ

ମରିଯାଇଛନ୍ତି । ତେଣୁ ଡଙ୍ଗା ପାଇବାକୁ ଅସୁବିଧା ହୋଇପାରେ । ସେଇ ଘାଟରେ ଟିକେ ଅପେକ୍ଷା କରିବାକୁ ହେବ ।

ମୋର ଆଉ କିଛି କହିବାର ନଥିଲା । ଥରେ ଘରଛାଡ଼ି ସରକାରୀ କାର୍ଯ୍ୟରେ ଯୋଗ ଦେଇ ସାରିବା ପରେ ନିଷ୍ଠାପର ଭାବେ ନିଜର କର୍ତ୍ତବ୍ୟ କରିବାକୁ ହେବ । ସୁନ୍ଦରଗଡ଼ ଜିଲା ସଦରମହକୁମା ଠାରୁ ଏ ସ୍ଥାନଟା ପ୍ରାୟ ଦୁଇଶହ କିଲୋମିଟର ବାଟ । ତେଣୁ ଅଧିକାଂଶ କର୍ମଚାରୀ ଏତେ ଦୂର ଆସିବାକୁ ରାଜି ହୁଅନ୍ତି ନାହିଁ । ଉପରିସ୍ଥ କର୍ମଚାରୀ ମାନଙ୍କୁ ଧରାଧରି କରି ଘର ପାଖରେ ରହିବାକୁ ଚେଷ୍ଟା କରନ୍ତି । ମାତ୍ର ମୁଁ ଏଭଳି କରିବାର ପକ୍ଷପାତି ନଥିଲି । ଏ ଅଞ୍ଚଳର ଜଙ୍ଗଲ, ପାହାଡ଼, ଝରଣା ଆଦି ଦେଖି ମୋତେ ଖୁବ୍ ଭଲ ଲାଗୁଥାଏ । ସେଇ ଜଙ୍ଗଲ ପାହାଡ଼ରେ ରହୁଥିବା ଆଦିବାସୀ ମାନଙ୍କର ସେବା କରିବାରେ ଆନନ୍ଦ ଅଛି । ଅବଶ୍ୟ ଏଥିଲାଗି କଷ୍ଟ କରିବାକୁ ହେବ । ସେଥିପାଇଁ ମୋର ଦୁଃଖ ନଥିଲା । ବସ୍‌ଯାତ୍ରୀ ମାନେ ତୁମ୍‌କେଲା ଘାଟରେ ଗତ ଦୁଇଦିନ ତଳେ ଘଟିଯାଇଥିବା ଡଙ୍ଗାବୁଡ଼ି ଦୁର୍ଘଟଣା ବିଷୟରେ କଥାଭାଷା ହେଉଥିଲେ । ତନ୍ମଧ୍ୟରୁ ଅନେକ ଲୋକ ନଦୀ ପାର ହେବାପାଇଁ ଭୟ କରୁଥିଲେ । ମାତ୍ର ମୋର ସେଥିଲାଗି ଚିନ୍ତା ନଥିଲା । ଯିଏ ପ୍ରୟାଗ ତୀର୍ଥରେ ଗଙ୍ଗା ସ୍ରୋତରୁ ଜୀବନ ବଞ୍ଚାଇ ପାରିଛି, ତା ଲାଗି ବ୍ରାହ୍ମଣୀ ନଦୀ ଭୟର କାରଣ ହୋଇ ନପାରେ ।  ପୂର୍ବାହ୍ନ ସାଢ଼େ ଏଗାରଟା ସୁଦ୍ଧା ଆମେ ତୁମ୍‌କେଲା ଘାଟରେ ପହଞ୍ଚିଲୁ । ଗୋଟିଏ ଚା ଦୋକାନରେ ବସି ମୋ ଜିନିଷପତ୍ର ଓ ସାଇକେଲ୍ ନେଇ ଡଙ୍ଗାରେ ଲଦିବାକୁ ଲୋକଟାଏ ଖୋଜିଲି । ଲୋକ ମିଳିବାକୁ ଡେରି ହେବାରୁ ଡଙ୍ଗା ଛାଡ଼ିଦେଲା । ସେଇ ଡଙ୍ଗାରେ ଯାଉଥିବା ଲୋକଙ୍କ ହାତରେ ପଶୁଚିକିତ୍ସାଳୟକୁ ଖବର ଦେଲି । ସେଠାକାର ପିଅନ ଉପରବେଳା ଜଣେ ଲୋକ ଆଣି ଆସିଲା ଓ ଡାକ୍ତରଖାନାରେ ପହଞ୍ଚିଲାବେଳକୁ ସେଦିନ ଚାରିଟା ବାଜି ସାରିଥିଲା । ଖାଇବା ପିଇବାରେ ଠିକ୍ ରହିଲା ନାହିଁ ।

ଛଅମାସ ଧରି ଏଠି ପଶୁଚିକିତ୍ସକ ନଥିଲେ । ମୁଁ ଆସି ଯୋଗ ଦେବା ପରେ କଟକରୁ ଆସି ଏଠି କନିଷ୍ଠ ଯନ୍ତ୍ରୀ ଭାବେ କାମ କରୁଥିବା ନୃସିଂହ ଚରଣ ବେହେରାଙ୍କ ସହିତ ଦେଖାହେଲା । ତାଙ୍କ ସ୍ତ୍ରୀ ମୋ ଶାଳୀର ସାଙ୍ଗ । ମୋ ଆସିବା ଖବର ପାଇ ସେ ମୋ ନିକଟକୁ ଆସିଲେ ଓ ମୋତେ ତାଙ୍କ ଘରକୁ ଡାକିନେଲେ । ସେତେବେଳେ ବଣେଇଠାରୁ ବାର୍‌କୋଟ ପର୍ଯ୍ୟନ୍ତ ରାସ୍ତା ତିଆରି ଚାଲିଥାଏ । ବଣେଇ ଠାରୁ ବାର୍‌କୋଟ୍ ପର୍ଯ୍ୟନ୍ତ ରାସ୍ତା ଷାଠିଏ କିଲୋମିଟର। ଷାଠିଏ କିଲୋମିଟର ରାସ୍ତାରେ ବହୁ ଝରଣା,  ପାହାଡ଼ିଆ ନଦୀ, ଛୋଟ ଛୋଟ ପାହାଡ଼ ଓ ଘଞ୍ଚ ଜଙ୍ଗଲ ଭରି

ରହିଥାଏ । ଜଙ୍ଗଲ କାଟି, ପାହାଡ଼ ତାଡ଼ି, ନଦୀ ଓ ଝରଣା ମାନଙ୍କରେ ପୋଲ ତିଆରି କରି ରାସ୍ତାକାମ ଲାଗିଥାଏ । ପ୍ରତି ସପ୍ତାହରେ ଠିକାଦାରମାନେ ତାଙ୍କର ବିଲ୍ ପାଆନ୍ତି ଓ ସେଦିନ ସନ୍ଧ୍ୟାରେ ଭୋଜି ହୁଏ । ନୃସିଂହ ବାବୁ ଆସି ମୋତେ ଭୋଜିକୁ ଡାକିନେଇ ଯାଆନ୍ତି । ସେଇ ଭୋଜିରେ ଅନେକ ଲୋକଙ୍କ ସହିତ ଭେଟ ହୁଏ । ସେଠାକାର ସହକାରୀ ଲୋକସମ୍ପର୍କ ଅଧିକାରୀ, ସବ୍‌ଡ଼େପୁଟୀ  କଲେକ୍ଟର, କୃଷି ବିଭାଗ ପରିଦର୍ଶକ ଓ ଶିକ୍ଷକ ତାଲିମ କେନ୍ଦ୍ରର ପ୍ରଧାନଶିକ୍ଷକ ଯୁବଗୋଷ୍ଠୀର ହୋଇଥିବାରୁ ଆମ ଭିତରେ ବନ୍ଧୁତା ଜମି ଉଠିଲା ।

ମୋ ଅଧୀନରେ ବାରଟି ପଶୁ ସହାୟକ କେନ୍ଦ୍ର ଥାଏ, ମାତ୍ର ସେ ସବୁ ସ୍ଥାନକୁ ଯିବାକୁ ଖୁବ୍ କଷ୍ଟସାଧ ଥିଲା । ଘନ ଜଙ୍ଗଲ, ପାହାଡ଼ିଆ ରାସ୍ତା, ପାହାଡ଼ିଆ ଝରଣା କିମ୍ବା ନଦୀ ଅତିକ୍ରମ କରି ସାଇକେଲ୍‌ରେ କୋଡ଼ିଏ ତିରିଶ କିଲୋମିଟର ଯିବାକୁ ମୋର ଇଚ୍ଛା ଥିଲେ ମଧ ମୋର ପିଅନ ବା ପଶୁସହାୟକ ସାଙ୍ଗରେ ଯିବାକୁ ରାଜି ହୁଅନ୍ତି ନାହିଁ । ବାଟରେ ହାତ୍ରୀ ଉପଦ୍ରବ, ସନ୍ଧ୍ୟା ହୋଇଗଲେ ବାଘର ଭୟ, ବାଟରେ ସାଇକେଲ ଖରାପ ହୋଇଗଲେ ଫେରିବା ପାଇଁ ଅସୁବିଧା ଇତ୍ୟାଦି ନାନା ଆଳ ଦେଖାଇ ସେମାନେ ମୋତେ ଦୂରବାଟ ଯିବାକୁ ନିରୁତ୍ସାହିତ କରନ୍ତି । ତଥାପି ଜଙ୍ଗଲ ପାହାଡ଼ରେ ବୁଲିବା ପାଇଁ ମୋର ପ୍ରବଳ ଇଚ୍ଛା ଥାଏ ।

ମୋତେ ଖବର ମିଳିଲା ଯେ, ବାମଣ୍ଡା ପାଖାପାଖି ସୋଲ୍ ଅଞ୍ଚଳରେ କୁକୁଡ଼ା ରୋଗ ବ୍ୟାପିଛି । ବଣେଇଗଡ଼ରୁ ଏହି ଜାଗା ଅଶୀ କିଲୋମିଟର ଦୂର । ସେଠାକାର ପଶୁ ସହାୟକ ମୋ ଅଧୀନସ୍ଥ କର୍ମଚାରୀ । ଚିଠି ଦେଇ ତାଙ୍କୁ ଡକାଇଲି । ପ୍ରାୟ ପନ୍ଦରଦିନ ପରେ ସେ  ଆସି ପହଞ୍ଚିଲେ । କହିଲେ ରୋଗ ଲାଗି ରହିଛି । ସେ ତାଙ୍କ ଶକ୍ତି ଅନୁସାରେ ଚିକିତ୍ସା କରୁଛନ୍ତି । ମାତ୍ର ସେପରି ସଫଳତା ମିଳିନାହିଁ । କହିଲି, ମୁଁ ଯିବି। ସେ କହିଲେ, ଆପଣଙ୍କୁ ବହୁତ କଷ୍ଟ ହେବ । କହିଲି, ଆପଣ ତ ଏଠାକୁ ଆସିପାରୁଛନ୍ତି, ମୁଁ କାହିଁକି ଯାଇ ନ ପାରିବି ? ସେ କହିଲେ, ମୁଁ ଚାଳିଶି କିଲୋମିଟର ବାଟ ଜଙ୍ଗଲ ରାସ୍ତାରେ ସାଇକେଲ୍‌ରେ ଆସି କୁର୍ଡ଼ାଠାରୁ ବସ୍ ଧରିଲି । କୁର୍ଡ଼ାରୁ ଜଣେ ସର୍ଦ୍ଦାରଜୀ ବଣେଇକୁ ଗୋଟିଏ ବସ ଚଳାଉଛି । ମଝିରେ ଗୋଟାଏ ପାହାଡ଼ ଶିଖର ଉପରକୁ ଉଠି ଯେପରି ଭାବେ ଜୀବନ ମୂର୍ଚ୍ଛା ସେ ଗାଡ଼ି ଚଳାଉଛି କେତେବେଳେ ଯେ ଦୁର୍ଘଟଣା ନ ଘଟିବ ତାର ଠିକଣା ନାହିଁ । ଏଇ ମାତ୍ର ଛଅମାସ ହେଲା ସେ ବସ୍ ଚଳାଇବା ଆରମ୍ଭ କରିଛି । ଅତି ଦୁଃସାହସୀ ଡ୍ରାଇଭର । କହିଲି, ସେ ବସ୍‌ରେ ଯଦି ସ୍ଥାନୀୟ ଲୋକେ ଯିବା ଆସିବା କରି ପାରୁଛନ୍ତି ତାହାଲେ ମୁଁ ନିଶ୍ଚୟ ଯିବି । ହୁଏତ ପୂର୍ବରୁ ଏଠାକାର ଡାକ୍ତରମାନେ ଏଇ ଭୟରେ ସେଠିକି ଯିବା

ପାଇଁ ସାହାସ କରି ନାହାନ୍ତି, ମାତ୍ର ମୋର ସେ ଭୟ ନାହିଁ । ତାଙ୍କ ହାତରେ ଜର୍ଡ଼ା ପଶୁ ସହାୟକଙ୍କୁ ଚିଠି ଲେଖି ଆଠଦିନ ପରେ ମୋ ସହିତ ସୋଲ୍ ଯିବାକୁ ସଜହୋଇ ରହିବାକୁ ଜଣାଇଦେଲି ।

ବଣେଇଗଡ଼ଠାରୁ ପାଞ୍ଚ କିଲୋମିଟର ଦୂର ଧରଣୀଧର ପାଲି ଠାରେ ରାଜାଙ୍କର ରଙ୍ଗମହଲ ଅଛି । ରାଜାମାନେ ସେଠାକୁ ଯାଇ ମଉଜ ମଜଲିସ୍‌ରେ ପ୍ରତି ସପ୍ତାହରେ ଗୋଟିଏ ଦିନ କଟାଉଥିଲେ । ମାତ୍ର ଏବେ ସେଠାରେ ଗ୍ରାମପଞ୍ଚାୟତ ତାଲିମ କେନ୍ଦ୍ର ହୋଇଛି । ସେଠାରେ ସବ୍‌ଡେପୁଟୀ ପାହ୍ୟାର ଜଣେ ଅଧକ୍ଷ ଓ ସାମାଜିକ ଶିକ୍ଷା ସଂଗଠନ ପାହ୍ୟାର ତିନିଜଣ ଅଧାପକ ଥାଆନ୍ତି । ମଝିରେ ମଝିରେ ଡାକ୍ତର, ପଶୁଚିକିତ୍ସକ, ଜଙ୍ଗଲଅଧୀକ୍ଷକ ଆଦି ବୈଷୟିକ ବିଶେଷଜ୍ଞ ମାନଙ୍କୁ ସେମାନେ ତାଲିମ କାର୍ଯ୍ୟକ୍ରମରେ ସାମିଲ କରନ୍ତି । ସେଠାରେ ବିଜ୍ଞାନଚନ୍ଦ୍ର ମହାନ୍ତି ନାମକ କଟକର ଜଣେ ଅଧାପକ ଥାଆନ୍ତି । ସେ ମୋ ପାଖକୁ ଆସି ଧରଣୀଧରପାଲି ଯିବାକୁ ନିମନ୍ତ୍ରଣ କଲେ ।

ମୁଁ ଯାଇ ଗ୍ରାମ ପଞ୍ଚାୟତ ସେକ୍ରେଟାରୀ ମାନଙ୍କୁ ପଶୁପାଳନ ବିଷୟରେ ଶିକ୍ଷା ଦେଲି । ଗୋଟିଏ ଥରରେ ଷାଠିଏ ଜଣ ସେକ୍ରେଟାରୀ ସେଠାରେ ତାଲିମ ନେଉଥାନ୍ତି । ତାଲିମ ସମୟ ଦୁଇ ମାସ । ପ୍ରତି ଦୁଇମାସରେ ଦଳେ ତାଲିମ ପାଇ ସାରିଲେ ଆଉ ଏକଦଳ ଆସି ପହଞ୍ଚି ଯାଆନ୍ତି । ମୋ କ୍ଲାସ୍‌ଟା ସେମାନଙ୍କୁ ଖୁବ୍ ଭଲ ଲାଗେ। ଖୁବ୍ ଆଗ୍ରହ ସହକାରେ ସେମାନେ ମୋ ଭାଷଣ ଶୁଣନ୍ତି । ତେଣୁ ଅଧକ୍ଷ କହିଲେ, ଗୁରୁବାବୁ ଆପଣ ଦୟାକରି ପ୍ରତି ସପ୍ତାହରେ ଗୋଟିଏ କ୍ଲାସ ଯଦି ନେଇ ପାରନ୍ତେ ଆମେ ବହୁତ ଉପକୃତ ହୁଅନ୍ତୁ । ହେଲେ ବଦଳରେ ଆମେ ଆପଣଙ୍କୁ କିଛି ଦେଇ ପାରିବୁ ନାହିଁ । ଆପଣଙ୍କ ଶିକ୍ଷାଦାନ ପଦ୍ଧତି ସମସ୍ତଙ୍କ ମନକୁ ଛୁଇଁଛି । ତେଣୁ ପଞ୍ଚାୟତ ସେକ୍ରେଟେରୀମାନେ ଆପଣଙ୍କଠାରୁ ଦୁଇପଦ ଶୁଣିବାକୁ ଚାହାନ୍ତି ।

ତାଙ୍କର ଅନୁରୋଧ ଭାଙ୍ଗିନପାରି ସପ୍ତାହରେ ଗୋଟିଏ ଦିନ ଉପରବେଳା ଯାଇ ଧରଣୀଧରପାଲିରେ ପଞ୍ଚାୟତ ସେକ୍ରେଟେରୀ ମାନଙ୍କୁ ପଶୁପାଳନ ବିଷୟରେ ତଥ୍ୟପୂର୍ଣ୍ଣ ଶିକ୍ଷା ଦେଇ ସନ୍ଧ୍ୟାବେଳକୁ ଫେରିଆସେ । ଇତି ମଧ୍ୟରେ ଦୁଇ ଦଳ ସେକ୍ରେଟେରୀଙ୍କୁ ତାଲିମ ଦେଇଥିଲି । ତେଣୁ ଜର୍ଡ଼ା ଓ ସୋଲ୍ ଦୁଇ ପଞ୍ଚାୟତରେ ସେକ୍ରେଟାରୀ ମାନେ ମୋ ଯିବା ଖବର ପାଇ ଅତି ଖୁସି ହୋଇଗଲେ।

ଠିକଣାଦିନରେ ମୋ ପିଅନକୁ ଧରି ବଣେଇଗଡ଼ଠାରୁ ଜର୍ଡ଼ା ଯାଉଥିବା ସର୍ଦ୍ଦାର ବସ୍‌ରେ ବସିଲି। ବସ୍‌ଟି ଜଙ୍ଗଲ ପାହାଡ଼ ଦେଇ ଗତି କରୁଥାଏ । ଜଙ୍ଗଲ ବିଭାଗର

ପାହାଡ଼ିଆ ରାସ୍ତାରେ କେବଳ ଜିପ୍ ଯିବା ପାଇଁ ଶଗଡ଼ଗୁଳା ପରି ଚିହ୍ନ ପଡ଼ିଛି । ଜଙ୍ଗଲି ଗଛ ଗୁଡ଼ିକର ଡାଳ ସବୁ ରାସ୍ତା ଉପରକୁ ଲମ୍ବି ଆସିଥାଏ। ଠାଏ ଠାଏ ମୋରମ୍ ବିଛାଯାଇଥାଏ। ଯେତେବେଳେ ବସ୍‌ଟା ତୀଖ ପାହାଡ଼ ଉପରକୁ ଚଢ଼ିଗଲା, ସେତେବେଳେ ଖୁବ୍ ଭୟ ଲାଗିଲା । ରାସ୍ତା କଡ଼ରେ କୌଣସି ଅଧା କାନ୍ଥ ବା ସୀମା ନିର୍ଦ୍ଧାରଣକାରୀ ଚିହ୍ନ ବର୍ଣ୍ଣ ନଥାଇ ଅଣଓସାରିଆ ଉଠାଣି ରାସ୍ତା ଉପରେ ବସ୍ ଚଢ଼ାଇଦେବା ବସ୍ ଚାଳକର ସାହାସ ଉପରେ ନିର୍ଭର କରୁଥାଏ । ତେବେ ସେଇ ପନ୍ଦର କୋଡ଼ିଏ ମିନିଟ୍ ଆମେ ସବୁ ବସଯାତ୍ରୀ ଭୟ ଓ ଆଶଙ୍କା ଭିତରେ କଟାଇ ନିରାପଦରେ ଘାଟିରୁ ଓହ୍ଲାଇଗଲୁ । ସନ୍ଧ୍ୟା ପାଞ୍ଚଟା ସୁଦ୍ଧା ଆମେ ଜର୍ଡ଼ାରେ ପହଞ୍ଚିଲୁ । ସେଠାକାର ପଶୁ ସହାୟକ କେନ୍ଦ୍ରରେ ପହଞ୍ଚି ରାତ୍ରିଯାପନ କଲୁ । ତାପର ଦିନ ଭୋର ସକାଳୁ ନିତ୍ୟକର୍ମ ସାରି ମୁଢ଼ି ଓ ପାଚିଲା ଅମୃତଭଣ୍ଡା ଖାଇ ସାରି ସୋଲ୍ ବାହାରି ପଡ଼ିଲୁ । ଚାରିଟି ସାଇକେଲ୍ ଆଗ ପଛ ହୋଇ ଚାଲିଥାଏ ଜର୍ଡ଼ାର ପିଅନ, ପରେ ପଶୁସହାୟକ, ତାପରେ ମୁଁ ଓ ମୋ ପଛରେ ମୋ ପିଅନ ଗୋଟିଏ ଧାଡ଼ିରେ ଜଙ୍ଗଲି ରାସ୍ତାରେ ସୋଲ୍ ଅଭିମୁଖେ ଚାଲିଲୁ । ପାଦଚଲା ରାସ୍ତା ଉପରେ ଗଛର ଶୁଖିଲା ପତ୍ର ସବୁ ଗଦା ହୋଇ ରହିଥାଏ । ତା ଉପରେ ସାଇକେଲ୍ ଚଳାଇବା ବେଳେ ଖୁବ୍ ଜୋର୍‌ରେ ସର୍ ସର୍ ଶବ୍ଦ ହେଉଥାଏ । ବାଟରେ ଏକ ବିଶାଳ ସାପ ପତ୍ରଗଦା ତଳୁ ବାହାରି ଚାଲିଯିବା ବେଳେ ପିଅନ କହିଲା, ଏଇଟା ଅହିରାଜ ଆଜ୍ଞା । ଆମ ଶବ୍ଦ ଶୁଣି ଭୟରେ ପଳାଉଛି । ଗୋଟାଏ ଜାଗାରେ ହାତୀ ମାନଙ୍କ ମଳ ଦେଖି ପିଅନ ଆମକୁ ଠିଆ ହେବାକୁ କହି ଗଛ ଉପରେ ଚଢ଼ିଗଲା । କିଛି ସମୟ ଏଣେତେଣେ ଅନାଇ ସାରି ପୁଣି ଆଗେଇବାକୁ ଇଙ୍ଗିତ ଦେବାରୁ ଆମେ ଚାଲିଲୁ । ବାଟ ସାରା ଆଦିବାସୀ ଯୁବକ ଯୁବତୀମାନେ ଜଙ୍ଗଲରୁ କାଠ କାଟିଲା ବେଳେ ଆମକୁ ଦେଖି ଭୟରେ ଦୂରକୁ ଦୌଡ଼ି ପଳାଇ ଲୁଚି ଯାଉଥାଆନ୍ତି । ଅଧିକାଂଶ ଜାଗାରେ ଝିଙ୍କାରୀ ମାନଙ୍କର ଝିଁ ଝିଁ ଶବ୍ଦରେ ଭୟ ସଞ୍ଚାର ହେଉଥାଏ । ଦିନ ପ୍ରାୟ ଦୁଇଟାସୁଦ୍ଧା ଆମେ ସୋଲ୍‌ରେ ପହଞ୍ଚିଲୁ । ସୋଲ୍‌ର ପଶୁ ସହାୟକ ଆମପାଇଁ ଭାତ, ଡାଲି ଓ ଆଳୁଭଜା କରି ଅପେକ୍ଷା କରିଥାନ୍ତି । ଖାଇ ସାରି ଉଠିଲା ବେଳକୁ ସେଠାକାର ସରପଞ୍ଚ ଓ ପଞ୍ଚାୟତ ସେକ୍ରେଟାରୀ ଆସି ପହଞ୍ଚିଲେ । ଧରଣୀଧର ପାଲିରେ ସେହି ପଞ୍ଚାୟତ ସେକ୍ରେଟାରୀଙ୍କୁ ମୁଁ ପଶୁପାଳନ ବିଷୟ ପଢ଼ାଇଥିଲି । ତେଣୁ ମୋତେ ଗୁରୁଙ୍କ ମାନ୍ୟତା ଦେଇ ସେ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ କଲେ । ସେଠାକାର ପୋଲିସ୍ କନେଷ୍ଟବଲ ଆସି ମୋର ଗସ୍ତକ୍ରମ ବୁଝି ଯେଉଁ ଗାଆଁରେ କୁକୁଡ଼ାରୋଗ ହୋଇଛି ସେଠି ଯାଇ ଖବର କରି ଆସିଲେ । ସୁନ୍ଦରଗଡ଼ ଜିଲାର ଏକ ସୀମାନ୍ତ ଗ୍ରାମର ଶାନ୍ତ ସରଳ ଲୋକମାନଙ୍କୁ ଦେଖି ମୋତେ ଭାରି ଆନନ୍ଦ ଲାଗୁଥାଏ । ଏ ପର୍ଯ୍ୟନ୍ତ ସେ ଗ୍ରାମକୁ

ମୋ ପରି ଜଣେ ସରକାରୀ କର୍ମଚାରୀ ଆସି ନଥିବା କଥା ଶୁଣି ଆଶ୍ଚର୍ଯ୍ୟ ଲାଗୁଥାଏ । ସରପଞ୍ଚ, ସେକ୍ରେଟାରୀ, ଦୁଇଜଣ ପଶୁ ସହାୟକ ଓ ପୋଲିସ କନେଷ୍ଟବଳ ଏକାଠି ଗାଆଁ ଚଟଶାଳୀଘରେ ରାତ୍ରି ଯାପନ କଲୁ । ମୋ ପାଇଁ ଗୋଟିଏ ମଶାରୀ ଅଣା ହୋଇଥାଏ । ଦଉଡ଼ିଆ ଖଟ ଉପରେ ସତରଞ୍ଜି ବିଛାଇ ଶୋଇଗଲି । ଭୋର ସକାଳୁ ଉଠି ଗାଆଁ ପୋଖରୀରେ ଗାଧୋଇ ସାରି ମୁଢ଼ି ଖାଇଦେଇ ରୋଗ ବ୍ୟାପୁଥିବା ଗାଆଁକୁ ଗଲି । ସେଠି ପହଞ୍ଚି ଦେଖିଲି କୌଣସି ଘରେ ଲୋକ ନାହାନ୍ତି । କନେଷ୍ଟବଳଠାରୁ ମୋର ସେଠାକୁ ଯିବା ଖବର ପାଇଁ ସମସ୍ତେ ଛୁଆପିଲାଙ୍କ ସହିତ ବଣ ଭିତରକୁ ପଳାଇଛନ୍ତି । କାଁ ଭାଁ କେଉଁଠି ଗାଈଟାଏ, ଘୁଷୁରୀଟାଏ ବା କୁକୁଡ଼ାଟାଏ ବୁଲୁଥିବାର ଦେଖାଗଲା। ମାତ୍ର ଲୋକମାନଙ୍କର ଭେଟ ମିଳିଲା ନାହିଁ। କନେଷ୍ଟବଳ ଜଣକ ସମସ୍ତଙ୍କୁ ଜଣାଇ ଦେଇଛି ଯେ ବଣେଇଗଡ଼ରୁ ଜଣେ ବଡ଼ ଅଫିସର ଆସିଛନ୍ତି । କାଲି ତୁମ ଗାଆଁକୁ ଆସିବେ। ଲୋକେ ଭୟରେ ଘରଦ୍ୱାର ଛାଡ଼ି ପଳାଇ ଯାଇଛନ୍ତି। ଏତେ ଗୁଡ଼ାଏ ପରିଶ୍ରମ କରି କଷ୍ଟ ସ୍ୱୀକାର କରି ଏତେବାଟ ଆସିବା ପରେ ମଧ କୁକୁଡ଼ା ରୋଗ ହେବାର ସତ୍ୟାସତ୍ୟ, କାରଣ ବା କୌଣସି ପ୍ରତିକାର ବିଧାନ କରିବା ବିଷୟରେ କାହା ସହିତ ଆଲୋଚନା କରିବାର ସୁଯୋଗ ମୋ ଭାଗ୍ୟରେ ଯୁଟିଲା ନାହିଁ । ପୋଲିସ କନେଷ୍ଟବଳ ଜଣକ ସମସ୍ତଙ୍କୁ ଏଭଳି ଡରାଇ ଦେଇଛି ଯେ, ସେମାନେ ଭୟରେ ଘରଦ୍ୱାର ଛାଡ଼ି ପଳାଇଛନ୍ତି । ଦୁଇତିନିଟି ଗାଆଁ ବୁଲି ନିରାଶ ହୋଇ ଫେରିଲି । ସାଙ୍ଗରେ ନେଇଥିବା ଔଷଧପତ୍ର ସେଠାକାର ପଶୁ ସହାୟକଙ୍କୁ ଦେଇ ପୂର୍ବାହ୍ନ ୧୧ଟା ସୁଦ୍ଧା ମଧ୍ୟାହ୍ନ ଭୋଜନ ସାରି ଜର୍ଡ଼ା ବାଟ ଧରିଲୁ । ଜଙ୍ଗଲ ଭିତରେ ସାଇକେଲ ଚଳାଇ ଜର୍ଡ଼ା ପହଞ୍ଚିଲା ବେଳକୁ ସନ୍ଧ୍ୟା ହୋଇ ଆସୁଥାଏ । ସନ୍ଧ୍ୟା ପରେ ବଣ୍ୟଜନ୍ତୁଙ୍କର ଭୟ ଅଛି ବୋଲି ତରବରରେ ସାଇକେଲ ଚଳାଇ ଖୁବ୍ ବାଧା ଲାଗୁଥାଏ । ଜର୍ଡ଼ାରେ ପହଞ୍ଚି ଯାହା କିଛି ଖାଇଦେଇ ଗାଢ଼ ନିଦରେ ଶୋଇଗଲି । ପରଦିନ ସକାଳୁ ପୁଣି ସର୍ଦ୍ଦାର ବସ୍‌ରେ ବଣାଇ ଫେରିଆସିଲୁ ।

ପ୍ରାୟ ପ୍ରତି ରବିବାର ସନ୍ଧ୍ୟାରେ ପୂର୍ତ୍ତବିଭାଗ ପକ୍ଷରୁ ଭୋଜି ହୁଏ । ନୃସିଂହ ବାବୁ ଆସି ମୋତେ ଡାକିନେଇ ଯାଆନ୍ତି । ସେଦିନ ଭୋଜି ଖାଇସାରି ଘରକୁ ଫେରିଲାବେଳକୁ ରାତି ପ୍ରାୟ ଦଶଟା। ଚନ୍ଦ୍ରପକ୍ଷ ରାତି । ସେତେବେଳେ ବଣେଇ ଗଡ଼ରେ ବିଜୁଳି ନଥାଏ । ମୁଖ୍ୟ ରାସ୍ତାରୁ ଗଡ଼ି ଶଗଡ଼ ଗୁଳାରେ ସାଇକେଲ ଚଳାଇ ଡାକ୍ତରଖାନାକୁ ଫେରିବା ବାଟରେ ଗୋଟାଏ ଖାଲରେ ସାଇକେଲଟା ଗଳି ପଡ଼ିଲା । ମୋର ଗୋଟିଏ ଗୋଡ଼ ମୋଡ଼ି ହୋଇଗଲା । କୌଣସି ମତେ ଚାଲିଆସି ଗୋଡରେ ଓଦାକନା ଗୁଡ଼ାଇ ଶୋଇଗଲି । ମାତ୍ର ଖୁବ୍ ବିନ୍ଧାଛିଟିକା ହେଲା । ସକାଳୁ ଗୋଡ଼ଟା

ଫୁଲି ଯାଇଥାଏ । ମୁଁ ଚାଲି ପାରିଲି ନାହିଁ । ଏ ଖବର ମୋର ବନ୍ଧୁମାନେ ଜାଣିଗଲେ । ନୃସିଂହବାବୁ ତାଙ୍କ ଏସଡ଼ିଓଙ୍କ ସହିତ ମୋତେ ଦେଖିବାକୁ ଆସିଲେ । ବିଲ ଭିତରେ ଆସିବା ଯୋଗୁଁ ଏ ଦୁର୍ଘଟଣା ଘଟିଲା । ଏସଡ଼ିଓ କହିଲେ, ଆମ ପାଇଁ ମହାନ୍ତି ବାବୁ କଷ୍ଟ ଭୋଗିଲେ । ଖୁବ୍ ଶୀଘ୍ର ଏ ଡାକ୍ତରଖାନାକୁ ରାସ୍ତା ତିଆରି କର । ଅଫିସକୁ ଫେରିଯାଇ ଏ କଥା ସେ କହିଲେ । ପୂର୍ତ୍ତବିଭାଗ କାର୍ଯ୍ୟାଳୟରେ ଭୋଜି ଦିନ ସମସ୍ତେ ମୋତେ ଖୋଜନ୍ତି । ସେମାନଙ୍କ ଭିତରେ ମୋ ପ୍ରତି ଯେଉଁ ସମବେଦନା ପ୍ରକାଶ ପାଇଲା, ତା ଫଳରେ ପ୍ରାୟ ପନ୍ଦରଦିନ ପରେ ପଶୁଚିକିତ୍ସାଳୟକୁ ରାସ୍ତା ତିଆରି ଆରମ୍ଭ ହୋଇଗଲା । ଚାରିଶହ ମିଟର ଲମ୍ବ ରାସ୍ତାରେ ଦୁଇଟି ଛୋଟ ପୋଲ ବା କଲଭର୍ଟ୍ ତିଆରି ହେଲା । ମାସେ ଭିତରେ ରାସ୍ତା ତିଆରି ସରିଗଲା । ସେମାନଙ୍କ ଠାରୁ ଉପକାର ପାଇ ଡାକ୍ତରଖାନାରେ ଏକ ଭୋଜିର ଆୟୋଜନ କଲି । ଏସଡ଼ିଓ, ନୃସିଂହବାବୁ ଓ ସେଠାକାର ସମସ୍ତ କର୍ମଚାରୀଙ୍କୁ ନିମନ୍ତ୍ରଣ କଲି । ସେମାନେ ଆନନ୍ଦିତ ହେଲେ ।

ଆମ ଗାଆଁର ଲୋକମାନଙ୍କର ଆମ ପରିବାର ଉପରେ ଅନେକ ଭରସା ଥାଏ । ବିଶେଷତଃ ଆମ ଅଞ୍ଚଳର ଜମିଦାର ଭାବେ ଲୋକେ ବାପାଙ୍କୁ ସେମାନଙ୍କ ଦୁଃଖସୁଖ ଜଣାଇ ଅସୁବିଧା ବେଳେ ସାହାଯ୍ୟ ପାଇଁ ଅଡ଼ିବସନ୍ତି । ଅନେକ ଲୋକ ସେମାନଙ୍କ ପୁଅମାନଙ୍କୁ ଚାକିରୀ କରାଇଦେବାକୁ ବାପାଙ୍କ ପାଖରେ ଅଳି କରୁଥାନ୍ତି । ବାପା କହନ୍ତି, ପୁଅ ତ ଏତେ ଦୂରରେ ରହିଛି । ତା ପାଖକୁ ଗଲେ ସେ କିଛି ସାହାଯ୍ୟ କରିପାରିବ । ବାପାଙ୍କ ଠାରୁ ମୋ ଠିକଣା ନେଇ କେତେ ଜଣ ଯୁବକ ବଣେଇ ଆସି ମୋ ପାଖେ ପହଞ୍ଚିଲେ । ଏତେ ଦୂରରୁ ଆସିଥିବା ପିଲାଙ୍କୁ ନିରାଶ କରିବା ମୋ ପକ୍ଷରେ ଅସମ୍ଭବ ଥିଲା । ତେଣୁ ବଣେଇର ଡି.ଏଫ୍.ଓ. ଏବଂ ସ୍କୁଲ୍ ଡ଼ି.ଆଇ.ଙ୍କୁ କହି ଏତେ ଦୂରରୁ ଆସିଥିବା ଯୁବକମାନଙ୍କୁ ପ୍ରାଥମିକ ଶିକ୍ଷକ ଓ ଫରେଷ୍ଟଗାର୍ଡ଼ ଚାକିରୀରେ ମୂତୟନ କରାଗଲା । ଆମ ପଶୁଚିକିତ୍ସା ବିଭାଗରେ ପିଅନ ଚାକିରୀରେ ମଧ୍ୟ ଜଣେ ଦୁଇଜଣ ରହିଗଲେ । ବାପାଙ୍କର ମାନସମ୍ମାନ ରକ୍ଷା କରିବା ପାଇଁ ମୋତେ ଏସବୁ କରିବାକୁ ପଡୁଥିଲା ।

ବଣେଇଗଡ଼ରେ ଚୈତ୍ର ପର୍ବ ହୁଏ । ପନ୍ଦରଦିନ ଧରି ଯାତ୍ରା ହୁଏ । ଦୋକାନ ବଜାର ବସେ । ବହୁ ସଂଖ୍ୟାରେ ଲୋକମାନେ ଚୈତ୍ରପର୍ବ ଦେଖିବାକୁ ଆସନ୍ତି । ଗୋଟିଏ ଛୋଟ ଚିଡ଼ିଆଖାନା ସେଇ ଯାତ୍ରାରେ ପଶୁପକ୍ଷୀ ଦେଖାଇବାକୁ ଆସିଲା । ଡ଼ଙ୍ଗାରେ ବ୍ରାହ୍ମଣୀ ନଦୀ ପାର ହେଲା ବେଳକୁ ଡଙ୍ଗାଟା ଓଲଟି ପଡ଼ିଲା । ଫଳରେ ଶତାଧିକ ପଶୁପକ୍ଷୀ ମରିଗଲେ । ଭୋର ସକାଳୁ ମୋ ନିଦ ଭାଙ୍ଗିଲା ବେଳକୁ ପଶୁ

ଡାକ୍ତରଖାନା ହତା ଭିତରେ ସେସବୁ ମଲା ପଶୁପକ୍ଷୀ ଜମା ହୋଇଛନ୍ତି । ପୋଲିସ୍ କନେଷ୍ଟବଲ ସଲାମ ଠୁଙ୍କି କହିଲା, ସାର୍ ଆପଣ ଏସବୁ ବ୍ୟବଚ୍ଛେଦ କରି ମୃତ୍ୟୁର କାରଣ ରିପୋର୍ଟ ଦେଲେ ଚିଡ଼ିଆଖାନା ମାଲିକକୁ ଆମେ ଛାଡ଼ିବୁ । ମୁଁ ନିତ୍ୟକର୍ମ ସାରି ସେଇ କାମରେ ବସିଗଲି । ପ୍ରାୟ ଦିନ ଗୋଟାଏ ସୁଦ୍ଧା ରିପୋର୍ଟ ସବୁ ଲେଖା ହୋଇଗଲା । ମାତ୍ର ଏତେ ସୁନ୍ଦର ସୁନ୍ଦର ପଶୁପକ୍ଷୀଙ୍କୁ ଫିଙ୍ଗି ଦେବାକୁ ଇଚ୍ଛା ହେଉନଥାଏ । ଆମ ଡାକ୍ତରଖାନାରେ ବଡ଼ବଡ଼ କାଚ ଜାର୍ କିଛି ଥିଲା । ଛୋଟ ଛୋଟ ରଙ୍ଗୀନ୍ ଚଢ଼େଇ, ବାଘଛୁଆ, ସାପ, ବଜ୍ରକାପ୍ଟା, ଶାଳୁଆପତନୀ ଆଦି ପ୍ରାୟ କୋଡ଼ିଏଟି ମଲାଜନ୍ତୁଙ୍କୁ ଫର୍‌ମାଲିନ୍ ଦେଇ କାଚ୍ ଜାର୍ ମାନଙ୍କରେ ରଖିଦେଲି । ବଣେଇର ଲୋକସମ୍ପର୍କ ଅଧିକାରୀ ମୋ ପାଖକୁ ଆସି ଏଥିଲାଗି ମୋତେ ଅନେକ ଧନ୍ୟବାଦ ଦେଲେ । କହିଲେ, ଚୈତ୍ରପର୍ବରେ ଲୋକମାନେ ଆଗ୍ରହରେ ଆସି ସେସବୁ ଜୀବଜନ୍ତୁ ପଇସା ଦେଇ ଦେଖନ୍ତି । ଏବେ ଆପଣ ରଖିଥିବା ଏସବୁ ମଲାଜନ୍ତୁଙ୍କୁ ଲୋକେ ମାଗଣାରେ ଦେଖନ୍ତୁ । ସେ ପଶୁପାଳନ ବିଭାଗର ଗୋଟିଏ ଷ୍ଟଲ୍ ସେହି ଯାତ୍ରାରେ ଖୋଲିଦେଲେ ।

ଠିକ୍ ଏତିକିବେଳେ ସୁନ୍ଦରଗଡ଼ରୁ ଆମ ଜିଲା ପଶୁପାଳନ ଅଧିକାରୀ (ସିଡ଼ିଭିଓ) ବଣାଇଗଡ଼କୁ ଗସ୍ତରେ ଆସିଲେ । ନିକଟସ୍ଥ ଡାକବଙ୍ଗଳାରେ ତାଙ୍କ ରହଣିର ବ୍ୟବସ୍ଥା କରାଗଲା । ମୋର ଏଠାକାର କାମ ଦେଖିବା ପାଇଁ ସେ ଆସିଥିଲେ । ପଶୁଚିକିତ୍ସାଳୟର ସବୁ ଘର ଓ କ୍ୱାଟର ପୂର୍ତ୍ତବିଭାଗ ପକ୍ଷରୁ ମରାମତି କରାଯାଇ ରଙ୍ଗ ଓ ଚୂନ ବୋଳା ସରିଥାଏ । ଡାକ୍ତରଖାନାକୁ ନୂଆ ରାସ୍ତା ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ, ମୁଁ ସୁନ୍ଦରଗଡ଼ ଦାୟିତ୍ୱରେ ରହିବା ପରେ ଯେତେ ଚେଷ୍ଟା କଲି ଏ କାମ ହୋଇନଥିଲା । ମାତ୍ର ତୁମେ ଆସିବାର ଛଅମାସ ଭିତରେ କେମିତି ଏସବୁ କରିଦେଲ ? ସେ ଧରଣୀଧରପାଲି ପଞ୍ଚାୟତ ସେକ୍ରେଟାରୀ ତାଲିମ କେନ୍ଦ୍ର ଦେଖି ସେଠାକାର ଅଧ୍ୟକ୍ଷ ଓ ଶିକ୍ଷକମାନଙ୍କ ଠାରୁ ମୋ ପ୍ରଶଂସା ଶୁଣିଲେ । ଚୈତ୍ର ପର୍ବରେ ପଶୁପାଳନ ବିଭାଗ ଷ୍ଟଲଟି ଦେଖି ଆହୁରି ଖୁସି ହୋଇ ପଚାରିଲେ ବିନା ପଇସାରେ ଏସବୁ କେମିତି କଲ ? ସେଠାକାର ଲୋକସମ୍ପର୍କ ଅଧିକାରୀ କହିଲେ ଗୁରୁବାବୁ ଚିଡ଼ିଆଖାନାର ମଲଜନ୍ତୁମାନଙ୍କୁ ଯେପରି ଜୀବନ୍ତ ପରି ରଖିଛନ୍ତି ତାହା ଦେଖି ଜିଲା ପ୍ରଶାସନ ପକ୍ଷରୁ ଆମେ ତାଙ୍କୁ ସମସ୍ତ ସାହାଯ୍ୟ ଦେଇଛୁ । ଡି.ଭି.ଓ. ସାହେବ ସବୁ କଥା ଶୁଣି ଅତ୍ୟନ୍ତ ପ୍ରସନ୍ନ ହେଲେ ଓ ଡାକ୍ତରଖାନା ପରିଦର୍ଶନ ଡାଏରୀରେ ସବୁକଥା ଲିପିବଦ୍ଧ କରି ମୋର ଉଜ୍ଜ୍ୱଳ ଭବିଷ୍ୟତ କାମନା କଲେ । ସେ ସୁନ୍ଦରଗଡ଼ ଫେରିବାର ପ୍ରାୟ ମାସକ ପରେ ବିଭାଗୀୟ ନିର୍ଦ୍ଦେଶକ ଜିଲା ପରିଦର୍ଶନରେ ଆସି

ରାଉରକେଲା ପଶୁଚିକିତ୍ସାଳୟ ଦେଖି ସେଠାକାର ପଶୁଚିକିତ୍ସକଙ୍କ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କଲେ। ତାଙ୍କ ବଦଳରେ ଜଣେ ଦକ୍ଷ ଲୋକଙ୍କୁ ଏହି ଦାୟିତ୍ୱ ଦେବାପାଇଁ ସେ ଇଚ୍ଛା କରିବାରୁ ଡି.ଭି.ଓ ମହାଶୟ ମୋ ନାମଟି ସୁପାରିଶ୍ କଲେ। ଫଳରେ ମୋର ବଣେଇଗଡ଼ରୁ ରାଉରକେଲାକୁ ବଦଳି ହୋଇଗଲା ।

# ରାଉରକେଲାରୁ ଆମେରିକା

ବଣେଇଗଡ଼ରେ ମୋର ଦଶମାସର ଚାକିରୀ ଜୀବନ ବିତାଇ ରାଉରକେଲା ଆସିଲି । ଏଠାକାର ବାତାବରଣ ପୁରା ଅଲଗା ଲାଗିଲା । ସହରି ଜନବସତିଠାରୁ ବହୁ ଦୂରରେ ପଶୁଚିକିତ୍ସାଳୟ ଥିବାରୁ ସରକାରୀ ଅଫିସର ମାନଙ୍କ ସହିତ ମିଳାମିଶା ଆଦୌ ସୁବିଧାଜନକ ନଥାଏ । ଅନୁଷ୍ଠାନଟି ରାସ୍ତାକଡ଼ରେ ଥାଇ ମଧ୍ୟ ରାଜରାସ୍ତାରୁ ଡାକ୍ତରଖାନାକୁ ଓ କ୍ୱାଟରମାନଙ୍କୁ ରାସ୍ତା ନଥାଏ । ପୂର୍ବବର୍ତ୍ତୀ ପଶୁଚିକିତ୍ସକମାନେ ଡାକ୍ତରଖାନାରେ ରୋଗୀମାନଙ୍କୁ ଚିକିତ୍ସା କରିବା ଉପରେ ଗୁରୁତ୍ୱ ନଦେଇ ଘରକୁ ଯାଇ ଫିସ୍ ନେବାର ଅଭ୍ୟାସ ରଖିଥାନ୍ତି । ତେଣୁ ମୁଁ ଏସବୁ ବଦଳାଇବାରେ ଧ୍ୟାନ ଦେଲି । ପୂର୍ବବର୍ତ୍ତୀ ପଶୁଚିକିତ୍ସକମାନଙ୍କ ପରି ଲୋକମାନଙ୍କ ଘରକୁ ଯାଇ ଚିକିତ୍ସା କରି ଫିସ୍ ଆକାରରେ ଟଙ୍କା ଆଣିବା ପରିବର୍ତ୍ତେ ସେମାନଙ୍କର ରୁଗ୍ଣ ପଶୁମାନଙ୍କୁ ଡାକ୍ତରଖାନାକୁ ଅଣାଇ ମାଗଣାରେ ଚିକିତ୍ସା କରିବା ଉପରେ ଅଧିକ ଜୋର ଦେବା ଓ ମାଗଣାରେ ଚିକିତ୍ସା କରି ସରକାରୀ ଔଷଧ ଦେଇ ରୋଗ ଭଲ କରି ଦେବା କାର୍ଯ୍ୟ କରିବା ଦ୍ୱାରା ଧୀରେ ଧୀରେ ମୋର ଲୋକସମ୍ପର୍କ ବଢ଼ିଲା ଓ ଇସ୍ପାତ କାରଖାନାର ବଡ଼ ବଡ଼ ଅଫିସରମାନଙ୍କ ସହିତ ସଦ୍‌ଭାବ ହେଲା ।

ବଣେଇଗଡ଼ରେ ଥିଲାବେଳେ ଯୁକ୍ତରାଷ୍ଟ୍ର ଆମେରିକାର କେତେଗୁଡ଼ିଏ ବିଶ୍ୱବିଦ୍ୟାଳୟକୁ ଉଚ୍ଚଶିକ୍ଷା ଲାଗି ଦରଖାସ୍ତ ଦେଇଥିଲି । ତନ୍ମଧ୍ୟରୁ ଦୁଇ ତିନିଟି ଜାଗାରୁ ଫର୍ମ ଆସିଗଲା । ବିଦେଶ ଯିବାପାଇଁ ପାସ୍‌ପୋର୍ଟ ଦରକାର । କଲିକତାରେ ପାସପୋର୍ଟ ଅଫିସ୍ ଥାଏ । ଆଜି ପରି ସେତେବେଳେ ଆମେରିକାରେ ଉଚ୍ଚଶିକ୍ଷା ପାଇଁ ଟଫେଲ ଓ ଜି.ଆର.ଇ ପରୀକ୍ଷା ନଥାଏ । କଲିକତାରେ ଥିବା ଇଣ୍ଡୋଆମେରିକାନ୍ ସୋସାଇଟି ପକ୍ଷରୁ ଇଂରାଜୀ ଭାଷାରେ ଦକ୍ଷତା ଉପରେ ପରୀକ୍ଷା ହେଉଥାଏ । ବିଦେଶ ଯିବାପାଇଁ ବିଦେଶୀ ମୁଦ୍ରା ଯୋଗାଡ଼ କରିବା ମଧ୍ୟ ଅସମ୍ଭବ ଥିଲା । କାରଣ ଗତବର୍ଷ ୧୯୬୨ ମସିହାରେ ଭାରତ ଚୀନ୍ ଯୁଦ୍ଧ ସରିଥାଏ । ତେଣୁ କେନ୍ଦ୍ର ଅର୍ଥମନ୍ତ୍ରୀ ମୋରାର୍ଜୀଭାଇ ଦେଶାଇ ବିଦେଶଯାତ୍ରା ଉପରେ କଟକଣା ଜାରୀ କରିଥାନ୍ତି।

ସେତେବେଳର ନେହେରୁ ସରକାର ଚୀନ୍‌ର ପ୍ରଧାନମନ୍ତ୍ରୀ ଋଉଏନଲାଇଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ସ୍ଥାପନ କରି ଚୀନା ନେତାମାନଙ୍କୁ ଭାରତବର୍ଷକୁ ଆମନ୍ତ୍ରିତ କରି ଦିଲ୍ଲୀ କଲିକତା ଆଦି ଦେଶର ବଡ଼ବଡ଼ ମହାନଗରୀ ମାନଙ୍କରେ ସେମାନଙ୍କୁ ସମ୍ବର୍ଦ୍ଧନା ଦେଲାବେଳେ ହିନ୍ଦ୍-ଚୀନ୍ ଭାଇଭାଇ' ଧ୍ୱନିରେ ଗଗନପବନ ମୁଖରିତ ହେଉଥିଲା । ମାତ୍ର ଚୀନ୍ ସରକାର ଭିତରେ ଭିତରେ ଭାରତର ଉତ୍ତରାଞ୍ଚଳକୁ ଦଖଲ କରିନେବାର ସାମରିକ ପ୍ରସ୍ତୁତି ଜାରୀ ରଖିଥାନ୍ତି । ତେଣୁ ହିମାଳୟର ଉତ୍ତରାଞ୍ଚଳକୁ ରାସ୍ତା ତିଆରି କରି ବିଭିନ୍ନ ସ୍ଥାନରେ ଘାଟୀ ପ୍ରସ୍ତୁତ କରିବାରେ ସେମାନେ ବ୍ୟସ୍ତ ଥାଆନ୍ତି । ତିବ୍‌ବତ ଆକ୍ରମଣ କରି ସେ ଦେଶକୁ ଚୀନ୍ ସହିତ ମିଶାଇ ଦେବା ପରେ ସେଠାକାର ଧର୍ମଗୁରୁ ଦଲାଇଲାମାଙ୍କୁ ଧରିନେବାକୁ ଚୀନାମାନେ ପ୍ରବଳ ପ୍ରୟାସ କରି ସଫଳକାମ ହୋଇ ପାରିଲେ ନାହିଁ । ଇତି ମଧ୍ୟରେ ଦଲାଇଲାମା ତାଙ୍କର ଅନୁଗତମାନଙ୍କ ସାହାଯ୍ୟରେ ଭାରତରେ ପ୍ରବେଶ କରି ଭାରତସରକାରଙ୍କ ଶରଣାପନ୍ନ ହେଲେ । ଚୀନ୍ ସରକାର ଭାବିଥିଲେ ଦଲାଇଲାମାଙ୍କୁ ଚୀନ୍ ହାତରେ ଭାରତ ସରକାର ପ୍ରତ୍ୟର୍ପଣ କରିଦେବେ । ମାତ୍ର ନେପାଳ, ସିକିମ୍, ଭୁଟାନ୍, ସିଂହଳ, ବର୍ମା, କାମ୍ବୋଡ଼ିଆ, ଭିଏତ୍‌ନାମ୍ ଆଦି ଦେଶ ପରି ଭାରତରେ ଥିବା ଲକ୍ଷ ଲକ୍ଷ ବୌଦ୍ଧ ଧର୍ମାବଲମ୍ବୀଙ୍କର ପ୍ରିୟ ଧର୍ମଗୁରୁଙ୍କୁ ବାଘମୁହଁକୁ ଠେଲି ନଦେଇ ଭାରତ ସରକାର ଆଶ୍ରୟ ଦେବା ଯୋଗୁଁ ଚୀନ୍ ସରକାର "ହିନ୍ଦ୍-ଚୀନ୍-ଭାଇଭାଇ" ଧ୍ୱନିରେ ଭାରତୀୟମାନଙ୍କର କେତେ ଯେ ଆନ୍ତରିକତା ନିହିତ ଅଛି ତାହା ହୃଦୟଙ୍ଗମ ନ କରି ବିଶ୍ୱାସଘାତକତା କଲେ । ଭାରତୀୟ ସେନାବାହିନୀ ପାକିସ୍ଥାନ ଓ ପୂର୍ବ ପାକିସ୍ଥାନ (ବଙ୍ଗଳାଦେଶ) ସୀମାନ୍ତରେ ଥାଇ ଚୀନ୍ ଆଡ଼କୁ ଆଦୌ ଦୃଷ୍ଟି ଦେଇ ନଥିଲେ । ତେଣୁ ଚୀନା ସୈନ୍ୟମାନେ ଅତର୍କିତ ଭାବେ ଆମ ଦେଶ ଉପରେ ଆକ୍ରମଣ କରି ଲକ୍ଷାଧିକ ବର୍ଗ କିଲୋମିଟର ଭାରତୀୟ ଅଞ୍ଚଳ ଦଖଲ କରି ଋଲିଥିବା ବେଳେ ସେମାନଙ୍କୁ ସାମନା କରିବା ଲାଗି ଆମ ଦେଶର ସୈନ୍ୟବାହିନୀ ଦେଶର ଉତ୍ତର ସୀମାନ୍ତରେ ପହଞ୍ଚିବାକୁ ପ୍ରବଳ ପ୍ରୟାସ ଜାରୀ ରଖିଲେ । ପାକିସ୍ଥାନ ସୀମାରେ ଥିବା ଭାରତୀୟସୈନ୍ୟ ସଂଖ୍ୟା ତୁଳନାରେ ଚୀନା ସୈନ୍ୟଙ୍କ ସଂଖ୍ୟା ଦ୍ୱଶଗୁଣରୁ ଅଧିକ ହୋଇଥିବା ଯୋଗୁଁ ହଜାର ହଜାର ଭାରତୀୟ ସୈନ୍ୟ ଏହି ଯୁଦ୍ଧରେ ଶହୀଦ ହେଲେ । ଯୁକ୍ତରାଷ୍ଟ୍ର ଆମେରିକାର ତତ୍‌କାଳୀନ ରାଷ୍ଟ୍ରପତି ଜନ୍‌ଏଫ୍ କେନେଡ଼ି ଭାରତ ସରକାରଙ୍କୁ ସହଯୋଗର ହାତ ବଢ଼ାଇ ଆମେରିକା ନୌବାହିନୀକୁ ଭାରତ ମହାସାଗରକୁ ପଠାଇ ଦେଲେ ଓ ଭାରତୀୟ ସେନା ସହିତ ମିଶି ତାଙ୍କ ଦେଶର ବାୟୁସେନା ଚୀନ୍ ଉପରେ ବୋମା ବୃଷ୍ଟି କରିବାର ଧମକ ଦେବା ପରେ ଚୀନାମାନେ ଆଉ ଅଧିକ ଦୂର ଅଗ୍ରସର ନହୋଇ ଯୁଦ୍ଧ ବିରତି ଘୋଷଣା କଲେ । ମାତ୍ର ସେତେବେଳକୁ ଲାଦାଖ ଓ ଆକ୍‌ସାଇଚୀନ

ଅଞ୍ଚଳର ପ୍ରାୟ ଦେଢ଼ଲକ୍ଷ ବର୍ଗକିଲୋମିଟର ଅଞ୍ଚଳ ଚୀନ୍ ଅଧିକାରରେ ରହିସାରିଥିଲା । ଯୁଦ୍ଧ ବିରତିପରେ ଚୀନାମାନେ ଆଉ ପଛକୁ ହଟିଲେ ନାହିଁ । ଚୀନ୍ ସରକାରଙ୍କ ବିଶ୍ୱାସଘାତକତା ଭାରତ ସରକାରଙ୍କ ଆଖିରୁ ନିଦ ହଜେଇ ଦେଇଥାଏ । ମାତ୍ର ଚଉଦବର୍ଷ ତଳେ ସ୍ୱାଧୀନତା ହାସଲ କରିଥିବା ଭାରତବର୍ଷ ଉପରେ ଯେ ଏଭଳି ଏକ ପଡ଼ୋଶୀ ମିତ୍ରରାଷ୍ଟ୍ର ପକ୍ଷରୁ ଆକ୍ରମଣ ହୋଇପାରେ ସେଭଳି ଆଶଙ୍କା କାହା ମୁଣ୍ଡରେ ନଥିଲା । ବରଂ ଭାରତ ଏକ ଶାନ୍ତିପ୍ରିୟ ଦେଶ ବୋଲି ସମଗ୍ର ପୃଥ୍ୱୀରେ ଖ୍ୟାତି ଅର୍ଜନ କରିବାର ଲକ୍ଷ୍ୟ ନେଇ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହୁରୁଙ୍କ ସମେତ ସମସ୍ତ କେନ୍ଦ୍ରୀୟ ନେତୃବନ୍ଦ ଯୁଦ୍ଧ ବିରୋଧୀ ମନୋଭାବ ପୋଷଣ କରୁଥିଲେ । ଚୀନ୍ ଯୁଦ୍ଧ ଫଳରେ ପଞ୍ଚବାର୍ଷିକ ଯୋଜନା ଜରିଆରେ ଦେଶର ବିକାଶମୁଖୀ କାର୍ଯ୍ୟକ୍ରମ ବାଧାପ୍ରାପ୍ତ ହେଲା । ସବୁଥିରୁ ପୁଞ୍ଜି ପ୍ରତ୍ୟାହାର କରି ପ୍ରତିରକ୍ଷା ବିଭାଗ ଉପରେ ପ୍ରାଧାନ୍ୟ ଦିଆଗଲା ।  ଦେଶର ବିକାଶଧାରା ବ୍ୟାହତ ହେଲା । ଭାରତୀୟ ରିଜର୍ଭବ୍ୟାଙ୍କ ଉପରେ ପ୍ରବଳ ଚାପ ପଡ଼ିବା ଯୋଗୁଁ ବିଦେଶ ଯିବା ଉପରେ କଟକଣା କରାଗଲା । ବିଦେଶରେ ଉଚ୍ଚଶିକ୍ଷା ଲାଭ କରିବାକୁ ଇଚ୍ଛୁକ ସମସ୍ତ ଛାତ୍ରଙ୍କୁ ବିଦେଶୀମୁଦ୍ରା ମିଳିବା କଷ୍ଟକର ହୋଇ ପଡ଼ିଲା। ରିଜର୍ଭବ୍ୟାଙ୍କ ଅଧାଦେଶ ଜାରୀ କଲେ ଯେ, ଭାରତରେ ଯେଉଁ ଶିକ୍ଷା ବ୍ୟବସ୍ଥା ନଥିବ କେବଳ ସେଭଳି ଶିକ୍ଷା ପାଇବା ପାଇଁ ଯୋଗ୍ୟ ବିବେଚିତ ଛାତ୍ରମାନଙ୍କୁ ବିଦେଶୀ ମୁଦ୍ରା ମିଳିବ।

ଓହିଓ ବିଶ୍ୱବିଦ୍ୟାଳୟ ଦୁଗ୍ଧବିଜ୍ଞାନ ବିଭାଗରୁ ମୋତେ ସିଟ୍ ମିଳିଥାଏ । ସେଥିଲାଗି ମୁଁ ବିଦେଶୀମୁଦ୍ରା ପାଇଁ ରିଜର୍ଭବ୍ୟାଙ୍କକୁ ଲେଖିଲି । ପ୍ରାୟ ତିନି ଚାରି ମାସ ବିତିଗଲା ପରେ ମଧ୍ୟ କୌଣସି ଉତ୍ତର ମିଳିଲା ନାହିଁ। ତେଣୁ ରାଉରକେଲା ଷ୍ଟେଟବ୍ୟାଙ୍କ ଅଫ୍ ଇଣ୍ଡିଆର ମୁଖ୍ୟ ପରିଚାଳକଙ୍କୁ କହିଲି । ସେ ଥିଲେ କଲିକତାର ଲୋକ, ରିଜର୍ଭବ୍ୟାଙ୍କରେ କାମ କରୁଥିବା ତାଙ୍କର ଜଣେ ବନ୍ଧୁଙ୍କ ପାଖକୁ ସେ ଚିଠି ଲେଖିଦେଲେ । ତାଙ୍କୁ ଭେଟି ଚିଠିଟି ଦେବା ପାଇଁ ମୋତେ ସେ କହିଲେ ।

କଲିକତା ଯାଇ ଇଣ୍ଡୋ ଆମେରିକାନ୍ ସୋସାଇଟିରେ ଇଂରାଜୀ ପରୀକ୍ଷା ଦେବାପରେ ରିଜର୍ଭ ବ୍ୟାଙ୍କରେ ଉକ୍ତ ଭଦ୍ରଲୋକଙ୍କୁ ଦେଖାକରି ଚିଠି ଦେଲି । ସେ ମୋ କଥା ବୁଝିବେ ବୋଲି ଅଙ୍ଗୀକାର କଲେ । କଲିକତାରୁ ଫେରି ଆମ ଜିଲ୍ଲା ପଶୁପାଳନ ଅଧିକାରୀ ଡାକ୍ତର କୁଳମଣି ସାହୁଙ୍କୁ ସବୁ କଥା କହିଲି । ରାଉରକେଲା ପରି ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନରୁ ମୋତେ ଛାଡ଼ିବା ପାଇଁ ତାଙ୍କର ଇଚ୍ଛା ନଥିଲା । ମୁଁ ତାଙ୍କୁ ଅନେକ ବୁଝାଇଲି ଓ ଉଚ୍ଚଶିକ୍ଷା ଲାଭକରିବା ପାଇଁ ମୋତେ ସାହାଯ୍ୟ କରିବାକୁ ଅନୁରୋଧ କଲି । ସେ କହିଲେ, ଯଦି ଆପଣ ଆମେରିକା ଯାଆନ୍ତି ତେବେ ଓଡ଼ିଶାକୁ

ଫେରି ଆସିବେ ବୋଲି ମୋତେ ଜବାବ ଦିଅନ୍ତୁ । ପାଞ୍ଚବର୍ଷ ଛୁଟି ନେଇ ଉଚ୍ଚଶିକ୍ଷା ସମାପ୍ତ କରି ଏ ବିଭାଗକୁ ଫେରି ଆସନ୍ତୁ । ହୁଏତ ସେତେବେଳକୁ ମୁଁ ଅବସର ନେଇ ସାରିଥିବି। ମାତ୍ର ଆପଣଙ୍କ ପରି ଉଚ୍ଚାକାଙ୍କ୍ଷୀ ଲୋକ ଏ ବିଭାଗରେ ରହିବା ଦେଖି ମୁଁ ଖୁସି ହେବି । ଏବେ ଛୁଟିପାଇଁ ଦରଖାସ୍ତ ଲେଖନ୍ତୁ । ମୁଁ ନିର୍ଦ୍ଦେଶାଳୟକୁ ପଠାଇଦେବି । ତାହାହିଁ କରାଗଲା । ସେହିଦିନ ଜିଲା ଅଧିକାରୀ ଡାକ୍ତର ସାହୁ ମୋ ଛୁଟି ଦରଖାସ୍ତ ସୁପାରିସ୍ କରି ନିର୍ଦ୍ଦେଶାଳୟକୁ ପଠାଇ ଦେଲେ । ଆଉ ପନ୍ଦରଦିନ ଛାଡ଼ି କଟକ ଯାଇ ମୋ ଦରଖାସ୍ତଟା ସଚିବାଳୟକୁ ପଠାଗଲା କି ନାହିଁ, ସେ କଥା ବୁଝି ସରକାରୀ ସ୍ତରରେ ଛୁଟି ମଞ୍ଜୁର କରାଇନେବାକୁ ମଧ୍ୟ ମୋତେ ସେ ପରାମର୍ଶ ଦେଲେ ।

ମୋର ଆଉ କୁଆଡ଼େ ମନ ଲାଗୁ ନଥାଏ । କେମିତି ଶୀଘ୍ର ଯୁକ୍ତରାଷ୍ଟ୍ର ଆମେରିକା ଯିବି ସେଇ ଚିନ୍ତା ମୋତେ ଘାରିଥାଏ । ଓହିଓ ବିଶ୍ୱବିଦ୍ୟାଳୟରୁ ଚିଠି ଆସିଲା ଯେ ଆସନ୍ତା ଶୀତକାଳୀନ ସେମିଷ୍ଟରରେ ମୋର ଉଚ୍ଚଶିକ୍ଷା ଆରମ୍ଭ ହେବ । ମାତ୍ର ତା ପୂର୍ବରୁ ଓଡ଼ିଶା ପଶୁ ଚିକିତ୍ସା ମହାବିଦ୍ୟାଳୟର ଅଧ୍ୟକ୍ଷଙ୍କ ଠାରୁ ମୋର ପୃଷ୍ଠଭୂମି ବିଷୟକ ଏକ ପତ୍ର ପଠାଇବାକୁ ଡାଏରୀ ସାଇନ୍ସ ବିଭାଗର ମୁଖ୍ୟ ଚିଠି ଦେଇଥିଲେ । ଚିଠି ପାଇବାର ଏକସପ୍ତାହ ପରେ ମୁଁ ପଶୁଚିକିତ୍ସା ମହାବିଦ୍ୟାଳୟର ଅଧ୍ୟକ୍ଷଙ୍କ ପାଖକୁ ଯାଇ ତାଙ୍କୁ ସବୁ କଥା କହିଲି । ସେତେବେଳେ ଶ୍ରୀ ବଲ୍ଲଭ ନାରାୟଣ ପାତ୍ର ଅଧ୍ୟକ୍ଷ ଥାଆନ୍ତି। ଏ ବିଷୟରେ ମୋତେ କୌଣସି ସାହାଯ୍ୟ କରିବାକୁ ସେ ସଫା ମନା କରିଦେଲେ । କହିଲେ, ଆମଦେଶରେ ମଧ୍ୟ ଉଚ୍ଚଶିକ୍ଷାର ସୁବିଧା ଅଛି । ତେଣୁ ତୁମର ଆମେରିକା ଯିବା ଅନୁଚିତ୍ । ମୁଁ ହତୋତ୍ସାହ ହୋଇ ପଡ଼ିଲି । ଯୁକ୍ତରାଷ୍ଟ୍ର ଆମେରିକାର ବିଶ୍ୱବିଦ୍ୟାଳୟ ସ୍ତରରେ ଅଧ୍ୟାପକ ବା ଡିନ୍‌ମାନଙ୍କର ମତାମତ ଉପରେ ସର୍ବାଧିକ ଗୁରୁତ୍ୱ ଦିଆଯାଏ । ତେଣୁ ମୁଁ ଯେଉଁ କଲେଜରେ ଶିକ୍ଷା ପାଇଛି, ସେ କଲେଜର ଅଧ୍ୟକ୍ଷ ବା ଡିନ୍‌ଙ୍କଠାରୁ ମୋ ବିଷୟରେ ମତାମତ ଜାଣିବା ସେମାନଙ୍କ ପକ୍ଷରେ ଅତି ଗୁରୁତ୍ୱପୂର୍ଣ୍ଣ ।

ସେଦିନ ରାତିରେ ମୋତେ ଆଉ ନିଦ ହେଲାନାହିଁ । ଅନ୍ଧକାର ମଧ୍ୟରେ ଏକମାତ୍ର ଆଲୋକରଶ୍ମି ଭଳି ଡକ୍ଟର ଗଣେଶ୍ୱର ବିଶ୍ୱାଳଙ୍କ ମୁହଁଟା ମୋ ମନରେ ନାଚି ଉଠିଲା । ସେ ପଶୁଚିକିତ୍ସା କଲେଜର ଅଧ୍ୟକ୍ଷ ଥିଲାବେଳେ ମୁଁ ନାମ ଲେଖାଇଥିଲି । ସେ ପୁଣି ବିଭାଗୀୟ ନିର୍ଦ୍ଦେଶକ ହେଲେ । ଆମେରିକା ଯାଇ ଉଚ୍ଚଶିକ୍ଷା ପାଇବା ପାଇଁ ସେ ମୋତେ ଉତ୍ସାହିତ କରିଥିଲେ । ଏବେ ତାଙ୍କୁ ବିଭାଗୀୟ ନିର୍ଦ୍ଦେଶକ ପଦବୀରୁ ହଟାଇ ସମ୍ବଲପୁରଠାରେ ଯୁଗ୍ମ ନିର୍ଦ୍ଦେଶକ ଭାବେ ରଖାଯାଇଛି । ସେ ଚିପିଲିମା ଠାରେ

ଏକ ବିଶାଳ ପଶୁପାଳନ ପ୍ରୋଜେକ୍ଟ ନିର୍ମାଣ କାର୍ଯ୍ୟ କରାଉଛନ୍ତି । ଭୁବନେଶ୍ୱରରୁ ସିଧା ରାଉରକେଲା ନ ଫେରି ମୁଁ ସମ୍ବଲପୁର ଠାରେ ବସ୍‌ରୁ ଓହ୍ଲାଇ ଡକ୍ଟର ବିଶ୍ୱାଳଙ୍କ ପାଖକୁ ଗଲି । ସେ ସବୁ କଥା ଶୁଣି ଦୁଃଖିତ ହେଲେ । କହିଲେ ମାତ୍ର ନଅବର୍ଷ ତଳେ ଖୋଲିଥିବା ଏହି କଲେଜରୁ ଯେତେ ଛାତ୍ର ବିଦେଶ ଯାଇ ଉଚ୍ଚଶିକ୍ଷା ପାଇବେ ତାହା ଆମର ଗର୍ବ । ତୁମପରି ଉଚ୍ଚାକାଙ୍‌କ୍ଷୀ ଯୁବକଙ୍କୁ ନିରୁତ୍ସାହିତ କରିବା ବର୍ତ୍ତମାନର କଲେଜ ଅଧକ୍ଷଙ୍କ ପକ୍ଷରେ ଅତ୍ୟନ୍ତ ନିନ୍ଦନୀୟ କଥା । ସାଙ୍ଗେ ସାଙ୍ଗେ ତାଙ୍କ ଷ୍ଟେନୋକୁ ଡକାଇ ମୋ ବିଷୟରେ ଖୁବ୍ ପ୍ରସଂଶନୀୟ ଟିପ୍ପଣୀ ଲେଖି ଓହିଓ ବିଶ୍ୱବିଦ୍ୟାଳୟ ଡାଏରୀ ସାଇନ୍ସ ବିଭାଗୀୟ ଡିନ୍‌ଙ୍କୁ ପଠାଇଦେଲେ । ତାଙ୍କୁ ଧନ୍ୟବାଦ ଜଣାଇବାର ଭାଷା ମୋର ନଥିଲା ।

ପ୍ରାୟ ଦେଢ଼ମାସ ପରେ ଓହିଓ ବିଶ୍ୱବିଦ୍ୟାଳୟରୁ ମୋତେ ବସନ୍ତକାଳୀନ ସେମିଷ୍ଟାରରେ ଡାଏରୀ ସାଇନ୍ସ ବିଭାଗରେ ନାମ ଲେଖାଇବା ପାଇଁ ଚିଠି ମିଳିଗଲା । ମଝିରେ ଆଉ ମାତ୍ର ତିନି ଚାରିଟା ମାସ ସମୟ । ଏପର୍ଯ୍ୟନ୍ତ ଉଚ୍ଚଶିକ୍ଷା ପାଇଁ ମୋତେ ସରକାରୀ ଅନୁମତି ମିଳିନାହିଁ । ମୋର ଜିଲ୍ଲା ଅଧିକାରୀ କୁଳମଣି ବାବୁ କହିଲେ, ଆପଣ ନିଜେ ଯାଇ ଉପରମହଲରେ ଚେଷ୍ଟା ନକଲେ ଆମ ନିର୍ଦ୍ଦେଶାଳୟରେ ଫାଇଲ୍ ପଡ଼ିରହିବ । କେହି ସେ ଫାଇଲ୍ ଖୋଲିବେ ନାହିଁ ।

ତାଙ୍କ କଥା ମାନି ମୁଁ ଭୁବନେଶ୍ୱର ଚାଲି ଆସି ଆମ ଜଗତସିଂହପୁର ବିଧାୟକ ଶ୍ରୀ ପ୍ରିୟନାଥ ଦେଙ୍କୁ ଦେଖାକଲି । ସେତେବେଳେ ବୀରେନ୍‌ମିତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି । ପ୍ରିୟନାଥବାବୁ ମୋତେ ନେଇ ସିଧା ଓଡ଼ିଶା ବିଧାନସଭାକୁ ଚାଲିଲେ । ମୁଖ୍ୟମନ୍ତ୍ରୀଙ୍କ ପ୍ରକୋଷ୍ଠରେ ପହଞ୍ଚି ଗୌରୀଶ୍ୟାମ ନାୟକଙ୍କ ଶଳା ଭାବେ ମୋତେ ପରିଚିତ କରାଇ ମୋର ଅସୁବିଧା କଥା କହିଲେ । ସେତେବେଳେ ତିର୍ତ୍ତୋଲର ତଣ୍ଡିକୂଳ ନିବାସୀ ସୁରେନ୍ଦ୍ରନାଥ ମହାନ୍ତି ମୁଖ୍ୟମନ୍ତ୍ରୀଙ୍କର ବ୍ୟକ୍ତିଗତ ସହାୟକ ଥାଆନ୍ତି । ବୀରେନ୍ ବାବୁ କହିଲେ, ଆରେ ସୁର, ତୁ ଜଙ୍ଗଲ ଓ ପଶୁପାଳନ ବିଭାଗ ସଚିବ ଗୋପାଳଦାସଙ୍କୁ ଫୋନ୍ ଲଗାଇଦେ । ଗୋପାଳଦାସ ଫୋନ୍ ଧରିବା ମାତ୍ରେ ମୁଖ୍ୟମନ୍ତ୍ରୀ କହିଲେ, କିରେ ଗୋପାଲ୍ ତୁମ ବିଭାଗରେ ଉଚ୍ଚାଭିଳାଷୀ ଯୁବକମାନଙ୍କୁ କାହିଁକି ହଇରାଣ କରାଯାଉଛି ? ଗୁରୁପ୍ରସାଦ ମହାନ୍ତି ନିଜ ପଇସାରେ ଆମେରିକାରେ ଉଚ୍ଚ ଶିକ୍ଷା ପାଇବାକୁ ସିଟ୍ ପାଇସାରିବା ପରେ ତୁମେ ତାକୁ କାହିଁକି ଛୁଟି ଦେଉନା ? ଆସନ୍ତା କାଲି ତାର ଛୁଟି ମଞ୍ଜୁର କରି ମୋତେ ଜଣାଅ । ଏହା କହି ମୋତେ କହିଲେ, ଆସନ୍ତାକାଲି ଯାଇ ତୁମ ସେକ୍ରେଟେରୀ ଗୋପାଳ ଦାସଙ୍କୁ ସାକ୍ଷାତ କର ।

ତାପରଦିନ ମୁଁ ସଚିବାଳୟକୁ ଯାଇ ସେକ୍ରେଟେରୀଙ୍କୁ ଭେଟିବାକୁ ଚିଠା ଦେଲି । ସେ ମୋତେ ସାଙ୍ଗେ ସାଙ୍ଗେ ଡକାଇ ପଠାଇଲେ। କହିଲେ, ଆସନ୍ତା ପନ୍ଦର ଦିନ ଭିତରେ ତୁମ ଛୁଟି ମଞ୍ଜୁର ହୋଇଯିବ । ତୁମେ ଆମେରିକା ଯିବାର ପ୍ରସ୍ତୁତି ଆରମ୍ଭ କର । ସିଧା ରାଉରକେଲା ନଫେରି କଲିକତା ଗଲି । ସେଠାରେ ଆମେରିକାନ୍ କନ୍‌ସୁଲେଟ୍‌କୁ ଯାଇ ଓହିଓ ବିଶ୍ୱବିଦ୍ୟାଳୟରୁ ଆସିଥିବା ଚିଠି ଦେଖାଇଲି । ସଂପୃକ୍ତ ଅଫିସର ମୋତେ ଇଣ୍ଡୋ-ଆମେରିକାନ୍ ସୋସାଇଟି ଜରିଆରେ ଭିସା ପାଇଁ ଦରଖାସ୍ତ ଦେବାକୁ ପରାମର୍ଶ ଦେଲେ। ଉପରବେଳା ଇଣ୍ଡୋ-ଆମେରିକାନ୍ ସୋସାଇଟିରେ ମୋର ପାସପୋର୍ଟ ଦାଖଲ କରିସାରି ହରିସିଂ ଏଣ୍ଡ ସନ୍ସ ନାମଧେୟ ଏକ ଟ୍ରାଭେଲ ଏଜେନ୍ସି ଜରିଆରେ ବିମାନ ଯାତ୍ରା ଲାଗି କାଗଜପତ୍ର ପ୍ରସ୍ତୁତ କରି ରାତ୍ରି ଟ୍ରେନ୍‌ରେ ରାଉରକେଲା ଆସିଲି। ଘରେ ପହଞ୍ଚିବା ମାତ୍ରେ ମୋ ଦେହ ଜ୍ୱରାକ୍ରାନ୍ତ ହେଲା । ତିନିଚାରିଦିନ ଧରି ପ୍ରବଳ ଉତ୍ତାପ ରହିଲା । ଯାହା କିଛି ଔଷଧ ଖାଇଲେ କିଛି ଫଳ ହେଲାନାହିଁ । ପାନ୍‌ପୋଷ ଡାକ୍ତରଖାନାର ଡାକ୍ତର ଦତ୍ତଙ୍କୁ ଡକାଇ ପଠାଇଲି । ସେ ଆସି ପରୀକ୍ଷା କରି କହିଲେ ଯେ ମୋତେ ଟାଇଫଏଡ଼ ହୋଇଛି । ମୋର ସେବା କରିବାକୁ ପତ୍ନୀ ସ୍ନେହଲତା ଲାଗିପଡ଼ିଲେ । ସାଢ଼େ ତିନିବର୍ଷର ଝିଅ ବିନୁ ସାଙ୍ଗକୁ ଦେଢ଼ବର୍ଷର ପୁଅ ବିଭୂତିପ୍ରସାଦ (ବାୟା) ଓ ତିନିମାସର ପୁଅ ଗୋପାଳଙ୍କ କାମ କରି ମୋ ପାଇଁ ପଥ୍ୟ ରାନ୍ଧିବା ଯଥା ସମୟରେ ଔଷଧ ପତ୍ର ଦେବା ଓ ସେବା କରିବାକୁ ତାଙ୍କୁ ବହୁତ ପରିଶ୍ରମ ପଡୁଥାଏ । ତାଙ୍କ ଚିଠି ପାଇ ମୋ ଶ୍ୱଶୁର (ଯୋଗିବାବୁ ) ଆସି ପହଞ୍ଚିଲେ । ପ୍ରତିଦିନ ପ୍ରଚୁର ଫଳ, ପଇଡ଼ ଓ ଲେମ୍ବୁ ଇତ୍ୟାଦି କିଣି ଯଥା ସମୟରେ ମୋତେ ଖୁଆଇବାକୁ ସେ ଲାଗିପଡ଼ିଲେ। ଡାକ୍ତରଖାନାର ପିଅନ, ଚୌକିଦାର ପଙ୍ଖାଚାଳକ (ବନମାଳି ପ୍ରଧାନ, ଇନ୍ଦ୍ରମଣି ଓ ପଟେଲ) ତିନିଜଣ ସ୍ନେହଲତାଙ୍କୁ ସାହାଯ୍ୟ କରୁଥାନ୍ତି । ଡାକ୍ତର ଦତ୍ତବାବୁ ଉଦିତ୍ ନଗରରେ ରହୁଥାନ୍ତି। ପ୍ରତିଦିନ ପାନପୋଷ ଯିବା ବାଟରେ ଓ ଡାକ୍ତରଖାନାରୁ ଫେରିଲାବେଳେ ଦିନକୁ ଦୁଇଥର ମୋତେ ସେ ଦେଖନ୍ତି ଓ ମାଗଣାରେ ସବୁ ଔଷଧ ଦିଅନ୍ତି। ଯେତେ ଅନୁରୋଧ କଲେ ମଧ୍ୟ ଔଷଧ ଦାମ୍ ନିଅନ୍ତି ନାହିଁ କହନ୍ତି ଆପଣ ଆଗେ ଭଲ ହୋଇ ସାରନ୍ତୁ; ତାପରେ ମୁଁ ସବୁ ହିସାବ କରିବି।

ପନ୍ଦର ଦିନ ପରେ ମୋର ଜ୍ୱର ଓହ୍ଲାଇଗଲା । ମାତ୍ର ମୁଁ ଖୁବ୍ ଦୁର୍ବଳ ହୋଇ ପଡ଼ିଥାଏ । ମୋର ଭିସା ଓ ବିଦେଶୀମୁଦ୍ରା ପରମିଟ୍ ଆସିଗଲା । ଜିଲ୍ଲା ଅଧିକାରୀ କୁଳମଣିବାବୁ ଆସି କହିଲେ, ଆପଣଙ୍କର ଛୁଟି ମଞ୍ଜୁର ହୋଇଛି ଏବଂ ଏଥିଲାଗି ଯଥା ସମୟରେ ଆପଣଙ୍କୁ ରିଲିଭ୍ କରି ଦେବାକୁ ମଧ୍ୟ ମୋତେ ସରକାରୀ ନିର୍ଦ୍ଦେଶ ମିଳିଛି ।

ତେଣୁ ଆପଣ କେବେ ଏଠାରୁ ଅବ୍ୟାହତି ନେବେ ଲେଖି ଜଣାନ୍ତୁ । ମାର୍ଚ୍ଚ ମାସ ୨୦ ତାରିଖରେ ଓହିଓ ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ୍ ସ୍କୁଲରେ ମୋର ଆଡ଼୍‌ମିଶନ୍ ନେବାକଥା। ତେଣୁ ମୋତେ ଫେବୃୟାରୀ ମାସ ୨୫ ତାରିଖରେ ରାଉରକେଲା ଛାଡ଼ିବାକୁ ହେବ । ମୋ ଠାରୁ ଦରଖାସ୍ତ ପାଇବା ମାତ୍ରେ ଜିଲା ଅଫିସରୁ ମୋର ରିଲିଭ୍ ବ୍ୟବସ୍ଥା ହୋଇଗଲା । ଶ୍ରୀକୃଷ୍ଣ ଏକାଡ଼େମୀ ଜଗତସିଂହପୁରରେ ମୋତେ ପଢ଼ାଉଥିବା ବିଜ୍ଞାନଶିକ୍ଷକ ଡାକ୍ତର ଭଗବାନ ଦାଶ ସୁନ୍ଦରଗଡ଼ରେ ପଶୁ ଚିକିତ୍ସକ ଥାଆନ୍ତି । ସେ ଆସି ଫେବୃୟାରୀ ୨୦ ତାରିଖରେ ରାଉରକେଲାରେ ପହଞ୍ଚିଗଲେ। ଡାକ୍ତରଖାନାର ସବୁ ଜିନିଷପତ୍ର ଓ କାଗଜପତ୍ର ତାଙ୍କୁ ବୁଝାଇଦେଇ ୧୯୬୪ ମସିହା ଫେବୃୟାରୀ ୨୫ ତାରିଖ ଦିନ ମୁଁ ରାଉରକେଲା ଛାଡ଼ିଲି । କଟକରେ ପିଲାମାନଙ୍କୁ ଛାଡ଼ି ମୁଁ ଗାଆଁକୁ ଗଲି। ସେଠି ବାପାବୋଉ, ମାଆ, ଗୁରୁଜେଜେ ଓ ପରିଜନ ମାନଙ୍କଠାରୁ ବିଦାୟ ନେଇ ମୁଁ କଟକ ଫେରି ଆସିଲି।

ମୋ ପାଖରେ ମାତ୍ର ଦଶହଜାର ଟଙ୍କା ଥାଏ। ଭାବିଲି, ସେତିକି ଟଙ୍କାର ଡଲାର ଭଙ୍ଗାଇ ନେଇଯିବି । ଗୋଟିଏ ସେମିଷ୍ଟାର ପଢ଼ା ସାରିବା ପରେ ଆମେରିକାର ଅନ୍ୟ କୌଣସି ବିଶ୍ୱବିଦ୍ୟାଳୟରୁ ବୃତ୍ତି ପାଇବା ଲାଗି ଚେଷ୍ଟାକରିବି କିମ୍ବା କାମକରି ପାଠପଢ଼ା ଖର୍ଚ୍ଚ ଚଳାଇବି । ଆଉ ଅଧିକା ଟଙ୍କା ମୋତେ କେହି ଦେଇ ପାରିବେ ନାହିଁ । ଏହାଛଡ଼ା ଆମେରିକା ଯିବାକୁ ବିମାନ ଭଡ଼ା ୩୫୦୦ ଟଙ୍କା ଦରକାର । ପୁଣି କଟକରୁ କଲିକତା ଯିବାକୁ କିଛି ଜିନିଷପତ୍ର କିଣିବାକୁ ମଧ ଟଙ୍କା ଦରକାର ଥିଲା । ମୋତେ ଉଚ୍ଚଶିକ୍ଷା ପାଇଁ ଟଙ୍କା ଧାର ଦେବାକୁ ଅନେକ ବନ୍ଧୁ ଆଗେଇ ଆସିଲେ । ମାତ୍ର ସେମାନଙ୍କ ମଧ୍ୟରୁ ବଣେଇଗଡ଼ ଅଧିବାସୀ ଲଲେଇ ଗ୍ରାମର ଶ୍ରୀ ଜିତେନ୍ଦ୍ର ନାଥ ମିଶ୍ର ଓ ବଣେଇଗଡ଼ରେ ରାସ୍ତାଘାଟ ଦାୟିତ୍ୱରେ ଥିବା କଟକ ବୟାଳିଶ ମୌଜା ନିବାସୀ ଇଞ୍ଜିନିୟର ଶ୍ରୀ ନୃସିଂହ ଚରଣ ବେହେରାଙ୍କ ଠାରୁ ମୁଁ ଧାର ସ୍ୱରୂପ ଟଙ୍କା ନେଇଥିଲି । ଓହିଓ ବିଶ୍ୱବିଦ୍ୟାଳୟ ଛାଡ଼ି ସାଉଥ୍ ଡାକେଟା ବିଶ୍ୱବିଦ୍ୟାଳୟକୁ ଯିବା ପରେ ପ୍ରଥମେ ସେମାନଙ୍କର ଟଙ୍କା ଶୁଝି ଦେଇଥିଲି । କୌଣସି ବନ୍ଧୁ ବାନ୍ଧବ ବା ପାରିବାରିକ ସମ୍ପର୍କୀୟ ମାନଙ୍କ ଠାରୁ ଏପରି ସାହାଯ୍ୟ ଗ୍ରହଣ କରି ନଥିଲି । ମାତ୍ର ୮୨୫ ଡଲାର ବିଦେଶୀ ମୁଦ୍ରା ହାତରେ ଧରି ମୁଁ ଆମେରିକା ଯାତ୍ରା କଲି ।

୧୯୬୪ ମସିହା ମାର୍ଚ୍ଚ ୧୭ ତାରିଖ ସନ୍ଧ୍ୟାରେ ପୁରୀ ଏକ୍ସପ୍ରେସ ଯୋଗେ ମୁଁ କଟକ ଛାଡ଼ିଲି । ମୋତେ କଲିକତାଠାରେ ବିଦାୟ ଦେବାପାଇଁ ସାଙ୍ଗରେ ମୋ ଶ୍ୱଶୁର ଯୋଗିବାବୁ ଗଲେ । ଘର ଛାଡ଼ିଲାବେଳକୁ ମୋ ଝିଅ ବିନୁକୁ ଟାଇଫଏଡ୍ ଆରମ୍ଭ ହୋଇଯାଇଥାଏ । ମୋର ପିଉସୀ ପଦଅପାର ବଡ଼ ଭାଇଁ ରାଜାବଗିଚାର ଅଦ୍ୱୈତ

ଚରଣ ମହାନ୍ତି (ହୋମିଓପାଥ୍) ତାର ଚିକିତ୍ସା ଦାୟିତ୍ୱ ନେଇଥାନ୍ତି । ପିଉସୀ ପୁଅ ଭାଇ ସୁଧୀର ବରାବର ଧାଁ ଦଉଡ଼ କରି ତା ପାଇଁ ଔଷଧ ନେଇ ଦେଉଥାଏ । ପାରିବାରିକ ଚିନ୍ତାଛାଡ଼ି ଉଚ୍ଚଶିକ୍ଷା ଲାଭକରିବା ଲକ୍ଷ୍ୟ ନେଇ ମୁଁ ଆମେରିକା ଅଭିମୁଖେ ବାହାରିପଡ଼ିଲି ।

# ଯୁକ୍ତରାଷ୍ଟ୍ର ଆମେରିକା

କଲିକତାରୁ ୧୯୬୪ ମସିହା ମାର୍ଚ୍ଚ ୧୮ ତାରିଖ ଭୋର ଆଠଟାରେ ଇଣ୍ଡିୟାନ୍ ଏୟାର୍ ଲାଇନ୍ସ ବିମାନ ଯୋଗେ ଦିଲ୍ଲୀ ଯାତ୍ରା କଲି । ଦମ୍ ଦମ୍ ବିମାନ ଘାଟୀରେ ମୋତେ ବିଦାୟ ଦେଇ ଶ୍ୱଶୁର କଟକ ଫେରିଗଲେ । ଏୟାର୍ ଲାଇନ୍ ପକ୍ଷରୁ ଦିଲ୍ଲୀସ୍ଥ ତାଜ୍‌ମହଲ ହୋଟେଲ୍‌ରେ ମୋତେ ରଖାଗଲା। ଏତେ ବଡ଼ ହୋଟେଲ୍‌ରେ ରହିବା ମୋ ପାଇଁ ନୂଆ କଥା । ରୁମ୍‌ରେ ପଶି ଜାମାପଟା ବଦଳି ଲୁଙ୍ଗିଟା ପିନ୍ଧି ବିଛଣାରେ ଗଡ଼ିପଡ଼ିଲି । ଦ୍ୱାର ଠକ୍‌ଠକ୍ ଶୁଣି ଉଠିପଡ଼ି ଦ୍ୱାର ଖୋଲିଲାବେଳକୁ ଜଣେ ବୟସ୍କ ସର୍ଦ୍ଦାରଜୀ ପଶିଆସିଲେ । ମୋତେ ଚାହିଁ ସେ ମୁରୁକି ହସି ପଚାରିଲେ ତୁମେ କେଉଁଠୁ ଆସିଛ ? କହିଲି ଓଡ଼ିଶାରୁ । ପଚାରିଲେ କୁଆଡ଼େ ଯାଉଛ ? କହିଲି, ଯୁକ୍ତରାଷ୍ଟ୍ର ଆମେରିକା । ସେ ସୋଫା ଉପରେ ବସିପଡ଼ି ଖୁସିରେ ମୋତେ ଅନେକ ପ୍ରଶ୍ନ ପଚାରିଗଲେ। କହିଲେ ଓଡ଼ିଶାର ପିଲା ହୋଇ ତୁମେ ଖୁବ୍ 'ଉଚ୍ଚାଭିଳାଷୀ। ତୁମର ସ୍ୱପ୍ନ ସାର୍ଥକ ହେଉ । ନିଜର ପରିଚୟ ଦେଇ କହିଲେ ଏ ହୋଟେଲ୍‌ର ମୁଁ ବରିଷ୍ଠ ଖାନ୍‌ସମା । ମୋ ନିର୍ଦ୍ଦେଶରେ ଖାଦ୍ୟ ପ୍ରସ୍ତୁତ କରାଯାଏ । ତୁମେ ଆଜି କ'ଣ ଖାଇବ କୁହ । ମୁଁ କହିଲି, ଆପଣଙ୍କର ଯେଉଁଟା ଖୁବ୍ ସ୍ୱାଦିଷ୍ଟ ଖାଦ୍ୟ ତାହାହିଁ ମୋତେ ଦେବେ । ସେ ଯାଇ ଗୋଟିଏ ମେନୁକାର୍ଡ଼ ନେଇ ଆସିଲେ । ତହିଁରୁ ଦୁଇ ତିନିଟା ଆଇଟମ୍ ଚିହ୍ନାଇ ଦେଇ କହିଲେ ଏସବୁ ତୁମକୁ ଭଲ ଲାଗିବ । ତୁମ ପାଇଁ ଏଇ ରୁମ୍‌କୁ ଆଜି ଖାଦ୍ୟ ପଠାଇ ଦେବି । ଯାହା ଖୁସି ଖାଇବ । ପ୍ରାୟ ଦିନ ଗୋଟାଏ ସୁଦ୍ଧା ମୋ ରୁମ୍‌କୁ ପ୍ରାୟ ସାତଆଠ ପ୍ରକାର ଖାଦ୍ୟ ଆସିଗଲା । ଚିକେନ୍, ଚିଙ୍ଗୁଡ଼ି, ମାଂସଚପ୍, ମୋଗଲାଇ, ପାସ୍ତା, ପନିର, ଆଇସ୍‌କ୍ରିମ୍ ଆଦି ଅନେକ ଖାଦ୍ୟରୁ ମୁଁ କିଛି କିଛି ନେଲି । ସେ ଭଦ୍ରଲୋକ ପଶିଆସି ମୋ ପାଖେ ବସିଲେ । କହିଲେ ତୁମେ ଆମେରିକା ଯାଉଛ ସତ ମାତ୍ର ଏପରି ଖାଦ୍ୟ ସେଠି ମିଳିବ ନାହିଁ । ତାଙ୍କ କଥା ସତ ହେଲା । ଆମେରିକାରେ ଏପରି ଭାରତୀୟ ଖାଦ୍ୟ କେବେ ମୁଁ ଦେଖିଲି ନାହିଁ । ସେ ପଚାରିଲେ ତୁମେ ପିଇବ କ'ଣ ? କହିଲି, ପାଣି ପିଇବି । ହସି ହସି ସେ କହିଲେ ନାଇଁ, ଏଠାରେ ଅନେକ ପ୍ରକାରର ଡ୍ରିଙ୍କ୍ ମିଳେ । ଯାହା କହିବ ପଠାଇବି । କହିଲି

ଭଲ ପାଣି ଛଡ଼ା ମୋର ଆଉକିଛି ଦରକାର ନାହିଁ । ସେ ହସିଦେଇ କହିଲେ ତୁମେ ଆମେରିକାରୁ ଫେରିଲାବେଳକୁ ଆଉ ଖାଲିପାଣି ଚଳିବ ନାହିଁ । କହିଲି, ଜଣେ ଗୁରୁଜନ ଭାବରେ ଆପଣ ମୋତେ ଆଶୀର୍ବାଦ କରନ୍ତୁ । ମୋର ଯେମିତି କିଛି ବଦଭ୍ୟାସ ନହୁଏ । ସେ ଗମ୍ଭୀର ହୋଇଯାଇ କହିଲେ ତୁମେ ଭଲ ପିଲା । ତୁମର ଭବିଷ୍ୟତ ଉଜ୍ଜଳହେଉ ।

ସନ୍ଧ୍ୟା ପାଞ୍ଚଟା ସୁଦ୍ଧା ହୋଟେଲ୍‌ର ଡେସ୍କକୁ ଫୋନ୍ କରି ଏୟାରଫ୍ରାନ୍ସ ପାଇଁ ବସ୍ ଆସିବା କଥା ପଚାରିଲି । ସେମାନେ କହିଲେ, ଆପଣ ଟ୍ୟାକ୍ସି କରି ବିମାନଘାଟୀକୁ ଚାଲିଯାଆନ୍ତୁ । ବସ୍ ଆସି ଚାଲିଗଲାଣି । ଏକଥା ଶୁଣି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଭାବିଲି ଏମାନଙ୍କର ହୁଏତ ଟାକ୍ସି ବାଲାଙ୍କ ସହିତ ସଲାସୁତୁରା ଥିବ । ତେଣୁ ବସ୍ ବିଷୟରେ ଭୁଲ୍ କଥା କହୁଛନ୍ତି । ଆଉ କାଳବିଳମ୍ବ ନକରି ଟାକ୍ସି ଭଡ଼ା କରି ବିମାନଘାଟୀକୁ ବାହାରିଗଲି ।

ରାତି ୧୧ଟା ବେଳେ ଏୟାର.ଫ୍ରାନ୍ସ ବିମାନରେ ମୁଁ ପ୍ୟାରିସ୍ ଯାତ୍ରା କଲି । ଦିଲ୍ଲୀ ଛାଡ଼ିବା ବେଳେ ବିମାନଟି ଆକାଶକୁ ଉଠିବା ସମୟରେ ଶେଷଥର ପାଇଁ ମୋ ଜନ୍ମଭୂମି ଭାରତବର୍ଷକୁ ଆକାଶମାର୍ଗରୁ ଦେଖିନେବାକୁ ମନ ହେଉଥାଏ । ଆକାଶମାର୍ଗରୁ କେବଳ ଦିଲ୍ଲୀ ମହାନଗରୀର ବର୍ଣ୍ଣାଢ଼୍ୟ ଆଲୋକମାଳା ଦେଖିବାକୁ ପାଇ ସିଆଡ଼େ ଚାହିଁ ମାତୃଭୂମିକୁ ପ୍ରଣାମ ଜଣାଇଲି । ବିମାନଟି ଦିଲ୍ଲୀ ଛାଡ଼ିବା ପରେ ଇରାନ୍‌ର ରାଜଧାନୀ ତେହେରାନ୍ ଓ ଇସ୍‌ରାଏଲ୍ ରାଜଧାନୀ ତେଲିଆଭିଭ୍ ଦେଇ ପ୍ୟାରିସ୍ ଗଲା । ଇରାନ୍‌ର ରାଜଧାନୀ ତେହେରାନ୍‌ରେ ଚାରିଘଣ୍ଟା ପରେ ପହଞ୍ଚିଲାବେଳକୁ ସେଠାରେ ରାତି ସାଢ଼େଗୋଟାଏ ସମୟ । ଗୋଟିଏ ଘଣ୍ଟା ରହିବା ପରେ ବହୁ ଯାତ୍ରୀ ବିମାନରେ ଭରିଗଲେ । ପୁଣି ଚାରିଘଣ୍ଟା ଉଡ଼ାଣପରେ ଇସ୍‌ରାଏଲ୍‌ର ରାଜଧାନୀ ତେଲ୍‌ଆଭିଭ୍‌ରେ ବିମାନ ଅବତରଣ କଲା । ଜିଉମାନଙ୍କର ଦେଶ ଇସ୍‌ରାଏଲ । ସେଠି ପ୍ରାୟ ଅଧିକାଂଶ ଯାତ୍ରୀ ଓହ୍ଲାଇଗଲେ । ଆମ ଦେଶର ମାରୱାଡ଼ିମାନଙ୍କପରି ଜିଉମାନେ ସାରା ପୃଥିବୀରେ ସର୍ବୋଚ୍ଚ ଧନୀ ବ୍ୟବସାୟୀ ଗୋଷ୍ଠୀ । ହୁଏତ ଭାରତୀୟ ଅର୍ଥନୀତିକୁ କବ୍‌ଜା କରିଥିବା ଜିଉମାନଙ୍କ ମଧ୍ୟରୁ ଅନେକ ଲୋକ ଦିଲ୍ଲୀରୁ ଆସି ଏଠି ଓହ୍ଲାଇଗଲେ । ଉଠିଲେ ଖୁବ୍ କମ୍ ଲୋକ । ଜଣେ ଯୁବକ ଆସି ମୋ ପାଖ ସିଟ୍‌ରେ ବସିଲେ । ବୁଝିଲି, ସେ ମଧ୍ୟ ଆମେରିକା ଯିବେ, ବିମାନଟା ସାରା ବହୁ ସିଟ୍ ଖାଲି ପଡ଼ିଥାଏ । ତିନିଚାରିଟା ସିଟ୍‌ଯୋଡ଼ିଦେଇ ଶୋଇଯିବାକୁ ଚେଷ୍ଟା କଲି । ହାତଘଡ଼ିକୁ ଅନାଇ ଦେଖିଲି, ଭାରତୀୟ ସମୟ ସକାଳ ନଅଟା । ଇସ୍‌ରାଏଲ୍‌ରେ ସୂର୍ଯ୍ୟୋଦୟ ହେବାକୁ ଆହୁରି ଦୁଇଘଣ୍ଟା ବାକୀ । ଆଖିବୁଜି

ଶୋଇବାକୁ ଚେଷ୍ଟା କଲି । ମାତ୍ର ନିଦ ଆସୁ ନଥାଏ । ପ୍ରାୟ ଅଧଘଣ୍ଟାଏ ପରେ ଟିକେ ନିଦ ଆସିଗଲା । ରାତିଟା ଲମ୍ବି ଲମ୍ବି ଯାଉଛି । ଆଜି ହୁଏତ ମୋ ଜୀବନର ସବୁଠାରୁ ଲମ୍ବା ରାତି ଦେଖିବାକୁ ମିଳୁଛି । ସୂର୍ଯ୍ୟଙ୍କ ପ୍ରଭାବରୁ ନିଜକୁ ରକ୍ଷା କରିବା ପାଇଁ ସତେ ଯେମିତି ବିମାନଟା ରାତ୍ରିର ଅନ୍ଧକାର ଭିତରେ ଲୁଚି ଲୁଚି ପଶ୍ଚିମାଭିମୁଖୀ ହୋଇ ଧାଇଁଛି । ଆଖିବୁଜି ପଡ଼ିରହିବା ଭିତରେ କେତେବେଳେ ଯେ ଆଖିକୁ ନିଦ ଆସିଗଲା ଜାଣି ହେଲାନାହିଁ ।

ନିଦ ଭାଙ୍ଗିଲାବେଳକୁ ବିମାନ ଭିତରେ ଦିବାଲୋକ ପ୍ରବେଶ କରିବା ଦେଖି ଉଠିପଡ଼ି ଝରକା କଡ଼ରେ ବସିଲି । ବହୁ ଦୂରରେ ଦିଗ୍‌ବଳୟଟା ଝାପ୍‌ସା ହୋଇ ଦିଶୁଛି । ଧଳା ଧଳା ପାଉଁଶିଆ ରଙ୍ଗର ବଉଦ ସବୁ ଧୂଆଁଳିଆ ଦିଗ୍‌ବଳୟ ଉପରେ ନେସି ହୋଇ ରହିବା ପରି ଲାଗୁଥାଏ । ବିମାନ ପରିଚାରିକା ମାଇକ୍‌ରେ ସୁପ୍ରଭାତ ଜଣାଇ କହିଲେ, ଆମେ ଭୂମଧ୍ୟ ସାଗର ଉପରଦେଇ ଉଡୁଛୁ । ଦୂର ଦିଗ୍‌ବଳୟ ଉପରେ ଉଦୀୟମାନ ସୂର୍ଯ୍ୟ ବିଶାଳ ନାଲି ଗୋଲକଟିଏ ପରି ସୁନ୍ଦର ଦିଶୁଥାନ୍ତି । ଭୂମଧ୍ୟସାଗର ଉପକୂଳଟା ଠିକ୍ ଭାବେ ବାରି ହେଉନଥାଏ । ଦେଖିଲି ମାନଚିତ୍ରରେ ଆଙ୍କିବା ପରି ଧାର ଧାର ନଦୀ କେତେଟା ଆସି ଭୂମଧ୍ୟସାଗରରେ ପଡ଼ିଛନ୍ତି । ସେହି ଦୃଶ୍ୟକୁ ପ୍ରାଣଭରି ଉପଭୋଗ କରିବାକୁ ଚେଷ୍ଟା କଲି । ଇସ୍‌ରାଏଲି ଯୁବକ ଜଣକ ମୋ ପାଖକୁ ଉଠିଆସି କହିଲେ ଅଳ୍ପ ସମୟ ମଧ୍ୟରେ ପ୍ୟାରିସ୍ ଆସିବ । ପ୍ରସ୍ତୁତ ହୋଇପଡ଼ । ମୁଁ ଯାଇ ଟଏଲେଟ୍‌ରେ ଦାନ୍ତ ଘଷି ନେଲି । ସିଟ୍‌ରେ ବସିବା ମାତ୍ରେ ସେ ଯୁବକ ମୋ ସହିତ ଭାରତ, ଇସ୍‌ରାଏଲ୍ ଓ ଆରବ ବିଷୟରେ ଗପ କରିବା ଆରମ୍ଭ କରିଦେଲେ । ପ୍ୟାରିସ୍ ବିମାନ ବନ୍ଦରରେ ବିମାନଟି ଅବତରଣ କଲା । ବିମାନରୁ ବାହାରିଲା ବେଳକୁ ଚାରିଆଡ଼େ କୁହୁଡ଼ି । ସେଇ କୁହୁଡ଼ି ଭିତରେ ଝାପ୍‌ସା ହୋଇ ପ୍ୟାରିସ୍ ଟାୱାର୍ ଦିଶୁଥାଏ । ଇସ୍‌ରାଏଲି ବନ୍ଧୁ ଜଣକ ମୋ ପଛେ ପଛେ ଥାଆନ୍ତି ।

ୱେଟିଂ ଲାଉଞ୍ଜରେ ବିମାନ ପରିଚାରିକା ବ୍ରେକ୍‌ଫାଷ୍ଟ ଟିକେଟ୍ ବଢ଼ାଇ ଦେଲେ । ବନ୍ଧୁ ଜଣକ ପଚାରିଲେ, ବାର୍ ପାଇଁ ଟିକେଟ୍ କାହିଁ ? ପରିଚାରିକା ତାଙ୍କୁ ଟିକେଟ୍ ଦେଇ ସାରି ମୋତେ ବଢ଼ାଇଲାବେଳକୁ ମୁଁ ମନା କଲି । ବନ୍ଧୁ ଜଣକ ମୋ ଟିକେଟ୍‌କୁ ଝାମ୍ପି ଆଣି ମୋତେ କହିଲେ, ପ୍ୟାରିସ୍‌ର ସାମ୍ପେନନା ଚାଖିବାକୁ ତୁମେ କାହିଁକି ମନା କରି ଦେଉଛ ? କହିଲି, ମୁଁ ମଦ୍ୟପାନ କରେ ନାହିଁ । ସେ ମୋ ଟିକେଟ୍‌ଟା ପକେଟ୍‌ରେ ରଖି କହିଲେ ମୁଁ ତୁମ କାମଟା ଚଳାଇ ଦେବି । ଏହା କହି ସେ ତରତର ହୋଇ ବାର୍ ଅଭିମୁଖେ ଧାଇଁଲେ ।

ମୁଁ ବ୍ରେକ୍‌ଫାଷ୍ଟ ଖାଇସାରି ପ୍ୟାରିସ୍ ବିମାନ ବନ୍ଦରରେ ବୁଲାବୁଲି କରି ଦେଖିଲି । ବାହରେ କେବଳ କୁହୁଡ଼ି । ସୂର୍ଯ୍ୟାଲୋକର ସତ୍ତା ନାହିଁ । ପଚାରି ବୁଝିଲି, ପ୍ୟାରିସ୍ ପାଗ ଅଧିକାଂଶ ଦିନ କୁହୁଡିଆ ଥାଏ । ସୁନ୍ଦର ସୂର୍ଯ୍ୟାଲୋକ ଦେଖିଲେ ଲୋକେ ଆନନ୍ଦରେ କୁରୁଳି ଉଠନ୍ତି । ବିମାନଘାଟୀରେ ୪ ଘଣ୍ଟା କଟାଇବା ପରେ ପାନ୍ ଆମେରିକାନ୍ ବିମାନରେ ନ୍ୟୁୟର୍କ ଯାତ୍ରା କଲି । ଆଟ୍‌ଲାଣ୍ଟିକ୍ ମହାସାଗର ପାର ହେବାକୁ ଆଠଘଣ୍ଟା ଲାଗିଲା । ତାପରେ ଦିନ ୨ଟା ବେଳକୁ ନ୍ୟୁୟର୍କରେ ପହଞ୍ଚି ମୋର ସୁଟ୍‌କେଶ୍ ଧରି ଏୟାରଫ୍ରାନ୍ସ କାଉଣ୍ଟରରେ ଠିଆ ହୋଇ ଭାବିଲି ଏବେ ମୁଁ କୁଆଡ଼େ ଯିବି ?

ସେଦିନ ହୋଇଥାଏ ମାର୍ଚ୍ଚ ୧୮ ତାରିଖ । ୨୦ ତାରିଖ ଦିନ ମୋର କଲମ୍ବସ୍ ମହାନଗରୀରେ ପହଞ୍ଚିବା କଥା । କେଉଁବାଟ ଧରିବି, କେଉଁଠି ରାତ୍ରିଯାପନ କରିବି ବୋଲି ମଧ୍ୟ ଚିନ୍ତାରେ ପଡ଼ିଗଲି । ସେହି କାଉଣ୍ଟରରେ ରଖାଯାଉଥିବା ନ୍ୟୁୟର୍କ ଟେଲିଫୋନ୍ ଡିରେକ୍ଟୋରୀର ପୃଷ୍ଠା ଓଲଟାଇ କୌଣସି ଓଡ଼ିଆ ଲୋକଙ୍କ ନାମ ଖୋଜିବସିଲି। "D" ଅକ୍ଷରରେ କୃଷ୍ଣମୋହନ ଦାସଙ୍କ ନାଆଁ ଦେଖି ଆନ୍ଦନରେ ମୁଁ କୁରୁଳି ଉଠିଲି । ସେ ମୋତେ ପଶୁଚିକିତ୍ସା ମହାବିଦ୍ୟାଳୟରେ ପଢ଼ାଉଥିଲେ। ତାଙ୍କ ଘର କଟକ ସଦର ଉପଖଣ୍ଡର ବାଇଶିମୌଜା ଅର୍ନ୍ତଗତ ଋଷୀଖଣ୍ଡ ଗ୍ରାମରେ । ୧୯୫୮ ମସିହାରୁ ସେ ଆମେରିକା ଚାଲି ଆସିଛନ୍ତି । ସାଙ୍ଗେ ସାଙ୍ଗେ ଫୋନ୍ କଲି । କୃଷ୍ଣବାବୁ ମୋ କଣ୍ଠସ୍ୱର ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲେ ଆରେ ତୁ କେମିତି ଏଠି ପହଞ୍ଚିଗଲୁ ? କହିଲି, ଆପଣ ଆସି ମୋତେ ଏଠୁ ନେଇଯାନ୍ତୁ । ସେ ମୋତେ କିଛି ସମୟ ଅପେକ୍ଷା କରିବାକୁ କହିଲେ । ଘରଦ୍ୱାର ଦେଶ ଦୁନିଆଁ ଛାଡ଼ି ପୃଥିବୀର ଅପର ପାର୍ଶ୍ୱରେ ନିଉୟର୍କ ପରି ପ୍ରକାଣ୍ଡ ମହାନଗରୀରେ କୁଆଡ଼େ ଯିବି ବୋଲି ବାଟ ଖୋଜୁ ଖୋଜୁ ଅକସ୍ମାତ୍ ଜଣେ ଅତି ପରିଚିତ ନିଜ ଲୋକକୁ ପାଇଗଲେ ମନ ଯେ କେତେ ଉତ୍‌ଫୁଲ୍ଲିତ ହୋଇଯାଏ ସେ କଥା କେବଳ ଜଣେ ଅନୁଭବୀ ହିଁ ବୁଝିପାରିବ । ଦୀର୍ଘ ସାତବର୍ଷ ପୂର୍ବରୁ ସେ ଆମେରିକା ଆସିଛନ୍ତି । ତାଙ୍କୁ ଯେ ଏତେ ସହଜରେ ମୁଁ ପାଇପାରିବି ସେ ଚିନ୍ତା ଆଦୌ ମୋ ମନରେ ନଥିଲା । କୃଷ୍ଣବାବୁ ଦୁଇଘଣ୍ଟା ଭିତରେ ଆସି ପହଞ୍ଚିଗଲେ । ମୋ ସୁଟେକେଶ ଧରି ଚାଲକୁ ଚାଲିଲେ । ତାଙ୍କ ଆପାର୍ଟମେଣ୍ଟରେ ପହଞ୍ଚି ଡାକ୍ତର ଅମୀୟ ପଟ୍ଟନାୟକଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲି । ଡାକ୍ତର ପଟ୍ଟନାୟକ ଓଡ଼ିଶା ପଶୁପାଳନ ବିଭାଗର ଜଣେ ବରିଷ୍ଠ କର୍ମଚାରୀ । ଏଇମାତ୍ର ଏକ ସପ୍ତାହ ତଳେ ସେ ନ୍ୟୁୟର୍କରେ ଚାକିରୀ କରିବାକୁ ଆସି ପହଞ୍ଚିଛନ୍ତି । କୃଷ୍ଣବାବୁ ତାଙ୍କ ଲାଗି ସବୁ ବ୍ୟବସ୍ଥା କରସାରିଛନ୍ତି । କୃଷ୍ଣବାବୁଙ୍କ ପରିବାର ଓଡ଼ିଶାରେ ଥାଇ ସେ

ଏକୁଟିଆ ଏଠି ରହୁଥାନ୍ତି । ମୋତେ ଧରି ସେ ବଜାର କରିବାକୁ ଗଲେ । ବଜାରରୁ ଗୋଟିଏ ଇଲିସି ମାଛ କିଣିଲେ । ସନ୍ଧ୍ୟାରେ ସେ ନିଜେ ଇଲିସି ମାଛ ତରକାରୀ କଲେ। ନ୍ୟୁୟର୍କ ମହାନଗରୀରେ ପହଞ୍ଚି ଭାତ ଓ ଇଲିସି ମାଛ ତରକାରୀ ଖାଇବାକୁ ମିଳିବ ବୋଲି ଭାବିନଥିଲି। ଏଥିରୁ ମୋ ପ୍ରତି କୃଷ୍ଣବାବୁଙ୍କର ସ୍ନେହ ମୁଁ ଅନୁଭବ କରୁଥିଲି । ଷାଠିଏ ଦଶକ ଆରମ୍ଭରେ ଆମେରିକାରେ ଟେଲିଭିଜନ ଥିବା କଥା ଶୁଣିଥିଲି । ମାତ୍ର ଆଗରୁ ମୁଁ ଟି.ଭି. ଦେଖି ନ ଥିଲି । କୃଷ୍ଣବାବୁଙ୍କ ଘରେ ପ୍ରଥମ କରି ମୁଁ ଟେଲିଭିଜନ୍ ଦେଖିଲି । ଏହାର ପ୍ରାୟ ୨୦ ବର୍ଷ ପରେ ଅର୍ଥାତ୍ ଅଶୀ ଦଶକରେ ଭାରତବର୍ଷରେ ଟେଲିଭିଜନର ପ୍ରଚଳନ ହେଲା ।

ପରଦିନ ସକାଳ ଆଠଟାରେ ଅମୀୟ ବାବୁଙ୍କ ସହିତ ମୁଁ ଗ୍ରେହାଉଣ୍ଡ ବସ୍‌ଷ୍ଟାଣ୍ଡକୁ ଆସିଲି । ଷୋଳ ମହଲାର ପ୍ରକାଣ୍ଡ କୋଠାରେ ଗ୍ରେ ହାଉଣ୍ଡ ବସ୍ ଟର୍ମିନାଲ୍ । ମାଟି ଉପରେ ଆଠ ମହଲା ଓ ମାଟିତଳେ ଆଠମହଲା ଘର କେଉଁଠୁ କେଉଁଯାଏ ବ୍ୟାପି ରହିଛି ଦେଖିବାକୁ ମୋର ସମୟ ନଥିଲା । ସେହି ବିଲଡ଼ିଂ ଭିତରେ କେବଳ ଦୋକାନ ବଜାର ଯାତ୍ରୀ ବିଶ୍ରାମ ସ୍ଥଳ, ଅଫିସ, ଟିକେଟ୍ କାଉଣ୍ଟର, ବ୍ୟାଙ୍କ; କାଫେଟେରିଆ, ବାର୍, ଇନ୍‌ଡ଼ୋର ଗେମ୍ ଆଦି ଭରି ରହିଛି । ଆମେରିକାର ବିଭିନ୍ନ ସ୍ଥାନକୁ ଗ୍ରେ' ହାଉଣ୍ଡବସ୍ ଏଠାରୁ ଯିବା ଆସିବା କରେ । ପ୍ରତି ମହଲାକୁ ଚଢ଼ିବା, ଓହ୍ଲାଇବା ପାହାଚ ସହିତ ସ୍ୱୟଂକ୍ରିୟ ପାହାଚ ସବୁ ରହିଛି । ସବୁବେଳେ ମାଳ ମାଳ ଲୋକ ଚଳିଛନ୍ତି । କୌଣସି ଠାରେ ବସ୍‌ର ଦେଖାନାହିଁ । କେବଳ ଗେଟ ନମ୍ବର ଲେଖାଯାଇଛି । ବିଭିନ୍ନ ଗେଟରୁ ବସ୍ ଧରିବାକୁ ହେବ। ସେହି କୋଠା ଭିତରେ ଥରେ ପଶିଗଲେ ରାତି ବା ଦିନ ଜାଣିହେଉନି । ଇଚ୍ଛା ହେଉଥିଲା, ବୁଲି ବୁଲି ବସ୍‌ଷ୍ଟାଣ୍ଡଟା ଦେଖିବାକୁ । ମାତ୍ର ଅଧଘଣ୍ଟାଏ ଭିତରେ ଓହିଓ ରାଜ୍ୟର କଲମ୍ବସ ମହାନଗରୀକୁ ବସ୍ ଧରିବାକୁ ହେବ । କାଉଣ୍ଟରରେ ଟିକେଟ୍ କରି ଆମେ ନିର୍ଦ୍ଦିଷ୍ଟ ଗେଟ୍‌କୁ ଓହ୍ଲାଇଗଲୁ । ଅଧରାତି ପରି ଲାଗୁଥାଏ । ଗେଟ୍ ଖୋଲି ସେହି କୋଠାରୁ ବାହାରିବା ମାତ୍ରେ ବସ୍ ଠିଆ ହୋଇଛି । ମୋ ସୁଟ୍‌କେଶ ଦୁଇଟି ଡ୍ରାଇଭର କିମା ଦେଇ ପଟ୍ଟନାୟକବାବୁଙ୍କ ଠାରୁ ବିଦାୟ ନେଲି । କୃଷ୍ଣବାବୁ ଓ ତାଙ୍କ ପ୍ରତି ମୋର ଗଭୀର କୃତଜ୍ଞତା ଜଣାଇ ଏ ଅଜଣା ରାଜ୍ୟରେ ମୋତେ ବାଟ କଢ଼ାଇଥିବା ଯୋଗୁଁ ଅଶେଷ ଧନ୍ୟବାଦ ଜଣାଇଲି । ବସ୍‌ଟା ଅତ୍ୟନ୍ତ ଆରାମ ଦାୟକ । ବାହାରେ ଥଣ୍ଡା ପାଗ ଥିବା ସ୍ଥଳେ ବାତାନୁକୂଳ ବସ୍‌ରେ କିଛି ଜାଣି ହେଉନଥାଏ । ମାଟିତଳ ରାସ୍ତାରେ ପ୍ରାୟ ୪/୫ ମାଇଲ୍ ଯିବା ପରେ ବସ୍‌ଟା ମୁଖ୍ୟ ରାସ୍ତା ଧରିଲା । ବାହାରେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକ । ଆମେରିକାର ରାସ୍ତାଘାଟ ମୋତେ ଅଜବ ଲାଗୁଥାଏ ।

ସେଦିନ ରାତି ପ୍ରାୟ ତିନିଟା ସୁଦ୍ଧା କଲମ୍ବସ୍‌ରେ ପହଞ୍ଚି ଛାତ୍ର କଲ୍ୟାଣ ବିଭାଗର ଡିନ୍ ମିସ୍ ବେଲିଙ୍କୁ ଫୋନ୍ କରି ମୁଁ ବସ୍‌ଷ୍ଟାଣ୍ଡ୍‌ରେ ଥିବା କଥା ଜଣାଇଲି । ଆନ୍ତର୍ଜାତୀୟ ଛାତ୍ରାବାସରୁ ଜଣେ ଭାରତୀୟ ଛାତ୍ରଙ୍କୁ ସେ ମୋତେ ନେବାପାଇଁ ପଠାଇଲେ। ବାସହୀନ ବିଦେଶୀ ଛାତ୍ରମାନେ ଆନ୍ତର୍ଜାତୀୟ ଛାତ୍ରାବାସରେ ଏକ ସପ୍ତାହ ରହିପାରିବେ । ଏହି ଛାତ୍ରାବାସଟି ତିରିଶଟି କୋଠରୀ ବିଶିଷ୍ଟ ଏକ ଛୋଟ ହଷ୍ଟେଲ୍ । ଏହାର ଡ୍ରଇଂରୁମ୍‌ଟି ଗୋଟିଏ ହଲ୍ ପରି । ଫୟାର୍ ପ୍ଲେସ୍ ଉପରଟା ବିଭିନ୍ନ ଦେଶର ଜାତୀୟ ପତାକାରେ ଧାଡ଼ି ହୋଇ ସଜା ହୋଇଥାଏ । ନାଲି, ନେଳି, ହଳଦୀ, ଗୋଲାପି, ବାଇଗେଣି, ନାରଙ୍ଗୀ ଆଦି ବିଭିନ୍ନ ରଙ୍ଗର ପ୍ରାୟ ଏକ ଶହ ଦେଶର ପତାକା ସବୁ । ସେଗୁଡ଼ିକ ଏ ମୁଣ୍ଡରୁ ସେମୁଣ୍ଡକୁ ଲାଗି ଲାଗି ରହି ଖୁବ୍ ସୁନ୍ଦର ଦିଶୁଥାଏ । ତା ଭିତରେ ଆମ ତ୍ରିରଙ୍ଗା ପତାକାକୁ ଖୋଜି ବସିଲି । ଦୁଇ ତିନିଟି ତ୍ରିରଙ୍ଗା ପତାକା ମଧ୍ୟରେ ମୋଡ଼ି ହୋଇ ରହିଥିବା ଅଶୋକଚକ୍ର ଚିହ୍ନିତ ପତାକାଟି ଦେଖି ମୋଡ଼ି ହୋଇଥିବା ଧାରକୁ ସିଧା କରି ଧରି ମୁଣ୍ଡରେ ମାରିଲି । ପତାକାଟିକୁ ଛାଡ଼ିବାକୁ ମନ ହେଉନଥାଏ । ରଙ୍ଗବେରଙ୍ଗ ଶାଢ଼ୀ ପିନ୍ଧି ଠିଆ ହୋଇଥିବା ସ୍ତ୍ରୀଲୋକମାନଙ୍କ ଭିତରୁ ନିଜ ମାଆକୁ ଚିହ୍ନିପାରି ତା ପଣତକାନିକୁ ଧରି ଯେମିତି ଟିକି ପୁଅଟି ଅଳି କରେ, ଠିକ୍ ସେଇଭଳି ଭାବ ମୋ ମନ ଭିତରେ ଆସିଗଲା । କେତେ ଦୂରରେ ଛାଡି ଆସିଲି ମାଆକୁ ମୋର ? ମନେ ପଡ଼ିଗଲା ଭକ୍ତକବି ମଧୁସୂଦନଙ୍କ ମାତୃବନ୍ଦନା- "ଜୟ ମା ଜନମଭୂମି ପବିତ୍ର ଭାରତ ଭୂମି

ତୋହରି ସନ୍ତାନ ମାତ ଅଟୁ ସରବେ ।"

ପଛ ଆଡୁ କିଏ ଜଣେ କହିଲେ । "ନମସ୍ତେ" । ବୁଲି ଚାହିଁଲା ବେଳକୁ ଜଣେ ଗୁଜୁରାଟି ଯୁବକ ମୋ ସହିତ କରମର୍ଦ୍ଦନ କରିବାକୁ ହାତବଢ଼େଇ ଦେଲେ । ସେ ଥିଲେ "ସୁରଜୀ ସାମ୍‌ଜୀ ଗାଡ଼ା" ।

ମୋ ପରି ସେ ମଧ୍ୟ ଗତକାଲି ଆସି ପହଞ୍ଚିଛନ୍ତି । ଆମ ଭିତରେ ବନ୍ଧୁତା ଆରମ୍ଭ ହୋଇଗଲା । କଥାହେଲା, ଏଠି ରହିବା ଭିତରେ ପାଖାପାଖି ରହିବା ।

ସେଇ ସମୟ ମଧ୍ୟରେ ବିଶ୍ୱବିଦ୍ୟାଳୟ ପରିସର ବାହାରେ ନିଜପାଇଁ ରହିବାସ୍ଥାନ ଠିକ୍‌କରି ଚାଲିଯିବାକୁ ହେବ। ସେଦିନ ଗ୍ରାଜୁଏଟ୍ ସ୍କୁଲରେ ମୋର ରେଜିଷ୍ଟ୍ରେସନ୍ ହେଲା । ଡାଏରୀ ସାଇନ୍ସ ବିଭାଗର ମୁଖ୍ୟଙ୍କ ସହିତ ପରାମର୍ଶ କରି ବସନ୍ତକାଳୀନ ସେମିଷ୍ଟାର ପାଇଁ ପାଠ୍ୟ ବିଷୟ ଚୟନ କରିବାକୁ ପଡ଼ିବ । ଭାବିଲି, ଏଇ ମହାନଗରୀରେ କୌଣସି ଓଡ଼ିଆଲୋକ ଥିଲେ ଖୋଜି ବାହାର କରିବାକୁ ହେବ ।

ତାପରେ କେଉଁଠି ରହିବାର ବ୍ୟବସ୍ଥା କରିବା କଥା। କଲମ୍ବସ ମହାନଗରୀର ଫୋନ୍ ଗାଇଡ୍‌ର ପ୍ରତିପୃଷ୍ଠା ଓଲଟାଇ କୌଣସି ଓଡ଼ିଆ ଲୋକଙ୍କ ନାମ ପାଇଲି ନାହିଁ। ମାତ୍ର ବଙ୍ଗାଳି, ଗୁଜୁରାଟି, ତାମିଲ ପଞ୍ଜାବୀ ଓ ଆନ୍ଧ୍ର ଲୋକଙ୍କର ନାମ ଯଥେଷ୍ଟ ମିଳିଲା । ସେ ନାମ ତାଲିକା ଭିତରୁ କଲିକତାର ଡକ୍ଟର ଶ୍ୟାମଲ୍ ଭଟ୍ଟାଚାର୍ଯ୍ୟଙ୍କ ନାମ ପାଇଲି । କଲିକତା ରିଜର୍ଭବ୍ୟାଙ୍କରେ ବିଦେଶୀ ମୁଦ୍ରା ଦରଖାସ୍ତକାରୀଙ୍କ ଧାଡ଼ିରେ ମୋ ସାମନାରେ ସେ ଠିଆ ହୋଇଥିଲେ । ଓହିଓ ବିଶ୍ୱବିଦ୍ୟାଳୟକୁ ଆସୁଥିଲେ ସେ । ଠିକ୍ ଗୋଟିଏ ସେମିଷ୍ଟାର ଆଗରୁ ସେ ଆସି ଏଠି ପହଞ୍ଚିଛନ୍ତି । ତାଙ୍କୁ ଫୋନ୍ କଲି । ସେ ଆସି ମୋତେ ଆନ୍ତର୍ଜାତୀୟ ଛାତ୍ରାବାସରୁ ତାଙ୍କ ଘରକୁ ନେଇଗଲେ । କହିଲେ ମୋର ପରିବାର ଏଠାକୁ ଆସିବା ପର୍ଯ୍ୟନ୍ତ ତୁମେ ମୋ ସହିତ ରହିପାର । ମୁଁ ଉପକୃତ ହେଲି । ସେ ମୋତେ ରୋଷେଇବାସ କରି ଖୁଆଇଲେ । କହିଲି ମୁଁ ରାନ୍ଧି ଜାଣି ନାହିଁ । ତେଣୁ ଏଠି ରହିବା ଭିତରେ ରାନ୍ଧିବା ଅଭ୍ୟାସ କରିନେବି । ସେ ମୋତେ ଅନ୍ୟସବୁ ବଙ୍ଗୀୟମାନଙ୍କ ସହିତ ପରିଚୟ କରାଇଦେଲେ । ବହୁ ବଙ୍ଗାଳି ପରିବାର ସହିତ ମୋର ସମ୍ପର୍କ ବଢ଼ି ଉଠିଲା । ସେମାନଙ୍କର ସଭା ସମିତି, ପାରିବାରିକ ଭୋଜି ବା ପର୍ବପର୍ବାଣୀରେ ମୋତେ ନିମନ୍ତ୍ରଣ ମିଳିଲା । ମାତ୍ର ମୁଁ ବଙ୍ଗଳା କହିପାରୁ ନଥିବାରୁ କେତେଟା ଅସୁବିଧା ଅନୁଭବ କଲି ।

ପାଠପଢ଼ା ଆରମ୍ଭ ହୋଇଗଲା । ପ୍ରଫେସର ଡକ୍ଟର ଟମ୍ ଲଡ୍‌ୱିକ୍ ମୋର ପରାମର୍ଶଦାତା ହେଲେ । ସେ ଅବିବାହିତ ଥିଲେ । ମାତ୍ର ଅତ୍ୟନ୍ତ ଦୟାଳୁ ଓ ଛାତ୍ରବତ୍ସଳ ଲୋକ । ସେ କହନ୍ତି ମୋ ଛାତ୍ରମାନେ ହିଁ ମୋର ପରିବାର । ସେମାନଙ୍କ ଖୁସିରେ ମୋର ଖୁସି । ତେଣୁ ମୋତେ ସେ ଖୁବ୍ ଭଲ ପାଉଥିଲେ । ମୁଁ କେଉଁଠି ଅଛି, କ'ଣ ଖାଉଛି, ଦେହମୁଣ୍ଡ ଭଲ ରହୁଛିକି ନାହିଁ, ସବୁ ଖବର ପ୍ରତିଦିନ ପଚାରନ୍ତି । ତାଙ୍କ ଅଧୀନରେ ୨୦ ଜଣ ଛାତ୍ରଛାତ୍ରୀ ସ୍ନାତକୋତ୍ତର ଶିକ୍ଷା ପାଉଥାନ୍ତି । ମୋତେ ସ୍ୱାଗତ କରିବାକୁ ତାଙ୍କର ସବୁ ଛାତ୍ରାଛାତ୍ରୀଙ୍କୁ ଡାକି ତାଙ୍କ ଘରେ ଏକ ଭୋଜି ଦେଲେ । ଏପରି ଜଣେ ସ୍ନେହୀ ବ୍ୟକ୍ତିଙ୍କୁ ପରାମର୍ଶଦାତା ଭାବେ ପାଇ ମୁଁ ନିଜକୁ ଧନ୍ୟ ମନେକଲି ।

ଡକ୍ଟର ଭଟ୍ଟାଚାର୍ଯ୍ୟଙ୍କ ଘରେ ରହିବାର ପ୍ରାୟ ୧୫ ଦିନ ପରେ ମେରୀଲାଣ୍ଡରୁ ଡକ୍ଟର ନଟବର ଶତପଥୀ କଲମ୍ବସ ଆସିଲେ । ସେ ନ୍ୟୁଟ୍ରିସନ୍ ବିଭାଗରେ ପୋଷ୍ଟଡକ୍ଟରାଲ୍ କାର୍ଯ୍ୟ କରିବାକୁ ଆସି ସପରିବାର କଲମ୍ବସ୍‌ରେ ରହିଲେ। ପିପିଲି ପଶୁଚିକିତ୍ସାଳୟରେ ସେ ଡାକ୍ତର ଥିଲେ । ସେ ମୋତେ ଦେଖି ଭାରି ଖୁସି ହେଲେ। ଏଠାକୁ ଆସିବା ପୂର୍ବରୁ ଆମେରିକାର ମେରୀଲାଣ୍ଡ ବିଶ୍ୱବିଦ୍ୟାଳୟରେ ସେ ଡକ୍ଟରେଟ୍

କରୁଥିଲେ। ଏବେ ପ୍ରତି ଶନିବାର ଓ ରବିବାର ତାଙ୍କ ଘରେ ମୋର ବେଳ କଟିଲା । ଇତିମଧ୍ୟରେ ସେହି ଗୁଜୁରାଟି ବନ୍ଧୁ ସୁଇଜୀ ଗାଡ଼ା ରହୁଥିବା ଆପାର୍ଟମେଣ୍ଟରେ ମୋ ପାଇଁ ଗୋଟିଏ ବଖରା ଘର ମିଳିଗଲା । ଡକ୍ଟର ଭଟ୍ଟାଚାର୍ଯ୍ୟଙ୍କ ଘରଛାଡ଼ି ମୁଁ ସେଠାରେ ଯାଇ ରହିଲି । ରହୁ ରହୁଁ ବସନ୍ତକାଳୀନ ସେମିଷ୍ଟାର ସରିଆସିଲା । ପରୀକ୍ଷାରେ ମୁଁ ଖୁବ୍ ଭଲ କରିଥାଏ । ଗ୍ରୀଷ୍ମକାଳୀନ ସେମିଷ୍ଟାର ପାଇଁ ପୁଣି ରେଜିଷ୍ଟ୍ରେସନ ହେଲା । ମୁଁ ୧୮୦ ଡଲାର ଦେଇ ତିନି ପ୍ରକାର ପାଠ୍ୟକ୍ରମ ନେବାକୁ ଫର୍ମ ପୂରଣ କଲି । ମୋ ପାଖରେ ଆଉ ମାତ୍ର ୨୦ ଡଲାର ଥାଏ । ଭାବିଲି, ଇତିମଧ୍ୟରେ କେଉଁଠି କାମ ଯୋଗାଡ଼ କରିନେବି । ସେଥିପାଇଁ ଅନେକ ଆଡ଼େ ଚେଷ୍ଟା ଚଳାଇଲି । ମାତ୍ର କିଛି କାମ ମିଳିଲା ନାହିଁ । ମୋ ପରାମର୍ଶଦାତା ଡକ୍ଟର ଲଡ୍‌ୱିକ୍‌ଙ୍କୁ କହିଲି । ସେ କହିଲେ ହାତରେ ଧନ ନଥାଇ ପାଠ ପଢ଼ିବା ସମ୍ଭବ ନୁହେଁ । ପାଠପଢ଼ାରେ ମନ ଲାଗିବ ନାହିଁ । ପରୀକ୍ଷାରେ ଖରାପ କଲେ ଭବିଷ୍ୟତରେ ଅନେକ କ୍ଷତି ସହିବାକୁ ପଡ଼ିବ। ଆଗେ ଯାଇ ଗ୍ରାଜୁଏଟ ସ୍କୁଲରୁ ତୁମ ଟଙ୍କା ଫେରାଇ ଆଣ । ଖାଇ ପିଇ ଆରାମରେ ରୁହ। ତାପରେ ପାଠପଢ଼ା କଥା ବୁଝା ହେବ । କାଗଜ ଖଣ୍ଡେ ଚିରିଆଣି ମୋ ପଇସା ଫେରାଇ ଦେବାକୁ ଲେଖିଦେଲେ । ଛୋଟିଆ ଚିରା କାଗଜ ଖଣ୍ଡେ ଧରି ମୁଁ ଗ୍ରାଜୁଏଟ୍ ସ୍କୁଲକୁ ଗଲି । ଆଠ ଦଶ ଦିନ ତଳେ ଟଙ୍କା ଦାଖଲ କରିଥିଲି । ଏଇ ଚିରୁକୁଟି ଖଣ୍ଡକ ଦେଖାଇ ଯେ, ମୋ ଟଙ୍କା ଫେରିପାଇବି ସେ ବିଶ୍ୱାସ ମୋର ନଥାଏ। ପାହାଚରେ ଉଠିଯାଇ ମୁଁ ଅଭ୍ୟର୍ଥନାକାରୀ ଝିଅ ପାଖରେ ଯାଇ ଠିଆ ହେଲି । ସେ ମୋତେ ପଚାରିଲା; ମୁଁ ଆପଣଙ୍କୁ ସାହାଯ୍ୟ କରିପାରେ କି ? ଚିରୁକୁଟି କାଗଜ ଖଣ୍ଡକ ସେ ଝିଅ ହାତକୁ ବଢ଼ାଇ ଦେଲି । ମୋ ପରାମର୍ଶଦାତାଙ୍କ ନାମ ପଚାରି ସେ ତାଙ୍କ ଫାଇଲ୍ କାଢ଼ି ସ୍ଲିପ୍‌ଟାକୁ ସେଥିରେ ରଖିଦେଇ ମୋ ହାତକୁ ୧୮୦ ଡଲାରର ଏକ ଚେକ୍ ବଢ଼ାଇଦେଲା । ମୋତେ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଥାଏ । ଝିଅଟି ମୋ ପରାମର୍ଶଦାତାଙ୍କୁ ଜାଣେନା । ତାଙ୍କର ନାମ ଛପାଥିବା କୌଣସି ପ୍ୟାଡ୍‌ରେ ସେ ଲେଖି ଦେଇ ନାହାନ୍ତି । ଖଣ୍ଡେ ଚିରା କାଗଜ ଉପରେ ମୋର ଟଙ୍କା ଫେରାଇ ଦେବାକୁ ସେ ଲେଖି ଦେଇଥିଲେ । ସ୍ପଷ୍ଟ ଭାବେ ସେ ଦସ୍ତଖତ କରି ନାହାନ୍ତି । କିମ୍ବା ତାଙ୍କର ପଦପଦବୀ ଲେଖା ନାହିଁ । ଆମ ଦେଶ ଭାରତବର୍ଷରେ ଏପରି ଆଦୌ ସମ୍ଭବ ନୁହେଁ । କୌଣସି ପ୍ରଫେସରଙ୍କ ଲେଖା ଉପରେ କିରାଣୀବାବୁ ଆଦୌ ଗୁରୁତ୍ୱ ଦେବେନାହିଁ । ହେଲେ, ଏ ଦେଶରେ କେବଳ ନାଆଁ କହିଦେଲେ ଯଥେଷ୍ଟ । ଚେକ୍‌ଟା ଧରି ସିଧା ଡକ୍ଟର ଲଡ୍‌ୱିକ୍‌ଙ୍କ ପାଖକୁ ଫେରି ଆସିଲି । ସେ ହସିଦେଇ କହିଲେ, ଏଥର ଯାଇ ଆରାମରେ ଖିଆପିଆ-କରି କେଉଁଠି କିଛି କାମ ଯୋଗାଡ଼ କରିନିଅ । ଅନ୍ୟ ସବୁ ବିଶ୍ୱବିଦ୍ୟାଳୟକୁ ଲେଖି ବୃତ୍ତି ବା ଆସିଷ୍ଟାଣ୍ଟସିପ୍ ଯୋଗାଡ଼ରେ

ଲାଗିପଡ଼ । ଯେଉଁଠୁ ଆର୍ଥିକ ସାହାଯ୍ୟ ମିଳିବ ସେଠିକି ଯାଇ ପାଠ ପଢ଼ିବ । ମୋ ମନଟା ଭାଙ୍ଗିଗଲା । ଏବେ ଦୁଇମାସ କାଳ ବସି ରହିବାକୁ ହେବ ।

ଫୋନ୍‌ରେ ନଟବର ଶତପଥୀଙ୍କୁ ଡାକିଲି । ସେ ଆସି ମୋତେ ତାଙ୍କଘରକୁ ନେଇଗଲେ । ତାଙ୍କ ସ୍ତ୍ରୀ ଶାନ୍ତିଦେବୀ ଖୁବ୍ ଭଲ ମଣିଷ । ତାଙ୍କର ଦୁଇବର୍ଷର ଝିଅଟିଏ ଥାଏ । ଆମେସବୁ ବଜାର ଯାଉ । ଶନିବାର ଓ ରବିବାର ତାଙ୍କ ଘରେ ମୋର ଆନନ୍ଦରେ ସମୟ କଟିଯାଏ । ଅନ୍ୟ ଦିନ ମାନଙ୍କରେ ମୁଁ କେତେଜଣ ସାଙ୍ଗଙ୍କର ପରାମର୍ଶ ନେଇ ବିଭିନ୍ନ ଆଡ଼େ ଯାଇ କର୍ମ ନିଯୁକ୍ତି ଲାଗି ଚେଷ୍ଟା କରେ । ଚାରି ପାଞ୍ଚଦିନ ଛାଡ଼ି ମୁଁ ପୁଣି ପରାମର୍ଶଦାତା ପ୍ରଫେସର ଲଡ଼୍‌ୱିକ୍‌ଙ୍କ ପାଖକୁ ଗଲି । ସେ ମୋତେ ଦେଖି ପଚାରିଲେ ପୁଣି ବିରସ ମନ କାହିଁକି ? ଖିଆପିଆ କରୁଛ ତ ? ନୀରବରେ ମୁଣ୍ଡ ହଲାଇ ସମ୍ମତି ଜଣାଇଲି । ସେ ପଚାରିଲେ କେଉଁଠି କର୍ମ ନିଯୁକ୍ତି ମିଳିଲା ? ମନା କଲି । ସୋମବାର ଦିନ ତାଙ୍କୁ ଆସି ଭେଟିବାକୁ ସେ କହିଲେ ।

ଡକ୍ଟର ଶତପଥୀଙ୍କୁ ସବୁକଥା କହିଲି । ସେ କହିଲେ ତୁମ ପ୍ରଫେସର ନିଶ୍ଚୟ ତୁମକୁ କେଉଁ ବାଟେ ସାହାଯ୍ୟ କରିବେ ବୋଲି ଚିନ୍ତାରେ ଅଛନ୍ତି । ତୁମର ଭାଗ୍ୟ ଭଲ । ଏପରି ଜଣେ ଦୟାଳୁ ହିତାକାଂକ୍ଷୀ ପରମର୍ଶଦାତା ପାଇଛ । ସୋମବାର ଦିନ ଡକ୍ଟର ଲଡ଼୍‌ୱିକ୍‌ଙ୍କ ପାଖକୁ ଗଲି । ସେ ପଚାରିଲେ ତୁମେ ଜେନେଟିକ୍ସ ପଢ଼ିଛ ? କହିଲି ହଁ, ତହିଁରେ ମୋର ପ୍ରାଥମିକ ଜ୍ଞାନ ଅଛି । ସେ ମୋତେ ଗୋଟିଏ ଗବେଷଣାଗାର ଦେଖିବାକୁ ଡାକିଲେ । ସେହି ଗବେଷଣାଗାର ନିର୍ଦ୍ଦେଶକ ଡକ୍ଟର ୱେସ୍‌ଲିଙ୍କ ସହିତ ମୋତେ ଚିହ୍ନା କରାଇଦେଇ ଚାଲିଗଲେ । ଡକ୍ଟର ୱେସ୍‌ଲି ମୋତେ ସେଠାରେ ହେଉଥିବା ଗବେଷଣା କାର୍ଯ୍ୟ ବିଷୟରେ ବୁଝାଇଲେ । ଯାହା ସବୁ କାମ ହେଉଛି, ସେ ବିଷୟରେ ବତାଇ ଦେଲେ । ପଚାରିଲେ ତୁମକୁ ଏସବୁ କେମିତି ଲାଗୁଛି ? କହିଲି, ହଁ ଏପରି ଗବେଷଣା ଆବଶ୍ୟକ । ସେ ମୋତେ କାଲି ଆଠଟା ବେଳକୁ ଆସିବାକୁ କହିଲେ । ଘରକୁ ଫେରିଯାଇ ଡକ୍ଟର ଶତପଥୀଙ୍କୁ ସବୁ କଥା କହିଲି । ସେ କହିଲେ ଆଉ ଚିନ୍ତା କରିବାର ନାହିଁ ଆପଣଙ୍କର କାମ ହୋଇଗଲା । ଆପଣଙ୍କ ପରାମର୍ଶଦାତା ସେଇ ଗବେଷଣାଗାରରେ ଆପଣଙ୍କ ପାଇଁ କାମ ଯୋଗାଡ଼ କରିଛନ୍ତି । ତାପର ଦିନ ସତକୁ ସତ ଡକ୍ଟର ୱେସ୍‌ଲି ମୋତେ ସେଠି କାମ କରିବାକୁ କହିଲେ । ପ୍ରତି ସପ୍ତାହରେ ମୋତେ ଚେକ୍ ମିଳିଯାଉଥିଲା । ଦୁଇ ମାସ ପରେ ପୁଣି ପାଠପଢ଼ା ଆରମ୍ଭ ହୋଇଗଲା । ଚାରିଟା ବିଷୟ ନେଇ ପଢ଼ିଲି । ପ୍ରାୟ ଦେଢ଼ ମାସ ପରେ ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟରୁ ମୋତେ ଆସିଷ୍ଟାଣ୍ଟସିପ୍ ଚିଠି ମିଳିଗଲା । ଚିଠିଟା ନେଇ ମୋ ପ୍ରଫେସରଙ୍କୁ ଦେଖାଇଲ । ସେ ଭାରି ଖୁସି ହେଲେ । ଯାହା

ବୁଝିଲି; ଏସବୁ ତାଙ୍କରି କାମ । ମୁଁ ଦରଖାସ୍ତ କରିଥିବା ବିଶ୍ୱବିଦ୍ୟାଳୟ ମାନଙ୍କର ପ୍ରଫେସର ମାନଙ୍କ ସହିତ କଥାହୋଇ ସେ ମୋତେ ସାହାଯ୍ୟ କରିଛନ୍ତି । ତାଙ୍କ ପ୍ରତି କୃତଜ୍ଞତାରେ ହୃଦୟ ଭରିଗଲା । ଏବେ ମନଖୁସିରେ ପାଠପଢ଼ାରେ ଲାଗିପଡ଼ି ଖୁବ୍ ଭଲ ଗ୍ରେଡ୍ ଆଣିବି । ସାଉଥ୍ ଡାକୋଟା ଯିବା ପୂର୍ବରୁ ପ୍ରଫେସର ଲଡ୍‌ୱିକ୍ ମୋତେ ସମ୍ବର୍ଦ୍ଧନା ଦେବାକୁ ପୁଣି ଏକ ଭୋଜି ଦେଲେ । ତାଙ୍କର ସବୁ ଛାତ୍ର ସେହି ଭୋଜିରେ ଯୋଗ ଦେଲେ । ସାଉଥ୍‌ଡାକୋଟାରେ ପ୍ରବଳ ଥଣ୍ଡା ଯୋଗୁଁ ମୋ ପାଇଁ ଗରମ ପୋଷାକ ଉପହାର ଦେଇ ସେ ବିଦାୟ ଦେଲେ ।

କଲମ୍ବସ୍ ଛାଡ଼ି ସାଉଥ୍‌ଡାକୋଟା ଗଲି । ଗ୍ରେହାଉଣ୍ଡ ବସ୍‌ରେ ପୂରା ଦିନଟାଏ ଲାଗିଗଲା । ପାହାନ୍ତାବେଳକୁ ବୃକିଂସ୍ ସହରରେ ବସ୍ ପହଞ୍ଚିଗଲା । ମୋତେ ଡାଏରୀ ସାଇନ୍ସ ବିଭାଗର ମୁଖ୍ୟ ଡକ୍ଟର ବ୍ରାଜିଲ ତାଙ୍କ ସହିତ ଯୋଗାଯୋଗ କରିବାକୁ କହିଥିଲେ । ମୋ ଯିବା ଖବର ପୂର୍ବରୁ ତାଙ୍କୁ ଜଣାଇବାରୁ ଡକ୍ଟର ବ୍ରାଜିଲ ମୋତେ ନେବାପାଇଁ ଗ୍ରେହାଉଣ୍ଡ ବସ୍‌ଷ୍ଟାଣ୍ଡରେ ଅପେକ୍ଷା କରି ରହିଥିଲେ । ବସ୍ ପହଞ୍ଚିବା ମାତ୍ରେ ବସ୍‌ରୁ ମୋର ସୁଟ୍‌କେଶ୍ ଧରି ନେଇ ତାଙ୍କ ଗାଡ଼ି ପାଖକୁ ଡାକିନେଲେ । ସାଉଥ୍‌ଡାକୋଟା ବିଶ୍ୱବିଦ୍ୟାଳୟର ଜଣେ ବିଭାଗୀୟ ମୁଖ୍ୟ ରାତି ପାହାନ୍ତାରେ ଉଠି ବସ୍‌ଷ୍ଟାଣ୍ଡକୁ ଆସି ମୋର ସୁଟ୍‌କେଶ୍ ବୋହି ନେବେ ବୋଲି ମୁଁ ଭାବିପାରୁନଥାଏ । ସେ ମୋ ପାଇଁ ଗୋଟିଏ ଆପାର୍ଟମେଣ୍ଟ ଠିକ୍ କରିଥିଲେ । ମୋତେ ନେଇ ସେହି ଘରେ ପହଞ୍ଚାଇ ଘରମାଲିକ ମିସେସ୍ ନର୍ଟନଙ୍କୁ ଉଠାଇ ତାଙ୍କ ସହିତ ପରିଚୟ କରାଇଦେଇ ଶୀଘ୍ର ମୋତେ ନିତ୍ୟକର୍ମ ସାରି ସକାଳ ୯ଟା ବେଳକୁ ସଜହୋଇ ରହିବାକୁ କହିଲେ । ମୁଁ ନିତ୍ୟକର୍ମ ସାରି ସୁଟ୍‌କେଶରୁ ଜିନିଷପତ୍ର କାଢ଼ି ଘରେ ରଖୁଥିବାବେଳେ ପୁଣି ଆସି ମୋତେ ତାଙ୍କ ସହିତ ଯିବାପାଇଁ ଡାକିଲେ । ତାଙ୍କ ଘରକୁ ନେଇ ଶ୍ରୀମତୀ ବ୍ରାଜିଲଙ୍କ ସହିତ ପରିଚୟ କରାଇବା ପରେ ତିନିଜଣ ମିଶି ଜଳଖିଆ ଖାଇଲୁ । ତାପରେ ମୋତେ ସେ ଡ଼େଆରୀ ସାଇନ୍ସ ବିଭାଗକୁ ନେଇ ସେଠାରେ ସବୁ ପ୍ରଫେସର ମାନଙ୍କ ସହିତ ସାକ୍ଷାତ କରାଇ ଉପର ତଳ ସବୁ ମହଲାରେ ଚାଲିଥିବା ବିଭିନ୍ନ କାର୍ଯ୍ୟକ୍ରମ ବିଷୟରେ ମୋତେ ସୂଚନା ଦେଲେ । ମୋର ପରାମର୍ଶଦାତା ପ୍ରଫେସର ଡକ୍ଟର ହାୱାର୍ଡ଼ ଭୋକର୍‌ଙ୍କ ସହିତ ବସି କଥା ହେବାକୁ ଛାଡ଼ିଦେଇ ତାଙ୍କ ଅଫିସକୁ ଚାଲିଗଲେ ।

ଡକ୍ଟର ଭୋକର୍ ଅତି ସରଳ ଶାନ୍ତ ନିରୀହ ମଣିଷ । ସେ କରୁଥିବା ଗବେଷଣା ବିଷୟରେ ବୁଝାଇଲେ । ସେଇ କାମରେ ତାଙ୍କୁ କିପରି ସାହାଯ୍ୟ କରିବାକୁ ହେବ ସେ ବିଷୟରେ ଚିନ୍ତା କରିବାକୁ ମୋତେ କହି, ଆସନ୍ତା ଶୀତକାଳୀନ ସେମିଷ୍ଟାର ପାଇଁ

କେଉଁ ପାଠ୍ୟ ନେଇ ପଢ଼ିବାକୁ ହେବ ସେ ବିଷୟରେ ଆଲୋଚନା କଲେ । ମାତ୍ର ଆଠଦିନ ପରେ ଶୀତକାଳୀନ ସେମିଷ୍ଟାର ପାଇଁ ନାମ ଲେଖାଇବାକୁ ହେବ । ତା ସହିତ ଗବେଷଣା କାର୍ଯ୍ୟ ଚାଲୁ ରଖିଲେ ଯଥାଶୀଘ୍ର ସନ୍ଦର୍ଭଲେଖି ଏମ୍ ଏସ. ପାଠ୍ୟକ୍ରମ ସାରିଦେବାକୁ ମଧ୍ୟ ସେ ମୋତେ ସୂଚନା ଦେଲେ। ତାଙ୍କ ଘରେ ସନ୍ଧ୍ୟାରେ ଖାଇବା ପାଇଁ ମଧ୍ୟ ନିମନ୍ତ୍ରଣ କଲେ । ମୋତେ ଆଣି ମୋର ଆପାର୍ଟମେଣ୍ଟରେ ଛାଡ଼ିଦେବାକୁ ସେ ବାହାରିଲେ । ତା ପୂର୍ବରୁ ଆମେ ଦୁହେଁ ବିଭାଗୀୟ ମୁଖ୍ୟ ଡକ୍ଟର ବ୍ରାଜିଲଙ୍କ ଅଫିସକୁ ଗଲୁ। ଡଃ. ବ୍ରାଜିଲ୍ ମୋତେ ଗୋଟିଏ ଚେକ୍ ବଢ଼ାଇ ଦେଇ କହିଲେ; ତୁମେ ଆଜିଠାରୁ ପ୍ରତିମାସରେ ଏ ବିଭାଗରୁ ଆସିଷ୍ଟାଣ୍ଟସିପ୍ ପାଇବ। ମାତ୍ର ଏଠି ଆସି ନୂଆକରି ଚଳିବାପାଇଁ ଓ ଆସନ୍ତା ସେମିଷ୍ଟାର୍‌ରେ ନାମ ରେଜେଷ୍ଟ୍ରି କରିବାକୁ ତୁମର ଟଙ୍କା ଦରକାର । ତେଣୁ ଗୋଟିଏ ମାସର ଅଗ୍ରିମ ଦେୟ ତୁମକୁ ଦେଉଛି । ତିନିଚାରିମାସ ଭିତରେ ଏ ଟଙ୍କା ତୁମ ଆସିଷ୍ଟାଣ୍ଟସିପ୍‌ରୁ କଟାଇ ନେଇ ହେବ। ତାଙ୍କୁ ଅଶେଷ ଧନ୍ୟବାଦ ଦେଇ ଚେକ୍‌ଟି ଆଣିଲି। କୃତଜ୍ଞତାରେ ମୋର ମୁଣ୍ଡ ନଇଁଗଲା। ମୋ ପାଇଁ ତାଙ୍କମନରେ ଏତେ ଚିନ୍ତା । ଭାରତୀୟ ଛାତ୍ରଟିଏ ଏପରି ଏକ ନୂଆଜାଗାରେ ପହଞ୍ଚି ଚଳିବା ପାଇଁ ଅର୍ଥ ଆବଶ୍ୟକ ଭାବି ବିଭାଗୀୟ ମୁଖ୍ୟ ମୋପାଇଁ ଆଗରୁ ଚେକ୍ ଲେଖି ରଖିଥିଲେ । ଜଣେ ଅଜଣା ଅଶୁଣା ଛାତ୍ର ପାଇଁ ତାଙ୍କର ଏଭଳି ବଦାନ୍ୟତା ମୋ ଦେଶରେ କାହାଠାରୁ ହେଲେ ଆଶା କରିବା ଅସମ୍ଭବ ।

ମୋର ଏଠାକୁ ଆସିବାକଥା ଜାଣି ମୋପାଇଁ ଡଃ ବ୍ରାଜିଲ ଘର ଠିକ୍‌କରି ରଖିଛନ୍ତି । ରାତିରୁ ଉଠି ବସ୍‌ଷ୍ଟାଣ୍ଡ ଯାଇ ମୋ ଜିନିଷପତ୍ର ବୋହି ଆଣି, ମୋ ରହିବା ସ୍ଥାନରେ ରଖାଇବା ପରେ ତାଙ୍କ ଘରେ ନେଇ ଖୁଆଇ ପିଆଇ ତାଙ୍କ ଗାଡ଼ିରେ ମୋତେ ବିଭାଗକୁ ନେଇ ସମସ୍ତଙ୍କ ସହିତ ପରିଚୟ କରାଇବା ପରେ ପୁଣି ମୋର ଚଳିବା ପାଇଁ ଅଗ୍ରୀମ ଅର୍ଥ ବନ୍ଦୋବସ୍ତ କରାଇବା ତାଙ୍କ ସହୃଦୟତାର ପରିଚୟ ଦେଉଥିଲା । ମୋ ଭାଗ୍ୟକୁ ଡକ୍ଟର ଭୋକରଙ୍କ ପରି ଜଣେ ପରାମର୍ଶଦାତା ପ୍ରଫେସର ମଧ୍ୟ ମିଳିଗଲେ। ନିଜର ଜନ୍ମଭୂମି ଛାଡ଼ି ସୁଦୂର ଆମେରିକା ଆସିବାପରେ ଏଠାରେ ଏଭଳି ସାହାଯ୍ୟକାରୀ ସ୍ନେହୀଲୋକ ଯେ ମୋ ପାଇଁ ଥାଇପାରନ୍ତି ତାହା କେବେ କଳ୍ପନା କରିନଥିଲି। ମୋ ଦେଶରେ ଆଜି ପର୍ଯ୍ୟନ୍ତ ଏପରି ସାହାଯ୍ୟକାରୀ ଲୋକଙ୍କୁ ମୁଁ ଦେଖିନଥିଲି । ମୋ ଦେଶର ଜଣେ ମହାବିଦ୍ୟାଳୟ ଅଧ୍ୟକ୍ଷ, ପ୍ରଫେସର ବା ଉପରିସ୍ଥ ହାକିମ ତାଙ୍କ ଛାତ୍ର ବା ଅଧୀନସ୍ଥ କର୍ମଚାରୀ ପ୍ରତି ଏଭଳି ସଦୟହେବା ମୁଁ ଜାଣି ନଥିଲି ।

ମୁଁ ଯେଉଁ ଆପାର୍ଟମେଣ୍ଟରେ ରହୁଥିଲି, ସେ ଘରର ମାଲିକାଣି ମିସେସ୍ ନର୍ଟନ୍ ଥିଲେ ବୟାନବେ ବର୍ଷର ବୃଦ୍ଧା । ତାଙ୍କର ଜନ୍ମ କାନାଡ଼ାରେ । ତାଙ୍କର ସ୍ୱାମୀ ପ୍ରଥମ

ବିଶ୍ୱଯୁଦ୍ଧରେ ପ୍ରାଣତ୍ୟାଗ କଲାପରେ ମିସେସ୍ ନର୍ଟନ୍ ଆମେରିକା ପଳାଇ ଆସି ଅନ୍ୟଜଣଙ୍କୁ ବିବାହ କଲେ । ତାଙ୍କ ସହିତ ପଚିଶ ବର୍ଷ ସଂସାର କଲାପରେ ସେ ମଧ୍ୟ ମୃତ୍ୟୁବରଣ କଲେ। ତାଙ୍କର ଗୋଟିଏ ଝିଅ । ତାର ବିବାହ ପରେ ମିସେସ୍ ନର୍ଟନ୍ ଏକୁଟିଆ ହୋଇଯାଇଛନ୍ତି । ତାଙ୍କ ଘରର ଦୁଇଟି ବଖରା ଭଡ଼ାଦେଇ ସେ ଚଳନ୍ତି । ମୋ କୋଠରୀ ପାଖକୁ ଲାଗି ଅନ୍ୟ କୋଠରୀରେ ରଡ଼୍‌ନୀ ହେଲ୍‌ଡାଲ୍ ନାମକ ଛାତ୍ରଟିଏ ଥାଏ । ଆମ ଦୁହିଁଙ୍କ ମଧ୍ୟରେ ଖୁବ୍ ବନ୍ଧୁତା ହେଲା । ମୁଁ ପାଠପଢ଼ାରେ ଲାଗିପଡ଼ିଲି। ଡକ୍ଟର ଭୋକର୍ ଓ ଡକ୍‌ଟର ବ୍ରାଜିଲ୍ ମୋତେ ନିଜ ପୁଅ ପରି ଭଲ ପାଇଲେ । ଅନ୍ୟ ବିଭାଗର ଅଧ୍ୟାପକ ମାନଙ୍କ ସହିତ ମୋର ପରିଚୟ ହେବାପରେ ସେମାନଙ୍କର ସ୍ନେହ ଆଦର ପାଇ ମୁଁ ବେଶ୍ ଆନନ୍ଦରେ ଦିନ ବିତାଇବାକୁ ଲାଗିଲି ।

ଯେଉଁଠି ରହିଲେ ମଧ୍ୟ ମନ ଖୋଜିବୁଲେ ନିଜଲୋକଙ୍କୁ । ଘରଦ୍ୱାର ଛାଡ଼ି ପୃଥିବୀର ଅପରପାର୍ଶ୍ୱରେ ରହିଥିଲେ ମଧ୍ୟ କାଳେ କେଉଁଠି ଜଣେ ଓଡ଼ିଆ ଲୋକ ଥିବ ବୋଲି ମନ ଖୋଜିହୁଏ । ଯାହା ବୁଝିଲି ସାଉଥ୍ ଡାକୋଟାକୁ ଏପର୍ଯ୍ୟନ୍ତ କୌଣସି ଓଡ଼ିଆ ଲୋକ ଆସିନାହାନ୍ତି । ଓହିଓ ରାଜ୍ୟରେ ମଧ୍ୟ ପହଞ୍ଚିବା ବେଳକୁ ସେଠାରେ କୌଣସି ଓଡ଼ିଆ ଲୋକ ନଥିଲେ । ତେଣୁ ମୁଁ ବଙ୍ଗୀୟମାନଙ୍କ ସହିତ ବନ୍ଧୁତା କରି ସେମାନଙ୍କୁ ନିଜରଭାବି ଚଳିଲି । ଏଠିମଧ୍ୟ କାଳେ କେହି ବଙ୍ଗୀୟ ଛାତ୍ର ବା ଅଧ୍ୟାପକ ଥିବେ ବୋଲି ଖୋଜି ବସିଲି । ମାତ୍ର ଏପର୍ଯ୍ୟନ୍ତ ବଙ୍ଗ, ବିହାର, ଓଡ଼ିଶା ବା ଅବିଭକ୍ତ ଆସାମ ଅଞ୍ଚଳରୁ କୌଣସି ଛାତ୍ରଛାତ୍ରୀ ଏହି ବିଶ୍ୱବିଦ୍ୟାଳୟକୁ ଆସି ନଥିବା କଥା ଗ୍ରାଜୁଏଟ୍ ସ୍କୁଲ ଡାଏରୀରୁ ଜାଣିଲି । ଏଠି ୬୨ଟି ଦେଶରୁ ପ୍ରାୟ ତିନିଶହ ବିଦେଶୀ ଛାତ୍ରଛାତ୍ରୀ ଓ ଅଧ୍ୟାପକ ଥିଲେ । ତନ୍ମଧ୍ୟରୁ ଅଧିକାଂଶ ଥିଲେ ଫର୍ମୋଜା, ଫିଲିପାଇନ୍ସ, ଥାଇଲାଣ୍ଡ, ଦକ୍ଷିଣ ଆମେରିକା ଓ ଆଫ୍ରିକାରୁ । ଆମେ ପ୍ରାୟ ଆଠ ଦଶ ଜଣ ଭାରତୀୟ ଛାତ୍ର ଓ ତିନି ଜଣ ଅଧ୍ୟାପକ ସେଠି ଥିଲୁ । ଆମେ ସବୁ ଥିଲୁ ଗୁଜୁରାଟ, ଆନ୍ଧ୍ର, ପଞ୍ଜାବ, ତାମିଲନାଡୁ ଏବଂ ଓଡ଼ିଶାର । ନାଗିନ୍ ଶେଠ୍ ବୋଲି ଜଣେ ଗୁଜୁରାଟି ଲୋକ ପାଖ ହ୍ୟୁରନ୍ ସହରରେ ଥିବା ଏକ ହାଇସ୍କୁଲରେ ଶିକ୍ଷକତା କରୁଥିଲେ । ଅଧ୍ୟାପକମାନଙ୍କ ମଧ୍ୟରେ ପଞ୍ଜାବରୁ ଡକ୍ଟର ପ୍ରେମ୍‌ପାଲ ପ୍ରାସର ଓ ଆନ୍ଧ୍ରରୁ ମିଷ୍ଟର ଭି. ଆପ୍ପା ଥିଲେ । ପୂର୍ବ ପାକିସ୍ଥାନରୁ ଏଠାରେ ସାମ୍ବାଦିକତା ବିଷୟରେ ଉଚ୍ଚଶିକ୍ଷା ପାଇବାକୁ ଆସିଥିଲେ ଅବ୍‌ଦୁଲ୍ କରିମ୍ ମୋଲା । ଚେହେରାରେ ସେ ଠିକ୍ ମୋର ବଡ଼ ଭାଇ ପରି ଦେଖାଯାଉଥିଲେ । ଆମଦୁହିଁଙ୍କ ମଧ୍ୟରେ ବନ୍ଧୁତା ଜମିଉଠିଲା । ତାଙ୍କର ମାତୃଭାଷା ବଙ୍ଗଳା ଓ ଖାଦ୍ୟ ଠିକ୍ ବଙ୍ଗୀୟମାନଙ୍କପରି । ଅତ୍ୟନ୍ତ ଭଦ୍ର ଓ ମେଳାପି

ଲୋକ ସେ ଥିଲେ। ଛୁଟିଦିନମାନଙ୍କରେ ଆମେ ଏକାଠି ହେଉଥିଲୁ । ଆନ୍ତର୍ଜାତୀୟ ଛାତ୍ର କ୍ଲବ୍‌ରେ ଆମଦୁହିଁଙ୍କୁ ଦୁଇଭାଇ ବୋଲି କହୁଥିଲେ । ମାତ୍ର ୧୯୬୬ ମସିହା ଭାରତ-ପାକିସ୍ଥାନ ଯୁଦ୍ଧ ବେଳକୁ ଆମ ଦୁହିଁଙ୍କ ଭିତରେ ସାମାନ୍ୟ ଟିକେ ବିଭେଦ ଉପୁଜିଥିଲା । ଆଗପରି ଆମର ମିଳାମିଶାରେ ସେତେଟା ଆନ୍ତରିକତା ଆଉ ନଥିଲା । ପ୍ରାୟ ବର୍ଷକପରେ ସେ ତାଙ୍କ ଦେଶକୁ ଫେରିଗଲେ । ୧୯୭୧ ମସିହା ବଙ୍ଗଳାଦେଶ ମୁକ୍ତି ସଂଗ୍ରାମ ବେଳେ ମୁଁ ତାଙ୍କର ଅନେକ ଖବରନେଲି । ମାତ୍ର ସେ ମିଳିଲେନାହିଁ ।

ଆମେ ଯେଉଁମାନେ ସେତେବେଳେ ଡେଆରୀ ସାଇନ୍ସ ବିଭାଗରେ ଗବେଷଣା କରୁଥିଲୁ ସେମାନଙ୍କ ମଧ୍ୟରେ ମୁଁ ଏକା ଥିଲି ଏକମାତ୍ର ବିଦେଶୀ ଛାତ୍ର। ମୋ ରହିବାର ଦୁଇବର୍ଷ ପରେ ଇରାକ୍‌ର ବେସିଲ୍ ଦେଲାଲୀ ଆସି ଯୋଗଦେଲେ । ମୋର ଘନିଷ୍ଠ ବନ୍ଧୁ ମାନଙ୍କ ମଧ୍ୟରୁ ୱାଲଟର୍ ୱାସି, ଜିମ୍ ଇଗେନ୍, ଗୋର୍ଡ଼ନ୍ କାଲ୍ଡ୍‌ୱେଲ, ଲାରୀ ଜୋର୍ଗେନ୍‌ସନ୍, ଡେର୍ଲ ବଡ଼ିକର, ପ୍ୟାଟ୍ ୱାକର, ଲି କକର୍ ଓ ୱେନ୍ ନେଲ୍‌ସନ୍ ଆଦି ସମସ୍ତେ ସେଠାକାର ଛାତ୍ରଛାତ୍ରୀ । ଏବେମଧ୍ୟ ସେମାନଙ୍କ ମଧ୍ୟରୁ ତିନି ଚାରିଜଣଙ୍କ ସହିତ ମୋର ପତ୍ରାଳାପ ସଂପର୍କ ରହିଛି । ଏହି ବନ୍ଧୁମାନଙ୍କ ମଧ୍ୟରୁ ଅନେକଙ୍କ ଘରକୁ ଯାଇ ମୁଁ ଛୁଟି କଟାଇଛି । ସେମାନଙ୍କ ପରିବାର, ବନ୍ଧୁବାନ୍ଧବ ବା ସମ୍ପର୍କୀୟ ମାନଙ୍କ ସହିତ ଏକତ୍ର ବସି ଖିଆପିଆ କରିବା, ବଣଭୋଜି କରିବା କିମ୍ବା ବୋଟିଂ; ସ୍କି ବା ଆଇସ୍ ସ୍କେଟିଂ କରିବାରେ ଆନନ୍ଦ ଉପଭୋଗ କରିଛି । ବିଶେଷତଃ ବଡ଼ଦିନ, ଖ୍ରୀଷ୍ଟମାସ, ଇଷ୍ଟର୍, ଥାଙ୍କ୍‌ସଗିଭିଙ୍ଗ୍ ଆଦି ପର୍ବପର୍ବାଣିରେ ସେମାନଙ୍କ ଘରକୁ ଯାଇ ଛୁଟି କଟାଇବା ଅତ୍ୟନ୍ତ ସୁଖକର ଥିଲା । ସେମାନଙ୍କର ଆତିଥେୟତା, ସ୍ନେହଶ୍ରଦ୍ଧା ବା ଆନ୍ତରିକତା ମନେପଡ଼ିଲେ ଏବେ ମଧ୍ୟ ସେମାନଙ୍କ ପ୍ରତି କୃତଜ୍ଞତାରେ ମନ ଭରିଯାଏ ।

ଏସବୁ ବନ୍ଧୁମାନେ ପ୍ରାୟ ସମସ୍ତେ ବିଅର୍ ବା ଅନ୍ୟାନ୍ୟ ଦାମିକା ମଦ୍ୟପାନ କରିବାକୁ ଭଲ ପାଆନ୍ତି । ମାତ୍ର ମୁଁ କେବେ ସେସବୁର ପାଖ ମାଡ଼େନା । ସେମାନେ ମଦ୍ୟପାନ କଲାବେଳେ ମୁଁ ସେମାନଙ୍କ ପାଖରେ ବସି ଦୁଧ ବା ମଧୁର ପାନୀୟ ପିଇବା ଦେଖି ପ୍ରାୟତଃ ସମସ୍ତେ ମୋତେ ଥଟ୍ଟା କରନ୍ତି। ମୁଁ ମଦ୍ୟପାନ କରେ ନାହିଁ ଓ ଗୋମାଂସ ଖାଏ ନାହିଁ ବୋଲି ମୋ ସାଙ୍ଗ ସାଥୀ ମହଲରେ ପ୍ରଚାର ହୋଇଯାଇଥିଲା । ଖ୍ରୀଷ୍ଟିୟାନ୍‌ମାନଙ୍କ ମଧ୍ୟରେ କ୍ୟାଥୋଲିକ୍ ସଂପ୍ରଦାୟର ଲୋକେ ମଦ୍ୟପାନକୁ ଘୃଣା କରନ୍ତି । ତେଣୁ ସେହି ବିଶ୍ୱବିଦ୍ୟାଳୟର ବୟଜ୍ୟୋଷ୍ଠ କ୍ୟାଥୋଲିକ୍ ଅଧ୍ୟାପକମାନେ ମୋତେ ଖୁବ୍ ଭଲପାଉଥିଲେ। ସେମାନେ କହନ୍ତି "ମହାନ୍ତି ଇଜ୍ ଏ ଟ୍ରୁ କ୍ୟାଥୋଲିକ୍ । ସେହି ବିଶ୍ୱିବିଦ୍ୟାଳୟର କୃଷିଶିକ୍ଷା ଅଧ୍ୟକ୍ଷ ବା ଡିନ୍ ଏଗ୍ରିକଲଚର୍

ଥିଲେ ଡକ୍ଟର ବେଣ୍ଟଲି । ସେ ମୋତେ ଖୁବ୍ ଭଲ ପାଉଥିଲେ। ଆମେରିକାନ୍ ବିଶ୍ୱବିଦ୍ୟାଳୟମାନଙ୍କର କୁଳପତିଙ୍କୁ ପ୍ରେସିଡେଣ୍ଟ୍ କୁହାଯାଏ । ସାଉଥ୍‌ଡାକୋଟା ବିଶ୍ୱବିଦ୍ୟାଳୟର କୁଳପତି ଥାଆନ୍ତି ପ୍ରେସିଡେଣ୍ଟ ବ୍ରିଗ୍‌ସ୍ । ତାଙ୍କ କାନରେ ମଧ୍ୟ ମୋ କଥା ବାଜିଥାଏ। ତେଣୁ ପ୍ରେସିଡେଣ୍ଟ ବ୍ରିଗ୍‌ସ୍ ବା ଡିନ୍ ବେଣ୍ଟଲି ଯେତେବେଳେ ସେମାନଙ୍କ କାର୍‌ରେ ଯାଆନ୍ତି, ମୋ ଉପରେ ତାଙ୍କ ଦୃଷ୍ଟି ପଡ଼ିବା ମାତ୍ରେ ଗାଡ଼ିର ହର୍ଣ୍ଣବଜାଇ ମୋତେ ହାତହଲାଇ ଶୁଭେଚ୍ଛା ଜଣାନ୍ତି ।

ଭାରତବର୍ଷର ଏକ ଅନଗ୍ରସର ରାଜ୍ୟ ଓଡ଼ିଶାର କେଉଁ ଅଖ୍ୟାତ ପଲ୍ଲୀରୁ ଯାଇ ସଭ୍ୟତାର ଶୀର୍ଷ ଦେଶରେ ପଦାର୍ପଣ କରିଥିବା ପୃଥିବୀର ସର୍ବାଧିକ ଧନଶାଳୀ ଦେଶ ଯୁକ୍ତରାଷ୍ଟ୍ର ଆମେରିକାର ଏକ ପ୍ରାଦେଶିକ ବିଶ୍ୱବିଦ୍ୟାଳୟରେ ଏଭଳି ସ୍ନେହ, ଆଦର ଓ ସମ୍ମାନାସ୍ପଦ ବାତାବରଣ ଭିତରେ ଶିକ୍ଷାଲାଭ କରିବାର ସୌଭାଗ୍ୟ ମୋତେ ଅଭିଭୂତ କରିଥିଲା । ଫଳରେ ପାଠପଢ଼ା ଓ ଗବେଷଣାଗାରରେ ମୁଁ ବେଶ୍ ଦକ୍ଷତାର ପରିଚୟ ଦେଇଥିଲି। ମାଷ୍ଟର୍ ଡିଗ୍ରୀ ପାଇଁ ଯେଉଁ ଗବେଷଣାତ୍ମକ ସନ୍ଦର୍ଭ ଦାଖଲ କଲି ତାହା ବିଶ୍ୱବିଦ୍ୟାଳୟରେ ଖୁବ୍ ପ୍ରଶଂସିତ ହେଲା ଓ ଜାତୀୟ ସ୍ତରରେ ପ୍ରତିଯୋଗିତା ପାଇଁ ବିବେଚିତ ହେଲା । ୧୯୬୬ ମସିହା ଆମେରିକାନ୍ ଡେଆରୀ ସାଇନ୍ସ ଅଧିବେଶନରେ ମୋର ଗବେଷଣାତ୍ମକ ତଥ୍ୟ ଉପସ୍ଥାପନ କରିବା ପାଇଁ ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟ ପକ୍ଷରୁ ମୋ ପରାମର୍ଶଦାତାଙ୍କ ସହିତ ଓରେଗନ୍ ରାଜ୍ୟକୁ ମୁଁ ଯାଇଥିଲି । ସେଠାରୁ ଫେରି ମୋର ଡକ୍ଟରେଟ୍ ପ୍ରୋଗ୍ରାମ ଆରମ୍ଭ ହେଲା । ୧୯୬୬ ମସିହା ଜୁନ୍ ମାସରେ ବିଶ୍ୱବିଦ୍ୟାଳୟର ଦୀକ୍ଷାନ୍ତ ଉତ୍ସବ (କନ୍‌ଭୋକେସନ୍ ) ହେଲା । ଯୁକ୍ତରାଷ୍ଟ୍ର ଆମେରିକାର ତତ୍‌କାଳୀନ ଉପରାଷ୍ଟ୍ରପତି ହ୍ୟୁବର୍ଟ ହମ୍ଫ୍ରୀ ଏହି ଉତ୍ସବର ମୁଖ୍ୟଅତିଥି ଭାବେ ଆମ୍ଭମାନଙ୍କୁ ଡ୍ରିଗୀ ପ୍ରଦାନ କଲେ ।

ଡକ୍ଟରେଟ୍ କାର୍ଯ୍ୟକ୍ରମ ଆରମ୍ଭ ହେବା ସାଙ୍ଗେସାଙ୍ଗେ ସେ ଦେଶର ମୁଖ୍ୟ ବିଜ୍ଞାନ ପତ୍ରିକା ମାନଙ୍କରେ ମୋର ପାଞ୍ଚଟି ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ ପାଇଲା । ଏଥିଲାଗି ମୋ ବିଭାଗର ମୁଖ୍ୟ ଡକ୍ଟର ବ୍ରାଜିଲ୍ ଓ ମୋର ପରାମର୍ଶଦାତା ପ୍ରଫେସର ହାୱାର୍ଡ଼ ଭୋକର୍ ଅତ୍ୟନ୍ତ ଖୁସି ହେଲେ । ମୋର ଡକ୍ଟରେଟ୍ ପ୍ରୋଗ୍ରାମ୍ ପାଇଁ ଗବେଷଣା କାର୍ଯ୍ୟ ଯେପରି ଆହୁରି ବ୍ୟାପକ ଓ ନୂତନ ତଥ୍ୟ ଭିତ୍ତିକ ହେବ ସେଥିପାଇଁ ବିଭାଗୀୟ ତତ୍ପରତା ବୃଦ୍ଧି ପାଇଲା । ସେଥିଲାଗି ଜୈବରସାୟନ, କକ୍ଷୁଟ ବିଜ୍ଞାନ, ମାଇକୋଲୋଜି, ପଶୁ ବିଜ୍ଞାନ, କେନ୍ଦ୍ରୀୟ ଗବେଷଣାଗାର ଆଦି ପାଞ୍ଚୋଟି ବିଭାଗର ମୁଖ୍ୟ ଅଧ୍ୟାପକମାନେ ମୋତେ ଗାଇଡ୍ କଲେ । ଅଧ୍ୟାପକ ମହଲରେ ଜଣେ ଭାରତୀୟ କୃତୀଛାତ୍ର ଭାବେ ମୋପ୍ରତି ସ୍ନେହ, ଆଦର ଓ ସମ୍ମାନ ବୃଦ୍ଧି ପାଇବା ଯୋଗୁଁ

ନୂତନଛାତ୍ର ବାଛିବା ସମୟରେ ସେମାନେ ମୋ ସହିତ ପରାମର୍ଶ କରିବାକୁ ପସନ୍ଦ କରୁଥିଲେ। ତେଣୁ ସେହି ସଂପୃକ୍ତ ବିଭାଗମାନଙ୍କରେ ଦୁଇଜଣ ବଙ୍ଗାଳୀ, ଜଣେ ତାମିଲ ଓ ଦୁଇଜଣ ଓଡ଼ିଆ ଛାତ୍ରଙ୍କୁ ନେବାପାଇଁ ମଧ୍ୟ ବାଟ ଫିଟିଗଲା । ସେ ଦେଶରେ ବିଭିନ୍ନ କମ୍ପାନୀମାନେ ସେମାନଙ୍କର ପ୍ରାର୍ଥୀ ବଛାବଛି ପାଇଁ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନଙ୍କର ସାହାଯ୍ୟ ନିଅନ୍ତି । ମୋ ପାଖକୁ ଦୁଇ ଚାରିଟି କମ୍ପାନୀ ପକ୍ଷରୁ ଚାକିରୀ ପାଇଁ ଇଣ୍ଟରଭ୍ୟୁ ଦେବାକୁ ଡାକରା ମିଳିଲା । ମାତ୍ର ମୁଁ ଡକ୍ଟରେଟ୍ ଡିଗ୍ରୀ ହାସଲ ନ କରିବା ଯାଏଁ ଚାକିରୀ କରିବିନାହିଁ ବୋଲି ନିଷ୍ପତ୍ତି ଜଣାଇଦେଲି।

ମଣିଷର ସବୁ ସମୟ ଭଲରେ ଯାଏନା । ଭଲ ମନ୍ଦ, ଦୁଃଖସୁଖ, ଅନ୍ଧାର ଆଲୁଅ ବା ଆନନ୍ଦ ନିରାନନ୍ଦ ଭିତରେ ପ୍ରତି ମଣିଷର ଜୀବନ ପ୍ରବାହ ବହିଚାଲେ। ଦେଶ ହେଉ ବା ବିଦେଶ ହେଉ ସବୁ ସ୍ଥାନରେ ପ୍ରତି ମଣିଷ ପକ୍ଷରେ ଏଇ ସତ୍ୟ ପ୍ରଯୁଜ୍ୟ। ଯୁକ୍ତରାଷ୍ଟ୍ର ଆମେରିକାରେ ପହଞ୍ଚିବା ପୂର୍ବରୁ ମୁଁ ଭାବୁଥିଲି, ସେ ଦେଶର ପ୍ରତି ଲୋକ ଆନନ୍ଦ ଆତିଶଯ୍ୟ ମଧ୍ୟରେ କାଳଯାପନ କରୁଥିବେ। ଆମ ଦେଶ ଭଳି ସେଠି ଅଭାବ, ଅନଟନ, ରୋଗ, ଶୋକ, ଅଶାନ୍ତି ଆଦି ନଥିବ । ମାତ୍ର ଯାହା ଦେଖିଲି, ଜୀବନ ପ୍ରବାହ ସବୁଠି ଏକାପରି । ସବୁ ମଣିଷ ପକ୍ଷରେ ଦୁଃଖ, ଶୋକ, କଷ୍ଟ, ଅଶାନ୍ତି, ରୋଗ, ମୃତ୍ୟୁ ଆଦି ଗୋଟିଏ ଗୋଟିଏ ସତ୍ୟ । ଏହି ସତ୍ୟ ଉପରେ ଆଧାର କରି ପ୍ରତି ମଣିଷ ବଞ୍ଚି ରହିଛନ୍ତି । ମୋର ବିଭାଗୀୟ ମୁଖ୍ୟ ଡକ୍ଟର ବ୍ରାଜିଲଙ୍କ ପାଇଁ ମଧ୍ୟ ଏହି ସତ୍ୟ ପ୍ରଜୁଯ୍ୟ ଥିଲା । ତାଙ୍କ ପରି ଜଣେ ପରୋପକାରୀ ମଣିଷ ଭାଗ୍ୟରେ ଯେ ଏତେ ଶୀଘ୍ର ଦୁଃସମୟ ଆସିବ, ତାହା ମୁଁ ଆଦୌ ଆଶା କରିନଥିଲି । ଭାବିଥିଲି ତାଙ୍କରି ଅଧକ୍ଷତାରେ ଯଥାଶୀଘ୍ର ମୋର ଡକ୍ଟରେଟ୍ ପ୍ରୋଗ୍ରାମ୍ ସରିଯିବ ଓ ତାଙ୍କ ଯୋଗୁଁ ମୋର ଗବେଷଣା କାର୍ଯ୍ୟ ସୁରୁଖୁରୁରେ ଚାଲିବ । ମାତ୍ର ଡକ୍ଟର ବ୍ରାଜିଲ୍ ଅସୁସ୍ଥ ହୋଇ ଡାକ୍ତରଖାନାରେ ରହିଲେ । ତାଙ୍କର ବ୍ରେନ୍ ଟ୍ୟୁମର୍ ହେବା କଥା ଡାକ୍ତରୀ ପରୀକ୍ଷାରୁ ଜଣାଗଲା । ଯଥା ସମୟରେ ଅସ୍ତ୍ରୋପଚାର କରାଗଲା । ମାତ୍ର ସେ ଚିରଦିନ ପାଇଁ ଆଖି ବୁଜି ଦେଲେ। ଏକ ଅଜଣା ସ୍ଥାନରେ ମୋତେ ପୁତ୍ର ପରି ଭଲ ପାଉଥିବା ହିତାକାଂକ୍ଷୀ ବ୍ୟକ୍ତିଙ୍କୁ ଏତେଶୀଘ୍ର ହରାଇବି ବୋଲି ଆଶା କରିନଥିଲି । ପାଠପଢ଼ା ଓ ଗବେଷଣା ଦିଗରେ ମୋତେ ସର୍ବାଧିକ ପ୍ରୋତ୍ସାହନ ଦେଇଥିବା ବିଭାଗୀୟମୁଖ୍ୟଙ୍କୁ ହରାଇ ମୁଁ ହତୋତ୍ସାହ ହୋଇପଡ଼ିଲି । ପନ୍ଦରଦିନ କାଳ ତାଙ୍କଲାଗି ଶୋକ ପାଳନ କରାଯିବା ପରେ ତାଙ୍କୁ କବର ଦିଆଗଲା । ଚର୍ଚ୍ଚରେ ତାଙ୍କ ଲାଗି ପ୍ରାର୍ଥନା ସଭା ହେଲା । ସେହି ସଭାରେ ଉପସ୍ଥିତ ରହି ତାଙ୍କ ପବିତ୍ର ଆତ୍ମାର ସଦ୍‌ଗତି ଲାଗି ମୁଁ ଅଶ୍ରୁଳ ନୟନରେ ପ୍ରାର୍ଥନା କଲି । ଆମେରିକାରୁ ଫେରି ଭାରତରେ ରହିବା ପରେ

ଏପର୍ଯ୍ୟନ୍ତ ମୁଁ ଯେତେଥର ଆମେରିକା ଯାଇଛି; ପ୍ରତିଥର ବୃକିଂସ୍ ଯାଇ ଡକ୍ଟର ବ୍ରାଜିଲ୍ ଓ ମୋର ଅଧ୍ୟାପକମାନଙ୍କ ସମାଧିରେ ଫୁଲ ଦିଏ ।

ମୋର ପାଞ୍ଚଟି ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶିତ ହେବା ପରେ ଆମେରିକାନ୍ ବିଜ୍ଞାନ ସମ୍ମାନକାରୀ ସମାଜ (ଆମେରିକାନ୍ ସାଇଣ୍ଟିଫିକ୍ ଅନ୍‌ର ସୋସାଇଟି) ପକ୍ଷରୁ "ସିଗ୍‌ମା ଜାଇ" କ୍ଲବ୍ ମୋତେ ତାଙ୍କର ସଦସ୍ୟ କରିନେବାକୁ ଆମନ୍ତ୍ରିତ କଲେ । ସେ ଦେଶର କୃଷି ଗବେଷଣା ସଂଘର "ଗାମା-ସିଗ୍ମା-ଡେଲ୍ଟା" କ୍ଲବ୍ ପକ୍ଷରୁ ମଧ୍ୟ ମୋତେ ସଦସ୍ୟତା ମିଳିଲା । ଇତି ମଧ୍ୟରେ ମୁଁ ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟର ରସାୟନ ଓ ଜୈବରସାୟନ ବିଭାଗର ଅଧିକାଂଶ ପାଠ୍ୟ ଶେଷ କରି ଦେଇଥିବା ଯୋଗୁଁ ସାଉଥ୍‌ଡାକୋଟା କେମିଷ୍ଟ୍ରି ଗ୍ରୁପ୍‌ର ପକ୍ଷରୁ "ଠାଉ-ଲାମ୍‌ଡ଼ା-ଉପ୍‌ସିଲୋନ୍" କ୍ଲବ୍ ପକ୍ଷରୁ ମଧ୍ୟ ସଦସ୍ୟ ହେବାପାଇଁ ଡାକରା ମିଳିଲା । ମୋ ବିଭାଗରେ ଏତେଗୁଡ଼ିଏ ସମ୍ମାନ ପାଇବାର ଭାଗ୍ୟ କ୍ୱଚିତ୍ ଛାତ୍ରଙ୍କ ପକ୍ଷରେ ଯୁଟିବା କଥା ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କ କଥାରୁ ବୁଝିଲି ।

ସେତେବେଳେ ଯୁକ୍ତରାଷ୍ଟ୍ର ଆମେରିକାର ରାଜଧାନୀ ୱାଶିଂଟନ୍‌ଠାରେ ଥିବା ଭାରତୀୟ ଦୂତାବାସ ପକ୍ଷରୁ "ଇଣ୍ଡିଆ ନ୍ୟୁଜ୍ ୱିକ୍‌ଲି" ପତ୍ରିକା ପ୍ରକାଶ ପାଉଥାଏ । ସେ ଦେଶରେ ଥିବା ଭାରତୀୟ ମାନଙ୍କର ଦକ୍ଷତା ପାରଗତା ବା ବୈଶିଷ୍ଟ୍ୟ ବିଷୟରେ ଏହି ସାପ୍ତାହିକ ସମ୍ବାଦପତ୍ରରେ ସମ୍ବାଦ ପ୍ରଚାରିତ ହୁଏ । ୧୯୬୬ ମସିହା ଅଗଷ୍ଟ ୨୬ ତାରିଖ ଇଣ୍ଡିଆନ୍ୟୁଜ୍ ପତ୍ରିକାରେ ମୋ ବିଷୟକ ଉପରୋକ୍ତ ସମସ୍ତ ଖବର ପ୍ରକାଶିତ ହୋଇଥିଲା । ୧୯୬୭ ମସିହା ଜୁନ୍ ଶେଷସୁଦ୍ଧା ସେହି ବିଶ୍ୱବିଦ୍ୟାଳୟର କୃଷି ଗବେଷଣା ସମ୍ବନ୍ଧିତ ଅଧିକାଂଶ ପାଠ୍ୟକ୍ରମ ମୁଁ ଶେଷ କରିଦେଇଥିଲି । ପ୍ରତିବର୍ଷ ସ୍ନାତକୋତ୍ତର ଛାତ୍ରମାନଙ୍କ ମଧ୍ୟରୁ ସର୍ବାଧିକ ନମ୍ବର ରଖିଥିବା ଦୁଇଜଣ କୃତୀ ଛାତ୍ରଛାତ୍ରୀଙ୍କୁ ବଛା ଯାଇ ସମ୍ମାନିତ କରାଯାଏ । ୧୯୬୭ ବର୍ଷରେ ମୋ ସହିତ ଜଣେ ଆମେରିକାନ୍ ଛାତ୍ର ସ୍ନାତକୋତ୍ତର ପାଠ୍ୟକ୍ରମରେ ସର୍ବାଧିକ ନମ୍ବର ରଖି ସମ୍ମାନିତ ହେଲେ। ଏଥିଯୋଗୁଁ ଆମକୁ "ଫାଇ-କାପ୍ପା-ଫାଇ" ସମ୍ମାନ ମିଳିଲା । ୱାଶିଂଟନସ୍ଥ ଭାରତୀୟ ଦୂତାବାସରୁ ପ୍ରକାଶିତ ୧୯୬୭ ମସିହା ଅଗଷ୍ଟ ୨୮ ତାରିଖ ଇଣ୍ଡିଆ ନ୍ୟୁଜ୍ ୱିକ୍‌ଲିରେ ଏହି ସମ୍ବାଦ ପୁଣି ପ୍ରସାରିତ ହୋଇଥିଲା । ସେଥିରେ ଉଲ୍ଲେଖ ଥିଲା ଯେ, ଏହି ବିଶ୍ୱ ବିଦ୍ୟାଳୟରୁ ଏପରି ସମ୍ମାନ ପାଇଥିବା ଏସିଆର ପ୍ରଥମ ଛାତ୍ର ଓଡ଼ିଶାର ଗୁରୁପ୍ରସାଦ ମହାନ୍ତି । ଏଥିଲାଗି ସେହି ବିଶ୍ୱବିଦ୍ୟାଳୟର ଜୀବାଣୁତତ୍ତ୍ୱ ବିଭାଗର ଭାରତୀୟ ଅଧ୍ୟାପକ ଡକ୍ଟର ପାରେଖ୍ ମୋ ସହିତ ଅନ୍ୟ ଭାରତୀୟ ଛାତ୍ରମାନଙ୍କୁ ନିମନ୍ତ୍ରଣ କରି ମୋ ଲାଗି ଏକ ନୈଶ ଭୋଜି ଦେଲେ ।

ସନ୍ଦର୍ଭ ଦାଖଲ କରିବା ପୂର୍ବରୁ କୌଣସି ଏକ ବିଦେଶୀ ଭାଷା ପଢ଼ି ସେହି ଭାଷାରେ ମାଟ୍ରିକ୍ ସ୍ତରୀୟ ଜ୍ଞାନ ଥିବାର ଯୋଗ୍ୟତା ହାସଲ କରିବା ସେହି ବିଶ୍ୱବିଦ୍ୟାଳୟରେ ବାଧ୍ୟତାମୂଳକ ଥିଲା । ମୋର ପରାମର୍ଶଦାତା ଡକ୍ଟର ଭୋକର ପଚାରିଲେ ତୁମେ କେଉଁ ଭାଷାରେ ପରୀକ୍ଷା ଦେବ ? କହିଲି, ଓଡ଼ିଆ, ହିନ୍ଦି ବା ସଂସ୍କୃତ ହେଲେ ଚଳିବ । ସେ ହସି ଦେଇ କହିଲେ ପୃଥିବୀର ପାଞ୍ଚ ଛଅଟି ଦେଶରେ ବିଜ୍ଞାନର ମାନ ଅତି ଉନ୍ନତ । ସେହି ଦେଶ ଗୁଡ଼ିକ ହେଲା - ଜର୍ମାନ୍, ଫ୍ରାନ୍ସ, ରୁଷ, ଜାପାନ ଓ ସ୍ପେନ୍ । ତେଣୁ ଏହି ବିଶ୍ୱବିଦ୍ୟାଳୟରେ ଜର୍ମାନ୍, ଫ୍ରେଞ୍ଚ, ରଷିୟାନ୍, ଜାପାନିଜ୍ ଓ ସ୍ପାନିସ୍ ଭାଷାଶିକ୍ଷାକୁ ମାନ୍ୟତା ଦିଆଯାଏ । ଏକଥା ଶୁଣି ମୋର ଚିନ୍ତା ବଢ଼ିଗଲା । ମୁଁ ଯେଉଁ ଆପର୍ଟମେଣ୍ଟରେ ରହୁଥିଲି, ସେଠାରେ ମୋ ସହିତ ଆଲଫ୍ରେଡ଼ୋ ଗୁଦେଇକିସ୍ ନାମକ ଆର୍ଜେଣ୍ଟିନା ଦେଶର ଜଣେ ଯୁବକ ରହି ମୋ ବିଭାଗରେ ମାଷ୍ଟର ଡିଗ୍ରୀ ପାଇଁ ଗବେଷଣା କରୁଥିଲେ । ସେ କହିଲେ ମୁଁ ତୁମକୁ ସ୍ପାନିସ୍ ପଢ଼ାଇ ଦେବି । ତେଣୁ ମୁଁ ସ୍ପାନିସ୍ ପାଇଁ ରେଜିଷ୍ଟ୍ରେସନ୍ କଲି । ପ୍ରତିଦିନ ସନ୍ଧ୍ୟାରେ ଆଲ୍‌ଫ୍ରେଡ଼ୋ ପାଖରେ ବସି ମୁଁ ସ୍ପାନିସ୍ ପଢ଼େ । ମୋର ନିର୍ଭୁଲ ସ୍ପାନିସ୍ ଉଚ୍ଚାରଣ ଦେଖି ଆଶ୍ଚର୍ଯ୍ୟ ହେଲେ ଆଲ୍‌ଫ୍ରୋଡୋ । ପଚାରିଲେ ଜଣେ ସ୍ପେନୀୟ ଲୋକ ପରି ତୁମେ କିପରି ଆମ ଭାଷା ଉଚ୍ଚାରଣ କରିପାରୁଛ ? କହିଲି, "ମୁଁ ଜଣେ ଓଡ଼ିଆ ହୋଇଥିବାରୁ ମୋ ପକ୍ଷରେ ଏହା ସମ୍ଭବ ହେଉଛି । କାରଣ ଆମ ଓଡ଼ିଆ ଭାଷାରେ ଯେତେ ଅକ୍ଷର ଅଛି, ଇଂରାଜୀରେ ସେତେ ଅକ୍ଷର ନାହିଁ । ଆମର ତ, ଥ, ଦ, ଧ, ଣ, ପ, ଳ ଭଳି ଅକ୍ଷର ଥିବାରୁ ପୃଥିବୀର ଯେକୌଣସି ଭାଷା ଉଚ୍ଚାରଣ କରିବା ଆମ ପକ୍ଷେ ସମ୍ଭବ ।" ପ୍ରାୟ ତିନିମାସ ପଢ଼ିବା ପରେ ବିଶ୍ୱବିଦ୍ୟାଳୟର ସ୍ପାନିସ୍ ବିଭାଗ ଜରିଆରେ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେଲି ।

ସ୍ପାନିସ ପରୀକ୍ଷା ପରେ ମୋର ପ୍ରିଲିମିନାରୀ ପରୀକ୍ଷା ଦେବା କଥା ସ୍ଥିର ହେଲା । ଏହି ପରୀକ୍ଷା ଲଗାଏତ୍ ସାତଦିନ ଧରି ପ୍ରତ୍ୟହ ସକାଳ ଆଠଟାରୁ ଦିନ ଦୁଇଟା ପର୍ଯ୍ୟନ୍ତ ଚାଲିବା କଥା । ସେଥିପାଇଁ ମୋ ପରାମର୍ଶଦାତା ତାଙ୍କ ଅଫିସ୍ ରୁମ୍‌ରେ ଟେବୁଲ୍ ଚୌକୀ ପକାଇ ଦେଲେ । ଏହି ବିଶ୍ୱବିଦ୍ୟାଳୟରେ ଆଜିପର୍ଯ୍ୟନ୍ତ ଯେତେ ପାଠ୍ୟ ମୁଁ ପଢ଼ିଛି ସେ ସବୁ ବିଷୟ ପଢ଼ାଇଥିବା ଅଧ୍ୟାପକମାନେ ପ୍ରଶ୍ନପତ୍ର ପ୍ରସ୍ତୁତ କରି ଦେବେ ଓ ପ୍ରତିଦିନ ବିଭିନ୍ନ ପ୍ରଶ୍ନପତ୍ରର ଉତ୍ତରଲେଖି ଦିନ ଦୁଇଟା ବେଳକୁ ମୋ ପରାମର୍ଶ ଦାତାଙ୍କୁ ଖାତା ଦେବାକୁ ହେବ । ସେସବୁ ସଂଗ୍ରହକରି ସଂପୃକ୍ତ ଅଧ୍ୟାପକମାନଙ୍କ ପାଖକୁ ସେ ପଠାଇଦେବେ । ସକାଳ ଆଠଟାରେ ଖାଦ୍ୟ ପ୍ରାନୀୟ ସାଙ୍ଗରେ ଧରି ଆସି ପରୀକ୍ଷା ଟେବୁଲ୍‌ରେ ବସି ଉତ୍ତର ଲେଖିବା କଥା । ଭୋକ ଶୋଷ ହେଲେ

ସାଙ୍ଗରେ ନେଇଥିବା ଖାଦ୍ୟପାନୀୟର ଉପଯୋଗ କରିବାକୁ ହେବ । ତାହାହିଁ ହେଲା । ଦୀର୍ଘ ସାତଦିନ କାଳ ବୟାଳିଶ ଘଣ୍ଟା ଧରି ପରୀକ୍ଷା ଦେଇ ମୁଁ ହାଲିଆ ହୋଇଗଲି । ଡକ୍ଟର ଭୋକର୍ ମୋତେ ଦେଖି ହସି ଦେଇ କହନ୍ତି କ'ଣ ତୁମ ହାତ ବ୍ୟଥା ହେଉଛି ? ଧୀରେ ଧୀରେ ଲେଖ । ଦୁଇଟା ବଦଳରେ ମୋତେ ଚାରିଟା ବେଳକୁ କାଗଜ ଦେଇପାର । ମୁଁ କହେ - ଆଉ ଅଧିକ ସମୟ ବସିବାକୁ ମୋର ଧୈର୍ଯ୍ୟ ନାହିଁ । ଯାହା ଲେଖିଛି ଚଳିବ । ସେ କହନ୍ତି ଆରେ ତୁମେ ତ ଏ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର; ତୁମକୁ ପରୀକ୍ଷା କରି ଲାଭ କ'ଣ ? ତେବେ ବିଶ୍ୱବିଦ୍ୟାଳୟର ନିୟମ ମାନିବାକୁ ହେବ ।

ଇତି ମଧ୍ୟରେ ନ୍ୟୁୟର୍କ ଫିଡ଼୍ କମ୍ପାନୀ ପକ୍ଷରୁ ମୋତେ ଇଣ୍ଟରଭ୍ୟୁ ପାଇଁ ଡକାଗଲା । ନ୍ୟୁୟର୍କ ଯାଇ ସାକ୍ଷାତ୍କାର ସାରି ଫେରିଆସିଲି । ଏକସପ୍ତାହ ପରେ ମୋତେ ଚୁକ୍ତିପତ୍ରରେ ଦସ୍ତଖତ କରିବା ପାଇଁ ଡକାଗଲା । ମୋ ପ୍ରଫେସର ଡକ୍ଟର ଭୋକର୍ ଏହାଶୁଣି ଖୁସିହେଲେ ଓ ଶୀଘ୍ର ସନ୍ଦର୍ଭ ଦାଖଲ କରିଦେଇ ଚାକିରୀରେ ଯୋଗଦେବାକୁ କହିଲେ । କେତେଜଣ ଆମେରିକାନ୍ ସହାପାଠୀ ମୋ ଚାକିରୀ ପାଇବା କଥା ଶୁଣି ମତେ ବଧେଇ ଜଣାଇଲେ । ତନ୍ମଧ୍ୟରୁ ଜଣେ ପଚାରିଲେ, ତୁମେ ଏ ଦେଶକୁ ଜ୍ଞାନାର୍ଜନ କରିବାକୁ ଆସିଥିଲ, ସେତେବେଳେ କ'ଣ ଏଠି ଚାକିରୀ କରିବା ତୁମର ଲକ୍ଷ୍ୟ ଥିଲା ? କହିଲି ନାଇଁ ଏ ଦେଶକୁ ଆସି ଉଚ୍ଚଶିକ୍ଷା ଲାଭ କରିବା ମୋର ମୂଳ ଲକ୍ଷ୍ୟ ଥିଲା ।

– ତାହାହେଲେ, ଚାକିରୀ ପାଇବାକୁ ଲାଳାୟୀତ ହେଲ କାହିଁକି ?

କହିଲି, ମୋର ମୁଖ୍ୟ ପରାମର୍ଶଦାତା ବିଭିନ୍ନ କମ୍ପାନୀମାନଙ୍କୁ ମୋର ନାମ ସୁପାରିଶ କରିଛନ୍ତି ।

ଅନ୍ୟ ଦୁଇଜଣ କହିଲେ, ଏଇମାତ୍ର କୋଡ଼ିଏ ବର୍ଷ ତଳେ ତୁମ ଦେଶ ସ୍ୱାଧୀନତା ଲାଭ କରିଛି । ସେ ଦେଶର ଉନ୍ନତି ଲାଗି ଆମ ଦେଶର ବିଶେଷଜ୍ଞ ମାନେ ଯାଇ ପରାମର୍ଶଦାତା ଭାବେ କାମ କରୁଛନ୍ତି । କେତେକ କ୍ଷେତ୍ରରେ ତୁମପରି ବିଶେଷଜ୍ଞମାନେ ଆମ ଦେଶରେ ନ ରହି ନିଜ ଦେଶ ପାଇଁ କାର୍ଯ୍ୟ କରିବା ଭଲ । ବିଶେଷତଃ ଦୁଗ୍ଧ ଉତ୍ପାଦନ ଓ ପଶୁପାଳନ କ୍ଷେତ୍ରରେ ତୁମପରି ବୈଜ୍ଞାନିକ ନିଜ ଦେଶ ପାଇଁ କିଛି କରିବା ଉଚିତ ।

କହିଲି, ତାହାହିଁ ହେବ । ମୁଁ ଖୁବ୍ ଶୀଘ୍ର ମୋ ଦେଶକୁ ଫେରିଯାଉଛି ।

ସନ୍ଦର୍ଭଟି ସେହି ବିଶ୍ୱବିଦ୍ୟାଳୟର ବିଭିନ୍ନ ବିଭାଗୀୟ ମୁଖ୍ୟ ତଥା ବାହାର ପରୀକ୍ଷକମାନଙ୍କ ପାଖକୁ ପଠାଯାଇ ଗୃହୀତ ହେବା ପରେ ବିଶ୍ୱବିଦ୍ୟାଳୟ ପକ୍ଷରୁ ଥିସିସ୍ ଡିଫେନ୍ସ ପରୀକ୍ଷା ହେବ । ବିଚାରକ ମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିବା ପରେ ଡକ୍ଟରେଟ୍ ପାଇବା ପାଇଁ ଯୋଗ୍ୟ ବିବେଚିତ ହେବା କଥା । ଏଥିଲାଗି ସମୟ ଲାଗିବ ।

ଚାକିରୀ ପାଇବା କଥା ବୋଉ ପାଖକୁ ଚିଠି ଲେଖିଲି । ମାତ୍ର ବୋଉ ମୋତେ ଯଥାଶୀଘ୍ର ଫେରିଯିବାକୁ ଲେଖିଲା । ତା ଚିଠି ପାଇ ଉତ୍ତରରେ ଲେଖିଲି ଯେ, ଚାକିରୀରେ ଯୋଗ ଦେଇସାରି ପ୍ରତି ମାସରେ ଘରକୁ ପାଞ୍ଚହଜାର ଟଙ୍କା ପଠାଇବି । ପୂଝାରୀ, ଚାକର ରଖି ତୁମେମାନେ ସମସ୍ତେ ଆନନ୍ଦରେ ଚଳିବ । ଛଅମାସ ପରେ ମୁଁ ଘରକୁ ଯାଇ ବୁଲି ଆସିବି । ବୋଉ ଲେଖିଲା, ତୁ ଆମର ଏକମାତ୍ର ପୁଅ । ବାପା, ମାଆ ଓ ମୁଁ ତିନିଜଣ ବୁଢ଼ାବୁଢ଼ୀ ହେଲୁଣି । କେତେବେଳେ କଅଣ ହେବ କିଏ କହିବ ? ତେଣୁ ତୁ ଶୀଘ୍ର ଫେରି ଆସି ଏଇଠି ଚାକିରୀ କର । ଆମେ ତୋ ପାଖରେ ଥାଇ ଶାନ୍ତି ପାଇବୁ । ତୁ ଆମେରିକାରେ ଦୀର୍ଘ ଚାରିବର୍ଷ ହେଲା ରହିଲୁଣି । ଥରେ ଘରକୁ ଆସି ବୁଲିଗଲେ ପୁଣି କେବେ ଫେରିବୁ ତାର ଠିକଣା ନାହିଁ । ତା ଭିତରେ ଯଦି ଆମର କିଛି ହୋଇଗଲା ତେବେ ଆମେ ତୋତେ କିମ୍ବା ତୁ ଆମକୁ ଦେଖି ପାରିବୁ ନାହିଁ । ଆମର ହଜାର ହଜାର ଟଙ୍କାର ଆବଶ୍ୟକତା ନାହିଁ । ତୁ ଖୁବ୍ ଶୀଘ୍ର ଫେରିଆ । ଏହାପରେ ବୋଉ ମୋ ପାଖକୁ ବାରମ୍ବାର ଏଇଭଳି ଚିଠି ସବୁ ଲେଖିଲା ।

ଡକ୍ଟର ଭୋକର୍ ମୋତେ ଉପଦେଶ ଦେଲେ ଯେ, ତୁମେ ନ୍ୟୁୟର୍କ ଫିଡ୍ କମ୍ପାନୀଠାରୁ ଛଅମାସ ସମୟ ମାଗ । ଇତି ମଧ୍ୟରେ ତୁମର ଏଠାକାର୍ଯ୍ୟ ସବୁ ଶେଷ କରି ଘରକୁ ଯାଇ ପିତାମାତାଙ୍କୁ ସବୁ କଥା କହି ବୁଝାଇଶୁଝାଇ ଫେରି ଆସିଲେ ଚାକିରୀରେ ଯୋଗ ଦେଇ ପାରିବ । କହିଲି, ମୋ ଘର ଲୋକେ ଆଉ ଅଧିକ କାଳ ମୁଁ ଏ ଦେଶରେ ରହିବାକୁ ଚାହାନ୍ତି ନାହିଁ । ତେଣୁ ଶୀଘ୍ର ଘରକୁ ଫେରିଯିବା ମୋ ପକ୍ଷେ ଶ୍ରେୟସ୍କର ହେବ ।

ସନ୍ଦର୍ଭ ଦାଖଲ ପରେ ଡକ୍ଟର ଭୋକର୍ ଗ୍ରାଜୁଏଟ୍ ସ୍କୁଲ୍ ସହିତ କଥା ହୋଇ ପରୀକ୍ଷକ ମାନଙ୍କ ପାଖକୁ ସନ୍ଦର୍ଭ ନକଲ ସବୁ ପଠାଇଦେବାର ବ୍ୟବସ୍ଥା କଲେ । ଦେଢ଼ମାସ ପରେ ମୋର ଥେସିସ୍ ଡିଫେନ୍ସ ପରୀକ୍ଷା ଦିନ ଧାର୍ଯ୍ୟ କରାଗଲା ।

ଏଇ ସମୟ ମଧ୍ୟରେ ମୁଁ ଦୁଇଜଣ ଆମେରିକାନ୍ ଛାତ୍ର ବନ୍ଧୁଙ୍କ ଗହଣରେ ସାଉଥ୍ ଡାକୋଟା ରାଜ୍ୟର ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲିବାକୁ ଗଲି । ମିଚେଲ୍ କର୍ଣ୍ଣ

ପ୍ୟାଲେସ୍, ବ୍ୟାଡ଼ ଲାଣ୍ଡସ୍, ବ୍ଲୁ କ୍ଲାଉଡ୍ ଆବି, ରାପିଡ୍ ସିଟି , କଷ୍ଟର୍ ପାର୍କ, ବ୍ଲାକ୍ ହିଲ୍ସ, ୟେଲୋଷ୍ଟୋନ ପାର୍କ ଆଦି ବୁଲାବୁଲି କରି ପ୍ରାୟ ପନ୍ଦରଦିନ ପରେ ବୃକିଂସ୍ ଫେରି ଘରକୁ ଫେରିବାର ବ୍ୟବସ୍ଥା କଲି । ପାନ୍ ଆମେରିକାନ୍ ଏୟାର ଲାଇନ୍‌ରେ ଟିକେଟ କରି ବାଟରେ ବିଭିନ୍ନ ସ୍ଥାନରେ ରହି ରହି ଭୁବନେଶ୍ୱରରେ ପହଞ୍ଚିବାର ବ୍ୟବସ୍ଥା ହେଲା । ମୋର ହିତାକାଂକ୍ଷୀ ବନ୍ଧୁମାନେ ତାଙ୍କ ଘରକୁ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ ଦେବାକୁ ଲାଗିଲେ । କେତେଜଣ ବିଭାଗୀୟ ପ୍ରଫେସରଙ୍କ ଘରୁ ମଧ୍ୟ ନିମନ୍ତ୍ରଣ ମିଳିଲା । ପ୍ରତି ଶନିବାର ଓ ରବିବାର ସନ୍ଧ୍ୟାରେ ମୁଁ ଜଣେ ଜଣେ ବନ୍ଧୁଙ୍କ ଘରକୁ ଯାଇ ବିଦାୟକାଳୀନ ଭୋଜି ଖାଇ ଆସୁଥିଲି ।

ଚାରିବର୍ଷ ରହଣି ଭିତରେ ସେଠାକାର ଲୋକମାନେ ମୋତେ ସ୍ନେହ ବନ୍ଧନରେ ଏପରି ବାନ୍ଧି ଦେଇଥିଲେ ଯେ, ମୋର ବୃକିଂସ୍ ଛାଡ଼ି ଅନ୍ୟତ୍ର ଯିବାପାଇଁ ଆଦୌ ଇଚ୍ଛା ନଥିଲା। ଜଣେ ଭାରତୀୟ ହୋଇ ସେଠାକାର ଲୋକମାନଙ୍କ ସହିତ ମୋର ଯେତେ ଘନିଷ୍ଠତା ବଢ଼ି ସାରିଥିଲା, ମୁଁ ଏତେ ଶୀଘ୍ର ସେମାନଙ୍କୁ ଛାଡ଼ି ଚାଲିଯିବା କଥା ଆଦୌ ଭାବିପାରୁ ନଥିଲି । ସେଥିଲାଗି ମୋର ଅନେକ ଭାରତୀୟ ବନ୍ଧୁମାନେ କହୁଥିଲେ, ତୁମେ ଘରକୁ ଫେରି ଆଦୌ ଶାନ୍ତିରେ ରହିପାରିବ ନାହିଁ । ଏ ମାଟିର ମୋହ ତୁମକୁ ଏପରି ଆକର୍ଷିତ କରିବ ଯେ ତୁମେ ମାସେ ପନ୍ଦରଦିନ ଭିତରେ ପୁଣି ଏଠିକି ଫେରି ଆସିବ ।

ପୋଲଟ୍ରି ନ୍ୟୁଟ୍ରିସନ୍ ବିଭାଗର ଅଧ୍ୟକ୍ଷ ଡକ୍ଟର କାର୍ଲସନ୍ ମୋତେ ରାତ୍ରିଭୋଜନ ପାଇଁ ଡାକିଲାବେଳେ ତାଙ୍କ ବିଭାଗରେ କଟକର ଶ୍ରୀ ହରଲାଲ୍ ଚୌଧୁରୀଙ୍କୁ ପଢ଼ିବାପାଇଁ ଅନୁମତି ଦେବା ସହିତ ଆର୍ଥିକ ସହାୟତା ଯୋଗାଇ ଦେବେ ବୋଲି ସ୍ୱୀକୃତି ଦେଲେ । ସେହିଭଳି ମୋ ପରାମର୍ଶଦାତା ପ୍ରଫେସର ଭୋକର୍ ଡାକ୍ତର ଶୀତକଣ୍ଠ ଦାଶଙ୍କୁ ମୋ ପରି ଜଣେ ଛାତ୍ର ଭାବେ ଗ୍ରହଣ କରି ଆର୍ଥିକ ସହାୟତା ଯୋଗାଇ ଦେବେ ବୋଲି ମଧ୍ୟ ପ୍ରତିଶ୍ରୁତି ଦେଲେ । ମେକାନିକାଲ ଇଂଜିନିୟରିଂ ବିଭାଗର ମୁଖ୍ୟଅଧ୍ୟାପକ କଟକର ଶ୍ରୀ ଦେବରଞ୍ଜନ ମହାନ୍ତିଙ୍କୁ ଛାତ୍ର ଭାବେ ଗ୍ରହଣ କରିବା ପାଇଁ ମଧ୍ୟ ସ୍ୱୀକୃତି ଦେଲେ । ବୃକିଂସ୍ ରେ ମୁଁ ରହିବାବେଳେ କୌଣସି ଓଡ଼ିଆ ଛାତ୍ରଙ୍କୁ ଆଣିବା ସମ୍ଭବ ହୋଇପାରି ନଥିଲା । ମାତ୍ର ମୁଁ ଏଠୁ ଛାଡ଼ିବା ପରେ ତିନିଚାରି ଜଣ ଓଡ଼ିଆ ଛାତ୍ର ବିଭିନ୍ନ ବିଭାଗରେ ପଢ଼ିବେ ବୋଲି ମୁଁ ଭାବିପାରୁ ନଥିଲି । ତେବେ ଓହିଓ ବିଶ୍ୱବିଦ୍ୟାଳୟରେ ଆର୍ଥିକ ସାହାଯ୍ୟ ନପାଇ ମୁଁ ଯେପରି ଦୁଇ ତିନି ମାସ ଅସୁବିଧା ଭୋଗିଥିଲି ଆଉ କେହି ସେପରି ପରିସ୍ଥିତିର ସମ୍ମୁଖୀନ ନ ହୁଅନ୍ତୁ ବୋଲି ମୁଁ ସେମାନଙ୍କ ପାଇଁ ପୂର୍ବରୁ ଅର୍ଥୋପାର୍ଜନ ବ୍ୟବସ୍ଥା କରିଥିଲି । ସେହି ବିଶ୍ୱବିଦ୍ୟାଳୟର

ଅଧ୍ୟାପକ ମହଲରେ ମୋ ପ୍ରତି ସ୍ନେହ ସହାନୁଭୂତିର ସୁଫଳ ଏମାନେ ଯେପରି ପାଇ ପାରିଲେ ତାହା ମୋର ଆତ୍ମତୃପ୍ତିର କାରଣ ହୋଇଥିଲା ।

# ଘରବାହୁଡ଼ା

ଥେସିସ୍ ଡିଫେନ୍ସ ପରୀକ୍ଷା ପରେ କେବଳ ଡିଗ୍ରୀ ଲାଗି ଅପେକ୍ଷା । ସେମିଷ୍ଟାର ଶେଷରେ ସମାବର୍ତ୍ତନ ଉତ୍ସବ ହେବ । ଏବେ ଗ୍ରୀଷ୍ମ କାଳୀନ ସେମିଷ୍ଟାର ଆରମ୍ଭ ହୋଇଛି । ପାଖାପାଖି ଚାରିମାସ ପରେ ମୋତେ ଡିଗ୍ରୀ ମିଳିବ । ଏତେଦିନ ଧରି କେବଳ ଗେବେଷଣାତ୍ମକ କାର୍ଯ୍ୟରେ ଡକ୍ଟର ଭୋକରଙ୍କୁ ସାହାଯ୍ୟ କରିବାକୁ ହେବ । ସେ ମୋତେ ଏଠାକାର କୌଣସି ଏକ କମ୍ପାନୀରେ ଯୋଗଦେବାକୁ ପରାମର୍ଶ ଦେଇଥିଲେ । ମାତ୍ର ଥରେ ଚାକିରୀପାଇଁ ସମ୍ମତି ଦେବାପରେ ଅତିକମ୍‌ରେ ବର୍ଷେ ପର୍ଯ୍ୟନ୍ତ ଘରକୁ ଯାଇ ପାରିବି ନାହିଁ । ଦୀର୍ଘ ଚାରିବର୍ଷରୁ ଅଧିକକାଳ ହେବ ମୁଁ ଘରଦ୍ୱାର ଦେଶ ଦୁନିଆଁ ଛାଡ଼ି ଏ ଦେଶକୁ ଆସିଛି । ବହୁ ଦୂରରେ ରହିଯାଇଛି ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ପବିତ୍ର ଭାରତବର୍ଷ । ସେଇ ଉପମହାଦେଶର ପୂର୍ବ ଭାଗରେ ଚାରୁହାସମୟୀ ଚାରୁଭାଷମୟୀ ରତ୍ନଗର୍ଭା ଉତ୍କଳ ଜନନୀ ସତେ ଯେପରି ମୋତେ ହାତଠାରି ଡାକୁଛି । ସେଇଠି ଦେବୀନଦୀ ତୀରରେ ତାଳ, ତମାଳ ନାରିକେଳ, ଗୁବାକ, ବର, ଅଶ୍ୱତ୍ଥ, ଆଦି ସବୁଜିମା ଭରା ମୋର ପ୍ରିୟ ଜନ୍ମମାଟି । କବି ସଚି ରାଉତରାୟଙ୍କ ଭାଷାରେ –

"ତାହାରି ଫୁଲ ଶାଗୁଆ ଲତା କଣ୍ଠେ ମୋର ଦେଲା ଯେ କଥା
ଆଖିରେ ଦେଲା ଚାହାଣି ନୂଆ
ଫଗୁଣ ଉଷା ପାହାନ୍ତି
ଛୋଟ ମୋର ଗାଆଁଟି ।"

ମୋ ବାପା, ବୋଉ,ମାଆ, ସ୍ତ୍ରୀ ଓ କୁନି କୁନି ପିଲା ତିନିହେଁ ମୋ ଅପେକ୍ଷାରେ ଦିନ କାଟୁଛନ୍ତି, ସେମାନଙ୍କ ସହିତ ମୋ କୁଟୁମ୍ବ ଅନ୍ତର୍ଭୁକ୍ତ ଦାଦା, ଖୁଡ଼ି, ଭାଇ, ଭାଉଜ, ପୁତୁରା, ଝିଆରୀମାନେ ଚାରିବର୍ଷ ଭିତରେ ମୋ ଅନୁପସ୍ଥିତି ଅନୁଭବ କରୁଥିବେ । ଭଉଣୀ ଭିଣୋଇ ଓ ଶ୍ୱଶୁର ଘର ପରିବାର ସହିତ ଅନ୍ୟ ସବୁ ବନ୍ଧୁ ବାନ୍ଧବଙ୍କୁ ଦେଖି ମୋତେ କେତେ ଖୁସି ଲାଗିବ ! ସେ ଆନନ୍ଦ ତୁଳନାରେ ସୁଦୂର ଆମେରିକାରେ ରହି ଅର୍ଥ ଉପାର୍ଜନ କରିବା ମୋ ପକ୍ଷରେ ଗୁରୁତ୍ୱପୂର୍ଣ୍ଣ ମନେ ହେଉନଥାଏ । ସେ କଥା ସବୁ ମନେପଡ଼ି ଯୁକ୍ତରାଷ୍ଟ୍ର ଆମେରିକାରେ ଆଉ ଗୋଟିଏ ଦିନ ବି ରହିବାକୁ ମୋର ଇଚ୍ଛା ନଥାଏ ।

ଯେଉଁଥିପାଇଁ ଆମେରିକା ଆସିଥିଲି, ସେ କାର୍ଯ୍ୟର ପରିସମାପ୍ତି ଘଟିଛି । ଦୀର୍ଘ ଚାରିବର୍ଷ ଧରି ଦୁଇ ଦୁଇଟା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ଓ ଗବେଷଣା କରି ମାଷ୍ଟର୍ସ ଓ ପି.ଏଚ.ଡ଼ି. ଡିଗ୍ରୀ ହାସଲ କରି ଏବେ ମୁଁ ପୃଥିବୀର ଯେକୌଣସି ଦେଶରେ ଜଣେ ଜୀବବିଜ୍ଞାନୀ, ଗବେଷକ ବା ଅଧ୍ୟାପକ ହୋଇପାରିବା ଭଳି ଯୋଗ୍ୟତାର ଅଧିକାରୀ ହୋଇଛି । ସ୍ୱାଧୀନତା ପ୍ରାପ୍ତିର ମାତ୍ର କୋଡ଼ିଏ ବର୍ଷ ଭିତରେ ମୋ ଦେଶର ଉନ୍ନତି ଲାଗି ମୋପରି ବହୁ ବୈଜ୍ଞାନିକ ବା ବୈଷୟିକ ବିଦ୍ୟାରେ ପାରଦର୍ଶୀ ଲୋକଙ୍କର ଯେଭଳି ଆବଶ୍ୟକତା ରହିଛି, ସେହି ଅଭାବ ପୂରଣ ଦିଗରେ ଯଦି ମୋର ସେବା ଆବଶ୍ୟକ ହୁଏ; ତେବେ ତାହାଠାରୁ ବଳି ସୌଭାଗ୍ୟ ମୋ ପାଇଁ ଆଉ କ'ଣ ବା ଅଛି ? ହୁଏତ ଏ ଦେଶରେ ଚାକିରୀ କରି ବହୁ ଧନସମ୍ପତ୍ତିର ଅଧିକାରୀ ହେବାର ସୁଯୋଗ ହାତଛଡ଼ା କରିବାକୁ ହେବ । ଫଳରେ ମୋତେ ଜନ୍ମଭୂମିର ସେବା କରିବାରେ ନିଜକୁ ନିୟୋଜିତ କରିବାଲାଗି ସୌଭାଗ୍ୟ ମିଳିବ ବୋଲି ଭାବୁଥିଲି ।

ଘରକୁ ଫେରିବାର ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଗଲା । ମୋର ଦରକାରୀ ବହିପତ୍ର, ପୋଷାକ, ଟେପ୍ ରେକର୍ଡ଼ର ଓ ଅନ୍ୟାନ୍ୟ ସାମଗ୍ରୀ ପ୍ୟାକିଂ କରି ଏକ ଜାହାଜ କମ୍ପାନୀ ଜରିଆରେ ଆଗରୁ ପଠାଇଦେଲି । ମୋର କାର୍‌ଟିକୁ ଏମ୍.କେ. ଧ୍ୟାନେଶ ନାମକ ଜଣେ ତାମିଲନାଡୁ ଛାତ୍ର ରଖିଲେ । କଥା ହେଲା, ଯଦି ମୁଁ ଦୁଇ ତିନିମାସ ପରେ ଫେରିଆସେ ତେବେ କାର୍‌ଟି ଫେରାଇ ନେବି । ନୋହିଲେ ଦେଶରେ ମୋର ରହିବାର ହେଲେ ତାଙ୍କ ମନଖୁସି ଯେତେ ଟଙ୍କା ଚାହିଁବେ ମୋ ପାଖକୁ ସେ ପଠାଇଦେବେ । ଏବେ ଯେଉଁ ଓଡ଼ିଆଛାତ୍ର ଏଠିକିଆସିବ ମୋର ସାଇକେଲଟି ସେ ନେଇ ବ୍ୟବହାର କରିବ ।

ବୃକିଂସ୍ ଛାଡ଼ିବା ପୂର୍ବସନ୍ଧ୍ୟାରେ ମୋର ପଞ୍ଜାବୀବନ୍ଧୁ ଅଧ୍ୟାପକ ପ୍ରେମ୍‌ପାଲ୍ ପ୍ରାସରଙ୍କ ଘରେ ଭୋଜି ହେଲା । ତାଙ୍କର ଆମେରିକାନ ନବପରିଣିତା ପତ୍ନୀ ଡାର୍‌ଲିନ୍ ରାନ୍ଧିବାଢ଼ି ଆମ୍ଭମାନଙ୍କୁ ସନ୍ଧ୍ୟାରେ ଖୁଆଇଲେ । ପରଦିନ ପଲ୍‌ପ୍ରାସର୍ ମୋତେ ତାଙ୍କ କାର୍‌ରେ ଆଣି ବୃକିଂସ୍ ଠାରୁ ସତୁରୀ ମାଇଲ ଦୂର ସୁଫଲ୍ସ ବିମାନଘାଟୀରେ ଛାଡ଼ିଲେ । ସକାଳ ନଅଟାରେ ଆମ ବିମାନ ଲସ୍‌ଆଞ୍ଜେଲେସ୍ ଅଭିମୁଖେ ଯାତ୍ରାକଲା । ଦିନ ବାରଟା ସୁଦ୍ଧା ସେଠାରେ ପହଞ୍ଚି ଜାପାନ୍ ଏୟାର ଲାଇନ୍ସ ବିମାନରେ ଅପରାହ୍ନ ଦୁଇଟା ବେଳକୁ ହାୱାଇ ଦ୍ୱୀପକୁ ଯିବାକଥା । ବିମାନ ବନ୍ଦରରେ ଦୁଇଘଣ୍ଟା କଟାଇଲା ବେଳେ ଆଜି ସତକୁ ସତ ମୁଁ ଏ ଦେଶରୁ ବିଦାୟ ନେଇଛି ଭାବି ଦୁଃଖ ଲାଗୁଥାଏ । ଆଜକୁ ସାଢ଼େ ଚାରିବର୍ଷ ତଳେ ମାତ୍ର ଆଠଶହ ଡଲାର ସାଙ୍ଗରେ ନେଇ ମୁଁ ଏ ଦେଶରେ ପାଦ ଦେଇଥିଲି । ହେଲେ, ଏ ଦେଶର ଜ୍ଞାନୀ ଗୁଣୀ ପରୋପକାରୀ

ଉଦାରହୃଦୟ ଅଧ୍ୟାପକମାନଙ୍କ ସାହାଯ୍ୟରେ ଏଠି ରୋଜଗାର କରି ପାଠ ପଢ଼ିବା ସହିତ ଘରକୁ ଯଥେଷ୍ଟ ଟଙ୍କା ପଠାଇ ମାଷ୍ଟର୍ସ ଓ ପି.ଏଚ୍.ଡ଼ି. ଡିଗ୍ରୀ ହାସଲ କରି ସାରି ଜଣେ ଉଚ୍ଚଶିକ୍ଷିତ ବିଜ୍ଞାନବିତ୍ ଭାବେ ମୁଁ ଆଜି ଦେଶକୁ ଫେରି ଯାଉଛି ।

ତଥାପି ଏ ଦେଶରେ ମୋ ଲାଗି ନିଶ୍ଚିତ କର୍ମ ନିଯୁକ୍ତିର ଅଙ୍ଗୀକାରବଦ୍ଧତା ଅତିକମ୍‌ରେ ତିନିମାସ ପାଇଁ ବଳବତ୍ତର ରହିବ । କଲମ୍ବସ୍‌ରେ ଥିଲାବେଳେ ଆଠଦଶ ଦିନ ଧରି ଯେତେବେଳେ ମୁଁ ସାମୟିକ ଭାବେ କାମକରି ଅଧ୍ୟୟନ କରିବା ଲାଗି ସୁବିଧା ଖୋଜି ନିରାଶ ହେଲି, ଭାବୁଥିଲି ଅର୍ଥାଭାବରୁ ମୁଁ ଲକ୍ଷ୍ୟହାସଲ କରି ନପାରି ଫେରିଯିବି । ସେତେବେଳେ ମୋତେ ସେଠାରେ ଥିବା ଡକ୍ଟର ନଟବର ଶତପଥୀ ସାହସ ଦେଇ କହୁଥିଲେ ଧୈର୍ଯ୍ୟ ହରାନ୍ତୁ ନାହିଁ । ଏଦେଶ ମହାଲକ୍ଷ୍ମୀଙ୍କ ରାଜ୍ୟ । ଏଠି କେହି ଉପବାସ ରହେନାହିଁ । ଏଠାରୁ କେହି ଖାଲିହାତରେ ଫେରନ୍ତି ନାହିଁ । ସେଥିଲାଗି ପୃଥିବୀର ବିଭିନ୍ନ ଦେଶରୁ ଲକ୍ଷ ଲକ୍ଷ ଲୋକ ଅନେକ ଆଶା ନେଇ ପ୍ରତିଦିନ ଏଠିକି ଆସୁଛନ୍ତି । କେହି ବ୍ୟର୍ଥମନୋରଥ ହୋଇ ଏଦେଶରୁ ଫେରି ଯାଇ ନାହିଁ । ଆପଣ ମଧ୍ୟ ଫେରିବେ ନାହିଁ । ଯେଉଁ ଆଶା ନେଇ ଆସିଛନ୍ତି ତାହା ନିଶ୍ଚୟ ଚରିତାର୍ଥ ହେବ । ଏଠି କେବଳ ଯେ ଲୋକେ ପାଠ ପଢ଼ନ୍ତି ସେ କଥା ନୁହେଁ । ପାଠପଢ଼ା ସାଙ୍ଗକୁ ଦୂର ଦେଶରେ ଥିବା କୁଟୁମ୍ବ ପୋଷିବାକୁ ମଧ୍ୟ ଏ ଦେଶରୁ ଅର୍ଥ ମିଳେ । ସେଥିଲାଗି କେବଳ ଧୈର୍ଯ୍ୟ ଓ ସାହସ ଦରକାର । ଆଜି ଡକ୍ଟର ଶତପଥୀଙ୍କର ଏହି ଉକ୍ତି ଅକ୍ଷରେ ଅକ୍ଷରେ ସତ ହୋଇଛି । ମୋ ପରି ଏକ କପର୍ଦ୍ଦକହୀନ ଯୁବକ ଏ ଦେଶରେ ଦୀର୍ଘ ସାଢ଼େ ଚାରିବର୍ଷ ରହି ପାଠପଢ଼ି ଗବେଷଣା କରି ଡକ୍ଟରେଟ୍ ଡିଗ୍ରୀ ହାସଲ କରି ଆଜି କୃତକାର୍ଯ୍ୟ ହୋଇ ନିଜ ଦେଶକୁ ଫେରୁଛି ।

ଜାପାନ୍ ଏୟାର ଲାଇନ୍ସ ବିମାନରେ ବସିବା ପୂର୍ବରୁ ଯୁକ୍ତରାଷ୍ଟ୍ର ଆମେରିକା ମାଟି ସ୍ପର୍ଶକରି ମୁଁ ପ୍ରଣାମକଲି । ପ୍ରଶାନ୍ତ ମହାସାଗର ଉପରେ ଦୁଇଘଣ୍ଟା ଉଡ଼ିବା ପରେ ବିମାନଟି ହାୱାଇ ବିମାନବନ୍ଦରରେ ଅବତରଣ କଲା । ବିମାନ ବନ୍ଦର ଚାରିପଟେ ବଡ଼ ବଡ଼ ନଡ଼ିଆଗଛ ସବୁ ପ୍ରଶାନ୍ତ ମହାସାଗରୀୟ ପବନରେ ଦୋହଲି ଦୋହଲି ବିମାନରୁ ଓହ୍ଲାଉଥିବା ଯାତ୍ରୀମାନଙ୍କୁ ସତେଯେପରି ହାୱାଇର ଆତିଥେୟତା ଗ୍ରହଣ କରିବାକୁ ଆମନ୍ତ୍ରିତ କରୁଥାଆନ୍ତି । ଏହି ଦ୍ୱୀପ ସମ୍ପର୍କରେ ମାଟ୍ରିକ ପଢ଼ିଲାବେଳେ ଜାଣିଥିଲି । ମାତ୍ର ଏଠିକି ଯେ ଦିନେ ମୁଁ ଆସିପାରିବି, ସେ ସ୍ୱପ୍ନ ଆଦୌ ଦେଖିନଥିଲି । ଆମେରିକା ଆସିବା ପରେ ମୋର ଆମେରିକାନ୍ ସହପାଠୀ ବନ୍ଧୁମାନଙ୍କଠାରୁ ଏହାଏକ ଦର୍ଶନୀୟ ସ୍ଥାନ ବୋଲି ଜାଣିଲି । ମୋର ଅଧିକାଂଶ ସହପାଠୀ ବିବାହପରେ ହନିମୁନ୍ କରିବା ପାଇଁ ହାୱାଇକୁ ପ୍ରାଧାନ୍ୟ ଦେବା ଜାଣି ଏହି ସପନ ରାଇଜକୁ ଦେଖିବାର ଇଚ୍ଛା ମୋର

ବନ୍ଦର ହୋଇଥିଲା । ଆଜି ଏହି ମାଟିରେ ପଦାର୍ପଣ କରି ମୁଁ ଧନ୍ୟ ହେଲି । ବିମାନ ବନ୍ଦରରୁ ଏୟାର୍ ଲାଇନ ବସ୍‌ରେ ଏକ ହୋଟେଲ୍‌କୁ ଗଲି । ଅଧିକାଂଶ ଯାତ୍ରୀ ସେମାନଙ୍କ ପୂର୍ବ ନିର୍ଦ୍ଧାରିତ ହୋଟେଲ ମାନଙ୍କୁ ଚାଲିଗଲେ । ମୋପରି ଅଳ୍ପ କେତେଜଣ ଦୂରଗାମୀ ଯାତ୍ରୀ ଯେଉଁମାନେ ବାଟରେ ଦିନେ ଦୁଇଦିନ ରହି ପୁଣି ସେହି ଏୟାରଲାଇନ୍ ବିମାନରେ ଯାତ୍ରା କରିବେ. ସେଭଳି ଲୋକ ଏୟାରଲାଇନ୍ ଖର୍ଚ୍ଚରେ ସେଠାକାର ହୋଟେଲ୍‌ରେ ରହିଲୁ । ଭାରତର ଯେ କୌଣସି ବଡ଼ ପଞ୍ଚତାରକା ହୋଟେଲ ପରି ବେଶ୍ ଆମୋଦଦାୟକ ରହଣି । ଖାଇବା, ପିଇବା, ଚା, କଫି ସବୁ କିଛି ହୋଟେଲ ତରଫରୁ ବ୍ୟବସ୍ଥା ହୋଇଥାଏ । ସେଠାରେ ମୋର ସୁଟ୍‌କେଶ୍ ଓ ବ୍ୟାଗ୍ ରଖିଦେଇ କ୍ୟାମେରାଟି ଧରି ବୁଲି ବାହାରିଲି । ସମୁଦ୍ର କୂଳେକୂଳେ ରାସ୍ତା ଲମ୍ବିଯାଇଛି ସହର ଆଡ଼କୁ । କୂଳରୁ ପ୍ରାୟ ଶହେ ବା ଦେଢ଼ଶହ ଫୁଟ ଛାଡ଼ି ସମୁଦ୍ର ଭିତରେ ମାଇଲ୍ ମାଇଲ୍ ଧରି ପାଚେରୀ ଗଢ଼ାଯାଇଛି । ପାଚେରୀ ଓ କୂଳ ମଧ୍ୟରେ ସ୍ଥିର ଜଳରେ ଛୋଟ ଛୋଟ ଲହରୀ ଉଠୁଥାଏ। ସେଇ ସ୍ଥାନରେ ସମୁଦ୍ର ସ୍ନାନ କରିବାକୁ ହେବ । ପାଚେରୀ ସେପଟେ ବଡ଼ ବଡ଼ ଲହରୀ ଆସି ପାଚେରୀ ଦେହରେ ପିଟି ହେଉଥାଏ । ବେଳେ ବେଳେ ବଡ଼ ବଡ଼ ଲହରୀରୁ ପାଚେରୀ ଟପି ଉଛୁଳା ଜଳ ଏପଟେ ରାସ୍ତାରେ ଆସି ପଡୁଥାଏ । ସେହି ପାଚେରୀ ଟପି ଆରପାଖକୁ ଯିବା ବିପଦ । ସେ ପାଖରେ ସାର୍କ ଭୟ ଅଛି । ସେହି ସମୁଦ୍ରରେ ଗାଧୋଇବାର କାହାକୁ ଦେଖିଲି ନାହିଁ । କୂଳରେ କାଁ ଭାଁ ଲୋକ ବୁଲୁଥିବାର ଦେଖିଲି । ଏପରିକି ସେ ରାସ୍ତାରେ ଚାଲି ଚାଲି ଯିବା ଲୋକ କେବଳ ମୋ ଛଡ଼ା ପ୍ରାୟ ଆଉ କେହି ନଥିଲେ । ସ୍ଥାନଟା ଜନମାନବ ଶୂନ୍ୟ ଲାଗୁଥାଏ ।

ବଜାର ଅଞ୍ଚଳରେ ପହଞ୍ଚିଲି । ହୋନୋଲୁଲୁ ସହରର ସମୁଦ୍ରକୂଳିଆ ବଜାରରେ ସେତେ ଭିଡ଼ ନାହିଁ । ତେବେ ଆମେରିକାର ବିଭିନ୍ନ ଅଞ୍ଚଳରୁ ଛୁଟି କଟାଇବାକୁ ଏଠାକୁ ଆସିଥିବା ଦମ୍ପତି ତଥା ପ୍ରେମିକ ପ୍ରେମିକା ଯୋଡ଼ି ଯୋଡ଼ି ଏଠିସେଠି ବୁଲୁଥାନ୍ତି । ହାୱାଇ ହେଉଛି ଯୁକ୍ତରାଷ୍ଟ୍ର ଆମେରିକାର ମୁଖ୍ୟ ପର୍ଯ୍ୟଟନ ସ୍ଥଳୀ । ବିବାହ ପରେ ପ୍ରାୟ ଅଧିକାଂଶ ନବଦମ୍ପତି ହାୱାଇ ଭ୍ରମଣରେ ଆସନ୍ତି । ପ୍ରଶାନ୍ତ ମହାସାଗର ମଧ୍ୟରେ ଏହି ଫୁଲଫଳ ଭରା ଚିରହରିତ୍ ଦ୍ୱୀପର ନାତିଶୀତୋଷ୍ଣ ଜଳବାୟୁରେ ବୁଲି ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଅଧିକାଂଶ ଆମେରିକାନ୍ ଆଗ୍ରହୀ । ତେଣୁ ହାୱାଇର ବିଭିନ୍ନ ଦ୍ୱୀପରେ ଥିବା ଦର୍ଶନୀୟ ସ୍ଥାନ ମାନଙ୍କରେ ଆମେରିକାନ୍ ପରିଦର୍ଶକ ମାନେ ବର୍ଷର ପ୍ରାୟ ସବୁ ସମୟରେ ଘୂରି ବୁଲୁଥାନ୍ତି । ହେଲେ, ସେଠାକାର ମୂଳବାସିନ୍ଦା ମାନଙ୍କର ଆମେରିକାନ୍ ମାନଙ୍କ ପରି ମୂଳ ଉତ୍ସ ୟୁରୋପ ନୁହେଁ। ହାୱାଇ

ଏକ ରାଜା ଶାସିତ ଦେଶ ଥିଲା । ଯୁକ୍ତରାଷ୍ଟ୍ର ସରକାର ଏଠାକାର ଗାଦିନଶୀନ ରାଣୀଙ୍କୁ ହଟାଇ ଏଠାରେ ଗଣତନ୍ତ୍ର ପ୍ରତିଷ୍ଠା କଲେ ।

ସେତେବେଳେକୁ ଲୋହିତ ଭାରତୀୟ ମାନଙ୍କ ପରି ହାୱାଇରେ ଯେଉଁ ଅଧିବାସୀ ମାନେ ବସବାସ କରୁଥିଲେ ସେମାନେ ହିଁ ଏଠାରେ ବହୁ ସଂଖ୍ୟାରେ ରହିଛନ୍ତି । ହାୱାଇ ଜନସଂଖ୍ୟାର ପ୍ରାୟ ଶତକଡ଼ା କୋଡ଼ିଏ ଭାଗ ମାତ୍ର ଗୋରା ଲୋକ । ବାକୀ ଅଶୀଭାଗ ହେଉଛନ୍ତି ଏଠାକାର ମୂଳ ଅଧିବାସୀ । ସେମାନଙ୍କ ଚେହେରା ଲୋହିତ ଭାରତୀୟ ମାନଙ୍କ ପରି । ମାତ୍ର ଏମାନେ ଆକାରରେ ସାମାନ୍ୟ ଗେଡ଼ା ଓ ଏକ ଭିନ୍ନ ଜାତିର ଲୋକ । ସେମାନଙ୍କର ବେଶଭୂଷା, ଚଳଣି, ନାଚ ଗୀତ, ଆଦି ସବୁ କିଛି ଅଲଗା ଢାଞ୍ଚାର । ଝିଅମାନେ ଅଣ୍ଟାଠାରୁ ପାଦ ପର୍ଯ୍ୟନ୍ତ ଲମ୍ବ ଲମ୍ବ ଘାସ ଗୋଛା ବା ବେଣା ପରି ଘାଗରା ପିନ୍ଧି ନାଚନ୍ତି । ରାତିରେ ନିଆଁ ଜାଳି ଧୂନୀ ଚାରିପଟେ ବୁଲି ଝିଅମାନେ ନାଚିଲା ବେଳେ ପୁରୁଷ ମାନେ ବାଜା ବଜାନ୍ତି । ବେଳେବେଳେ ଝିଅପୁଅ ଏକାଠି ନାଚିବାର ମଧ୍ୟ ଦେଖାଯାଏ । ଏସବୁ ଦେଖି ପର୍ଯ୍ୟଟକମାନେ ଫଟୋ ଉଠାଇବାକୁ ଭଲ ପାଆନ୍ତି । ପର୍ଯ୍ୟଟକ ମାନଙ୍କ ମନୋରଞ୍ଜନ ପାଇଁ ଏଠାରେ ସବୁ ପ୍ରକାର ବ୍ୟବସ୍ଥା ଅଛି । ଏହି ଦ୍ୱୀପର ମୁଖ୍ୟଆୟ ପର୍ଯ୍ୟଟନ ସୂତ୍ରରୁ ହିଁ ହୋଇଥାଏ । ତାଛଡ଼ା ଏହି ଦ୍ୱୀପପୁଞ୍ଜରେ ପ୍ରଚୁର ନଡ଼ିଆ, ସପୁରୀ, କଦଳୀ, ସପେଟା, ପିଜୁଳି ଆଦି ଫଳ ଉତ୍ପାଦିତ ହୁଏ । ସେସବୁକୁ ଆମେରିକାର ପଶ୍ଚିମ ଉପକୂଳସ୍ଥ କାଲିଫର୍ଣ୍ଣିଆ, ନେଭାଦା, ଟେକ୍ସାସ୍, ଓରେଗନ୍, ଆଦି ରାଜ୍ୟ ମାନଙ୍କରେ ବିକ୍ରୀ କରି ହାୱାଇଲୋକେ ବେଶ୍ ରୋଜଗାର କରନ୍ତି । ଦୁଇଦିନ ହାୱାଇରେ ରହି ବିଭିନ୍ନ ସ୍ଥାନ ବୁଲି ଦେଖିଲି ଓ ସେସବୁର ଫଟୋ ଉଠାଇଲି ।

ପରଦିନ ଅପରାହ୍ନ ୪ଟା ବେଳକୁ ଟୋକିଓ ଯିବାକୁ ପୁଣି ବିମାନ ବନ୍ଦରକୁ ଗଲି । ବିମାନଟି ପ୍ରଶାନ୍ତ ମହାସାଗର ଉପରେ ଉଡ଼ିଚାଲିଲା । ଯୁଆଡ଼େ ଚାହିଁବ କେବଳ ସମୁଦ୍ର । ସମୁଦ୍ର ପତ୍ତନଠାରୁ ପ୍ରାୟ ଦଶକିଲୋମିଟର ଉଚ୍ଚତାରେ ଆମ ବିମାନ ଉଡୁଥାଏ । ସ୍ଥାନେସ୍ଥାନେ ତଳକୁ ଚାହିଁଲେ ଧଳା ଧଳା ବଉଦର ଏକ ବହଳଆସ୍ତରଣ ବହୁତ ନିମ୍ନରେ ଦିଶୁଥାଏ । ଉପରେ କେବଳ ନୀଳଆକାଶ । ପ୍ରାୟ ୪/୫ଘଣ୍ଟା ପରେ ବିମାନ ପରିଚାରିକା ଜଣାଇ ଦେଲେ ଯେ, ଆମେ ଏବେ ଆନ୍ତର୍ଜାତୀୟ ତାରିଖରେଖା ପାର ହେଉଛୁ । ଏହି ରେଖାଟି ହେଉଛି ଶୂନ୍ ଡିଗ୍ରୀ ଦ୍ରାଘିମା । ମାଟ୍ରିକ୍ ପଢ଼ିଲାବେଳେ ଭୂଗୋଳରେ ଅକ୍ଷାଂଶ ଓ ଦ୍ରାଘିମା ବିଷୟ ପଢ଼ିଥିଲି । ବିଷୁବରେଖାକୁ ଶୂନଡିଗ୍ରୀ ଅକ୍ଷାଂଶ ଧରାଯାଇ ଉତ୍ତର ଓ ଦକ୍ଷିଣ ଗୋଲାର୍ଦ୍ଧକୁ ୯୦ ଡ୍ରିଗୀ ଲେଖାଏଁ ୧୮୦ ଭାଗରେ ବିଭକ୍ତ କରାଯାଇଛି । ମାତ୍ର ଦକ୍ଷିଣ ମେରୁ ସହିତ ଉତ୍ତର ମେରୁକୁ ସଂଯୋଗ କରୁଥିବା

କାଳ୍ପନିକ ରେଖାକୁ ଦ୍ରାଘିମା ଭାବେ ଧରାଯାଇ ସମଗ୍ର ପୃଥିବୀକୁ ୩୬୦ଟି ଦ୍ରାଘିମାରେ ବିଭକ୍ତ କରାଯାଇଛି । ହାୱାଇର ପଶ୍ଚିମକୁ ଓ ଜାପାନର ପୂର୍ବକୁ ବିସ୍ତୃତ ପ୍ରଶାନ୍ତ ମହାସାଗର ଉପରେ ଶୂନ ଡିଗ୍ରୀ ଦ୍ରାଘିମାର ପରିକଳ୍ପନା କରାଯାଇ ସେହିରେଖାକୁ ଆନ୍ତର୍ଜାତିକ ତାରିଖରେଖା ଭାବେ ସ୍ୱୀକୃତି ଦିଆଯାଇଛି । ଗୋଟିଏ ଦ୍ରାଘିମାରୁ ଆର ଦ୍ରାଘିମାକୁ ଯିବାପାଇଁ ସୂର୍ଯ୍ୟଙ୍କୁ ଚାରିମିନିଟ ସମୟ ଲାଗେ । ଏହି ଶୂନ ଡିଗ୍ରୀ ଦ୍ରାଘିମା ବା ଆନ୍ତର୍ଜାତିକ ତାରିଖରେଖା ଉପର ଦେଇ ବିମାନଯାତ୍ରା କରିବା ମୋ ଜୀବନର ଏକ ସ୍ମରଣୀୟ ମୁହୂର୍ତ୍ତ ହୋଇ ରହିବ । ବିମାନର କାଚ ଝରକା ଦେଇ ମୁଁ ତଳକୁ ଚାହିଁଲି । ପ୍ରଶାନ୍ତ ମହାସାଗରର ନୀଳଜଳରାଶି ପ୍ରାୟ ଦଶବାର ମାଇଲ୍ ତଳେ ଆକାଶର ନୀଳିମା ସହିତ ମିଶି ଏକାକାର ହୋଇ ଯାଇଥାଏ । ପିନ୍ଧିଥିବା ହାତଘଡ଼ିର ତାରିଖ ଦୁଇଦିନ ବଢ଼ାଇ ଦେବାକୁ ସୂଚନା ଦିଆଗଲା । ଅର୍ଥାତ୍ ହାତଘଡ଼ିରେ ୫ ତାରିଖ ଥିଲେ, ତାହା ୭ ତାରିଖ କରିବାକୁ ହେବ । କାରଣ, ଏଠାରେ ଗୋଟିଏ ଦିନ ଗାଏବ୍ ହୋଇଯିବ । ଯଦି ଜାପାନ ଆଡୁ ଆମେରିକାକୁ ବିମାନ ଆସୁଥାଏ ତେବେ ସେହି ବିମାନର ଯାତ୍ରୀମାନେ ସେମାନଙ୍କ ତାରିଖ ଦୁଇଦିନ କମାଇ ଦେବେ । ଅର୍ଥାତ୍ ଜାପାନରେ ୭ ତାରିଖ ଥିଲେ ଆନ୍ତର୍ଜାତୀୟ ତାରିଖ ରେଖା ପାର ହୋଇ ଆମେରିକା ଆସୁଥିବା ଯାତ୍ରୀଙ୍କ ଘଡ଼ିରେ ୫ ତାରିଖ ହେବ । ବିମାନ ପରିଚାରିକା ବୁଲିବୁଲି ପ୍ରତିଯାତ୍ରୀଙ୍କୁ ଆନ୍ତର୍ଜାତୀୟ ତାରିଖରେଖା ପାର ହୋଇଥିବାର ସାର୍ଟିଫିକେଟ ଦେଲେ । ପଚାରିଲି ଏ ସାର୍ଟିଫିକେଟ୍ କାହିଁକି ଦେଉଛନ୍ତି ? ସେ କହିଲେ ଆପଣ ପୁଣି ଥରେ ଏହି ସୁଯୋଗ ପାଇ ନପାରନ୍ତି । ତେଣୁ ଆଜିର ଏ ସ୍ମୃତି ସାଇତି ରଖିବେ । ସତକୁ ସତ ଦୀର୍ଘ ୪୮ ବର୍ଷ ଭିତରେ ଆଉ ଚାରି ଥର ଆମେରିକା ଯାଇ ଫେରିଥିଲେ ମଧ୍ୟ ପ୍ରଶାନ୍ତ ମହାସାଗର ଦେଇ ଫେରିବା ଆଉ ସମ୍ଭବପର ହୋଇନଥିଲା । ଅବଶ୍ୟ ୨୦୧୫ ମସିହା ଅଗଷ୍ଟ ମାସରେ ପ୍ରଶାନ୍ତ ମହାସାଗର ପାର ହୋଇ ଲସଏଞ୍ଜେଲସ ଆସିବା ଓ ପୁଣି ଅକ୍ଟୋବର ମାସରେ ସେହି ବାଟ ଦେଇ ଦେଶକୁ ଫେରିବା ବେଳେ ଏହି ରେଖା ପାର ହେବାର ସୌଭାଗ୍ୟ ମିଳିଲା ।

ଦୀର୍ଘ ଦଶଘଣ୍ଟା ଧରି ଉଡ଼ିବାପରେ ବିମାନଟି ଟୋକିଓ ବିମାନ ବନ୍ଦରରେ ଅବତରଣ କଲା । ସେତେବେଳେକୁ ପ୍ରାୟ ଅପରାହ୍ନ ଦୁଇଟାବେଳ । ବିମାନରୁ ଓହ୍ଲାଇ ଏୟାରଲାଇନ୍ ବସ୍‌ରେ ବସିଲାବେଳକୁ ଜାପାନ୍‌ଦେଶ ଉଦ୍ଦେଶ୍ୟରେ ପ୍ରଣାମ କଲି । ମୋ ଦେଶ ଭାରତବର୍ଷ ତୁଳନାରେ ଛୋଟ ଦେଶଟିଏ ହୋଇଥିଲେ ମଧ୍ୟ ଧନ ମାନ ଓ ବୀରତ୍ୱରେ ମହୀୟାନ୍ ଏ ମାଟି । ସମଗ୍ର ପୃଥିବୀକୁ ଦଖଲ କରି ରାଜତ୍ୱ କରୁଥିବା ବ୍ରିଟିଶ୍ ରାଜଶକ୍ତି ସହିତ ଆମେରିକା, ରୁଷ୍ ଓ ଫ୍ରାନ୍ସ ଆଦି ମିଳିତ ସେନାବାହିନୀକୁ

ଦ୍ୱିତୀୟ ମହାଯୁଦ୍ଧରେ ଏ ଦେଶ ବିବ୍ରତ କରିଦେଇଥିଲା । ମୋ ପିଲାଦିନେ ଦ୍ୱିତୀୟ ମହାସମର କାଳରେ କାଳେ ସମୁଦ୍ର ବାଟ ଦେଇ ଜାପାନ ମାଡ଼ି ଆସିବ ବୋଲି ଓଡ଼ିଶାର ସମୁଦ୍ର ଉପକୂଳରୁ ସାମୁଦ୍ରିକ ଡଙ୍ଗା ସାଇକେଲ୍ ଓ ମୋଟର ସାଇକେଲ ଆଦି ଜବତ କରି ନିଆଯାଇଥିଲା । ରାତିରେ ଲଣ୍ଠନ ଜାଳିବାବେଳେ ତହିଁରେ କାଗଜ ଦେଇ ଯେପରି ଘର ବାହାରକୁ ଆଲୁଅ ଦେଖାନଯିବ ସେଥିପ୍ରତି ସଜାଗ ରହିବାକୁ ପଡୁଥିଲା। କାରଣ ଆକାଶ ମାର୍ଗରେ ଥାଇ ଜାପାନୀ ସୈନ୍ୟମାନେ ଗାଆଁଗଣ୍ଡା ବା ସହର ବଜାର ଉଣ୍ଡି ବୋମା ପକାଇବାର ଭୟ ଥିଲା । ମାନ୍ଦ୍ରାଜରୁ କଲିକତା ଅଭିମୁଖେ ସୈନ୍ୟମାନଙ୍କୁ ରେଳଗାଡ଼ିରେ ନିଆଯାଉଥିବାର ସୁରାକ ପାଇ ଜାପାନୀ ସୈନ୍ୟମାନେ ସେହି ରେଳଗାଡ଼ିର ପିଛାକରି ବ୍ରହ୍ମପୁର ଜେଲ୍ ପାଖରେ ରେଳଗାଡ଼ିକୁ ଲକ୍ଷ୍ୟକରି ବୋମା ପକାଇଥିଲେ । ଫଳରେ ଜେଲ ପାଚେରୀ ଭାଙ୍ଗିଗଲା ଓ ସେହିବାଟଦେଇ କେତେଜଣ କଏଦୀ ଚମ୍ପଟ ମାରିଥିଲେ ।

ଜର୍ମାନ ସହିତ ମିଶି ଜାପାନୀମାନେ ବ୍ରିଟିଶ ମିତ୍ରଶକ୍ତିଙ୍କୁ ତିନିବର୍ଷ ଧରି ବ୍ୟସ୍ତ ବିବ୍ରତ କରିଦେଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏହି ଦେଶର ସରକାରଙ୍କ ସାହାଯ୍ୟ ପାଇ ଆଜାଦ୍‌ହିନ୍ଦ୍ ଫଉଜ ଗଠନକରି ବର୍ମା ସୀମାନ୍ତ ଠାରୁ ଭାରତଭୂମିକୁ ଦଖଲ କରି ନେବାର ପ୍ରୟାସ ଆରମ୍ଭ କରି ଦେଇଥିଲେ । ଏଥିଲାଗି ଜାପାନର ତତ୍‌କାଳୀନ ସେନାଧକ୍ଷ ତେରାଉଚି ନେତାଜୀଙ୍କୁ ସାହାଯ୍ୟ କରିଥିଲେ । ଏହି ଦେଶର ତେଇପେ ବିମାନ ଘାଟୀରୁ ରୁଷିଆର ମାଞ୍ଚୁରିଆ ଯିବାପାଇଁ ବିମାନ ଯାତ୍ରା କଲାବେଳେ ବିମାନ ଦୁର୍ଘଟଣାରେ ନେତାଜୀ ପ୍ରାଣ ହରାଇଥିଲେ । ଭାରତୀୟମାନେ ନେତାଜୀଙ୍କୁ ଯେତିକି ବୁଝିନଥିଲେ ତାଠାରୁ ବହୁ ଗୁଣରେ ବୁଝିଥିଲେ ଜାପାନୀ ମାନେ । ତେଣୁ ଭାରତବର୍ଷକୁ ବ୍ରିଟିଶ କବଳରୁ ମୁକ୍ତ କରିବା ଲାଗି ନେତାଜୀଙ୍କୁ ସେମାନେ ସବୁ ପ୍ରକାର ସାହାଯ୍ୟ ଦେବାକୁ ଆଗେଇ ଆସିଥିଲେ । ଏହି ଉପକାରୀ ଦେଶ ପ୍ରତି ମୋର ଭକ୍ତି ନିବେଦନ ଜଣାଇ ବିମାନରୁ ଅବତରଣ କଲି । ପୃଥିବୀର ଶ୍ରେଷ୍ଠ ସହରମାନଙ୍କ ମଧ୍ୟରେ ଟୋକିଓ ଅନ୍ୟତମ । ୨୦୧୧ ମସିହାରେ ଏହା ୪ର୍ଥ ଶ୍ରେଷ୍ଠ ସ୍ଥାନର ମାନ୍ୟତା ପାଇଛି ।

ଜାପାନ ଏୟାର ଲାଇନ୍‌ର ହୋଟେଲ "ଟାକାନାୱା" କୁ ଯାଇ ସେଇଠି ରହିଲି । ଖୁବ୍‌ବଡ଼ ଏହି ହୋଟେଲର ସାଜସଜ୍ଜା ଅତ୍ୟନ୍ତ ଉଚ୍ଚକୋଟୀର । ଏଠି ଆସନ୍ତା କାଲି ରହଣି ପରେ ପରଦିନ ଅପରାହ୍ନ ୨ଟା ବେଳକୁ ହଂକଂ ଯିବା କଥା । ମୁଁ ରହୁଥିବା କୋଠରୀରେ ଥିବା ପଲଙ୍କ, ସୋଫା, ଟେବୁଲ, ଚୌକୀ, ଆଲ୍‌ମୀରା ଆଦି ବେଶ୍ ଆଧୁନିକ ଧରଣର । ହୋଟେଲ୍ ପୋର୍ଟିକୋରେ ଠିଆ ହୋଇ ରାସ୍ତା ଘାଟଆଡ଼େ

ଆଖି ପକାଇଲି । ପିମ୍ପୁଡ଼ି ଧାର ପରି 'ଟାକ୍ସିସବୁ ପଛକୁପଛ ଲାଗି ଲାଗି ଛୁଟି ଥାଆନ୍ତି । ସବୁଗୁଡ଼ିକ ଜାପାନ ତିଆରି ଏକା ମଡ଼େଲ୍‌ର ଗାଡ଼ି। ଆମେରିକା ୟୁରୋପ ବା ଅନ୍ୟ ଦେଶରେ ଯେମିତି ବିଭିନ୍ନ କିସମର ଗାଡ଼ି ରାସ୍ତାରେ ଯିବାର ଦେଖାଯାଏ, ଏଠି ସେପରି ଦେଖିଲି ନାହିଁ । ଲକ୍ଷ ଲକ୍ଷ ଗାଡ଼ି ଏକରକମର। ଅତ୍ୟନ୍ତ ଶୃଙ୍ଖଳିତ ରାସ୍ତାଘାଟ । ହୋଟେଲରୁ ମୋତେ ଏକ ପରିଚୟ ପତ୍ର ମିଳିଗଲା । ପାଦରେ ଚାଲିଚାଲି ଆଖପାଖରେ ବୁଲାବୁଲି କରି ଦୋକାନବଜାର ସବୁ ଦେଖିଲି । ଦୋକାନ ମାନଙ୍କରେ ଆଦୌ ଭିଡ଼ ନାହିଁ । କ୍ରେତାଙ୍କ ତୁଳନାରେ ବିକ୍ରେତା ମାନଙ୍କ ସଂଖ୍ୟା ଅଧିକ ଜଣାପଡୁଥାଏ । ଅଧିକାଂଶ ବିକ୍ରେତା ଝିଅ ବା ମହିଳା । ଗୋଟିଏ ଲୁଗା ଦୋକାନରେ ପଶିଯାଇ ଭାରତୀୟ ଶାଢ଼ୀ ଖୋଜିଲି । ଦୋକାନୀ ସିନ୍ଥେଟିକ୍ ଶାଢ଼ୀ ସବୁ ଦେଖାଇଲେ । ଆମେରିକା ତୁଳନାରେ ଖୁବ୍ ଶସ୍ତା । ଏଠି ସେତେବେଳେ ଗୋଟିଏ ଆମେରିକାନ୍ ଡଲାର ଦେଲେ ୩୬୦ ଜାପାନୀ ୟେନ୍ ମିଳୁଥାଏ । ସେତେବେଳେ ଏକ ଆମେରିକାନ୍ ଡଲାରକୁ ଭାରତୀୟ ମୁଦ୍ରା ମାତ୍ର ସାତଟଙ୍କା ଆଠଣା ଥାଏ । ସେ ଦୋକାନରୁ ତିନିଖଣ୍ଡ ଶାଢ଼ୀ କିଣିଲି । ହୋଟେଲକୁ ଫେରିଆସି ରାତ୍ରି ଯାପନ ପରେ ତାପରଦିନ ସକାଳେ ଜଳଖିଆ ଖାଇ ଟ୍ରାନ୍‌ଜିଷ୍ଟର ମାର୍କେଟକୁ ଗଲି, ହୋଟେଲ୍‌ର୍ ଡେସ୍କରୁ ସେହି ମାର୍କେଟକୁ ବାଟ ପଚାରି ବୁଝି ରାସ୍ତାରେ ଚାଲି ଚାଲି ଟୋକିଓ ସହର ଦେଖି ଦେଖି ପ୍ରାୟ ଦୁଇଘଣ୍ଟା ପରେ ସେଠି ପହଞ୍ଚିଲି । ଫୁଟପାଥିରେ ଆମ ଦେଶର ହାଟ ବଜାରରେ ସାରୁ, ବାଇଗଣ, କୋବି, ମୂଳା ଆଦି ଗଦା କରି ବିକ୍ରୀ କଲାପରି ହାଟ୍‌ରେ ଗଦା ଗଦା ଟ୍ରାନ୍‌ଜିଷ୍ଟର ରେଡ଼ିଓ ଗଦେଇରଖି ଲୋକେ ବିକ୍ରି କରୁଥାନ୍ତି । ପ୍ରଥମେ ଛୋଟ ଛୋଟ ପକେଟ୍ ରେଡ଼ିଓ ବାଛି ଘରେ ବିଭିନ୍ନ ସମ୍ପର୍କୀୟଙ୍କୁ ଉପହାର ଦେବାକୁ ଖୁବ୍ କମ୍ ଦାମ୍‌ରେ ଦଶ ବାରଟି କିଣିଲି । ତାପରେ ବାପାଙ୍କ ପାଇଁ ଗୋଟିଏ ବଡ଼ ରେଡ଼ିଓ କିଣି କାନ୍ଧରେ ଝୁଲାଇ ଫେରିଲି ।

ବାଟରେ ଧାଡ଼ି ଧାଡ଼ି ପାଷ୍ଟ୍ରି ଦୋକାନ । ବିଭିନ୍ନ କିସମର କେକ୍, କାଣ୍ଡି ଓ ପାଷ୍ଟ୍ରିମାନ ମିଳୁଥାଏ । ଗୋଟିଏ ଦୋକାନକୁ ପଶିଗଲି । ଛଅ ସାତ ଜଣ ତରୁଣୀ ବିକ୍ରୀ ଦାୟିତ୍ୱରେ ଥାଆନ୍ତି ।

ପାଷ୍ଟ୍ରି ଗୁଡ଼ିକର ଦାମ୍ ବୁଝିବାକୁ ଇଂରାଜୀରେ ସେମାନଙ୍କୁ ପଚାରିବା ମାତ୍ରେ ସମସ୍ତେ ଖିଲ୍‌ଖିଲ୍ ହୋଇ ହସି ଉଠିଲେ । ଭାବିଲି ମୋତେ ସେମାନେ ଥଟ୍ଟା କରୁଛନ୍ତି । ପୁଣି ଥରେ ମୁଁ ଚାହୁଁଥିବା ପାଷ୍ଟ୍ରିରେ ହାତମାରି ଦାମ ପଚାରିବାରେ ସମସ୍ତେ ହସରେ ଫାଟି ପଡ଼ିଲେ । ମୁଁ ଜାପାନୀ ଭାଷା ନ ଜାଣି ଇଂରାଜୀରେ କହୁ ଥିବାରୁ ସେମାନେ ମୋତେ ଥଟ୍ଟା କଲାପରି ଲାଗୁଥାଏ । ସେଠାରେ ଆଉ ଅଧିକ ସମୟ ଠିଆ

ନହୋଇ ରାସ୍ତା ଉପରକୁ ଚାଲି ଆସିଲି । ସେ ବାଟେ ଯାଉଥିବା ଜାପାନୀ ଲୋକଙ୍କୁ ଜଣ ଜଣ କରି ପଚାରିଲି "ଡୁ ୟୁ ନୋ ଇଂଲିଶ୍" ? ଚାରି ପାଞ୍ଚ ଜଣଙ୍କ ପରେ ଜଣେ ଲୋକ ମୋତେ ହଁ କହିବାରୁ ପାଷ୍ଟି କିଣିବାରେ ମୋତେ ସାହାଯ୍ୟ କରିବାକୁ ତାଙ୍କୁ ଅନୁରୋଧ କଲି । ଭଦ୍ରଲୋକ ସେ ଦୋକାନରେ ପଶି ମୋତେ ସାହାଯ୍ୟ କଲେ । ଝିଅମାନେ ଚୁପ୍‌ଚାପ୍ ମୋତେ ଜିନିଷ ଦେଇ ପଇସା ରଖିଲେ । ଆଉ ଅଧିକା ନବୁଲି ହୋଟେଲକୁ ଆସିଲି । ସେ ଦିନ ରାତ୍ରି ବିତାଇ ତାପର ଦିନ ହଂକଂ ଫେରିବାକୁ ଅପରାହ୍ନ ତିନିଟାରେ ବିମାନଘାଟୀକୁ ଯିବା କଥା । ସକାଳ ଜଳଖିଆ ଖାଇସାରି ପ୍ରାୟ ଦଶଟା ସୁଦ୍ଧା ପୁଣି ବଜାରକୁ ବାହାରିଲି । ଦୁଇ ତିନିଟି ଦୋକାନରୁ କିଛି ଜିନିଷ କିଣିସାରି ହୋଟେଲକୁ ଫେରି ମୋର ସୁଟ୍‌କେଶ୍ ସଜାଡ଼ି ଟାକ୍ସିଟାଏ କରି ପ୍ରାୟ ଦୁଇଟା ସୁଦ୍ଧା ବିମାନ ଘାଟୀକୁ ବାହାରିଲି । ଠିକ୍ ହୋଟେଲ୍ ଗେଟ୍‌ରୁ ବାହାରି ରାସ୍ତା ଧରିଲା ବେଳକୁ ବିପରୀତ ଦିଗରୁ ଗୋଟିଏ ଟାକ୍ସିରେ ଦୁଇଜଣ ଲୋକ ଆସି ମୋ ଟାକ୍ସିକୁ ଅଟକାଇଲେ । ସେମାନେ ମୋତେ ଗୋଟିଏ ଲଫାଫା ଦେଖାଇଲେ । ଟାକ୍ସିଚାଳକ ମୋତେ ପଚାରିଲେ ଏ ଲଫାଫା ତୁମର କି ? ଦେଖିଲି ସେଇଟା ମୋର ବିମାନ ଯାତ୍ରା ଟିକେଟ୍ । ତାଙ୍କ ଦୋକାନରେ ସଉଦା କିଣିସାରି ମୋ ବ୍ୟାଗ୍‌ରେ ଭରିଲା ବେଳେ ଏହି ଲଫାଫାଟି ତାଙ୍କ ଦୋକାନ ଡେସ୍କରେ ଛାଡ଼ି ଦେଇ ଆସିଥିଲି । ସେମାନେ ଟିକେଟ୍ ଦେଖି ମୋର ବିମାନ ଯାତ୍ରାସମୟ ହୋଇ ଯାଉଥିବା ଜାଣି ସାଙ୍ଗେସାଙ୍ଗେ ଟାକ୍ସିକରି ହୋଟେଲ୍ ଟାକାନାୱାକୁ ଧାଇଁଛନ୍ତି । କୃତଜ୍ଞତାରେ ମୋ ମୁଣ୍ଡ ନଇଁଗଲା । ଜଣେ ବିଦେଶୀ ଗ୍ରାହକ କାଳେ ଅସୁବିଧାରେ ପଡ଼ିବ ବୋଲି ଦୋକାନ ବନ୍ଦକରି ସେମାନେ ସାହାଯ୍ୟ କରିବାକୁ ଧାଇଁଛନ୍ତି ।

ଏବେ ଟିକେଟ୍ ନଥାଇ ମୁଁ ବିମାନରେ ଉଠି ପାରିନଥାନ୍ତି । ଓ ତାପରେ ମୋତେ ଖୁବ୍ ହଇରାଣ ହେବାକୁ ପଡ଼ିଥାନ୍ତା । ଟୋକିଓରେ ରହିବା ମିଆଦ ମୋର ପୂରି ଯାଇଥିଲା । ଟିକେଟ ହଜାଇ ମୁଁ ପାଗଳ ପରି ହୋଇଥାନ୍ତି । ଘରକୁ ଫେରିବା ଅସମ୍ଭବ ହୋଇ ପଡ଼ିଥାନ୍ତା । ଏ ବ୍ୟକ୍ତିମାନେ ମୋର ବହୁତ ଉପକାର କରିଛନ୍ତି । ସେମାନଙ୍କୁ ଟାକ୍ସିଭଡ଼ା ଦେଇ ଧନ୍ୟବାଦ ଜଣାଇଲି । ବାଟସାରା ଭାବୁଥିଲି କେତେ ମହତ୍ ଲୋକ ଏମାନେ ! ଆମ ଦେଶରେ କୌଣସି ଦୋକାନୀ ନିଜର ଦୋକାନ ବନ୍ଦକରି ଜଣେ ଗ୍ରାହକର ଟିକେଟ୍ ଧରି ହାତରୁ ଟାକ୍ସିଭଡ଼ା ଦେଇ ସେ ଲୋକକୁ ଖୋଜି ଖୋଜି ବୁଲି ନଥାନ୍ତା । ଏଇ ଗୁଣ ଲାଗି ଜାପାନୀ ଜାତି ଏତେ ମହାନ୍ ହୋଇଛି । ତରତର ହୋଇ ବିମାନ ବନ୍ଦରକୁ ଆସୁଥିବାରୁ ପରୋପକାରୀ ଲୋକମାନଙ୍କ ପ୍ରତି ମୋ ହୃଦୟର କୃତଜ୍ଞତା ଠିକ୍‌ଭାବେ ଜଣାଇ ପାରିଲି ନାହିଁ ।

ମୋ ଦେଶ ଲୋକଙ୍କଠାରେ ଏପ୍ରକାର ମନୋବୃତ୍ତି କେବେ କଳ୍ପନା କରିହେବ କିମ୍ବା କେବେ ଦେଖିବି ବୋଲି ଆଶା କରିପାରୁ ନଥିଲି । ସେମାନଙ୍କର ମାନବିକତା ଆମଠାରୁ ବହୁତ ଊର୍ଦ୍ଧ୍ୱରେ ଥିବାର ଅନୁଭବ କଲି । ମୋ ଟିକେଟ ହଜିଥିଲେ କେତେ ଅସୁବିଧାର ସମ୍ମୁଖୀନ ହୋଇଥାଆନ୍ତି ତାହା କଳନା କରିପାରୁ ନଥିଲି । ସେହି ଲୋକଙ୍କର ଉପକାର ଜୀବନରେ ଶୁଝିପାରିବି ନାହିଁ । ଏଭଳି ଜାତୀୟ ଚରିତ୍ର ଯୋଗୁଁ ଜାପାନ ପୃଥିବୀରେ ଏକ ବୃହତ୍ ଶକ୍ତିଭାବେ ମୁଣ୍ଡ ଟେକିଥିଲା । ଆମେରିକାନ୍ ମାନେ ପରମାଣୁ ବୋମା ତିଆରି କରି ହିରୋସୀମା ଓ ନାଗାସାକୀରେ ପକାଇ ଲକ୍ଷ ଲକ୍ଷ ଜାପାନୀଙ୍କୁ ହତ୍ୟା କରିନଥିଲେ ଏହି ଦେଶ ମିତ୍ର ଶକ୍ତିକୁ ହରାଇ ପୃଥିବୀରେ ପ୍ରାଧାନ୍ୟ ବିସ୍ତାର କରିଥାନ୍ତା । ଦ୍ୱିତୀୟ ମହାଯୁଦ୍ଧରେ ପରାଜିତ ହେବାପରେ ଏ ଦେଶରେ ସୈନ୍ୟବାହିନୀ ନ ରହିବାର ଚୁକ୍ତି ହେଲା । ଜାପାନର ସୁରକ୍ଷା ଦାୟିତ୍ୱ ଆମେରିକା ହାତରେ ରହିଲା । ଏ ଦେଶର ଲୋକେ କୁଟୀରଶିଳ୍ପ ଉପରେ ପ୍ରାଧାନ୍ୟ ଦେଲେ । ଫଳରେ ପୃଥିବୀର ଅଧିକାଂଶ ଦେଶରେ ଜାପାନ ତିଆରି ଜିନିଷ ଭରିଗଲା । ଯୁକ୍ତରାଷ୍ଟ୍ର ଆମେରିକାର ପ୍ରତି ଘରେ ଅତିକମ୍‌ରେ ୧୫ / ୨୦ ଟି ଜାପାନ ତିଆରି ଜିନିଷ ଦେଖିବାକୁ ମିଳୁଥିଲା । ପେଟପୋଷିବା ପାଇଁ ଜାପାନୀ ଲୋକେ ଅନ୍ୟ କୌଣସି ଦେଶରେ ଯାଇ ମୁଣ୍ଡ ବିକିବା ଦେଖାଯାଏ ନାହିଁ । ଭୂମିକମ୍ପ ଓ ଆଗ୍ନେୟଗିରିର ଦେଶ ହୋଇଥିଲେ ମଧ୍ୟ ଦୈବୀ ଦୁର୍ବିପାକ ଯୋଗୁଁ ଜାପାନବାସୀ କେବେ ବାହାର ଦେଶ ମାନଙ୍କର ସାହାଯ୍ୟପ୍ରାର୍ଥୀ ହୋଇ ନାହାନ୍ତି, କିମ୍ବା ଦେଶଛାଡ଼ି ଅନ୍ୟ ଦେଶରେ ଯାଇ ବସବାସ କରିନାହାନ୍ତି । ନିଜର ଜାତୀୟତାକୁ ନେଇ ସେମାନେ ଗର୍ବ କରନ୍ତି । ଜାତୀୟ ଚରିତ୍ରକୁ ସବୁ କ୍ଷେତ୍ରରେ ଉନ୍ନତକରି ରଖିବାଲାଗି ସେମାନେ ପ୍ରତିଜ୍ଞାବଦ୍ଧ । ମୋ ପ୍ରତି ସେମାନେ ଯେଉଁ ଉପକାର କଲେ ତାହା ଚିରଦିନ ପାଇଁ ମୁଁ ଭୁଲି ପାରିବି ନାହିଁ ।

ଏଇକଥା ଭାବି ଭାବି ବିମାନଘାଟୀକୁ ଯାଇ ମୋ ଟିକେଟ ଦେଖାଇ ବୋର୍ଡ଼ିଂକାର୍ଡ଼ ପାଇଗଲି । ସେତେବେଳେ ସିକ୍ୟୁରିଟି ଚେକ୍ ବ୍ୟବସ୍ଥା ନଥିଲା । ଯାତ୍ରୀମାନେ ଲାଓଞ୍ଜରେ ବସି ବିମାନରେ ଉଡ଼ିବା ସମୟକୁ ଅପେକ୍ଷା କରୁଥିଲେ । ମୁଁ ଯାଇ ଗୋଟିଏ ବେଞ୍ଚରେ ବସିପଡ଼ିଲି, ହାତରେ ଦୁଇଟା ହାଣ୍ଡବ୍ୟାଗ୍, କାନ୍ଧରେ ଗୋଟିଏ ରେଡ଼ିଓ ଏବଂ ବେକରେ କ୍ୟାମେରାଟା ଝୁଲୁଥାଏ । ଟିକେଟ ଆଣି ଦେଇନଥିଲେ ଏବେ ମୋର ଅବସ୍ଥା କ'ଣ ହୋଇଥାନ୍ତା ବୋଲି ଭାବୁଥାଏ । ବିମାନରେ ଉଠିବାର ଘୋଷଣା ଶୁଣି ତରବର ହୋଇ ଉଠିପଡ଼ି ବିମାନରେ ଯାଇ ବସି ପଡ଼ିଲି । କ'ଣ ଗୋଟାଏ ଛାଡ଼ି ଆସିଲା ପରି ଲାଗୁଥାଏ । ଦେଖିଲି ହାତରେ ଥିବା

ଛୋଟ ହାଣ୍ଡ୍ ବ୍ୟାଗ୍‌ଟି ବେଞ୍ଚ୍ ଉପରେ ଛାଡ଼ି ଦେଇଛି । କାହାକୁ କିଛି ନକହି ବିମାନରୁ ଓହ୍ଲାଇ ବସିଥିବା ବେଞ୍ଚ୍ ଆଡ଼କୁ ଦୌଡ଼ିଲି । ମୋ ପଛେ ପଛେ ଦୁଇଜଣ ଗାର୍ଡ଼ ମଧ୍ୟ ଦୌଡ଼ିଲେ । ବ୍ୟାଗ୍‌ଟା ସେଇ ବେଞ୍ଚରେ ଥିଲା । ତାକୁ ଉଠାଇ ଫେରି ଆସିଲା ବେଳକୁ ସେମାନେ ମୋତେ ଧରିନେଲେ । ସେମାନଙ୍କୁ ବୋର୍ଡ଼ିଂ ପାସ୍ ଦେଖାଇ ଏପରି କରିଥିବାରୁ ଭୁଲ୍ ମାଗିବା ପରେ ସେମାନେ ମୋତେ ବିମାନ ଭିତରକୁ ଛାଡ଼ି ଦେଲେ । ବିମାନ ପରିଚାରିକା ମଧ୍ୟ ମୋତେ ଏପରି କେବେ ଆଉ ନ କରିବାକୁ ସାବଧାନ କରାଇ ଦେଲେ । ବିମାନରୁ ଓହ୍ଲାଇ ଧାଇଁ ପଳାଇବା ବେଳେ ଗାର୍ଡ଼ମାନେ ମୋ ଉପରେ ପଛରୁ ଗୁଳିକରି ମାରି ଦେଇ ପାରିଥାନ୍ତେ। ସେମାନେ ମୋତେ ଛାଡ଼ି ଦେଇଛନ୍ତି, ତାହାହିଁ ମୋ ଭାଗ୍ୟର କଥା ।

ଏସବୁ ଶୁଣିବା ପରେ ମୋ ମୁଣ୍ଡ ଆଉ କାମ କରୁନଥାଏ । ଚୁପ୍‌ଚାପ୍ ବିମାନରେ ବସି ପ୍ରକୃତିସ୍ଥ ହେବାକୁ ଚେଷ୍ଟା କଲି । ଇଚ୍ଛା ହେଉଥାଏ ଆଉ ହଂକଂରେ ନ ଓହ୍ଲାଇ ସିଧା କଲିକତା ଫେରିଯିବାକୁ । ଘରକୁ ଫେରିବା ପୂର୍ବରୁ ଆଉ ଦୁଇଟି ସ୍ଥାନରେ ରହଣି ।

ପାଞ୍ଚଘଣ୍ଟା ବିମାନଯାତ୍ରା ପରେ ହଂକଂରେ ପହଞ୍ଚି ବି.ଓ.ଏ.ସି. ଏୟାରଲାଇନ୍ ଦ୍ୱାରା ମୋ ପାଇଁ ସ୍ଥିରିକୃତ ଏକ ବଡ଼ ହୋଟେଲରେ ଯାଇ ରହିଲି । ହୋଟେଲ ଟାକାନାୱା ପରି ଏହା ମଧ୍ୟ ଏକ ସମ୍ଭ୍ରାନ୍ତ ହୋଟେଲ୍। ସେଦିନ ଆଉ କୁଆଡ଼େ ନଯାଇ ହୋଟେଲ୍‌ରେ ରହିଲି ଓ ପରଦିନ କୁଆଡ଼େ ବୁଲିଯିବା କଥା ବୁଝାବୁଝି କଲି । ଫ୍ଲୋଟିଂମାର୍କେଟ ବା ଭାସମାନବଜାର କଥାଶୁଣି ସେ ସ୍ଥାନ ଦେଖିବାକୁ ମୋର ଇଚ୍ଛା ହେଲା ।

ପରଦିନ ସକାଳେ ପ୍ରାୟ ନଅଟା ସୁଦ୍ଧା ଗୋଟିଏ ଡଙ୍ଗା ଭଡ଼ାକରି ଫ୍ଲୋଟିଂମାର୍କେଟ୍ ଦେଖିବାକୁ ଗଲି । ସମୁଦ୍ରର ଦନ୍ତୁରିତ ଉପକୂଳରେ ଦକ୍ଷିଣ ଚାଇନା ସାଗରର ସ୍ଥିର ଜଳରାଶି ଉପରେ ହଜାର ହଜାର ଛୋଟବଡ଼ ଡଙ୍ଗା ଭାସୁଥାଏ । ସବୁ ଡଙ୍ଗାରେ ଘର ତିଆରି କରାଯାଇ ଦୋକାନ ହୋଇଥାଏ । କେଉଁଠି ପରିବା ବିକ୍ରୀ ହେଉଛି ତ କେଉଁଠି ମାଛ, ମାଂସ, ଅଣ୍ଡାର ଦୋକାନ । ଲୁଗାପଟା, ବାସନ, ତେଜରାତି ବା ବିଦେଶୀ ଜିନିଷପତ୍ରର ବଜାର ସେହି ଡଙ୍ଗା ମାନଙ୍କରେ ଥାଏ। ରେଡ଼ିଓ, ଘଡ଼ି, ଛତା, ଅତର, ପାଉଡ଼ର, ଫୋନ୍ ଆଦି ବିଦେଶରୁ ଆସୁଥିବା ସୌଖୀନ୍ ଜିନିଷପତ୍ର କମ୍ ଦାମ୍‌ରେ ମିଳୁଥାଏ । କଲିକତା ବିମାନ ବନ୍ଦରରେ ଧରପଗଡ଼ ହେବା ଭୟରେ ମୁଁ କିଛି କିଣିଲି ନାହିଁ କେବଳ ଗୋଟିଏ, ଦୁଇଟି ଛତା ଓ ହାତଘଡ଼ି ବାଛି କିଣିବା ପରେ ଲୋକମାନଙ୍କର ରହଣି ସ୍ଥଳ ଦେଖାଇବାକୁ ଆମ ବୋଟ ଚାଳକ ନେଇଗଲା ।

ହଂକଂରେ ଘର କରିବା ପାଇଁ ସ୍ଥଳଭାଗରେ ଜମି ନାହିଁ । ତେଣୁ ଗରିବଲୋକେ ଡଙ୍ଗାରେ ବସବାସ କରୁଛନ୍ତି ।

ପିଲାଛୁଆଙ୍କୁ ନେଇ ଲୋକେ ଏଇ ଡଙ୍ଗାରେ ବାସ କରନ୍ତି । ବଡ଼ ବଡ଼ ନାଆ ଭଳି ଡଙ୍ଗାରେ ଶୋଇବା, ବସିବା, ଡ୍ରଇଂରୁମ୍, ରୋଷେଇ ଘର, ପାଇଖାନା ଆଦି ସବୁ ଅଛି । କୂଳରେ ଥିବା ଜଳଯୋଗାଣ କେନ୍ଦ୍ର ମାନଙ୍କରୁ ସେମାନଙ୍କୁ ପିଇବା ପାଣି ମିଳେ । ଛୋଟଛୋଟ ପିଲାମାନେ ସେ ଘରେ କାରବାର ହେବା ଦେଖି ମୋତେ ଭାରୀ ଡର ଲାଗୁଥାଏ । କେହି ପାଣିରେ ଯଦି ଖସିପଡ଼ିବ, ତାହାହେଲେ ବିପଦ । ଝଡ଼ବତାସ ବା ଘୂର୍ଣ୍ଣିବାତ୍ୟା ହେଲେ ସେସବୁ ଘର ବିପନ୍ନ ହୋଇ ପଡ଼ିବାର ପ୍ରବଳ ଭୟ ଅଛି । ତଥାପି ଲୋକେ ଏଇ ଡଙ୍ଗାରେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଚଳୁଛନ୍ତି ।

ଗୋଟାଏ ହୁଲି ଡଙ୍ଗାରେ ଚାରି ପାଞ୍ଚଜଣ କିଶୋର ହାତ ହଲାଇ ପାଟି କଲେ "ପାଣିକୁ ଆମେରିକାନ୍ ଡଲାର ଫିଙ୍ଗି ଦେଖ" । ମୁଁ ଗୋଟିଏ ହଂକଂ ଡଲାର କାଢ଼ିଲି । ଗୋଟିଏ ଆମେରିକାନ୍ ଡଲାରକୁ ଛଅଟି ହଂକଂ ଡଲାର୍ ମିଳୁଥାଏ । ସେ ପିଲା ପାଟିକଲେ "ନୋ ହଂକଂ ଡଲାର୍ । ଆମେରିକାନ୍ ଡଲାର ଓନ୍‌ଲି ।" ଆମ ଭିତରୁ ଜଣେ ଆମେରିକାନ୍ ଡଲାର୍‌ଟିଏ ପାଣିକୁ ଫିଙ୍ଗି ଦେଲେ । ଗୋଟାଏ ପିଲା ସେ ହୁଲି ଡଙ୍ଗାରୁ ଡେଇଁ ପଡ଼ି ପାଣି ଭିତରେ ବୁଡ଼ି ସେ ଡଲାରକୁ ଉଠାଇ ଆଣିଲା । ଆମ ବୋଟ ଚାଳକ କହିଲା ଏଠି ବାର ଚଉଦ ଫୁଟ ପାଣି ହେବ । ମାତ୍ର ପିଲାଟା ପାଣିକୁଆ ପରି ଗଭୀର ଜଳରେ ବୁଡ଼ି ଡଲାରଟାକୁ ସାଙ୍ଗେ ସାଙ୍ଗେ ଖୋଜି ଆଣିଲା । ଆମେ ସବୁ ଗୋଟିଏ ଗୋଟିଏ ଆମେରିକାନ୍ ଡଲାର ଫିଙ୍ଗି ସେ ପିଲାମାନେ ସବୁ ଗୁଡ଼ିକ ଖୋଜି ଆଣିବାର ଦେଖିଲୁ । ଏଥିରୁ ଜଣାଗଲା ଯେ, ସେସବୁ ଘର ଭିତରୁ ଯେକୌଣସି ଜିନିଷ ପାଣିରେ ପଡ଼ିଗଲେ ତାହା ଉଦ୍ଧାର କରିବାର କୌଣସି ଅସୁବିଧା ନାହିଁ ।

କେଡ଼େ ବିଚିତ୍ର ଏ ପୃଥିବୀ ? କଥାରେ ଅଛି "ନଦୀକେ ବାଙ୍କ୍ ଦେଶ୍‌କେ ଫାଙ୍କ୍" । କେଉଁ ଦେଶରେ ଶହେ ମହଲାରୁ ଅଧିକ ବଡ଼ ବଡ଼ କୋଠା ତିଆରି କରି ଲୋକେ ରହୁଛନ୍ତି ତ କେଉଁଠି "ଇଗ୍ଲୁ"ରେ ଲୋକେ ବାସ କରୁଛନ୍ତି । କେଉଁଠି ଜଙ୍ଗଲ ପାହାଡ଼ର ଗୁମ୍ଫାରେ ମଣିଷ ଲଙ୍ଗଳା ହୋଇ ରହୁଛି ତ କେଉଁଠି ପାଣି ଭିତରେ ଘର କରି ବସ୍ତିରେ ରହିଲା ଭଳି ସାମାଜିକ ଜୀବନ ବିତାଉଛି । ଆଫ୍ରିକା ମହାଦେଶର ଘଞ୍ଚ ଜଙ୍ଗଲ ମଧ୍ୟରେ ମଣିଷ ଗଛ ଉପରେ ମଞ୍ଚାବାନ୍ଧି ରହିବାର ମଧ୍ୟ ଦେଖାଯାଏ । ହଂକଂରେ ସେହି ନୌକାବାସୀଙ୍କ ଘର ଭିତରକୁ ଯାଇ ସେମାନଙ୍କ ଚଳଣି ଦେଖିବାକୁ

ଇଚ୍ଛା ହେଉଥିଲା । ମାତ୍ର ଗୋଟିଏ ଦଳରେ ଆମେ କେତେଜଣ ଦର୍ଶକ ଭାସମାନ ବଜାର (ଫ୍ଲୋଟିଂ ମାର୍କେଟ୍) ଦେଖିବାକୁ ଯାଇଥିବାରୁ ସମସ୍ତେ ଏକାଠି ଫେରି ଆସିଲୁ । ତାପରଦିନ ମଧ୍ୟାହ୍ନରେ କଲିକତା ଯିବାପାଇଁ ବିମାନ ଘାଟୀକୁ ଆସିଲି । ଟୋକିଓରୁ ଆସୁଥିବା ବି.ଓ.ଏସି ବିମାନ ହଂକଂରେ ମାତ୍ର ଅଧଘଣ୍ଟାଏ ରହିଲା । ସେହି ବିମାନରେ ମୁଁ ଆସି ତିନିଘଣ୍ଟା ପରେ କଲିକତାରେ ପହଞ୍ଚିଲି ।

କଲିକତାରେ ଏହି ବିମାନରୁ ଆମେ ମାତ୍ର ଦୁଇ ତିନିଜଣ ଯାତ୍ରୀ ଓହ୍ଲାଇଲୁ । ବାକୀ ସମସ୍ତେ ବମ୍ବେ ଓ ଲଣ୍ଡନ ଯାତ୍ରୀ ଥିଲେ । ବିମାନରୁ ଜିନିଷପତ୍ର ନେଇ ମୁଁ କଷ୍ଟମ୍ ଡେସ୍କ ଆଡ଼େ ଗଲି । ଜଣେ ବଙ୍ଗୀୟ କଷ୍ଟମ୍ ଅଫିସର ମୋତେ ପଚାରିଲେ ଆପଣ ଆମେରିକାରେ କେତେବର୍ଷ ରହିଲେ ? କହିଲି, ପାଞ୍ଚବର୍ଷ । ସେ ମୋ ଜିନିଷ ପତ୍ର ଦେଖି କହିଲେ, ପାଞ୍ଚବର୍ଷ ରହି ଘରକୁ ଆସିବାବେଳେ ଆପଣ ଏତିକି ମାତ୍ର ଜିନିଷ କ'ଣ ଆଣିଛନ୍ତି ? ଲୋକମାନେ ଚାରି ଛ ମାସ ଆମେରିକାରେ ରହି ଯେତେ ଦାମିକା ଜିନିଷପତ୍ର ଆଣୁଛନ୍ତି ଇଏ ତାର ଦଶଭାଗରୁ ଭାଗେ ମଧ୍ୟ ହେବନାହିଁ । ସେ କହିଲେ ଆପଣ ଯାଆନ୍ତୁ । ଏଥିରେ ମୋର ଦେଖିଲାଭଳି କିଛି ଜିନିଷ ନାହିଁ । ମୋ ପାସ୍‌ପୋର୍ଟରେ ସିଲ୍ ବାଡ଼େଇ ସେ କହିଲେ ଏତେଦିନ ପରେ ଆପଣ ଘରକୁ ଫେରୁଛନ୍ତି । ନିଜ ଲୋକଙ୍କ ପାଇଁ କଲିକତା ବଜାରରୁ କିଛି ଭଲ ଜିନିଷ କିଣି ନେଇ ଯାଆନ୍ତୁ । କାହାକୁ ଦେଲାଭଳି ଭଲ ଜିନିଷ ଏଥିରେ କିଛି ନାହିଁ ।

ବିମାନ ଘାଟୀରୁ ଗ୍ରାଣ୍ଡହୋଟେଲ୍ କୋଚ୍‌ରେ ସେହି ହୋଟେଲକୁ ଆସିଲି । ଦୁଇଦିନ ପରେ ଭୁବନେଶ୍ୱରକୁ ବିମାନ ଯାତ୍ରା କରିବା କଥା " ଏ ଦୁଇଦିନ ଏୟାର ଲାଇନ୍ ଖର୍ଚ୍ଚରେ ଗ୍ରାଣ୍ଡ ହୋଟେଲରେ ରହି ଗରମ ଜଳବାୟୁ ସହିତ ଅଭ୍ୟସ୍ତ ହେବାକୁ ପଡ଼ିବ । କାରଣ ସାଉଥ୍ ଡାକୋଟା ଜଳବାୟୁ ଅତ୍ୟନ୍ତ ଥଣ୍ଡା । ସେଠି ଦୀର୍ଘ ଚାରିବର୍ଷ ଆଠମାସ ବିତାଇ ଏଠାକାର ଭାଦ୍ରବମାସର ଖରା ଓ ଗୁଳୁଗୁଳିରେ ଦେହ ଖରାପ ହେବାର ଭୟ ଅଛି । ତାଛଡ଼ା କଲିକତାରେ ପଲ୍‌ପ୍ରାସର୍‌ଙ୍କ ବଡ଼ଭାଇ ଘରକୁ ଯାଇ ସେ ପଠାଇଥିବା ଜିନିଷ ଦେଇ ଆସିବାକୁ ହେବ। ୧୯୬୦ ମସିହାରେ ଦେଖିଥିବା କଲିକତା ଓ ଆଜି ୧୯୬୮ ମସିହାର କଲିକତା ଭିତରେ ମୁଁ ସେପରି କୌଣସି ପ୍ରଭେଦ ଦେଖୁ ନଥିଲି ।

ଆଜି ଘରକୁ ଫେରିବାର ଦିନ । ଗ୍ରାଣ୍ଡ ହୋଟେଲ୍ କୋଚ୍‌ରେ ଦମ୍ ଦମ୍ ବିମାନ ବନ୍ଦରକୁ ଯାଇ ଭୁବନେଶ୍ୱର ପାଇଁ ସୁଟ୍‌କେଶ୍ ଦୁଇଟି କାଉଣ୍ଟର୍‌ରେ ଜିମା ଦେଲି । ଆମେ ପ୍ରାୟ ୨୬ / ୨୭ ଜଣ ଯାତ୍ରୀ ଗୋଟିଏ ପୁରୁଣା ଡାକୋଟା ବିମାନରେ

ଚଢ଼ିଲୁ । ସେତେବେଳେ ଦୈନିକ ଥରେମାତ୍ର ଏଇ ଗୋଟିଏ ଡାକୋଟା ବିମାନ ଭୁବନେଶ୍ୱର ଯାଇ ସେଠାରୁ ସନ୍ଧ୍ୟାରେ କଲିକତା ଫେରୁଥିଲା । ବିମାନରେ ବସିବାକୁ କେମିତି ଡରଡର ଲାଗୁଥାଏ । ବିମାନ ପରିଚାରିକା ବିମାନର ଦ୍ୱାରବନ୍ଦ କରିବା ପରେ ପାଇଲଟ ଯେତେବେଳେ ଇଞ୍ଜିନ୍‌ରେ ଷ୍ଟାର୍ଟ ଦେଲେ; ସେତେବେଳେ ସାମନାରେ ଥିବା ପ୍ରୋପେଲର୍‌ଟା ଘୁରିବାକୁ ଆରମ୍ଭ କରିବା ମାତ୍ରେ ବିମାନଟା ଖୁବ୍ ଜୋରରେ ହଲିବାକୁ ଲାଗିଲା। ଏମିତି କିଛି ସମୟ ଘୂରିଲେ ହୁଏତ ଏହା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିବା ପରି ମୋତେ ଲାଗୁଥାଏ। ତେବେ ପ୍ରୋପେଲର୍‌ର ବେଗ ବଢ଼ିଯିବା ପରେ ବିମାନ ହଲିବା ବନ୍ଦହୋଇ ଧିରେଧିରେ ଥରିବାକୁ ଲାଗିଲା । ଇଷ୍ଟ ଦେବତା ଗୋପାଳଙ୍କୁ ସ୍ମରଣ କଲି । ଦୀର୍ଘ ପାଞ୍ଚବର୍ଷ ପରେ ତାଙ୍କର ଦର୍ଶନ ମିଳିବ । ବାପାବୋଉ ସ୍ତ୍ରୀ ପିଲା ଆଦି ଆତ୍ମୀୟ ମାନଙ୍କୁ ଦେଖିବି । ବିମାନଟି ଆକାଶକୁ ଉଠିବା ବେଳେ ମେଘ ଭିତରେ ପ୍ରାୟ ପନ୍ଦରମିନିଟ ଗତି କଲା । ସେଇ ଘନ ବଉଦ ଭିତରୁ ସତେ ଯେପରି ବିମାନ ଭିତରକୁ କୁହୁଡ଼ିଆ ବଉଦ ପଶିଆସିବା ପରି ଲାଗୁଥାଏ । ପ୍ରାୟ ଚାଳିଶ ମିନିଟ ଉଡ଼ାଣ ପରେ ଆମେ ଭୁବନେଶ୍ୱର ବିମାନ ବନ୍ଦରରେ ପହଞ୍ଚି ଗଲୁ । ଅବଶ୍ୟ ଆଜି ୪୭ ବର୍ଷ ପରେ ପରିସ୍ଥିତି ଅନେକ ବଦଳିଛି । ଆଧୁନିକ ଢାଞ୍ଚାରେ ନୂଆ ଯାତ୍ରୀ ସେବା ଟର୍ମିନାଲ୍ ତିଆରି ହୋଇଛି ଓ ଗାଡ଼ି ପାର୍କିଂ ଲଟ୍ ବହୁତ ବଢ଼ିଯାଇଛି । ଏବେ ଭୁବନେଶ୍ୱର ବିମାନଘାଟୀରେ ପ୍ରତ୍ୟହ ବିଭିନ୍ନ ବିମାନ କମ୍ପାନୀ ଜରିଆରେ ଏକ ହଜାରରୁ ଉର୍ଦ୍ଧ୍ୱ ଯାତ୍ରୀ ଦିଲ୍ଲୀ, ବମ୍ବେ, ହାଇଦ୍ରାବାଦ, ବାଙ୍ଗାଲୋର୍, କଲିକତା ଆଦି ବିଭିନ୍ନ ସ୍ଥାନକୁ ଯିବା ଆସିବା କରୁଛନ୍ତି । ସେକାଳର ପୁରୁଣା ଡାକୋଟା ବିମାନ ଆଉ ଦେଖିବାକୁ ମିଳୁନି । ତା ସ୍ଥାନରେ ଚାରିପାଞ୍ଚଟା ଏୟାରଲାଇନ୍‌ର ବଡ଼ ବଡ଼ ବୋଇଂ ଜେଟ୍ ବିମାନ ଏହି ବିମାନ ବନ୍ଦରକୁ ଯାତ୍ରୀ ନେବା ଆଣିବା କରୁଛନ୍ତି । ତଥାପି ଆନ୍ଧ୍ର, ପଶ୍ଚିମବଙ୍ଗ, ବିହାର ବା ମଧ୍ୟ ପ୍ରଦେଶ ତୁଳନାରେ ଭୁବନେଶ୍ୱର (ବିଜୁପଟ୍ଟନାୟକ) ବିମାନ ବନ୍ଦର ତୁଳନୀୟ ହେବାକୁ ଆହୁରି କିଛି ବର୍ଷ ଲାଗିଯିବ ।

ସେତେବେଳେ ଭୁବନେଶ୍ୱର ବିମାନଘାଟୀ ଚାରିପଟେ କେବଳ କଣ୍ଟା ତାର ବାଡ଼ ଦିଆ ଯାଇଥାଏ । ତାରବାଡ଼ ସେପଟେ ମୋ ପରିବାରର ଲୋକମାନେ ଠିଆ ହୋଇ ରହିଥାନ୍ତି । ସାମନାରେ ମୋ ବାପା ହାତରେ ଇଷ୍ଟ ଦେବତା ଗୋପାଳଜୀଉଙ୍କ ଛଡ଼ାଫୁଲ ହାର ଧରି ଅପେକ୍ଷା କରିଥାନ୍ତି । ପ୍ରଥମେ ଯାଇ ତାଙ୍କର ପାଦଧୂଳି ନେଲି । ମୋ ପିଲାମାନଙ୍କ ସହିତ ସ୍ନେହଲତା ଓ ତାଙ୍କ ପରିବାରର ସମସ୍ତେ ଉପସ୍ଥିତ ଥାଆନ୍ତି । ସମସ୍ତଙ୍କୁ ଦେଖି ଖୁବ୍ ଆନନ୍ଦ ଲାଗିଲା । ଏତେଦିନ ପରେ ମୋ ଜନ୍ମ ମାଟିରେ ପାଦ

ଦେଇ ମୁଁ ଧନ୍ୟ ହେଲି । କଟକର ସିଦ୍ଧେଶ୍ୱର ସାହିରେ ଥିବା ଶ୍ୱଶୁରଙ୍କ ଘରକୁ ଗଲୁ । ପରଦିନ ଗାଆଁକୁ ଯାଇ ଇଷ୍ଟଦେବତା ଗୋପାଳ ଜୀଉଙ୍କର ଦର୍ଶନ କରିବା ସହିତ ମାଆ, ବୋଉ, ଗୁରୁଜେଜେ ଓ ଗାଆଁର ସବୁ ଗୁରୁଜନ ମାନଙ୍କର ପାଦଧୂଳି ନେଲି । ଯୁକ୍ତରାଷ୍ଟ୍ର ଆମେରିକା ଛାଡ଼ିଲାବେଳେ ମୋତେ ଯେତିକି ଦୁଃଖ ଲାଗିଥିଲା, ଜନ୍ମ ମାଟିରେ ପାଦଦେଇ ସେସବୁ ଆପେ ଆପେ ପାଶୋରି ହୋଇଗଲା । ଦାଣ୍ଡ ପୋଖରୀରେ ଫୁଟିଥିବା କଇଁଫୁଲ ମାନଙ୍କୁ ଚାହିଁ ମୋର ପୁରୁଣା କୈଶୋର ବୟସର ସୁଖପ୍ରଦ ଦିନଗୁଡ଼ାକ ମୋ ମନ ପରଦାରେ ଭାସି ଉଠୁଥିଲା ।

ବୃକିଂସ୍ ଛାଡ଼ିବା ପୂର୍ବରୁ ସେଠାରେ ଥିବା ଅନେକ ଭାରତୀୟ ଛାତ୍ର ମୋତେ କହୁଥିଲେ ଦେଶକୁ ଫେରି ଯେତେବେଳେ ଏଠାକଥା ଭାବିବ, ସେତେବେଳେ ସାଙ୍ଗେ ସାଙ୍ଗେ ଭାରତଛାଡ଼ି ଏଠିକି ଫେରିଆସିବାକୁ ଇଚ୍ଛା ହେବ । କାରଣ ସେଠି ରହିବାକୁ ଏପରି ଘରଦ୍ୱାର ମିଳିବନି କାର୍ ଚଢ଼ିବାକୁ ନଥିବ କିମ୍ବା ଏପରି ଦୁଧ, ଲହୁଣୀ, ଆଇସ୍କ୍ରିମ୍, ମାଂସ, ମାଛ, ଫଳ ଆଦି ଖାଇବାକୁ ନଥିବ ।

ଗାଆଁରେ ପହଞ୍ଚି ତତ୍କାଳୀନ ପାଣିକାଦୁଅ ଭରା କଚ୍ଚା ରାସ୍ତା, ଲଣ୍ଠନ ଆଲୁଅ, ସାଇକେଲ, ଶଗଡ଼, ଆଦି ଦେଖି ମୁଁ ଆମେରିକା କଥା ଭୁଲି ଯାଇଥିଲି ।

ଆମେରିକାରେ ଚଢୁଥିବା କାର୍ ଛାଡ଼ି ମୋ ପୁରୁଣା ସାଇକେଲ୍‌ରେ ଚଢ଼ି ବୁଲିବାକୁ ମୋର ଟିକିଏମାତ୍ର ଦ୍ୱିଧା ନଥିଲା । ଭାବୁଥିଲି, ମୋ ଦେଶକୁ ଆମେରିକା ପରି ଗଢ଼ିବାପାଇଁ ମୋପରି ଉଚ୍ଚ ଶିକ୍ଷିତ ମାନଙ୍କର କର୍ତ୍ତବ୍ୟ । ଏଇଠିରହି ଦୁଃଖ କଷ୍ଟ ସହି ଦେଶଗଠନ ଲାଗି କାର୍ଯ୍ୟକଲେ କିଛି ହୋଇପାରିବ । ମାତ୍ର ନିଜ ସୁଖ ପାଇଁ ପିଲାଛୁଆଙ୍କୁ ଧରି ପୁଣି ଆମେରିକା ଫେରିଗଲେ ଦେଶପାଇଁ କିଛି କରି ହେବ ନାହିଁ । ଏଇଠିଥାଇ ଆମେରିକାରେ ଛାଡ଼ି ଆସିଥିବା ସୁଖ ସ୍ୱାଚ୍ଛନ୍ଦ୍ୟକୁ ମନେ ପକାଇବା ଆଉ ଚଳିବନାହିଁ । ଯେଉଁ ମାଟି, ପାଣି ଓ ପବନରେ ମୁଁ ବଢ଼ିଛି; ପୁଣିଥରେ ସେଇ ଜନ୍ମମାଟି, ମୋ ପରିବାର ଓ ଆତ୍ମୀୟ ସ୍ୱଜନ ମାନଙ୍କୁ ଛାଡ଼ି ନିଜର ପାର୍ଥୀବ ସୁଖଆଶାରେ ଆମେରିକାକୁ ଫେରିଯିବା କଥା ମୋ ମନକୁ ଆଦୌ ଆସୁନଥିଲା ।

## କର୍ମସଂସ୍ଥାନ

ଯୁକ୍ତରାଷ୍ଟ୍ର ଆମେରିକାରୁ ଫେରି ତତ୍କାଳୀନ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଡକ୍ଟର ଗଣେଶ୍ୱର ବିଶ୍ୱାଳଙ୍କୁ ମିଶାଇ ମୋର ବହୁ ହିତୈଷୀବନ୍ଧୁ ଓ ଆତ୍ମୀୟସ୍ୱଜନ ମାନଙ୍କୁ ଭେଟିଲି । ବନ୍ଧୁବାନ୍ଧବ ମାନଙ୍କ ଘରକୁ ଯାଇ ଗୁରୁଜନମାନଙ୍କର ଆର୍ଶୀବାଦ ସହିତ ସମବୟସ୍କ ବନ୍ଧୁ ମାନଙ୍କର ସ୍ନେହଶ୍ରଦ୍ଧା ଲାଭ କରିବାକୁ ଭଲ ଲାଗୁଥିଲା ।

କଟକ ଓ ଭୁବନେଶ୍ୱରରେ ଆମର ଅଧିକାଂଶ ବନ୍ଧୁବାନ୍ଧବ ରହୁଥିବାରୁ ବହୁତ ସମୟ କଟକରେ ରହିବା ସହିତ ପ୍ରତି ସପ୍ତାହରେ ଗାଆଁକୁ ଯାଉଥିଲି । ବିଗତ ପାଞ୍ଚବର୍ଷ ମଧ୍ୟରେ ଆମ ଗାଆଁକୁ କେବଳ ନାଲି ଗୋଡ଼ି ରାସ୍ତା ହୋଇଥିଲା । ଆମ ଗାଆଁର ଅଭିସାହୁ ନାମକ ଜଣେ ଲୋକ ଛୋଟିଆ ବସ୍‌ଟିଏ କଟକକୁ ଚଳାଉଥାଆନ୍ତି । ବସ୍‌ର ବଡ଼ିଟା କାଠରେ ତିଆରି ହୋଇଥାଏ । ଚଳିବା ବେଳେ ଧଡ଼ଧଡ଼ ବିଚିତ୍ର ଶବ୍ଦ ଶୁଣାଯାଏ। ସକାଳ ସାତଟାରେ ବସ ଗାଆଁରୁ ବାହାରି ୫୦ କିଲୋମିଟର ଦୂର କଟକରେ ଦଶଟା ସୁଦ୍ଧା ପହଞ୍ଚେ । ପୁଣି ଅପରାହ୍ନ ତିନିଟା ସମୟରେ ବସ୍‌ଟି କଟକ ଛାଡ଼େ । ଅତି ବେଶୀରେ କୋଡ଼ିଏ ଜଣ ଯାଏଁ ଲୋକ ବସ୍‌ରେ ବସିପାରନ୍ତି । ଗାଆଁରୁ କଟକକୁ ଭଡ଼ା ଥାଏ ମାତ୍ର ଦୁଇଟଙ୍କା । ସେତେବେଳେ ଏକଲିଟର ଡିଜେଲର ଦାମ୍ ଥାଏ ମାତ୍ର ବାର ଅଣା । କଟକରୁ ଭୁବନେଶ୍ୱରକୁ ଚାନ୍ଦନିଚୌକରୁ ବସ୍ ବାହାରୁ ଥାଏ । ବସ୍‌ଟି ବାଲୁବଜାର, ଚୌଧୁରୀବଜାର, ବକ୍ସିବଜାର, ମଣିସାହୁ ଛକ, ମଙ୍ଗଳାବାଗ ଓ କଲେଜ ଛକ ଦେଇ ଭୁବନେଶ୍ୱର ଯାଏ । ଭୁବନଶ୍ୱରକୁ ବସ୍‌ଭଡ଼ା ଥାଏ ମାତ୍ର ଏକଟଙ୍କା । କଟକ ଚାନ୍ଦନୀଚୌକରୁ ବାହାରି ଭୁବନେଶ୍ୱର ପହଞ୍ଚିବାକୁ ଅତି କମ୍‌ରେ ଅଢ଼େଇ ଘଣ୍ଟାରୁ ତିନିଘଣ୍ଟା ଲାଗୁଥାଏ । କଟକ ବା ଭୁବନେଶ୍ୱରରେ ରିକ୍ସାରେ ଯିବା ଆସିବା କରିବା ଛଡ଼ା ଅନ୍ୟ ଗତି ନଥାଏ । ବାହାରେ ଖାଇବା ପିଇବାକୁ ଭାରୀ ଭୟ ଲାଗୁଥାଏ । ଶୋଷ ହେଲେ କୌଣସି ଖାଇବା ଦୋକାନରେ ପାଣି ମାଗି ପିଇବାକୁ କିମ୍ବା ସେଠି ମିଳୁଥିବା ଖାଦ୍ୟ ପଦାର୍ଥ ଖାଇବାକୁ ମୋର ଭୟ ହେଉଥାଏ । ମୁଖ୍ୟ ପାନୀୟ କେବଳ "ଚା" । ଆଜି ପରି ପେପ୍‌ସି, ଫାଣ୍ଟା, ମିରାଣ୍ଡା, ମାଜା, ବା ଫ୍ରୁଟି ପରି ପାନୀୟ ସେତେବେଳେ ସ୍ୱପ୍ନ ଥାଏ । ଜଳଖିଆ ଦୋକାନମାନଙ୍କରେ ସେଭଳି ସ୍ୱାସ୍ଥ୍ୟକର ପରିବେଶ ନଥାଏ । ତେଣୁ କେଉଁଠି କିଛି ଖାଇବା ପାଇଁ ଡର ଲାଗୁଥାଏ । ବଜାରରେ ଆଜିଭଳି ସେତେବେଳେ ପାଣିବୋତଲ ବିକ୍ରୀ ହେଉନଥାଏ । ତେଣୁ ଜଳଖିଆ ଦୋକାନ ବା ହୋଟେଲ୍ ମାନଙ୍କରେ ମିଳୁଥିବା ପାଣି ସେଇ ଦୋକାନୀଙ୍କ ଗ୍ଲାସ୍‌ରେ ପିଇବାକୁ ପଡ଼େ । ସେଥିଲାଗି ହଇଜା, ଟାଇଫଏଡ୍, ବିସୂଚୀକା ଆଦି ରୋଗ ବ୍ୟାପି ରହିଥାଏ । ବେଳେବେଳେ ମୋର ଯୁକ୍ତରାଷ୍ଟ୍ର ଆମେରିକା କଥା ମନେ ପଡୁଥାଏ । ମୁଁ ଚଢୁଥିବା ଇମ୍ପାଲା କାର୍‌ଟି ଛାଡ଼ି ଆସିଲି। ଏଠାକାର ଅନେକ ବନ୍ଧୁ କହିଲେ, ତୁମ ଇମ୍ପାଲା କାର୍‌ଟା ଏଠିକି ଆଣି ବିକ୍ରୀ କରିଦେଇଥିଲେ ଅତିକମ୍‌ରେ ଷାଠିଏ ହଜାର ଟଙ୍କା ପାଇଥାନ୍ତ । ସେତେବେଳେ ଗୋଟିଏ ଆମ୍ବାସାଡ଼ର ଗାଡ଼ିର ଦାମ୍ ବାର ହଜାର ପାଞ୍ଚଶହ ଟଙ୍କା ଥାଏ । ଏହି ପରିପ୍ରେକ୍ଷୀରେ ଦୀର୍ଘ ପାଞ୍ଚବର୍ଷ ଧରି ସେଠାରେ ବିତାଉଥିବା ଦିନ ଗୁଡ଼ାକର ସ୍ମୃତି କ୍ରମଶଃ କଷ୍ଟଦାୟକ ବୋଧ ହେଉଥାଏ।

ଦୁଇ ମାସ କାଳ ଛୁଟି କଟାଇବାପରେ କର୍ମସଂସ୍ଥାନ ପାଇଁ ଚିନ୍ତା କଲି । ପ୍ରଥମେ ବିଭାଗୀୟ ନିର୍ଦ୍ଦେଶକ ଡକ୍ଟର ବିଶ୍ୱାଳଙ୍କୁ ଭେଟିଲି । ସେ କହିଲେ ତୁମେ କୌଣସି ବିଶ୍ୱବିଦ୍ୟାଳୟ ବା କେନ୍ଦ୍ର ସରକାରୀ ଚାକିରୀ ପାଇଁ ଚେଷ୍ଟା କର । ସେସବୁ ଚାକିରୀରୁ ଯେତିକି ଦରମା ପାଇବ ରାଜ୍ୟ ସରକାରଙ୍କ କୌଣସି ଚାକିରୀରୁ ସେତେ ଦରମା ମିଳିବ ନାହିଁ । ବିଦେଶରେ ଉଚ୍ଚ ଶିକ୍ଷା ପାଇ ଫେରୁଥିବା ବୈଜ୍ଞାନିକ ମାନଙ୍କ ପାଇଁ କେନ୍ଦ୍ର ସରକାର ଏକ "ସାଇଣ୍ଟିଫିକ୍ ପୁଲ୍" ଗଠନ କରିଥାନ୍ତି । କେଉଁଠି କିଛି ନିଯୁକ୍ତି ନ ମିଳିଲେ ଏହି ପୁଲ୍‌ରେ ଯୋଗଦେଇ କୃଷି ବିଶ୍ୱବିଦ୍ୟାଳୟ ମାନଙ୍କରେ ଗବେଷଣା କରିବାକୁ କେନ୍ଦ୍ରୀୟ ସାହାଯ୍ୟ ମିଳୁଥାଏ ।

ଜଗତସିଂହପୁର ପାଖ ଚଟରାରେ ବିଭା ହୋଇଥିବା ମୋ ପିଉସୀର ସାନ ଜାଆ ଥିଲେ ନାରୀ ନେତ୍ରୀ ସରଳା ଦେଈ । ତାଙ୍କ ସ୍ୱାମୀ ସ୍ୱାଧୀନତା ସଂଗ୍ରାମୀ ଭାଗିରଥୀ ମହାପାତ୍ର କଂଗ୍ରେସ ଦଳର ଜଣେ ମୁଖ୍ୟ ନେତା ଥିଲେ । ସେ ମଧ୍ୟ ଜଣେ ରାଜ୍ୟସଭା ସାଂସଦ ଥାଆନ୍ତି । ସରଳାଦେଈ ଓ ଭାଗୁପିଉସା ଦୁହେଁ ଆଗ ଧାଡ଼ିର ସ୍ୱାଧୀନତା ସଂଗ୍ରାମୀ ଭାବେ ସର୍ବଜନ ବିଦିତ । ମୋର ଦିଲ୍ଲୀ ଯିବାକଥା ଶୁଣି ଭାଗୁପିଉସା କହିଲେ ବିହାରର ନେତା ବାବୁ ଜଗଜ୍ଜୀବନ ରାମ କେନ୍ଦ୍ରକୃଷିମନ୍ତ୍ରୀ ଅଛନ୍ତି । ତାଙ୍କ ପାଖକୁ ମୁଁ ଖଣ୍ଡେ ଚିଠି ଲେଖି ଦେଉଛି । ଯାଇ ତାଙ୍କୁ ଦେଖା କର ।

ଦିଲ୍ଲୀ ଯିବାକୁ ଚିନ୍ତା କଲି । ସେତେବେଳେ ଦିଲ୍ଲୀ ଯିବାକୁ ଓଡ଼ିଶାରୁ କୌଣସି ଟ୍ରେନ୍ ନଥିଲା । ଭୁବନେଶ୍ୱର ଓ କଟକ ରେଳଷ୍ଟେସନରୁ ଦୁଇଟି ଲେଖାଏଁ ବଗି ଦିଲ୍ଲୀ ପାଇଁ ଉଦ୍ଦିଷ୍ଟ ଥିଲା । ଗୋଟିଏ ଥିଲା ଫାଷ୍ଟକ୍ଲାସ ବଗି ଓ ଅନ୍ୟଟି ତୃତୀୟଶ୍ରେଣୀ ବଗି । ସରକାରୀ କର୍ମଚାରୀ, ସାଂସଦ, ମନ୍ତ୍ରୀ ବା ଧନୀ ବ୍ୟବସାୟୀ ମାନେ ପ୍ରଥମଶ୍ରେଣୀରେ ଯାଆନ୍ତି । ସାଧାରଣ ଲୋକ ପାଇଁ ତୃତୀୟଶ୍ରେଣୀ ବଗି ଥାଏ ଏକମାତ୍ର ଭରସା । ଏଥିରେ ସଂରକ୍ଷଣ ବ୍ୟବସ୍ଥା ନଥାଏ । କୁଲିମାନେ ତୃତୀୟ ଶ୍ରେଣୀ ବଗିର ଉପର ବର୍ଥରେ ଗାମୁଛା ପାରି ଶୋଇ ଯାଇଥାନ୍ତି । ପାଞ୍ଚ ଦଶଟଙ୍କା ପାଇଲେ ଯାତ୍ରୀମାନଙ୍କ ବେଡ଼ିଂ ବିଛାଇଦେଇ ଉଠିଯାଆନ୍ତି । ଦିଲ୍ଲୀକୁ ତୃତୀୟ ଶ୍ରେଣୀରେ କଟକରୁ ପ୍ରାୟ ଚାଳିଶ ବା ପଚାଶ ଟଙ୍କା ଭିତରେ ଭଡ଼ା ପଡୁଥାଏ ।

କଟକ ଷ୍ଟେସନରୁ କୁଲିଠାରୁ ବର୍ଥଟି ପାଇ ଶୋଇଗଲେ ପୁରୀ ଏକ୍ସପ୍ରେସ୍ ସହିତ ସନ୍ଧ୍ୟା ଆଠଟାରେ ସେହି ବଗିଟି ଯୋଡ଼ାହୋଇ ଖଡ଼ଗପୁର ଠାରେ ରହିଯାଏ । ସେଠାରୁ ଗୋଟିଏ ପାସେଞ୍ଜର ଟ୍ରେନ୍ ସହିତ ପୁଣି ବଗିଦୁଇଟି ଯୋଡ଼ାହୋଇ ତାପରଦିନ ମଧ୍ୟାହ୍ନ ସୁଦ୍ଧା ଆସାନ୍‌ସୋଲ୍‌ରେ ପହଞ୍ଚିଯାଏ । ଯାତ୍ରୀମାନେ ସେଠି ବାହାରକୁ ଯାଇ ଗାଧୁଆପାଧୁଆ କରି ପୁଣି ନିଜ ବଗି ଭିତରେ ବସି ତୋଫାନ ମେଲ୍ ଅପେକ୍ଷାରେ

ରହନ୍ତି । ଅପରାହ୍ନ ଚାରିଟା ସୁଦ୍ଧା ତୋଫାନ୍‌ମେଲ୍ ଆସି ଆସାନସୋଲରେ ପହଞ୍ଚିଲେ ଆମ ବଗିଦୁଇଟି ସେଥିରେ ଯୋଡ଼ାହୋଇ ଦିଲ୍ଲୀ ପର୍ଯ୍ୟନ୍ତ ଯାଏ । ତାପର ଦିନ ସନ୍ଧ୍ୟା ସୁଦ୍ଧା ତୋଫାନ ମେଲ୍ ଦିଲ୍ଲୀରେ ପହଞ୍ଚେ । ତେଣୁ କଟକରୁ ବାହାରି ଦୀର୍ଘ ଦୁଇଦିନ ପରେ ଦିଲ୍ଲୀରେ ପହଞ୍ଚିବାକୁ ହୁଏ । ରେଳଗାଡ଼ିରେ କଟକରୁ ଯାଇ ଦିଲ୍ଲୀ ପହଞ୍ଚିବା ଅତ୍ୟନ୍ତ କ୍ଲାନ୍ତିଦାୟକ ଓ କଷ୍ଟସାଧ୍ୟ ମନେ ହେଉଥାଏ । ତେଣୁ ମୋ ପରି ଆମେରିକା ଫେରନ୍ତା ଯୁବ ବୈଜ୍ଞାନିକ ମାନେ ମାସେ ଦୁଇମାସ ଏପରି ହଇରାଣ ହରକତ୍ ହେବା ପରେ ପୁଣି ଆମେରିକା ଫେରିଯାଇ ସେଠାରେ ଆରାମରେ ରହିବା ପାଇଁ ଶ୍ରେୟସ୍କର ମଣୁଥାଆନ୍ତି ।

ଦିଲ୍ଲୀରେ ପହଞ୍ଚି ଜଗତସିଂହପୁର ସାଂସଦ ଲକ୍ଷ୍ମଣ ମଳିକଙ୍କ ସାଉଥ୍ ଆଭେନ୍ୟୁ ଘରେ ଯାଇ ରହିଲି । ତାଙ୍କ ଠାରୁ ବୁଝି କେନ୍ଦ୍ର କୃଷିମନ୍ତ୍ରୀ ଜଗଜ୍ଜୀବନ ରାମଙ୍କ କୋଠିକୁ ଯାଇ ତାଙ୍କୁ ଭାଗୁ ପିଉସାଙ୍କ ଚିଠିଟି ଦେଇ ପ୍ରଣାମକଲି । ସେ ମୋଠାରୁ ସବୁ କଥା ବୁଝି ହରିଆନ୍ନାର କର୍ଣ୍ଣାଲ ଠାରେ ଥିବା କେନ୍ଦ୍ରୀୟ ଦୁଗ୍ଧ ଗବେଷଣା ପ୍ରତିଷ୍ଠାନକୁ ଫୋନ କଲେ । ସେଠି ଡକ୍ଟର ଦସ୍ତୁର ଥାଆନ୍ତି ପ୍ରତିଷ୍ଠାନର ନିର୍ଦ୍ଦେଶକ । ତାଙ୍କୁ ଯାଇ ଦେଖା କରିବାକୁ ଶ୍ରୀଯୁକ୍ତ ରାମ୍ ମୋତେ କହିଲେ ।

ତାପରଦିନ ଆନ୍ତଃରାଜ୍ୟ ବସ୍‌ଆଡ୍‌ଡାକୁ ଯାଇ କର୍ଣ୍ଣାଲକୁ ବସ୍ ଧରିଲି । ପ୍ରାୟ ମଧ୍ୟାହ୍ନ ସୁଦ୍ଧା ସେଠି ପହଞ୍ଚି ଦୁଗ୍ଧ ବିଜ୍ଞାନ ମହାବିଦ୍ୟାଳୟର ଅଧକ୍ଷ ଡକ୍ଟର୍ ପି.ଜି. ନାୟାରଙ୍କୁ ଦେଖାକଲି । ଓହିଓ ବିଶ୍ୱବିଦ୍ୟାଳୟରେ ମୋର ପରାମର୍ଶଦାତା ପ୍ରଫେସର ଟମ୍ ଲଡ୍‌ୱିକ୍‌ଙ୍କର ସେ ଥିଲେ ପ୍ରଥମ ଭାରତୀୟ ଛାତ୍ର । ତାପରେ ମୁଁ ହେଲି ତାଙ୍କର ଦ୍ୱିତୀୟ ଭାରତୀୟ ଛାତ୍ର । ଡଃ ନାୟାର ତାଙ୍କଠାରୁ ମୋ ବିଷୟରେ ଆଗରୁ ସବୁକଥା ଜାଣିଥିଲେ । ତେଣୁ ସେ ମୋତେ ଦେଖି ତାଙ୍କର ଗୁରୁଭାଇ ଭାବରେ ଅତ୍ୟନ୍ତ ଶ୍ରଦ୍ଧା କଲେ । ମୋତେ ନେଇ ସେ ପ୍ରତିଷ୍ଠାନର ନିର୍ଦ୍ଦେଶକ ଡଃ ଦସ୍ତୁରଙ୍କ ପାଖକୁ ଯାଇ ପରିଚିତ କରାଇଲେ । କେନ୍ଦ୍ର କୃଷିମନ୍ତ୍ରୀ ଶ୍ରୀ ଜଗଜ୍ଜୀବନ ରାମଙ୍କ ଠାରୁ ପୂର୍ବରୁ ମୋ କଥା ଜାଣିଥିଲେ ଡଃ ଦସ୍ତୁର୍ । ସେ ମୋତେ କହିଲେ ଭାରତୀୟ କୃଷି ଗବେଷଣା ପରିଷଦ ପକ୍ଷରୁ ଏହି ଅନୁଷ୍ଠାନରେ ପି.ଏଲ- ୪୮୦ ଯୋଜନାରେ ଜଣେ ଗବେଷକଙ୍କ ନିଯୁକ୍ତି ପାଇଁ ବିଜ୍ଞାପନ ଦିଆଯାଇଛି । ଆପଣ ଦିଲ୍ଲୀ ଯାଇ ଉପଯୁକ୍ତ ଫର୍ମରେ ଦରଖାସ୍ତ ଦିଅନ୍ତୁ । ଆପଣଙ୍କୁ ଏଥିପାଇଁ ଡକାଯିବ । ସନ୍ଧ୍ୟାରେ ଦିଲ୍ଲୀ ଫେରି ଆସିଲି । ସାଉଥ୍ ଆଭେନ୍ୟୁରେ ଆକାଶବାଣୀର ଜଣେ କର୍ମଚାରୀ ଶ୍ରୀ ସାମଲଙ୍କ ସହିତ ଦେଖାହେଲା । ସେ କହିଲେ କେନ୍ଦ୍ର ସରକାରଙ୍କ ପ୍ରଥମଶ୍ରେଣୀ ଚାକିରୀ ପାଇବାଟା ଅତ୍ୟନ୍ତ ଭାଗ୍ୟର କଥା । ଦିଲ୍ଲୀରେ ଖୁବ୍ କମ୍ ସଂଖ୍ୟକ ଓଡ଼ିଆଲୋକ ଏବେ ଏହି

ସୌଭାଗ୍ୟର ଅଧିକାରୀ। ତେଣୁ ଆପଣଙ୍କର ଉଚ୍ଚ ଶିକ୍ଷାଗତ ଯୋଗ୍ୟତା ଅନୁସାରେ ଏପରି ସମ୍ମାନ ସହ ଚାକିରୀରେ ରହିବା ଉଚିତ ହେବ । ହେଲେ, ଓଡ଼ିଶା ମାଟିରେ ଜନ୍ମହୋଇ ସେହି ରାଜ୍ୟର ଉନ୍ନତି ପାଇଁ ଆପଣ କାମକରିବା ଆହୁରି ଭଲ ହୁଅନ୍ତା । ଓଡ଼ିଶାରେ ନ ରହିଲେ ଆପଣ ନିଜ ମାତୃଭୂମିର ସେବା କରିବାକୁ ସୁବିଧା ପାଇବେ ନାହିଁ । ଯୁକ୍ତରାଷ୍ଟ୍ର ଆମେରିକା ଭଳି ଉନ୍ନତଦେଶ ଛାଡ଼ି ଆପଣ ଦେଶକୁ ଫେରିଛନ୍ତି । ଆମ ଦେଶରେ ଓଡ଼ିଶାରାଜ୍ୟ ସବୁଠାରୁ ପଛୁଆ ହୋଇ ରହିଛି । ତେଣୁ ଆପଣଙ୍କ ପରି ଉଚ୍ଚଶିକ୍ଷିତ ବ୍ୟକ୍ତି ଦିଲ୍ଲୀରେ ବା କର୍ଣ୍ଣାଲ୍‌ରେ ନ ରହି ଓଡ଼ିଶାରେ ରହି କାର୍ଯ୍ୟକଲେ ଓଡ଼ିଶା ପାଇଁ କିଛି କରିପାରିବେ । ଏବେ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟରେ ଜଣେ ବରିଷ୍ଠ ବୈଜ୍ଞାନିକ ମୁତୟନ ପାଇଁ ବିଜ୍ଞାପନ ପ୍ରକାଶ ପାଇଛି । ଆପଣ ଯେଉଁ ଚାକିରୀ ପାଇଁ କର୍ଣ୍ଣାଲ୍ ଯାଇଥିଲେ ଏଇଟା ସେଇ ସ୍ତରୀୟ ବୈଜ୍ଞାନିକ ନିଯୁକ୍ତି ବିଷୟକ ବିଜ୍ଞାପନ । ଆପଣ ଶୀଘ୍ର ଯାଇ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟରୁ ବୁଝନ୍ତୁ । ଯଦି ସେହି ଚାକିରୀ ଭୁବନେଶ୍ୱରରେ ଯୁଟିଗଲା, ତାହାହେଲେ ଏତେ ଦୂରବାଟ ଆସି କିଛି ଲାଭ ନାହିଁ ।

କଟକ ଫେରିଆସି ଭୁବନେଶ୍ୱର ଗଲି । ପଶୁଚିକିତ୍ସା ମହାବିଦ୍ୟାଳୟର ଅଧକ୍ଷ ଥାଆନ୍ତି ଡଃ ଶିବକୁମାର ମିଶ୍ର । ସେ ମୋତେ ଦେଖି ଭାରି ଖୁସିହେଲେ । କହିଲେ ଶୀଘ୍ର ଦରଖାସ୍ତ କରିଦିଅ । ପ୍ରାୟ ମାସେ ଭିତରେ ସାକ୍ଷାତ୍‌କାର କାର୍ଯ୍ୟକ୍ରମ ପଡ଼ିପାରେ । ସେତେବେଳେ ଡଃ ବଂଶୀଧର ସାମନ୍ତରାୟ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର କୁଳପତି ଥାଆନ୍ତି । ତାଙ୍କୁ ଯାଇ ଦେଖାକଲି । ମୁଁ ରେଭେନ୍ସା ମହାବିଦ୍ୟାଳୟରେ ଆଇ.ଏସ୍.ସି. ପଢ଼ିଲାବେଳେ ସେ ଆମକୁ ଉଦ୍ଭିଦବିଜ୍ଞାନ ପଢ଼ାଉଥିଲେ । ସେ ମଧ ମୋ କଥା ଶୁଣି ବେଶ୍ ଆନନ୍ଦିତ ହେଲେ ।

ଯୁକ୍ତରାଷ୍ଟ୍ର ଆମେରିକାରୁ ମୋ ପ୍ରଫେସର୍ ଡଃ ହାୱାର୍ଡ୍ ଭୋକରଙ୍କ ଚିଠି ପାଇଲି । ଲେଖାଥିଲା, ନଭେମ୍ବର ୨୩ ତାରିଖରେ ଆମର ସମାବର୍ତ୍ତନ ଉତ୍ସବ । ତୁମେ ଡକ୍ଟରେଟ୍ ଡିଗ୍ରୀ ପାଇବ। ନ୍ୟୁୟର୍କ ଫିଡ୍ କମ୍ପାନୀ କର୍ତ୍ତୃପକ୍ଷ ମଧ ତୁମ ପାଇଁ ଡିସେମ୍ବର ପର୍ଯ୍ୟନ୍ତ ସମୟ ଦେଇଛନ୍ତି । ସମାବର୍ତ୍ତନ ଉତ୍ସବରେ ଯୋଗ ଦେଇସାରି ସେହି କମ୍ପାନୀରେ ଯୋଗ ଦେବା ଉଚିତ ହେବ ।

ଏସବୁ କଥା ଘରେ କହିଲି । ବାପା, ମାଆ ଓ ବୋଉ ଆଦୌ ରାଜି ହେଲେ ନାହିଁ । କହିଲେ ପାଞ୍ଚବର୍ଷ କାଳ ଆମଠାରୁ ତୁ ଦୂରେଇ ରହିଲୁ । ଅବଶ୍ୟ ତୁ ଖୁବ୍ ଆନନ୍ଦରେ ସେ ଦେଶରେ ଥିଲୁ । ଏବେ ସେଠିକି ଫେରିଗଲେ ତୋତେ ଖୁବ୍ ମୋଟା ଅଙ୍କର ଦରମା ମିଳିବ । ମାତ୍ର ଆମେ ତୋର ସୁଖ  ଦେଖିବାକୁ ନଥିବୁ । ଏବେ

ଆମ ପାଖେ ନାତି ନାତୁଣୀ ଓ ବୋହୂ ଅଛନ୍ତି । ତୁ ଏଦେଶରେ ଯେଉଁଠି ଚାକିରୀ କରିବୁ ଆମେ ସେଠିକି ଯାଇ ପାରିବୁ । ହେଲେ ଆମର ଆମେରିକା ଯିବା କିମ୍ବା ସେ ଦେଶରେ ତୋ ପାଖେ ରହିବାର ପ୍ରଶ୍ନ ଉଠୁନାହିଁ । ଏସବୁ ବିଚାର କରି ଯାହା ତୋର ଇଚ୍ଛା କର ।

ଭାବିଲି, ଯେଉଁ କାର୍ଯ୍ୟରେ ପିତାମାତାଙ୍କର ଆଶୀର୍ବାଦ ନାହିଁ ; ତାହା ଯେତେ ସୁଖପ୍ରଦ ହେଲେ ମଧ୍ୟ ବର୍ଜନୀୟ । ଏଠି ଥାଇ ପିତାମାତାଙ୍କ ସୁଖଦୁଃଖ ଦେଖିବା ସହିତ ମାତୃଭୂମି ଓଡ଼ିଶାର ସେବାରେ ନିଜକୁ ନିୟୋଜିତ କରିପାରିଲେ ଜନ୍ମ ସାର୍ଥକ ହେବ । ଇଷ୍ଟଦେବ ଗୋପାଳଙ୍କ ଦୟାରୁ ଯୁକ୍ତରାଷ୍ଟ୍ର ଆମେରିକାରୁ ଉଚ୍ଚଶିକ୍ଷା ପାଇ ଫେରିଲି । ତାଙ୍କରି ଦୟା ହେଲେ, ମାତୃଭୂମି ଓଡ଼ିଶାର ସେବା କରିବାର ସୌଭାଗ୍ୟ ମିଳିପାରିବ । ଡକ୍ଟର ଭୋକରଙ୍କୁ ମୋର ସେଠାକୁ ନଫେରିବାର କଥା ଲେଖି ଚିଠି ଦେଲି । ଏକଥା ନ୍ୟୁୟର୍କ ଫିଡ୍ କମ୍ପାନୀଙ୍କୁ ଜଣାଇଦେବାକୁ ମଧ୍ୟ ଅନୁରୋଧ କଲି ।

ଆମେରିକା ଫେରିଯିବାକୁ ଯେଉଁ ଆଶା କିମ୍ବା ବାହାନା ଥିଲା, ତାହାର ଏତିକିରେ ଯବନିକା ପତନ ହେଲା । ଏବେ ଆଉ ପାଞ୍ଚବର୍ଷ ଭିତରେ ସେ ଦେଶକୁ ଭିସା ମିଳିବ ନାହିଁ । କାରଣ ସେ ଦେଶର କୌଣସି ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ଡିଗ୍ରୀ ହାସଲ କରି ସେଠି କିଛି କାର୍ଯ୍ୟ କରୁଥିବାର ପ୍ରମାଣ ନଥିଲେ ପାଞ୍ଚବର୍ଷ ପର୍ଯ୍ୟନ୍ତ ସେଠାକୁ ଯିବା ସମ୍ଭବ ନୁହେଁ ।

ଓଡ଼ିଶା କୃଷିବିଶ୍ୱବିଦ୍ୟାଳୟରେ ସାକ୍ଷାତ୍କାର ପାଇଁ ଚିଠି ପାଇ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟକୁ ଗଲି । ଦେଖିଲି, ଯେଉଁ ବିଷୟରେ ଗବେଷଣା ଲାଗି ପ୍ରାର୍ଥୀ ବଛା ହେଉଛି; ସେ ବିଷୟରେ ମୁଁ ଯୁକ୍ତରାଷ୍ଟ୍ର ଆମେରିକାରେ ଗବେଷଣା କରି ଏମ୍.ଏସ୍; ଓ ପି.ଏଚ୍.ଡ଼ି. ଡିଗ୍ରୀ ପାଇଛି । ଯେଉଁସବୁ ପ୍ରାର୍ଥୀ ଡକା ଯାଇଛନ୍ତି ସେମାନଙ୍କର ଏ ବିଷୟରେ କାହାର କୌଣସି ଭିତ୍ତିଭୂମି ନାହିଁ । ଭାବିଲି, ମୁଁ ନିଶ୍ଚୟ ଉପଯୁକ୍ତ ପ୍ରାର୍ଥୀ ଭାବେ ମନୋନୀତ ହେବି । କାରଣ ଯୁକ୍ତରାଷ୍ଟ୍ର ଆମେରିକାରେ ଶିକ୍ଷା ପାଇବା ପରେ ସେ ଦେଶ ଭଳି ଆମ ଦେଶରେ ମଧ୍ୟ ଉଚ୍ଚପଦସ୍ଥ ସରକାରୀ ଚାକିରୀ ପାଇଁ ପ୍ରାର୍ଥୀ ବାଛୁଥିବା ବିଚାରକମାନେ ଉଚ୍ଚକୋଟୀର ନିରପେକ୍ଷ ବ୍ୟକ୍ତି ହୋଇଥିବେ ବୋଲି ମୁଁ ଭାବୁଥିଲି । ମାତ୍ର ମଣିଷ ଯାହାଭାବେ, ତାହା ସବୁବେଳେ ସମ୍ଭବ ହୁଏନା ।

ସାକ୍ଷାତ୍କାର ବେଳେ ଦୁଇଜଣ ବଙ୍ଗୀୟ ଏକ୍ସପାର୍ଟଙ୍କୁ ବୋର୍ଡ଼ରେ ଦେଖିଲି । କୁଳପତି ଓ ପଶୁପାଳନ ମହାବିଦ୍ୟାଳୟର ଅଧ୍ୟକ୍ଷ ଦୁହେଁ ମୋର ସବୁ କାଗଜପତ୍ର ଓ ଗବେଷଣାତ୍ମକ କାର୍ଯ୍ୟକଳାପ ସହିତ ପ୍ରସଂଶାପତ୍ର ବା ସମ୍ମାନପତ୍ର ସବୁ ଦେଖି ସାରିବା

ପରେ ବଙ୍ଗୀୟ ବୈଜ୍ଞାନିକ ଦୁହିଁଙ୍କୁ ମୋ କାଗଜ ବଢ଼ାଇଦେଲେ । ସେମାନେ ପଚାରିଲେ- ଆପଣ ଯଦି ଏହି ଗବେଷଣା କାର୍ଯ୍ୟକ୍ରମର ମୁଖ୍ୟ ଭାବେ ବିବେଚିତ ନହୁଅନ୍ତି, ତେବେ ସହକାରୀ ଗବେଷକ ପଦବୀରେ ରହିବେ କି ? ମୁଁ ମନା କଲି । କହିଲି, ମୋର ଏବିଷୟରେ ଯେଉଁ ଅଭିଜ୍ଞତା ଅଛି ଆଉ କୌଣସି ବ୍ୟକ୍ତିଙ୍କର ସେପରି ନଥିବ ବୋଲି ମୋର ଦୃଢ଼ ଧାରଣା । ଯଦି ମୋତେ ଆପଣ କୌଣସି କାରଣରୁ ନ ବାଛନ୍ତି ତେବେ ମୁଁ ଆଉ କୌଣସି ପଦବୀରେ ରହିବାକୁ ପସନ୍ଦ କରୁନାହିଁ ।

କୁଳପତି ଡଃ ସାମନ୍ତରାୟ କହିଲେ, ଏଭଳି ସିଧା ସିଧା ମନା ନକରି ତୁମେ ବାହାରେ ଟିକେ ଅପେକ୍ଷା କର, ଆମେ ସବୁକଥା ବିଚାର କରି ତୁମକୁ କହିବୁ । ବାହାରକୁ ଆସି ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଶ୍ରୀ ଦିଗମ୍ବର ଦାସଙ୍କ ପାଖେ ବସିଲି । ସେ ମୋର ଜଣେ ହିତାକାଙ୍କ୍ଷୀ । ପଶୁପାଳନ ଓ ପଶୁଚିକିତ୍ସା ମହାବିଦ୍ୟାଳୟରେ ମୁଁ ପଢୁଥିଲାବେଳେ ଦିଗମ୍ବରବାବୁ ବର୍ସାର ଥିଲେ । ସେ ମୋତେ ଖୁବ୍ ଭଲ ପାଉଥିଲେ । ଏହି ସାକ୍ଷାତ୍କାରରେ କଅଣ ଘଟିବ, ସେ କଥା ପୂର୍ବରୁ ସେ ଅନୁମାନ କରି ସାରିଥିଲେ । ତେଣୁ ମୋ ଆଡ଼େ ଚାହିଁ ହସି ଦେଇ ସେ ପଚାରିଲେ କଅଣ ହେଲା ? ତାଙ୍କୁ ସବୁ କଥା କହିଲି ।

କହିଲେ, ମୋ ଜାଣିବାରେ ଏ ଚାକିରୀଟା ଅନ୍ୟ ଜଣକ ପାଇଁ ଉଦ୍ଦିଷ୍ଟ । ତୁମର ଯେତେ ଅଭିଜ୍ଞତା ବା ଶିକ୍ଷାଗତ ଯୋଗ୍ୟତା ଥିଲେ ମଧ୍ୟ ପାଇବାର ଆଶା କମ୍ । ତେବେ ଅପେକ୍ଷା କରି ଦେଖ, କ'ଣ ହେଉଛି ।

କହିଲି, ଯେଉଁମାନଙ୍କ ପାଇଁ ଏ ଚାକିରୀ ରଖାଯାଇଛି, ସେମାନେ ଏଇ ଭୁବନେଶ୍ୱରର ଲୋକ । ଅନ୍ୟତ୍ର ସେମାନଙ୍କର ମୂଲ୍ୟ କମିଯାଇପାରେ, ମାତ୍ର ମୋ ପାଇଁ କେବଳ ଭାରତବର୍ଷ କାହିଁକି, ସମଗ୍ର ବିଶ୍ୱ ପଡ଼ିଛି । ମୁଁ ଯୁଆଡ଼େ ଚାଲିଯିବି, ମୋର ମୂଲ୍ୟାୟନ ଠିକ୍ ଭାବେ ହେବ ବୋଲି ବିଶ୍ୱାସ । ତେଣୁ, ଏଠି ନିଜର ଦାମ୍ କମାଇଦେବା ତୁଳନାରେ ଏମାନଙ୍କର ପ୍ରସ୍ତାବରେ ରାଜି ନହେବା ଭଲ ।

ଦିଗମ୍ବର ବାବୁ ହସି ଦେଇ କହିଲେ, ଏଇ କଲେଜରେ ତୁମେ ପାଠ ପଢୁଥିଲ । ତୁମ କଲେଜର ମୁଁ ବର୍ସାର ଥିଲି । ଆଜି ତୁମେ ବଡ଼ ହେଇଗଲଣି । ହେଲେ ଆମ ଆଗରେ ତୁମେ ସେଇ ପିଲା । ତେଣୁ ତୁମକୁ କିଛି ଉପଦେଶ ଦେବାର ଅଧିକାର ଆମର ଅଛି । ଯାହା କରୁଛ ଭାବିଚିନ୍ତି କର । କୌଣସି କଥାକୁ ମନା କରି ଦେବା ପୂର୍ବରୁ ଭଲ କରି ଆଗ ପଛ ଦେଖି ନିଷ୍ପତ୍ତି ନେବା ଉଚିତ । ତୁମେ ଯାହା ଭାବୁଛ ଯୁଆଡ଼େ ଯିବ, ସେଠାରେ ତୁମର ଉଚିତ ମୂଲ୍ୟାୟନ ହେବ ବୋଲି, ତାହା ଆମ

ଦେଶରେ ସମ୍ଭବ ନୁହେଁ । ତୁମେ ଏବେ ଆମେରିକାରୁ ଫେରିଛ । ତେଣୁ ସେଠାକାର ଲୋକଙ୍କ ବିଚାର ଭଳି ଆମ ଦେଶରେ ସେ ପ୍ରକାର ନିଷ୍ପତ୍ତି ଆଶା କରୁଛ । ଆମେରିକାରେ ସତ୍ୟଯୁଗ ଚାଲିଛି । ମାତ୍ର ଆମର ଏଠି କଳିଯୁଗ । ଯୁଆଡ଼େ ଯିବ ଲାଞ୍ଚ, ମିଛ, ଧରାଧରି ଆମଲୋକ ତୁମଲୋକ ବିଚାରଧାରାରେ କାମ ଚାଲିଛି । ଆମ ଦେଶରେ ଠାକୁର ମନ୍ଦିରକୁ ଗଲେ ପୂଜକଙ୍କୁ ଲାଞ୍ଚ ରିସ୍ୱତ୍ ଦେବାକୁ ପଡ଼େ । ଠାକୁରଙ୍କ ପାଖେ ଭୋଗରାଗ କରି ପୂଜା ନ କଲେ ସେ ତୁମ ଦୁଃଖ ଶୁଣିବେ ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରେ ତୁମେ ଚର୍ଚ୍ଚ୍‌କୁ ଯାଇ ମାଗଣାରେ ପ୍ରାର୍ଥନା କରି ଠାକୁରଙ୍କ ଆଶୀର୍ବାଦ ପାଅ । ଆମ ଦେଶରେ କେହି ବିଦ୍ୟାବୁଦ୍ଧି, ଯୋଗ୍ୟତା ବା ପାରଗତା ଦେଖେନାହିଁ । ଏବେ ଯେଉଁ ବୋର୍ଡ଼ ବସି ଭାରତୀୟ କୃଷି ଗବେଷଣା ପରିଷଦର ଏହି ଗବେଷଣା କେନ୍ଦ୍ର ଲାଗି ପ୍ରାର୍ଥୀ ବାଛୁଛନ୍ତି ସେମାନେ ମଧ୍ୟ କଳିଯୁଗ ନିୟମରେ ବନ୍ଧା । ସେମାନଙ୍କଠାରୁ ନ୍ୟାୟ ମିଳିବା ଅସମ୍ଭବ । ଲାଞ୍ଚ ମିଛ ଧରାଧରି କାରବାରରେ ସେମାନେ ଲିପ୍ତ ହେବା ଅସମ୍ଭବ ନୁହେଁ । ତେଣୁ ମୋର ଛୋଟ ଉପଦେଶ ବିଚାରକୁ ନେଇ ତୁମର ନିଷ୍ପତ୍ତି ନିଅ । ଇଂରାଜିରେ କଥା ଅଛି ହାତରେ ଗୋଟିଏ ଚଢ଼େଇ ରହିବା ବୁଦାରେ ଦୁଇଟା ଥିବା ତୁଳନାରେ ଶ୍ରେୟସ୍କର । ଏବେ ତୁମ ହାତରେ କୌଣସି ଚାକିରୀ ନାହିଁ । ଯଦି ସେମାନେ ତୁମକୁ ସହକାରୀ ଗବେଷକ ଭାବେ ନିଯୁକ୍ତି ଦିଅନ୍ତି, ତାହେଲେ ସେ ଚାକିରୀରେ ରହି ତାଠାରୁ ଭଲ ଚାକିରୀ ଅନ୍ୟତ୍ର ଖୋଜିବା ଉଚିତ । ତେବେ ତୁମେ ଆର୍ଥିକ ଦିଗରୁ ଚିନ୍ତା କରି ଅଧିକ ଦରମା ଦାବୀ କରିପାର । ମାତ୍ର ପୁରା ମନା କରିଦେବାଟା ବିଜ୍ଞତାର କାର୍ଯ୍ୟ ହେବ ନାହିଁ । ତୁମେ ମନା କରି ଦେଲେ ସେମାନେ ଆଉ କାହାକୁ ନେଇ ଯାଇ ପାରନ୍ତି । କାରଣ ତୁମେ ଯେଉଁ ପଦବୀ ଆଶା କରୁଛ ସେ ପଦବୀ ସହିତ ବଡ଼ ଲୋକଙ୍କର ସ୍ୱାର୍ଥ ଜଡ଼ିତ ଥାଇପାରେ ।

କହିଲି, ଏଠି ସହକାରୀ ଗବେଷକ ନରହି କର୍ଣ୍ଣାଲ୍‌ରେ ବରିଷ୍ଠ ଗବେଷକ ଭାବେ ଅଧିକ ଦରମା ପାଇ ସମ୍ମାନର ସହିତ କାର୍ଯ୍ୟ କରିବା ଠିକ୍ ହେବ । ଦିଗମ୍ବର ବାବୁ କହିଲେ, କଥାରେ ଅଛି - "ପାଖ ବାଲି, ଦୂର ମଟାଳ ।" ଅର୍ଥାତ୍ ଘର ପାଖରେ ବାଲିଆ ଭୂମିଖଣ୍ଡେ ଥିବା ତୁଳନାରେ ଦୂରରେ ଥିବା ଉର୍ବର ଜମିର ଉପଯୋଗିତା ଅଧିକ ନୁହେଁ । ପାଖରେ ଥିବା ବାଲିଆଜମି ତୁମ ଆଖିଆଗରେ ରହିବ । ତେଣୁ ତହିଁରୁ ଯେତେ ଫସଲ ତୁମେ ପାଇବ ଦୂରରେ ଥିବା ଉର୍ବର ଜମିରୁ ସେତିକି ଫସଲ ପାଇବା କଷ୍ଟକର । ତେଣୁ ତୁମେ ଭୁବନେଶ୍ୱରରେ ଅଳ୍ପ ଦରମା ପାଇବା ତୁଳନାରେ କର୍ଣ୍ଣାଲ୍‌ରେ ବେଶୀ ଦରମା ପାଇଲେ ମଧ୍ୟ ଆର୍ଥିକ ଦିଗରୁ ସେତେ ଲାଭବାନ ହେବ ନାହିଁ । ଏଠି ରହି ତୁମ ପିତାମାତାଙ୍କ ଖବର ବୁଝିପାରିବ । ମାତ୍ର ଦିଲ୍ଲୀ ବା କର୍ଣ୍ଣାଲ୍‌ରେ ରହିଲେ ତାହା ସମ୍ଭବ ନୁହେଁ ।

ବୋର୍ଡ଼ ମେମ୍ବର ମାନଙ୍କ ସହିତ ଦ୍ୱିତୀୟ ବାର ସାକ୍ଷାତ କରିବାକୁ ମୋତେ ଡାକରା ଆସିଲା । କୁଳପତି କହିଲେ ଏ ପଦବୀରେ ଆମେ ଅନ୍ୟଜଣକୁ ବାଛିଛୁ । ତୁମ ପାଇଁ ସହକାରୀ ପଦବୀ ରହିଛି । କହିଲି, ଆଜି ଏ ଚାକିରୀ ପାଇଁ ଯେତେ ଜଣ ପ୍ରତିଯୋଗୀଙ୍କୁ ଦେଖିଲି, ସମସ୍ତେ ଏଠାକାର ସ୍ଥାନୀୟ ଲୋକ । ଏ ଜାତୀୟ ଗବେଷଣାକୁ ଆଗେଇ ନେବା ପାଇଁ ଯେଉଁଭଳି ଶିକ୍ଷାଗତ ଯୋଗ୍ୟତା ଓ ଅଭିଜ୍ଞତା ଦରକାର ତାହା ମୋ ବ୍ୟତୀତ ଅନ୍ୟ କାହାର ମୁଁ ଦେଖୁନାହିଁ । ମୁଁ ମଧ୍ୟ ଏହି ବିଶ୍ୱ ବିଦ୍ୟାଳୟର ଜଣେ ପୁରାତନ ଛାତ୍ର ଓ ଆମ ରାଜ୍ୟରେ ଏ ସମ୍ପର୍କୀୟ ଗବେଷଣା ଯେତେ ଭଲଭାବେ ପ୍ରୟୋଗାତ୍ମକ ଭାବରେ କରାଯାଇ ପାରେ ତାହା ମୁଁ କରିପାରିବି । ଏହି ପରିପ୍ରେକ୍ଷୀରେ ଆପଣମାନେ ଯଦି ଅନ୍ୟ ଜଣଙ୍କୁ ଯୋଗ୍ୟ ବିବେଚିତ କରିଛନ୍ତି, ମୁଁ ଆପଣମାନଙ୍କ ନିଷ୍ପତ୍ତିକୁ ସମ୍ମାନ ଜଣାଇ ଓହରି ଯିବାକୁ ଚାହୁଁଛି ।

କୁଳପତି ବଂଶୀଧର ସାମନ୍ତରାୟ କହିଲେ; ତୁମେ ଯାହାସବୁ କହିଗଲ ଆମେ ସେସବୁ ବିଚାରକୁ ନେଇ ତୁମକୁ ଏଥିଲାଗି ଅଟକାଇଛୁ । ସମସ୍ତଙ୍କର ସମ୍ମତି ନେଇ ଜଣକୁ ବଛାଯାଇ ସାରିଛି । ଏବେ ଏହି କାର୍ଯ୍ୟରେ ତୁମକୁ ମଧ୍ୟ ନିୟୋଜିତ କରିବା ପାଇଁ ଆମର ଇଚ୍ଛା । ତୁମେ ଦୁହେଁ ମିଶି ଗବେଷଣା କାର୍ଯ୍ୟକୁ ଅନେକ ଆଗେଇ ନେଇପାରିବ । ଏବେ ତୁମେ ସହକାରୀ ଗବେଷକ ପଦବୀରେ ରହିବାକୁ କି, କି, ସୁବିଧା ଚାହୁଁଛ ଆମକୁ ସ୍ପଷ୍ଟ କରିଦିଅ । ପଶୁଚିକିତ୍ସା ମହାବିଦ୍ୟାଳୟର ଅଧ୍ୟକ୍ଷ ଡଃ ଶିବକୁମାର ମିଶ୍ର କହିଲେ, ତୁମେ ଏ ମହାବିଦ୍ୟାଳୟର ଛାତ୍ର । ନିଜର ଶିକ୍ଷାନୁଷ୍ଠାନ ଲାଗି ତୁମର ମଧ୍ୟ କିଛି କର୍ତ୍ତବ୍ୟ ରହିଛି । ଏହି ପଦବୀରେ ଥାଇ ତୁମେ ମହାବିଦ୍ୟାଳୟରେ ଶିକ୍ଷାଦାନ କରିବା ସହିତ ଗବେଷଣା କରିବ । ତୁମକୁ ଉପଯୁକ୍ତ ବାସଗୃହ ଓ ସମସ୍ତ ସୁବିଧା ଦିଆଯିବା ସହ ତୁମର ଉଜ୍ଜ୍ୱଳ ଭବିଷ୍ୟତ ଏଇଠି ଗଢ଼ିଉଠିବ । ତେଣୁ ତୁମର ଆବଶ୍ୟକତା ଚିନ୍ତା କରି କହ । ଦେଖିଲି ଅଧ୍ୟକ୍ଷ ଓ କୁଳପତି ଦୁହେଁ ମୋର ଶିକ୍ଷାଗୁରୁ । ସେମାନେ ମୋତେ ଚାହୁଁଛନ୍ତି । ତେଣୁ କହିଲି, ଆପଣ ଦୁଇଜଣ ମୋର ହିତାକାଂକ୍ଷୀ ଭାବେ ଯାହା ଚାହୁଁଛନ୍ତି କରନ୍ତୁ । ମାତ୍ର ସହକାରୀ ଗବେଷକ ଦରମା ମୋ ପାଇଁ ବହୁତ କମ୍ ହେଉଛି ।

କୁଳପତି କହିଲେ, କେତେ ଦରମା ପାଇଲେ ତୁମେ ସନ୍ତୁଷ୍ଟ ହେବ ? କହିଲି, ପ୍ରଥମ ଶ୍ରେଣୀ ପାହ୍ୟାର ଦରମାରୁ କମ୍ ହେଲେ ମୋ ପକ୍ଷେ ଚଳିବା ସମ୍ଭବ ହେବ ନାହିଁ । ସମସ୍ତେ ପରସ୍ପରକୁ ଚାହିଁ ମୁରୁକିହସା ଦେଲେ । ମାତ୍ର କୁଳପତି କହିଲେ, ଠିକ୍ ଅଛି । ତୁମ ଉପରିସ୍ଥ ଗବେଷକ ଯେତିକି ପ୍ରଥମ ଶ୍ରେଣୀ ଦରମା ପାଇବେ ତୁମର

ଦରମା ଓ ଡି.ଏ. ମିଶି ତାଙ୍କ ଦରମା ସହିତ ସମାନ ହେବ । ଏକଥା ଶୁଣି ମୁଁ ରାଜି ହେଲି । ହେଲେ, ମୋ ମନରେ ସୁଖ ନଥିଲା ।

ଚାକିରୀଟା ସିନା ମିଳିଗଲା । ହେଲେ ପୋଡ଼ି ଯାଇଥିବା ତିଅଣ ଖାଇ ଭୋକ ମେଣ୍ଟାଇବା ପରି ଲାଗୁଥାଏ । ଆମେରିକା ଯିବାବେଳେ ଯେତେ ଉତ୍ସାହରେ ମୁଁ ଲାଗିପଡ଼ି ମୋର ଲକ୍ଷ୍ୟ ହାସଲ ଦିଗରେ କୃତକାର୍ଯ୍ୟ ହୋଇଥିଲି; ସେହି ଲକ୍ଷ୍ୟ ପୂର୍ଣ୍ଣକରି ଦୀର୍ଘ ପାଞ୍ଚବର୍ଷ ପରେ ନିଜ ଜନ୍ମମାଟିକୁ ଫେରିଆସିବା ଦ୍ୱାରା ମୋର ସମସ୍ତ ଅଧ୍ୟବସାୟ ମୂଲ୍ୟହୀନ ହୋଇ ପଡ଼ିଲା ଭଳି ମନେହେଲା । ଏବେ ବୁଝିଗଲି ଯେ, କ'ଣ ପାଇଁ ଆମେରିକା ଯାଇଥିବା ଯୁବକ ଯୁବତୀ ଆଉ ଦେଶକୁ ଫେରିବାକୁ ରାଜି ହୁଅନ୍ତି ନାହିଁ । ସେଠାରେ ଥିବା ଭାରତୀୟ ଛାତ୍ରମାନେ ମୋତେ କହୁଥିଲେ, ତୁମେ ବେଶୀଦିନ ଦେଶରେ ରହିପାରିବ ନାହିଁ । ମାସେ ଦୁଇମାସ ରହିବା ପରେ ସେଠାକାର ଅବସ୍ଥା ଦେଖି ଖୁବ୍ ଶୀଘ୍ର ଆମେରିକା ଫେରି ଆସିବ । କାରଣ ଆମ ଦେଶରେ ଜ୍ଞାନର କୌଣସି ମର୍ଯ୍ୟାଦା ନାହିଁ । ମାତ୍ର ମୁଁ କହିଥିଲି, ଯାହା ହେଉପଛେ ମୁଁ ମୋ ଦେଶରେ ରହି ଜନ୍ମମାଟିର ସେବାରେ ନିଜକୁ ନିୟୋଜିତ କରିବି । ଭାବିଲି, ଏବେ ସେହି ସମୟ ଆସିଗଲା । ଦୁଃଖକଷ୍ଟ ସହି କିଛି କରିବା ପାଇଁ ଅଣ୍ଟା ଭିଡ଼ିବାକୁ ହେବ । ହେଲେ ନିଷ୍ଠାପର ଭାବେ ଯାହା ମୁଁ କରିବି ତାର ମୂଲ୍ୟ ରହିବ କି ନାହିଁ ସେ କଥାରେ ମୋର ସନ୍ଦେହ ହେଉଥିଲା ।

୧୯୬୯ ମସିହା ଜାନୁୟାରୀ ୧ ତାରିଖରେ ପଶୁଚିକିତ୍ସା ମହାବିଦ୍ୟାଳୟରେ ଗବେଷକ ଭାବେ କାର୍ଯ୍ୟ ଆରମ୍ଭ କଲି । ଅଧ୍ୟକ୍ଷ ଡକ୍ଟର ମିଶ୍ର ମୋତେ ମହାବିଦ୍ୟାଳୟରେ ଦୁଗ୍ଧବିଜ୍ଞାନ ପଢ଼ାଇବା ପାଇଁ ନିର୍ଦ୍ଦେଶ ଦେଲେ । କାରଣ ଏହି ବିଷୟ ପଢ଼ାଉଥିବା ଅଧ୍ୟାପକ ମହେଶ୍ୱର ମିଶ୍ର ଯୁକ୍ତରାଷ୍ଟ୍ର ଆମେରିକାରେ ପି.ଏଚ୍.ଡ଼ି. କରୁଥିଲେ । ମୁଁ ପ୍ରଥମ ଓ ଦ୍ୱିତୀୟ ବାର୍ଷିକ ଛାତ୍ରମାନଙ୍କୁ ଦୁଗ୍ଧ ବିଜ୍ଞାନର ଚାରିଟି ବିଷୟ ପଢ଼ାଇବା ସହିତ ଗବେଷଣାକାର୍ଯ୍ୟ ଆରମ୍ଭ କଲି । ଗୋପବନ୍ଧୁ ଛକ ଉପରେ ଥିବା ଛଅଟି ଅଧ୍ୟାପକ କ୍ୱାର୍ଟର ମଧ୍ୟରୁ ଦକ୍ଷିଣ ଦିଗରେ ଥିବା ତଳ କ୍ୱାଟରଟି ମୋତେ ଦିଆଗଲା । ସେତେବେଳେ ପ୍ରାଣୀପୁଷ୍ଟିତତ୍ତ୍ୱ ଗବେଷଣା ଲାଗି ଉପଯୁକ୍ତ ଗବେଷଣାଗାରଟିଏ ନଥାଏ । ମୁଁ ଗୋଟିଏ ଗବେଷଣାଗାର ପ୍ରତିଷ୍ଠା କଲି । ଯୁକ୍ତରାଷ୍ଟ୍ର ଆମେରିକାରେ ଥିବା ଅଧିକାଂଶ ଯନ୍ତ୍ରପାତି ପରି ଭାରତୀୟ କୃଷି ଗବେଷଣା ଗ୍ରାଣ୍ଟରୁ ଅନେକ ଯନ୍ତ୍ରପାତି କିଣି ନୂଆ ନୂଆ ପରୀକ୍ଷା ସବୁ ଆରମ୍ଭ କଲି । ପଶୁମାନଙ୍କ ଠାରେ ସେ ସବୁର ପ୍ରୟୋଗ ଦେଖିବା ପାଇଁ ଏକ ଜୀବ ପ୍ରୟୋଗଶାଳା ମଧ୍ୟ ଖୋଲିବାକୁ ପ୍ରସ୍ତାବ ଦେଲି । କଲେଜର ଅଧ୍ୟକ୍ଷ ଓ କୁଳପତି ମୋ ପ୍ରସ୍ତାବରେ ରାଜି ହୋଇଗଲେ ।

ସେହି ପ୍ରୟୋଗଶାଳାରେ ଧଳାମୂଷା, ଗିନିପିଗ୍, ଠେକୁଆ, ହାମ୍‌ଷ୍ଟାର୍ ଆଦି ଛୋଟ ଛୋଟ ପଶୁଙ୍କୁ ଗବେଷଣାତ୍ମକ ପଶୁଖାଦ୍ୟ ପରୀକ୍ଷା କରିବା ଲାଗି ପାଳନ କରାଗଲା । ପଶୁପାଳନ ବିଜ୍ଞାନ ପଢୁଥିବା ପ୍ରଥମ ଓ ଦ୍ୱିତୀୟ ବାର୍ଷିକ ଛାତ୍ରମାନଙ୍କୁ ଆମେରିକା ଢାଞ୍ଚାରେ ଶିକ୍ଷା ଦେବା ଆରମ୍ଭ କଲି। ମହାବିଦ୍ୟାଳୟର ଛାତ୍ରମାନେ ମୋତେ ଖୁବ୍ ମାନୁଥିଲେ । ମୋର ଅଧ୍ୟାପନା ଓ ଗବେଷଣାତ୍ମକ ଜ୍ଞାନ ପ୍ରତି ସେମାନଙ୍କର ଯଥେଷ୍ଟ ସମ୍ମାନ ଥିଲା । ମୁଁ ମଧ୍ୟ ଏଇ କଲେଜରେ ପଢୁଥିଲି । ସେତେବେଳେକୁ ଅଧ୍ୟାପକମାନେ କ୍ଲାସରେ ବସି କେବଳ ନୋଟ୍ ଡାକୁଥିଲେ । ପଢ଼େଇଲାବେଳେ ବିଷୟକୁ ଭଲଭାବେ ଆଲୋଚନା କରି ଛାତ୍ରମାନେ ଗ୍ରହଣ କଲା ପରି ଚିତ୍ତାକର୍ଷକ ଢାଞ୍ଚାରେ ବର୍ଣ୍ଣନା କରି ସେମାନେ କହିବାର କେବେ ମୁଁ ଶୁଣି ନଥିଲି । ଅବଶ୍ୟ ଆମର ସବୁତକ ପାଠ ସମ୍ପୂର୍ଣ୍ଣ ବୈଷୟିକ ବିଷୟ । ସାହିତ୍ୟ ବା କଳାତ୍ମକ ବିଷୟ ପରି ଏସବୁ ବୁଝାଇ ଶୁଝାଇ ପଢ଼ାଇବା ସବୁ ଶିକ୍ଷକଙ୍କ ଦ୍ୱାରା ସମ୍ଭବ ନୁହେଁ । ତେଣୁ ନୋଟ୍ ଡାକିବା ଅଧିକାଂଶ ଶିକ୍ଷକ ବା ଅଧ୍ୟାପକଙ୍କର ଅଭ୍ୟାସଗତ ହୋଇପଡ଼ିଥିଲା । ଏବେ ମଧ୍ୟ କେତେଜଣ ଅଧ୍ୟାପକ ନୋଟ୍ ଡାକିବା ପଦ୍ଧତି ଚାଲୁ ରଖିଥିଲେ । ହେଲେ, ମୁଁ ସେ ଧାରା ବଦଳାଇ ଦେଲି । ଡାଏରୀ ସାଇନ୍ସ ଅତିମାତ୍ରାରେ ବୈଷୟିକ ବିଷୟ ହୋଇଥିଲେ ମଧ୍ୟ ମୁଁ କୌଣସି ପାଠ୍ୟ ପଢ଼ାଇବା ଆଗରୁ ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରଚଳିତ ଦୁଗ୍ଧ ଉତ୍ପାଦନ ତଥା ପ୍ରକ୍ରିୟାକରଣ ବିଷୟରେ ଛାତ୍ରମାନଙ୍କୁ ଗପ କହିବା ପରି ଆରମ୍ଭ କରିଦେଉଥିଲି । ତେଣୁ ସମସ୍ତେ ଏକଧ୍ୟାନରେ ମୋ କଥା ଶୁଣୁଥିଲେ । ମଝିରେ ମଝିରେ ସେମାନେ ପ୍ରଶ୍ନ କରୁଥିଲେ । ମୁଁ ସେହି ପ୍ରଶ୍ନର ଉତ୍ତର କଳାପଟାରେ ଲେଖି ଯାଉଥିଲି । ଛାତ୍ରମାନେ ଆଗ୍ରହର ସହିତ ସବୁ ଟିପି ନେଉଥିଲେ । କେହି ଅମନଯୋଗୀ ଥିବାର ଦେଖିଲେ ମୁଁ ତାକୁ ପ୍ରଶ୍ନ ପଚାରି ବିଷୟବସ୍ତୁ ଉପରକୁ ଟାଣି ଆଣୁଥିଲି । ପଢ଼ାଇବାକୁ ମୋତେ ଯେତିକି ଭଲ ଲାଗୁଥିଲା, ମୋ କ୍ଲାସ୍‌ରେ ବସିବାକୁ ଛାତ୍ରମାନଙ୍କର ମଧ୍ୟ ସେହିପରି ଆଗ୍ରହ ଥିବାର ମୁଁ ଲକ୍ଷ୍ୟ କରୁଥିଲି ।

ପାଠ ପଢ଼ାଇବା ମୋର ମୁଖ୍ୟ କର୍ତ୍ତବ୍ୟ ନଥିଲା । ମୁଁ ଥିଲି କନିଷ୍ଠ ଗବେଷକ । ତେଣୁ ବରିଷ୍ଠ ଗବେଷକଙ୍କ ସହିତ ମିଶି ଗବେଷଣା କାର୍ଯ୍ୟ ଆଗେଇ ନେବା ଥିଲା ମୋର ପ୍ରଧାନ କର୍ତ୍ତବ୍ୟ । ମାତ୍ର ବରିଷ୍ଠ ଗବେଷକପଦବୀରେ ଥିବା ବ୍ୟକ୍ତିଜଣକ ଗବେଷଣା ଜାଣିନଥିଲେ । କେଉଁ ବାଟରେ ଗଲେ ସୁଫଳ ମିଳିବା ସହଜ ହେବ, ସେ ବିଷୟରେ ତାଙ୍କର ଜ୍ଞାନ ନଥିଲା । ତେଣୁ କୁଳପତି ଓ ପଶୁଚିକିତ୍ସା ବିଜ୍ଞାନ କଲେଜର ଅଧ୍ୟକ୍ଷ ମୋତେ ଏ କାର୍ଯ୍ୟ କରିବା ପାଇଁ ବାଛିଥିଲେ । ତଦନୁଯାୟୀ ଶାଳମଞ୍ଜି, ଆମ୍ବଟାକୁଆ, କରଞ୍ଜମଞ୍ଜି, ତେନ୍ତୁଳିମଞ୍ଜି ଆଦି ଗୋଖାଦ୍ୟ ଉପଯୋଗୀ

ନାନାଦି ଗଛପତ୍ର ଉପରେ ମୁଁ ଗବେଷଣା ଆରମ୍ଭ କରିଦେଲି । ଚିଲିକା ହ୍ରଦକୁ ଯାଇ ସେହି ହ୍ରଦରୁ ନାନା ରକମ ଦଳ ସଂଗ୍ରହ କରି ପରୀକ୍ଷା କଲି । ପ୍ରାୟ ଚାଳିଶିବର୍ଷ ତଳେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଚିଲିକା ଉପରେ ଗବେଷଣା କରିଥିଲେ । ତେଣୁ କଟକସ୍ଥ କାଣ୍ଟୋନ୍‌ମେଣ୍ଟ ରୋଡ଼ରେ ଥିବା ତାଙ୍କ ଘରକୁ ଯାଇ ଡଃ ପ୍ରାଣକୃଷ୍ଣ ପରିଜାଙ୍କୁ ଭେଟିଲି । ସେ ମୋତେ ଚିଲିକା ବିଷୟରେ ଅନେକ ତଥ୍ୟ ଭିତ୍ତିକ ତାଙ୍କର ଏକ ପୁରୁଣା ବହି ଦେଲେ । ତାଙ୍କ ଅଧୀନରେ ଗବେଷଣା କରୁଥିବା ଡଃ ରାମଚନ୍ଦ୍ର ମିଶ୍ରଙ୍କୁ ମଧ୍ୟ ମୋଠାରୁ ଉପଦେଶ ନେଇ ଗବେଷଣା କାର୍ଯ୍ୟ କରିବାକୁ ପରାମର୍ଶ ଦେଲେ । ଡଃ ମିଶ୍ର ପି.ଏଚ୍.ଡ଼ି. କରୁଥିଲା ବେଳେ ବହୁବାର ମୋର ପରାମର୍ଶ ନେଇଥିଲେ । ଏବେ ସେ କେଉଁଠାରେ ଥିବେ ସେ ବାବଦ କୌଣସି ଖବର ରଖିନାହିଁ ।

ସେହି ବର୍ଷ ଡିସେମ୍ବର ମାସରେ ଗୁଜୁରାଟର ବରୋଦା ଠାରେ ଭାରତୀୟ ଦୁଗ୍ଧ ବିଜ୍ଞାନ ସଂଘର ସପ୍ତମ ବାର୍ଷିକ ସମ୍ମିଳନୀ ହେଲା । ସେହି ସମ୍ମିଳନୀରେ ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରତିନିଧିତ୍ୱ କରିବା ପାଇଁ ମୋ ନାମ ସୁପାରିଶ୍ କରାଗଲା । ଜାତୀୟ ଦୁଗ୍ଧ ଉନ୍ନୟନ ବୋର୍ଡ଼ (ଏନଡିଡିବି) ର ଅଧ୍ୟକ୍ଷ ଡକ୍ଟର ଭର୍ଗିଜ୍ କୁରିଏନ୍ ଏହି ସମ୍ମିଳନୀରେ "ଅପରେସନ୍ ଫ୍ଲଡ୍" (ଦୁଗ୍ଧବନ୍ୟା) ଯୋଜନା ବିଷୟରେ ଆଲୋଚନା ପାଇଁ ତିନିଦିନିଆ କାର୍ଯ୍ୟକ୍ରମ ରଖିଥିଲେ । ଏହି କାର୍ଯ୍ୟକ୍ରମରେ ୧୬ଟି ବୈଷୟିକ କମିଟି ଗଠନ କରାଗଲା । ସେହି କମିଟି ମଧ୍ୟରୁ ଦୁଇଟି କମିଟିରେ ମୋତେ ସଭ୍ୟ ଭାବେ ନିଆଯାଇଥିଲା ।

ଡିସେମ୍ବର ୨୭ ତାରିଖ ସୁଦ୍ଧା ମୁଁ ବରୋଦାରେ ପହଞ୍ଚିଲି । ଓଡ଼ିଶା ପଶୁପାଳନ ବିଭାଗର ନିର୍ଦ୍ଦେଶକ ଡଃ ଗଣେଶ୍ୱର ବିଶ୍ୱାଳ ଓ ଉପନିର୍ଦ୍ଦେଶକ ଡଃ ରାଧାକୃଷ୍ଣ ସାହୁ ମଧ୍ୟ ଏହି ସମ୍ମିଳନୀରେ ଯୋଗ ଦେବାକୁ ପହଞ୍ଚିଲେ । ଦୁହେଁ ମୋର ମଙ୍ଗଳାକାଙ୍କ୍ଷୀ ବ୍ୟକ୍ତି । ଡଃ ବିଶ୍ୱାଳ ମୋର ପିତୃତୂଲ୍ୟ ଗୁରୁଦେବ । ମୋତେ ଦେଖି ଦୁହେଁ ଭାରୀ ଖୁସି ହେଲେ । ସେତେବେଳେ ଆମ ଦେଶରେ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟର ଘୋର ଅଭାବ ଥିଲା । ତେଣୁ ଯୁକ୍ତରାଷ୍ଟ୍ର ଆମେରିକା ଓ ୟୁରୋପୀୟ ଦେଶମାନଙ୍କରୁ ଗୁଣ୍ଡଦୁଧ ଓ ବଟର୍ ଅଏଲ୍ ବହୁ ମାତ୍ରାରେ ଆମଦାନୀ ହେଉଥାଏ । ବ୍ଲକ୍ ମାନଙ୍କ ଜରିଆରେ ସ୍ତ୍ରୀ ଓ ଶିଶୁ ମାନଙ୍କ ଲାଗି ଗୁଣ୍ଡଦୁଧ ମାଗଣାରେ ଦିଆଯାଉଥାଏ । ଏଥିଲାଗି ଦାନସୂତ୍ରରେ ଧନୀ ଦେଶମାନେ ଗୁଣ୍ଡଦୁଧ ଓ ବଟରଅଏଲ ପଠାଉଥାନ୍ତି । ବମ୍ବେ, ଦିଲ୍ଲୀ, ମାଡ୍ରାଜ ବା କଲିକତା ପରି ନଗରାଞ୍ଚଳମାନଙ୍କୁ ଦୁଗ୍ଧବନ୍ୟା ଯୋଜନାରେ ଦୁଧ ଯୋଗାଇବା ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥାଏ । ଧନୀ ଦେଶ ମାନଙ୍କରୁ ଦାନ ସୂତ୍ରରେ ଆସୁଥିବା

ଗୁଣ୍ଡଦୁଧ ଓ ବଟରଅଏଲ୍ ଉପଯୋଗ କରି ନଗରାଞ୍ଚଳ ଖାଉଟି ମାନଙ୍କୁ ଦୁଗ୍ଧ ଯୋଗାଇ ଦିଆଯିବ । ସେହି ବିକ୍ରୀଲବ୍ଧ ଧନକୁ ଉପଯୋଗ କରି ଏସବୁ ବଡ଼ବଡ଼ ମହାନଗରୀକୁ ସଂଯୋଗ କରୁଥିବା ରେଳପଥ ଦୁଇକଡ଼ରେ ଥିବା ଅଞ୍ଚଳ ମାନଙ୍କରେ ଦୁଧିଆଳୀଗାଈ ସଂଖ୍ୟା ବୃଦ୍ଧି କରାଯାଇ ସେମାନଙ୍କଠାରୁ ସଂଗୃହୀତ ଦୁଗ୍ଧକୁ ସହରାଞ୍ଚଳ ମାନଙ୍କରେ ବିକ୍ରୀ କରାଯିବ । ଫଳରେ ଗୋପାଳନ କରୁଥିବା ଚାଷୀମାନେ ଅଧିକ ଆୟ କରିବେ ଓ ଧୀରେ ଧୀରେ ସେସବୁ ଅଞ୍ଚଳରେ ଦୁଗ୍ଧଉତ୍ପାଦନ ବୃଦ୍ଧି ପାଇବ । ଅଧିକ ଦୁଗ୍ଧଉତ୍ପାଦନ ଲାଗି ବିଦେଶରୁ ଗୁଣାତ୍ମକ ଷଣ୍ଢ ଓ ଦୁଧିଆଳୀ ଗାଈ ମାନଙ୍କୁ ଆମଦାନୀ କରାଯାଇ ଆମ ଦେଶୀଗାଈଙ୍କଠାରୁ ଅଧିକ ଉତ୍ପାଦନକ୍ଷମ ମାଈ ବାଛୁରୀ ଜନ୍ମ କରାଇବାର ବ୍ୟବସ୍ଥା ହେବ । ଏହି ଯୋଜନା ପରିସର ମଧ୍ୟରେ ଭାରତର ସମସ୍ତ ରାଜ୍ୟ ଥିବା ସ୍ଥଳେ ଓଡ଼ିଶା, ଆସାମ, କେରଳ, ହିମାଚଳପ୍ରଦେଶ ଓ ଜାମ୍ମୁକାଶ୍ମୀର ରାଜ୍ୟମାନଙ୍କୁ ଯୋଜନାରୁ ବାଦ୍ ଦିଆଯାଇଥାଏ ।

ସାଧାରଣ ସଭାରେ ଡକ୍ଟର ଭି .କୁରିଏନ୍ ଏ ବିଷୟରେ ଭାଷଣ ଦେଲାବେଳେ ମୁଁ ତାଙ୍କୁ ପ୍ରଶ୍ନ କଲି ଯେ ଏପରି ଏକ ଯୋଜନାରୁ ଓଡ଼ିଶା ସମେତ ପାଞ୍ଚୋଟି ରାଜ୍ୟକୁ କାହିଁକି ବାଦ୍ ଦିଆଯାଇଛି । ସେ କହିଲେ, ଆପଣ ବୈଷୟିକ କମିଟି ଜରିଆରେ ଏହି ପ୍ରସ୍ତାବ ରଖନ୍ତୁ। ମୁଁ ଯେଉଁ ଦୁଇଟି ବୈଷୟିକ କମିଟିରେ ଥିଲି ସେହି କମିଟିରୁ ପ୍ରସ୍ତାବ ଦେଲି । ତାଛଡ଼ା ଯୁକ୍ତରାଷ୍ଟ୍ର ଆମେରିକାରେ ମୋ ସହିତ ସଂପର୍କ ରଖିଥିବା ଅନ୍ୟ ତିନିଜଣ ବୈଜ୍ଞାନିକ ଡକ୍ଟର ଯମଦଗ୍ନି, ଡକ୍ଟର ଭର୍ମନ ଓ ଡକ୍ଟର ନାୟାରଙ୍କୁ ପ୍ରଭାବିତ କରି ସେମାନଙ୍କ କମିଟିରୁ ମଧ୍ୟ ଏହି ପ୍ରଶ୍ନ ଉଠାଇଲି । ସମ୍ମିଳନୀର ଶେଷଦିନ ବୈଷୟିକ କମିଟି ମାନଙ୍କ ମଧ୍ୟରୁ ଦଶଟି କମିଟିରୁ ଏସବୁ ପ୍ରସ୍ତାବ ଆସିଲା । ଫଳରେ ଏସବୁ ରାଜ୍ୟକୁ ଦୁଗ୍ଧବନ୍ୟା ଯୋଜନାରେ ଅନ୍ତର୍ଭୁକ୍ତ କରାଯିବା ପ୍ରସ୍ତାବ କରତାଳି ସହିତ ଗ୍ରହଣ କରାଗଲା ।

ଓଡ଼ିଶାର ପଶୁପାଳନ ନିର୍ଦ୍ଦେଶକ ଡକ୍ଟର ଗଣେଶ୍ୱର ବିଶ୍ୱାଳ ମୋତେ କୁଣ୍ଢାଇ ପକାଇ କହିଲେ, "ତୋ ଲାଗି ମୁଁ ଆଜି ଗର୍ବ ଅନୁଭବ କରୁଛି । ତୁ ବୈଷୟିକ କମିଟି ଜରିଆରେ ଏହା କରାଇ ପାରିଲୁ ।" ଡକ୍ଟର ରାଧାକୃଷ୍ଣ ସାହୁ କହିଲେ, ତା ଭଳି ପିଲାକୁ ଆପଣ ବିଭାଗକୁ ନ ଆଣି କଲେଜରେ ଛାଡ଼ିଦେଲେ ଆମର ଲାଭ କ'ଣ ? ଡଃ ବିଶ୍ୱାଳ କହିଲେ, ତାକୁ ଆଣିବାର ଯୋଜନା ବିଚାରାଧୀନ ଅଛି । ତା ଲାଗି ଉପଯୁକ୍ତ ପଦବୀ ସୃଷ୍ଟି ନହେଲେ ସେ କ'ଣ ବିଭାଗକୁ ଆସିପାରିବ ?

ସମ୍ମିଳନୀ ଶେଷରେ ଆମେ ସବୁ ଓଡ଼ିଶା ଫେରିଆସିଲୁ । ପାଠପଢ଼ାଇବା ସହିତ ଗବେଷଣା କାର୍ଯ୍ୟରେ ମୁଁ ବ୍ୟସ୍ତ ରହିଲି । ମଝିରେ ମଝିରେ ଦୋଳ, ଦଶହରା,

ରାସଯାତ୍ରା ଆଦି ଠାକୁରଙ୍କ ଯାନିଯାତ୍ରା ବେଳେ ମୋତେ ଗାଆଁକୁ ଯିବାକୁ ପଡ଼େ । ଗାଆଁର ବେକାର ଯୁବକମାନେ ମୋତେ ଘେରନ୍ତି । ସେମାନଙ୍କ ଅଭିଭାବକମାନେ ବାପାଙ୍କ ପାଖେ ଆପତ୍ତି କରନ୍ତି- "ଆପଣ ଆମ ଜମିଦାର ଥିଲେ । ଆମ ଦୁଃଖଦୁର୍ଦ୍ଦଶା ବୁଝୁଥିଲେ । ଏବେ ଜମିଦାରୀ ସିନା ଚାଲିଗଲା ହେଲେ ଆମ ପ୍ରତି ଆପଣଙ୍କର କର୍ତ୍ତବ୍ୟ କ'ଣ ତୁଟି ଯାଇଛି ? ମୋ ପିଲାଟାକୁ କେଉଁଠି ହେଲେ ରଖାଇ ଦିଅନ୍ତୁ ।"

ବାପା ଅତି ସରଳ ଓ ନିଷ୍କପଟ ଲୋକ । ହଉ ବୁଝିବା ବୋଲି କହି ସେମାନଙ୍କୁ ଫେରାଇ ଦିଅନ୍ତି । ଥରେ ଥରେ ଜଣେ ଦୁଇଜଣ ପିଲାଙ୍କୁ ସାଙ୍ଗରେ ଧରି ଭୁବନେଶ୍ୱର ଚାଲି ଆସନ୍ତି । ସେମାନଙ୍କୁ ପାଖରେ ରଖାଇ ଚାକିରୀ କରାଇ ଦେବାକୁ ମୋତେ କହନ୍ତି । ତେଣୁ କେମିତି ସେମାନଙ୍କୁ ସାହାଯ୍ୟ କରିବି ସେହି ଚିନ୍ତା ମୋତେ ଘାରିଲା । ସେତେବେଳେ ଓଡ଼ିଶା କୃଷିବିଜ୍ଞାନ କଲେଜର ଅଧ୍ୟକ୍ଷ ଓଡ଼ିଶାର ବିଶିଷ୍ଟ ଅର୍ଥନୀତିଜ୍ଞ ଡକ୍ଟର ବୈଦନାଥ ମିଶ୍ର ମୋ କ୍ୱାଟର ପଛପଟେ ଥିବା ବଡ଼ କ୍ୱାର୍ଟରରେ ରହୁଥାନ୍ତି । ତାଙ୍କୁ ଏକଥା କହିଲି । ଭୁବନେଶ୍ୱରରେ ନୂଆ କରି ଖୋଲୁଥିବା କେନ୍ଦ୍ରୀୟ ରିଜର୍ଭ ପୋଲିସର ଡେପୁଟୀ ସୁପରିଟେଣ୍ଡେଣ୍ଟ ମଧ୍ୟ ଆଠ ନମ୍ବରରେ ରହୁଥାନ୍ତି । ତାଙ୍କୁ କହିବାରୁ ସେ ମୋତେ ସାହାଯ୍ୟ କରିବାକୁ ରାଜି ହେଲେ । ତେଣୁ ଗାଁରୁ ଆସୁଥିବା ଅନେକ ଯୁବକଙ୍କୁ ସି.ଆର୍‌ପି, ସୀମାସୁରକ୍ଷା ପୋଲିସ ଓୟୁଏଟି ଆଦି ସଂସ୍ଥା ମାନଙ୍କରେ ଚାକିରି ମିଳିଗଲା । ଫଳରେ ଗାଁର ଲୋକମାନଙ୍କୁ କିଛି ମାତ୍ରାରେ ସାହାଯ୍ୟ କରାଯାଇ ପାରିଲା । ବାପା ଏଥିଲାଗି ବହୁତ ଖୁସି ହେଲେ । ଏହି ଚାକିରୀ କରାଇ ଦେବାର ଆଶାନେଇ ବହୁ ଲୋକ ମୋ ପାଖକୁ ଆସିବାକୁ ଲାଗିଲେ । ସେମାନଙ୍କୁ ଚାକିରୀ କରାଇ ଦେଇ ପାରିଲେ ମୋତେ ଅନେକ ଶାନ୍ତି ଓ ଆନନ୍ଦ ମିଳୁଥିଲା ।

ମୁଁ ଓ.ୟୁ.ଏ.ଟି.ରେ ଯୋଗ ଦେବା ପୂର୍ବରୁ ପଶୁଚିକିତ୍ସା ମହାବିଦ୍ୟାଳୟ ଓ କୃଷି କଲେଜର ଛାତ୍ରମାନଙ୍କ ମଧ୍ୟରେ ମଝିରେ ମଝିରେ ଗଣ୍ଡଗୋଳ ହେବାର ଶୁଣାଯାଉଥିଲା । ସେମାନେ ଲୁହାଛଡ଼, ସାଇକେଲ ଚେନ୍ ଓ ଅନ୍ୟାନ୍ୟ ହାତହତିଆର ଧରି ଲଢ଼େଇ କରିବା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ଏ ଛୋଟ ବିଶ୍ୱବିଦ୍ୟାଳୟ ପରିସରରେ ମାତ୍ର ତିନୋଟି ମହାବିଦ୍ୟାଳୟ ଥାଇ କାହିଁକି ଏପରି ଅଶାନ୍ତି ସୃଷ୍ଟି ହେଉଛି ତାର କାରଣ ମୁଁ ଖୋଜୁଥିଲି । ପରେ ଜାଣିଲି ଯେ, ଉଭୟ କଲେଜର କେତେଜଣ ଦୁଷ୍ଟବୁଦ୍ଧି ଅଧ୍ୟାପକଙ୍କ ପ୍ରରୋଚନାରେ ଏସବୁ ଘଟିଯାଉଛି । ତେଣୁ ଅଧ୍ୟାପକ ମାନଙ୍କ ମଧ୍ୟରେ ସହଯୋଗ ସୃଷ୍ଟିକରି ଏକ ସ୍ଥାୟୀ ଶାନ୍ତିପ୍ରିୟ ବାତାବରଣ କିପରି ହୋଇପାରିବ ସେହି ଚିନ୍ତା ମୋ ମନରେ ଖେଳୁଥାଏ ।

ମୋର ପଡ଼ୋଶୀଭାବେ ଜଣେ ଯୁବ ଅଧ୍ୟାପକ ଶ୍ରୀ ଚିନ୍ତାମଣି ଦାସ ସପରିବାର ଆସି ରହିଲେ । ଆମ ଦୁଇ ପରିବାର ଭିତରେ ଖୁବ୍ ଭଲ ସମ୍ପର୍କ ହୋଇଗଲା । ଚିନ୍ତାମଣିବାବୁ ଗୀତ ଗାଇବାକୁ ଭଲ ପାଆନ୍ତି, ମୁଁ ମଧ୍ୟ ଗୀତ ଗାଉଥିଲି । ହାଇସ୍କୁଲରେ ପଢ଼ିଲାବେଳେ ମୁଁ ପ୍ରାର୍ଥନା ସମୟରେ ପ୍ରଥମେ ଗାଉଥିଲି ଓ ଅନ୍ୟ ସବୁ ଛାତ୍ରଛାତ୍ରୀ ମୋ ପରେ ଗାଉଥିଲେ। କଲେଜରେ ପଢ଼ିଲାବେଳେ ଏପରିକି ଆମେରିକା ଆନ୍ତର୍ଜାତୀୟ ଛାତ୍ର ସଂଗଠନ ଉତ୍ସବ ମାନଙ୍କରେ ମୁଁ ଓଡ଼ିଆ ଗୀତ ଗାଉଥିଲି । ଭୁବନେଶ୍ୱରରେ ରହିବାପରେ ମୋର ସଙ୍ଗୀତ ଶିଖିବାକୁ ମନହେଲା । ଛଅନମ୍ବର ସେକ୍ଟରରେ ଗୋଟିଏ କଳାକେନ୍ଦ୍ର ଥିଲା । ସେହି କଳାକେନ୍ଦ୍ରରେ ମୁଁ ସଙ୍ଗୀତ ଶିଖିବାକୁ ଯାଉଥିଲି । ପ୍ରାୟ ତିନିମାସ ପର୍ଯ୍ୟନ୍ତ ସେଠାକୁ ଯିବାପରେ କାର୍ଯ୍ୟବ୍ୟସ୍ତତା ଯୋଗୁଁ ଗୀତ ଶିଖିବା ଛାଡ଼ିଦେଲି । ଚିନ୍ତାମଣିବାବୁ ମଝିରେ ମଝିରେ ମୋ ସହିତ ବସି ଗୀତ ଗାଉଥିଲେ । ଆମପରି ଆଉ ୪/୫ ଜଣ ସଙ୍ଗୀତପ୍ରେମୀ ଯୁବଅଧ୍ୟାପକ ଆମ ଘରକୁ ଆସି ବସାଉଠା କଲେ, ମୋ ପ୍ରତି ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନ ଥାଏ । ଛୁଟି ଦିନ ମାନଙ୍କରେ ଆମେ ଏକାଠି ବସାଉଠା ଓ ଖିଆପିଆର ବ୍ୟବସ୍ଥା କଲୁ । କୃଷି ମହାବିଦ୍ୟାଳୟ ଓ ବେସିକ୍ ସାଇନ୍ସ କଲେଜର ବହୁ ଯୁବ ଅଧ୍ୟାପକ ଆମ ସହିତ ଯୋଗ ଦେଲେ । ଆମେ 'ମୂର୍ଚ୍ଛନା' ନାମକ ଏ ସାଂସ୍କୃତିକ ସଂଘ ଗଠନ କଲୁ । ଏହି ସଂଘର ଉପଦେଷ୍ଟା ଭାବେ କୃଷି କଲେଜର ଅଧକ୍ଷ ଡଃ ବୈଦ୍ୟନାଥ ମିଶ୍ର ରହିଲେ । ମୁଁ ହେଲି ଏହାର ପ୍ରଥମ ସଭାପତି ।

କୃଷି ମହାବିଦ୍ୟାଳୟ ହଲ୍‌ରେ 'ମୂର୍ଚ୍ଛନା'ର ଉଦ୍‌ଘାଟନୀ ଉତ୍ସବ ଅନୁଷ୍ଠିତ ହେଲା । ଉଦ୍‌ଘାଟକ ଭାବେ କୁଳପତି ଚୌଧୁରୀ ନିଶାମଣି ନନ୍ଦ, ମୁଖ୍ୟ ଅତିଥିଭାବେ ତତ୍‌କାଳୀନ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତକୁମାର କର, ମୁଖ୍ୟବକ୍ତା ଭାବେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଯୋଗଦେଲେ । ସେହି ସନ୍ଧ୍ୟାରେ ଏକ ପୌରାଣିକ ଗୀତିନାଟ୍ୟ ଅଭିନୀତ ହେଲା । ବିଶ୍ୱବିଦ୍ୟାଳୟ ପରିସରରେ ଏକ ହସଖୁସିର ବାତାବରଣ ସୃଷ୍ଟିହୋଇଗଲା । ଛାତ୍ରମାନଙ୍କୁ କୁଶିକ୍ଷା ଦେଇ ସେମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରୁଥିବା ଲୋକମାନଙ୍କ ପ୍ରଭାବ ଊଣା ହେବା ପରି ବୋଧହେଲା ।

ସେତେବେଳେ ବିଶ୍ୱ ବିଦ୍ୟାଳୟର ତିନି କଲେଜରେ ପରୀକ୍ଷାବେଳେ କପି ହେଉଥିଲା । କପି ଯୋଗାଉଥିବା ଅଧ୍ୟାପକମାନେ ଛାତ୍ରମାନଙ୍କର ବେଶ୍ ପ୍ରିୟ ଥିଲେ । ହେଲେ କପିକରିବା ବୈଷୟିକ ଶିକ୍ଷାଭିତ୍ତିକ କ୍ଷେତ୍ରରେ ବିଶ୍ୱବିଦ୍ୟାଳୟକୁ ବଦନାମ କରିବାର ମୂଳକାରଣ ବୋଲି ମୋ ଛାତ୍ରମାନଙ୍କୁ ବରାବର କହିଲି । ଆମ 'ମୂର୍ଚ୍ଛନା' କ୍ଲବର ସଭ୍ୟଥିବା ଯୁବ ଅଧ୍ୟାପକମାନଙ୍କ ଭିତରେ ନିଷ୍ପତ୍ତି ହେଲା ଯେ, ଆମେ କାହାକୁ

କପି କରାଇ ଦେବାନାହିଁ । ତାହାହିଁ ହେଲା । ମୁଁ ପଶୁଚିକିତ୍ସା ମହାବିଦ୍ୟାଳୟର ଜଣେ ଛାତ୍ରକୁ କପି କରୁଥିବା ଦେଖି ତାକୁ ଏପରି ନକରିବାକୁ କହିଲି । ସେ କହିଲା, ଅନ୍ୟ ହଲକୁ ଯାଇ ଦେଖନ୍ତୁ ପିଲାମାନେ କପି କରୁଛନ୍ତି । ଆପଣ କାହିଁକି ଏ ହଲ୍‌ରେ ଏତେ କଡ଼ା ହେଉଛନ୍ତି ? କହିଲି, ତୁମେ ଯଦି ମୋ କଥା ନ ମାନିବ, ତେବେ ମୁଁ କଲେଜ ଅଧ୍ୟକ୍ଷଙ୍କୁ ଜଣାଇଦେବି । ସେ କହିଲା, ଯାହା କରିବେ ଅନ୍ୟ ହଲ୍ ମାନଙ୍କରେ ମଧ୍ୟ ସେଇଆ ହେବାର ବ୍ୟବସ୍ଥା କରନ୍ତୁ । ମୁଁ ଅଧ୍ୟକ୍ଷଙ୍କୁ ଏକଥା ଜଣାଇଦେଲି । ଅଧ୍ୟକ୍ଷ ନିଜେ ଆସି ସେହି ଛାତ୍ରଙ୍କ ଖାତା ନେଇଗଲେ ଓ ଗୋଟିଏ ବର୍ଷ ପାଇଁ ସେ ପରୀକ୍ଷା ଦେଇ ପାରିବ ନାହିଁ ବୋଲି ଘୋଷଣା କରିଦେଲେ । ଏକଥା ଶୁଣି ଛାତ୍ରମହଲରେ କପି କରିବା ପାଇଁ ଭୟ ସୃଷ୍ଟି ହୋଇଗଲା ।

ଗବେଷଣା କ୍ଷେତ୍ରରେ ମୁଁ ଅନେକ ନୂଆ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଦେଲି । ଚିଲିକାଦଳ ଉପରେ ଗବେଷଣା ତଥା ପ୍ରୟୋଗଶାଳା ପାଇଁ ମୂଷା, ଗିନିପିଗ୍, ହାମ୍‌ଷ୍ଟର୍ ଆଦି କ୍ଷୁଦ୍ର ପ୍ରାଣୀମାନଙ୍କ ବ୍ୟବହାର ଦେଖି ଅଧ୍ୟକ୍ଷ ଖୁସିହୋଇ ଦୁଇଜଣ ଛାତ୍ରଙ୍କୁ ମୋ ଅଧୀନରେ ଗବେଷଣା କରିବାକୁ ପରାମର୍ଶ ଦେଲେ । ତନ୍ମଧ୍ୟରୁ ଜଣେ ଛାତ୍ର ମୋ ଉପଦେଶ ଅନୁସାରେ ଗୋ-ପାକସ୍ଥଳିରେ ହଜମ ପ୍ରକ୍ରିୟା ଉପରେ ଗବେଷଣା କାର୍ଯ୍ୟ ଆରମ୍ଭ କରିଦେଲା । ଛାତ୍ରଜଣକ ଗବେଷେଣା ପାଇଁ ଫାର୍ମର ଦୁଇ ହଳ ବଳଦଙ୍କ ମଧ୍ୟରୁ ଗୋଟିଏ ବଳଦଠାରୁ ରୁମେନ ଫ୍ଲୁଇଡ୍ ବାହାର କରୁ କରୁ ବଳଦଟି ସାଙ୍ଗେ ସାଙ୍ଗେ ମରିଗଲା । ଫାର୍ମ ପରିଚାଳକ ଅଗ୍ନିଶର୍ମା ହୋଇଗଲେ । ଏ ବିଷୟ ଲେଖି ସେ କୁଳପତିଙ୍କୁ ଜଣାଇ ଦେଲେ । କୁଳପତି ପଶୁ ଚିକିତ୍ସା କଲେଜର ଅଧ୍ୟକ୍ଷ ଓ ମୋତେ ଡକାଇ ପଠାଇଲେ । ସେତେବେଳ ସମୟରେ (୧୯୭୦ ମସିହା) ସେହି ବଳଦର ଦାମ୍ ଥିଲା ପାଞ୍ଚହଜାର ଟଙ୍କା । କହିଲି ସେହି ଛାତ୍ର ପକ୍ଷରେ ଗୋପାକସ୍ଥଳିରୁ ନମୁନା ସଂଗ୍ରହ କରି ଅଣୁବୀକ୍ଷଣ ଯନ୍ତ୍ରରେ ଦେଖିବାକୁ ହେବ । ବାହାର କୌଣସି ଗୋରୁଙ୍କ ଠାରୁ ନମୁନା ସଂଗ୍ରହ କରିଥିଲେ ଯଦି ସେ ଜନ୍ତୁଟି ମରିଯାଇଥାନ୍ତା, ତେବେ କଲେଜର ବଦନାମ ହୋଇଥାନ୍ତା । ଏବେ ଆମ ବିଶ୍ୱବିଦ୍ୟାଳୟ ଫାର୍ମ ବଳଦ କ୍ଷେତ୍ରରେ ତାହା ଘଟିଛି । ତେଣୁ ଯାହା ଦଣ୍ଡ ଦେବେ ସେ ଛାତ୍ର ସହିତ ମୁଁ ମଧ୍ୟ ସଂପୃକ୍ତ ଅଛି । କୁଳପତି କହିଲେ, ଏଥିରେ ଦୁଃଖ କରିବାର କିଛି ନାହିଁ । ମାତ୍ର ଆପଣଙ୍କର ସେ ଛାତ୍ରଟି ସାବଧାନତା ଅବଲମ୍ବନ ନ କରିବା ଯୋଗୁଁ ଏପରି ଘଟିଲା । ଏଣିକି ତାକୁ ସାବଧାନ କରାନ୍ତୁ । ନୋହିଲେ ଆପଣଙ୍କର ବଦନାମ ହେବ । ଗବେଷଣା କରିବାକୁ ହେଲେ ଅନେକ ଅସୁବିଧା ଯେ ସାମନା କରିବାକୁ ହେବ, ତାହା ଏକ ବୈଷୟିକ ବିଶ୍ୱବିଦ୍ୟାଳୟର କର୍ମକର୍ତ୍ତାମାନେ ଜାଣି ରଖିବା କଥା । ଯୁକ୍ତରାଷ୍ଟ୍ର ଆମେରିକାରେ

ମୋର ଗବେଷଣା ପାଇଁ ଆମ ବିଭାଗୀୟ ମୁଖ୍ୟ ଯେଉଁଭଳି ଆୟୋଜନ କରିଥିଲେ ତାହା ଭାରତବର୍ଷରେ ଆଦୌ ସମ୍ଭବ ନୁହେଁ । ସେହି ଛାତ୍ର ଜଣକ ଉଚ୍ଚକୋଟୀର ଗବେଷଣା ତଥା ସନ୍ଦର୍ଭ ଲେଖିବା ଯୋଗୁଁ ବିଶ୍ୱବିଦ୍ୟାଳୟରେ ସ୍ୱର୍ଣ୍ଣପଦକ ଲାଭ କଲା । ସର୍ବଭାରତୀୟ ସ୍ତରରେ ସେ ଜଣେ ଗବେଷକ ଭାବେ ଭାରତୀୟ କୃଷି ଗବେଷଣା ସଂସ୍ଥା ପକ୍ଷରୁ ନିଯୁକ୍ତି ପାଇଲା । ମୁଁ ଯଦି ଅଧିକ ଦିନ ଧରି ଗବେଷଣାରତ ଛାତ୍ରଛାତ୍ରୀଙ୍କୁ ଗାଇଡ୍ କରିଥାନ୍ତି, ତେବେ ସେତେବେଳେ ପଶୁଚିକିତ୍ସା ମହାବିଦ୍ୟାଳୟର ଛାତ୍ରମାନେ ଚାକିରୀ ପାଇବାକୁ ହଇରାଣ ହୋଇନଥାନ୍ତେ । କଲେଜରୁ ଶିକ୍ଷା ସମାପ୍ତ କରିବା ପରେ ଚାକିରୀ ପାଇବା ପାଇଁ ବହୁ ଛାତ୍ର ମୋର ସାହାଯ୍ୟ ଚାହିଁଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଛାତ୍ରଙ୍କୁ ଭାରତୀୟ ଦୁଗ୍ଧ ଗବେଷଣା ସଂସ୍ଥା ଅଧୀନରେ ଦୁଗ୍ଧ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିବା ପାଇଁ ମୁଁ ଦୁଗ୍ଧବିଜ୍ଞାନ ମହାବିଦ୍ୟାଳୟର ଅଧକ୍ଷ ଡଃ ନାୟାର୍‌ଙ୍କ ପାଖକୁ ପଠାଇଲି । ଡଃ ନାୟାର୍ ମୋର ଆମେରିକାନ୍ ପ୍ରଫେସର ଡଃ ଲଡ୍‌ୱିକ୍‌ଙ୍କର ଛାତ୍ର ଥିବାରୁ ମୋ ଚିଠି ପାଇବା ମାତ୍ରେ ସେମାନଙ୍କୁ ସାହାଯ୍ୟ କରୁଥିଲେ । ତନ୍ମଧ୍ୟରୁ ଅଧିକାଂଶ କୃତୀ ଛାତ୍ର ଜାତୀୟ ସ୍ତରରେ, ଏନ୍.ଡି.ଡି.ବି, ଅମୁଲ୍ ଓ ପରେ ଓମ୍‌ଫେଡ୍‌ରେ ବହୁ ଉଚ୍ଚପଦବୀରେ ଚାକିରୀ ପାଇଲେ ।

ଇତି ମଧ୍ୟରେ ଓଡ଼ିଶା ପଶୁପାଳନ ବିଭାଗର ନିର୍ଦ୍ଦେଶକ ଡ଼ଃ ଗଣେଶ୍ୱର ବିଶ୍ୱାଳ ମୋତେ ବିଭାଗକୁ ଫେରାଇ ନେବା ଲାଗି ବ୍ୟବସ୍ଥା କଲେ । ମାତ୍ର ପଶୁ ଚିକିତ୍ସା ମହାବିଦ୍ୟାଳୟର ଅଧକ୍ଷ ଡଃ ଶିବକୁମାର ମିଶ୍ର ମୋତେ ଛାଡ଼ିବାକୁ ଚାହୁଁ ନଥିଲେ । ମୋ ପଢ଼ାଇବାର ଶୈଳୀ ଓ ଗବେଷଣା ଜ୍ଞାନ ତାଙ୍କୁ ମୁଗ୍ଧ କରିଥିଲା । ସେ କହିଲେ ଏଇଠି ତୁମେ ଖୁବ୍ ଶୀଘ୍ର ପ୍ରଫେସର ପଦବୀ ପାଇବ । ତେଣୁ ବିଭାଗକୁ ଫେରିବା ଠିକ୍ ହେବ ନାହିଁ । ଇତି ମଧ୍ୟରେ ପଶୁଚିକିତ୍ସା ମହାବିଦ୍ୟାଳୟର ଯେଉଁ ଅଧ୍ୟାପକମାନେ ଆମେରିକାରେ ଡକ୍ଟରେଟ୍ କରୁଥିଲେ, ସେମାନେ ଡକ୍ଟରେଟ୍ ହାସଲ କରି ଫେରି ଆସିଥିଲେ ।

ବିଭାଗରେ ଯେଉଁ ପ୍ରଫେସର ପଦବୀ ସୃଷ୍ଟି ହେବ, ସେଥିଲାଗି ସେମାନେ ଆଶା କରି ରହିଥିଲେ । ତେଣୁ ମୁଁ ଅଧକ୍ଷଙ୍କୁ ବିନୀତ ଭାବରେ କହିଲି, ଆପଣଙ୍କର ମୋ ପ୍ରତି ଯେପରି ଆଶୀର୍ବାଦ ରହିଛି, ସେଥିଲାଗି ମୁଁ ଆପଣଙ୍କ ନିକଟରେ ଋଣୀ । ମାତ୍ର ପଦୋନ୍ନତି ଲାଗି ଏମାନଙ୍କ ସହିତ ପ୍ରତିଯୋଗିତା କରିବା ଫଳରେ ସେମାନେ ହିଂସ୍ର ହୋଇ ପଡ଼ିବେ । ଏବେ ପଶୁପାଳନ ବିଭାଗକୁ ଫେରିଗଲେ ମୁଁ ଜଣେ ପ୍ରଶାସକ ଭାବେ ମାତୃଭୂମି ଓଡ଼ିଶାର ଉନ୍ନତି ଦିଗରେ ସିଧାସଳଖ କିଛି କରିପାରିବି । ମୋର

ବିସ୍ତୃତ ଭବିଷ୍ୟତ ପଡ଼ିଛି । ଏକ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ନିଜକୁ ଆବଦ୍ଧ ନକରି ଏତେବଡ଼ ରାଜ୍ୟର ଉନ୍ନତି ଦିଗରେ ମୋ ପକ୍ଷରେ ଯାହା ସମ୍ଭବ ହେବ କରିବାକୁ ଚେଷ୍ଟା କରିବି । ଶିକ୍ଷାଦାନ କରିବା ଓ ଗବେଷଣା କରିବା କ୍ଷେତ୍ରରେ ମୋର ପାରଦର୍ଶିତା ପ୍ରମାଣିତ ହୋଇସାରିଛି । ସେ ସବୁକୁ ପାଥେୟ କରି ସରକାରୀ ସ୍ତରରେ ଯଦି ଭଲ କାମ କରାଯାଇ ପାରେ ତେବେ ଜନସାଧାରଣ ତଦ୍ଦ୍ୱାରା ଉପକୃତ ହୋଇ ପାରିବେ ।

ଅଧ୍ୟକ୍ଷ ଡକ୍ଟର ମିଶ୍ର ମୋତେ ଆଉ ଅଟକାଇଲେ ନାହିଁ । ସେ ମୋତେ ଆଶୀର୍ବାଦ କରି କହିଲେ, ଦିନ ଆସିବ ତୁମେ ନିଶ୍ଚୟ ପଶୁପାଳନ ବିଭାଗର ସର୍ବୋଚ୍ଚ ପଦବୀରେ ଅଧିଷ୍ଠିତ ହେବ । ହେଲେ, ତୁମ ପରି ଜଣେ କର୍ତ୍ତବ୍ୟନିଷ୍ଠ ଗବେଷକ ଓ ଅଧ୍ୟାପକଙ୍କୁ ଆମେ ହରାଇବୁ । ତୁମେ ଯୁଆଡ଼େ ଯାଅ, ତୁମର ଉତ୍ତରୋତ୍ତର ଉନ୍ନତି ମୁଁ କାମନା କରୁଛି ।

ସହକାରୀ ନିର୍ଦ୍ଦେଶକ ଭାବେ ପଶୁପାଳନ ବିଭାଗକୁ ମୁଁ ଫେରି ଆସିଲି । ମୋତେ ଦେଖି ନିର୍ଦ୍ଦେଶକ ଡକ୍ଟର ବିଶ୍ୱାଳ ବହୁତ ଖୁସି ହେଲେ । କହିଲେ, ଆଉ ଅଳ୍ପଦିନ ଭିତରେ ତୁ ପ୍ରଥମ ଶ୍ରେଣୀ ପାହ୍ୟା ପାଇଯିବୁ । ସେ ପର୍ଯ୍ୟନ୍ତ ତୁ ମୋ ଅଧୀନରେ କାର୍ଯ୍ୟ କରିବୁ । ଆଉ କୌଣସି ଉପନିର୍ଦ୍ଦେଶକ ବା ଯୁଗ୍ମ ନିର୍ଦ୍ଦେଶକ ଅଧୀନରେ ତୋର କାମ କରିବା କଥା ହେଲେ ତୋର ଉଚ୍ଚଶିକ୍ଷା ପୃଷ୍ଠଭୂମି ତଥା ଉଜ୍ଜ୍ୱଳ ଭବିଷ୍ୟତ ଆଶା ଦେଖି ସେମାନେ ଈର୍ଷାନ୍ୱିତ ହୋଇ ତୋର ଗୁପ୍ତଚରିତ୍ର ଲେଖିବାରେ ହାନୀକାରକ ମନ୍ତବ୍ୟ ଦେବାର ଯଥେଷ୍ଟ ଆଶଙ୍କା ଅଛି । ତେଣୁ ତୋର ସମସ୍ତ କାର୍ଯ୍ୟ ମୋ ଜରିଆରେ ହେବ ଓ ତୁ ଯଥାଶୀଘ୍ର ପ୍ରଥମ ଶ୍ରେଣୀ ପାହ୍ୟା ପାଇବା ଲାଗି ଏବେଠାରୁ ବିଭାଗରେ କାଗଜପତ୍ର କାମ ଆରମ୍ଭ କର ।

## ଓଡ଼ିଶା ପଶୁପାଳନ ବିଭାଗ

କୃଷି ବିଶ୍ୱବିଦ୍ୟାଳୟ ଛାଡ଼ି ସରକାରୀ ଚାକିରୀରେ ଯୋଗଦେବା ପରେ ମୋର ଦରମା ମାସିକ ଦୁଇଶହ ଟଙ୍କା କମିଗଲା । ପାଞ୍ଚଶହ ଟଙ୍କାରେ ମାସକ ଚଳିବା ମୋ ପକ୍ଷେ ଖୁବ୍ କଷ୍ଟଦାୟକ ହେଲା । ତହିଁରୁ ପୁଣି ବାପାଙ୍କ ପାଖକୁ ପ୍ରତି ମାସରେ ଶହେ ଟଙ୍କା ପଠାଇବାକୁ ପଡୁଥିଲା । ଭୁବନେଶ୍ୱରରୁ ଯିବା ଆସିବା କରି ମଙ୍ଗଳାବାଗସ୍ଥ ନିର୍ଦ୍ଦେଶାଳୟରେ କାର୍ଯ୍ୟ କରିବାକୁ ପଡୁଥାଏ । ନିର୍ଦ୍ଦେଶକ ଡକ୍ଟର ବିଶ୍ୱାଳ କହିଲେ, ଭାରତୀୟ କୃଷି ଗବେଷଣା ସଂସ୍ଥା ପକ୍ଷରୁ କଟକ ଦୁଗ୍ଧ ଯୋଗାଣ ସଂସ୍ଥା ଫୁଲନଖରା

ଠାରେ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ ଉପରେ ଦୁଇଟି ଗବେଷଣା ପ୍ରସ୍ତାବ ରହିଛି । ତୁମେ ସହକାରୀ ନିର୍ଦ୍ଦେଶକ ଭାବେ ସେହି ଦାୟିତ୍ୱରେ ରହିବାପରେ ସେହି ଯୋଜନାରେ ଥିବା ପ୍ରଥମଶ୍ରେଣୀ ପଦବୀରେ ତୁମନାମ ସୁପାରିଶ୍ କରାଯିବ । ତେଣୁ ତୁମେ ଫୁଲନଖରାରେ ସେହି କାର୍ଯ୍ୟ ଆରମ୍ଭ କର ।

ବିଭାଗୀୟ ନିର୍ଦ୍ଦେଶକ ଡକ୍ଟର ବିଶ୍ୱାଳ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ ମୋର ଶିକ୍ଷକ ଥିବାରୁ ମୋ ପ୍ରତି ତାଙ୍କର ସ୍ନେହଭାବ ଥିଲା । ଜଣେ ଦୁଗ୍ଧ ବିଜ୍ଞାନୀ ତଥା ଗବେଷକ ଭାବରେ ମୋର ସାମର୍ଥ୍ୟ ତାଙ୍କୁ ଭଲଭାବେ ଜଣାଥିଲା । ଏହାଛଡ଼ା ପ୍ରଶାସକ ପଦବୀରେ ରହିଲେ ମୁଁ କ'ଣ କରିପାରିବି ତାହା ମଧ୍ୟ ସେ ଜାଣିଥିଲେ । ତେଣୁ ତାଙ୍କପରେ ମୁଁ ନିର୍ଦ୍ଦେଶକ ରହି ବିଭାଗର ଯଥେଷ୍ଟ ଉନ୍ନତି କରିପାରିବି ବୋଲି ସେ ହୃଦୟଙ୍ଗମ କରିଥିଲେ । ହେଲେ, ମଣିଷ ଯାହା ଭାବେ ତାହା ସବୁବେଳେ ସତ୍ୟ ହୁଏନା । ପରବର୍ତ୍ତୀ କାଳରେ ଏହା ମଧ୍ୟ ପ୍ରମାଣିତ ହୋଇଥିଲା ।

ସେତେବେଳେ ଦୁଗ୍ଧ ଯୋଗଣ କେନ୍ଦ୍ରର ପରିଚାଳକ ଭାବେ ରଘୁନାଥ ପଟ୍ଟନାୟକ ଓ ଦୁଗ୍ଧ ସଂଗ୍ରହ ଦାୟିତ୍ୱରେ ସଚ୍ଚିଦାସ ନାମକ ଦ୍ୱିତୀୟଶ୍ରେଣୀ ପାହ୍ୟାର ଦୁଇଜଣ ଅଫିସର ଥାଆନ୍ତି । ଏହାଛଡ଼ା ସେଠାରେ ଜଣେ ତୃଣ ଉନ୍ନୟନ ଅଧିକାରୀ ଓ ଜଣେ ଦୁଗ୍ଧ ଉତ୍ପାଦନ ପରିଦର୍ଶକ ମଧ୍ୟ କାର୍ଯ୍ୟ କରୁଥାନ୍ତି । ଦୁଗ୍ଧସଂଗ୍ରହ, ପରିବହନ, ପ୍ରକ୍ରିୟାକରଣ ଓ ବିକ୍ରୟ ପାଇଁ ଏହି ଯୋଜନାରେ ପ୍ରାୟ ଦେଢ଼ଶହଲୋକ କାର୍ଯ୍ୟରତ ଥାଆନ୍ତି । କଟକରେ ରହୁଥିବା ଦୁଗ୍ଧ ଉନ୍ନୟନ ଉପନିର୍ଦ୍ଦେଶକ ପୁରନ୍ଦର ସାହୁ ଏସବୁର ଦାୟିତ୍ୱରେ ଥାଆନ୍ତି । ମୋ କାର୍ଯ୍ୟାଳୟ ପାଇଁ ଘରଦ୍ୱାର, ଆସବାବପତ୍ର ବ୍ୟବସ୍ଥାକରିବା ଓ ଅଫିସକାର୍ଯ୍ୟ କରିବାକୁ ଖାଲିଥିବା ପଦବୀରେ ନୂତନ ନିଯୁକ୍ତି ଦେବା ଲାଗି ଚେଷ୍ଟାକଲି । ଏହି ଯୋଜନା କେବଳ ଯେ ଓଡ଼ିଶାରେ ଆରମ୍ଭ ହେଉଥାଏ ତାହା ନୁହେଁ । ଆନ୍ଧ୍ର, ତାମିଲନାଡୁ, ପଞ୍ଜାବ, ହରିୟାଣା, ପଶ୍ଚିମବଙ୍ଗ, ମହୀଶୂର ଆଦି ରାଜ୍ୟରେ ମଧ୍ୟ ଏହି କାର୍ଯ୍ୟ ଚାଲିଥାଏ । ହରିୟାଣାର କର୍ଣ୍ଣାଲଠାରେ ଥିବା ଜାତୀୟ ଦୁଗ୍ଧ ଗବେଷଣା ପ୍ରତିଷ୍ଠାନର ପ୍ରଫେସର ଏହି ସର୍ବଭାରତୀୟ ଯୋଜନାର ମୁଖ୍ୟସଂଯୋଜକ ଥାଆନ୍ତି । ସେ ଥିଲେ ପ୍ରଫେସର ଏମ୍ .ଆର୍ ଶ୍ରୀନିବାସନ୍ ।

ଏହି ଗବେଷଣା ବିଷୟରେ ପ୍ରଫେସର ଶ୍ରୀନିବାସନ୍ ଏକ ଆଲୋଚନାଚକ୍ରର ଆୟୋଜନ କଲେ । ସେଥିରେ ଯୋଗ ଦେବାକୁ ମୁଁ କର୍ଣ୍ଣାଲ ଗଲି । ଦେଶର ବିଭିନ୍ନ ରାଜ୍ୟରୁ ଆସିଥିବା ବୈଜ୍ଞାନିକ ମାନଙ୍କ ସହିତ ମୋର ଭେଟ ହେଲା । ଗବେଷଣା ଜରିଆରେ ନିମ୍ନଗୁଣାତ୍ମକ ଦୁଗ୍ଧର ଅର୍ଥକାରୀ ଉପଯୋଗ କରାଇବା ଉପରେ ବିଭିନ୍ନ

ରାଜ୍ୟରେ ହେଉଥିବା କାର୍ଯ୍ୟର ସମୀକ୍ଷା ହେଲା । ସେ ବିଷୟରେ ମୋର ସମ୍ୟକ୍ ଧାରଣା ହୋଇଗଲା ଓ ଖୁବ୍ ଶୀଘ୍ର ଏସବୁ ଓଡ଼ିଶାରେ ହୋଇ ପାରିବାର ବିଶ୍ୱାସ ମଧ୍ୟ ମୋର ହେଲା । କଟକ ଫେରିବାପରେ ମୁଁ ଗବେଷଣା କାର୍ଯ୍ୟ ପୂରା ଦମ୍‌ରେ ଆରମ୍ଭ କଲି । କଟକ ଦୁଗ୍ଧଯୋଗାଣ କେନ୍ଦ୍ର ଜରିଆରେ ଚାଷୀମାନଙ୍କ ଠାରୁ ନିମ୍ନମାନର ଦୁଗ୍ଧ ସଂଗ୍ରହକରି ତହିଁରୁ ସୁବାସିତ ଦୁଗ୍ଧ, ଦହି, ଲସି, ମିଠାଛେନା ଓ ଛେନାପାଣି ସର୍ବତ ତିଆରି କରି ତାର ଗୁଣାତ୍ମକ ମାନ ପରୀକ୍ଷା କରାଗଲା । ମୋତେ ସାହାଯ୍ୟ କରିବାକୁ ଜଣେ ପ୍ରାଣୀଚିକିତ୍ସକ ଫୁଲନଖରା ବଦଳି ହୋଇ ଆସିଲେ । ଜୋରସୋର୍ କାମ ହେଲା । ମୋ ଅଧୀନରେ ଜଣେ ହେଡ୍‌କ୍ଲର୍କ, ଜଣେ କନିଷ୍ଠ କିରାଣୀ, ଜଣେ ଷ୍ଟେନୋ ରହି ଏକ ପୂର୍ଣ୍ଣାଙ୍ଗ ଅଫିସ୍ ଆରମ୍ଭ ହେଲା ।

ମୋ ପାଇଁ ସେହି କାର୍ଯ୍ୟାଳୟ ହତା ଭିତରେ ରହିବା ପାଇଁ ଘର ଦିଆଗଲା । ଭୁବନେଶ୍ୱର ଛାଡ଼ି ଫୁଲନଖରା ଆସିବା ପୂର୍ବରୁ ମୋ ବାଡ଼ିରେ ଲଗାଇଥିବା କଦଳୀ ଗଛ ସବୁ ଆଣି ଏଠି ଦିଆଯାଇଥିବା ଘର ପଛପଟେ ଲଗାଇବାକୁ ଚେଷ୍ଟା କଲି । କୃଷି ବିଶ୍ୱବିଦ୍ୟାଳୟର ଜଣେ ମାଳିକୁ ଏକମାସ ପାଇଁ ଫୁଲନଖରାରେ ରଖାଇ ମୋ ବାସଗୃହ ହତାରେ ବଡ଼ବଡ଼ ଗାତ ଖୋଳାଇବାର ବ୍ୟବସ୍ଥା କଲି । ଭୁବନେଶ୍ୱରରେ ଦୁଧ ବିକ୍ରୀ ସାରି ଫେରନ୍ତା ଦୁଧ ଟ୍ରକ୍‌ରେ ବଡ଼ ବଡ଼ ବଦଳି ଗଛ ଗୁଡ଼ିକ ଫୁଲନଖରାକୁ ଅଣାଯାଇ ଲଗାଇ ଦିଆଗଲା । ଏକମାସ ଭିତରେ ସେସବୁ ଗଛ ଖୁବ୍ ଶସିଅଳ ହୋଇ ବଢ଼ିବା ଫଳରେ ଏକ ବହୁ ପୁରାତନ କଦଳୀ ବଗିଚା ପରି ଦିଶିଲା । ଲୋକେ କହିଲେ, "ରାତୋଁ ରାତୋଁ ଲମ୍ବି ଦାଢ଼ି ।" ମୋ ଝିଅ ବିନୁର ଭୁବନେଶ୍ୱରରେ ବାର୍ଷିକପରୀକ୍ଷା ସରିବାପରେ ପିଲାମାନେ ଫୁଲନଖରା ଆସିଲେ । ମୋ ଶ୍ୱଶୁରଘର ଲୋକେ କହିଲେ ପିଲାମାନେ କଟକରେ ରହି ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପଢ଼ନ୍ତୁ । ମାତ୍ର ମୁଁ ସେ ପ୍ରସ୍ତାବରେ ରାଜି ନଥିଲି। କହିଲି, ମୁଁ ନିଜେ ଗାଆଁ ସ୍କୁଲରେ ପାଠ ପଢ଼ିଛି । ମୋ ପିଲାମାନେ ମଧ୍ୟ ଗ୍ରାମ୍ୟ ପରିବେଶ ଭିତରେ ଫୁଲନଖରା ବିଦ୍ୟାଳୟରେ ପଢ଼ିବେ ।

ପାଖ କ୍ୱାର୍ଟରରେ ଦୁଗ୍ଧ ବିଶୋଧନ କାରଖାନାର ପରିଚାଳକ ରଘୁନାଥ ପଟ୍ଟନାୟକଙ୍କ ପିଲମାନେ ରହୁଥାନ୍ତି । ଆମ ଦୁଇ ପରିବାର ଖୁବ୍ ଆନନ୍ଦରେ ସମୟ ବିତାଇଲେ । ଅଳ୍ପ କେତେମାସ ଭିତରେ ବାଡ଼ିରେ ପ୍ରଚୁର କଦଳୀ ଫଳିଲା । ତା ସାଙ୍ଗକୁ ଶାଗ, ଲଙ୍କା, ଭେଣ୍ଡି ଆଦି ଅନେକ ପରିବା ମଧ୍ୟ ଆମକୁ ମିଳିଲା । ମାତ୍ର ଦୁଇ ତିନି ମାସ ଭିତରେ ଓଡ଼ିଶା ଲୋକସେବା ଆୟୋଗ ପକ୍ଷରୁ ପ୍ରାର୍ଥୀ ଚୟନ ବ୍ୟବସ୍ଥା ମାଧ୍ୟମରେ ମୁଁ ପ୍ରଥମ ଶ୍ରେଣୀ ପାହ୍ୟାକୁ ପ୍ରମୋଶନ ପାଇଲି । ମୋର ଆର୍ଥିକ

ଅନଟନ କିଛି ମାତ୍ରାରେ ଲାଘବ ହେଲା । ତଥାପି ଗାଆଁରେ ବାପାଙ୍କ ଖର୍ଚ୍ଚ ପାଇଁ ଅଧିକ ଅର୍ଥ ଯୋଗାଇବା ସମ୍ଭବ ହୋଇ ପାରୁ ନଥାଏ ।

ପିଲାଟିଦିନୁଁ ବାପା ବହୁତ ବଦଖର୍ଚ୍ଚୀ ଥିଲେ । ଜେଜେ ନାରାୟଣପ୍ରସାଦଙ୍କ ଦେହାନ୍ତ ବେଳକୁ ଆମର ଛଅଶହ ଏକର ଜମି ଥିଲା । ବହୁତ ଜମିଦାରୀ ମଧ୍ୟ ଥିଲା । ମାତ୍ର ବାପା ସେସବୁ ବିକ୍ରୀ କରି ଖୁବ୍ ଅୟସରେ ଚଳିଲେ । ବାପା କେମିତି ଖୁସିରେ ରହିବେ ମୋର ସେଇଆ ଲକ୍ଷ୍ୟ ଥିଲା । ମାତ୍ର ତାଙ୍କ ପାଇଁ ଆବଶ୍ୟକ ଅର୍ଥ ଯୋଗାଇବା ମୋ ପକ୍ଷରେ ସମ୍ଭବ ହେଉନଥିଲା । ବାପା ଅଧିକାଂଶ ସମୟ ମୋ ପାଖକୁ ଚାଲିଆସିଲେ ଖୁବ୍ ଭଲ ଲାଗୁଥିଲା । ସାତ ଆଠଦିନ ରହି ପୁଣି ସେ ଗାଆଁକୁ ଫେରି ଯାଉଥିଲେ । ଗାଆଁ ଛାଡ଼ି ଏଠି ଦୀର୍ଘଦିନ ରହିବାକୁ ସେ ଭଲ ପାଉନଥିଲେ ।

ସରକାରୀ ଚାକିରୀରେ ପ୍ରଶାସନିକ ପାହ୍ୟାରେ ରହିବାପରେ ମୋର ଶିକ୍ଷା ଦୀକ୍ଷା ଓ ବୃତ୍ତିକୁ ନେଇ ମାତୃଭୂମି ଓଡ଼ିଶାର କି ପ୍ରକାର ସେବା କରିପାରିବି ସେଇ ଚିନ୍ତା ମୁଣ୍ଡକୁ ଘାରୁଥିଲା । ସେତେବେଳେ ସାଧାରଣ ଲୋକମାନେ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ ଟିକେ ଖାଇବାକୁ ପାଇବା ସହଜସାଧ୍ୟ ନଥିଲା । ମାତ୍ର ଉତ୍ତରଭାରତରେ କର୍ଣ୍ଣାଲର ଦୁଗ୍ଧଜାତ ଦ୍ରବ୍ୟସବୁ ଏ ଦିଗରେ ମାନସିକତା ସୃଷ୍ଟି କରାଇଥିବା ଲକ୍ଷ୍ୟ କଲି । ହେଲେ, ସେତେବେଳେ କଟକ ଦୁଗ୍ଧଯୋଗାଣ କେନ୍ଦ୍ରରେ ମାତ୍ର ଦୁଇ ହଜାର ଲିଟରରୁ ଅଧିକ ଦୁଗ୍ଧ ପ୍ରକ୍ରିୟାକରଣ ପାଇଁ ମିଳିପାରୁ ନଥିଲା । ଏତିକି ମାତ୍ର ଦୁଗ୍ଧକୁ କଟକ ଓ ଭୁବନେଶ୍ୱରରେ ବିତରଣ କରାଯାଉଥିଲା । ଭାବିଲି ମୋ ଗବେଷଣା ସ୍କିମ୍ ଜରିଆରେ ଓଡ଼ିଶାରେ ଏ ଦିଗରେ ମଧ୍ୟ କିଛି କରାଯାଇ ପାରିବ । ଭାବିଲି ମୋ ସ୍କିମ୍ ଜରିଆରେ ଚାଷୀମାନଙ୍କ ଠାରୁ ମିଳୁଥିବା ନିମ୍ନମାନର ଦୁଗ୍ଧ ସଂଗ୍ରହ କରାଯାଇ କଟକ ଓ ଭୁବନେଶ୍ୱରରେ ଏଥିରୁ ଦୁଗ୍ଧଜାତ ଦ୍ରବ୍ୟ ପ୍ରସ୍ତୁତକରି ବିକ୍ରୟ କରାଯାଇ ପାରିଲେ ଏ ଦିଗରେ ସାଧାରଣ ଲୋକଙ୍କର ଦୃଷ୍ଟି ଆକର୍ଷିତ ହୋଇପାରିବ ଓ ଚାଷୀମାନେ ଲାଭବାନ ହୋଇ ପାରିବେ । ତେଣୁ କଟକରେ ୪/୫ଟି ଦୁଗ୍ଧଜାତ ଦ୍ରବ୍ୟ ବିକ୍ରୟ କେନ୍ଦ୍ର ଖୋଲିବାର ବ୍ୟବସ୍ଥା କଲି । ଓଡ଼ିଶା ସଚିବାଳୟ ପରିସର ମଧ୍ୟରେ ଗୋଟିଏ ମିଲ୍କବାର ଖୋଲିବାକୁ ବିଭାଗୀୟ ସଚିବ ଅନୁମତି ଓ ଅର୍ଥ ଯୋଗାଇ ଦେଲେ । ସଚିବାଳୟ ଉତ୍ତରଦାଣ୍ଡିରେ ଅର୍ଥ ବିଭାଗ ତଳେ ମିଲ୍କବାର ଖୋଲା ହେଲା ଓ ଏହାର ଉଦ୍‌ଘାଟନ କଲେ ତତ୍‌କାଳୀନ ରାଜ୍ୟପାଳ ଶ୍ରୀ ବି.ଡ଼ି. ଜତ୍ତି । ସେତେବେଳେ ସାରା ଦେଶରେ ରାଷ୍ଟ୍ରପତି ଶାସନ ଚାଲିଥାଏ । ଓଡ଼ିଶାର ଅଧିକାଂଶ ନେତା ଜେଲ୍‌ରେ ଅଥବା ଅଜ୍ଞାତବାସରେ ଥାଆନ୍ତି । ରାଜ୍ୟରେ ରାଜ୍ୟପାଳ ଥାଆନ୍ତି ଶାସନମୁଖ୍ୟ । ତାଙ୍କର ଦୁଇ ପରମର୍ଶଦାତା ମିଃ ବାଲଚନ୍ଦ୍ରନ ଓ ମିଃ ସତାରାଓ୍ୱାଲା ମଧ୍ୟ ଉଦ୍‌ଘାଟନ

ଉତ୍ସବରେ ଯୋଗଦେଲେ । ସଚିବାଳୟର ସମସ୍ତ କର୍ମଚାରୀଙ୍କୁ ସେଦିନ ମାଗଣାରେ ସୁବାସିତ ଦୁଗ୍ଧ ବିତରଣ କରାଗଲା । ସଚିବାଳୟ କ୍ୟାଣ୍ଟିନ୍ ମାନଙ୍କରେ ଦହି, ଛେନା, ସୁବାସିତ ଦୁଗ୍ଧ ଆଦି ମଧ୍ୟ ବିକ୍ରି ପାଇଁ ଯୋଗାଇ ଦିଆଗଲା । ଲୋକେ ସେସବୁ ଆନନ୍ଦରେ ଉପଯୋଗ କଲେ । ଏହାପରେ ନନ୍ଦନକାନନ ପ୍ରାଣୀ ଉଦ୍ୟାନ ମଧ୍ୟରେ ଦର୍ଶକମାନଙ୍କ ଲାଗି ଏକ ଦୁଗ୍ଧଜାତ ଦ୍ରବ୍ୟ ବିକ୍ରୟ କେନ୍ଦ୍ର ଖୋଲା ହେଲା। କଟକରେ ମେଡିକାଲ ହତା, ଜିଲାପାଳ କାର୍ଯ୍ୟାଳୟ, ଶୈଳବାଳାମହିଳା କଲେଜ ଓ ଅନ୍ୟ କେତେକ ସ୍ଥାନରେ ମଧ୍ୟ ଏପରି କେନ୍ଦ୍ରମାନ ଖୋଲାହେଲା ।

କର୍ଣ୍ଣାଲରୁ ମୋ ଗବେଷଣା ଯୋଜନାର ମୁଖ୍ୟ ସଂଯୋଜକ ପ୍ରଫେସର ଶ୍ରୀନିବାସନ୍ ଆସି ଏସବୁ ଦେଖି ଅତ୍ୟନ୍ତ ପ୍ରୀତ ହେଲେ । କହିଲେ ବାଃ, ତୁମେ ଓଡ଼ିଶା ପରି ରାଜ୍ୟରେ ମଧ୍ୟ ଏହି ଯୋଜନାର ସୁଫଳ ବାଣ୍ଟିବାକୁ ଆରମ୍ଭ କରି ଦେଲ ? ପଞ୍ଜାବ, ହରିଆନା ପରି ରାଜ୍ୟରେ ଲୋକମାନେ ଓଡ଼ିଶା ତୁଳନାରେ ଧନୀ । ସେମାନେ ଦୁଗ୍ଧଜାତ ଦ୍ରବ୍ୟର ଆଦର କରିଜାଣନ୍ତି । ମାତ୍ର ଓଡ଼ିଶାପରି ରାଜ୍ୟରେ ଯେଉଁଠି ଦୁଗ୍ଧ ଉତ୍ପାଦନ ଏତେ କମ୍ ସେପରି କ୍ଷେତ୍ରରେ ତୁମ ପ୍ରଚେଷ୍ଟା ବେଶ୍ ଉନ୍ନତତର ହୋଇପାରିଛି । ସେ ଯାଇ ଆମ ବିଭାଗୀୟ ସଚିବ ଓ ନିର୍ଦ୍ଦେଶକଙ୍କୁ ଭେଟି ଓଡ଼ିଶାରେ ଦୁଗ୍ଧ ଉତ୍ପାଦନ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା କରି ଚାଷୀମାନଙ୍କ ପାଖରୁ ଯେପରି ଅଧିକରୁ ଅଧିକ ଦୁଗ୍ଧ ସଂଗ୍ରହ କରି ଖାଉଟି ମାନଙ୍କୁ ଦୁଗ୍ଧଜାତ ଦ୍ରବ୍ୟ ଯଥେଷ୍ଟ ପରିମାଣରେ ଯୋଗାଇ ଦିଆଯାଇ ପାରିବ ସେ ବିଷୟରେ ଆଲୋଚନା କଲେ ।

କେତେକ କାରଣରୁ ଫୁଲନଖରା ଦୁଗ୍ଧଯୋଗାଣ କେନ୍ଦ୍ରରେ ଶ୍ରମିକ ବିଶୃଙ୍ଖଳା ଦେଖାଦେଲା । ଶ୍ରମିକମାନେ କାର୍ଯ୍ୟରେ ଯୋଗଦେଲେ ନାହିଁ । ଦୁଗ୍ଧ ପ୍ରକ୍ରିୟାକାରୀ ଯନ୍ତ୍ର ନଷ୍ଟ କରିଦେଲେ । କଟକ ଓ ଭୁବନେଶ୍ୱରକୁ ଦୁଗ୍ଧ ଯୋଗଣ ବନ୍ଦ ହୋଇଗଲା । କଟକରୁ ଉପନିର୍ଦ୍ଦେଶକ ଶ୍ରୀ ପୁରନ୍ଦର ସାହୁ ଯାଇ ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କରି ବାରମ୍ବାର ଅପମାନିତ ହେଲେ ।

ପଶୁସମ୍ପଦ ବିଭାଗର ଶାସନସଚିବ ମୋତେ ଡକାଇ ଦୁଗ୍ଧଯୋଗଣ କେନ୍ଦ୍ରର ସମସ୍ତ ଦାୟିତ୍ୱ ନିର୍ବାହ କରିବାକୁ କହିଲେ। ଏପରି ଗଣ୍ଡଗୋଳିଆ ପରିସ୍ଥିତିରେ ମୁଁ କ'ଣ କରିପାରିବି ବୁଝିପାରୁ ନଥିଲି । ସଚିବ କହିଲେ, ଆପଣ ଏ ବିଭାଗର ଜଣେ ଉଚ୍ଚଶିକ୍ଷିତ ଆମେରିକା ଫେରନ୍ତା ଅଫିସର । ଅନ୍ୟମାନଙ୍କ ତୁଳନାରେ ଆପଣଙ୍କର ବିଦ୍ୟାବୁଦ୍ଧି ଅଧିକ । ତେଣୁ ଆପଣ ଏପରି ପରିସ୍ଥିତିକୁ ସୁଧାରି ଦେଇ ପାରିବେ ବୋଲି ମୋର ବିଶ୍ୱାସ ହେଉଛି । ମୁଁ କିଛି ଆଉ କହିବାପୂର୍ବରୁ ମୋତେ ସରକାରୀ ଆଦେଶ

ଧରାଇ ଦିଆଗଲା । ଦୁଗ୍ଧଯୋଗଣ ସଂସ୍ଥାର ପରିଚାଳକ ରଘୁନାଥ ପଟ୍ଟନାୟକ ଓ ଦୁଗ୍ଧ ସଂଗ୍ରହ ଅଧିକାରୀ ସଚ୍ଚି ଦାସଙ୍କୁ ଅନ୍ୟତ୍ର ବଦଳି କରିଦିଆଗଲା । ସମସ୍ତ ଦାୟିତ୍ୱ ମୋତେ ଦିଆଗଲା । ମୋର ସହକାରୀ ଡାକ୍ତର ଅନ୍ତର୍ଯ୍ୟାମୀ ମହାନ୍ତି ଦୁଗ୍ଧ ସଂଗ୍ରହ ଦାୟିତ୍ୱ ଗ୍ରହଣ କଲେ । ମୁଁ କାର୍ଯ୍ୟଭାର ଗ୍ରହଣ କରିବା ଦିନ ଶ୍ରମିକସଂଘ ପକ୍ଷରୁ ଆନ୍ଦୋଳନ ବନ୍ଦକରିବା ଘୋଷଣା କରାଯାଇ ମୋତେ ସଂବର୍ଦ୍ଧନା ଦେବାକୁ ଭୋଜିଭାତର ବ୍ୟବସ୍ଥା କରାଗଲା । ଶ୍ରମିକସଂଘ ପକ୍ଷରୁ ମୋତେ ଫୁଲମାଳ ଦିଆଯାଇ ମୋ ସହିତ ପୂର୍ଣ୍ଣ ସହଯୋଗ କରିବାକୁ ସଂଘର କର୍ମକର୍ତ୍ତାମାନେ ଜବାବ ଦେଲେ । ଯାହା ଦେଖିଲି, ଉପରିସ୍ଥ କର୍ମଚାରୀ ଯଦି ସଚ୍ଚୋଟ ନ ହୋଇ ପାତରଅନ୍ତର ନୀତି ପ୍ରୟୋଗ କରନ୍ତି, ତା'ହେଲେ ତଳିଆ କର୍ମଚାରୀଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି ହୁଏ । କାର୍ଯ୍ୟରେ ସେମାନେ ବିଶୃଙ୍ଖଳା ସୃଷ୍ଟି କରନ୍ତି । ମୁଁ ସେପରି କରିବି ନାହିଁ ବୋଲି ସେମାନଙ୍କର ବିଶ୍ୱାସହେବାରୁ ପରିସ୍ଥିତି ସୁଧୁରିଗଲା । ହେଲେ ଏଥିଲାଗି ପୂର୍ବରୁ ଦାୟିତ୍ୱରେ ଥିବା ରଘୁନାଥ ପଟ୍ଟନାୟକ ଓ ସଚ୍ଚି ଦାସଙ୍କୁ ବଦଳି କରାଯାଇ ଥିବାରୁ ମୋତେ ନିଜକୁ ଜଣେ ଦୋଷୀପରି ମନେ ହେଉଥିଲା । ଯନ୍ତ୍ରପାତି ସଜାଡ଼ି ମୁଁ ପୁନର୍ବାର ଦୁଗ୍ଧଯୋଗଣ କାର୍ଯ୍ୟ ଆରମ୍ଭ କରିଦେଲି । ନିଆଳି, କାକଟପୁର ନିମାପଡ଼ା ଓ ଜଗତସିଂହପୁର ଜିଲାର ବୋରିକିନା ପର୍ଯ୍ୟନ୍ତ ଗସ୍ତକରି ଦୁଗ୍ଧ ସଂଗ୍ରହ କାର୍ଯ୍ୟ ପରିଦର୍ଶନ କରି ଦୁଗ୍ଧ ଯୋଗାଣକାରୀ ଚାଷୀମାନଙ୍କୁ ଅଧିକଲାଭ ଦେବାପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କଲି ।

ଜଗତସିଂହପୁର ଜିଲାର ବୋରିକିନା ଦୁଗ୍ଧ ସଂଗ୍ରହ କେନ୍ଦ୍ରରେ ଭଗବାନ ପଟ୍ଟନାୟକ ନାମକ ଜଣେ ନିଷ୍ଠାପର ପଶୁସହାୟକ ଦୁଗ୍ଧ ସଂଗ୍ରହ ଦାୟିତ୍ୱରେ ଥିଲେ । ସେଠାରେ ମୁଁ ଗୋଟିଏ ପ୍ରାଥମିକ ଦୁଗ୍ଧ ଉତ୍ପାଦକ ସମବାୟ ସମିତି ଗଠନ କଲି । ଚାଷୀମାନଙ୍କୁ ସେମାନଙ୍କ ପ୍ରାପ୍ୟ ଦେଇସାରି ସମବାୟ ସମିତି ପାଇଁ ଲିଟର ପିଛା ଦଶପଇସା ରଖିବାକୁ ଭଗବାନ ବାବୁଙ୍କୁ କହିଲି । ଏକବର୍ଷ ଶେଷରେ ଭଗବାନ ବାବୁ କହିଲେ ଏହି ପାଣ୍ଠିରେ କୋଡ଼ିଏ ହଜାର ଟଙ୍କା ହେଲାଣି । କଅଣ କରିବା ? ୧୯୭୩ ମସିହାରେ ଓଡ଼ିଶାରେ ନୂଆକରି ଜର୍ସି ଗାଈ ପାଳନ ଆରମ୍ଭ ହୋଇଥାଏ । ବୋରିକିନା ଅଞ୍ଚଳରେ ଜର୍ସିଗାଈ ପ୍ରାୟ ନଥାନ୍ତି । ତେଣୁ ମୁଁ ଭାରତୀୟ ଷ୍ଟେଟବ୍ୟାଙ୍କର ଜଗତସିଂହପୁର କୃଷି ବ୍ୟାଙ୍କରୁ ଋଣ ନେଇ ଏହି ସମବାୟ ସମିତିର ସଭ୍ୟମାନଙ୍କୁ ଗାଈ କିଣି ଦେବାକୁ ଯୋଜନା କଲି । ପ୍ରତି ଚାଷୀକୁ ଗୋଟିଏ କରି ଭଲ ଦୁଧିଆଳି ଗାଈ ଦେଲେ ଚାଷୀର ଆୟବୃଦ୍ଧି ହେବ ଓ କୋଡ଼ିଏଟି ଗାଈଙ୍କଠାରୁ ପ୍ରତିଦିନ ଦୁଇଶହ ଲିଟର ଦୁଗ୍ଧ ପାଇ ସମବାୟ ସମିତି ମଧ୍ୟ ଅଧିକ ଆୟ କରିବ ଓ ଭବିଷ୍ୟତରେ ଆଉ ଅଧିକ

ଭଲ ଗାଈ ଏ ଅଞ୍ଚଳକୁ ଆସିବେ । ସେତେବେଳେ ଗୋଟିଏ ଜର୍ସି ଗାଈର ଦାମ ତିନିହଜାରଟଙ୍କା ଥାଏ । ତେଣୁ ବ୍ୟାଙ୍କରୁ ଦୁଇ ହଜାର ଟଙ୍କା ଓ ସମବାୟ ସମିତି ପକ୍ଷରୁ ଏକ ହଜାର ଟଙ୍କା ପ୍ରତି ଚାଷୀକୁ ଦେଇ କୋଡ଼ିଏଟି ଜର୍ସି ଗାଈ ରାଜ୍ୟ ବାହାରୁ କିଣିବାକୁ ଚାଷୀମାନଙ୍କର ସଭା ଡକାଇ ଜଣାଇଦେଲି । ଏ ଖବରପାଇ ସେ ଗାଆଁର ସରପଞ୍ଚ ତାଙ୍କ ଦଳର ସଭ୍ୟମାନଙ୍କୁ ଲଗାଇ ସମବାୟ ସମିତିର ସଭାପତି ହେବାକୁ ଯୋଗାଡ଼ କଲେ । ସମବାୟ ସମିତିରେ ଥିବା କୋଡ଼ିଏ ହଜାର ଟଙ୍କାର ଲୋଭ ତାଙ୍କୁ ଗ୍ରାସ କଲା । ଏହାପଛରେ ମୋର ଚିନ୍ତାଧାରା କଅଣ, ସେ କଥା ଜାଣିବାକୁ ତାଙ୍କର ଇଚ୍ଛା ନ ଥିଲା । ତେଣୁ ଗାଆଁର କେତେଜଣ ଲୋକଙ୍କୁ ହାତ କରି ସେହି ସମବାୟ ସମିତିର ଦାୟିତ୍ୱ ନିଜ ହାତକୁ ନେବାର ସ୍ୱପ୍ନ ତାଙ୍କୁ ଘାରିଲା । ପ୍ରାୟ ମାସକ ଭିତରେ ସେ ସଭାପତି ହୋଇ ଭଗବାନ ବାବୁଙ୍କ ହାତରେ ଥିବା କୋଡ଼ିଏ ହଜାର ଟଙ୍କା ନେଇ ଯିବା କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଲୋକଙ୍କୁ ଦୁଧିଆଳୀ ଗାଈ ଯୋଗାଇଦେବା ସ୍ୱପ୍ନ ମୋର ସେତିକିରେ ସରିଗଲା । ଏବେ ବୁଝିଗଲିଯେ ଆମ ଦେଶରେ କଳିଯୁଗ ତାର କାର୍ଯ୍ୟ ଠିକ୍‌ଠାକ୍ କରିଚାଲିଛି। ସେଇ ଦିନରୁ ଆଉ ଏପରି କଲ୍ୟାଣକାରୀ ପ୍ରକଳ୍ପ ଗଢ଼ିବାର ଚିନ୍ତା ପରିହାର କଲି । ଯୁକ୍ତରାଷ୍ଟ୍ର ଆମେରିକାରେ ଥାଇ ମୋ ମାତୃଭୂମି ପାଇଁ କଅଣ କରିବି ବୋଲି ଯେଉଁ ଚିନ୍ତା ମୁଁ କରୁଥିଲି, ତାକୁ ପ୍ରତିହତ କରିବାକୁ ଯେ ବହୁ ପ୍ରତିବନ୍ଧକ ରହିଛି, ସେକଥା ଏବେ ମୁଁ ବୁଝିଗଲି ।

ଗବେଷଣା କାର୍ଯ୍ୟରେ ଅଧିକ ବୈଷୟିକ କର୍ମଚାରୀଙ୍କୁ ନିଯୋଜିତ କରି ପ୍ରତି ବିକ୍ରୟ କେନ୍ଦ୍ରକୁ ଦହି, ଛେନା, ଘିଅ ଆଦି ଅଧିକ ପରିମାଣରେ ବିକ୍ରୀ ପାଇଁ ପଠାଇଲି । ଲୋକଙ୍କ ଚାହିଦା ମେଣ୍ଟାଇବାକୁ ଅଧିକ ପରିମାଣରେ ଘିଅ ପ୍ରସ୍ତୁତ କରି ଯୋଗାଇ ଦିଆଗଲା । ପୂର୍ବାପେକ୍ଷା ଅଧିକରୁ ଅଧିକ ବିକ୍ରୀଲବ୍ଧ ଅର୍ଥ ଟ୍ରେଜେରୀରେ ଜମା କରାଗଲା । ସାରା ରାଜ୍ୟ ପାଇଁ ଏ ଦିଗରେ ଯୋଜନା ପ୍ରସ୍ତୁତ କରିବାକୁମୋତେ ନିର୍ଦ୍ଦେଶକ ଅନୁରୋଧ କଲେ । ପ୍ରଥମେ ଛଅଟି ଜିଲାରେ ଦୁଗ୍ଧ ସଂଗ୍ରହ ଓ ବିକ୍ରୟ ଲାଗି ଦୁଗ୍ଧ ପ୍ରକିୟାକରଣ କେନ୍ଦ୍ର ସୃଷ୍ଟି କରିବାକୁ ପ୍ରସ୍ତାବ ଦେଲି । ପୁରୀ, ବାଲେଶ୍ୱର, ଢେଙ୍କାନାଳ, ଗଞ୍ଜାମ, କଳାହାଣ୍ଡି ଓ ସମ୍ବଲପୁର ଜିଲା ମାନଙ୍କରେ ଏ ଦିଗରେ କାର୍ଯ୍ୟଆରମ୍ଭ ହେଲା ।

ଇତି ମଧ୍ୟରେ ପଶୁପାଳନ ଜରିଆରେ କ୍ଷୁଦ୍ରଚାଷୀ ଉନ୍ନୟନ ଯୋଜନା ଓଡ଼ିଶାକୁ ଆସିଲା । ଦୁଗ୍ଧ ଉତ୍ପାଦନ, କୁକୁଡ଼ା ପାଳନ ଓ ଘୁଷୁରୀ ପାଳନ କରି କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀ ଓ କୃଷି ଶ୍ରମିକ ମାନଙ୍କ ଆର୍ଥିକ ଅବସ୍ଥାରେ ଉନ୍ନତି ଲାଗି ସାରା ଦେଶରେ ଶହଶହ କୋଟି ଟଙ୍କା ଖର୍ଚ୍ଚ ହେବାକୁ କେନ୍ଦ୍ରିୟ ସାହାଯ୍ୟ ମିଳିଲା । ଏହାର

ମୁଖ୍ୟ ଉଦ୍ଦେଶ୍ୟ ଥିଲା, ଦେଶରେ ଦୁଗ୍ଧ, ଅଣ୍ଡା ଓ ମାଂସ ଉତ୍ପାଦନ ବୃଦ୍ଧି ଦ୍ୱାରା ଲୋକମାନଙ୍କର ପଶୁପାଳନ ଜରିଆରେ ଆୟ ବୃଦ୍ଧି କରାଇବା ।

ସ୍ୱାଧୀନତା ପରବର୍ତ୍ତୀ ବର୍ଷ ମାନଙ୍କରେ ଦେଶଟା ଅଭାବ ଅନଟନ ଭିତରେ ବୁଡ଼ି ରହିଥାଏ । ଗରିଆଡ଼େ ଖାଦ୍ୟର ଘୋର ଅଭାବ । କୃଷି ଶ୍ରମିକ ବା ମୂଲିଆ ମଜୁରିଆ ମାନେ ତିନି ଓଳିରେ ଓଳିଏ ଖାଇବାକୁ ପାଇବା କଷ୍ଟ ଦାୟକ ହେଉଥାଏ । ଶାଗଭାତ ଖାଇବାକୁ ଲୋକମାନଙ୍କର ସମ୍ବଳ ନଥାଏ । ଏପରିସ୍ଥଳେ ଦୁଧ, ଦହି, ମାଛ, ମାଂସ ବା ଅଣ୍ଡା ଖାଇବାକୁ ପାଇବା ଅତ୍ୟନ୍ତ ଭାଗ୍ୟର କଥା । ଦେଶୀ ଗାଈମାନେ ଦିନକୁ ହାରାହାରି ୨୫୦ରୁ ୫୦୦ ଗ୍ରାମ ଦୁଧ ଦେଉଥାନ୍ତି । ଗୋଟିଏ ଦେଶୀ କୁକୁଡ଼ା ବର୍ଷକୁ ୫୦ ରୁ ୬୦ ପର୍ଯ୍ୟନ୍ତ ଅଣ୍ଡା ଦେଉଥାଏ । କେବଳ ପର୍ବପର୍ବାଣୀ ଦିନ ଛାଡ଼ିଦେଲେ ଅନ୍ୟ ଦିନ ମାନଙ୍କରେ ଗାଆଁ ମାନଙ୍କରେ ମାଂସ ମିଳିବା ସମ୍ଭବପର ହେଉନଥାଏ । ସେତେବେଳେ ଓଡ଼ିଶାରେ ମୁଣ୍ଡପିଛା ମାତ୍ର ୩୩ ଗ୍ରାମ ଦୁଗ୍ଧ ମିଳୁଥାଏ ଓ ମୂଲିଆ ମଜୁରୀ ଦିନକୁ ଦୁଇଟଙ୍କାରୁ ତିନିଟଙ୍କା ପର୍ଯ୍ୟନ୍ତ ଥାଏ । ତେଣୁ ଗରିବ ଲୋକେ ଖୁବ୍ ଅଭାବରେ ଚଳୁଥାନ୍ତି । ଗୋପାଳନ ଜରିଆରେ ସେମାନଙ୍କ ଆର୍ଥିକ ଉନ୍ନତି ପାଇଁ ଏହି ଯୋଜନା ପ୍ରଣୟନ କରାଯାଇଥାଏ ।

ଦେଶୀ ଗାଈଙ୍କଠାରୁ ଅଧିକ ଉତ୍ପାଦନକ୍ଷମ ବାଛୁରୀ ଉତ୍ପାଦନ କରିବାକୁ ୧୯୭୦ ମସିହାରେ ପ୍ରଥମ କରି ଜର୍ସି ଜାତୀୟ ଗୋରୁମାନଙ୍କୁ ବିଦେଶରୁ ଆମଦାନୀ କରାଗଲା । ପ୍ରଥମେ ପ୍ରଥମେ ଯେଉଁ ଜର୍ସି ବାଛୁରୀ ସବୁ ଜନ୍ମ ହେଲେ ଆମ ଲୋକେ ସେମାନଙ୍କୁ ପାଳି ନପାରି ଅବହେଳା କରିବା ଯୋଗୁଁ ଅଧିକାଂଶ ଜର୍ସି ବାଛୁରୀ ମରିଯାଉଥିଲେ । ଯିଏ ବା ବଞ୍ଚି ରହୁଥିଲେ ସେମାନେ ଦୁର୍ବଳ ହୋଇ ଉତ୍ପାଦନକ୍ଷମ ହୋଇପାରୁ ନଥିଲେ । ତେଣୁ ସାରାଦେଶରେ ବାଛୁରୀ ପାଳନ ଯୋଜନାର ପ୍ରଚଳନ କରାଗଲା । ଏହି ଯୋଜନାରେ ଯେଉଁ ଲୋକଙ୍କ ଘରେ ଜର୍ସି ମାଈବାଛୁରୀ ଥିଲେ ସେମାନଙ୍କୁ ତିନିବର୍ଷ ପର୍ଯ୍ୟନ୍ତ ଦାନା ଯୋଗାଇ ଦେଇ ଠିକ୍‌ଭାବେ ବଢ଼ିବାକୁ ସାହାଯ୍ୟ କରାଗଲା । ସେମାନଙ୍କ ରୋଗ ନିରାକରଣ ଓ ପ୍ରଜନନ ଲାଗି ପଶୁପାଳନ ବିଭାଗ ପକ୍ଷରୁ ଯତ୍ନ କରାଯାଇ ଗୃହୀଘରେ ଏହି ବାଛୁରୀଟି ଦୁଧିଆଳି ଗାଈଟିଏ ହୋଇ ପ୍ରତିଦିନ ୫/୬ ଲିଟର ଦୁଧ ଦେଇପାରିବା ପର୍ଯ୍ୟନ୍ତ ସରକାରୀ ପ୍ରୋତ୍ସାହନ ଦେବା ଯୋଜନାର ଲକ୍ଷ୍ୟ ଥିଲା । ଏହି ପ୍ରୋତ୍ସାହନର ଅର୍ଥ ମାଗଣାରେ ଦାନା ଓ ଔଷଧ ଯୋଗାଇ ବାଛୁରୀକୁ ଅଧିକ ଉତ୍ପାଦନକ୍ଷମ ଗାଈରେ ପରିଣତ କରିବା । ଏଥିଲାଗି ବାଛୁରୀ ପିଛା ତିନିବର୍ଷରେ ଚାରିହଜାର ଟଙ୍କା ଖର୍ଚ୍ଚ ବରାଦ ଥିଲା । ତେଣୁ ଦାନା କିଲୋକୁ ଟଙ୍କାଏ, ଦେଢ଼ଟଙ୍କା ଭିତରେ ସୀମିତ ରଖିବା ଆବଶ୍ୟକ ଥିଲା । ଏପରି ଦାନା ତିଆରି ପାଇଁ

ଫରମ୍ୟୁଲା ତିଆରି କରିବା ମୋର ମୁଖ୍ୟ ଦାୟିତ୍ୱ ଥିଲା । ତାହା ମୁଁ ଠିକ୍‌ଭାବେ ସମ୍ପାଦନ କରିପାରୁଥିଲି ।

ଅଣ୍ଡା ଉତ୍ପାଦନ ଲାଗି ଗାଆଁ ଗହଳିର ଇଚ୍ଛୁକ ଚାଷୀ ମାନଙ୍କୁ ଶହେଗୋଟି ଅଧିକ ଅଣ୍ଡା ଉତ୍ପାଦନକ୍ଷମ, ମାଈକୁକୁଡ଼ା ଯୋଗାଇ ଦିଆଯାଉଥିଲା । ସେମାନଙ୍କ ପାଇଁ ଘର, ଦାନା, ଔଷଧପତ୍ର ଋଣ ସୂତ୍ରରେ ଯୋଗାଇ ଦିଆଯାଉଥିଲା । ଏହି ଋଣର ଅଧାଟଙ୍କା ସରକାରୀ ଅନୁଦାନ ଭାବେ ଦିଆଯାଉଥିଲା । ଏହାର ମଧ ମୂଳ ଆଧାର ଥିଲା ସୁଷମ କୁକୁଡ଼ାଖାଦ୍ୟ । ଅଳ୍ପ ମୂଲ୍ୟରେ ଏପରି ଖାଦ୍ୟ ତିଆରି କରିବା କାର୍ଯ୍ୟ ମୋତେ ହିଁ କରିବାକୁ ପଡୁଥିଲା ।

ସେହିଭଳି ଆଦିବାସୀ ଓ ହରିଜନ ପରିବାରମାନଙ୍କୁ ଧଳାଘୁଷୁରୀ ପାଳିବାକୁ ଦିଆଯାଉଥିଲା । ଏସବୁ ଘୁଷରୀଙ୍କୁ ଦାନା, ଔଷଧ ଓ ରହିବା ଘର ପାଇଁ ଶତକଡ଼ା ୫୦ ଭାଗ ରିହାତି ସହିତ ବ୍ୟାଙ୍କ ଋଣ ମିଳୁଥିଲା । ଏହି ଯୋଜନା ଦାୟିତ୍ୱରେ ପ୍ରାଣୀ ପୃଷ୍ଟିତତ୍ତ୍ୱ ଉପନିର୍ଦ୍ଦେଶକ ଭାବେ ମୋତେ ଦାୟିତ୍ୱ ଦିଆଗଲା । ତେଣୁ ଫୁଲନଖରା ଠାରେ ଥିବା କଟକ ଦୁଗ୍ଧଯୋଗାଣ କେନ୍ଦ୍ର ଦାୟିତ୍ୱରୁ ମୁଁ ୧୯୭୭ ମସିହା ଜାନୁୟାରୀ ମାସରେ ଅବ୍ୟାହତି ନେଲି । ଫୁଲନଖରା ଛାଡ଼ିବା ପୂର୍ବରୁ ଜାତୀୟ ଦୁଗ୍ଧବନ୍ୟା ଯୋଜନାରେ କଟକ, ପୁରୀ, ଢେଙ୍କାନାଳ ଓ କେନ୍ଦୁଝର ଜିଲାମାନଙ୍କୁ ସାମିଲ କରିବା ପାଇଁ ସେସବୁ ଜିଲାରେ ସର୍ଭେ କରାଇ ସରକାରଙ୍କୁ ରିପୋର୍ଟ ଦାଖଲ କରିଥିଲି । ଫଳରେ ସେସବୁ ଜିଲାରେ ସମବାୟ ଦୁଗ୍ଧ ଉତ୍ପାଦନକାରୀ ସଂଘ ଗଠନ କରାଯାଇ ପରେ ଓମ୍‌ଫେଡ୍ ସୃଷ୍ଟି ହେଲା । ବରୋଦାଠାରେ ଅନୁଷ୍ଠିତ ଭାରତୀୟ ଦୁଗ୍ଧ ବିଜ୍ଞାନ ସଂଘର ସପ୍ତମ ଅଧିବେଶନରେ ଜାତୀୟ ଦୁଗ୍ଧବନ୍ୟା ଯୋଜନା ବିଷୟକ ଆଲୋଚନାରେ ଓଡ଼ିଶାକୁ ଏହି ଯୋଜନାର ଅନ୍ତର୍ଭୁକ୍ତ କରିବାକୁ ମୁଁ ଯେଉଁ ଦାବୀ ଉଠାଇଥିଲି ତାହାର ପ୍ରାରମ୍ଭିକ କାର୍ଯ୍ୟ ମୋ ହାତରେ ହେବା ଥିଲା ମୋର ସୌଭାଗ୍ୟ ।

ଏବେ ଓଡ଼ିଶାରେ ଅଧିକ ଦୁଗ୍ଧ ଅଣ୍ଡା ଓ ମାଂସ ଉତ୍ପାଦନ କାର୍ଯ୍ୟରେ ଆମେରିକାଲବ୍ଧ ମୋର ଗବେଷଣାତ୍ମକ ଜ୍ଞାନ ଓ ଅଭିଜ୍ଞତାକୁ ଉପଯୋଗ କରିବାର ସୌଭାଗ୍ୟ ମୋତେ ମିଳିଗଲା । କାରଣ ଗୁଣାତ୍ମକ ବାଛୁରୀଖାଦ୍ୟ, ଗୋଖାଦ୍ୟ, କୁକୁଡ଼ାଖାଦ୍ୟ ଓ ଘୁଷୁରୀଖାଦ୍ୟ ପ୍ରସ୍ତୁତି ଲାଗି ମୋ ଛଡ଼ା ଆଉ ଦ୍ୱିତୀୟ ବ୍ୟକ୍ତି ସରକାରୀ ସ୍ତରରେ ନଥିଲେ । ଅଳ୍ପ ଖର୍ଚ୍ଚରେ ଭଲ ପଶୁଖାଦ୍ୟ ତିଆରି କରିବା ସେତେବେଳେ ଏକ ଆହ୍ୱାନ ଥିଲା । କେନ୍ଦ୍ର ସରକାର ଏହି ଯୋଜନାରେ ଯେତେ ଟଙ୍କା ଦେଉଥିଲେ ତାହାର ମୁଖ୍ୟଭାଗ ଥିଲା ପଶୁଖାଦ୍ୟ । ତେଣୁ ଏହାର ମୂଲ୍ୟ ଉପରେ ଯୋଜନାବ୍ୟୟ ନିର୍ଭର କରୁଥିଲା । ମୁଁ ବିଭିନ୍ନ ଗୋଖାଦ୍ୟ ଉପାଦାନର ମୂଲ୍ୟ ସଂଗ୍ରହ

କରି ଉପାଦାନ ଗୁଡ଼ିକର ପୁଷ୍ଟିକାରକ ମୂଲ୍ୟାୟନ କରି ଶସ୍ତାରେ ବାଛୁରୀ, ଗାଈ, କୁକୁଡ଼ା ଓ ଘୁଷୁରୀଙ୍କ ଲାଗି ମିଶ୍ରିତ ଗୋଖାଦ୍ୟ ବା ଦାନା ତିଆରି କରିବାର ଚିଠା ପ୍ରସ୍ତୁତ କଲି । ଫଳରେ ଲକ୍ଷାଧିକ ଚାଷୀଙ୍କୁ ଉପକୃତ କରାଯାଇପାରିଲା । ୧୯୭୭ ମସିହାରେ ଏକକିଲୋ ଗୋଖାଦ୍ୟର ମୂଲ୍ୟ ଏକଟଙ୍କା, କୁକୁଡ଼ାଖାଦ୍ୟ ତିନିଟଙ୍କାରୁ ଚାରିଟଙ୍କା ଓ ଘୁଷୁରୀଦାନା ଅଢ଼େଇଟଙ୍କାରେ ତିଆରି କରାଗଲା । କଟକ, ପୁରୀ, ଢେଙ୍କାନାଳ, କେନ୍ଦୁଝର, ସମ୍ବଲପୁର ଓ ରାୟଗଡ଼ା ଜିଲା ମାନଙ୍କରେ ଏସବୁ ଯୋଜନା କାର୍ଯ୍ୟକାରୀ ହେଲା । ପ୍ରତିମାସରେ ବିଭିନ୍ନ ଜିଲା ଗସ୍ତ କରି ପଶୁଖାଦ୍ୟ ଯୋଗାଣ ଓ ଯୋଜନା ଅନ୍ତର୍ଭୁକ୍ତ ଚାଷୀ ମାନଙ୍କର ଅସୁବିଧା ସୁବିଧା ବୁଝିବାକୁ ପଡୁଥିଲା । ତାଛଡ଼ା, ଯେଉଁସବୁ ଗୋଖାଦ୍ୟ ପ୍ରସ୍ତୁତକାରୀ କାରଖାନରେ ଏସବୁ ପଶୁଖାଦ୍ୟ ତିଆରି ହେଉଥିଲା ସେସବୁ ପରିଦର୍ଶନ କରି ସେମାନଙ୍କର ଗୁଣାତ୍ମକ ମାନକ ଠିକ ରଖିବା ଉପରେ ମୁଁ ପ୍ରାଧାନ୍ୟ ଦେଉଥିଲି । ପ୍ରଥମବର୍ଷ ୮୦ ହଜାର ବାଛୁରୀଙ୍କ ପାଇଁ ମୁଁ ନିଜେ ଯାଇ ଦାନା ତିଆରି କାରଖାନାରେ ଉପସ୍ଥିତ ରହି ସେ ସବୁର ନମୁନା ସଂଗ୍ରହ କରି ପରୀକ୍ଷା କରିବା ପାଇଁ ଗବେଷଣାଗାରକୁ ପଠାଉଥିଲି । ଏହି ଗବେଷଣାଗାରକୁ ମୁଁ ସୃଷ୍ଟି କରିଥିଲି । କାରଣ ମୋ ପୂର୍ବରୁ ଏ ବିଦ୍ୟାରେ କୌଣସି ଅଭିଜ୍ଞ ବ୍ୟକ୍ତି ଓଡ଼ିଶା ପଶୁପାଳନ ବିଭାଗରେ ନଥିଲେ । ଆମେରିକାରୁ ହାସଲ କରିଥିବା ମୋର ସମସ୍ତ ଗବେଷଣାତ୍ମକ ଅଭିଜ୍ଞତାକୁ ଏହି ଗବେଷଣାଗାର ବସାଇବାରେ ଉପଯୋଗ କରିଥିଲି । ଫଳରେ ପଶୁଖାଦ୍ୟ ଗୁଡ଼ିକର ଗୁଣାତ୍ମକ ମାନ ପରୀକ୍ଷା ଉପରେ ଜୋର ଦିଆଯିବାରୁ ଅଧିକରୁ ଅଧିକ ସଙ୍କର ବାଛୁରୀ ଠିକ୍ ଭାବେ ବଢ଼ିବାକୁ ଲାଗିଲେ । ଘୁଷୁରୀ ପାଳନ ତଥା ଅଣ୍ଡା ଉତ୍ପାଦନ କେନ୍ଦ୍ର ସଂଖ୍ୟା ମଧ୍ୟ ବଢ଼ିବାକୁ ଲାଗିଲା ।

ପ୍ରଥମ ବର୍ଷ ତିନିଲକ୍ଷ କୁକୁଡ଼ା ଓ କୋଡ଼ିଏ ହଜାର ଘୁଷୁରୀଙ୍କ ଲାଗି ଦାନା ପ୍ରସ୍ତୁତ କରାଗଲା । ବର୍ଷକୁ ବର୍ଷ ଏହିସଂଖ୍ୟା ବଢ଼ି ଚାଲିଲା । ବାଛୁରୀମାନଙ୍କର ଦେହ ବୃଦ୍ଧି, କୁକୁଡ଼ାଙ୍କଠାରୁ ଅଧିକ ଅଣ୍ଡାଉତ୍ପାଦନ ତଥା ଘୁଷୁରୀମାନଙ୍କଠାରୁ ଅଧିକ ଛୁଆ ଜନ୍ମ ହେବା ସହିତ ସେମାନଙ୍କର ଉତ୍ତମସ୍ୱାସ୍ଥ୍ୟ ବିଷୟକ ଅନୁଧ୍ୟାନ କରି ପ୍ରତିଜିଲା ଦାୟିତ୍ୱରେ ଥିବା ଏହିଯୋଜନାର ଅଧିକାରୀମାନଙ୍କ ସହିତ ସମୀକ୍ଷା କରାଯାଉଥିଲା । ପ୍ରତି ରାଜ୍ୟରେ ହାସଲ କରାଯାଇଥିବା ସାଫଲ୍ୟ ଉପରେ ସମୀକ୍ଷା କରାଯାଇ ଜାତୀୟ ସ୍ତରରେ ଓଡ଼ିଶାର ସ୍ଥାନ ଚତୁର୍ଥରେ ରହିବା ମୋ ପକ୍ଷରେ ବେଶ୍ ଆତ୍ମସନ୍ତୋଷର କାରଣ ହୋଇଥିଲା । ମୋର ବୈଷୟିକଜ୍ଞାନ ଭିତ୍ତିରେ ବିଭିନ୍ନ ଜିଲା ବୁଲି ପଶୁମାନଙ୍କର ଦେହବୃଦ୍ଧି ସମୀକ୍ଷା କରି, ସରକାରୀ ସ୍ତରରେ ଗବେଷଣାଗାର, ପରୀକ୍ଷାଗାର ପ୍ରତିଷ୍ଠା କରାଇ ପଶୁଖାଦ୍ୟର ମାନ ନିର୍ଦ୍ଧାରଣ କରି ଓ ଚାଷୀମାନଙ୍କୁ ସାମୟିକ ଉପଦେଶ ଦେବାଦ୍ୱାରା ଏହ ଯୋଜନା ଓଡ଼ିଶାରେ ବେଶ୍ ଫଳପ୍ରସୂ ହେଲା ।

ଜାତୀୟ ସ୍ତରୀୟ ସମୀକ୍ଷା ଅନୁଯାୟୀ ଗୋଟିଏ ଜର୍ସି ସଙ୍କର ମାଈବାଛୁରୀ ଦୁଗ୍ଧ ଉତ୍ପାଦନ କରିବା ବେଳକୁ ତାର ମୂଲ୍ୟ ଅଶୀ ଦଶକରେ ଟ ୬୦୦୦ଟଙ୍କା ଧାର୍ଯ୍ୟ ହୋଇଥିଲା । ଦୈନିକ ହାରାହାରି ୬ ଲିଟର ଦୁଧ ଦେଇ ବର୍ଷକ ମଧ୍ୟରେ ତାଠାରୁ ୧୮୦୦ ଲିଟର ଦୁଧ ମିଳିବାର ହିସାବରେ ତାର ବଞ୍ଚି ରହିବା ସମୟ ମଧ୍ୟରେ ହାରାହାରୀ ବାରଟି ବାଛୁରୀ ସେ ଦେଇ ପାରିବ ବୋଲି ଦର୍ଶାଯାଇ ତନ୍ମଧ୍ୟରୁ ୬ଟି ମାଈ ଓ ୬ଟି ଅଣ୍ଡିରା ବାଛୁରୀ ମିଳିବାର ହିସାବ କରି ଗୋଟିଏ ମାଈ ବାଛୁରୀର ମୃତ୍ୟୁରେ ତତ୍‌କାଳୀନ ଏକଲକ୍ଷ ପଚିଶହଜାର ଟଙ୍କା ଜାତୀୟ କ୍ଷତି ହେବ ବୋଲି ଧରାଯାଇଥିଲା । ସେହିପରି ପ୍ରତି କୁକୁଡ଼ା ୟୁନିଟର ବିଲୋପ ଯୋଗୁଁ ବାର୍ଷିକ ଟ ୬୦,୦୦୦ କ୍ଷତି ଓ ଗୋଟିଏ ମାଈ ଘୁଷୁରୀ ଛୁଆର ମୃତ୍ୟୁରେ ଏକଲକ୍ଷ ଟଙ୍କା ଜାତୀୟ କ୍ଷତି ହିସାବ କରାଯାଇ ଏହି ଯୋଜନା ମାଧ୍ୟମରେ ଓଡ଼ିଶାପରି ରାଜ୍ୟରେ ବର୍ଷକୁ ୬୨୫୫୦ କୋଟି ଟଙ୍କାର ଜାତୀୟ ଆୟ ହୋଇପାରିବ ବୋଲି ଜାଣି ନିଜକୁ ଏପରି କାର୍ଯ୍ୟରେ ନିୟୋଜିତ କରିବା ସୌଭାଗ୍ୟଜନକ ଭାବି ଆତ୍ମସନ୍ତୋଷ ଲାଭ କରୁଥିଲି । କାରଣ ଏ ସମସ୍ତ ହିସାବ ଗୋଖାଦ୍ୟ, କୁକୁଡ଼ାଖାଦ୍ୟ ବା ଘୁଷୁରୀଖାଦ୍ୟର ମାନ ଉପରେ ଶତକଡ଼ା ୭୦ ଭାଗ ନିର୍ଭରଶୀଳ ଓ ସେସବୁର ମାନନିର୍ଦ୍ଧାରଣ ଦାୟିତ୍ୱ ମୋ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲା । ଏସବୁ ପଶୁଖାଦ୍ୟର ଉନ୍ନତମାନର ସୁରକ୍ଷାଲାଗି ବିଭିନ୍ନ ଗୋଖାଦ୍ୟ ତିଆରି କାରଖାନାଠାରୁ ଆରମ୍ଭ କରି ଗାଆଁ ଗଣ୍ଡାରେ ବୁଲି ଚାଷୀମାନଙ୍କ ଘରୁ ପଶୁଖାଦ୍ୟ ନମୁନା ସଂଗ୍ରହ କରି ଗବେଷଣାଗାରରେ ବିଶ୍ଳେଷଣ କରାଉଥିଲି । ପୂର୍ବରୁ ଓଡ଼ିଶାରେ ଏପରି ଗବେଷଣାଗାର ନଥିଲା । ତେଣୁ ଭୁବନେଶ୍ୱର ଝାରପଡ଼ାସ୍ଥ ସଘନ କୁକ୍କୁଟଉନ୍ନୟନ କାର୍ଯ୍ୟାଳୟ ହତାରେ ଏହି ଗବେଷଣାଗାର ପ୍ରତିଷ୍ଠା କଲି । ଆମେରିକାର ସାଉଥ୍‌ଡାକୋଟା ବିଶ୍ୱବିଦ୍ୟାଳୟରେ ମୁଁ କରିଥିବା ଗବେଷଣାରେ ବ୍ୟବହୃତ ଯନ୍ତ୍ରପାତି ମଗାଇ ଏଠାରେ ରଖିବା ପରେ ଗୋଖାଦ୍ୟ ବିଶ୍ଳେଷଣ ଆରମ୍ଭ କରାଗଲା । ଡାକ୍ତର ଉଦୟନାଥ ସାହୁ ନାମକ ଜଣେ ପ୍ରାଣୀ ପୁଷ୍ଟିତତ୍ତ୍ୱଜ୍ଞ ପଶୁବିଜ୍ଞାନବିତ୍‌ଙ୍କୁ ଏହି ଗବେଷଣାଗାରରେ ରଖାଇ ତାଙ୍କୁ ବିଭିନ୍ନ ରାସାୟନିକ ପରୀକ୍ଷା କରିବାର ତାଲିମ ଦେଲି ଓ ନିଷ୍ଠାପର ଭାବେ ଏହି କାର୍ଯ୍ୟ କରିବାକୁ ସବୁବେଳେ ସଚେତନ କରାଉଥିଲି । ସେ ମଧ୍ୟ ଜଣେ ସଚ୍ଚୋଟ ବ୍ୟକ୍ତି ଥିଲେ ଏବଂ ପଶୁଚିକିତ୍ସା ମହାବିଦ୍ୟାଳୟରେ ସେ ମୋର ଛାତ୍ର ଥିଲେ । ତେଣୁ ମୋ ଫର୍ମୁଲା ଅନୁଯାୟୀ ତିଆରି ହୋଇଥିବା ଖାଦ୍ୟନମୁନା ବିଶ୍ଳେଷଣ କରି ତାହା ଠିକ୍ ବା ଭୁଲ୍ ସେ ମୋତେ ଜଣାଉଥିଲେ । ଉକ୍ତ ଗବେଷଣାଗାର ମୋର ନିର୍ଦ୍ଦେଶରେ ଓ ପରାମର୍ଶରେ ପରିଚାଳିତ ହେଉଥିଲା । ନିଷ୍ଠାପର ଭାବେ ଏହି କାର୍ଯ୍ୟରେ ବ୍ୟସ୍ତ ରହିବାଦ୍ୱାରା ଚାଷୀମାନଙ୍କୁ

ଯୋଜନାର ସୁଫଳ ମିଳୁଥିଲା । ତେଣୁ ଯୁକ୍ତରାଷ୍ଟ୍ର ଆମେରିକାରେ ଉଚ୍ଚଶିକ୍ଷା ପାଇବା ଲାଗି ଦୀର୍ଘ ପାଞ୍ଚବର୍ଷର ସାଧନା ମୋ ମାତୃଭୂମି ଓଡ଼ିଶାର ସେବାରେ ଯଥାର୍ଥ, ଭାବେ ନିୟୋଜିତ ହେଉଥିବାର ଆତ୍ମସନ୍ତୋଷ ମୁଁ ଲାଭ କରୁଥିଲି ।

ଏହି ପାଞ୍ଚବର୍ଷ ଭିତରେ ଓଡ଼ିଶାରେ ଅଠେଇଶ ଗୋଟି ପଶୁଖାଦ୍ୟ ତିଆରି କାରଖାନା କାର୍ଯ୍ୟାରମ୍ଭ ହେଲା ଓ ସେମାନଙ୍କ ପାଇଁ ନିୟାମକ ମାନ ମୁଁ ପ୍ରସ୍ତୁତ କରି ତହିଁରେ ଅବହେଳା ହେଲେ ଉପଯୁକ୍ତ ଦଣ୍ଡ ବିଧାନର ବ୍ୟବସ୍ଥାପ୍ରତି ସରକାରଙ୍କୁ ସଚେତନ କରାଇଲି । ମଝିରେ ମଝିରେ ପ୍ରତି କାରଖାନା ପରିଦର୍ଶନ କରି ସେଠାରୁ ନମୁନା ସଂଗ୍ରହ କରୁଥିଲି ଓ ଭୁବନେଶ୍ୱରସ୍ଥ ସରକାରୀ ଗବେଷଣାଗାରରେ ପରୀକ୍ଷା କରାଇ ପ୍ରସ୍ତୁତ ପଶୁଖାଦ୍ୟର ମାନରକ୍ଷା ଦିଗରେ ଯତ୍ନବାନ୍ ହେଉଥିଲି । ସେଥିଲାଗି ସେସବୁ କାରଖାନା ମାଲିକ ମାନଙ୍କ ମନରେ ଭୟ ରହୁଥିଲା ।

ପ୍ରତିବର୍ଷ ଯୋଜନାର ପରିସର ବୃଦ୍ଧି ପାଉଥିଲା ଓ ବିଭିନ୍ନ ଅଞ୍ଚଳର ଚାଷୀମାନେ ଏଥିରୁ ଉପକୃତ ହେବାପାଇଁ ଲାଳାୟିତ ଥିଲେ । ବାଛୁରୀପାଳନ ଯୋଜନାର ଅଧିକ ପ୍ରସାର ଫଳରେ ଅଧିକରୁ ଅଧିକ ଦୁଧିଆଳୀ ଗାଈ ସୃଷ୍ଟିହେଲେ ଓ ରାଜ୍ୟର ଦୁଗ୍ଧ ଉତ୍ପାଦନ ବୃଦ୍ଧି ପାଇଲା ।

ଇତିମଧ୍ୟରେ ଅଣ୍ଡା ଉତ୍ପାଦନ ଲାଗି କଟକ ଜିଲାରେ ଏକହଜାରରୁ ଅଧିକ କୁକୁଡ଼ା ୟୁନିଟ୍ ସ୍ଥାପିତ ହେଲା ଓ ସେସବୁରୁ ଯଥେଷ୍ଟ ଅଣ୍ଡା ମିଳିଲା । ମାତ୍ର ଅଣ୍ଡା ବିକ୍ରୀ ପାଇଁ ବଜାର ନଥିଲା । କାରଣ ଅଧିକାଂଶ ଲୋକ ସେତେବେଳେ ଅଣ୍ଡା ଖାଉ ନଥିଲେ । ବିଶେଷତଃ ସ୍ତ୍ରୀଲୋକମାନେ ଅଣ୍ଡା ଖାଇବା କ୍ୱଚିତ୍ ଦେଖାଯାଉଥିଲା । ଯେଉଁ ଗ୍ରାମରେ ଦଶଟିରୁ ଅଧିକ ୟୁନିଟ୍ ଥିଲା ସେମାନେ ଅଣ୍ଡା ବିକ୍ରୀ କରିନପାରି କୁକୁଡ଼ାମାନଙ୍କ ପାଇଁ ଦାନା କିଣିପାରୁନଥିଲେ ।

ଓଡ଼ିଶାରେ ଅଣ୍ଡା ଓ କୁକୁଡ଼ା ମାଂସ ଉତ୍ପାଦନକାରୀ ଚାଷୀ ମାନଙ୍କର ସୁବିଧା ପାଇଁ ସମବାୟ ସମିତିମାନ ଗଠନ କରି ପ୍ରତି ଜିଲାରେ ଜିଲାସଂଘ ଗଢ଼ିବା ପାଇଁ କେନ୍ଦ୍ରୀୟ ଅନୁଦାନ ମାତ୍ର ଏକଲକ୍ଷ ଟଙ୍କା ମିଳିଲା । ଆମ ନିର୍ଦ୍ଦେଶାଳୟର ଜଣେ ଅଫିସରଙ୍କୁ କୁକ୍କୁଟ ମହାସଂଘ ଦାୟିତ୍ୱରେ ରଖାଗଲା । ସେ ମହାଶୟ ନିଆଳି, ସାଲେପୁର, ମାହାଙ୍ଗା, ପିପିଲି, ଆଠଗଡ଼ ଆଦି ଗସ୍ତ କରି ଅଣ୍ଡା ଉତ୍ପାଦନକାରୀ ମାନଙ୍କଠାରୁ ଅଣ୍ଡା ସଂଗ୍ରହ କରିଆଣି ନିର୍ଦ୍ଦେଶାଳୟରେ ରଖିଲେ । ମାତ୍ର ବିକ୍ରୀ କରିବାକୁ ଜଣେ ଲୋକକୁ ଦାୟିତ୍ୱ ଦେଇ ଆରାମରେ ବସିଗଲେ । ଅଫିସରେ ବସି ସେ ଲୋକ ଯେତିକି ଅଣ୍ଡା ବିକ୍ରୀ କଲା, ବାକୀତକ ପଚିସଢ଼ି ନଷ୍ଟ ହୋଇଗଲା ବୋଲି ଜଣାଇ ଦେଇ

ଚାଷୀମାନଙ୍କ ଠାରୁ ଟଙ୍କା କାଟି ଦେଉଥିଲା । ତେଣୁ ବହୁ ୟୁନିଟ୍ ଦୟନୀୟଭାବେ ବନ୍ଦ ହୋଇଗଲା । କୁକୁଡ଼ାସବୁ ଖାଇବାକୁ ନପାଇ ଅଣ୍ଡା ଦେବା ଛାଡ଼ିଦେଲେ ଓ ଅଧିକାଂଶ କୁକୁଡ଼ା ମରିଗଲେ । ଏସବୁ ଦେଖି ମୋର ଦେହ ସହିଲା ନାହିଁ । ଭ୍ରମରବର ଜେନା ନାମକ ଜଣେ ଆଇ.ଏ.ଏସ୍. ଅଫିସର ଆମ ବିଭାଗର ନିର୍ଦ୍ଦେଶକ ଥାଆନ୍ତି । ଏହା ଅତି ଅନ୍ୟାୟକଥା ବୋଲି ତାଙ୍କୁ ମୁଁ କହିଲି । ଏପରି କରିବାଦ୍ୱାରା କୁକୁଡ଼ା ପାଳନ ଯୋଜନା ବ୍ୟାହତ ହେଲା । ଲୋକେ ବ୍ୟାଙ୍କ ଋଣ ଶୁଝି ପାରିଲେ ନାହିଁ । ସେ ମହାଶୟ କହିଲେ, ଆପଣ ଏ ଦାୟିତ୍ୱ ନିଅନ୍ତୁ । ଯଦି ଭାବୁଛନ୍ତି ଯେ, ସେ ଅଫିସର ଜଣକ ଠିକ୍ ଭାବେ କାର୍ଯ୍ୟ କରୁନାହାନ୍ତି, ତାହାଲେ ଆପଣ ନିଜେ କାର୍ଯ୍ୟକରି ଦେଖାଇ ଦିଅନ୍ତୁ । ଏହା କହି ସେ ମୋତେ ମୋ ନିଜ ଦାୟିତ୍ୱ ସହିତ କୁକ୍କୁଟ ଉନ୍ନୟନ ଉପନିର୍ଦ୍ଦେଶକ ଦାୟିତ୍ୱ ଦେଇଦେଲେ । ଫଳରେ ବାଛୁରୀ ପାଳନ ଯୋଜନା, ଦୁଗ୍ଧଉନ୍ନୟନ, କୁକ୍କୁଟ ଉନ୍ନୟନ ଓ କୁକ୍କୁଟ ଉତ୍ପାଦକ ମହାସଂଘ ଦାୟୀତ୍ୱ ମୁଣ୍ଡାଇ ମୁଁ ମହା ଅଡୁଆରେ ପଡ଼ିଲି । ତେବେ ମାସକୁ ମାସ ଦରମା ନେଇ କେବଳ ଅଫିସରେ ବସି ଫାଇଲ୍ ଚାଷ କରୁଥିବା ଅଧିକାଂଶ ପ୍ରଥମ ଶ୍ରେଣୀ ପାହ୍ୟାର ଅଫିସର ମାନଙ୍କ ତୁଳନାରେ ମୁଁ ଯେ ଯଥେଷ୍ଟ ବେଶୀ କାମ କରିପାରିବି, ସେ ବିଶ୍ୱାସ ମୋର ଥିଲା । ବହୁ ଅଫିସର ଗାଡ଼ି ଚଢ଼ି ଜିଲାକୁଜିଲା ଗସ୍ତକରି କେବଳ ନିଜର ଦିନିଲିପି ବା ଡାଏରୀ ଲେଖିବା ଛଡ଼ା ଅଧିକ କିଛି କରିପାରୁ ନଥିଲେ । ସେମାନଙ୍କ ପ୍ରତି ମୋ ମନରେ କୌଣସି ସମ୍ମାନବୋଧ ନଥିଲା । ହେଲେ, କାମକରି ଦେଖାଇ ଦେଇ ପାରିବି ବୋଲି ମୋର ଯଥେଷ୍ଟ ଆତ୍ମବିଶ୍ୱାସ ଥିଲା । ଯେଉଁ ଅଫିସର ଜଣକ ଅଣ୍ଡା ବିକ୍ରୀ ଦାୟିତ୍ୱ ନେଇ ଚାଷୀମାନଙ୍କ ଅଣ୍ଡା ବିକ୍ରି କରିନପାରି ପଚାଇସଢ଼ାଇ ଫିଙ୍ଗି ଦେଉଥିଲେ ତାଙ୍କ ପ୍ରତି ମୋ ମନରେ ଘୃଣାଭାବ ଆସୁଥିଲା । ମହାସଂଘ ଦାୟିତ୍ୱରେ ଥିବା ଏହି ଅଧିକାରୀ ମୋତେ ତାଙ୍କର କାଗଜପତ୍ର ହସ୍ତାନ୍ତର କରିବା ସହିତ ମାତ୍ର ୧୯୦୦୦ ଟଙ୍କା ଦେଲେ । ବାକି ଟଙ୍କା ସେ ଖର୍ଚ୍ଚ କରିଦେଇଥିଲେ । ମୁଁ ଯାଇ ନିର୍ଦ୍ଦେଶକଙ୍କୁ ଦେଖାକରି ପଚାରିଲି, ମାତ୍ର ଉଣେଇଶି ହଜାର ଟଙ୍କାରେ କି ପ୍ରକାର ମହାସଂଘ ହୋଇପାରିବ ? ସେ କହିଲେ ଆପଣ ଯେପରି ଭାବୁଛନ୍ତି କରନ୍ତୁ । ଆଉ ଟଙ୍କାଟିଏ ମଧ୍ୟ ଆପଣଙ୍କୁ ଦେବାର ସୁବିଧା ନାହିଁ । ମୁଁ ବୁଝିନେଲି ଯେ, ସେ ମୋତେ ଏ ଦିଗରେ କୌଣସି ସାହାଯ୍ୟ କରିବାକୁ ଚାହାନ୍ତି ନାହିଁ । ବରଂ ମୋର ଶକ୍ତି ପରୀକ୍ଷାକରି ସେ ମଜା ଉଠାଉଛନ୍ତି ।

ସରକାରୀ କାର୍ଯ୍ୟରେ ବିଭିନ୍ନ ଜିଲା ଗସ୍ତ କଲାବେଳେ ମୁଁ ଚାରିପାଞ୍ଚ ଜଣ ସଚ୍ଚୋଟ ପଶୁଚିକିତ୍ସକଙ୍କୁ ବାଛି ମହାସଂଘ କାର୍ଯ୍ୟରେ ସେମାନଙ୍କ ସାହାଯ୍ୟ ନେବାପାଇଁ

ଚିନ୍ତା କଲି । ଗଞ୍ଜାମ, କୋରାପୁଟ, ସମ୍ବଲପୁର ଓ ଢେଙ୍କାନାଳରେ ଚାରିଟି ଭଙ୍ଗାରୁଜା ହୋଇ ପଡ଼ିଥିବା କୁକୁଡ଼ା ଘର ବାଛି ସେଠି ବ୍ରୟଲର କୁକୁଡ଼ା ପାଳିବାକୁ ପ୍ରତି ସ୍ଥାନରେ ପାଞ୍ଚହଜାର କରି ଟଙ୍କା ଖଟାଇଲି । ଚାରିମାସ ପରେ ପ୍ରତି ଅଫିସର ମୋତେ ମୂଳଧନ ଫେରାଇ ଦେଲେ । ତାପରେ ପ୍ରତି ଦୁଇତିନିମାସ ବ୍ୟବଧାନରେ ପାଞ୍ଚହଜାର କରି ଟଙ୍କା ମହାସଂଘର ଲାଭ ଦେବାକୁ ଲାଗିଲେ । ସେହି ଟଙ୍କାକୁ ମୂଳଧନ କରି ଅଣ୍ଡା ଉତ୍ପାଦନକାରୀ ମାନଙ୍କଠାରୁ ଅଣ୍ଡା ସଂଗ୍ରହକରି ବିକ୍ରୟ କରିବା ଲାଗି ବିକ୍ରୀ କେନ୍ଦ୍ରମାନ ଖୋଲାଇଲି । ଏସବୁଦେଖି ବିଭାଗୀୟ ନିର୍ଦ୍ଦେଶକ ଭୁବନେଶ୍ୱରରେ ଅଚଳଅବସ୍ଥାରେ ପଡ଼ିଥିବା ଏକ ମାଟାଡୋର୍ ଭ୍ୟାନ୍ ଅଣ୍ଡା ବୋହିବା ପାଇଁ ଦେଲେ । ସେ ଗାଡ଼ିକୁ ମରାମତି କରି ଚଳାଇବା ଅବସ୍ଥାକୁ ଆଣିବାକୁ ଟ ୨୫୦୦୦ଦରକାର ହେଲା । ମୁଁ କୋରାପୁଟ ଜିଲାର ସୁନାବେଡ଼ା କୁକୁଡ଼ା ଫାର୍ମର ପରିଚାଳକଙ୍କୁ ବ୍ରଏଲର୍ ପାଳିବାକୁ ଯେଉଁ ଟ୫୦୦୦ ଦେଇଥିଲି, ସେ ମୋତେ ଗାଡ଼ି ମରାମତି ପାଇଁ ବ୍ରଏଲର ବିକ୍ରିଲବ୍ଧ ଟ ୨୫୦୦୦ଆଣି ଦେବାରୁ ସେ ଗାଡ଼ି ମରାମତି ହେଲା । ସେ ଗାଡ଼ିକୁ କଟକ ଓ ଭୁବନେଶ୍ୱର ମଧ୍ୟରେ ଅଣ୍ଡା ଯୋଗାଇବା ପାଇଁ ବ୍ୟବହାର କରାଗଲା । ମୁଁ ସୁନାବେଡ଼ା ଯାଇ ହିନ୍ଦୁସ୍ଥାନ ଏରୋନୋଟିକ୍ସ ଲିଃ କମ୍ପାନୀକୁ ମହାସଂଘ ଜରିଆରେ ଅଣ୍ଡା ଯୋଗାଇବାର ବ୍ୟବସ୍ଥା କଲି । ମୋତେ ଏ କାର୍ଯ୍ୟରେ ସାହାଯ୍ୟ କରିବାକୁ ଡାକ୍ତର ରାଖାଲଚନ୍ଦ୍ର ମହାନ୍ତି ବଦଳି ହୋଇ ଆସି ନିର୍ଦ୍ଦେଶାଳୟରେ ରହିଲେ । ସେ ଖୁବ୍ ସଚ୍ଚୋଟ ଓ କର୍ତ୍ତବ୍ୟପରାୟଣ ବ୍ୟକ୍ତି । ମୋ ସ୍ତ୍ରୀଙ୍କର ସେ ଥିଲେ ସମ୍ପର୍କୀୟ ଦାଦା । ତେଣୁ ତାଙ୍କ ସହିତ ସମ୍ମାନ ସହକାରେ ମୁଁ କଥା ହେଉଥିଲି । ଏହି ମହାସଂଘର ଭବିଷ୍ୟତ ବିଷୟରେ ସେ ମଧ୍ୟ ଖୁବ୍ ଚିନ୍ତାଶୀଳ ଥିଲେ । "ଓଡ଼ିଶା ସମବାୟ କୁକ୍କୁଟ ଉତ୍ପାଦକ ମହାସଂଘ" ନାମକୁ ଇଂରାଜିରେ ଠିକ୍ ଭାବେ ନାମିତ କରିବାକୁ ଭାବି ଭାବି ସେ ପ୍ରସ୍ତାବ ଦେଲେ ଏହାର ନାମ 'ଓପୋଲ୍‌ଫେଡ୍' (OPOLFED) ରଖାଯାଉ । ଏହି 'ଓପୋଲଫେଡ୍' ନାମ ରଖିବାର ପ୍ରସ୍ତାବ ନିର୍ଦ୍ଦେଶକଙ୍କଠାରୁ ମଞ୍ଜୁର କରାଇନେଲି ।

କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ଅନୁବାଦକ ଶ୍ରୀ ଯୁଗଳକିଶୋର ଦତ୍ତ ସେତେବେଳେ ଆମ ନିର୍ଦ୍ଦେଶାଳୟରେ ସହକାରୀ ନିବନ୍ଧକ ଭାବେ ଯୋଗଦେଲେ । ସେତେବେଳକୁ କଟକରେ ପାଞ୍ଚଟି ଓ ଭୁବନେଶ୍ୱରରେ ପାଞ୍ଚଟି ଅଣ୍ଡା ବିକ୍ରୟ କେନ୍ଦ୍ର ଖୋଲି ଯାଇଥିଲା । ଚାଷୀମାନଙ୍କଠାରୁ ଅଣ୍ଡା ସଂଗ୍ରହ କରି ବିଭିନ୍ନ ସ୍ଥାନକୁ ଯୋଗାଇବା ଓ ବିକ୍ରୀ ଦାୟିତ୍ୱରେ କାମ କରିବାକୁ ଓପୋଲଫେଡ୍‌ରେ ପ୍ରାୟ ତିରିଶିଜଣ ଲୋକ କାର୍ଯ୍ୟ କରୁଥିଲେ । ସେମାନଙ୍କୁ ମାସିକ ଟ୩୦୦ରୁ ଟ ୫୦୦ ପର୍ଯ୍ୟନ୍ତ ଦରମା ଦିଆଯାଉଥିଲା ।

ଆଦିବାସୀ ଓ ହରିଜନ ଉନ୍ନୟନ ଅର୍ଥଲଗାଣ କର୍ପୋରେସନର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ପୋଦ୍ଦାର ମୋ ଠାରୁ "ଓପୋଲ୍‌ଫେଡ୍" ବିଷୟ ଶୁଣି ଏକ ଯୋଜନା ପ୍ରସ୍ତୁତ କରିବାକୁ କହିଲେ । ସାତଲକ୍ଷ ଟଙ୍କାର ଏକ ପାଞ୍ଚବର୍ଷିଆ ଯୋଜନା ତାଙ୍କ ଆର୍ଥିକ ସହାୟତାରେ କରାଇବାର ପ୍ରସ୍ତାବ ଦେଲି । ଖପୁରିଆରେ ହରିଜନ ହିତାଧିକାରୀ ମାନଙ୍କୁ ନେଇ ଏକ ଅଣ୍ଡା ଉତ୍ପାଦନ କେନ୍ଦ୍ର ସ୍ଥାପନ କରିବାକୁ ଶ୍ରୀ ପୋଦ୍ଦାର ତିନିଲକ୍ଷ ଟଙ୍କା ଦେଲେ । ମାତ୍ର ଚାରିମାସ ସମୟ ମଧ୍ୟରେ ଏହି କେନ୍ଦ୍ର ତିଆରି ସରିଗଲା । ହରିଜନ କଲ୍ୟାଣ ଅର୍ଥଲଗାଣ କର୍ପୋରସନ ଅଧୀନରେ ସେତେବେଳେ ଉପନିବନ୍ଧକ ଭାବେ ଶ୍ରୀ ସୁରସିଂହ ପଟ୍ଟନାୟକ କାମ କରୁଥାନ୍ତି । କର୍ପୋରେସନର କାର୍ଯ୍ୟନିର୍ବାହୀ ଅଧିକାରୀ ଭାବେ ଶ୍ରୀ ପର୍ଶୁରାମ ଦ୍ୱିବେଦୀ ଥାଆନ୍ତି । ସେ ଦୁହେଁ ମୋ ସହିତ ବେଶ୍ ସହଯୋଗ କରୁଥାନ୍ତି । ପରବର୍ତ୍ତୀ କାଳରେ ସମାଜସେବା (ଉତ୍କଳ ସମ୍ମିଳନୀ) ପାଇଁ ପୁଣି ଆମ୍ଭେମାନେ ଏକାଠି କାମକଲୁ ।

ମୋ ଦ୍ୱାରା ଏସବୁ କାମ କରାଇ ନେଇଥିବା ନିର୍ଦ୍ଦେଶକ ଥିଲେ ଭ୍ରମରବର ଜେନା । ମୋର ଦକ୍ଷତା ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । 'ଓପୋଲଫେଡ୍'ର ଅଗ୍ରଗତି ଦେଖି ସେ ସନ୍ତୁଷ୍ଟ ଥିଲେ । ୧୯୯୫ ମସିହା ସେପ୍ଟେମ୍ବର ଶେଷ ସପ୍ତାହରେ କାଶ୍ମୀରର ଶ୍ରୀନଗର ଠାରେ ସର୍ବଭାରତୀୟ ପଶୁପାଳନ ନିର୍ଦ୍ଦେଶକ ମାନଙ୍କର ଏକ ସମ୍ମିଳନୀ ହେବାର ଥିଲା । ଶ୍ରୀ ଜେନାଙ୍କର ହୃଦ୍‌ରୋଗ ଥିବାରୁ ତାଙ୍କ ସ୍ଥାନରେ ସେ ମୋତେ ଶ୍ରୀନଗର ପଠାଇଲେ । ମୁଁ ସେଠାରେ ପହଞ୍ଚି ଏହି ସମ୍ମଳନୀରେ ଯୋଗ ଦେବା ସମୟରେ ଖବର ପାଇଲି ଯେ, ଶ୍ରୀ ଜେନାଙ୍କର ହୃଦ୍‌ଘାତ ହୋଇ ପ୍ରାଣହାନୀ ଘଟିଛି । ଏ ଖବର ପାଇ ଦୁଃଖରେ ମୁଁ କଟକ ଫେରି ଆସିଲି । ଶ୍ରୀ ଜେନାଙ୍କ ସ୍ଥାନରେ ଓଡ଼ିଶା ପଶୁ ଚିକିତ୍ସା ମହାବିଦ୍ୟାଳୟରୁ ଜଣେ ଅଧ୍ୟାପକ ଡାକ୍ତର ଜୀବନାନନ୍ଦ ମହାନ୍ତି ଆମ ବିଭାଗର ନିର୍ଦ୍ଦେଶକ ଭାବେ ଆସି ଯୋଗ ଦେଲେ । ଆଜିର "ସମ୍ବାଦ" ସଂପାଦକ ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ ତାଙ୍କୁ ଏହି ପଦବୀରେ ରଖାଇବା ପାଇଁ ସାହାଯ୍ୟ କରିଥିଲେ । ଓପୋଲଫେଡ୍‌ର ଅଧ୍ୟକ୍ଷ ଭାବେ ସୌମ୍ୟବାବୁଙ୍କୁ ନିର୍ବାଚିତ କରିବା ପାଇଁ ଆମର ପ୍ରସ୍ତାବ ହେଲା । ତାଙ୍କ ପରି ଜଣେ ଲୋକକୁ ଅଧ୍ୟକ୍ଷ ଭାବେ ପାଇଲେ ଏହି ସଂସ୍ଥାର ଯଥେଷ୍ଟ ଉନ୍ନତି ହେବା ଅଶାରେ ମୁଁ ଲାଗିପଡ଼ିଲି । ସମବାୟ ନିୟମ ଅନୁଯାୟୀ ନିର୍ବାଚନ କରାଗଲା ଓ ସୌମ୍ୟବାବୁ ଓପୋଲଫେଡ଼ର ଅଧ୍ୟକ୍ଷ ଭାବେ ନିର୍ବାଚିତ ହେଲେ ।

ଇତିମଧ୍ୟରେ ଆମ ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ମହାନ୍ତି କେତେକ ଲୋକଙ୍କୁ ଓପୋଲଫେଡ୍‌ରେ ଚାକିରୀ ଦେବାପାଇଁ ମୋ ଉପରେ ଚାପ ପ୍ରୟୋଗ କଲେ । ଦେଖିଲି

ଅନୁଷ୍ଠାନର ଆୟ ତୁଳନାରେ ବ୍ୟୟଭାର ବହୁଗୁଣ ବଢ଼ିଯିବ । ଓପୋଲଫେଡ୍‌ର ଏକ ପରିଚ୍ଳଳନା ସଭାରେ ମୁଁ ଆଉ ପରିଚ୍ଳଳନା ନିର୍ଦ୍ଦେଶକ ନ ରହିବା ପାଇଁ ପ୍ରସ୍ତାବ ଦେଇ ଆମ ବିଭାଗୀୟ ନିର୍ଦ୍ଦେଶକ ସେହି ଦାୟିତ୍ୱ ତୁଲାନ୍ତୁ ବୋଲି ଅନୁରୋଧ କଲି । ବୋର୍ଡ଼ର ସଦସ୍ୟମାନେ ମୋର ଏହି ପ୍ରସ୍ତାବ ଶୁଣି ଆଶ୍ଚର୍ଯ୍ୟ ହେଲେ । କାରଣ ସେମାନେ ଜାଣିଥିଲେ ଯେ ମୁଁ ବହୁ କଷ୍ଟରେ ଏହି ଅନୁଷ୍ଠାନକୁ ଏପରି ରୂପ ଦେଇ ପାରିଛି । ମୁଁ ଛାଡ଼ିଦେଲେ ଏହାର ଦଶା କଅଣ ହେବ ତହିଁରେ ସମସ୍ତେ ସନ୍ଦେହ ପ୍ରକାଶ କରୁଥିଲେ ।

ତେଣୁ ପରିଚ୍ଳଳନା ସଭାର ଅନେକ ବ୍ୟକ୍ତି ଏହି ପ୍ରସ୍ତାବ ପ୍ରତ୍ୟାହାର କରିନେବା ଲାଗି ମୋତେ ଅନୁରୋଧ କଲେ । ମାତ୍ର ଆମ ବିଭାଗୀୟ ନିର୍ଦ୍ଦେଶକଙ୍କ ଉପରେ କାର୍ଯ୍ୟ ନ କରିବାକୁ ମୋ ନିଷ୍ପତ୍ତିରେ ମୁଁ ଅଟଳ ରହିବାରୁ ଅଧକ୍ଷ ଶ୍ରୀ ସୌମ୍ୟ ପଟ୍ଟନାୟକ ବାଧ ହୋଇ ପ୍ରସ୍ତାବଟି ଗ୍ରହଣ କରାଇନେଲେ । ମାତ୍ର ଉଣେଇଶ ହଜାର ଟଙ୍କାରେ କର୍ମଚାରୀବିହୀନ ଅନୁଷ୍ଠାନଟି ଆରମ୍ଭ କରି ତିନିବର୍ଷ ଭିତରେ ପାଞ୍ଚଲକ୍ଷରୁ ଊର୍ଦ୍ଧ୍ୱ ଟଙ୍କାର ସମ୍ପତ୍ତି ସହିତ ଚ୍ଳଳିଶ ଜଣ କର୍ମଚ୍ଳରୀଙ୍କ ଦାୟୀତ୍ୱ ନିର୍ଦ୍ଦେଶକଙ୍କୁ ହସ୍ତାନ୍ତର କରି ମୁଁ ଟିକେ ନିଶ୍ୱାସ ନେଲି ।

ଯୁକ୍ତରାଷ୍ଟ୍ର ଆମେରିକାରେ ଉଚ୍ଚଶିକ୍ଷା ପାଇବା ଭିତରେ କର୍ତ୍ତବ୍ୟ ପରାୟଣତା, ସାଧୁତା ଓ ନିରପେକ୍ଷତା ବିଷୟରେ ମୋର ଯାହା ଅନୁଭୂତି ଥିଲା, ତଦନୁଯାୟୀ କାର୍ଯ୍ୟ କରିବାକୁ ଜୀବନର ବ୍ରତ କରିବା ମୋର ଲକ୍ଷ୍ୟ ଥିଲା । ମାତ୍ର ନିଜଦେଶରେ ପ୍ରତିକ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖି ମନ ମୋର ବିଦ୍ରୋହ କରି ଉଠୁଥିଲା । ସେଇ ଭିତରେ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର ମୋର ହିତାକାଂକ୍ଷୀ ଦିଗମ୍ବର ବାବୁଙ୍କ କଥା ବେଳେବେଳେ ମୋର ମନକୁ ଆସିଲେ ସବୁ କିଛି ଗୋଳମାଳ ହୋଇ ଯାଉଥିଲା । ସେ କହିଥିଲେ, "ଆମେରିକାରେ ସତ୍ୟଯୁଗ ଚ୍ଳଲିଥିବା ବେଳେ ଆମ ଦେଶରେ କଳିଯୁଗ ଚ୍ଳଲିଛି ।" ତେଣୁ ଏ ଦେଶରେ ରହିଲେ କଳିଯୁଗର ନିତୀକୁ ବିରୋଧ କରିବା କ୍ଷତିକାରକ ହେବ। ହେଲେ, କାହାକୁ ବିରୋଧ କରିବା ପରିବର୍ତ୍ତେ ନିଜକୁ ସମ୍ଭାଳି ନେଇ ସଂଯମ ଆଚରଣ କରିବାକୁ ମୁଁ ଚେଷ୍ଟା କରୁଥିଲି ।

ନିର୍ଦ୍ଦେଶକ ଭାବେ ଶ୍ରୀ ମହାନ୍ତି ପାଞ୍ଚବର୍ଷ ପାଇଁ ଆମ ବିଭାଗରେ ରହିଲେ । ମୋର ଗୁପ୍ତ ଚରିତ୍ରପତ୍ର ଲେଖିବାରେ ସେ ପ୍ରତିବର୍ଷ ବିରୁଦ୍ଧାତ୍ମକ ମତ ଦେଉଥିଲେ । ମୋର କାର୍ଯ୍ୟଦକ୍ଷତା ତୁଳନାରେ ତାଙ୍କର ନ୍ୟୁନତା ମୁଁ ସ୍ପଷ୍ଟ ଅନୁଭବ କରୁଥିଲି । ମୋର କର୍ତ୍ତବ୍ୟପରାୟଣତା ସତ୍ତ୍ୱେ ବିନାକାରଣରେ ଯେପରି ମୋର ଗୁପ୍ତ ଚରିତ୍ରକୁ କ୍ଷତି ପହଞ୍ଚାଇବା ତାଙ୍କର ଉଦ୍ୟମ ଦେଖି ବିଭାଗର ଅନ୍ୟସବୁ ଅଫିସରଙ୍କ ତୁଳନାରେ ମୋ

ପ୍ରତି ତାଙ୍କର ଈର୍ଷା ଥିବାର ମୁଁ ଅନୁଭବ କରୁଥିଲି । ସେ ଭାବିଥିଲେ, ପାଞ୍ଚବର୍ଷ ଧରି ମୋର ଗୁପ୍ତ ଚରିତ୍ର ନଷ୍ଟ କରିଦେଲେ ଭବିଷ୍ୟତରେ ମୁଁ ଆଉ ନିର୍ଦ୍ଦେଶକ ହୋଇ ପାରିବି ନାହିଁ । ମାତ୍ର ତାଙ୍କପରେ ଯେଉଁ ନିର୍ଦ୍ଦେଶକ ଆସିଲେ ସେ ମୋ କାର୍ଯ୍ୟରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ମୋ ଦ୍ୱାରା ବିଭାଗୀୟ କାର୍ଯ୍ୟରେ ଖୁବ୍ ଉନ୍ନତି ହେବାର ଅନୁଭବ କରୁଥିଲେ । ସେ ଥିଲେ ଜଣେ ଆଇ.ଏ.ଏସ୍. ଅଫିସର୍ ଶ୍ରୀ ଗୋକୁଳ ଚନ୍ଦ୍ର ପତି ।

ମୋ ସ୍ତ୍ରୀଙ୍କର ମାମୁଁ ଝିଅ ଭଉଣୀ ଝୁନୁଙ୍କର ସ୍ୱାମୀ ଶ୍ରୀ ଗୋପାଳ ବଲ୍ଲଭ ପଟ୍ଟନାୟକ ଓଡ଼ିଶା ହାଇକୋର୍ଟର ବିଚାରପତି ଭାବେ ଶପଥ ନେଲେ । ଭାରତୀୟ ପ୍ରଶାସନିକ ଅଧିକାରୀ ମାନଙ୍କ ସହିତ ତାଙ୍କର ଯଥେଷ୍ଟ ସୁସମ୍ପର୍କ ଥିଲା । ତାଙ୍କ ଜରିଆରେ ସଚିବାଳୟର ଜଣେଦୁଇଜଣ ଉଚ୍ଚପଦାଧିକାରୀଙ୍କ ସହିତ ମୋର ସମ୍ପର୍କ ହେଲା । ବିଶେଷତଃ ତତ୍‌କାଳୀନ ଅତିରିକ୍ତ ମୁଖ୍ୟ ଶାସନସଚିବ ଶ୍ରୀ ରାଜକିଶୋର ଭୂଜବଳ ମୋ ବିଷୟରେ ସବୁ ଜାଣିବା ପରେ ପୂର୍ବତନ ନିର୍ଦ୍ଦେଶକ ଜାଣିଶୁଣି ଅନ୍ୟାୟରେ ଖରାପ କରିଥିବା ମୋର ଗୁପ୍ତ ଚରିତ୍ର ସଜାଡ଼ିବାରେ ସାହାଯ୍ୟ କରିଥିଲେ । ତାଙ୍କ ସାହାଯ୍ୟବିନା ମୋର ପଦୋନ୍ନତି ହୋଇପାରିନଥାନ୍ତା । ଦେବଦୂତ ପରି ସେ ମିଥ୍ୟାର କୁହେଳିକା ମଧ୍ୟରୁ ସତ୍ୟକୁ ଧରିପାରିଥିଲେ ।

ଫଳରେ ୧୯୯୦ ମସିହାରେ ମୁଁ ଯୁଗ୍ମ ନିର୍ଦ୍ଦେଶକ ପଦବୀକୁ ଉନ୍ନୀତ ହେଲି । ଠିକ୍ ସେତିକି ବେଳେ ଭାରତୀୟ ପ୍ରଶାସନିକ ସେବାରୁ ଶ୍ରୀ ଗୋକୁଳ ପତି ଆମର ନିର୍ଦ୍ଦେଶକ ଥିଲେ । ପରେ ସେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ହୋଇଥିଲେ ।

## ସାହିତ୍ୟ ସାଧନା

ହାଇସ୍କୁଲରେ ପଢ଼ିଲାବେଳେ ମୋର କବିତା ଲେଖିବାର ସ୍ପୃହା ଥିଲା । ଛୋଟ ଛୋଟ କବିତା; ଜଣାଣ ଓ କାବ୍ୟ ଲେଖିବାକୁ ଚେଷ୍ଟା କରୁଥିଲି । ଅଷ୍ଟମ ଶ୍ରେଣୀରେ ଆମର 'ଅଳକା' ନାମକ ଏକ ହାତଲେଖା ପତ୍ରିକା ପ୍ରକାଶ ପାଇଲା । ସେଥିରେ ମୁଁ 'ବର୍ଷା' କବିତା ଲେଖିଥିଲି । ମୋ ଶ୍ରେଣୀଶିକ୍ଷକ କହିଲେ କବିତା ସୁନ୍ଦରୀଙ୍କୁ ତୁମେ ଏତେ ଶବ୍ଦାଳଙ୍କାରରେ ମଣ୍ଡିତ କରିଦେଇଛ ଯେ, ସେ ଚାଲିପାରୁନାହାନ୍ତି । ଧର୍ମପଦ ଓ ମୋଗାଆଁ ଶୀର୍ଷକ ଦୁଇଟି କାବ୍ୟ ରଚନା କରିଥିଲି । ଇଷ୍ଟଦେବ ଗୋପାଳଙ୍କର ଦୁଇ ତିନିଟି ଜଣାଣ ମଧ୍ୟ ଲେଖିଥିଲି । ଏହାଛଡ଼ା କୁମାର ପୂର୍ଣ୍ଣିମା ବେଳେ ଝିଅମାନେ ସେତେବେଳେ ଯେଉଁସବୁ ଗୀତ ଗାଉଥିଲେ ମୁଁ ତହିଁରୁ ଅନେକ ଗୀତ ରଚନା

କରିଦେଉଥିଲି । ଝିଅମାନେ ମୋ ରଚିତ ଗୀତ ଗାଇବାକୁ ଆଗ୍ରହ ପ୍ରକାଶ କରୁଥିଲେ । ଏହାଛଡ଼ା ସେତେବେଳେ ବିବାହ ଉପଲକ୍ଷେ ବହୁ ସ୍ଥାନରେ ଗୀତ ଲେଖାଯାଇ ଛପାହୋଇ ବଣ୍ଟା ହେଉଥିଲା । ବନ୍ଧୁବାନ୍ଧବ ମହଲରେ ବିବାହଗୀତିକା ଲେଖିବାକୁ ମୋତେ ଅନେକ ଫରମାସ୍ ମିଳୁଥିଲା । ମୋର ଦୁଇତିନୋଟି କବିତା ପ୍ରଜାତନ୍ତ୍ରର 'ମୀନାବଜାର'ରେ ଛପା ହୋଇଥିଲା ।

କଲେଜରେ ପଢ଼ିବାପରେ ଲେଖାଲେଖି ପ୍ରତି ନଜର ଦେଇ ନଥିଲି । ଯୁକ୍ତରାଷ୍ଟ୍ର ଆମେରିକାରେ ଉଚ୍ଚଶିକ୍ଷା କରୁଥିବାବେଳେ ବିଦେଶୀଭାଷା ଅଧ୍ୟୟନ କରିବା ପାଇଁ ଆମ ବିଶ୍ୱବିଦ୍ୟାଳୟ ପକ୍ଷରୁ ବାଧ୍ୟତାମୂଳକ ଥିଲା । ଯେଉଁ ଭାଷାରେ ଅଧିକ ମାତ୍ରାରେ ବିଜ୍ଞାନର ପ୍ରସାର ଘଟିଛି ସେହିଭାଷାକୁ ପୃଥିବୀର ଉନ୍ନତ ଦେଶମାନେ ମାନ୍ୟତା ଦିଅନ୍ତି । କୌଣସି ଭାରତୀୟଭାଷା ବିଜ୍ଞାନରଭାଷା ନୁହେଁ ବୋଲି ଆମେରିକାରେ ଏଥିପ୍ରତି କେହି ଗୁରୁତ୍ୱ ଦେଉ ନଥିଲେ । ଭାବୁଥିଲି ଓଡ଼ିଶାକୁ ଫେରିଗଲେ ପଶୁପାଳନ ବିଜ୍ଞାନକୁ ଓଡ଼ିଆରେ ରୂପାୟିତ କରିବି ।

ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ଛାତ୍ରମାନଙ୍କୁ ଦୁଗ୍ଧବିଜ୍ଞାନ ପଢ଼ାଇବାବେଳେ ସେମାନଙ୍କୁ ଯୁକ୍ତରାଷ୍ଟ୍ର ଆମେରିକା ଢାଞ୍ଚାରେ ଶିକ୍ଷା ଦେବାପାଇଁ ନିଜେ ପାଠ୍ୟ ବିଷୟରେ ଟିପ୍ପଣୀ ପ୍ରସ୍ତୁତ କରି ପଢ଼ାଇବା ସହିତ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରେ ଥିବା ପାଠ୍ୟପୁସ୍ତକଗୁଡ଼ିକ ପଢ଼ି ଅଧିକ ଜ୍ଞାନ ଆହରଣ କରବା ପାଇଁ ଉପଦେଶ ଦେବା ସଙ୍ଗେସଙ୍ଗେ ଏକ ପୁସ୍ତକ ତାଲିକା ଛାତ୍ରମାନଙ୍କୁ ଦେଇଥିଲି । ମାତ୍ର ଅଧିକାଂଶ ଛାତ୍ର କହିଲେ ସେସବୁ ବହି ୟୁରୋପ ଓ ଆମେରିକାର ଗବେଷକମାନ ଲେଖିଛନ୍ତି । ତେଣୁ ଭାରତୀୟ ଜଳବାୟୁରେ ସେସବୁ ପ୍ରଯୁଜ୍ୟ ନୁହେଁ । ବିଶେଷତଃ ସେଠାକାର ଅଧିକ ଉତ୍ପାଦନକ୍ଷମ ଗାଈ ମାନଙ୍କର ପାଳନ ପ୍ରକ୍ରିୟା, ଖାଦ୍ୟଯୋଗାଣ, ରୋଗ ନିରାକରଣ, ପ୍ରଜନନ ଆଦି ଭାରତୀୟ ଦେଶୀ ଗୋରୁଗାଈଙ୍କ ପ୍ରତି ଲାଗୁ କରାଯାଇ ପାରେନା । ଗାଈ ଦୁହିଁବାର ଯନ୍ତ୍ର ଏ ଦେଶରେ ମିଳେନାହିଁ । ମିଳିଲେ ମଧ ପାଞ୍ଚହଜାର ଟଙ୍କାର ଗାଈକୁ ଦୁହିଁବା ପାଇଁ ପଚିଶହଜାର ଟଙ୍କାର ଦୁହିଁବା ଯନ୍ତ୍ର କିଣି ତାହାର ପରିଚାଳନା ଆମ ପକ୍ଷରେ ଅସମ୍ଭବ । ତେଣୁ ମୁଁ ନିଜେ ଏ ସମ୍ପର୍କୀୟ ପୁସ୍ତକ ଓଡ଼ିଆରେ ଲେଖିବା ପାଇଁ ନିଷ୍ପତ୍ତି କଲି ।

ବାଛୁରୀଟିଏ ଜନ୍ମହେବା ପରେ ତାକୁ ଠିକ୍‌ଭାବେ ପାଳନ କରି ଅଧିକ ଉତ୍ପାଦନକ୍ଷମ ଗାଈ ଭାବେ ଉତାରିବା ପାଇଁ ଆମ ଜଳବାୟୁରେ ଯାହାସବୁ କରିବା କଥା ସେ ବିଷୟରେ ଓଡ଼ିଆରେ ଲେଖିବାକୁ ଆରମ୍ଭ କଲି । ସେ ବହିଟି ଲେଖୁ ଲେଖୁ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟ ଛାଡ଼ି ପଶୁପାଳନ ବିଭାଗକୁ ମୋତେ ଆସିବାକୁ

ପଡ଼ିଲା । ସାଧାରଣଲୋକଙ୍କର ଏ ଦିଗରେ ଚାହିଦା ଅନୁଧ୍ୟାନ କରି ଦେଖିଲି ଯେ, ମୂଳକଥା ହେଉଛି ଗୋଖାଦ୍ୟ ବିଷୟରେ ସେମାନଙ୍କୁ ଶିକ୍ଷାଦେବା । ଭଲ ଗାଈଟିଏ ପାଳିଲେ ତାକୁ କଅଣ ଖାଇବାକୁ ଦିଆଯିବ? କେଉଁ ଖାଦ୍ୟ ଖୁଆଇ ଗାଈଠାରୁ ଅଧିକ ଲାଭ ମଳିପାରିବ, ଏପରି ପ୍ରଶ୍ନ ସମସ୍ତେ ପଚାରିବସନ୍ତି । ତେଣୁ ଜଣେ ପ୍ରାଣୀ ପୁଷ୍ଟିତତ୍ତ୍ୱବିତ୍‌ଭାବେ "ଗୋଖାଦ୍ୟ" ପୁସ୍ତକ ରଚନା କଲି । ବହି ଛପାଇବାକୁ କେଉଁ ପ୍ରକାଶକଙ୍କୁ କହିବି, କିଏ ବା ପଶୁପାଳନ ବିଷୟକ ବହିଛାପିବ ସେ ବିଷୟରେ ଅନେକ ଚିନ୍ତା କରି ଶେଷରେ ନିଜ ଖର୍ଚ୍ଚରେ ଏ ବହି ଦୁଇଟି ଛପାଇବାକୁ ନିଷ୍ପତ୍ତି ନେଲି । ଝାଞ୍ଜିରୀମଙ୍ଗଳାରେ ଜଣେ ଜେନାବାବୁଙ୍କର ଟ୍ରେଡଲ୍ ମେସିନ୍ ଛାପାଖାନା ଥାଏ । ତାଙ୍କ ପାଖକୁ ଗଲି । ସେ ମୋ ପାଣ୍ଡୁଲିପିଟି ଦେଖିସାରି ଏଥିପାଇଁ କାଗଜ କିଣିବାକୁ ଅଗ୍ରୀମ ଟଙ୍କା ମାଗିଲେ । ହିସାବକରି ମୋତେ ଦେଢ଼ହଜାର ଟଙ୍କା ଦେବାକୁ କହିଲେ। ସେତେବେଳେ ମୁଁ ଅନେକ ଆର୍ଥିକ ଅସୁବିଧା ଭିତରେ ଗତି କରୁଥାଏ । ବାପା, ବୋଉ ଓ ମାଆଙ୍କ ମୃତ୍ୟୁ ଲାଗ ଲାଗ ଘଟିଯିବା ଓ ଏଥିସହିତ କଟକରେ ମୁଣ୍ଡ ଗୁଞ୍ଜିବା ପାଇଁ ନିଜସ୍ୱ ଘରଟିଏ ତିଆରି ଆରମ୍ଭ କରିବା ମୋ ପକ୍ଷରେ ଦୁଃସହ ହୋଇ ପଡ଼ିଥାଏ । ମୋ ସ୍ତ୍ରୀଙ୍କର ସୁନା ଗହଣାସବୁ ବ୍ୟାଙ୍କ୍‌ରେ ବନ୍ଧାରଖି ଟଙ୍କା ଆଣି ଘର ତିଆରି କରିବା ପାଇଁ ଯେଉଁ ଟଙ୍କା ଆଣିଥିଲି, ସେଇ ଟଙ୍କାରୁ ଚଉଦଶହ ଟଙ୍କା ନେଇ ଜେନାବାବୁଙ୍କୁ ଦେଇ ଆସିଲି । ମାତ୍ର ଜେନାବାବୁ ବହି ଛପାଇବା କାର୍ଯ୍ୟ କଲେ ନାହିଁ । ତାଙ୍କ ପାଖକୁ ଧାଁ ଦଉଡ଼ କରିବାକୁ ମୋର ସମୟ ନଥିଲା । ଟଙ୍କା ଦେଇସାରି ତିନିମାସ ଅପେକ୍ଷା କଲାପରେ ମଧ୍ୟ ମୋର ବହି ଛାପିବା ଆରମ୍ଭ ହେଲା ନାହିଁ । ବାରମ୍ବାର ତାଙ୍କ ପାଖକୁ ଧାଇଁବା ପରେ ଜେନାବାବୁ କହିଲେ ମୋର ମେସିନ୍ ଭାଙ୍ଗିଯାଇଛି । ଦିନେ ତାଙ୍କ ପାଖରେ କାମ କରୁଥିବା ଲୋକଟି ମୋ ପାଖକୁ ଆସି କହିଲା ଜେନାବାବୁ ଜଣେ ଠକ । ସେ ଟଙ୍କା ନେଇ ଖର୍ଚ୍ଚ କରି ଦେଇଛନ୍ତି । କାଗଜ କିଣି ନାହାନ୍ତି । ମୁଁ ହତାଶ ହୋଇଗଲି । ସେ ବାବୁ ମୋତେ କହିଲେ, ଆପଣ ମୋତେ କାଗଜ କିଣି ଦିଅନ୍ତୁ ମୁଁ ଅନ୍ୟ ପ୍ରେସରୁ ଛପାଇ ଆଣିବି । ମୁଁ ବଜାରକୁ ଯାଇ ତାଙ୍କୁ କାଗଜ କିଣି ଦେଲି । ମୋ ପାଣ୍ଡୁଲିପିରୁ ଅଳ୍ପଅଳ୍ପ ଛପାଇ ସେ ମୋତେ ଆଣି ଦେଲେ । ଏପରି ଭାବେ "ଗୋଖାଦ୍ୟ" ଓ "ଉନ୍ନତ ବାଛୁରୀ ପାଳନ" ବହି ଦୁଇଟି ବହୁ କଷ୍ଟରେ ଛପାହେଲା । ଏ ପୁସ୍ତକ ଦୁଇଟି ଛପାଇବାକୁ ବହୁତ ଟଙ୍କା ଖର୍ଚ୍ଚ ହୋଇଗଲା। ବହିଗୁଡ଼ିକ ବିକ୍ରୀ କରିବା ମୋ ପକ୍ଷେ ଆଦୌ ସମ୍ଭବ ହେଲାନାହିଁ । ସେ ବହି ଦୁଇଟିକୁ ଆମ ବିଭାଗରେ ନିର୍ଦ୍ଦେଶକ ଥିବା ଭ୍ରମରବର ଜେନାଙ୍କୁ ଦେଖାଇଲି । ସେ ମହାଶୟ ପ୍ରତି ଜିଲା ଅଧିକାରୀ ମାନଙ୍କୁ ଚିଠି ଲେଖି ଏପରି ପୁସ୍ତକ ପ୍ରତ୍ୟେକ

ପଶୁ ଚିକିତ୍ସାଳୟରେ ରଖିବା ଲାଗି ନିର୍ଦ୍ଦେଶ ଦେଲେ । ଫଳରେ ମୁଁ ଛପାଇଥିବା ବହି ଗୁଡ଼ିକ ବିକ୍ରୀ ହୋଇଗଲା ।

ଗାଈଗୋରୁ ରଖୁଥିବା ଲୋକଙ୍କ ତୁଳନାରେ ଭୂମିହୀନ ମୂଲିଆ ଶ୍ରେଣୀର ଲୋକମାନେ ଛେଳିମେଣ୍ଢା ବା ଘୁଷୁରୀ ପାଳନ କରି ଯେ କେତେ କଷ୍ଟରେ ଦୁଇ ପଇସା ରୋଜଗାର କରନ୍ତି ତାହା ଦେଖି ସେମାନଙ୍କର ଅଧିକ ଜ୍ଞାନବୃଦ୍ଧି ଲାଗି ଛେଳି ଓ ମେଣ୍ଢା ପାଳିବାର ପୁସ୍ତକ ରଚନା କରିବାକୁ ମନସ୍ଥ କଲି । 'ଛାଗପାଳନ' ଓ 'ମେଷ ପାଳନ' ପୁସ୍ତକ ଦୁଇଟି ମଧ ପ୍ରସ୍ତୁତ ହୋଇଗଲା । ଜିଲା ପଶୁପାଳନ ଅଧିକାରୀ ମାନଙ୍କ ଜରିଆରେ ପ୍ରତି ପଶୁଚିକିତ୍ସାଳୟ ପାଇଁ ଏଥିରୁ ଗୋଟିଏ ଗୋଟିଏ ବହି ଯୋଗାଇ ଦିଆଗଲା । ତେଣୁ ଗାଆଁ ଗଣ୍ଡାରେ ଥିବା ଗୋ ମହିଷାଦି ପଶୁପାଳନକାରୀ ମାନଙ୍କୁ ଉପଦେଶ ଦେବା ପୂର୍ବରୁ ପଶୁସହାୟକ ବା ପଶୁ ଚିକିତ୍ସକମାନେ ଯେ ଏସବୁ ବହି ପଢ଼ିବାକୁ ପାଇବେ ସେ କଥା ଭାବି ମୁଁ ଆତ୍ମସନ୍ତୋଷ ଲାଭ କଲି । ଓଡ଼ିଶାରେ ରାଜ୍ୟ ଶିକ୍ଷା ଗବେଷଣା ଓ ତାଲିମ ପରିଷଦ (SCERT) ପକ୍ଷରୁ ବୈଷୟିକ ଶିକ୍ଷା ପ୍ରସାରଣ ଲାଗି ପଶୁପାଳନ କ୍ଷେତ୍ରରେ ଦୁଗ୍ଧ, ଅଣ୍ଡା ଓ ମାଂସ ଉତ୍ପାଦନ ବିଷୟକ ପୁସ୍ତକ ପ୍ରଣୟନ ଲାଗି ତତ୍କାଳୀନ ଶିକ୍ଷା ସଚିବ ପ୍ୟାରୀମୋହନ ମହାପାତ୍ର (ଆଜିର ଦକ୍ଷ ରାଜନୀତିଜ୍ଞ) ମୋତେ ଡକାଇ ଏ ଦିଗରେ ମୋର ସାହାଯ୍ୟ ଲୋଡ଼ିଲେ । ମୁଁ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ନଅ ଜଣ ଅଧ୍ୟାପକ ଓ ପଶୁପାଳନ ବିଭାଗର ନଅଜଣ ବିଜ୍ଞ ଅଫିସରଙ୍କୁ ନେଇ ତିନୋଟି କମିଟି ଗଠନ କରି ଗୋପାଳନ, କୁକୁଡ଼ା ପାଳନ ଓ ମାଂସଳ ପଶୁପାଳନ ବିଷୟକ ଛଅଟି ପୁସ୍ତକ ରଚନା କରିବାର ବ୍ୟବସ୍ଥା କଲି । ଯଥା ସମୟରେ ପୁସ୍ତକଗୁଡ଼ିକ ମୁଦ୍ରିତ ହୋଇ ପଶୁପାଳନ ଶିକ୍ଷା ଉଦ୍ଦେଶ୍ୟରେ ହାଇସ୍କୁଲ ମାନଙ୍କରେ ପାଠ୍ୟ ପୁସ୍ତକ ଭାବେ ଗୃହୀତ ହେଲା ।

ମୋ ସହିତ ଓପୋଲଫେଡ୍ ପାଇଁ କାର୍ଯ୍ୟରତ ଥିବା ଅନୁବାଦକ ଶ୍ରୀ ଯୁଗଳକିଶୋର ଦତ୍ତ ମୋ ରଚିତ ବୈଷୟିକ ପୁସ୍ତକଗୁଡ଼ିକ ପାଠକରି ମୋତେ କହିଲେ, ସାର୍ ଆପଣଙ୍କ ଲେଖା ଯେଉଁଭଳି ହୃଦୟସ୍ପର୍ଶୀ ହୋଇଛି ତାହା ପାଠକ ମହଲରେ ଖୁବ୍ ଆଦୃତ ହେବ । ଆପଣ ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଲେଖିବା ଆରମ୍ଭ କରୁନାହାନ୍ତି କାହିଁକି ? ଇତିମଧ୍ୟରେ ମୋ ପାଖରେ ଚାରିଛଅଟି କ୍ଷୁଦ୍ରଗଳ୍ପ ଥିଲା । ଯୁଗଳବାବୁ ସେସବୁକୁ ପୂଜାସଂଖ୍ୟା ପାଇଁ ବିଭିନ୍ନ ପତ୍ରିକାରେ ଛପାଇଲେ । ଏହାପରେ ମୋର ତିନିଗୋଟି ଗଳ୍ପସଂକଳନ ପ୍ରକାଶିତ ହେଲା । ସେଗୁଡ଼ିକ ହେଲା – 'ସାଲେବଗର ଅଶ୍ରୁ', 'କହେ ସାଲେବେଗ ହୀନ' ଓ 'ନୀଳଚକ୍ରର ଆହ୍ୱାନ' ।

ଯୁକ୍ତରାଷ୍ଟ୍ର ଆମେରିକାର ସମସ୍ତ ଅନୁଭୂତିକୁ ପାଥେୟ କରି "ଯେ ଯଥା ମାଂ ପ୍ରପଦ୍ୟନ୍ତେ" ଉପନ୍ୟାସ ଲେଖିବା ଆରମ୍ଭ କଲି । ତହିଁରେ ହିନ୍ଦୁଧର୍ମ ଓ ଖ୍ରୀଷ୍ଟିୟାନ ଧର୍ମର ତୁଳନା ବେଶ୍ ମନଛୁଆଁ ହେଲା । ଧର୍ମ ବିଷୟକ ଶିକ୍ଷାଦୀକ୍ଷା ନଥାଇ ଅପାଠୁଆ ପୂଜକମାନେ ଯେପରି ସନାତନ ହିନ୍ଦୁଧର୍ମକୁ କଦର୍ଥ କରି ସାଧାରଣ ଜନତାଙ୍କୁ ବ୍ରିଭ୍ରାନ୍ତ କରାନ୍ତି ସେ ବିଷୟରେ ଉକ୍ତ ଉପନ୍ୟାସରେ କେତେକ ସୂଚନା ମଧ୍ୟ ଥିଲା । ପାଠକମାନେ ଅତ୍ୟନ୍ତ ପ୍ରୀତ ହେଲେ । ମାତ୍ର ସରକାରୀ କାର୍ଯ୍ୟର ଚପ ଭିତରେ ସୁବିଧା ପାଇଲେ ଲେଖିବା ପାଇଁ ଚେଷ୍ଟା କରୁଥିଲି ।

'ସଂସାର' ପତ୍ରିକାର ସମ୍ପାଦକ ପ୍ରଖ୍ୟାତ ଶିଶୁ ସାହିତ୍ୟିକ ଶ୍ରୀ ରାମକୃଷ୍ଣ ନନ୍ଦ ମୋତେ ଯୁକ୍ତରାଷ୍ଟ ଆମୋରିକା ବିଷୟରେ ତାଙ୍କ ପତ୍ରିକାରେ କିଛି ଲେଖିବା ପାଇଁ ଅନୁରୋଧ କଲେ । ୧୯୮୪ ମସିହାରେ 'ପାତାଳପୁରୀର ହାଲ୍‌ଚାଲ୍' ଲେଖିବା ଆରମ୍ଭ କଲି । ପ୍ରତିମାସରେ ଏହି ଲେଖାଟି ଧାରାବାହିକ ଭାବେ ସଂସାର ପତ୍ରିକାରେ ଛପା ହେଲା । ଏହା ଖୁବ୍ ଲୋକପ୍ରିୟ ହୋଇଗଲା । ଧାରାବାହିକ ଭାବେ ପାଞ୍ଚବର୍ଷ ଧରି ଲେଖିବା ପରେ ଶେଷଲେଖାଟି ପଠାଇଲି ।

ମାତ୍ର ପାଠକମହଲରୁ ସଂପାଦକଙ୍କୁ ଅନୁରୋଧ ଆସିଲା ଯେ 'ପାତାଳପୁରୀର ହାଲଚାଲ' ବନ୍ଦ ନହେଉ । ଶ୍ରୀଯୁକ୍ତ ନନ୍ଦ ମୋତେ ଡକାଇ ଲେଖା ବନ୍ଦ ନ କରିବା ପାଇଁ ଅନୁରୋଧ କଲେ । ତାପରେ ବାଧ୍ୟ ହୋଇ ଦେଢ଼ବର୍ଷ ଧରି ଏହି ଲେଖା ଚଳାଇ ରଖିଲି। ପ୍ରଥମ ପାଞ୍ଚବର୍ଷ ଭିତରେ ପ୍ରକାଶିତ ଲେଖାଗୁଡ଼ିକ ଦୁଇଟି ପୁସ୍ତକ ଭାବେ ପ୍ରକାଶ ପାଇଲା । ପ୍ରଥମ ଭାଗଟି ଗ୍ରନ୍ଥମନ୍ଦିର ଓ ଦ୍ୱିତୀୟଭାଗ କଟକ ପବ୍ଲିଶିଂ ହାଉସ୍‌ଙ୍କ ଦ୍ୱାରା ମୁଦ୍ରିତ ହେଲା । ୧୯୯୦ ମସିହାରେ ଏହି ଦୁଇଟି ପୁସ୍ତକ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହେଲା । ଭ୍ରମଣ କାହାଣୀରେ ଏହାଥିଲା ପ୍ରଥମ ସାହିତ୍ୟ ଏକାଡେମୀ ପୁରସ୍କାର । ଏହାପରେ ମୋର ଆଉ ଦୁଇଟି ଭ୍ରମଣ କାହାଣୀ ମଧ୍ୟ ପ୍ରକାଶିତ ହେଲା । ସେ ଦୁଇଟି ଥିଲା 'ଯେ ଦେଶେ ଯାଇ' ଓ 'ଦୂର ସାଗର ପାରେ' ।

ରାଜ୍ୟ ସରକାରଙ୍କ ପକ୍ଷରୁ ବିଜ୍ଞାନ ସାହିତ୍ୟ ଲେଖିବା ପାଇଁ ପ୍ରୋତ୍ସାହନ ଦିଆଯିବାରୁ କେତେଜଣ ପ୍ରକାଶକ ମୋତେ ଲେଖିବାପାଇଁ ଅନୁରୋଧ କଲେ । ସେମାନଙ୍କ ଅନୁରୋଧ ଏଡ଼ାଇନପାରି ପଶୁପାଳନ କ୍ଷେତ୍ରରେ ଆଉ କିଛି ପୁସ୍ତକ ଲେଖିଲି । ମଝିରେ ମଝିରେ କ୍ଷୁଦ୍ରଗଳ୍ପ ଲେଖା ଚାଲିଥାଏ। ଯୁଗଳବାବୁଙ୍କ ଆମନ୍ତ୍ରଣ କ୍ରମେ 'ଓଡ଼ିଶା ଲେଖକ ସାମ୍ମୁଖ୍ୟ'ରେ ଯୋଗ ଦେଲି । ସାହିତ୍ୟିକ ଶ୍ରୀସାତକଡ଼ି ହୋତା ଏହାର ସଭାପତି ଥାଆନ୍ତି । ପ୍ରତିବର୍ଷ ଓଡ଼ିଶାର ବିଭିନ୍ନ ସ୍ଥାନରେ ଲେଖକ ସାମ୍ମୁଖ୍ୟର

ବାର୍ଷିକ ଅଧିବେଶନ ହୁଏ । ପ୍ରଥମ କରି ମୁଁ ପାରଳାଖେମୁଣ୍ଡି ଅଧିବେଶନକୁ ଯାଇଥିଲି । ଜନସାଧାରଣଙ୍କର ଲେଖକ ଓ କବିମାନଙ୍କ ପ୍ରତି ଆଦର ସମ୍ମାନ ଦେଖି ମୋତେ ଖୁବ୍ ଭଲ ଲାଗିଲା ।

ତା'ପରବର୍ଷ ସମ୍ବଲପୁରରେ ଲେଖକସାମ୍ମୁଖ୍ୟ ସଭା ହେଲା । ଏହାର ଦୁଇଦିନ ପୂର୍ବରୁ ଯୁଗଳବାବୁଙ୍କୁ ସାଙ୍ଗରେ ନେଇ ମୁଁ ସମ୍ବଲପୁର ଗଲି । ରାଉରକେଲା, ବ୍ରହ୍ମପୁର ଓ ଭୁବନେଶ୍ୱରରୁ ଲେଖକମାନଙ୍କୁ ନେଇ ତିନିଟି ବସ ରାତିରେ ସମ୍ବଲପୁର ପହଞ୍ଚିବାର ଥାଏ । ସଭାସ୍ଥଳରେ ତମ୍ବୁ ବନ୍ଧା ହେଉଥାଏ । ଆମେ ଦୁହେଁ ସଭାମଣ୍ଡପ ସାଜସଜା କିପରି ହେଉଛି ଦେଖିବାକୁ ସେଠାରେ ପହଞ୍ଚିଗଲୁ । ଏତିକି ବେଳେ ଗଙ୍ଗାଧର ମେହେର କଲେଜର ଦଶପନ୍ଦର ଜଣ ଛାତ୍ର ସେହି ସଭାମଣ୍ଡପକୁ ଆସିଲେ । ସେମାନେ ପଚାରିଲେ ଲେଖକମାନେ ଆସିଲେଣି ? ଯୁଗଳବାବୁ କହିଲେ ଏଇଠି ଅଛନ୍ତି, ତୁମ ଆଗରେ । ଜଣେ ଛାତ୍ର କହିଲେ, ତାହଲେ ପରିଚୟ କରାନ୍ତୁ ନା! ଯୁଗଳବାବୁ କହିଲେ ତୁମ ସାମନାରେ ଅଛନ୍ତି ଡକ୍ଟର ଗୁରୁ ପ୍ରସାଦ ମହାନ୍ତି । ଅନ୍ୟ ଜଣେ ଛାତ୍ର ପଚାରିଲେ କ'ଣ 'ପାତାଳପୁରୀର ହାଲ୍‌ଚାଲ'? ଯୁଗଳବାବୁ କହିଲେ ବାଃ ତୁମେ କ'ଣ ପାତାଳପୁରୀର ହଲ୍‌ଚଲ ପଢ଼ିବାକୁ ଭଲ ପାଅ ? ଦୁଇତିନିଜଣ କହିଲେ ହଁ, ଖୁବ୍ ଭଲ ତାଙ୍କର ଲେଖା । ସାଙ୍ଗେ ସାଙ୍ଗେ ମୁଁ ଯୁଗଳବାବୁଙ୍କର ପରିଚୟ କରାଇଦେଲି । ପିଲାମାନେ କହିଲେ ଠିକ୍ ଅଛି, କାଲି ଅନ୍ୟସବୁ ଲେଖକ ଓ କବିଙ୍କୁ ଦେଖିବାକୁ ଆସିବୁ ।

ଯୁଗଳବାବୁ ମୋତେ ପଚାରିଲେ, ସାର୍ ଆପଣଙ୍କ ପୁରସ୍କାର ପାଇଲେ ତ ? କହିଲି, ସବୁ ସେଇ ପ୍ରଭୁଙ୍କର ଦୟା । ମୋ ପରି ଜଣେ ଲୋକକୁ ସମ୍ବଲପୁରର ଛାତ୍ରମାନେ ଚିହ୍ନିବେ ବୋଲି ଆଶା କରିନଥିଲି । ଯୁଗଳବାବୁ କହିଲେ, ଆଜ୍ଞା ଏ ଉପନିର୍ଦ୍ଦେଶକ, ନିର୍ଦ୍ଦେଶକ ବା ଅଫିସର ପଦବୀ କ୍ଷଣସ୍ଥାୟୀ । ମାତ୍ର ଅପାଣଙ୍କ ସାହିତ୍ୟକୃତୀ ଚିରଦିନ ପାଇଁ ଆପଣଙ୍କୁ ଅମର କରି ରଖିବ ।

ଲେଖକସାମ୍ମୁଖ୍ୟ ପକ୍ଷରୁ ଭୁବନେଶ୍ୱର ଠାରେ ପୁସ୍ତକମେଳା ଆରମ୍ଭ କରିବାର ହେଲା । ଏକ ପୁସ୍ତକମେଳା କମିଟି ଗଠିତ ହେଲା । ସେଥିରେ ଯୁଗଳବାବୁ ଜଣେ ସଭ୍ୟ ରହିଲେ । ପଶୁପାଳନ ବିଭାଗର ସମସ୍ତ କାମ ଭିତରେ ମଝିରେ ମଝିରେ ପୁସ୍ତକମେଳାକୁ ଯାଇ ଅନ୍ୟମାନଙ୍କଠାରୁ ପୁସ୍ତକ ବିକ୍ରୟ ସମ୍ପର୍କୀୟ ତଥ୍ୟ ସଂଗ୍ରହ କରାଯାଇ ଜଣାଗଲା ଯେ, ଓଡ଼ିଆ ପୁସ୍ତକ ବିକ୍ରୀ ଉତ୍ସାହଜନକ ନୁହେଁ । ଶତକଡ଼ା ସତୁରୀଭାଗ ଆୟ ଇଂରାଜୀ ପୁସ୍ତକରୁ ମିଳିଛି । ଓଡ଼ିଆ ବହି ସବୁ କିଣିବାକୁ ଲୋକଙ୍କର ଆଗ୍ରହ ନାହିଁ । ଏକଥା ଶୁଣି ଭାରି ଖରାପ ଲାଗିଲା । ଲେଖିବା ପାଇଁ ଆଉ ଇଚ୍ଛା

ହେଲାନାହିଁ । ଯଦି ମୋ ଲେଖା ପଢ଼ିବାକୁ କେହି ନଥିବେ, ତାହେଲେ କାହାପାଇଁ ଲେଖିବି ? ମନଟା କେମିତି ଦବିଗଲା ପରି ଲାଗିଲା ।

ତଥାପି ମଝିରେ ମଝିରେ ଲେଖି ଚାଲିଲି । ଲେଖିବା ତୁଳନାରେ ବିଭାଗୀୟ କାର୍ଯ୍ୟସବୁ ଆଗେଇନେବା ଉପରେ ମୁଁ ବେଶୀ ଗୁରୁତ୍ୱ ଓ ସମୟ ଦେଉଥିଲି । ଇତିମଧ୍ୟରେ ମୋର ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ପ୍ରଥମେ ଯେଉଁ ବୈଷୟିକ ପୁସ୍ତକ ଲେଖିବା ଆରମ୍ଭ କରିଥିଲି, ସେ ଦିଗରେ - ଗୋଖାଦ୍ୟ, ଉନ୍ନତବାଛୁରୀପାଳନ, ଛାଗପାଳନ, ମେଷ ପାଳନ, ସବୁଜଗୋଖାଦ୍ୟ ଓ ଗୋପାଳନ ପୁସ୍ତକ ଛପା ହୋଇଛି । କ୍ଷୁଦ୍ରଗଳ୍ପ ଶ୍ରେଣୀର ପୁସ୍ତକ ମଧ୍ୟରେ- ସାଲେବେଗର ଅଶ୍ରୁ, କହେ ସାଲବେଗ ହୀନ, ନୀଳଚକ୍ରର ଆହ୍ୱାନ ଓ ବିଧ୍ୱସ୍ତକଳିକା । ଭ୍ରମଣକାହାଣୀ ପୁସ୍ତକ ମଧ୍ୟରେ ଦୂର ସାଗରପାରେ, ଯେ ଦେଶେ ଯାଇ, ପାତାଳପୁରୀର ହାଲ୍‌ଚାଲ୍ ୧ମଭାଗ ଓ ପାତାଳପୁରୀର ହାଲଚାଲ୍ ୨ୟ ଭାଗ ଅନ୍ତର୍ଭୁକ୍ତ । ଏଥିମଧ୍ୟରୁ ପାତାଳପୁରୀର ହାଲ୍‌ଚାଲ୍ ପୁସ୍ତକ ଦୁଇଟିକୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ୧୯୯୦ ମସିହାରେ ପୁରସ୍କୃତ କରାଯାଇଛି । ପ୍ରଥମ କରି ଏହି ପୁସ୍ତକ ଭ୍ରମଣକାହାଣୀ ଭାବେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲା । ତିନିଗୋଟି ଉପନ୍ୟାସ ମଧ୍ୟ ପାଠକ ମହଲରେ ଆଦୃତ ହୋଇଛି । ସେଗୁଡ଼ିକ ହେଲା "ଯେ ଯଥାମାଂ, ମୋହନ ବଂଶୀ ଓ ଅଶ୍ରୁତର୍ପଣ । ଦୁଇଗୋଟି ପ୍ରବନ୍ଧ ପୁସ୍ତକ- ବନ୍ଦେ ଉତ୍କଳ ଜନନୀ ଓ ଦୁଃଖ କହିବି କି ସୁଖ କହିବି ବ୍ୟତୀତ ବୈଷ୍ଣବ ଜଗତର ମୁଖ୍ୟ ଶ୍ରୀ ସନାତନ ଗୋସ୍ୱାମୀଙ୍କ "ବୃହଦ୍ ଭାଗବତାମୃତ"ର ଓଡ଼ିଆ ଅନୁବାଦ (ପ୍ରଥମ ଓ ଦ୍ୱିତୀୟ ଭାଗ) ମଧ୍ୟ ପ୍ରକାଶିତ ହୋଇଛି । ଉପରୋକ୍ତ ପୁସ୍ତକ ମାନଙ୍କ ମଧ୍ୟରୁ ପାତାଳପୁରୀର ହାଲ୍‌ଚାଲ୍ ୧ମଭାଗ ଓ ମୋହନବଂଶୀ ପୁସ୍ତକର ବଙ୍ଗଳା ଅନୁବାଦ ହୋଇଛି । ଅନୁବାଦକ ଡକ୍ଟର କେଦାରେଶ୍ୱର ଚକ୍ରବର୍ତ୍ତୀ ତାଙ୍କ ପୁସ୍ତକର ଭୂମିକାରେ ଯାହା ଲେଖିଛନ୍ତି, ତାହା ଏହିପରି- "ଗ୍ରନ୍ଥେର ବିଷୟବସ୍ତୁ ଯେମନ ଶାଶ୍ୱତ, ବୈଶିଷ୍ଟ୍ୟପୂର୍ଣ୍ଣ, ଡକ୍ଟର ମହାନ୍ତି ତେମନ ବିଶିଷ୍ଟ ବ୍ୟକ୍ତିତ୍ୱ । ବିଜ୍ଞାନମନସ୍କ ବ୍ୟକ୍ତିଟିର ମଧ୍ୟେ କ୍ଲାସିକ୍ ସାହିତ୍ୟ ରସବୋଧ ଓ ପରିଶୀଳିତ ଭାଷା ଶୈଳୀର ଏମନ୍ ଅପୂର୍ବ ସାମଞ୍ଜସ୍ୟ ଯେ କିରୂପେ ଘଟିୟାଛେ ତାହା ମାଦୃଶ ପାଠକେ ବିସ୍ମୟାଭିଭୂତ କରିୟାଛେ । x x xx x x ଉଡ଼ିୟା ଭାଷାର ଯେ ଏମନ୍ ରୂପ ମାଧୁର୍ଯ୍ୟ ଆଛେ, ତାହା ଆମି 'ମୋହନବଂଶୀ' ପାଠକରିବାର ପୂର୍ବେ କଖନଇ ଅନୁଭବ କରିନାଇ ।" x x xx x x ଯୋଗକୁ ୨୦୧୪ ମସିହାରେ କଟକର ଓଁକାର ଫାଉଣ୍ଡେସନ୍ ପକ୍ଷରୁ 'ମୋହନବଂଶୀ' ପୁସ୍ତକଟି ପୁରସ୍କାର ପାଇବା ଲାଗି ଯୋଗ୍ୟ ବିବେଚିତ ହେଲା । ତା.୨.୧.୨୦୧୪ ରିଖ ଗୁରୁବାର ସନ୍ଧ୍ୟାରେ

କଟକର ଶ୍ରୀରାମଚନ୍ଦ୍ର ଭବନରେ ଓଁକାର ଫାଉଣ୍ଡେସନ୍‌ର ବାର୍ଷିକ ଉତ୍ସବରେ ମୋତେ ସମ୍ମାନିତ କରାଯାଇ ଟ.୫୦,୦୦୦/- ପୁରସ୍କାର ପ୍ରଦାନ କଲେ । ଫାଉଣ୍ଡେସନର ସଭାପତି ଶ୍ରୀ ନବକିଶୋର ରାଜା ଉତ୍କଳ ସମ୍ମିଳନୀ ଦାୟିତ୍ୱ ନେବା ପରେ ସୃଜନଶୀଳତା ଅନେକଟା ବାଧାପ୍ରାପ୍ତ ହୋଇଛି । ତଥାପି କାର୍ଯ୍ୟବ୍ୟସ୍ତତା ଭିତରେ ମୋର ଲେଖିବାର ପ୍ରଚେଷ୍ଟା ଜାରି ରହିଛି ।

## ପିତାମାତାଙ୍କୁ ହରାଇବାର ଦୁଃଖ

ଯେଉଁମାନଙ୍କ ପାଇଁ ମୁଁ ଯୁକ୍ତରାଷ୍ଟ୍ର ଆମେରିକା ଛାଡ଼ି ଜନ୍ମମାଟିକୁ ଫେରିଆସିଲି ସେହି ବାପା, ବୋଉ ଓ ମାଆଙ୍କୁ ଯେ ଏତେ ଶୀଘ୍ର ମୁଁ ହରାଇ ବସିବି ସେ ଚିନ୍ତା ମୋ ମନରେ ନ ଥିଲା । ମୋ ବାପା କଟକ ଆସି ରହନ୍ତି । ସେଥର ମୁଁ ଦଶଦିନ ପାଇଁ ଟୁର୍‌ରେ ଗଲି । ବାପାଙ୍କୁ ଗାଆଁକୁ ନଯିବା ପାଇଁ ବାରମ୍ବାର କହି ଆସିଲି । ମାତ୍ର ମୁଁ ଫେରିଲାବେଳକୁ ବାପା ନିମାଇଁଦାଦାଙ୍କ ସାଙ୍ଗରେ ଗାଆଁକୁ ଚାଲିଯାଇଥିଲେ । ତାଙ୍କ ପ୍ରତି ମୋର ଅଭିମାନ ହେଲା । ପ୍ରାୟ ପନ୍ଦରଦିନ ଧରି ମୁଁ ଆଉ ଗାଆଁକୁ ଗଲି ନାହିଁ । ଗାଆଁରୁ ଖବର ଆସିଲା ବାପାଙ୍କୁ ଜ୍ୱର । ତାଙ୍କୁ ଦେଖିବାକୁ ଘରକୁ ଗଲି । ବାପା ପରିସ୍ରା କରିବାକୁ ବାହାରକୁ ଉଠି ମୋ ଆଖି ସାମନାରେ ପଡ଼ିଗଲେ । ପଡ଼ିଲାବେଳେ ମୁଁ ତାଙ୍କୁ ଧରି ପାରିଲି ନାହିଁ । ସେଥିପାଇଁ ମୁଁ ନିଜକୁ ଦୋଷୀ ମଣୁଥିଲି । ତାଙ୍କୁ ନେଇ ବିଛଣାରେ ଶୁଆଇଲି । ମାତ୍ର ତାଙ୍କ ଅଣ୍ଟାରେ ଭୀଷଣ ବ୍ୟଥା ହେଉଥିଲା । ମେଡ଼ିକାଲ୍ ଆଣି ଦେଖାଇବାକୁ ଗାଡ଼ିର ବ୍ୟବସ୍ଥା କଲି । ବାପା ଜିଦ୍ କରି ମନାକଲେ । କଟକ ଆସି ତାଙ୍କ ପାଇଁ ବେଡ୍‌ପେନ୍, ପରିଶ୍ରାନଳି ଆଦି କିଣି ଘରକୁ ଫେରିଲି । ବାପାଙ୍କ ପାଇଁ ପ୍ରତି ସପ୍ତାହରେ ଫଳ, ବିସ୍କୁଟ, ହରଲିକ୍ସ ଆଦି କିଣି ଘରକୁ ଯାଇ ଦେଇଆସୁଥିଲି । ସେ ସବୁବେଳେ ଘସାମୋଡ଼ା ହେବାକୁ ଖୋଜିଲେ । ସେଥିଲାଗି ତିନିଜଣ ଲୋକଙ୍କୁ ଦାୟିତ୍ୱ ଦେଲି । ସେମାନେ ସେବାସୁଶ୍ରୁଷା କରିବାରେ ଲାଗିଲେ । ପ୍ରତି ମାସରେ ସେମାନଙ୍କୁ ଦରମା ଦିଆଯାଉଥିଲା । ପରେ ବୁଝିଲି, ବାପାଙ୍କର ପେଲ୍‌ଭିକ୍ ଫ୍ରାକ୍‌ଚର ହୋଇଥିଲା ବୋଲି ।

ବାପା ବର୍ଷେକାଳ ପଡ଼ି ରହିଲେ । ଖାଇବା ପିଇବାରେ ତାଙ୍କର ବେଶ୍ ଆଗ୍ରହ ଥିଲା । ତେଣୁ ଯାହା ଖୋଜୁଥିଲେ ଯୋଗାଇଦେବାକୁ ହେଉଥିଲା । କାର୍ତ୍ତିକ ମାସ ଶୁକ୍ଳପକ୍ଷ ଆରମ୍ଭରେ ବାପାଙ୍କୁ ଦେଖାକରି ସମ୍ବଲପୁର ଟୁର୍‌ରେ ଗଲି । ସେଠି ଗୋଟିଏଦିନ ବିତାଇବା ପରେ ସମ୍ବଲପୁର ଜିଲାଅଧିକାରୀ ମୋତେ କହିଲେ, ନିର୍ଦ୍ଦେଶକଙ୍କଠାରୁ ଫୋନ୍ ମିଳିଛି, ଆପଣ ଏଇ ରାତି ରାତି ଫେରିଯାଆନ୍ତୁ । ମୁଁ କଟକ

ଫେରିଆସି ଦେଖିଲି ମୋ ସ୍ତ୍ରୀ ଶୋଇ ନାହାନ୍ତି । ମୋ ଅପେକ୍ଷାରେ ଅଛନ୍ତି । ସେ କହିଲେ ବାପାଙ୍କର ପାଟି ଖୋଲୁନାହିଁ । ତୁମେ ସ୍କୁଟରରେ ଚାଲିଯାଅ, ଆମେ ସବୁ ପଛେ ପଛେ ଯାଉଛୁ । ଯାଇ ଦେଖିଲି, ବାପା ନିଘୋଡ଼ ନିଦରେ ଶୋଇ ଯାଇଛନ୍ତି । କେବଳ ତରଳଖାଦ୍ୟ ଖାଉଛନ୍ତି । ଡାକିଲେ ଶବ୍ଦ ବାରୁଛନ୍ତି, ମାତ୍ର ଜବାବ ଦେଉ ନାହାନ୍ତି । କାର୍ତ୍ତିକ ରାସପଞ୍ଚକ ଦ୍ୱାଦଶୀ ତିଥିରେ ରାତି ଦଶଟା ବେଳକୁ ବାପା ଶେଷ ନିଶ୍ୱାସ ତ୍ୟାଗକଲେ । ଭାବୁଥିଲି, ବାପା ଭଲ ହୋଇଯିବେ ଓ ପୂର୍ବପରି କାରବାର ହେବେ । ମାତ୍ର ମୋର ଆଶା ନିରାଶାରେ ପରିଣତ ହେଲା । ବାପା ଥିଲେ ଆମ ଅଞ୍ଚଳରେ ଜମିଦାର । ଲୋକେ ତାଙ୍କୁ ଯଥେଷ୍ଟ ସମ୍ମାନ କରୁଥିଲେ । ତାଙ୍କ ପାଇଁ ପ୍ରାୟ ସତୁରୀ ଜଣ ଲୋକ ଶୋକପାଳନ କରି ବେଳାଏ ଖାଇଲେ । ଦାନଧର୍ମ, ବ୍ରାହ୍ମଣଭୋଜନ, ଅଷ୍ଟପ୍ରହର ନାମସଂକୀର୍ତ୍ତନ ସହିତ ବାପାଙ୍କର କ୍ରିୟାକର୍ମ ସାରି କଟକ ଫେରିଲି । ମାତ୍ର ଏଥର ବୋଉ ଗାଆଁ ଛାଡ଼ି ଆମ ସହିତ ରହିବାକୁ ଆସିଲା । ଗାଆଁରେ କେବଳ ମାଆ ରହିଲା । ତାର ଦେଖାଶୁଣା କରିବାକୁ ଦୁଇଜଣ ଲୋକ ଥିଲେ ।

ବାପାଙ୍କ ମୃତ୍ୟୁର ତିନିମାସ ପରେ ବୋଉର କ୍ୟାନ୍‌ସର ବାହାରିଲା । ତାର ଇଚ୍ଛା ଅନୁସାରେ ପୁରୀ, ଭୁବନେଶ୍ୱର, କୋଣାର୍କ ଆଦି ବୁଲାଇବା ପରେ କଟକ କ୍ୟାନ୍‌ସର ହସ୍ପିଟାଲ୍‌ର ଏକନମ୍ବର କ୍ୟାବିନ୍‌ରେ ରଖାଇ ଚିକିତ୍ସା କରାଇଲି । ରେଡ଼ିଅମ୍ ଚିକିତ୍ସା ହେଲା । ସେହି କ୍ୟାବିନ୍‌ରେ ମୋ ଝିଆରୀ ନିନା ତାର ଏମ୍.ଏସ୍ ଥେସିସ୍ ଟାଇପ୍ କରାଉଥାଏ । ବୋଉ ପାଖରେ ସାରାଦିନ ଲୋକ ଥାଆନ୍ତି । ଭାବୁଥିଲି ରେଡ଼ିଅମ୍ ପଡ଼ି ବୋଉର କ୍ୟାନ୍‌ସର ଭଲ ହୋଇଯିବ । ମାତ୍ର ଦୀର୍ଘ ଦୁଇମାସ ଚିକିତ୍ସା ପରେ ବୋଉ ଆଖିବୁଜିଦେଲା । ବାପାଙ୍କ ଯିବାର ଛଅମାସ ନ ପୁରୁଣୁ ବୋଉ ଚାଲିଗଲା । ତାର କ୍ରିୟାକର୍ମ ସାରି ମାଆକୁ ଧରି କଟକ ଚାଲି ଆସିଲି ।

ମାଆ ଆମ ପାଖରେ ଖୁସିରେ ରହିଲା । ମୋ ଝିଅ ବିନୁକୁ ସେ ପ୍ରାଣଦେଇ ଭଲ ପାଉଥିଲା । ତେଣୁ ବିନୁକୁ ପାଖରେ ପାଇ ସେ ଖୁସି ହେଉଥିଲା । ହେଲେ ବିଧାତାଙ୍କର ବିଧାନ ଅଲଗା । ମାଆକୁ ଝାଡ଼ା ରୋଗ ହେଲା । ବିନୁ ଓ ମୋ ବଡ଼ ପୁଅ ବିଭୂତି ଦୁହେଁ ତା ସେବାରେ ରହିଲେ । ବିନୁ ବାଣୀବିହାରରେ ଏମ୍.ଏ. ପଢୁଥାଏ । ପ୍ରତିଦିନ ବସ୍‌ରେ ବାଣୀବିହାର ଯାଇ କ୍ଲାସ୍ କରି ଫେରିଆସେ । ସେଦିନ ସେ ବାଣୀବିହାର ଯିବାପରେ ମୁଁ ମାଆକୁ ଆର୍ମଚେୟାର୍‌ରେ ବସାଇ ବିସ୍କୁଟ୍ ଦୁଧ ଖୁଆଇ ଦେଉଥିଲି । ଦୁଇ ଚାରିଥର ଢୋକିବା ପରେ ମାଆ ଘୁମେଇବା ଆରମ୍ଭ କରିଦେଲା । ମୁଁ ତାକୁ ବଡ଼ ପାଟିରେ ଡାକିଲି, ମାଆ ଆଖି ଖୋଲ । ମୋ ପାଟିଶୁଣି

ସେ ମୁରୁକି ହସିଦେଇ ମୁଣ୍ଡ ଗଡ଼ାଇଦେଲା । ଦେଖିଲି ସେ ମଧ୍ୟ ମୋତେ ଛାଡ଼ି ଚାଲିଯାଇଛି । ତା ମୁହଁରୁ ହସ ଲିଭି ନଥାଏ । ଏହିପରି ଦୁଇବର୍ଷ ଭିତରେ ବାପା, ବୋଉ ଓ ମାଆ ତକାତକି ହୋଇ ସେ ପାରିକୁ ଚାଲିଗଲେ । ମୋ ଝିଅ ବିନୁର ବିବାହ ଦେଖିବାକୁ କେହି ରହିଲେ ନାହିଁ ।

# ବିଭାଗୀୟ ପଦୋନ୍ନତି

୧୯୭୧ ମସିହାରେ ମୁଁ ଯେତେବେଳେ ଓଡ଼ିଶା ସରକାରଙ୍କ ଅଧୀନରେ ପ୍ରଥମ ଶ୍ରେଣୀ ପାହ୍ୟାରେ ଚାକିରୀ ଆରମ୍ଭକଲି, ସେତେବେଳେ ବିଭାଗର ବହୁ ବୟସ୍କ ଅଫିସର ଦ୍ୱିତୀୟଶ୍ରେଣୀ ପାହ୍ୟାରେ ଥିଲେ । ଏମାନଙ୍କ ମଧ୍ୟରୁ ମୋ ପ୍ରତି ଅଧିକାଂଶ ଲୋକ ଈର୍ଷା ପରାୟଣ ହୋଇପଡ଼ିଲେ । କାରଣ ମାତ୍ର ୩୩ ବର୍ଷ ବୟସରେ ମୁଁ ପଦୋନ୍ନତି ପାଇ ପ୍ରଥମଶ୍ରେଣୀ ପାହ୍ୟା ପାଇଗଲି । ଏହାପରେ ମୋ ପାଇଁ କେବଳ ଯୁଗ୍ମନିର୍ଦ୍ଦେଶକ ଓ ନିର୍ଦ୍ଦେଶକ ପଦବୀ ବାକୀ ଥିଲା । ଆଉ ପଚିଶି ବର୍ଷ ଚାକିରୀ ଭିତରେ ମୁଁ ହୁଏତ ପନ୍ଦର କୋଡ଼ିଏ ବର୍ଷ ନିର୍ଦ୍ଦେଶକ ପଦବୀରେ ରହିପାରିବାର ଆଶଙ୍କା ଅନ୍ୟମାନଙ୍କୁ ବିଚଳିତ କରୁଥିଲା । ତେଣୁ ବୟସ୍କ ଅଫିସର ମାନେ ଏକତ୍ରିତ ହୋଇ ମୋ ଉପରେ ବରିଷ୍ଠତା ଦାବୀକରି ସରକାରଙ୍କୁ ଦରଖାସ୍ତ କଲେ । ଯେଉଁ ସବୁ କିରାଣୀ ବା ଅଫିସର ମାନଙ୍କ ଜରିଆରେ ସେମାନଙ୍କ ଫାଇଲ୍ ଗତିକଲା, ସେମାନଙ୍କୁ ପ୍ରଭାବିତ କରିବାକୁ ନାନା ଉପାୟରେ ଚେଷ୍ଟା ଜାରୀରହିଲା ।

ଆମ ନିର୍ଦ୍ଦେଶାଳୟର ବହୁଲୋକ ମୋତେ ଏ ବିଷୟରେ କିଛି କରିବାକୁ କହିଲେ । ମାତ୍ର ସେ ଦିଗରେ ମୋର ଆଦୌ ସ୍ପୃହା ନଥିଲା । କହିଲି, ପଶୁପାଳନ ବିଭାଗରେ ଯୋଗଦେବା ପରେ ମୁଁ ଯାହା ସବୁ କରୁଛି; ସେହି କାର୍ଯ୍ୟରୁ ମୋତେ ତୃପ୍ତି ମିଳୁଛି । ଓଡ଼ିଶାର ଦରିଦ୍ର ଜନସାଧାରଣଙ୍କ ସେବା କରି ମୁଁ ଖୁସିରେ ଅଛି । ସଚିବାଳୟରେ କିରାଣି, ସହକାରୀ ସଚିବ, ଉପସଚିବ ବା ସଚିବଙ୍କ ପଛରେ ଗୋଡ଼ାଇ ପଦୋନ୍ନତି ପାଇଁ ଚେଷ୍ଟା କରିବା ଦ୍ୱାରା ମୁଁ କର୍ତ୍ତବ୍ୟରେ ହେଳା କରିବି । ତେଣୁ ଯେଉଁମାନେ ନିଜର ପଦୋନ୍ନତି ପାଇଁ ଚେଷ୍ଟା ଚଳାଇଛନ୍ତି ସେମାନେ ଯାହା ହେବାର ହୁଅନ୍ତୁ । ଈଶ୍ୱର ମୋ ପାଇଁ ଯାହା ବ୍ୟବସ୍ଥା କରିଛନ୍ତି ତାହା ଅନ୍ୟଥା ହେବନାହିଁ । ଏହାଭାବି ମୁଁ ନିଜ କାର୍ଯ୍ୟରେ ମନ ଦେଲି ।

ମୁଁ ଯେଉଁ କାର୍ଯ୍ୟ କରୁଥିଲି, ତହିଁରୁ ଓଡ଼ିଶାର ହଜାର ହଜାର କ୍ଷୁଦ୍ରଚାଷୀ ଓ ନାମମାତ୍ରଚାଷୀ ଲାଭବାନ୍ ହେଉଥିଲେ । ତାହାହିଁ ମୋତେ ଆନନ୍ଦ ଦେଉଥିଲା ।

ବେଳେବେଳେ ଭାବୁଥିଲି, ଯୁକ୍ତରାଷ୍ଟ୍ର ଆମେରିକାରେ ଚାକିରୀ କରିଥିଲେ ମୁଁ ବହୁତ ରୋଜଗାର କରି ଆନନ୍ଦରେ ରହି ପାରିଥାନ୍ତି । ମାତ୍ର ମୋ ଜନ୍ମମାଟିର ସେବା କରିବା ସୌଭାଗ୍ୟ ମୋତେ ମିଳିନଥାନ୍ତା । ମୋ ଆଖି ଆଗରେ ଅନେକ ସରକାରୀ କର୍ମଚାରୀ କିଛି ନକରି କେବଳ ଦରମା ପାଇବା ଦେଖି ମୋତେ ଖରାପ ଲାଗୁଥିଲା । ଶତକଡ଼ା ପଚାଶଭାଗ କର୍ମଚାରୀ ଏହାହିଁ ଚାହୁଁଥିଲେ । କିଛି କାମ ନକରି କେବଳ ନିଜର ଆର୍ଥିକ ଉନ୍ନତି କଥା ଭାବିବାକୁ ଅଧିକାଂଶ ଲୋକ ପସନ୍ଦ କରୁଥିବା ମୁଁ ଅନୁଭବ କରୁଥିଲି । ମାତ୍ର ମୋତେ ଏସବୁ ଘୃଣା ଲାଗୁଥିଲା । ମୁଁ କେତେ ଦରମା ପାଉଛି ବା ଗସ୍ତଖର୍ଚ୍ଚ ପାଉଛି ତାର ହିସାବ କରି ପ୍ରତିବଦଳରେ ମୁଁ କ'ଣ କରିପାରୁଛି ସେ ବିଷୟରେ ସର୍ବଦା ଚିନ୍ତା କରୁଥିଲି । ତେଣୁ ମୋ ଦ୍ୱାରା କିଛି ହୋଇ ପାରିବାର ଲକ୍ଷ୍ୟ ନେଇ ମୁଁ କାର୍ଯ୍ୟ କରୁଥିଲି । ଭାବୁଥିଲି, ସରକାରୀ କାର୍ଯ୍ୟରେ ଯୋଗଦେଇ ମୁଁ ଯେକୌଣସି ରାଜନୈତିକ ବ୍ୟକ୍ତି ତୁଳନାରେ ଅଧିକ ଦେଶସେବା କରିପାରୁଛି । ମୋ ଦ୍ୱାରା ସ୍ଥିରୀକୃତ କମ୍ ଦାମ୍‌ର ଗୋଖାଦ୍ୟ, ବାଛୁରୀଖାଦ୍ୟ ଓ ନନ୍ଦନକାନନ ଚିଡ଼ିଆଖାନାର ପଶୁପକ୍ଷୀଙ୍କର ଉପାଦେୟ ଖାଦ୍ୟ ପାଇଁ ବର୍ଷକୁ ଶହ ଶହ କୋଟି ଟଙ୍କା ବାଟମାରଣା ହେବାରୁ ରକ୍ଷା ପାଉଥିଲା । କ୍ଷୁଦ୍ରଚାଷୀ ଓ ନାମମାତ୍ର ଚାଷୀମାନେ ଗୋପାଳନ, କୁକୁଡ଼ା ପାଳନ ଓ ଘୁଷୁରୀ ପାଳନ ଲାଗି ବ୍ୟାଙ୍କ ମାନଙ୍କରୁ ତୁଳନାତ୍ମକ କମ୍ ଋଣ କରି ଲାଭବାନ୍ ହେଉଥିଲେ ।

ପ୍ରତିବର୍ଷେ ଦିଲ୍ଲୀ ଯିବାଆସିବା କରି ବାଛୁରୀ ପାଳନ ଯୋଜନାରେ ଓଡ଼ିଶାକୁ ଅଧିକରୁ ଅଧିକ ଅର୍ଥ ଆଣିବାର ବ୍ୟବସ୍ଥା କରୁଥିଲି । ଯୋଜନାର ପରିସର ତତ୍‌କାଳୀନ ତେରଟି ଯାକ ଜିଲାକୁ ବିସ୍ତାରିତ ହେବାକୁ ଲାଗିଲା ।। ଜିଲାକୁ ଜିଲା ଗସ୍ତକରି ବାଛୁରୀମାନଙ୍କ ଲାଗି ଉପଯୁକ୍ତ ଖାଦ୍ୟଯୋଗାଣ, ଖାଦ୍ୟ ଯୋଗାଇବାର ନିୟମିତତା, ବାଛୁରୀମାନଙ୍କର ଉପଯୁକ୍ତ ଦେହବୃଦ୍ଧି ଓ ରୋଗ ନିରାକରଣ ଉପରେ ସ୍ଥାନୀୟ ପଶୁଚିକିତ୍ସକ ଓ ସହାୟକ ମାନେ ପାଳନକର୍ତ୍ତା ଗୃହସ୍ଥ ମାନଙ୍କୁ ସାହାଯ୍ୟ କରିବା ଉପରେ ମୁଁ ଗୁରୁତ୍ୱ ଦେଉଥିଲି । ଦଶବର୍ଷ ଭିତରେ ଓଡ଼ିଶାକୁ କେନ୍ଦ୍ର ସାହାଯ୍ୟ ବାବଦ ପ୍ରାୟ ପଚାଶ କୋଟି ଟଙ୍କା ମିଳିଥିଲା ଓ ବ୍ୟାଙ୍କ୍ ଋଣ ଜରିଆରେ ଏହି ଯୋଜନାକୁ ସାକାର କରିବାପାଇଁ ପ୍ରତିବର୍ଷ ପ୍ରାୟ ଦୁଇଶହ କୋଟି ଟଙ୍କା ଖର୍ଚ୍ଚ ହେଉଥିଲା । ଫଳରେ ଓଡ଼ିଶାରେ ପ୍ରାୟ ପାଞ୍ଚଲକ୍ଷ ଦୁଧିଆଳି ଗାଈଙ୍କର ସୃଷ୍ଟି ହୋଇଥିଲା ।

କେଉଁଠି କିଛି ଅଡୁଆ ପରିସ୍ଥିତି ସୃଷ୍ଟିହେଲେ ବିଭାଗୀୟ ନିର୍ଦ୍ଦେଶକମାନେ ମୋତେ ତାର ସାମନା କରିବାକୁ ପଠାଉଥିଲେ । ନନ୍ଦନକାନନ ପ୍ରାଣୀ ଉଦ୍ୟାନରେ ହରିଣ, ଗଣ୍ଡା, ଗୟଳ ଓ କୁଟୁରା ଜାତୀୟ ପଶୁମାନଙ୍କର ମୃତ୍ୟୁ ହେଲା । ସେଥିଲାଗି

ସଚିବାଳୟରେ ଏକ ଉଚ୍ଚସ୍ତରୀୟ ଅଫିସର ମାନଙ୍କର ଆଲୋଚନାରେ ପଶୁପାଳନ ବିଭାଗର ନିର୍ଦ୍ଦେଶକ ମଧ୍ୟ ଭାଗ ନେଲେ । ସେହି ଆଲୋଚନାରୁ ଫେରି ନିର୍ଦ୍ଦେଶକ ମୋତେ ଡକାଇ ଏ ବିଷୟରେ ତଦନ୍ତ କରିବା ପାଇଁ ନନ୍ଦନକାନନକୁ ଯିବାକୁ ଅନୁରୋଧ କଲେ । ମୁଁ ଯାଇ ଦେଖିଲି, ମୋର ସହପାଠୀ ବନ୍ଧୁ ଚୌଧୁରୀ ଗୌରହରି ମିଶ୍ର ଡି.ଏଫ୍.ଓ ଭାବେ ନନ୍ଦନକାନନ ଦାୟିତ୍ୱରେ ଅଛନ୍ତି । ଗୌରହରି ଓ ମୁଁ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିଲୁ । ମୋତେ ଦେଖି ସେ ବହୁତ ଖୁସି ହେବା ସଙ୍ଗେ ସଙ୍ଗେ ଏ ବିଷୟରେ କିଛି କରିବା ପାଇଁ ଅନୁରୋଧ କଲା ।

ତା' ସହିତ ଅଲୋଚନା କରି ଯାହା ବୁଝିଲି ଉପଯୁକ୍ତ ଖାଦ୍ୟ ନ ମିଳିବାରୁ ଏସବୁ ପଶୁଙ୍କର ମୃତ୍ୟୁ ଘଟୁଛି । ପଶୁପକ୍ଷୀଙ୍କ ଦାନା ବାବଦ ନନ୍ଦନକାନନ କର୍ତ୍ତୃପକ୍ଷ ବହୁତ ଖର୍ଚ୍ଚାନ୍ତ ହୋଇ ମଧ୍ୟ ଭଲ ଖାଦ୍ୟ ପାଉନାହାନ୍ତି । ଠିକାଦାର ମାନଙ୍କ ଜରିଆରେ ପ୍ରାଣୀ ଉଦ୍ୟାନକୁ ଦାନା ଯୋଗାଇ ଦିଆଯାଉଛି । ସେମାନେ ଯାହା ଦେଉଛନ୍ତି ସେ ବାବଦ କର୍ତ୍ତୃପକ୍ଷ ବହୁତ ଖର୍ଚ୍ଚାନ୍ତ ହୋଇ ମଧ୍ୟ ଭଲ ଗୁଣଯୁକ୍ତ ଖାଦ୍ୟ ମିଳୁନାହିଁ । ପ୍ରାଣୀ ଉଦ୍ୟାନର ସମସ୍ତ ପ୍ରାଣୀଙ୍କୁ ନିକୃଷ୍ଟ ଧରଣର ଦାନା ଯୋଗାଇ ଦିଆଯାଉଛି । ଠିକାଦାର ଯାହା ଦେଉଛନ୍ତି ତାହା ଉପରେ କର୍ତ୍ତୃପକ୍ଷ ସମ୍ପୂର୍ଣ୍ଣ ନିର୍ଭର କରୁଛନ୍ତି । ମାତ୍ର ସେହି ଦାନାର ଖାଦ୍ୟ ଗୁଣ ବିଷୟରେ କାହାର ଧାରଣା ନାହିଁ ।

ସେସବୁ ଖାଦ୍ୟରୁ ନମୁନା ସଂଗ୍ରହ କରି ଭୁବନେଶ୍ୱରସ୍ଥ ଆମ ପରୀକ୍ଷାଗାରରେ ପରୀକ୍ଷା କରି ଦେଖିଲି ଯେ, ସେଗୁଡ଼ିକ ଅତି ନିମ୍ନମାନର ପଶୁଖାଦ୍ୟ । ଏସବୁର ମୂଲ୍ୟ ବାବଦ ଠିକାଦାରମାନେ ପ୍ରଚୁର ଟଙ୍କା ନେଉଛନ୍ତି । ଯାହା ମୋର ମନେ ପଡୁଛି - ହରିଣଖାଦ୍ୟ କିଲୋ ପ୍ରତି ଚାରିଟଙ୍କା, ଗୟଳଖାଦ୍ୟ ଚାରିଟଙ୍କା ଆଠଣା, ଗଣ୍ଡାଖାଦ୍ୟ, କିଲୋପ୍ରତି ଛଅଟଙ୍କା, ଜଙ୍ଗଲି ବାର୍‌ହା ଖାଦ୍ୟ କିଲୋ ପ୍ରତି ଛଅଟଙ୍କା ଆଠଣା ଓ ବଣ କୁକୁଡ଼ା ଏବଂ ସେହି ଶ୍ରେଣୀର ପକ୍ଷୀମାନଙ୍କ ଖାଦ୍ୟ କିଲୋ ପ୍ରତି ସାତଟଙ୍କା ଦିଆଯାଉଛି । ମାତ୍ର ସେସବୁ ଅତି ନିକୃଷ୍ଟ ମାନ ହୋଇଥିବାରୁ ପ୍ରାଣୀମାନେ ଦୁର୍ବଳ ହୋଇ ମୃତ୍ୟୁମୁଖରେ ପଡୁଛନ୍ତି । ଘାସ ଯୋଗାଇବାକୁ କ୍ୱିଣ୍ଟାଲ୍ ପ୍ରତି ଏକଶହ ଟଙ୍କା ଦେବାକୁ ପଡୁଛି । ଗୌରହରିକୁ କହିଲି, ଏ ବାବଦ ବର୍ଷକୁ ଅତି କମ୍‌ରେ ଦୁଇତିନି କୋଟି ଟଙ୍କା ବାଟମାରଣା ହେଉଛି । ଏଥିରୁ ତୁମ ବିଭାଗୀୟ ଅଫିସର ମାନେ ଲାଞ୍ଚ ପାଉଥିବେ । ସେ କହିଲା, ଭାଇ ଏସବୁ ଠିକାଦାର ମାନଙ୍କର ଚାଲ୍‌ବାଜି । ଅବଶ୍ୟ ସେମାନେ ମନ୍ତ୍ରୀ ଓ କେତେକ ଲୋଭୀ ଅଫିସରଙ୍କୁ ହାତରେ ରଖିଥିବେ । ମାତ୍ର ଏସବୁର ବିଲୋପ ହେବା ଉଚିତ । ସେ କହିଲା, ତୁ ମୋତେ ସଠିକ ପ୍ରସ୍ତାବ ଦେ । ତାହା ମୁଁ ଫରେଷ୍ଟ ବୋର୍ଡ଼ ପାଖରେ ପେଶ୍ କରିବି ।

ମୁଁ ଏହି ପଶୁମାନଙ୍କ ପାଇଁ ଦାନା ମିଶ୍ରଣ ତାଲିକା ତିଆରି କରି ସେ ସବୁର ମୂଲ୍ୟାୟନ କରି ଦେଖିଲି ଯେ, କିଲୋପ୍ରତି ହରିଣ ବା ଗୟଳ ଖାଦ୍ୟ ଦେଢ଼ ଟଙ୍କା, ଗଣ୍ଡାଖାଦ୍ୟ ଦୁଇଟଙ୍କା, ବାର୍ହାଖାଦ୍ୟ ତିନିଟଙ୍କା ଓ କୁକୁଡ଼ା ଜାତୀୟ ପକ୍ଷୀଙ୍କ ଖାଦ୍ୟ ତିନିଟଙ୍କା ଆଠଣା ପଡୁଛି । ଠିକାଦାରମାନେ ଦୁଇ ତିନିଗୁଣା ଟଙ୍କା ନେଉଛନ୍ତି । ନନ୍ଦନକାନନ ହ୍ରଦ ଚାରିପଟେ ଘାସ ଚାଷ କରିବାର ପ୍ରସ୍ତାବ ଦେଲି ଓ ଘାସ ପାଇଁ ମଞ୍ଜି ଓ ମୂଳ ଆମ ବିଭାଗ ପକ୍ଷରୁ ମାଗଣାରେ ଯୋଗାଇ ଦେବାକୁ କହିଲି । ପଶୁଖାଦ୍ୟର ନମୁନା ସଂଗ୍ରହକରି ପ୍ରତିଦିନ ଆମ ଭୁବନେଶ୍ୱର ପରୀକ୍ଷାଗାରକୁ ପଠାଇ ସେସବୁର ଗୁଣାତ୍ମକମାନ ବୁଝିବାର ବ୍ୟବସ୍ଥା କଲି । ଗୌରହରିବାବୁ ମୋ ପରାମର୍ଶ ଅନୁଯାୟୀ ନିଷ୍ଠାପର ଭାବେ କାର୍ଯ୍ୟ କଲେ । ଫଳରେ ଏସବୁ ପଶୁଖାଦ୍ୟ ବାବଦ ବାର୍ଷିକ ପ୍ରାୟ ଦୁଇତିନି କୋଟି ଟଙ୍କା ଖର୍ଚ୍ଚ କମିଗଲା। ଏହା ଦେଖି ଗୌରହରି ବହୁତ ଖୁସି ହେଲା ଓ ମୁଁ ନନ୍ଦନକାନନ ଯିବାମାତ୍ରେ ହ୍ରଦ ଉପରେ ଥିବା ଅତିଥିଭବନରେ ମୋର ରହିବା ଖାଇବା ଇତ୍ୟାଦିରେ ସ୍ଥାୟୀ ବନ୍ଦୋବସ୍ତ କରିଦେଲା । ପ୍ରତିମାସରେ ମୋତେ ଅତିକମ୍‌ରେ ସେଠାକୁ ଥରେ ଯିବାକୁ ପଡୁଥିଲା । ପ୍ରାୟ ଦୁଇତିନିମାସ ମଧ୍ୟରେ ଏସବୁ ପଶୁଙ୍କର ସ୍ୱାସ୍ଥ୍ୟ ବଦଳି ଗଲା । ଅଧିକାଂଶ ମାଈଜନ୍ତୁ ଗର୍ଭବତୀ ହେଲେ । ହ୍ରଦ ଚାରିପଟେ ଏତେ ଘାସ ହେଲା ଯେ, ଆଉ ଠିକାଦାର ମାନଙ୍କଠାରୁ ଘାସ କିଣିବାକୁ ପଡ଼ିଲା ନାହିଁ ।

ଗୌରହରି ସେଠାରୁ ପଦୋନ୍ନତି ପାଇ ଉପମୁଖ୍ୟ କଞ୍ଜରଭେଟର ହୋଇ ଯିବା ପରେ ଶ୍ରୀ ସରୋଜ କୁମାର ପଟ୍ଟନାୟକ ତା ସ୍ଥାନରେ ନନ୍ଦନକାନନ ଡି.ଏଫ୍.ଓ ଦାୟିତ୍ୱରେ ରହିଲେ । ସେ ମୋ ସହିତ ପରାମର୍ଶ କରି ଆହୁରି ଅଧିକ ଜମିରେ ଘାସ ଚାଷ କରାଇଲେ । ତେବେ ପ୍ରତିମାସରେ ମୋତେ ସେ ନନ୍ଦନକାନନ ଆସିବାକୁ ଅନୁରୋଧ କରୁଥିଲେ ।

ଦିନକୁଦିନ ମୋର ଦାୟିତ୍ୱ ବଢ଼ିବାକୁ ଲାଗିଲା । ମୋ ନିଜ କଥା ଭାବିବା ଲାଗି ଖୁବ୍ କମ୍ ସମୟ ମିଳୁଥିଲା । ଇତି ମଧ୍ୟରେ ମୋ ତଳେଥିବା ଏଗାରଜଣ ଅଫିସର ମୋତେ ପଛରେ ପକାଇ ଯୁଗ୍ମ ନିର୍ଦ୍ଦେଶକ ହୋଇଗଲେ । ମୋର ଅନେକ ବନ୍ଧୁ କହିଲେ, ତୁମେ ସରକାର ବିରୁଦ୍ଧରେ ମକଦ୍ଦମା ନ କଲେ ଏମିତି ଗୋଟିଏ ପାହ୍ୟାରେ ପଡ଼ିରହିଥିବ । ବାଧ୍ୟହୋଇ ମୁଁ ଟ୍ରିବ୍ୟୁନାଲରେ ମୋର ବରିଷ୍ଠତା ଦାବୀ କରି ମକଦ୍ଦମା ଦାଏର କଲି । କଟକରେ ଜଣେ ଖ୍ୟାତନାମା ଓକିଲଥିବା ମୋ ସାନ ସଡୁକୁ ଏହି ମକଦ୍ଦମାର ଦାୟିତ୍ୱ ଦେଲି । ଶୀଘ୍ର କିପରି ମୁଁ ନ୍ୟାୟ ପାଇପାରିବି, ସେଥିଲାଗି ମଝିରେ ମଝିରେ ତା ଉପରେ ଚାପ ଦେଉଥିଲି। ଅନେକ ଥର ତାରିଖ ବଦଳାଇବା ସହିତ

ସରକାରୀ ଓକିଲ ଏହି ମକଦ୍ଦମାକୁ ଗଡ଼ାଇ ଗଡ଼ାଇ ଚାଲିଲେ । ମୋ ଓକିଲ କହିଲେ ଯେ, ସରକାରୀ ଓକିଲଙ୍କୁ ନ ଧରିପାରିଲେ ଆମେ ଏ କେଶ୍‌ରେ ଜିଣି ପାରିବା ନାହିଁ । ପଚାରିଲି, ମୋର ଯୁକ୍ତରାଷ୍ଟ୍ର ଆମେରିକାରେ ଉଚ୍ଚଶିକ୍ଷା, କୃଷିବିଶ୍ୱବିଦ୍ୟାଳୟରେ ଅଧ୍ୟାପନା ଓ ୧୯୭୧ ମସିହାରୁ ଏ ବିଭାଗର ପ୍ରଥମଶ୍ରେଣୀ ପାହ୍ୟା ଥାଇ ବିଚାରପତି କାହିଁକି ତୁମ ଯୁକ୍ତିରେ ରାଜି ହେବେ ନାହିଁ ? ଅନ୍ୟମାନଙ୍କର ମୋ ତୁଳନାରେ କୌଣସି ଯୋଗ୍ୟତା ନଥାଇ ମୋ ଠାରୁ ବରିଷ୍ଠତାରେ ବହୁ ପଛରେ ଥିବା ସତ୍ତ୍ୱେ ଆମେ କାହିଁକି ଧରାଧରି କରିବା? ଏକଥା ଶୁଣି ସେ କହିଲେ, ତାହେଲେ ଆପଣ ଜଣେ ଭଲ ଓକିଲଙ୍କୁ ନିଯୁକ୍ତ କରାନ୍ତୁ । ମୋ ବୁଦ୍ଧିବିଦ୍ୟାରେ ଆମେ ଜିଣିବା ସମ୍ଭବ ନୁହେଁ । କାରଣ ଠିକ୍ ବାଟରେ ବର୍ତ୍ତମାନର ଟ୍ରିବ୍ୟୁନାଲ୍‌ଠାରୁ ନ୍ୟାୟ ଆଶାକରିବା ସମ୍ଭବ ନୁହେଁ । ଅପରପକ୍ଷରେ ବହୁତ ଲୋକ ଅଛନ୍ତି ଓ ସେମାନଙ୍କ ପକ୍ଷରୁ ପ୍ରବଳ ଚାପ ଦିଆଯାଉଛି ।

ମୁଁ ଅନ୍ୟ ଜଣେ ଓକିଲଙ୍କୁ ଏ ମକଦ୍ଦମାର ଦାୟିତ୍ୱ ଦେଲି । ମାତ୍ର ପ୍ରାୟ ବର୍ଷକ ପରେ ମୋ ମକଦ୍ଦମା ଖାରଜ ହୋଇଗଲା । ଦେଖିଲି ପୂର୍ବରୁ ଏ ମକଦ୍ଦମା ବୁଝୁଥିବା ମୋର ସତ୍ତୁ ଯେଉଁ ପରାମର୍ଶ ଦେଇଥିଲେ ତାହା ସେ ଅନେକ ଭାବିଚିନ୍ତି କହିଥିଲେ । ଏବେ ଆଉ କିଛି ବାଟ ନାହିଁ । ହୁଏତ ଏହି ଉପନିର୍ଦ୍ଦେଶକ ପଦବୀରେ ମୋର ଚାକିରୀକାଳ ସରିଯିବ । ଇତି ମଧ୍ୟରେ ମୋ ବିରୁଦ୍ଧରେ ମକଦ୍ଦମା କରିଥିବା ଏଗାରଜଣ ଯାକ କନିଷ୍ଠ ପାହ୍ୟାର ଅଫିସରମାନେ ମୋ ଉପରେ ପଦୋନ୍ନତି ପାଇ ସାରିଥିଲେ । ତେଣୁ ଓକିଲବନ୍ଧୁ ଜଣକ ମୋତେ ଅପିଲ କରିବାକୁ ପରାମର୍ଶ ଦେଲେ । କହିଲେ, ଏବେ ଆଉ ଆପଣଙ୍କର ଟାଣୁଆ ପ୍ରତିଦ୍ୱନ୍ଦୀ କେହି ନାହାନ୍ତି । ଆମେ ଜିତିବା । ତାଙ୍କ କଥାରେ ମୁଁ ରାଜି ହେଲି । ବର୍ଷକ ପରେ ମୁଁ ମକଦ୍ଦମାରେ ଜିଣିଗଲି ।

ମୋତେ ପଦୋନ୍ନତି ଦେବା ପାଇଁ ସରକାରଙ୍କୁ ଟ୍ରିବ୍ୟୁନାଲ ନିର୍ଦ୍ଦେଶ ଦେଲେ । ଏହା ସତ୍ତ୍ୱେ ପୁଣି ଜଣେ ମୋର ସହକର୍ମୀ ମୋ ଉପରେ ବରିଷ୍ଠତା ପାଇ ଉତ୍ତରାଞ୍ଚଳ ଦାୟିତ୍ୱରେ ଯୁଗ୍ମ ନିର୍ଦ୍ଦେଶକ ହୋଇଗଲେ । ମୋ ଓକିଲ ଏହା ବିରୁଦ୍ଧରେ ଟ୍ରିବ୍ୟୁନାଲରେ ଦରଖାସ୍ତ କଲେ । ହେଲେ, ସେ ଭଦ୍ରଲୋକ କୋର୍ଟରେ କୌଣସି ଜବାବ ଦାଖଲ କଲେ ନାହିଁ । ଇତି ମଧ୍ୟରେ ଶ୍ରୀ ରାଜକିଶୋର ଭୁଜବଳ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଭାବେ ଯୋଗଦେଇ ଯୁଗ୍ମନିର୍ଦ୍ଦେଶକ ଭାବେ ମୋର ନାମ ସୁପାରିଶ କରାଇ ମୋତେ ଯୁଗ୍ମନିର୍ଦ୍ଦେଶକ ଉତ୍ତରାଞ୍ଚଳ ଦାୟିତ୍ୱରେ ସମ୍ବଲପୁରସ୍ଥ ଚିପିଲିମାରେ ଯାଇ ଯୋଗଦେବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କଠାରୁ ମଞ୍ଜୁରୀ ନେଇଗଲେ ।

ସେତେବେଳେକୁ ମୁଁ ବାପା, ବୋଉ ଓ ମାଆଙ୍କର ଅସ୍ଥି ବିସର୍ଜନ କରି ଗୟାଶ୍ରାଦ୍ଧ ଦେଇ ଫେରିଥାଏ । ମୋତେ ଟାଇଫଏଡ଼ ଜ୍ୱରହେଲା । ସେହି ଜ୍ୱରରେ ମୁଁ ଅତିଶୟ ଦୁର୍ବଳ ହୋଇଗଲି । ଟାଇଫଏଡ୍ ଜ୍ୱରରେ ମୁଁ ଭୟଙ୍କର ଭାବେ ଦୁର୍ବଳ ହୋଇଯିବାର କାରଣ ନକହିଲେ ଠିକ୍ ହେବନାହିଁ । ମୋତେ ଦୁଇତିନିଦିନ ଜ୍ୱର ହେବା ପରେ ମୋ ସାନସଢୁ ଡାକ୍ତର ପୂର୍ଣ୍ଣଚନ୍ଦ୍ର ଦାସ ମୋତେ ନେଇ ମେଡ଼ିସିନ୍ ସ୍ପେଶାଲିଷ୍ଟ ରଘୁ ସାହୁଙ୍କ ପାଖକୁ ଗଲେ । ପ୍ରଫେସର ରଘୁ ସାହୁ ସେତେବେଳେ ଓଡ଼ିଶାର ଖୁବ୍ ଖ୍ୟାତନାମା ମେଡ଼ିସିନ୍ ସ୍ପେଶାଲିଷ୍ଟ ଥିଲେ । ଅବଶ୍ୟ ସେତେବେଳକୁ ତାଙ୍କୁ ସତୁରୀ ବର୍ଷ ପର୍ଯ୍ୟନ୍ତ ବୟସ ହୋଇଥିଲା । ସେ ବେଶୀ ଔଷଧ ଲେଖନ୍ତି ନାହିଁ । ମାତ୍ର ଗୋଟିଏ କିମ୍ବା ଦୁଇଟି ଔଷଧ ଲେଖନ୍ତି । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ସେ ଥିଲେ ସ୍ୱନାମଧନ୍ୟ ମେଡ଼ିସିନ୍ ପ୍ରଫେସର । ତାଙ୍କ ପାଖକୁ ଯିବା ପରେ ମୋତେ ଦେଖି ସେ ଗୋଟିଏ ଅତି ଦାମିକା ଆଣ୍ଟିବାୟୋଟିକ୍ ଲେଖିଦେଲେ । ଦିନକୁ ମାତ୍ର ଦୁଇଟି ବଟିକା ଖାଇବା କଥା । ଜ୍ୱର ପ୍ରତିଦିନ ୧୦୪ ରହିଲା । ଆଦୌ କମିଲା ନାହିଁ । ପାଞ୍ଚ ଦିନକାଳ ତାଙ୍କ ଔଷଧ ଖାଇ ମୁଁ ବିଛଣାରୁ ଉଠି ପାରିଲି ନାହିଁ । ମୋ ସଢୁ ମୋତେ ନେଇ ପୁଣି ଥରେ ତାଙ୍କ ପାଖକୁ ଗଲା । ମାତ୍ର ସେ ପୁଣି ସେହି ଔଷଧ ଆଉ ୫ ଦିନ ଖାଇବାକୁ କହିଲେ । ଜ୍ୱର ୧୦୪ରୁ ୧୦୫କୁ ବଢ଼ିଲା । ପେଟରେ କିଛି ରହିଲାନାହିଁ । ମୋତେ ଦେଖିବାକୁ ମୋ ଝିଆରୀ ନିନା (ଡାକ୍ତର ପ୍ରତିଭା କାନୁନ୍‌ଗୋ) ଆସିଲା । ସେ ମେଡ଼ିକାଲ କଲେଜରେ ଚର୍ମ ବିଭାଗର ଅଧ୍ୟାପିକା ଥାଏ । ମୋତେ ଦେଖିସାରି ସେ ରାଗି ଉଠିଲା । କହିଲା ରଘୁସାହୁ, ତୁମକୁ ମାରିବାକୁ ଏ ଔଷଧ ଦେଇଛି, ସେ ଜଣେ ଏତେ ବଡ଼ ଚିକିତ୍ସକ ହୋଇ ସାମାନ୍ୟ ଟାଇଫଏଡ଼ ରୋଗ ଚିହ୍ନିପାରୁ ନାହିଁ ? ଟାଇଫଏଡ଼ ଜାଗାରେ ସେ ଯେଉଁ ଔଷଧ ଦେଇଛି ଆଉ ୨/୩ ଦିନ ଖାଇଲେ ଜୀବନ ଚାଲିଯିବ । ଏହା କହି ସେ ବାକୀତକ ଔଷଧ ଫିଙ୍ଗିଦେଲା । ଘରକୁ ଯାଇ ମୋ ପାଇଁ ଔଷଧ ପଠାଇଦେଲା । ତା ଔଷଧ ଖାଇବାର ତିନିଘଣ୍ଟା ପରେ ମୋର ଜ୍ୱର ଓହ୍ଲାଇଗଲା । ତିନି ଚାରିଦିନ ଔଷଧ ଖାଇବା ପରେ ଟାଇଫଏଡ଼ ପୂରା ଭଲ ହୋଇଗଲା । ମାତ୍ର ମୁଁ ଏତେ ଦୁର୍ବଳ ହୋଇ ଯାଇଥିଲି ଯେ, ବିଛଣାରୁ ଉଠିବା ମୋ ପକ୍ଷେ କଷ୍ଟକର ହୋଇଗଲା । ନିନା ମୋତେ ବଞ୍ଚାଇ ଦେଲା । ନଚେତ୍ ବଡ଼ ଡାକ୍ତର ରଘୁସାହୁ, ମୋତେ ନିଶ୍ଚୟ ମାରି ଦେଇ ଥାଆନ୍ତେ ।

ଉତ୍ତରାଞ୍ଚଳ ଦାୟିତ୍ୱରେ ଥିବା ଯୁଗ୍ମନିର୍ଦ୍ଦେଶକ ଡାକ୍ତର ଲକ୍ଷ୍ମୀଧର ମହାନ୍ତି କଟକ ଆସି ଅତିରିକ୍ତ ନିର୍ଦ୍ଦେଶକ ଭାବେ ଦାୟିତ୍ୱନେବା ପୂର୍ବରୁ ଆମ ଘରକୁ ଆସି ମୋତେ ଉତ୍ତରାଞ୍ଚଳର ଦାୟିତ୍ୱ ହସ୍ତାନ୍ତର କଲେ । ସେ କହିଲେ ଆପଣ ଜ୍ୱରାକ୍ରାନ୍ତ ହୋଇ

ଦୁର୍ବଳ ହୋଇ ପଡ଼ିଛନ୍ତି । ଏବେ ଚିପିଲିମା ଯାଆନ୍ତୁ ନାହିଁ । ସେଠାରେ ମଧ୍ୟ ଅବସ୍ଥା ଭଲ ନାହିଁ । ସବୁତକ ଫାର୍ମ ନଷ୍ଟ ହୋଇଗଲାଣି । ସେ ସବୁ ଧୀରେ ଧୀରେ ବନ୍ଦ ହୋଇଯିବ । ଆପଣ ସୁସ୍ଥ ହେବାପରେ ନିର୍ଦ୍ଦେଶାୟଳରେ ଯୋଗଦିଅନ୍ତୁ । ଆପଣଙ୍କର ସଦରମହକୁମା ଚିପିଲିମା ବଦଳରେ କଟକ ରଖିବା ପାଇଁ ସରକାରଙ୍କୁ ପ୍ରସ୍ତାବ ଦିଆଯାଇଛି ।

ସବୁ ଶୁଣିସାରି ମୁଁ କହିଲି, ମୋର ଶିକ୍ଷାଗୁରୁ ଡକ୍ଟର ଗଣେଶ୍ୱର ବିଶ୍ୱାଳଙ୍କର ଚିପିଲିମାରେ ରାଜ୍ୟ ପଶୁପାଳନ ଫାର୍ମ ସ୍ଥାପନକରିବା ଏକ ସ୍ୱପ୍ନ ଥିଲା । ସେଥିଲାଗି ସେ ୧୮୬୦ ଏକର ଜାଗା ନେଇ ସେଠାରେ ଦଶଟି ପଶୁ ପ୍ରଜନନ ଫାର୍ମ ପ୍ରତିଷ୍ଠା କରିବାର ଯୋଜନା କରିଥିଲେ । ସେହି ଜାଗାରେ ଛଅଟି କଲୋନୀ ସହିତ ପାଞ୍ଚଶହ ଜର୍ସି ଓ ଲାଲ ସିନ୍ଧି ଗାଈ, ସାତଶହ ଛେଳି, ସାତଶହ ମେଣ୍ଢା, ପାଞ୍ଚହଜାର କୁକୁଡ଼ା, ଦୁଇହଜାର ବତକ, ପାଞ୍ଚଶହ ଘୁଷୁରୀ, ଏକ ହଜାର ଏକର ଜମିରେ ଉନ୍ନତ ଘାସ ଚାଷ ସହିତ ଘାସମଞ୍ଜି ଉତ୍ପାଦନ ଫାର୍ମ ଇତ୍ୟାଦି ସେ ପ୍ରତିଷ୍ଠା କରାଇଥିଲେ । ସେଠାରେ ରାଜ୍ୟସ୍ତରୀୟ ଗବେଷଣାଗାର ପ୍ରତିଷ୍ଠା କରାଯାଇ ଚାରିଜଣ ଗବେଷକଙ୍କ ସହିତ ଦଶଜଣ ପଶୁଚିକିତ୍ସାବିତ୍‌ଙ୍କୁ ମୁତୟନ କରାଯାଇଥିଲା । ତେଣୁ ସେହି ଧ୍ୱଂସମୁଖୀ ପ୍ରତିଷ୍ଠାନର ପୁନରୁଦ୍ଧାର କରିବା ମୋର କର୍ତ୍ତବ୍ୟ । ମୋର ଏହି ଭଗ୍ନସ୍ୱାସ୍ଥ୍ୟରେ ସେଠାରେ ଯାଇ ପହଞ୍ଚିବାକୁ ମୁଁ ଅତ୍ୟନ୍ତ ଲାଳାୟୀତ । ଡାକ୍ତର ମହାନ୍ତିଙ୍କୁ କହିଲି ଯଥାଶୀଘ୍ର ମୋର ସେଠାକୁ ଯିବାପାଇଁ ବ୍ୟବସ୍ଥା କରନ୍ତୁ ।

ଖବର ପାଇ ଚିପିଲିମାରୁ ଏକ ଟ୍ରେକର ଆସିଲା ଓ ମୁଁ ସେହି ଟ୍ରେକର୍‌ରେ ଶୋଇ ଶୋଇ ସେଠିକି ଗଲି । ସେତେବେଳେ ସମ୍ବଲପୁର ରାସ୍ତା ତିଆରି ଚାଲିଥାଏ । ବାଟରେ ମୋତେ ନେଇ ଯାଉଥିବା ଗାଡ଼ିଟି ଖରାପ ହୋଇଗଲା । ବାଧ୍ୟ ହୋଇ ମୋତେ ବଇଣ୍ଡା ପଶୁସହାୟକ କେନ୍ଦ୍ରରେ ରାତି ବିତାଇବାକୁ ପଡ଼ିଲା । ଚିପିଲିମାରେ ପହଞ୍ଚିବାକୁ ମୋତେ ଦୁଇଦିନ ଲାଗିଗଲା । ଡାକ୍ତର ମହାନ୍ତି ଏଠାରେ ଠିକ୍ ବର୍ଷେ ପୂର୍ବରୁ ଏକ ପୁରାତନ ଘାସକଟା ହଲ୍‌ରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ସ୍ଥାପନ କରି ପୂଜା ଆରମ୍ଭ କରାଇଥିଲେ । ସେହି ମନ୍ଦିରରେ ସବୁ ଅଫିସରମାନଙ୍କୁ ଡକାଇ ଏହି ପ୍ରତିଷ୍ଠାନର ପୁନରୁଦ୍ଧାର କରିବା ପାଇଁ ସମସ୍ତଙ୍କ ସହଯୋଗ କାମନା କଲି ଓ ସେମାନେ ମୋ ସହିତ ନିଷ୍ଠାପର ଭାବେ କାର୍ଯ୍ୟ କରିବା ପାଇଁ ଶପଥନେଲେ । ସବୁ ଫାର୍ମ ବୁଲି ଦେଖିଲି ଯେ ଖୁବ୍ କମ୍ ପଶୁପକ୍ଷୀଙ୍କୁ ସେଠାରେ ରଖାଯାଇ କେବଳ ନାମକୁ ମାତ୍ର କାଗଜପତ୍ରରେ ଫାର୍ମ ଭାବେ ଦେଖା ହେଉଛି । ପାଞ୍ଚଶହ ଅଧିକ ଉତ୍ପାଦନକ୍ଷମ ଗାଈଙ୍କ ସ୍ଥାନରେ ମାତ୍ର ପଚିଶଟି ରୁଗ୍ଣ ଜର୍ସିଗାଈ ଥିଲେ । ଛେଳି ଓ

ମେଣ୍ଢା ଫାର୍ମରେ ମାତ୍ର ଦୁଇଶହ ଭିତରେ ଛେଳିମେଣ୍ଢା ରଖାଯାଇଛି । କୁକୁଡ଼ା ଓ ଘୁଷୁରୀ ଫାର୍ମରେ ମାତ୍ର ଦୁଇତିନିଶହ କୁକୁଡ଼ା ଓ କିଛି ଧଳା ଘୁଷୁରୀ ରଖାଯାଇଛନ୍ତି । ବତକଫାର୍ମଟି ସମ୍ପୂର୍ଣ୍ଣ ଭାଙ୍ଗି ଯାଇଛି । ଏତେବଡ଼ ଡାଏରୀ ଫାର୍ମରୁ ଦିନକୁ ମାତ୍ର ଦେଢ଼ଶହ ଲିଟର ଦୁଗ୍ଧ ଉତ୍ପାଦିତ ହେଉଛି । ଏହି ଅନୁଷ୍ଠାନରେ ଦିନମଜୁରିଆ ମାନଙ୍କୁ ମିଶାଇ ପ୍ରାୟ ଛଅଶହ ଲୋକ କାମ କରୁଛନ୍ତି । ଘାସଫାର୍ମ ମାନଙ୍କରେ ଖୁବ୍ କମ୍ ଘାସ ହେଉଛି । ପ୍ରାୟ ଦଶଟି ଟ୍ରାକ୍ଟର ଓ କାର୍, ଜିପ୍, ଟ୍ରକ୍ ମିଶାଇ ପାଞ୍ଚସାତଟି ଗାଡ଼ି ମରାମତି ନହୋଇ ଭଙ୍ଗା ଅବସ୍ଥାରେ ଜଙ୍କ୍ ଖାଇ ପଡ଼ିଛି । ମୋ ପୂର୍ବରୁ ଏଠାରେ ଥିବା ଯୁଗ୍ମ ନିର୍ଦ୍ଦେଶକମାନେ ଏସବୁ ଦେଖି ଆଖିବୁଜି ଦେଇଛନ୍ତି । ବହୁ କ୍ୱାର୍ଟରରୁ ଲୁହା ଗ୍ରୀଲ୍, ଦ୍ୱାରବନ୍ଧ, ଝରକା, କବାଟ ସବୁ ତାଡ଼ି ନିଆ ଯାଇଛି । ଗୋଟିଏ କାର୍, ଗୋଟିଏ ଟ୍ରେକ୍‌କର ଓ ଦୁଇଟି ଟ୍ରାକ୍ଟର ମଝିରେ ମଝିରେ ମରାମତି ହେଲେ ଚାଲୁଛି । ଦୁଇ ତିନିଟି ଫାର୍ମକୁ ଆଦୌ ଜଳଯୋଗାଣ ନାହିଁ ।

ଏସବୁ ଦେଖି ମୁଁ ହତାଶ ହୋଇପଡ଼ିଲି । ଭାବିଲି, ସେଥିପାଇଁ ଡାକ୍ତର ମହାନ୍ତି ମୋତେ ଏଠିକି ନ ଆସିବା ପାଇଁ ଉପଦେଶ ଦେଉଥିଲେ । କଟକରେ ନିର୍ଦ୍ଦେଶାଳୟରେ ବସି ଫାଇଲ୍ ଚଷ କରିବା ଖୁବ୍ ଆରାମ ଦାୟକ । ମାତ୍ର ଭାଙ୍ଗିଯାଇଥିବା ଫାର୍ମ ସଜାଡ଼ିବା କିମ୍ବା ପଶୁପାଳନ କରି ଜନସାଧାରଣଙ୍କୁ ଆଦର୍ଶ ଦେଖାଇବା ଅସମ୍ଭବ କଥା । ଯୁକ୍ତରାଷ୍ଟ୍ର ଆମେରିକାରେ ଯେଉଁମାନେ କାର୍ଯ୍ୟରେ ଉନ୍ନତି ଦେଖାଇ ପାରନ୍ତି, ସେମାନଙ୍କୁ ବହୁ ମାନ୍ୟତା ମିଳେ । ଚାକିରୀରେ କନିଷ୍ଠ ହୋଇଥିଲେ ମଧ୍ୟ ଏପରି କର୍ମଚାରୀଙ୍କୁ ସବୁରି ଉପରେ ବରିଷ୍ଠ ଭାବେ ପଦୋନ୍ନତି ଦିଆଯାଏ । ହେଲେ ଆମଦେଶ କଥା ନିଆରା । କିଛି କାମ ନକରି ଉପରିସ୍ଥ ହାକିମଙ୍କୁ ଖୋସାମତ କରି ଫଳେପୁଷ୍ପେ ଭେଟି ଚଢ଼ାଇଲେ କର୍ମଚାରୀମାନଙ୍କର ପଦୋନ୍ନତି ହୁଏ । କର୍ତ୍ତବ୍ୟନିଷ୍ଠ କର୍ମଚାରୀଙ୍କୁ ତଡ଼ିଦେଇ ଖୋସମତିଆଙ୍କୁ ଭଲ ଜାଗାରେ ରଖାଯାଏ । ସର୍ବୋପରି ଆଇ.ଏ.ଏସ୍. ଅଫିସରମାନଙ୍କ ସ୍ତରରେ ଯାହାର ଭଲ ଲବି ଅଛି ବା ଧରାପଞ୍ଚା କରିବାର ଦକ୍ଷତା ଅଛି ସେ ସରକାରୀ ଚାକିରୀର ସମସ୍ତ ସୁବିଧା ସୁଯୋଗ ପାଏ । ଏହାଛଡ଼ା, ମୁଖ୍ୟମନ୍ତ୍ରୀ ବା କୌଣସି ପ୍ରତିପତ୍ତିଶାଳୀ ରାଜନୈତିକ ନେତାଙ୍କ ସହିତ ସମ୍ପର୍କୀତ କର୍ମଚାରୀମାନେ କର୍ତ୍ତବ୍ୟନିଷ୍ଠ କାର୍ଯ୍ୟଦକ୍ଷ କର୍ମଚାରୀମାନଙ୍କୁ ହଟାଇ ତାଙ୍କ ସ୍ଥାନ ଅଧିକାର କରି ନିଅନ୍ତି । ଫଳରେ ଠିକ୍ ଭାବେ କାର୍ଯ୍ୟ ହୋଇପାରେ ନାହିଁ । ସରକାରୀ ଲକ୍ଷ୍ୟ ସାଧନ ଦିଗରେ ବାଧା ସୃଷ୍ଟି ହୁଏ । ଯେତେ ଚେଷ୍ଟା କଲେ ଏଭଳି ଅପାରଗ ଲୋକଙ୍କୁ ତାଙ୍କ ଆସନରୁ ହଟାଇବା ସମ୍ଭବ ହୁଏ ନାହିଁ । ଦେଶ ପଛେ ଚୂଲିକୁ ଯାଉ, ମାତ୍ର ମହାଦେବଙ୍କ ସାପ ଉପରେ କୌଣସ ଆଞ୍ଚ ଆଣିବା ସମ୍ଭବ ହୁଏ ନାହିଁ ।

ଭାବିଲି, ଏପରି ଏକ ଧ୍ୱଂସପ୍ରାୟ ବିଶାଳ ଉଦ୍ୟୋଗକୁ ସୁଧାରିବା ପାଇଁ ସବୁ ଦିଗରୁ ଲାଗିବାକୁ ହେବ । କାର୍ଯ୍ୟାଳୟର ବରିଷ୍ଠ କିରାଣିମାନଙ୍କୁ ଡାକି ଏହି ସଂସ୍ଥାର ବଜେଟ ଦେଖି ହତୋତ୍ସାହିତ ହେଲି । କେବଳ କର୍ମଚାରୀମାନଙ୍କର ଦରମା ଛାଡ଼ି ଅନ୍ୟ କୌଣସି ଦିଗରେ ଖର୍ଚ୍ଚ କରିବାର ବ୍ୟବସ୍ଥା ନାହିଁ । ନାମକୁ ମାତ୍ର ପ୍ରତି ଫାର୍ମର ହାତଖର୍ଚ୍ଚ ବାବଦ କିଛି କିଛି ଅର୍ଥ ରଖାଯାଇଛି, ଯଦ୍ଦ୍ୱାରା ମାତ୍ର ଗୋଟିଏ ମାସର ଖର୍ଚ୍ଚ ନିର୍ବାହ କରାଯାଇପାରିବ ।

ଏତେବଡ଼ ଫାର୍ମର କର୍ମଚାରୀମାନେ ଯେପରି ଅଳସୁଆ ହୋଇ ବସି ନରହି କିଛି କାମକରି ଦେଖାଇପାରିବେ ତାର ଏକ ଖସଡ଼ା ତିଆରି କରି ତଦନୁଯାୟୀ କାର୍ଯ୍ୟ କରିବାକୁ ବ୍ୟବସ୍ଥା କଲି । ବହୁ ସଂଖ୍ୟକ ପିଅନ ଚପରାଶି କେବଳ ଆଫିସରେ ବସି ଦରମା ନେଉଥିଲେ। ସେମାନଙ୍କ ମଧ୍ୟରୁ ଲୋକମାନଙ୍କୁ ବାଛି ବଢ଼େଇକାମ, ରାଜକାମ ଓ ପଥର ବସାଇବା କାମ ଶିଖାଇଲି । ଯେଉଁସବୁ ଘର ଭାଙ୍ଗି ଯାଇଛି ସେସବୁ ମରାମତି କରିବାକୁ ଏହି ନିର୍ମାଣ ସଂସ୍ଥାର ଲୋକମାନେ ଲାଗିପଡ଼ିଲେ। ଜର୍ସି ଗାଈମାନଙ୍କର ମିଶ୍ରିତ ଦାନା ତିଆରି କରିବାକୁ ଏକ ଗ୍ରାଇଣ୍ଡର ବା ଚୂନା କରିବା ଯନ୍ତ୍ର ଓ ମିଶ୍ରଣ ଯନ୍ତ୍ରରେ ବିଦ୍ୟୁତ୍ ସଂଯୋଗ କରି ଜଣେ ଅଫିସରଙ୍କ ଦାୟିତ୍ୱରେ ରଖାଇଲି । ଫାର୍ମ ଭିତରେ ଥିବା ଯେଉଁସବୁ କ୍ୱାଟରରେ ଲୋକମାନେ ରହୁଥିଲେ ସେମାନଙ୍କ ଭଙ୍ଗା ଘରସବୁ ମରାମତି କରାଗଲା । ତାଛଡ଼ା ଯଥାସମ୍ଭବ ପଶୁ ମାନଙ୍କର ଗୁହାଳ ଓ କୁକୁଡ଼ା ଫାର୍ମ ଆଦି ମଧ୍ୟ ମରାମତି କରି ଦିଆଗଲା ।

ବତକଫାର୍ମ ତିଆରି ହେବା ଦିନରୁ ଏ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ହୋଇନଥିଲା । ଚିପିଲିମା ପାୱାର ଚେନେଲ୍‌ରୁ ପାଣି ଜମି ସେହି ଫାର୍ମ ପାଖରେ ଏକ ଛୋଟ ହ୍ରଦ ଭଳି ଜଳାଶୟ ସୃଷ୍ଟି ହୋଇଥାଏ । ଆୟତନରେ ଏହା ପ୍ରାୟ ଶହେ ଏକର ହେବ । ଏହି ଜଳଭାଗ କୂଳରେ ବତକ ମାନଙ୍କ ପାଇଁ ଘର ଥିଲା ଓ ସେହି ହ୍ରଦସହିତ ଏକ ସଂଯୋଗ ଚେନେଲ ମଧ୍ୟ ତିଆରି ହୋଇଥିଲା । ସେସବୁ ପୂରା ନଷ୍ଟ ପ୍ରାୟ ହୋଇ ଯାଇଥାଏ । ମୋର ଚତୁର୍ଥଶ୍ରେଣୀ କର୍ମଚାରୀ ମାନଙ୍କୁ ଲଗାଇ ସେସବୁ ଘର ମରାମତି କରାଇ ବତକ ରଖିବାକୁ ଉଦ୍ୟମ କଲି । ବରଗଡ଼ ଅଞ୍ଚଳରେ ତେଲୁଗୁ ଲୋକମାନେ ଜମିବାଡ଼ି କିଣି ଚାଷବାସ କରି ପଶୁପାଳନ, କୁକୁଡ଼ାଚାଷ ଓ ବତକପାଳନ କରିଥାନ୍ତି । ସେ ଅଞ୍ଚଳରୁ ବତକଅଣ୍ଡା କିଣି ଏହି ଫାର୍ମରେ ଅଣ୍ଡା ଫୁଟା ମେସିନରେ ବତକଛୁଆ ଉତ୍ପାଦନ କରି ବତକଫାର୍ମର ଗୋଟିଏ ଗୋଟିଏ ଘର ଭରି ଦେବାକୁ ବ୍ୟବସ୍ଥା କଲି । ସେସବୁ ଛୁଆ ବଢ଼ିଯିବା ପରେ ସେମାନଙ୍କ ଠାରୁ ଅଣ୍ଡା ଉତ୍ପାଦିତ ହେଲା ଓ ସର୍ବସାଧାରଣ ଲୋକେ ବତକଛୁଆ କିଣିବାକୁ ଭିଡ଼ ଜମାଇଲେ ।

ଘୁଷୁରୀ ଫାର୍ମରେ ମାତ୍ର ଦୁଇଶହ ଘୁଷୁରୀ ରହିବାର ସୁବିଧା ଥିଲା । ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ ଧଳା ଘୁଷୁରୀ ଛୁଆ ଯୋଗାଇବାକୁ ଅନୁରୋଧ ପାଇ ସେହି ଫାର୍ମର ପରିଚାଳକଙ୍କୁ ଅଧିକ ସଂଖ୍ୟକ ପ୍ରଜନନକ୍ଷମ ମାଈ ଘୁଷୁରୀ ପାଳିବାକୁ ନିର୍ଦ୍ଦେଶ ଦେଲି । ଆମ ଗୃହ ନିର୍ମାଣକାରୀ କର୍ମୀମାନଙ୍କୁ ଲଗାଇ ପରିଚାଳକ ତାଙ୍କ ଫାର୍ମର ଆକାର ବୃଦ୍ଧି କରାଇ ଏକହଜାର ଘୁଷୁରୀଙ୍କ ପାଇଁ ଘର କରିଦେଲେ । ସେହିଭଳି ପ୍ରତି ଫାର୍ମର ଆକାର ବଢ଼ାଇ ଦିଆଗଲା । ପଶୁପକ୍ଷୀମାନଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରିବାକୁ ମୋ ଦ୍ୱାରା ପ୍ରସ୍ତୁତ ଫରମ୍ୟୁଲା ଅନୁସାରେ ଦାନା ତିଆରି କରି ଯୋଗାଇ ଦିଆଗଲା । ଜର୍ସି ଗାଈ ମାନଙ୍କର ଦୁର୍ବଳ ସ୍ୱାସ୍ଥ୍ୟର ମୂଳ କାରଣ ଥିଲା ନିକୃଷ୍ଟ ଧରଣର ଘାସ ଯୋଗାଣ ।

ଚିପିଲିମା ଫାର୍ମ ଲାଗି ଆମ ବିଭାଗରେ ତୃଣ ଉନ୍ନୟନ ଅଫିସରେ ପଦବୀ ସୃଷ୍ଟି ହୋଇଥିଲା । ଏହି ପଦବୀରେ କୃଷି ବିଭାଗରୁ ଡେପୁଟେସନରେ ଆସିଥିବା ଜଣେ ଅଫିସର ରହୁଥିଲେ । ଏକହଜାର ଏକର ଜମିରେ ଘାସ ମଞ୍ଜି ଉତ୍ପାଦନ କରି ଓଡ଼ିଶାରେ ଥିବା ସମସ୍ତ ବିଭାଗୀୟ ଫାର୍ମମାନଙ୍କୁ ଓ ଚାଷୀମାନଙ୍କୁ ଯୋଗାଇବା ଦାୟିତ୍ୱ ଥିଲା ତାଙ୍କର । ସେ ଭଦ୍ରଲୋକ ଉପନିର୍ଦ୍ଦେଶକ ଭାବେ ନିର୍ଦ୍ଦେଶାଳୟକୁ ବଦଳି ହେବା ପରେ ଚିପିଲିମାରେ ଘାସ ଉତ୍ପାଦନ ଓ ଘାସ ମଞ୍ଜି ଉତ୍ପାଦନ ପାଇଁ ତାଙ୍କ ଅଧୀନରେ ଦୁଇଜଣ ସହକାରୀ ତୃଣ ଉନ୍ନୟନ ଅଧିକାରୀ ଓ ସେମାନଙ୍କ ଅଧୀନରେ ଆଠ ଜଣ ଫିଲ୍ଡ ମ୍ୟାନ୍ ବା କ୍ଷେତ୍ର ପରିଦର୍ଶକ ରହି କାମ କରୁଥିଲେ । ଘାସ ପାଇଁ ଓ ମଞ୍ଜି ଉତ୍ପାଦନ ପାଇଁ ଅଲଗା ବଜେଟ୍ ଥିଲା । ସେହି ବଜେଟ୍‌ରେ ସାର, ପୋକମରା ଔଷଧ ଓ ଉନ୍ନତ ବିହନ ଆମଦାନୀ ପାଇଁ ଯଥେଷ୍ଟ ଟଙ୍କାର ଖର୍ଚ୍ଚ ବ୍ୟବସ୍ଥା ଥିଲା । ମାତ୍ର ଅଲଗା ଅଲଗା ଜମିରେ ଏଥିଲାଗି ଚାଷ ନକରି ଗୋଟିଏ ଜମିରେ ଘାସ ଲଗାଇ ତହିଁରେ ମଞ୍ଜି ହେବା ପର୍ଯ୍ୟନ୍ତ ସେମାନେ ଅପେକ୍ଷା କରୁଥିଲେ । ମଞ୍ଜି ପାକଳ ହେଲାବେଳକୁ ଘାସଗଛ ବୁଢ଼ା ହୋଇଯାଉଥିଲା । ମାତ୍ର ସେହି ବୁଢ଼ା ଗଛକୁ ସେମାନେ ଟିକି ଟିକି କରି କାଟି ଜର୍ସିଗାଈଙ୍କୁ ଖାଇବାକୁ ଦେଉଥିଲେ । ମୋ ପୂର୍ବରୁ କୌଣସି ଯୁଗ୍ମ ନିର୍ଦ୍ଦେଶକ ଏହାର ପ୍ରତିବାଦ କରି ନଥିଲେ । କାରଣ ପ୍ରତିବାଦ କଲେ ନିର୍ଦ୍ଦେଶାଳୟରେ ଥିବା ତୃଣ ଉନ୍ନୟନ ଉପନିର୍ଦ୍ଦେଶକଙ୍କ ଆୟପନ୍ଥାରେ ବ୍ୟାଘାତ ସୃଷ୍ଟି ହେବାର ଆଶଙ୍କା ଥିଲା । ମାତ୍ର ମୁଁ ଏହା ଦେଖି ସହିପାରିଲି ନାହିଁ । ଗୋରୁଙ୍କୁ ଖରାପ ଖାଦ୍ୟ ଦେଇ ସେମାନଙ୍କର ଅନ୍ୟାୟ ଭାବରେ ଅର୍ଥ ଉପାର୍ଜନର ବିରୋଧ କଲି । କଅଁଳ ଘାସ ନଦେଇ ପାରିଲେ ଗଛରୁ ପତ୍ରକାଟି ଗାଈଙ୍କୁ ଖାଇବାକୁ ଦେବାର ବ୍ୟବସ୍ଥା କଲି । ଉପନିର୍ଦ୍ଦେଶକ ଜଣକ ମୋ ବିରୁଦ୍ଧରେ ନିର୍ଦ୍ଦେଶକଙ୍କୁ କହିଲେ । ମାତ୍ର

ନିର୍ଦ୍ଦେଶକ ନିଜେ ଆସି ଏହାର ତଦାରଖ କରିବେ ବୋଲି ସମୟ ନେଲେ । ଗୋରୁଙ୍କୁ କଅଁଳ ଘାସ ଓ ଗଛପତ୍ର ଖାଇବାକୁ ଦିଆଗଲା । ତିନିମାସ ମଧ୍ୟରେ ଡାଏରୀଫାର୍ମର ରୂପ ବଦଳିଗଲା । ଗାଈମାନେ ଖୁବ୍ ହୃଷ୍ଟପୁଷ୍ଟ ହୋଇଗଲେ । ପ୍ରାଣୀ ଚିକିତ୍ସକମାନଙ୍କ ଦ୍ୱାରା ଗାଈମାନଙ୍କୁ ଔଷଧ ଇଞ୍ଜେକସନ୍ ଦିଆଇବା ମୁଁ ପୂରା ବନ୍ଦ କରିଦେଲି । କେବଳ ପୁଷ୍ଟିକର ଖାଦ୍ୟଦେଇ ସେମାନଙ୍କର ସ୍ୱାସ୍ଥ୍ୟର ଉନ୍ନତି ହେବା ଦେଖାଇ ଦେଲି ।

ଫାର୍ମ ନିର୍ମାଣ ହେବା ଦିନରୁ ଗୁହାଳ ଧୂଆପାଣି ଓ ଗୋମୂତ୍ର ଆଦି ଫାର୍ମ ବାହାରକୁ ନିଷ୍କାସିତ ହେଉଥିଲା । ମୁଁ ସେସବୁକୁ ଘାସ କିଆରୀରେ ମଡ଼ାଇବା ପାଇଁ ନିର୍ଦ୍ଦେଶ ଦେଲି । ତେଣୁ ଗୁହାଳୁ ନିର୍ଗତ ହେଉଥିବା ଗୋମୂତ୍ର ଓ ମଇଳା ପାଣିକୁ ଅଟକାଇ ରଖିବାକୁ ଏକ ପୋଖରୀ ଖୋଳାହେଲା । ସେହି ପୋଖରୀ ଚତୁପାର୍ଶ୍ୱରେ ଥିବା ପଡ଼ିଆ ଜମି ସବୁ ଟ୍ରାକ୍ଟରରେ ଚଷ କରି ତହିଁରେ ଘାସ ମୂଳି ଲଗାଇ ଦିଅଗଲା । ଗୋଟିଏ ଡିଜେଲ ପମ୍ପରେ ସେହି ପୋଖରୀରୁ ପାଣି ଉଠାଇ ସେସବୁ ଘାସ କିଆରୀରେ ମଡ଼ାଇ ଦିଆଗଲା । ପ୍ରାୟ ମାସକ ଭିତରେ ଏସବୁ ଘାସକିଆରୀରେ ୪/ ୫ ଫୁଟ ଉଚ୍ଚର କଅଁଳ ଛନଛନିଆଁ ଘାସ ଭରିଗଲା । ଗାଈ ଓ ଛେଳିମାନେ ପ୍ରଚୁର କଅଁଳ ଘାସ ଖାଇବାକୁ ପାଇଲେ ।

ମୁଁ ଚିପିଲିମାରେ ରହିବାର ଚାରିମାସ ପରେ ଆମ ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ଗୋକୁଳଚନ୍ଦ୍ର ପତି ସମ୍ବଲପୁର ପରିଦର୍ଶନରେ ଆସିବାକୁ ଜଣାଇ ଦେଲେ । ଆମ ଫାର୍ମ ଭିତରେ ଥିବା ଏକ ଅତିଥିଶାଳାକୁ ତାଙ୍କ ରହିବାଭଳି ପ୍ରସ୍ତୁତ କରାଇ ସେଇଠି ରହିବା ପାଇଁ ତାଙ୍କୁ ନିମନ୍ତ୍ରଣ କଲି । ତାଙ୍କ ସହିତ ମୋ ପୂର୍ବରୁ ଏଠାକାର ଯୁଗ୍ମନିର୍ଦ୍ଦେଶକ ପଦବୀରେ ଥିବା ଡକ୍ଟର ଲକ୍ଷ୍ମୀଧର ମହାନ୍ତି ଓ ତୃଣ ଉନ୍ନୟନ ଉପନିର୍ଦ୍ଦେଶକ ମଧ୍ୟ ଆସିଲେ । ସେମାନେ ପହଞ୍ଚିବା ପରେ ଫାର୍ମ ବୁଲି ଦେଖିଲେ । ଡାକ୍ତର ଲକ୍ଷ୍ମୀଧର ମହାନ୍ତି ମାତ୍ର ପାଞ୍ଚମାସତଳେ ଏ ଫାର୍ମର ଦାୟିତ୍ୱ ମୋତେ ହସ୍ତାନ୍ତର କରି ଅତିରିକ୍ତ ନିର୍ଦ୍ଦେଶକ ହୋଇଥିଲେ । ଏବେ ସେ ଫାର୍ମର ପରିବର୍ତ୍ତନ ଦେଖି ଖୁବ୍ ଖୁସି ହେଲେ । ଡାଏରୀ ଫାର୍ମରୁ ଯେଉଁ ଗାଈମାନଙ୍କୁ ସେ ଅନୁତ୍ପାଦକ ଗୋରୁ ଭାବେ ନିଲାମ କରିଦେବାକୁ ନିଷ୍ପତ୍ତି ନେଇଥିଲେ ସେମାନଙ୍କୁ ହୃଷ୍ଟପୁଷ୍ଟ ଓ ନିରୋଗ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ତାପରେ ସେମାନଙ୍କର ଗର୍ଭାଶୟ ପରୀକ୍ଷା କରି ପଚାଶଟି ଗାଈଙ୍କ ମଧ୍ୟରୁ ଚଉରାଳିଶ ଗାଈ ଗର୍ଭବତୀ ହୋଇଥିବା ଜାଣି ତାଜୁବ ହୋଇଗଲେ । ସେଇଠୁ ସିଧା ମୋ ପାଖକୁ ଆସି ସେ ନିର୍ବାକ ହୋଇ ବସି ପଡ଼ିଲେ । ପଚାରିଲି ଆପଣ ଫାର୍ମ ବୁଲି ଦେଖିଲେ ତ ? ସେ କହିଲେ, ହିଁ ଦେଖିଲି ଓ ମୋର ସନ୍ଦେହ ହେଉଛି ଯେ ଆପଣ କିଛି ଯାଦୁ ମନ୍ତ୍ର ଜାଣିଛନ୍ତି । ମୋତେ ଆଶ୍ଚର୍ଯ୍ୟ ଲାଗିଲା । ପଚାରିଲି, ମୋର କି ଯାଦୁ ବିଦ୍ୟା ଆପଣ ଦେଖିଲେ ?

ସେ କହିଲେ, ମୋର ଧାରଣା ଥିଲା ଯେ ମୁଁ ଓଡ଼ିଶାର ଜଣେ ଅଭିଜ୍ଞ ଗୋପ୍ରଜନନ ବିଜ୍ଞାନୀ । ମୁଁ ଯେଉଁ ଗାଈକୁ ଅନୁପଯୁକ୍ତ ଘୋଷଣା କରିବି ତାକୁ କେହି ଉତ୍ପାଦନକ୍ଷମ କରିପାରିବେ ନାହିଁ । ମାତ୍ର ଆଜି ମୋର ଗର୍ବ ଭାଙ୍ଗିଯାଇଛି । ମାତ୍ର ପାଞ୍ଚମାସ ଭିତରେ ଆପଣ ପଚାଶଟି ଅନୁତ୍ପାଦକ ଗାଈଙ୍କୁ ହୃଷ୍ଟପୃଷ୍ଟ କରି ଗର୍ଭବତୀ କରାଇ ପାରିଛନ୍ତି । କୌଣସି ଫାର୍ମ ଦାୟିତ୍ୱରେ କେବେ ନ ଥାଇ ଆପଣ ଯାହା ଏଠି କରିପାରିଛନ୍ତି; ସେପରି କାର୍ଯ୍ୟ ଆମ ବିଭାଗରେ କେହି କରିପାରିବେ ନାହିଁ ।

ପ୍ରାୟ ପୂର୍ବାହ୍ନ ୧୧ଟା ସୁଦ୍ଧା ନିର୍ଦ୍ଦେଶକ ଶ୍ରୀଗୋକୁଳ ଚନ୍ଦ୍ର ପତି ଏକ ସମୀକ୍ଷା କଲେ । ବତକ ଫାର୍ମ ଚାଲୁ କରିବା ଦେଖି ସେ ଖୁବ୍ ଆନନ୍ଦିତ ହୋଇଥିଲେ । ଗୁହାଳଧୁଆ ପାଣି ଦେଇ ଏତେ ସୁନ୍ଦର ଘାସ ହେବାର ଦେଖି ସେ ତୃଣ ଉନ୍ନୟନ ଉପନିର୍ଦ୍ଦେଶକଙ୍କୁ କହିଲେ ରାଜ୍ୟର ଅନ୍ୟ ସବୁ ଫାର୍ମରେ ଏପରି କରିବାକୁ ଆପଣ ଚେଷ୍ଟା କରନ୍ତୁ । ତୃଣ ଉନ୍ନୟନ ଉପନିର୍ଦ୍ଦେଶକଙ୍କ ମୁହଁ ଶୁଖିଗଲା । ମୁଁ ତାଙ୍କର ଅଠର ଏକର ବୁଢ଼ାଘାସ କିଆରୀକୁ ପରିତ୍ୟକ୍ତ ଘୋଷଣା କରିଥିଲି । ତେଣୁ ସେ ନିର୍ଦ୍ଦେଶକଙ୍କୁ ମୋ ବିରୁଦ୍ଧରେ ଲେଖି ମୋ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାକୁ ଅନୁରୋଧ କରିଥିଲେ । ମାତ୍ର ନିର୍ଦ୍ଦେଶକ ଏବେ ସବୁକଥା ବୁଝି ମୋ କାମକୁ ପ୍ରଶଂସା କଲେ । ପୂର୍ବରୁ ସୁ-ବାବୁଲ୍ ଚାଷ ବିଷୟରେ ଏହି ଉପନିର୍ଦ୍ଦେଶକ୍ ଯେପରି ଭୂଆଁ ବୁଲାଉଥିଲେ ସେ କଥା ମଧ୍ୟ ଗୋକୁଲ୍‌ବାବୁ ଜାଣିପାରିଲେ । ସେ କହିଲେ, ଗୁରୁବାବୁ ଯାହା କାମରେ କରି ଦେଖାଇ ଦେଇଛନ୍ତି ତହିଁରୁ ଆପଣମାନେ ଶିଖିବାର କଥା । ନିର୍ଦ୍ଦେଶକ ମୋତେ ପଚାରିଲେ ଏ ଯେଉଁ ସବୁ କାମ ହୋଇଛି ଏଥିପାଇଁ ବଜେଟରେ କୌଣସି ଅର୍ଥ ବରାଦ ନଥାଇ ଆପଣ କିପରି ଏତେ କାମ କଲେ ? ପୂର୍ବରୁ ଆଦୌ ନଥିବା ବତକଫାର୍ମକୁ ଆପଣ କିପରି ପୁନଃ ନିର୍ମିତ କରିଛନ୍ତି ? ମୁଁ ମୋର କର୍ମୀଦଳକୁ ଦେଖାଇ ଦେଲି । ପୂର୍ବରୁ ଏମାନେ ଅଫିସ୍‌ରେ ବସି ଦରମା ନେଉଥିଲେ ମାତ୍ର ଏବେ ସେମାନେ ରାଜମିସ୍ତ୍ରୀ, ବଢ଼େଇ, ଓ ମୂଲିଆ ହୋଇ ଫାର୍ମକୁ ସଜାଡ଼ିଛନ୍ତି । ଫାର୍ମ ଟ୍ରାକ୍ଟରରେ ନଈରୁ ବାଲି ଆସିଛି ଓ ଫାର୍ମ ମଝିରେ ଥିବା ପାହାଡ଼ ଭଙ୍ଗା ହୋଇ ସେହି ପଥରରେ କାନ୍ଥ ତିଆରି ହୋଇଛି । କେବଳ ମୁଁ ସିମେଣ୍ଟ କିଣି ଦେଇଛି । ଗୋଦାମ ଘରେ ପଡ଼ିରହିଥିବା ପୁରୁଣା ପଙ୍ଗୁ ଟ୍ରାକ୍ଟର ଓ ଟ୍ରକ୍ ମରାମତି ହୋଇ କାର୍ଯ୍ୟରେ ଲଗାଯାଇଛି ।

ନିର୍ଦ୍ଦେଶକ କଟକ ଫେରିଯିବାପରେ ଏକ ସପ୍ତାହ ଛାଡ଼ି ମୁଁ କଟକ ଆସିଲି । ସେ ମୋତେ ସାଙ୍ଗରେ ନେଇ ସଚିବାଳୟକୁ ଗଲେ । ସେତେବେଳେ ଶ୍ରୀ ଅର୍ଦ୍ଧେନ୍ଦୁ ଶେଖର ଷଡ଼ଙ୍ଗୀ ଆମ ବିଭାଗର ସଚିବ ଥାଆନ୍ତି । ତାଙ୍କ ସହିତ ମୋତେ ପରିଚିତ

କରାଇ ଗୋକୁଳ ବାବୁ କହିଲେ, ସାର୍! ପଶୁପାଳନ ବିଭାଗ ପରି ବୈଷୟିକ ବିଭାଗ ମାନଙ୍କରେ ଖୁବ୍ ଯୋଗ୍ୟ ଉଚ୍ଚଶିକ୍ଷିତ ଅଫିସରମାନେ ଅଛନ୍ତି । ତନ୍ମଧ୍ୟରୁ ଗୁରୁବାବୁ ଅନ୍ୟତମ । ତାଙ୍କ ପରି ଲୋକ ଏ ବିଭାଗରେ ଥାଉ ଥାଉ ଆମ ପରି ଭାରତୀୟ ପ୍ରଶାସନିକ ସେବା ଅଧିକାରୀମାନେ ସେଠି ନିର୍ଦ୍ଦେଶକ ରହିବା ଅନୁଚିତ । ସଚିବ ମହାଶୟ ତାଙ୍କକଥା ଶୁଣି ହସିଦେଲେ ।

ପଦୋନ୍ନତି ପାଇ ମୁଁ ଚିପିଲିମା ଚାଲି ଆସିବା ପରେ ନିର୍ଦ୍ଦେଶକ ମୋତେ କଟକ ବଦଳି କରାଇ ଆଣିବା ପାଇଁ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ । ଚିପିଲିମା ପରି ଦୂର ଦୂରାନ୍ତ ଅଞ୍ଚଳରେ ନ ରହି ନିର୍ଦ୍ଦେଶାଳୟରେ ରହି ଚିପିଲିମାର ପରିଚାଳନା ପାଇଁ ସେଠାକାର ଅଫିସର ମାନଙ୍କୁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ବିଭିନ୍ନ ଜିଲାର ପଶୁପାଳନ କାର୍ଯ୍ୟ ତଦାରଖ କରିବାକୁ ମୋତେ ନିର୍ଦ୍ଦେଶାଳୟରେ ରଖାଇବାର ଚିନ୍ତା ସେ କରିଥିଲେ । ସରକାରୀସ୍ତରରେ ତାଙ୍କ ପ୍ରସ୍ତାବ ଗୃହୀତ ହେବା ପୂର୍ବରୁ ସେ ଆମ ବିଭାଗରୁ ସଚିବାଳୟକୁ ବଦଳି ହୋଇ ଚାଲିଗଲେ । ତାଙ୍କ ସ୍ଥାନରେ ଏମ୍.ରାଜାମଣି ନିର୍ଦ୍ଦେଶକ ଦାୟିତ୍ୱ ନେଲେ । ଠିକ୍ ଏତିକିବେଳେ ମୋର ବଦଳି ଆଦେଶ ଆସିଗଲା । ଚିପିଲିମା ଛାଡ଼ି ମୁଁ କଟକ ଆସିଲି । ପୁଣି ନିଜ ଘରକୁ ଫେରିଆସିଲି ସତ; ହେଲେ ମୋ ମନରେ ସରାଗ ନଥିଲା । କାରଣ ସେହି ଦୁସ୍ଥ ପଶୁପାଳନ ଫାର୍ମକୁ ଭଲଭାବେ ସଜାଡ଼ି ଦେବାର ବହୁ ପୂର୍ବରୁ ମୋତେ ସେ ସ୍ଥାନ ଛାଡ଼ିବାକୁ ପଡ଼ିଲା ।

କଟକ ଆସି ମୁଁ ପଶୁପାଳନ ନିର୍ଦ୍ଦେଶାଳୟରେ ବରିଷ୍ଠ ଯୁଗ୍ମ ନିର୍ଦ୍ଦେଶକ ଭାବେ କାର୍ଯ୍ୟକଲି । ନୂଆ ନିର୍ଦ୍ଦେଶକ ଶ୍ରୀ ରାଜାମଣିଙ୍କ କାର୍ଯ୍ୟଧାରା ଅଧିକତର ଅମଲାତାନ୍ତ୍ରିକ ଥିଲା । ଏକ ବୈଷୟିକ ବିଭାଗର କାର୍ଯ୍ୟଧାରା ଜାଣିବାର ସ୍ପୃହା ତାଙ୍କର ନଥିଲା । ତାଛଡ଼ା କେତେକ ଖୋସାମତିଆ ଲୋକ ତାଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କଲେ । ମଝିରେ ମଝିରେ ମୁଁ ତାଙ୍କୁ ବିଭାଗୀୟ କାର୍ଯ୍ୟ ଧାରା ବିଷୟରେ ସଚେତନ କରାଇବା ଯୋଗୁ କେତେକ କୁଚକ୍ରୀ ଲୋକ ତାଙ୍କୁ ମୋ ବିରୁଦ୍ଧରେ ପ୍ରଭାବିତ କରିବାକୁ ଚେଷ୍ଟା କଲେ । ମୁଁ ମଧ୍ୟ ଏଭଳି ପରିସ୍ଥିତିରେ ନିର୍ଦ୍ଦେଶାଳୟରେ ରହିବାକୁ ଇଚ୍ଛା କଲି ନାହିଁ । ବରଂ ଉତ୍ତରାଞ୍ଚଳ ଦାୟିତ୍ୱରେ ସମ୍ବଲପୁରରେ ରହି କାର୍ଯ୍ୟ କରିବାକୁ ମୁଁ ଅଧିକ ପସନ୍ଦ କଲି । ମୁଁ ବିଭାଗୀୟ ସଚିବଙ୍କୁ କହି ଚାରିମାସ ପରେ ପୁଣି ଚିପିଲିମାକୁ ଫେରିଗଲି ।

# ବୈଷ୍ଣବ ମହାତ୍ମାଙ୍କ ପ୍ରଭାବ

ଶ୍ରୀ ଗୋପାଳଜୀଉ ଆମର ଇଷ୍ଟଦେବତା ହୋଇଥିଲେହେଁ ଜେଜେ ନାରାୟଣ ପ୍ରସାଦ ଥିଲେ ଜଣେ ଶକ୍ତିଉପାସକ । ସେ ଥିଲେ କଲେଜିଏଟ୍ ସ୍କୁଲର ପ୍ରଥମ ଓଡ଼ିଆ ପ୍ରଧାନଶିକ୍ଷକ । ତାପରେ ଇନ୍ସପେକ୍ଟର ଭାବେ ପାଟନା ବଦଳି ହୋଇ ବିହାର ଥିଲା ତାଙ୍କର କର୍ମଭୂମି । ସେ ପ୍ରତ୍ୟହ ଗାଧୋଇ ସାରି ମା ଦୁର୍ଗାଙ୍କ ଉପାସନା କରୁଥିଲେ । ସଂସ୍କୃତ ଓ ଇଂରାଜିରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଯୋଗୁଁ ସପ୍ତସତୀ ଚଣ୍ଡୀ ତାଙ୍କର ମୁଖସ୍ଥ ଥିଲା । ମୋ ବାପାଙ୍କର ସେପରି କିଛି ପୂଜାପଦ୍ଧତି ନଥିଲା । ଗାଧୋଇ ସାରି ଗୋପାଳଜୀଉଙ୍କ ଦର୍ଶନ କରିବାକୁ ସେ ଯାଉଥିଲେ । ତେବେ, ବୋଉ ଥିଲା ଶ୍ୟାମାନନ୍ଦୀ ସଂପ୍ରଦାୟର ଜଣେ ପ୍ରଖ୍ୟାତ ଗୃହୀ ବୈଷ୍ଣବଙ୍କର ଶିଷ୍ୟା। ବୋଉର ଗୁରୁଙ୍କୁ ମୁଁ ଡାକୁଥିଲି ଗୁରୁଜେଜେ । ତାଙ୍କ ବିଷୟରେ ପୂର୍ବରୁ କହିସାରିଛି । ପତି କାର୍ଯ୍ୟରେ ଗୁରୁଜେଜେଙ୍କ ଉପଦେଶ ଆମର ଧ୍ୟେୟ ଥିଲା । ଇଷ୍ଟଦେବତା ଗୋପାଳ ଓ ଗୁରୁଙ୍କ ପ୍ରତି ନିଷ୍ଠା ରଖିବାକୁ ବୋଉର ଥିଲା ନିର୍ଦ୍ଦେଶ ।

୧୯୭୭ ମସିହାରେ କଟକ ଆସି ମୁଁ ବାଦାମବାଡ଼ିରେ ଘରଭଡ଼ା ନେଇ ରହିଲି । ସେତେବେଳେ ବାଦାମବାଡ଼ିର ମଇଳାଖାତ ଅଞ୍ଚଳଟା ଅତ୍ୟନ୍ତ ଅବହେଳିତ ହୋଇରହିଥିଲା । ରାସ୍ତା, ପାନୀୟଜଳ ଓ ବିଦ୍ୟୁତ୍ ଯୋଗାଣ ଅଭାବରୁ ଘର ତିଆରି କରିବାକୁ ଲୋକେ ଏଆଡ଼େ ସେତେ ପ୍ରାଧାନ୍ୟ ଦେଉନଥିଲେ । ସେତିକିବେଳେ ମୁଁ ରହୁଥିବା ଭଡ଼ାଘର ପାଖାପାଖି ବହୁତ ଜାଗା କିଣିବାକୁ ମିଳୁଥିଲା । ମୁଁ ମଧ୍ୟ ବାରହଜାର ଟଙ୍କାରେ ଦୁଇଗୁଣ୍ଠ ଜାଗା କିଣି ନିଅଁ ତିଆରି କରିସାରି ମାତ୍ର ତିନିବଖରା ଛୋଟ ଘର କରି ୧୯୮୦ ମସିହାରେ ସେ ଘରେ ଆସି ରହିଲି । ସେହି ଘରପାଖ କାଠଯୋଡ଼ି ନଦୀବନ୍ଧରେ ଅଚ୍ଛବାଟ ପୂର୍ବକୁ ଗଲେ ଶ୍ୟାମସୁନ୍ଦର ମଠ । ବାବାଜୀ ଶ୍ରୀ ଚକ୍ରଧର ଦାସ ସେ ମଠ ସ୍ଥାପନ କରିଥିଲେ । ସେ ଥିଲେ ଶ୍ରୀ ରାଧାରମଣ ଦେବଙ୍କର ଶିଷ୍ୟ । ଆଠଗଡ଼ର ନନ୍ଦୁଆପଡ଼ାରୁ ଆସି ଶଙ୍କରପୁର ପରିଡ଼ା ସାହି ବାସିନ୍ଦାଙ୍କ ଶ୍ମଶାନର ପୂର୍ବପଟେ ଥିବା ଏକ ବରଗଛ ମୂଳେ ୧୯୩୦ ମସିହା ବେଳକୁ ବାବା ସାଧନ ଭଜନ ଆରମ୍ଭ କଲେ । ଖାନନଗରର କେତେକ ଧର୍ମପ୍ରାଣ ବ୍ୟକ୍ତି ବାବାଙ୍କୁ ନେଇ ତାଙ୍କ ଠାକୁରବାଡ଼ିରେ ରଖିଲେ । ମାତ୍ର ଏହାର ପାଞ୍ଚ ଦଶବର୍ଷ ଭିତରେ ପରିଡ଼ା ସାହି ଗ୍ରାମବାସୀଙ୍କ ସହଯୋଗରେ ସେମାନଙ୍କ ଶ୍ମଶାନକୁ ଲଗାଇ ବାବାଜୀ ମହାଶୟ ଶ୍ୟାମସୁନ୍ଦରଙ୍କ ମନ୍ଦିର ସ୍ଥାପନକଲେ ।

୧୯୭୭ ମସିହାରେ ଏଠି ମୁଁ ରହିବାପରେ ଇଷ୍ଟଦେବତା ଗୋପାଳଙ୍କ ଅନ୍ୟତମ ବିଗ୍ରହ ଶ୍ୟାମସୁନ୍ଦରଙ୍କ ଦର୍ଶନଲାଗି ସେହି ମନ୍ଦିରକୁ ଯାଉଥିଲି । ବାବାଙ୍କୁ ପ୍ରଣାମ

କରିସାରି ତାଙ୍କଠାରୁ ଦୁଇ ଚରିପଦ ବୈଷ୍ଣବୀୟ ନୀତିଶାସ୍ତ୍ର ଶୁଣିବାକୁ ଭଲ ଲାଗୁଥିଲା । ପ୍ରତି ମାସର ଦ୍ୱାଦଶୀତିଥିରେ ସପରିବାର ଯାଇ ମଠରେ ପ୍ରସାଦ ପାଇବାକୁ ବାବା ନିମନ୍ତ୍ରଣ କରୁଥିଲେ । ଆମସହିତ ଶଙ୍କରପୁର, ଖାନନଗର, କମଳପୁର ଓ ପରିଡ଼ାସାହିର ବହୁ ପରିବାର ସେଦିନ ମଠକୁ ଆସୁଥିଲେ । ଏବେମଧ୍ୟ ପ୍ରତି ଦ୍ୱାଦଶୀରେ ଶ୍ୟାମସୁନ୍ଦର ମଠରେ ଶତାଧିକ ବ୍ୟକ୍ତିଙ୍କର ସମାଗମ ହୁଏ । ହେଲେ ଚକ୍ରଧର ବାବାଙ୍କର ଆକର୍ଷଣ ସେତେବେଳେ ଏ ଅଞ୍ଚଳର ବହୁ ଲୋକଙ୍କୁ ଏହି ମଠକୁ ଟାଣୁଥିଲା । ବାବା କବିରାଜି ଜାଣିଥିଲେ । ଜଣ୍ଡିସ୍ ବା ହଳଦିଆକାମଳ ରୋଗ ହେଲେ ବାବା ସୋରିଷତେଲ ମନ୍ତ୍ରପୂତ କରି ଲଗାଇବାକୁ ଦେଉଥିଲେ ଓ ଖାଇବାକୁ ବଟିକା ଦେଇ ମନ୍ତ୍ରଫୁଙ୍କି ଝାଡ଼ି ଦେଉଥିଲେ । ଛୋଟ ଛୋଟ ପିଲାଙ୍କୁ ରୋଗମୁକ୍ତ କରିବାକୁ ମଧ୍ୟ ତାଙ୍କର ଝଡ଼ାଫୁଙ୍କା ଥିଲା ଅବ୍ୟର୍ଥ ପ୍ରତିକାର । ତେଣୁ ଏ ଅଞ୍ଚଳର ଲୋକେ ତାଙ୍କ୍ ବହୁତ ମାନୁଥିଲେ ।

ଠାକୁରସେବା ସାଙ୍ଗକୁ ଗୋସେବା କରିବା ଥିଲା ବାବାଙ୍କର ନିତ୍ୟ ନୈମିତିକ କାର୍ଯ୍ୟ । ଭଗବାନ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା ଥିଲା ଗୋପାଳନ ଲୀଳା । ଗୋପବାଳକମାନଙ୍କ ସହିତ ମିଶି ସେ ବାଛୁରୀମାନଙ୍କୁ ଚରାଇବାକୁ ଯାଉଥିଲେ । ଗୋପନଗରୀରେ ଦୁଧ, ଦହି, ଘୃତ ଓ ଦୁଗ୍ଧଜାତ ମିଷ୍ଟାନ୍ନ ପ୍ରଚୁର ମିଳୁଥିଲା । ବୈଷ୍ଣବମାନେ ତାଙ୍କରି ଆଦର୍ଶ ଅନୁସରଣ କରି ଗୋସେବାକୁ ପ୍ରାଧାନ୍ୟ ଦେବା ଏକ ଧାର୍ମିକ ନୀତି । ମଠରେ ଥିବା ଗାଈ ବାଛୁରୀଙ୍କୁ ଗାଧୋଇଦେବା, ପୋଛିବା, ନଡ଼ା ଖୁଆଇବା ଆଦି କାର୍ଯ୍ୟ କରିବାକୁ ସେ ଭଲ ପାଉଥିଲେ । ପଶୁପାଳନ ବିଭାଗର ମୁଁ ଜଣେ ଉପନିର୍ଦ୍ଦେଶକ  ଜାଣି ଗାଈ ବାଛୁରୀଙ୍କ ସ୍ୱାସ୍ଥ୍ୟର ଯତ୍ନନେବାକୁ ସେ ମୋର ସାହାଯ୍ୟ ଲୋଡୁଥିଲେ । ମୋ କହିବା ଅନୁସାରେ ବକ୍ସିବଜାର ଓ ଖପୁରିଆରେ ଥିବା ଆମ ପଶୁଚିକିତ୍ସାଳୟର କର୍ମଚାରୀମାନେ ମଠକୁ ଆସି ମାଗଣାରେ ଗୋ ଚିକିତ୍ସା କରୁଥିଲେ ।

ବାବାଙ୍କ ଦେହମୁଣ୍ଡ ଖରାପ ହେଲେ ମୁଁ ତାଙ୍କ ଖବର ବୁଝୁଥିଲି । ତେଣୁ ମୋ ପ୍ରତି ତାଙ୍କର ଅଶେଷ ସ୍ନେହ ଥିଲା । ତାଙ୍କୁ ଦେଖିଲେ ଆମ ଗାଆଁର ଗୁରୁଜେଜେଙ୍କ କଥା ମନେ ପଡୁଥିଲା । ଗୁରୁଜେଜେଙ୍କୁ ଆମେ ଠାକୁର ପରି ମାନୁଥିଲୁ । ସେ ମଧ୍ୟ ଜଣେ ଖୁବ୍ ବିଜ୍ଞ କବିରାଜ ଥିଲେ । ରୋଗ ବୈରାଗ ହେଲେ ତାଙ୍କରି ଔଷଧ ଉପରେ ଆମେ ସମସ୍ତ ଗ୍ରାମବାସୀ ନିର୍ଭର କରୁଥିଲୁ । ତେଣୁ ମୋ ପରିବାର ପାଇଁ ଚକ୍ରଧର ବାବା ଆମ ଗୁରୁଜେଜେଙ୍କ ଶୁନ୍ୟସ୍ଥାନ ପୂରଣ କରିଥିଲେ । ୧୯୮୦ ମସିହା ବେଳକୁ କଟକରେ ଟେଲିଫୋନର ପ୍ରସାର ହୋଇନଥିଲା । ଏ ଅଞ୍ଚଳରେ ଏକମାତ୍ର ମୋ

ଘରେ ଫୋନ୍ ଥିବାରୁ ଅନେକ ଲୋକ ମୋର ସାହାଯ୍ୟ ନେଉଥିଲେ । ତେଣୁ ମଠକୁ ଯେଉଁମାନେ ଆସୁଥିଲେ,ସେମାନଙ୍କର ଟେଲିଫୋନ ସେବାର ଆବଶ୍ୟକତା ଦୃଷ୍ଟିରୁ ସେମାନଙ୍କୁ ବାବା ମୋ ଘରକୁ ପଠାଇଦେଉଥିଲେ ।

ଯୁଗ୍ମ ନିର୍ଦ୍ଦେଶକ ଭାବେ ମୁଁ ଚିପିଲିମା ବଦଳି ହୋଇ ଚାଲିଯିବା ପରେ ବାବାଙ୍କ ସହିତ ମୋର ଆଉ ସେପରି ସମ୍ପର୍କ ରହିଲାନାହିଁ । କେତେବେଳେ କେମିତି କଟକ ଆସିଲେ ଅଳ୍ପସମୟ ପାଇଁ ମୁଁ ମଠକୁ ଯାଏ । ଏହିପରି ବର୍ଷେ ବିତିଯିବା ପରେ ମୋର ପୁଣି କଟକ ବଦଳି ହେଲା । ଏଠି ଆସି ପହଞ୍ଚିବା ପରେ ଅଫିସ କାମରେ ବ୍ୟସ୍ତରହି ପ୍ରାୟ ମାସେ ପର୍ଯ୍ୟନ୍ତ ବାବାଙ୍କ ପାଖକୁ ଯାଇ ପାରିନଥିଲି । ସେଦିନ ଅଚାନକ ଭାବେ ମଠରୁ ଜଣେ ସନ୍ନ୍ୟାସୀ ଆସି ମୋତେ ଖୋଜିଲେ । ମୁଁ ଅଫିସ ଯାଇଥିଲି । ତା ପରଦିନ ସକାଳୁ ବାଦାମବାଡ଼ି ବିଦ୍ୟୁତ୍ ସରବରାହ କେନ୍ଦ୍ର ଦାୟିତ୍ୱରେ ଥିବା ଇଂଜିନିୟର ବାମନଚରଣ ସାହୁ ମୋତେ ଆସି କହିଲେ, ଆପଣଙ୍କୁ ବାବା ଡାକୁଛନ୍ତି ।

ଏତେଦିନ ହେଲା ମୁଁ ଚିପିଲିମା ଛାଡ଼ି କଟକ ଆସିଲିଣି, ମାତ୍ର ବାବାଙ୍କ ପାଖକୁ ଯାଇନାହିଁ । ତେବେ ସେ କେମିତି ଜାଣିଲେ ମୁଁ କଟକରେ ଅଛି ବୋଲି ? ଏଇକଥା ଭାବି ମୁଁ ତତ୍କ୍ଷଣାତ୍ ମଠକୁ ଗଲି । ବାବା ଆରାମଚେୟାର୍‌ରେ ମାଣ୍ଡିତକିଆକୁ ଆଉଜି ତଳକୁ ଗୋଡ଼ ଓହଳାଇ ବସିଥିଲେ । ତାଙ୍କର ଜଣେ ଶିଷ୍ୟ ବସି ଚୈତନ୍ୟ ଚରିତାମୃତ ପଢୁଥାଆନ୍ତି । ମୁଁ ଯାଇ ବାବାଙ୍କୁ ପ୍ରଣାମ କଲି । ବାବା ତଳକୁ ମୁହଁ କରି ବସିଥାଆନ୍ତି । ସେ କୋହଭରା କଣ୍ଠରେ ମୋତେ କହିଲେ "ହଇରେ ଗୁରୁବାବୁ ମୋ କଥା ତୋର ଟିକେ ହେଲେ ମନେ ପଡୁନାହିଁ ?" ଏତିକି କହିବା ଭିତରେ ତାଙ୍କ ଲୁହ ଛଳଛଳ ଆଖିରୁ ଦୁଇବୁନ୍ଦା ଅଶ୍ରୁ ମୋ କାନ୍ଧ ଉପରେ ଝରି ପଡ଼ିଲା । ମୋ ପ୍ରତି ତାଙ୍କର ଏତେଶ୍ରଦ୍ଧା ଅଛି ବୋଲି କେବେହେଲେ ମୋ ମନରେ ନଥିଲା । ମୋତେ ନଦେଖି ସେ ଏତେ ବ୍ୟାକୁଳ ହୋଇପାରନ୍ତି ସେ ଭଳି ଭାବନା କେବେ ମୁଁ କରିନଥିଲି । ପିତାମାତା ଯେପରି ସନ୍ତାନ ପ୍ରତି ବାତ୍ସଲ୍ୟ ଭାବରେ ଭାବିତ ହୁଅନ୍ତି ବାବାଙ୍କ ମନରେ ମୋ ଲାଗି ସେପରି ଭାବନା ଯେ ସ୍ଥାନ ପାଇଛି ତାହା ମୋର କୋଟି ଜନ୍ମର ପୁଣ୍ୟଫଳ ପରି ମନେହେଲା । ବାବାଙ୍କ ଆଖିରେ ଅଶ୍ରୁ ଦେଖି ମୋର ମଧ୍ୟ ଧୈର୍ଯ୍ୟଚ୍ୟୁତି ଘଟିଲା । ମୁଁ ତାଙ୍କର ପିଠି ପଟକୁ ବୁଲିପଡ଼ି ଆଉଁସି ଦେଉ ଦେଉ ମୋ ଆଖିରୁ ଲୁହ ପୋଛୁଥିଲି ।

ବାବା ଆଉ କିଛି ନ କହି ଚୁପ୍‌ଚାପ୍ ବସିଥାଆନ୍ତି । ମଠର ସନ୍ନ୍ୟାସୀମାନେ ଆସି ଏ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ । ଜଣେ ଶତାୟୁସନ୍ଥ ତାଙ୍କ ଶତାଧିକ ଶିଷ୍ୟଙ୍କର ପ୍ରେମ, ଭକ୍ତି ଓ ସେବା ସୁଶ୍ରୁଷା ପାଇ ଅହୋରାତ୍ର ସେମାନଙ୍କ ମେଳରେ ସମୟ ବିତାଇବା ଭିତରେ ମୋ ପରି ଜଣେ ଅକିଞ୍ଚନର ସାନ୍ନିଧ ଖୋଜୁଛନ୍ତି ଜାଣି ମୁଁ ନିଜକୁ

ଧନ୍ୟ ମନେକଲି । ତାଙ୍କର ପ୍ରିୟଶିଷ୍ୟ ବାବାଜୀ ଶ୍ରୀ ରାଧାଚରଣ ଦାସ ମୋତେ କହିଲେ, ବାବୁ! ଆପଣଙ୍କ ପ୍ରତି ଗୁରୁଦେବଙ୍କର ଏତେ ଶ୍ରଦ୍ଧା ଅଛିବୋଲି ଜଣାନଥିଲା । ଅନ୍ୟତମ ଶିଷ୍ୟ କଟକରେ ନାମଜାଦା ଶିଳ୍ପପତି ଶ୍ରୀ କିଷନଲାଲ ଅଗ୍ରୱାଲ୍ କହିଲେ, ଆପଣ ଅତ୍ୟନ୍ତ ଭାଗ୍ୟବାନ୍ । ଗୁରୁଦେବଙ୍କର ବିଗତ ଦେଢ଼ମାସ ଧରି ଶରୀର ଅସୁସ୍ଥ ଅଛି । ପରୀକ୍ଷା ନିରୀକ୍ଷା ପରେ ଜଣାଯାଉଛି ଯେ, ତାଙ୍କୁ କ୍ୟାନ୍‌ସର ହୋଇଛି । ତେବେ ସେ କିଛି ଜାଣି ପାରୁନାହାନ୍ତି । ସୀମିତ ଆହାର କରୁଛନ୍ତି ଓ ଦିନରାତି ଚବିଶ ଘଣ୍ଟା କେବଳ ଭାଗବତ, ଗୀତା, ଚୈତନ୍ୟଚରିତାମୃତ, ଗୋପାଳସହସ୍ରନାମ, ରାଧା ସହସ୍ରନାମ ଆଦି ଶୁଣିବା ପାଇଁ ଉଦ୍‌ଗ୍ରୀବ ହେଉଛନ୍ତି । ରାତିରେ ନିଦ ଭାଙ୍ଗିଗଲେ ଏପରି ଗ୍ରନ୍ଥ ପାଠ ପ୍ରତି କାନେଇ ରହୁଛନ୍ତି । ତେଣୁ ତାଙ୍କ ପାଖରେ ରାତିସାରା ଓ ଦିନତମାମ ପାଳି କରି ଶିଷ୍ୟମାନେ ଗ୍ରନ୍ଥ ପାଠ କରୁଛନ୍ତି । ତା ମଝିରେ ମଧ୍ୟ ସେ ଆପଣଙ୍କୁ ଖୋଜୁଛନ୍ତି ଏହା ଆପଣଙ୍କର ଭାଗ୍ୟ ।

ଏକଥା ଶୁଣି ମୋର ଧୈର୍ଯ୍ୟଚ୍ୟୁତି ଘଟିଲା । ଏତେ ଲୋକଙ୍କ ସାମନାରେ ମୋ ଆଖିରୁ ଲୁହ ବୋହିବା ଅତ୍ୟନ୍ତ ଲଜ୍ୟାଜନକ ଭାବି ମଠ ପଛପଟକୁ ଯାଇ ମୁଁ କାନ୍ଦି ଉଠିଲି । ମୋ ବାପା ବୋଉ ଓ ଗୁରୁଜେଜେଙ୍କ କଥା ମନେ ପଡ଼ିଗଲା । ସେମାନଙ୍କର ଆଶୀର୍ବାଦ ଫଳରେ ମୁଁ ଆଜି ଏପରି ଜଣେ ବୈଷ୍ଣବ ମହାତ୍ମାଙ୍କର କୃପା ପାଇଛି । ଶ୍ରୀ ଚକ୍ରଧର ବାବା ଇହଲୀଳା ସମ୍ବରଣ କରିବେ । ଏଇ କଥା ଭାବି ମନଟା ଦୁଃଖରେ ଭାଙ୍ଗି ପଡ଼ିଲା । ବାବାଙ୍କୁ କିଛି ପଚାରିବାକୁ ମୋର ସାହସ ନଥିଲା । ତାଙ୍କର ଶିଷ୍ୟମାନେ କହିଲେ, ବାବା ସବୁକଥା ଜାଣନ୍ତି, ସେ କହନ୍ତି; ଏ ଶରୀର ଚିରସ୍ଥାୟୀ ନୁହେଁ । ଏହାର ଅବସାନ ଲାଗି ରୋଗ, ବ୍ୟାଧି ବା ଶରୀରକ୍ଳେଶ ଏକ ମାଧ୍ୟମ । ଆମ ଦେହରେ ଯାହା ହୋଇଛି ବା ହେଉଛି, ସବୁକିଛି ଆମର ନିଜ ଅର୍ଜିତଫଳ । ତେଣୁ ସେଥିଲାଗି କେହି ବିବ୍ରତ ହେବା ଉଚିତ ନୁହେଁ । ତାଙ୍କର ଶିଷ୍ୟମାନେ ପ୍ରଶ୍ନ କରନ୍ତି ବାବା ! କିଛି କଷ୍ଟହେଉଛି କି ? ବାବା କହନ୍ତି; ନାଇଁ ମୋର କୌଣସି କଷ୍ଟ ନାହିଁ । ମୁଁ ବେଶ୍ ଆନନ୍ଦରେ ଅଛି । ପ୍ରଭୁ ଶ୍ୟାମସୁନ୍ଦର ଚିର ଆନନ୍ଦମୟ । ତାଙ୍କରି କୃପାରୁ ମୁଁ ଆନନ୍ଦ ଲାଭ କରୁଛି ।

ସେଇ ଦିନଠାରୁ ପ୍ରତିଦିନ ମୁଁ ତାଙ୍କ ଦର୍ଶନକୁ ଯାଉଥିଲି । ମାତ୍ର ସେ ଭାଗ୍ୟ ଆଉ ବେଶୀ ଦିନ ରହିଲା ନାହିଁ । ୧୯୯୨ ମସିହା ମାର୍ଗଶିର ମାସ ଶୁକ୍ଳପକ୍ଷ ନବମୀ ତିଥିରେ ବାବା ସ୍ନାନସାରି ଚିତା ଗ୍ରହଣ କରିବା ପରେ ମାଳା କରୁକରୁ ଦେହତ୍ୟାଗ କଲେ । ମୁଁ ଅଫିସରେ ଥାଇ ଏ ଖବର ପାଇଲି । ସେଦିନ ବାବାଙ୍କ ମର ଶରୀରକୁ ଶ୍ୟାମସୁନ୍ଦର ମଠ ହତାମଧ୍ୟରେ ସମାଧିସ୍ଥ କରାଗଲା ।

ସେହି ସ୍ଥାନରେ ଏକ ସମାଧି ମନ୍ଦିର ନିର୍ମିତ ହୋଇଛି । ପ୍ରତିବର୍ଷ ତାଙ୍କର ଅପ୍ରକଟ ତିଥିରେ ମହୋତ୍ସବ ହୁଏ । ନଅଦିନ ବ୍ୟାପୀ ଭାଗବତ ପାରାୟଣ, ଚବିଶପ୍ରହର ନାମଯଜ୍ଞ, ବୈଷ୍ଣବସେବା ଓ ଭକ୍ତମାନଙ୍କର ମେଳା ଲାଗିରହେ ।

ଆଠଗଡ଼ର ନଡୁଆପଡ଼ା ଓ କଟକର ଖାନନଗର ଠାରେ ଦୁଇଟି ମଠ ପ୍ରତିଷ୍ଠା କରିଥିଲେ ବାବା । ମାତ୍ର ତାଙ୍କର ଶିଷ୍ୟମାନେ ବୃନ୍ଦାବନର ରାଧାକୁଣ୍ଡ ଓ ପୁରୀର ଭୂତକୋଠି ନିକଟରେ ଦୁଇଟି ଆଶ୍ରମ ପ୍ରତିଷ୍ଠା କରିଛନ୍ତି । ୧୯୯୨ ମସିହାରେ ବାବାଙ୍କ ଅସୁସ୍ଥ ଅବସ୍ଥାରେ ବୃନ୍ଦାବନର ରାଧାକୁଣ୍ଡ ଠାରେ ଜାଗାଟିଏ ମିଳିବା କଥା ତାଙ୍କୁ ଜଣାଇଦେଇ ସେଠାରେ ଏକ ଆଶ୍ରମ କରିବାକୁ ତାଙ୍କ ଅନୁମତି ପ୍ରାର୍ଥନା କଲାବେଳେ ସେ କହିଲେ; "ପାରିବ ତ କର" । ହେଲେ ସବୁକିଛି ବୈଷ୍ଣବସେବା ଓ ସାଧନଭଜନ ପାଇଁ କରି ପାରିଲେ ଭଲ ।" ବାବାଙ୍କ ଅପ୍ରକଟ ପରେ ରାଧାକୁଣ୍ଡ ଠାରେ ରାଧାରମଣ ଭଜନାଶ୍ରମ ଗଠିତ ହେଲା । ଦିଲ୍ଲୀ ଓ ସେଠାକାର ଭକ୍ତମାନଙ୍କ ଦାନରେ ସେଠାରେ ଏବେ ଚାଳିଶ କୋଠରୀ ବିଶିଷ୍ଟ ନିତାଇ ଗୌରାଙ୍ଗ ମନ୍ଦିର ହୋଇ ସେଠାରେ ଅହୋରାତ୍ର ନାମଯଜ୍ଞ ଚାଲୁରହିଛି । ପ୍ରାୟ ତିରିଶି ଜଣ ସନ୍ନ୍ୟାସୀ ସେଠାରେ ନାମଯଜ୍ଞ ଚଳାଇ ରଖିଛନ୍ତି । ଯେଉଁ ବୈଷ୍ଣବମାନେ ରାଧାକୁଣ୍ଡ, ଶ୍ୟାମକୁଣ୍ଡ ଓ ଗିରିଗୋବର୍ଦ୍ଧନ ପରିକ୍ରମାରେ ଯାଆନ୍ତି ସେମାନେ ରାଧାରମଣ ଭଜନାଶ୍ରମରେ ପ୍ରସାଦ ପାଇବାର ସୁଖ ଲାଭକରନ୍ତି । ଓଡ଼ିଶାରୁ ଯାଉଥିବା ଭକ୍ତମାନଙ୍କୁ ସେହି ଆଶ୍ରମରେ ରହିବାର ସୁଯୋଗ ମିଳେ । ସେଠି ରହିଲେ ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡ ପରିକ୍ରମା ଅତି ସହଜ ହୁଏ । ଏହି ଆଶ୍ରମର ମାତ୍ର ଅଧାକିଲୋମିଟର ଦୂରରେ ଗିରିଗୋବର୍ଦ୍ଧନ ପର୍ବତ ଅବସ୍ଥିତ । ତେଣୁ ଗୋବର୍ଦ୍ଧନ ପରିକ୍ରମା ମଧ୍ୟ ଏଇଠୁ ସୁବିଧାଜନକ ହୁଏ । ସେହି ଆଶ୍ରମର ଉତ୍ସବ ମହୋତ୍ସବ ସମୟରେ ମୋତେ ନିମନ୍ତ୍ରଣ ମିଳେ ଓ ସେଠାରେ ପହଞ୍ଚି ମୋତେ ବୃନ୍ଦାବନର ବିଭିନ୍ନ କୃଷ୍ଣମନ୍ଦିର ଓ କୃଷ୍ଣ ଲୀଳାସ୍ଥଳୀ ପରିଦର୍ଶନ ସୌଭାଗ୍ୟ ମିଳେ । ସେଥିଲାଗି ବାବାଜୀ ଶ୍ରୀ ଚକ୍ରଧର ଦାସ ମହାରଜାଙ୍କର କୃପା ପ୍ରାପ୍ତିର ପ୍ରଭାବ ହିଁ ଇଷ୍ଟଦେବତା ଶ୍ରୀ ଗୋପାଳଜୀଉଙ୍କ ନିତ୍ୟ ଲୀଳାସ୍ଥଳ ଦର୍ଶନର କାରଣ ବୋଲି ମନରେ ଆସେ ।

ରାଧାକୁଣ୍ଡସ୍ଥ ରାଧାରମଣ ଭଜନାଶ୍ରମ ପାଖରୁ ନନ୍ଦଗ୍ରାମ ଓ ରାଧାରାଣୀଙ୍କ ଜନ୍ମସ୍ଥାନ ବର୍ଷାଣାଧାମ ଅଳ୍ପ ଦୂରରେ । ତେଣୁ ବୈଷ୍ଣବୀୟ ତୀର୍ଥ ଦର୍ଶନ ପାଇଁ ସେହି ଆଶ୍ରମଟି ଅତ୍ୟନ୍ତ ଉପଯୁକ୍ତ ସ୍ଥାନ ।

କର୍ମବହୁଳ ଜୀବନଯାପନ କଲାବେଳେ ପାର୍ଥିବ ଜଗତର ପ୍ରଭାବ ମଣିଷକୁ ବ୍ୟତିବ୍ୟସ୍ତ କରିପକାଏ । ସେଇ ବ୍ୟସ୍ତତା ଭିତରେ ଆଧ୍ୟାତ୍ମିକ ଚିନ୍ତା ଓ ସାଧୁସଙ୍ଗ ପାଇଲେ ମନରେ ଶାନ୍ତି ଆସେ ।

ଚକ୍ରଧର ବାବାଙ୍କର ଦେହାବସାନ ପରେ ମାସେ ଛାଡ଼ି ତାଙ୍କର ନଅଦିନବ୍ୟାପୀ ମହୋତ୍ସବହେଲା । ଏହାର ପ୍ରାୟ ଏକମାସ ପରେ ପୁଣି ମୋର ଚିପିଲିମା ବଦଳି ହୋଇଗଲା । ମନେ ହେଲା ସତେ ଯେମିତି ବାବାଙ୍କର ଶେଷ ସମୟରେ ମୁଁ ଯେପରି ତାଙ୍କର ଦର୍ଶନ ପାଇପାରିବି; ସେଥିଲାଗି ମୋର ଅଜାଣତରେ ଚିପିଲିମାରୁ ମୋର କଟକ ବଦଳି ହୋଇଥିଲା । ବାବାଙ୍କର ଅପ୍ରକଟ ପରେ ତାଙ୍କର ମହୋତ୍ସବ ସାରି ପୁଣି ମୁଁ ଚିପିଲିମା ଯିବାର ସରକାରୀ ନିର୍ଦ୍ଦେଶ ପାଇଲି । ତେଣୁ ଏସବୁ ପଛରେ ଏହି ବୈଷ୍ଣବ ମହାତ୍ମାଙ୍କର ପୂର୍ଣ୍ଣ ପ୍ରଭାବ ଥିଲାଭଳି ମୋର ମନେ ହେଉଥିଲା । ଭାବିଲି, ବାବାଙ୍କର ଦେହାବସାନ ପୂର୍ବରୁ ମୋ ପ୍ରତି ତାଙ୍କର ଶ୍ରଦ୍ଧା ପ୍ରଭାବରୁ ଚିପିଲିମାରୁ ମୋର ବଦଳି ହୋଇଥିଲା କଟକ । ତାଙ୍କର ସବୁକାମ ସରିବା ପରେ ମୁଁ ପୁଣି ଚିପିଲିମା ଫେରି ଆସିଲି । ଇତି ମଧ୍ୟରେ ଚାରିମାସ ବିତିଯାଇଥିଲା ।

ମୁଁ କଟକରେ ଥିବା ସମୟତକ ଏହି ଫାର୍ମ ବୁଝିବା ପାଇଁ ଜଣେ ଉପନିର୍ଦ୍ଦେଶକଙ୍କୁ ଦାୟିତ୍ୱ ଦେଇ ଆସିଥିଲି। ଫେରିଆସି ଦେଖିଲି ଯେ, ସେ ମହାଶୟ ମୋର ଅନୁପସ୍ଥିତିରେ ଫାର୍ମ ପରିଚାଳନାରେ ବହୁତ ଅସୁବିଧା କରିଛନ୍ତି । ଫଳରେ ଚାରିମାସ ଭିତରେ ୧୫ଟି ଜର୍ସି ବାଛୁରୀ ମରିଗଲେ ଓ ଦୁଗ୍ଧ ଉତ୍ପାଦନ କମିଗଲା । ଜର୍ସିଗୋରୁ ମାନଙ୍କର ସ୍ୱାସ୍ଥ୍ୟରେ ପ୍ରବଳ କ୍ଷତି ହୋଇଥିଲା । ମୁଁ ଫେରିଯାଇ ସେ ସବୁର ସମୁଚିତ ପ୍ରତିକାର କରି ଯଥାଶୀଘ୍ର ତହିଁରେ ସୁଧାର ଆଣିପାରିଲି ।

ମୋ ପୂର୍ବରୁ ଏଠାରେ ଥିବା ଯୁଗ୍ମନିର୍ଦ୍ଦେଶକ ଡାକ୍ତର ଲକ୍ଷ୍ମୀଧର ମହାନ୍ତି ସାଇବାବାଙ୍କ ଶିଷ୍ୟ ଥିଲେ । ତେଣୁ ପ୍ରତି ସପ୍ତାହରେ ସେଠାରେ ସାଇଭଜନ ହେଉଥିଲା । ଦିନେ ଫାର୍ମ କର୍ମଚାରୀ ମାନେ ଏକ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରିବାର ନିଷ୍ପତ୍ତି ନେଲେ । ଜର୍ସି ଫାର୍ମ ପରିସର ମଧ୍ୟରେ ଏକ ପରିତ୍ୟକ୍ତ ଘାସକଟା ଘର ଥିଲା । ଏହାର ଲମ୍ବ ୬୦ ଫୁଟ ଓ ପ୍ରସ୍ଥ ପ୍ରାୟ ୩୦ ଫୁଟ ଥିବାରୁ ପୁରୀରୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ଅଣାଇ ସେହି ଘରର ଗୋଟିଏ ପାର୍ଶ୍ୱରେ ସିଂହାସନ ତିଆରି କରାଇ ପ୍ରତିଷ୍ଠା କଲେ । ସେଥିଲାଗି ଜଣେ ପୂଜକ ମଧ୍ୟ ମୂତୟନ କରାଯାଇଥିଲା । ମାତ୍ର ଠାକୁରଙ୍କ ପାଖରେ କେବଳ ଫଳ ଓ ଶୁଖିଲା ଭୋଗ ଅର୍ପଣ କରାଯାଉଥିଲା । ଜଗନ୍ନାଥ ମହାପ୍ରଭୁ ଷାଠିଏ ପଉଟି ଅନ୍ନଭୋଗର ଠାକୁର । ସେଥିରେ ପୁଣି ପ୍ରତିଦିନ ଛପନ ଭୋଗର ବ୍ୟବସ୍ଥା । ଏଠାରେ ଅନ୍ନଭୋଗର ବ୍ୟବସ୍ଥା ନଥିବାରୁ ବହୁତ ଖରାପ ଲାଗିଲା । ମୁଁ ସେଠାରେ ଅନ୍ନଭୋଗର ବ୍ୟବସ୍ଥା କରାଇଲି । ପ୍ରତି ମାସର ସଂକ୍ରାନ୍ତି ଦିନ ସନ୍ଧ୍ୟାରେ ମନ୍ଦିରରେ ଏକ ଭୋଜିର ଆୟୋଜନ କରାଯାଉଥିଲା । ପ୍ରଥମ ଭୋଜିଟି ମୁଁ ଦେଲି । ଫାର୍ମର ସମସ୍ତ କର୍ମଚାରୀଙ୍କୁ ଆମନ୍ତ୍ରିତ କରି ଭୋଜି ଦେବା ପରେ ସେଠାରେ ଥିବା ଅଫିସର ପାହ୍ୟାରେ ଲୋକମାନେ ଅନ୍ୟସବୁ ସଂକ୍ରାନ୍ତିରେ

ଜଣକ ପରେ ଜଣେ ଭୋଜିର ଆୟୋଜନ କଲେ । ଏହା ଦେଖି ତୃତୀୟ ଶ୍ରେଣୀ କର୍ମଚାରୀମାନେ ମଧ୍ୟ ପ୍ରତି ପୂର୍ଣ୍ଣିମାରେ ଭୋଜିର ବ୍ୟବସ୍ଥା କଲେ । ସେମାନଙ୍କ ସଂଖ୍ୟା ଅଧିକ ହେବାରୁ ଅମାବାସ୍ୟାରେ ମଧ୍ୟ ଭୋଜି ହେଲା । ଏହିପରି ପ୍ରତିମାସରେ ସଂକ୍ରାନ୍ତି, ପୂର୍ଣ୍ଣମୀ ଓ ଅମାବାସ୍ୟାରେ ହେଉଥିବା ତିନିଟି ଭୋଜିରେ ଫାର୍ମର ସମସ୍ତ କର୍ମଚାରୀ ଅଂଶ ଗ୍ରହଣ କରୁଥିଲେ । ସେଠାକାର ସ୍ତ୍ରୀଲୋକମାନଙ୍କ ସହିତ ସାନସାନ ପିଲାମାନେ ମଧ୍ୟ ଏଇ ଭୋଜିକୁ ଚାହିଁ ରହୁଥିଲେ । ପ୍ରତିମାସରେ ଠାକୁରଙ୍କ ସେବାପୂଜା ଓ ଅନ୍ନଭୋଗ ପାଇଁ ୯୦ ଜଣ ବ୍ୟକ୍ତିଙ୍କର ତାଲିକା ହେଲା । ତେଣୁ ଗୋଟିଏ ଦିନର ଖର୍ଚ୍ଚକୁ ୩ ଜଣଙ୍କ ମଧ୍ୟରେ ବାଣ୍ଟି ଦିଆଯାଉଥିଲା । ଫଳରେ ଫାର୍ମ ପରିସରରେ ଥିବା ପ୍ରାୟ ଚାରିଶହ ପରିବାର ଆନନ୍ଦ ଉତ୍ସାହ ମଧ୍ୟରେ କାର୍ଯ୍ୟରତ ହେଲେ ଓ ମୋ ପ୍ରତି ସେମାନଙ୍କର ସ୍ନେହ ଶ୍ରଦ୍ଧା ଓ ଭକ୍ତି ବଢ଼ିଗଲା । ଏହା ଦ୍ୱାରା ଫାର୍ମ ପରିଚାଳନାରେ ଉନ୍ନତି ଘଟିଲା ।

ପୂର୍ବବର୍ତ୍ତୀ ଯୁଗ୍ମ ନିର୍ଦ୍ଦେଶକମାନେ ସେମାନଙ୍କ ନିତ୍ୟକର୍ମସାରି ଗତାନୁଗତିକ ଭାବେ ଦିନ ଦଶଟା ବେଳକୁ ଅଫିସ ଆସୁଥିଲେ ଓ ଅପରାହ୍ନ ୫ଟା ସୁଦ୍ଧା ଅଫିସ ବନ୍ଦ ହେଉଥିଲା । ମୁଁ ପ୍ରତିଦିନ ଭୋର ୫ଟାରୁ ଉଠି ଗାଧୁଆ ପାଧୁଆ ସାରି ୬ଟା ସୁଦ୍ଧା ଅଫିସ୍‌ଠାରୁ ୩ କିଲୋମିଟର ଦୂରସ୍ଥ କୁକୁଡ଼ା ଫାର୍ମକୁ ଜିପ୍ ଚଳାଇ ଚାଲି ଯାଉଥିଲି । ସେଠାରୁ ଛେଳି,ମେଣ୍ଢା ଘୁଷୁରୀ ଫାର୍ମସବୁ ବୁଲି ବୁଲି ପରିଦର୍ଶନ କରୁଥିଲି । ବତକ ଫାର୍ମଟି ମୁଁ ନିଜେ ଗଢ଼ିଥିବାରୁ ତାହାର ପରିଚାଳନା ଦିଗରେ କର୍ମଚାରୀମାନଙ୍କୁ ପ୍ରୋତ୍ସାହିତ କରୁଥିଲି । ମୁଁ ଏତେ ସକାଳୁ ଫାର୍ମ ମାନଙ୍କରେ ପହଞ୍ଚି ଯାଉଛି ଜାଣି ଫାର୍ମର ଦିନ ମଜୁରୀଆଙ୍କ ଠାରୁ ଆରମ୍ଭ କରି ଚତୁର୍ଥ, ତୃତୀୟ ବା ଦ୍ୱିତୀୟ ଶ୍ରେଣୀ କର୍ମଚାରୀମାନେ ଭୋର ଛଅଟାରୁ ଯାଇ କାମରେ ଯୋଗ ଦେଉଥିଲେ । ପଶୁମାନଙ୍କର ରହିବା ସ୍ଥାନ ପରିଷ୍କାର କରି ସେମାନଙ୍କୁ ଦାନା ଓ ପାଣି ଯୋଗାଇବାରେ ସେମାନେ ଲାଗି ପଡୁଥିଲେ । ମୁଁ ପ୍ରତି ଫାର୍ମରେ ପହଞ୍ଚି ସବୁଆଡ଼େ ବୁଲି ଫାର୍ମ ପରିଚାଳକ ମାନଙ୍କୁ ପରିଚାଳନାଗତ ଉପଦେଶ୍ ଦେଇ ଉତ୍ପାଦନ ବଢ଼ାଇବା ଦିଗରେ ସାହାଯ୍ୟ କରୁଥିଲି । ଫଳରେ ଫାର୍ମର ସମସ୍ତ କର୍ମଚାରୀ ଓ ଦିନ ମଜୁରିଆ ମାନଙ୍କ ସହିତ ମୋର ପ୍ରତ୍ୟକ୍ଷ ସମ୍ପର୍କ ରହିଲା ଓ ସେମାନଙ୍କର ହାରିଗୁହାରି ଶୁଣି ସେସବୁର ଆଶୁ ପ୍ରତିକାର ବ୍ୟବସ୍ଥା ମୁଁ କରୁଥିଲି ।

ଜଗନ୍ନାଥ ମନ୍ଦିରର ସେବା ପୂଜାରେ ଉନ୍ନତି ସହିତ ସମସ୍ତେ ସଂପୃକ୍ତ ଥାଇ ସେ ବିଷୟର ସନ୍ତୋଷ ବ୍ୟକ୍ତ କରୁଥିଲେ ଓ ଫାର୍ମର ଏକ ଉପଯୁକ୍ତ ସ୍ଥାନରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିବାକୁ ପ୍ରସ୍ତାବ ଦେଉଥିଲେ । ଏହାର ଏକ ଆଶୁ ସମାଧାନ ପାଇଁ ଅଫିସରମାନଙ୍କର ଏକ ସଭା ଡକାଇ ଯୁଗ୍ମ ନିର୍ଦ୍ଦେଶାଳୟ ସମ୍ମୁଖସ୍ଥ ପାଞ୍ଚ ଏକର ଭୂମିରେ ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ ଲାଗି ପ୍ରସ୍ତାବ ଗୃହୀତ ହେଲା । କଟକସ୍ଥ

ନିର୍ଦ୍ଦେଶାଳୟର ଘରିଜଣ ଏଷ୍ଟାବ୍ଲିଷ୍ଟମେଣ୍ଟ ଅଫିସରଙ୍କ ମଧ୍ୟରୁ ଜଣେ ଯାଇ ଚିପିଲିମାସ୍ଥ ଯୁଗ୍ମନିର୍ଦ୍ଦେଶାଳୟରେ କାର୍ଯ୍ୟ କରୁଥିଲେ । ୯୦ ମସିହାରେ ମୁଁ ଯୁଗ୍ମନିର୍ଦ୍ଦେଶକ ଭାବେ ସେଠାରେ ଯୋଗ ଦେବାବେଳକୁ ଶ୍ରୀ ସାଧୁଚରଣ ମହାନ୍ତି ଏହି ଦାୟିତ୍ୱରେ ଥିଲେ। ୧୯୯୨ ମସିହାରେ ସେ କାର୍ଯ୍ୟରୁ ଅବସର ନେବାରୁ ମେଷପାଳନ ଫାର୍ମ ପରିଚାଳକ ଡାକ୍ତର ବିଷ୍ଣୁ ଚରଣ ମହାନ୍ତିଙ୍କୁ ତାଙ୍କ ଫାର୍ମ ସହିତ ଏହି ଦାୟିତ୍ୱ ଦିଆଗଲା । ସେ ଖୁବ୍ କାର୍ଯ୍ୟଦକ୍ଷ ଲୋକ ଥିଲେ । ତାଙ୍କର ଚିନ୍ତାଧାରା ମଧ୍ୟ ଉନ୍ନତ ଧରଣର ଥିଲା ।

ମୁଁ ନିର୍ଦ୍ଦେଶକ ଥିଲାବେଳେ ନବକଳେବର ଋତୁ ଆସିଲା । ଏତେବଡ଼ ମନ୍ଦିର ପାଇଁ ଛୋଟ ଛୋଟ ମୂର୍ତ୍ତି ଶୋଭା ପାଇବ ନାହିଁ ବୋଲି ନବକଳେବର ସମୟରେ ପ୍ରଭୁ ଜଗନ୍ନାଥଙ୍କ ମୂର୍ତ୍ତି ନିର୍ମାଣ ବେଳେ ଚିପିଲିମା ମନ୍ଦିର ପାଇଁ ତିନିଠାକୁରଙ୍କ ବଡ଼ ବଡ଼ ମୂର୍ତ୍ତି ତିଆରି କରିବା ଲାଗି ପୁରୀ ଜିଲା ମୁଖ୍ୟ ପଶୁଚିକିତ୍ସା ଅଧିକାରୀଙ୍କୁ ଦାୟିତ୍ୱ ଦିଆଗଲା । ସେଥିଲାଗି ତିରିଶ ହଜାର ଟଙ୍କା ଖର୍ଚ୍ଚର ଆବଶ୍ୟକତା ଦୃଷ୍ଟିରୁ ଆମେ ତିନିଜଣ ବ୍ୟକ୍ତି ସମାନଭାଗ କରି ସେ ଅର୍ଥ ଦାନ କଲୁ । ପୁରୀରୁ ଘରିଜଣ ଦଇତାପତି ଯାଇ ଚିପିଲିମାରେ ସାତଦିନ ରହି ଠାକୁର ମାନଙ୍କର ନବକଳେବର କରାଇଲେ । ମାତ୍ର ନୂଆମନ୍ଦିର ଅଧାଥିବାରୁ ସାତବର୍ଷ ପର୍ଯ୍ୟନ୍ତ ପୁରୁଣା ମନ୍ଦିରରେ ପୂଜାର୍ଚ୍ଚନା କରାଯାଇ ୨୦୦୩ ମସିହା ମେ'ମାସରେ ନୂତନ ମନ୍ଦିର ପ୍ରତିଷ୍ଠା କରାଯାଇ ବିଗ୍ରହ ମାନଙ୍କୁ ସେଠାକୁ ଅଣାଗଲା । ମୁଁ ୧୯୯୬ ମସିହା ଅକ୍ଟୋବର ଶେଷରେ ଚାକିରୀରୁ ଅବସର ନେଇଥିଲେ ମଧ୍ୟ ଗାଆଁରୁ ମିସ୍ତ୍ରୀ ନେଇ ସେହି ମନ୍ଦିର ତିଆରି କରାଉଥିଲି । ସାତବର୍ଷ ଧରି ମୋତେ ପ୍ରତି ଦୁଇ ତିନିମାସ ଛଡ଼ାରେ ଚିପିଲିମା ଯାଇ ମନ୍ଦିର ନିର୍ମାଣ କାର୍ଯ୍ୟ ବୁଝିବାକୁ ହେଉଥିଲା ଓ ସେଥିଲାଗି ସମସ୍ତ ଖର୍ଚ୍ଚ ମୋତେ ହିଁ ଯୋଗାଡ଼ କରିବାକୁ ପଡୁଥିଲା ।

୧୯୯୯ ମସିହା ମହାବାତ୍ୟା ବେଳେ ଜଗତସିଂହପୁର ଜିଲାଟା ସମ୍ପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ଅଧିକାଂଶ ଚାଳଛପର ଘର ମାଟିରେ ମିଶିଗଲା । ମୋ ଗାଆଁ ପାଖରୁ ଦୁଇଜଣ ରାଜମିସ୍ତ୍ରୀଙ୍କୁ ନେଇ ଚିପିଲିମାରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ତିଆରିରେ ଲଗାଇ ଦେଇଥିଲି । ସେମାନଙ୍କ ଘର ସବୁ ଭାଙ୍ଗିଗଲା । ସେମାନେ ଚିପିଲିମା ଛାଡ଼ି ପଳାଇଆସି ବାକୀଆ ମଜୁରୀତକ ମୋ ପାଖରୁ ଦାବୀ କଲେ । ପ୍ରାୟ ଛଅମାସର ମିସ୍ତ୍ରୀ ମଜୁରୀ ବହୁ କଷ୍ଟରେ ଭରଣା କଲି । ଦୁଇ ତିନି କିସ୍ତିରେ ସେମାନଙ୍କ ପ୍ରାପ୍ୟ ଦିଆଗଲା । ତାପରେ ବର୍ଷେ ଦୁଇବର୍ଷ ଛାଡ଼ି ମନ୍ଦିର ଉପରେ ସିଂହ ବସାଇବାକୁ ମିସ୍ତ୍ରୀ ପଠାଇଲି । ସେମାନେ ଦଧିନଉତି ଠାରୁ ଆରମ୍ଭ କରି ମନ୍ଦିର, ମୁଖଶାଳା ଓ ଜଗମୋହନର ପ୍ରତି ଥାକରେ ସିଂହ ବସାଇ ବାଇଶି ପାହାଚ ଶେଷ ପାହାଚରେ ମୁଖଶାଳା ଦୁଇ ପାଖରେ ଖୁବ ବଡ଼ ବଡ଼ ସିଂହ ମୂର୍ତ୍ତି ମାନ ବସାଇବା ପରେ ମନ୍ଦିର

ରଙ୍ଗ ହେଲା ଓ ୨୦୦୩ ମସିହା ଅକ୍ଷୟ ତୃତୀୟାରେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ନୂତନ ମନ୍ଦିରକୁ ବିଜେ ହେଲେ । ଏଥିଲାଗି ତିନିଦିନ ଧରି ଯଜ୍ଞ ହେଲା । ସ୍ଥାନୀୟ ଲୋକମାନେ ବହୁ ସଂଖ୍ୟାରେ ଆସି ପ୍ରସାଦ ସେବନ କଲେ । କଟକରୁ ବାୟାମଠର ବାବାଜୀ ଶ୍ରୀ ବିପିନବିହାରୀ ଦାସ ଓ ଶ୍ୟାମସୁନ୍ଦର ମଠର ବାବାଜୀ ଶ୍ରୀ ରାଧାଚରଣ ଦାସଙ୍କ ସହିତ ଫୁଲବାଣୀରୁ ସ୍ୱାମୀ ଶ୍ରୀ ସନ୍ତୋଷ ଚୈତନ୍ୟ ଏହି ଉତ୍ସବରେ ଯାଇ ଯୋଗ ଦେଇଥିଲେ ।

ମୋ ଗାଆଁରେ ଇଷ୍ଟଦେବତା ଗୋପାଳଜୀଉଙ୍କ ପାଇଁ ଦୁଇଶହବର୍ଷ ତଳେ ଯେଉଁ ଧୂଳିଆପିଟା ଚାଳଘର ତିଆରି ହୋଇଥିଲା, ସେ ଘର ମୋ ଜନ୍ମହେବା ପୂର୍ବରୁ ଭାଙ୍ଗିଯାଇଥିଲା । ସେହି ଡିହ ପାଖକୁଲାଗି ଆଉଏକ ଚାଳଘର ତିଆରି କରାଯାଇ ସେଘରେ ଠାକୁର ରହୁଥିଲେ । ବାତ୍ୟାରେ ସେ ଘର ଭାଙ୍ଗିଗଲା । ମୋ ବଡ଼ବାପାଙ୍କ ପୁଅ ନୃସିଂହ ଚରଣ ମହାନ୍ତି ବ୍ଲକ୍‌ରୁ ଆର୍ଥିକ ସାହାଯ୍ୟ ପାଇ ଯେଉଁ ମହିଳାସମିତି ଓ ଅମ୍ବରଚରଖା ଘର ତିଆରି କରାଇଥିଲେ ସେ ଘରର ଇଟାକାନ୍ଥ ଓ ଟିଣଛପର ଥିଲା । ସେହି ଘରେ ଠାକୁରଙ୍କୁ ୧୯୬୪ ମସିହାଠାରୁ ରଖା ଯାଇଥିଲା। ଠାକୁରଙ୍କ ପୁରୁଣା ଡିହରେ ମନ୍ଦିରଟିଏ କରିବାକୁ ମୋ ବାପା, ବଡ଼ବାପା ଓ ଦାଦାମାନେ ଇଟାଭାଟି ପୋଡାଇଥିଲେ । ମାତ୍ର ଜେଜେଙ୍କ ମାମୁଁପୁଅ ଭାଇଙ୍କ ଦୁଇ ପୁଅ କିଶୋରୀ ଚରଣ କାନୁନ୍‌ଗୋ ଓ ଖ୍ୟାତନାମା ଶିକ୍ଷାବିତ୍ ନୃସିଂହ ଚରଣ କାନୁନ୍‌ଗୋ ତାଙ୍କ ଗ୍ରାମ ଉତ୍ତାରଣ ଛାଡ଼ି ଆମଗାଆଁରେ ରହିବାକୁ ଇଚ୍ଛା କରିବାରୁ ଠାକୁରଙ୍କ ଇଟା ଧାରନେଇ ତାଙ୍କ ଘର ତିଆରି କରିବାକୁ ମୋ ବାପାଙ୍କୁ ଅନୁରୋଧ କଲେ । ବାପା ମଧ୍ୟ ତାଙ୍କର ଅନୁରୋଧ ଏଡ଼ାଇ ନପାରି ଇଟା ଦେଇଦେଲେ । ମାତ୍ର ସେ ଇଟା ଫେରି ପାଇବା ସମ୍ଭବ ହେଲାନାହିଁ । ସେମାନେ ଯେତେଥର ଇଟା ତିଆରି କଲେ ପ୍ରାକୃତିକ ଦୁର୍ବିପାକ ଯୋଗୁଁ ସବୁତକ ଇଟା ନଷ୍ଟ ହୋଇଗଲା । ସେମାନେ ବ୍ୟତିବ୍ୟସ୍ତ ହୋଇ ଯେତିକି ଇଟା ଠାକୁରଙ୍କୁ ଦେଲେ ତହିଁରେ ପୁରୁଣା ଡିହରେ କେବଳ ଦୁଇ ବଖରା ମନ୍ଦିର ଗୃହର ନିଅଁ ତିଆରି ହୋଇ ପାରିଲା ।

୧୯୯୦ ମସିହାରେ ମୁଁ ଲେଖିଥିବା ଭ୍ରମଣକାହାଣୀ ପୁସ୍ତକ "ପାତାଳ ପୁରୀର ହାଲଚାଲ୍" ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଲା । ସେଥିଲାଗି ମୋତେ ଯେଉଁ ଦଶହଜାର ଟଙ୍କା ପୁରସ୍କାର ମିଳିଲା ମୁଁ ସେହିଅର୍ଥକୁ ଇଷ୍ଟଦେବ ଶ୍ରୀ ଗୋପାଳଜୀଉଙ୍କ ମନ୍ଦିର ତିଆରି ପାଇଁ ରଖିଦେଲି । ୧୯୯୪ ମସିହା ଅଗଷ୍ଟମାସରେ ଦେବୀନଦୀ ବନ୍ଧ ଭାଙ୍ଗି ଆମ ଅଞ୍ଚଳଟା ଛାରଖାର ହୋଇଗଲା । ଠାକୁରଙ୍କ ଟିଣଘର ଭିତରେ ପାଣି ପଶିଲା । ଭାଇଙ୍କ ଚାଳଘରେ ଠାକୁରଙ୍କୁ ନେଇ ରଖାଗଲା । ବଢ଼ି ଛାଡ଼ିବା ପରେ ଠାକୁରଘର ତିଆରି ପାଇଁ ମୁଁ ଇଟା ପୋଡ଼ାଇ ମନ୍ଦିର ନିର୍ମାଣ କାର୍ଯ୍ୟ

ଆରମ୍ଭ କରିଦେଲି । ଦେଢ଼ବର୍ଷକାଳ କାମ ଚାଲିବା ପରେ ୧୯୯୬ ମସିହା ସରସ୍ୱତୀ ପୂଜା ଦିନ ମନ୍ଦିର ପ୍ରତିଷ୍ଠାର ବ୍ୟବସ୍ଥାହେଲା । ପୁରୀର ବୈଷ୍ଣବ ଶ୍ରୀ ଚୈତନ୍ୟଚରଣ ଦାସ କଟକସ୍ଥ ଶ୍ୟାମସୁନ୍ଦର ମଠକୁ ଆସନ୍ତି ଓ ମଠାଧୀଶ ବାବା ଶ୍ରୀ ଚକ୍ରଧର ଦାସ ମହାରାଜ ତାଙ୍କୁ ଖୁବ୍ ଭଲ ପାଆନ୍ତି । ସେ ମୋଠାରୁ ଗୋପାଳମନ୍ଦିର ପ୍ରତିଷ୍ଠା କଥାଶୁଣି ପୁରୀର ଗଜପତି ମହାରାଜାଙ୍କୁ ଆମନ୍ତ୍ରିତ କରିବା ପାଇଁ ପ୍ରସ୍ତାବ ଦେଲେ । ଗଜପତିଙ୍କ ସହିତ ଚୈତନ୍ୟବାବାଙ୍କର ଖୁବ୍ ଭଲ ସମ୍ପର୍କ । ତେଣୁ ତାଙ୍କୁ ସାଙ୍ଗରେନେଇ ମୁଁ ଗଜପତି ମହାରାଜାଙ୍କ ପାଖକୁ ଗଲି । ସେ ନିମନ୍ତ୍ରଣ ରକ୍ଷାକଲେ ଓ ଠାକୁରଙ୍କ ସିଂହାସନ ଆରୋହଣ ବେଳେ ଆସି ପହଞ୍ଚିଲେ । ମନ୍ଦିର ପ୍ରତିଷ୍ଠାପାଇଁ ସାତଦିନ ବ୍ୟାପୀ ଉତ୍ସବ ହେଲା । ଯଜ୍ଞ, ଅଷ୍ଟପ୍ରହର ନାମଯଜ୍ଞ, ପାଲା ଆଦି ହୋଇ ସେ ଅଞ୍ଚଳର ଆବାଳବୃଦ୍ଧବନିତାଙ୍କୁ ପ୍ରସାଦ ବିତରଣ ବ୍ୟବସ୍ଥା ମଧ୍ୟ କରାଗଲା । ସେହି ଦିନଠାରୁ ପ୍ରତିବର୍ଷ ସ୍ୱରସ୍ୱତୀ ପୂଜାଦିନ ଯଜ୍ଞ ଓ ତାପରଦିନ ଅଷ୍ଟପ୍ରହର ନାମ ଯଜ୍ଞ ଅନୁଷ୍ଠିତ ହୋଇ ଆସୁଛି ।

୨୦୦୩ ମସିହାରେ ମଧ୍ୟ ଚିପିଲିମାରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ନୂତନ ମନ୍ଦିର ପ୍ରବେଶ ଲାଗି ତିନିଦିନ ବ୍ୟାପୀ ଯଜ୍ଞ, ସାଧୁସନ୍ଥଙ୍କ ପ୍ରବଚନ ଓ ପ୍ରସାଦ ସେବନ କାର୍ଯ୍ୟ ହୋଇଥିଲା । ମୁଁ ଚିପିଲିମାରେ ଯୁଗ୍ମନିର୍ଦ୍ଦେଶକ ଥିଲାବେଳେ ୧୯୯୩ ମସିହାରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରଥମ ରଥଯାତ୍ରା କରାଇଥିଲି । ସେହି ବର୍ଷଠାରୁ ଗୋଶାଳାଛକ ଉପରେ ମାଉସୀମା ମନ୍ଦିର କରାଯାଇ ସେଠାରେ ନଅଦିନ ବ୍ୟାପୀ ଉତ୍ସବ ହୋଇ ଆସୁଛି । ପାର୍ଶ୍ୱବର୍ତ୍ତୀ ଗ୍ରାମ ମାନଙ୍କରୁ କୀର୍ତ୍ତନଦଳ ମାନେ ସେଠାରେ ପ୍ରତିଦିନ ସଂକୀର୍ତ୍ତନ କରନ୍ତି ଓ ଦୋକାନୀମାନେ ଚାନ୍ଦା କରି ରଥଯାତ୍ରା ଦିନଠାରୁ ବାହୁଡ଼ା ପର୍ଯ୍ୟନ୍ତ ପ୍ରତ୍ୟହ ପାଞ୍ଚ ସାତଶହ ଲୋକଙ୍କ ପାଇଁ ପ୍ରସାଦ ବ୍ୟବସ୍ଥା କରନ୍ତି । ୧୯୯୪ ମସିହାରେ ନବକଳେବର ଠାରୁ ପ୍ରତିବର୍ଷ ତନିଟି ରଥ ହୋଇ ଆସୁଛି । ଏଠାରେ ସୁଭଦ୍ରାଙ୍କ ରଥକୁ କେବଳ ମହିଳାମାନେ ଟାଣନ୍ତି । ଏ ସମସ୍ତ କାର୍ଯ୍ୟର ସାଫଲ୍ୟ ପଛରେ ବୈଷ୍ଣବ ମହାତ୍ମାମାନଙ୍କର ପ୍ରଭାବ ନିହିତ ଥିବାର ମୁଁ ଅନୁଭବ କରୁଥିଲି ।

## ଚିପିଲିମା ଫାର୍ମ ପରିଚାଳନାରେ ଉନ୍ନତି

ଚିପିଲିମା ଫେରିଆସି ମୋତେ ଖୁବ୍ ଆଶ୍ୱସ୍ତ ଲାଗିଲା । ନିର୍ଦ୍ଦେଶାଳୟରେ କେବଳ ଫାଇଲ ଘଷ କାମରେ ମୁଁ ଅତିଷ୍ଠ ହୋଇଯାଉଥିଲି । ଚିପିଲିମା ପରି ଦୁଇ ହଜାର ଏକର ପରିମିତ ରାଜ୍ୟ ପଶୁପାଳନ ଫାର୍ମରେ ଉନ୍ନତ ଗୋରୁ, ଛେଳି, ମେଣ୍ଢା,

ମଇଁଷି, କୁକୁଡ଼ା ଓ ବତକ ପ୍ରଜନନ କାର୍ଯ୍ୟ ହୋଇପାରୁନଥିଲା । ତାଛଡ଼ା ଘାସ ଉତ୍ପାଦନ ଓ ଘାସ ମଞ୍ଜି ଉତ୍ପାଦନ କାର୍ଯ୍ୟରେ ମଧ୍ୟ କାଗଜ କଲମ ସହିତ ପ୍ରକୃତ ଉତ୍ପାଦନର ସାମଞ୍ଜସ୍ୟ ନଥିଲା । ୧୯୯୦ ନଭେମ୍ବର ଠାରୁ ୧୯୯୧ ଶେଷ ପର୍ଯ୍ୟନ୍ତ ଚିପିଲିମାରେ ରହି ମୁଁ ଫାର୍ମଗୁଡ଼ିକର ଉନ୍ନତି ଦିଗରେ ମୂଳଦୁଆ ପକାଇ ସାରିଥିଲି । ଦ୍ୱିତୀୟଥର ଏଠାକୁ ଫେରିବା ପରେ ଦାୟିତ୍ୱରେ ଥିବା ଅଫିସରମାନେ ମୋର ସାନ୍ନିଧ୍ୟ ପାଇ ପୁନରାୟ ପୂରାଦମ୍‌ରେ ଆଗେଇ ଚାଲିଲେ । ଜର୍ସି ଗାଈମାନେ ଏତେ ଦୁଧ ଦେଲେ ଯେ, ଦୁହାଁଳିମାନେ ସେମାନଙ୍କୁ ପୂର୍ବପରି ଆଉ ହାତରେ ଦୁହିଁ ପାରିଲେ ନାହିଁ । ତେଣୁ ମୁଁ ମେସିନ୍‌ରେ ଦୁଧ ଦୁହିଁବା ପାଇଁ ଚିନ୍ତା କଲି । ଆମେରିକାରେ ଥିଲାବେଳେ ସେଠାକାର ମେସିନ୍ ଦୁହିଁବା ଦେଖି ମୁଁ ଏହାର ଗୁରୁତ୍ୱ ଉପଲବ୍ଧି କରିଥିଲି । ମାତ୍ର ଭାରତବର୍ଷରେ କେଉଁଠି ସେ ବ୍ୟବସ୍ଥା ନଥିବା ଯୋଗୁଁ ମେସିନ୍ ଦୁହିଁବା ଉପରେ କାହାର ଆସ୍ଥା ନଥିଲା । ତେଣୁ ଏପରି ଏକ ନୂତନ ପଦକ୍ଷେପ ନେବା ପୂର୍ବରୁ ମୁଁ ନିର୍ଦ୍ଦେଶକଙ୍କୁ ଚିଠି ଲେଖି ତାଙ୍କର ସହମତି ପାଇଁ ଅନୁରୋଧ କଲି । ମାତ୍ର ନିର୍ଦ୍ଦେଶାଳୟରେ ଜଣେ ଯୁଗ୍ମ ନିର୍ଦ୍ଦେଶକ ଈର୍ଷାପରବଶ ହୋଇ ଏପରି ଏକ ନିଷ୍ପତ୍ତି ନନେବା ପାଇଁ ନିର୍ଦ୍ଦେଶକଙ୍କୁ ପ୍ରବର୍ତ୍ତାଇଲେ । ମୁଁ କଟକ ଆସି ବୁଝିଲି ଯେ, ମୋ ଚିଠିକୁ ସେ ଚପାଇ ଦେଇଛନ୍ତି । ତାଙ୍କର ମତ ଅନୁସାରେ ଓଡ଼ିଶାଟା ଆମେରିକା ନୁହେଁ । ଏଠି ଯେପରି ହାତରେ ଗାଈ ଦୁହାଁଯାଏ ତାହାହିଁ ଠିକ୍‌ବାଟ । ମେସିନ୍‌ରେ ଗାଈ ଦୁହିଁଲେ ଗାଈ ମାନଙ୍କର କ୍ଷତି ହେବାର ସମ୍ଭାବନା ଅଛି । ତେଣୁ ଗୁରୁବାବୁ ଯେପରି ଏ ରାଜ୍ୟକୁ ଆମେରିକା ସାଙ୍ଗେ ସମାନ ବୋଲି ଭାବୁଛନ୍ତି ତାହା ଏକ ଅବାନ୍ତର କଥା । ଏପରିକଥା ଜାଣିବା ପରେ ଦୁଧ ଦୁହିଁବା ମେସିନ୍ ମଗାଇ ଅନ୍ୟମାନଙ୍କର ସେଭଳି ଭ୍ରାନ୍ତ ଧାରଣାକୁ ବଦଳାଇବା ପାଇଁ ମୁଁ ମନସ୍ଥ କଲି । ତେଣୁ ମୁଁ ଦିଲ୍ଲୀରେ ଥିବା ଆଲ୍‌ଫାଲାଭାଲ୍ କମ୍ପାନୀ ସହିତ ଯୋଗଯୋଗ କରି ଗୋଟିଏ ଦୁଧଦୁହାଁ ଯନ୍ତ୍ର ମଗାଇଲି । ଫାର୍ମର ଦୁଇ ତିନିଜଣ ଦୁହାଁଳିଙ୍କୁ ସେହି ମେସିନ୍ ଚଳାଇବାର ତାଲିମ ଦିଆଗଲା । ୧୫ ଲିଟରରୁ ୨୫ ଲିଟର ପର୍ଯ୍ୟନ୍ତ ଦୁଧ ଦେଉଥିବା ଗାଈଙ୍କୁ ବାଛି ଏହି ମେସିନ୍‌ରେ ଦୁହାଁଗଲା । ଏଥି ସହିତ ସେମାନଙ୍କ ଖାଦ୍ୟଯୋଗାଣ ଠିକ୍‌ଭାବେ ବ୍ୟବସ୍ଥା କରିବା ଫଳରେ ଫାର୍ମରେ ଦୁଧପରିମାଣ ବଢ଼ିବାକୁ ଲାଗିଲା । ୧୯୯୦ ନଭେମ୍ବର ମାସରେ ମୁଁ ପ୍ରଥମ କରି ଚିପିଲିମାରେ କାର୍ଯ୍ୟଭାର ନେଲାବେଳକୁ ଏହି ଫାର୍ମରୁ ଦିନକୁ ମାତ୍ର ୧୫୫ ଲିଟର ଦୁଧ ମିଳୁଥିଲା । ଏବେ ଦୁଇବର୍ଷ ଭିତରେ ଏହି ପରିମାଣ ସାତଶହ ଲିଟର ହେବା ଫଳରେ ଦୁଧ ବିକ୍ରୀ କରିବାରେ ଅସୁବିଧା ହେଲା । ଏତେ ପରିମାଣର ଦୁଧ କିଣିବାକୁ ଚିପିଲିମାରେ ଗରାଖ ନଥିଲେ । ତେଣୁ ମୁଁ ବୁର୍ଲା ଇଞ୍ଜିନିୟରିଂ କଲେଜ ଓ ମେଡ଼ିକାଲ୍

କଲେଜକୁ ଯାଇ ଛାତ୍ର ଓ ଅଧ୍ୟାପକ ମାନଙ୍କ ପାଇଁ ଦୁଗ୍ଧ ଯୋଗାଣର ବ୍ୟବସ୍ଥା କଲି । ସମ୍ବଲପୁର ବିଶ୍ୱବିଦ୍ୟାଳୟ ପରିସରରେ ଦୁଧ ବିକ୍ରୟ ଆରମ୍ଭ ହେଲା । ତାଛଡ଼ା ଦୁଧରୁ କ୍ରିମ୍ କାଢ଼ି ଘିଅ ତିଆରି କରିବା, ଖୁଆମାରିବା ପନିର୍ ଓ ଛେନା ବିକ୍ରୀ କରିବାର ମଧ ବ୍ୟବସ୍ଥା କଲି । ସମ୍ବଲପୁର, ବୁର୍ଲା, ବରଗଡ଼ ଓ ହୀରାକୁଦରୁ ଲୋକମାନେ ଏସବୁ ଜିନିଷ କଣିବାକୁ ବହୁ ସଂଖ୍ୟାରେ ଆସିଲେ । ମୋ ପୂର୍ବରୁ ଦଶଜଣ ଯୁଗ୍ମ ନିର୍ଦ୍ଦେଶକ ଚିପିଲିମା ଫାର୍ମ ଦାୟିତ୍ୱରେ ଥିଲେ । ମାତ୍ର ସମସ୍ତେ ଅଫିସ୍‌ରେ ବସି କେବଳ ଫାଇଲ୍ ଚଷିବାକୁ ଭଲ ପାଉଥିଲେ । ଏବେ ମଧ ସେଇଆ ଚାଲିଛି । ପଶୁପାଳନ କ୍ଷେତ୍ରରେ ବିଜ୍ଞାନର ଉପଯୋଗ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ହୋଇନଥିଲା । ସରକାରୀ ଚାକିରୀରେ ଜ୍ଞାନ ଗାରିମା, କର୍ତ୍ତବ୍ୟପରାୟଣତା ବା କାର୍ଯ୍ୟଦକ୍ଷତାର କୌଣସି ମୂଲ୍ୟନାହିଁ । ଉପରିସ୍ଥ ହାକିମଙ୍କୁ ଯିଏ ଯେତେ ସନ୍ତୁଷ୍ଟ କରିପାରିଲା ସେ ସେତିକି ଶୁଭ ଫଳ ପାଇପାରିବ । ତେଣୁ ବିଦେଶରୁ ଅଣାଯାଇଥିବା ମୂଲ୍ୟବାନ୍ ଜର୍ସି ଗାଈ ମାନଙ୍କ ଦାୟିତ୍ୱରେ ଥିବା ଯୁଗ୍ମ ନିର୍ଦ୍ଦେଶକମାନେ ଗାଈମାନଙ୍କୁ ପ୍ରଜନନକ୍ଷମ କରି ରଖି ସେମାନଙ୍କଠାରୁ କିପରି ଅଧିକ ଦୁଗ୍ଧ ଉତ୍ପାଦନ କରି ପାରିବେ ସେ ବିଷୟ ପ୍ରତି ଧ୍ୟାନ ନଦେଇ କେବଳ ଫାଇଲ୍ ଚାଷ କରିବା ଉପରେ ଗୁରୁତ୍ୱ ଦେଇଥିଲେ ଓ ଏବେ ମଧ ଦେଉଛନ୍ତି । ଚିପିଲିମାରେ ଯେଉଁ ଗାଈମାନେ ଜନ୍ମ କରିବାର ତିନିଶହ ଦିନ ଭିତରେ ଚାରିହଜାର ଲିଟରରୁ ଅଧିକ ଦୁଧ ଦେଲେ, ସେମାନଙ୍କର ଅଣ୍ଡିରା ବାଛୁରୀ ମାନଙ୍କୁ ଷଣ୍ଢ କରିବା ପାଇଁ ବଛାଗଲା । ପୂର୍ବରୁ ଏପରି କେବେ ହୋଇନଥିଲା । କାରଣ ଏଠାରେ ଏପର୍ଯ୍ୟନ୍ତ କୌଣସି ଗାଈଠାରୁ ଏତେ ପରିଣାମର ଦୁଗଧ ଉତ୍ପାଦନ କରାଯାଇ ନଥିଲା । ଏତେ ପରିମାଣରେ ଦୁଧ ନ ପାଇଥିବାର କାରଣ ହେଲା ହାତରେ ଦୁହିଁବା ଦ୍ୱାରା ଆମ ଜର୍ସି ଗାଈମାନେ ଏକ ଲିଟରରୁ ପାଞ୍ଚ ଲିଟର ପର୍ଯ୍ୟନ୍ତ ମାତ୍ର ଦୁଧ ଦେଇପାରୁଥିଲେ । ତେଣୁ ପ୍ରତି ଦୁହାଁଳି ଦିନକୁ ଏଭଳି ପାଞ୍ଚ ସାତଟି ଗାଈ ଦୁହିଁ ପାରୁଥିଲେ । ଅଧିକ ଉତ୍ପାଦନକ୍ଷମ ଜର୍ସିଗାଈ ପଚିଶ ତିରିଶ ଲିଟର ପର୍ଯ୍ୟନ୍ତ ଦୁଧ ଦେବାବେଳେ ହାତରେ ଦୁହିଁବା ଲୋକ ସେମାନଙ୍କ ଠାରୁ ଅଳ୍ପ ସମୟ ଭିତରେ ଦୁଧତକ ଦୁହିଁ ନେଇ ପାରେ ନାହିଁ । ମାତ୍ର ମେସିନ ଦ୍ୱାରା ତାହା ହୋଇପାରେ। କାରଣ ଗାଈ ଦୁଧଛାଡ଼ିବାକୁ ମାତ୍ର ୩ମିନିଟରୁ ସାତ ମିନିଟ ସମୟ ନିଏ । ଏହି ସମୟ ଭିତରେ ସବୁତକ ଦୁଧ ଦୁହିଁ ନପାରିଲେ ଗାଈ ପହ୍ନାରେ ଦୁଧ ରହି ଶୁଖିଯାଏ ଓ କ୍ରମଶଃ ଦୁଧ ପରିମାଣ କମିଯାଏ । ଚିପିଲିମାରେ ଦୁଧଦୁହାଁ ମେସିନ୍ ଲଗାଇ କିପରି ଲାଭଜନକ ଉପାୟରେ ଗୋପାଳନ କରାଯାଏ ତାହା ମୁଁ ଦେଖାଇ ଦେଇପାରିଲି । ମାତ୍ର ମୋର ଅବସର ଗ୍ରହଣ ପରେ ଏପରି ବିଜ୍ଞାନଭିତ୍ତିକ ଆଧୁନିକ ରୀତିରେ ଗୋପାଳନ କରିବା ଓଡ଼ିଶା ରାଜ୍ୟରେ ବନ୍ଦ ହୋଇଗଲା ।

ଛେଳି ମେଣ୍ଢା ଫାର୍ମରେ ପଶୁସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଲା । ୧୯୯୦ ନଭେମ୍ବର ମାସରେ ଏଠାରେ ୧୩୫ ଟି ଛେଳି ଓ ୧୫୪ଟି ମେଣ୍ଢା ଥିବା ସ୍ଥଳେ ଦୁଇବର୍ଷ ଭିତରେ ଏହି ସଂଖ୍ୟା ଛଅଗୁଣ ବଢ଼ିଗଲା । କେବଳ ଯେ ସଂଖ୍ୟା ବଢ଼ିଗଲେ ବିଭାଗୀୟ ଲକ୍ଷ୍ୟ ହାସଲ ହୋଇପାରିବ, ସେକଥା ନୁହେଁ । ଫାର୍ମରୁ ଅଧିକ ଦେହବୃଦ୍ଧି ସମ୍ପନ୍ନ ବଡ଼ ବଡ଼ ଉନ୍ନତ ଅଣ୍ଡିରା ଛେଳି ମେଣ୍ଢା ଉତ୍ପାଦନ କରାଇ ସେମାନଙ୍କୁ ଗ୍ରାମାଞ୍ଚଳରେ ଅଧିକ ବଢ଼ିଆଳ ଛୁଆ ପ୍ରଜନନ ପାଇଁ ଯୋଗାଇବା ଥିଲା ମୁଖ୍ୟକଥା । ସେମାନଙ୍କଠାରୁ ଜନ୍ମ ହେଉଥିବା ଛୁଆମାନଙ୍କର ଗୁଣାତ୍ମକ ବିକାଶ ଲାଗି ରାଜସ୍ଥାନର ବିକାନୀର ଫାର୍ମରୁ ସିରୋହୀ ଛେଳି ଓ କୋରାଏଡେଲ୍ ମେଣ୍ଢା ବୋଦାମାନଙ୍କୁ ଅଣାଇଲି । ଗୋଟିଏ ସିରୋହୀ ଛେଳିର ଓଜନ ୭୦ରୁ ୮୦ କିଲୋ ଥିବାସ୍ଥଳେ କୋରାଏଡେ଼ଲ୍ ମେଣ୍ଢାମାନଙ୍କର ଓଜନ ୮୦ରୁ ୯୦ କେଜି ପର୍ଯ୍ୟନ୍ତ ଥିଲା । ଓଡ଼ିଶା ଛେଳିଙ୍କ ଓଜନ ୧୦ରୁ ୧୫ କେଜି ଥିବାସତ୍ତ୍ୱେ ଉନ୍ନତ ବୋଦାଙ୍କଠାରୁ ଜନ୍ମ ହୋଇଥିବା ଛୁଆମାନେ ୪୦/୪୫ କିଲୋ ପର୍ଯ୍ୟନ୍ତ ହେବା ଫଳରେ ବ୍ଲକ୍‌ମାନଙ୍କ ଜରିଆରେ ଗ୍ରାମାଞ୍ଚଳରେ ଅଧିକ ଓଜନଦାର ଛୁଆ ଉତ୍ପାଦନ ଲାଗି ଚିପିଲିମାରୁ ଅଣ୍ଡିରା ଛେଳି ଓ ମେଣ୍ଢାମାନଙ୍କୁ ଯୋଗାଇ ଦିଆଗଲା ।

ରାଜସ୍ଥାନରୁ ଉନ୍ନତଛେଳି ଓ ମେଣ୍ଢା ବୋଦାଙ୍କୁ ଆଣିବା ବେଳେ ସେଠାରୁ ମାଂସଳ ଠେକୁଆ ମାନଙ୍କୁ ମଧ୍ୟ ଆଣି ଚିପିଲିମାରେ ଏକ ଠେକୁଆଫାର୍ମ ସୃଷ୍ଟି କରାଗଲା । ମାତ୍ର ୨୦ଟି ଠେକୁଆଙ୍କ ଠାରୁ ବର୍ଷକଭିତରେ ପ୍ରାୟ ଅଢ଼େଇଶହ ଠେକୁଆ ଜନ୍ମହୋଇ ଏହି ଫାର୍ମର ଶ୍ରୀବୃଦ୍ଧି କରାଇଲେ । ପଶ୍ଚିମ ଓଡ଼ିଶାରେ ମଇଁଷିମାନଙ୍କୁ ଚଷ କାର୍ଯ୍ୟରେ ବ୍ୟବହାର କରାଯାଏ । ଚଷ କାର୍ଯ୍ୟରେ ବ୍ୟବହୃତ ହଳେ ମଇଁଷିଙ୍କ ଦାମ୍ ସେତେବେଳେ ଅତିକମ୍‌ରେ ଚାରିହଜାର ଟଙ୍କା ଥିଲା । ମାତ୍ର ପୁରୀ ଜିଲାର ଚିଲିକା ଅଞ୍ଚଳରେ ମଇଁଷିମାନଙ୍କର ମୂଲ୍ୟ ଅତ୍ୟନ୍ତ ନଗଣ୍ୟ ଥିଲା । ମାଈ ବା ଅଣ୍ଡିରା ଚିଲିକା ମଇଁଷିଟିଏ ସେତେବେଳେ ଚିଲିକା ଅଞ୍ଚଳରେ ୫୦୦ରୁ ୧୦୦୦ଟଙ୍କାରେ ମିଳୁଥିଲା । ଲୋକମାନଙ୍କର ବିଶ୍ୱାସ ଥିଲା ଯେ, ଚିଲିକା ମଇଁଷି ଲୁଣିପାଣି ଛାଡ଼ି ମିଠାପାଣିରେ ରହିପାରିବେ ନାହିଁ । ଚିଲିକା ହ୍ରଦର କୃମିବହୁଳ ଦଳଖାଇ ସେମାନେ ବଞ୍ଚି ରହନ୍ତି । ଫଳରେ ଅଧିକାଂଶ ଚିଲିକାମଇଁଷି କୃମି ରୋଗରେ ମୃତ୍ୟୁ ବରଣ କରନ୍ତି । ଏହା କିଛି ନୂଆ କଥା ନୁହେଁ । ଯୁଗ ଯୁଗ ଧରି ଏହା ଘଟିଚାଲିଛି । ମାତ୍ର ଏ ବିଷୟରେ କେହି ମୁଣ୍ଡ ଖେଳାଇ ନାହାଁନ୍ତି । କଅଣ କଲେ ଏହାର ପ୍ରତିରୋଧ କରାଯାଇପାରିବ ସେ ବିଷୟ କେହି ଚିନ୍ତା କରିନାହାଁନ୍ତି । କାରଣ କାଦୁଅରେ ଗୋଡ଼ ପୁରାଇବାକୁ କେହି ଇଚ୍ଛା କରନ୍ତି ନାହିଁ । ମାତ୍ର ମୁଁ ଏହାର ନିରାକରଣ ପାଇଁ ଚିନ୍ତାକଲି । ତେଣୁ ଚିଲିକାରୁ କିଛି ମଇଁଷି ନେଇ ଚିପିଲିମାରେ ପାଳନକରି ଫଳାଫଳ ଅନୁଧ୍ୟାନ କରିବାକୁ ଚେଷ୍ଟାକଲି ।

ମାତ୍ର ଦଶହଜାର ଟଙ୍କା ଦେଇ ଚିଲିକାରୁ କୋଡ଼ିଏଟି ମଇଁଷି ନେଇ ଚିପିଲିମାରେ ରଖାଇଲି । ସେମାନେ ଫାର୍ମର ପଡ଼ିଆ ଜମିରେ ଚରିବୁଲି ଖାଇ ଖୁବ୍ ହୃଷ୍ଟପୁଷ୍ଟ ହେଲେ । ସମସ୍ତଙ୍କୁ କୃମି ଔଷଧ ଖୁଆଇ ରୋଗମୁକ୍ତ କରାଯିବାରୁ ସେମାନେ ବେଶ୍ ବଳିଷ୍ଠ ହୋଇ ପ୍ରତିବର୍ଷ ଛୁଆ ଦେବାରେ ଲାଗିଲେ । ଏହି କୋଡ଼ିଏଟି ମଇଁଷିରୁ କେହି ଗୋଟିଏ ମଧ ମଲେ ନାହିଁ । ସେମାନଙ୍କଠାରୁ ଦୁଗ୍ଧ ଉତ୍ପାଦନ ବଢ଼ିବାକୁ ଲାଗିଲା ଓ ସେମାନଙ୍କ ଛୁଆମାନେ ଆହୁରି ବଳିଷ୍ଠ ଓ ହୃଷ୍ଟପୁଷ୍ଟ ହେଲେ । ଏଥିରୁ ଜଣାଗଲା ଯେ ଚିଲିକା ଅଞ୍ଚଳରେ ମଇଁଷିମାନଙ୍କୁ କୃମିନାଶକ ଔଷଧ ଖୁଆଇବାର ଯୋଜନାବଦ୍ଧ ଉଦ୍ୟମ ଆବଶ୍ୟକ । ପଶୁପାଳନ ମନ୍ତ୍ରୀ ଶ୍ରୀ ପ୍ରକାଶଚନ୍ଦ୍ର ଦେବତା ଓ ମନ୍ତ୍ରୀ ଶ୍ରୀ ପ୍ରସନ୍ନକୁମାର ଆଚାର୍ଯ୍ୟ ମଇଁଷି ଓ ଠେକୁଆ ଫାର୍ମ ଉଦ୍‌ଘାଟନ କରିଥିଲେ ।

ବତକ ଫାର୍ମରେ ମାତ୍ର ତିନିଶହ ବତକଙ୍କୁ ରଖା ଯାଇଥିଲା । ସେହି ଫାର୍ମକୁ ଲାଗିଥିବା ହ୍ରଦକୁ ଯାଇ ସେମାନେ ଦଳ ଓ ପୋକଯୋକ ଖାଇ ଫେରିଆସି ଦାନା ଖାଇସାରି ରାତିସାରା ଘର ଭିତରେ ରହନ୍ତି ଓ ରାତିରେ ଅଣ୍ଡା ଦିଅନ୍ତି । ଭୋର ସକାଳୁ ଅଣ୍ଡା ସବୁ ସଂଗ୍ରହ କରି ଅଣ୍ଡାଫୁଟା ଯନ୍ତ୍ରରେ ବସାଇ ଦିଆଯାଏ । ୨୮ ଦିନ ପରେ ସେ ସବୁରୁ ଛୁଆ ବାହାରନ୍ତି । ସେମାନଙ୍କୁ ଛଅରୁ ଆଠସପ୍ତାହ ପର୍ଯ୍ୟନ୍ତ ପାଳନ କରି ଲୋକମାନଙ୍କୁ ବିକ୍ରୀ କରାଯାଏ । ପ୍ରତି ଜିଲାର ମୁଖ୍ୟ ପଶୁପାଳନ ଅଧିକାରୀମାନେ ବତକଛୁଆ ନେବାପାଇଁ କର୍ମଚାରୀମାନଙ୍କୁ ପଠାନ୍ତି । ଏତେସଂଖ୍ୟକ ବତକଛୁଆ ମିଳିପାରୁଛି ବୋଲି ଲୋକଙ୍କର ଧାରଣା ନଥିଲା । ଏହି ଫାର୍ମ ଆରମ୍ଭ କରିବା ପରେ ପ୍ରତି ଜିଲାରେ ବତକ ପାଳନ ପାଇଁ ଲୋକଙ୍କର ଆଗ୍ରହ ସୃଷ୍ଟିହେଲା । ମୁଁ ଯେତେବେଳେ ଚିପିଲିମାରୁ କଟକ ଆସୁଥିଲି ସେତେବେଳେ ମୋ ଜିପ୍‌ରେ ୩୦୦ରୁ ୫୦୦ ପର୍ଯ୍ୟନ୍ତ ବତକଛୁଆଙ୍କୁ ଆଣି, ଢେଙ୍କାନାଳ କଟକ, ଖୋର୍ଦ୍ଧା ବା ପୁରୀ ଜିଲା ପଶୁପାଳନ ଅଧିକାରୀମାନଙ୍କୁ ଦେଉଥିଲି । ସେମାନେ ସ୍ଥାନୀୟ ଲୋକଙ୍କୁ ଏସବୁ ବିକ୍ରୀ କରୁଥିଲେ ଏହାଦ୍ୱାରା ଲୋକଙ୍କର ବତକ ପାଳିବା ପାଇଁ ଆଗ୍ରହ ବଢ଼ିଲା ।

ଚିପିଲିମା ଫାର୍ମରେ ଏତେ ପ୍ରକାର ଜୀବଜନ୍ତୁ ଠେକୁଆ, ବତକ, କୁକୁଡ଼ା ଆଦି ଥିବାରୁ ସ୍ଥାନୀୟଲୋକଙ୍କର ଏସବୁ ଫାର୍ମବୁଲି ଦେଖିବାର ଆଗ୍ରହ ମଧ ବଢ଼ିଲା ।

କ୍ରମଶଃ ସମ୍ବଲପୁର, ବୁର୍ଲା, ହୀରାକୁଦ ଆଦି ସ୍ଥାନରୁ ଲୋକେ ଆଗ୍ରହରେ ଚିପିଲିମା ଫାର୍ମକୁ ଆସି ବତକ, ଠେକୁଆ, ମଇଁଷି, ଜର୍ସିଗାଈ, ମେରିନୋ, କୋରାଏଡ଼େଲ୍ ଓ ବିକାନୀର ମେଣ୍ଢା ସହିତ ସିରୋହୀ ଓ ବିଶାଳକାୟ ଧଳା ଘୁଷରୀମାନଙ୍କୁ ଦେଖିବାକୁ ଆଗ୍ରହ କଲେ । ଫାର୍ମ ଭିତରକୁ ବନ୍ଧୁକ ଓ ଧନୁତୀର ଆଦି ମାରଣାସ୍ତ୍ର ନିଷେଧ କରାଗଲା । ଫାର୍ମ ପରିସରକୁ ନାନାଜାତିର ପକ୍ଷୀ ଆସିବାର

ଦେଖାଗଲା । ପକ୍ଷୀ ବିଶାରଦମାନେ ଆମ ଫାର୍ମ ସାରା ବୁଲି ବୁଲି ନାନା ଜାତିର ପକ୍ଷୀଙ୍କର ଫଟୋ ଉଠାଇବାରେ ଆନନ୍ଦ ନେଲେ ।

ଘୁଷୁରୀ ଫାର୍ମର ପଶୁସଂଖ୍ୟା ପୂର୍ବରୁ ୨୦୦ ଥିବା ସ୍ଥଳେ ମୁଁ ଏହାକୁ ଏକ ହଜାରକୁ ବଢ଼ାଇ ଦେଇଥିଲି । ଫଳରେ ଅଧିକରୁ ଅଧିକ ଧଳାଘୁଷୁରୀ ବିକ୍ରୟ କରାଗଲା ଓ ଘୁଷୁରୀ ପାଳୁଥିବା ଲୋକେ ଅଣ୍ଡିରା ଧଳାଘୁଷୁରୀ ନେଇ ସେମାନଙ୍କ ଦେଶୀ ଘୁଷୁରୀମାନଙ୍କର ଗୁଣାତ୍ମକ ମାନ ବଢ଼ାଇବାରେ ସକ୍ଷମ ହେଲେ । ପୂର୍ବରୁ ଏହି ଫାର୍ମରୁ ସରକାର ବର୍ଷକୁ ମାତ୍ର ୩/୪ ଲକ୍ଷ ଟଙ୍କା ଆୟ ପାଉଥିବା ସ୍ଥଳେ ମୁଁ ଏହାକୁ ବାର୍ଷିକ କୋଡ଼ିଏରୁ ପଚିଶ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ବଢ଼ାଇଦେଇ ପାରିଲି । ଉତ୍ତରାଞ୍ଚଳ ଆୟୁକ୍ତ ବା ଆର୍.ଡ଼ି.ସି ମାନେ ପ୍ରତି ଦୁଇ ତିନିମାସରେ ଚିପିଲିମାକୁ ବୁଲି ଆସିଲେ । ସେମାନଙ୍କ ମଧ୍ୟରୁ ଶ୍ରୀ ଲୁଭିନସ୍ କିଣ୍ଡୋ ଓ ଶ୍ରୀନିବାସ ରଥ ଆମ ଫାର୍ମକୁ ଆସିବାକୁ ଖୁବ୍ ଭଲ ପାଉଥିଲେ । ସେମାନେ ଉତ୍ତରାଞ୍ଚଳରେ ଥିବା ଅନ୍ୟସବୁ ଜିଲାର ପଶୁପାଳନ କାର୍ଯ୍ୟକ୍ରମ ଉପରେ ମୋ ସହିତ ବରାବର ଆଲୋଚନା କରି ସେସବୁର ପ୍ରତିକାର ପାଇଁ ବ୍ୟବସ୍ଥା କରୁଥିଲେ। ମୋ ପୂର୍ବରୁ ଏଠାରେ ଥିବା ଯୁଗ୍ମନିର୍ଦ୍ଦେଶକମାନେ ଏ ସବୁରୁ ଦୂରେଇ ରହିବାକୁ ଚେଷ୍ଟା କରୁଥିଲେ । ତେଣୁ ଆମ ବିଭାଗୀୟ କାର୍ଯ୍ୟପ୍ରତି ରାଜସ୍ୱ ବିଭାଗୀୟ କର୍ମକର୍ତ୍ତା ମାନଙ୍କର ଆଗ୍ରହ ନଥିଲା । ଧୀରେ ଧୀରେ ଅନ୍ୟସବୁ ସରକାରୀ ବିଭାଗ ସହିତ ମୋର ଅଧସ୍ତନ କର୍ମଚାରୀମାନଙ୍କର ସମ୍ପର୍କ ବଢ଼ିବାର ଲକ୍ଷ୍ୟ କଲି । ରାଜ୍ୟ ପଶୁପାଳନ ଫାର୍ମ ଚିପିଲିମାର ୧୮୬୦ଏକର ଜାଗା ଏପର୍ଯ୍ୟନ୍ତ ପଶୁପାଳନ ବିଭାଗ ନାମରେ ନଥିଲା । ପଶ୍ଚିମାଞ୍ଚଳ ରାଜସ୍ୱ କମିଶନର ଲୁଭିନସ୍ କିଣ୍ଡୋଙ୍କୁ ମୁଁ ଏକଥା ଜଣାଇବାରୁ ସେ ଏକ ମିଟିଂ ଡକାଇ ତହସିଲଦାର୍, ଉପଜିଲାପାଳ ଓ ଜିଲାପାଳଙ୍କ ଉପସ୍ଥିତିରେ ମୋ ସହିତ ଆଲୋଚନା କରି ସମସ୍ତ ଜମି ଆମ ବିଭାଗ ନାମରେ କରାଇ ଦେଲେ । ପୂର୍ବରୁ କୌଣସି ଯୁଗ୍ମ ନିର୍ଦ୍ଦେଶକ ଏହା କରାଇ ପାରିନଥିଲେ ।

ଏତେବଡ଼ ଫାର୍ମରେ ଶହ ଶହ ଏକର ଜମି ଖାଲି ରହିଥିବା ସତ୍ତ୍ୱେ ସେସବୁ ଜମିରେ ଗଛ ଲଗାଇବାକୁ ଚିନ୍ତା କଲି । ଫାର୍ମରେ ଥିବା ଘାସଚାଷ ଦାୟିତ୍ୱରେ ଯେଉଁ ଅଧିକାରୀମାନେ ଥିଲେ ସେମାନଙ୍କୁ ଚାରା ଉତ୍ପାଦନ କରିବାକୁ ଆଦେଶ ଦେଲି । ସେ ବର୍ଷ ଷାଠିଏ ହଜାର ଚାରା ତିଆରି କରାଯାଇ ଫାର୍ମ ପରିସରରେ ଲଗାଇ ଦିଆଗଲା ଓ ସେସବୁ ଜଗାରଖା କରାଗଲା । ହେଲେ, ଚାରାଗୁଡ଼ିକ ଦଶବାରଫୁଟ ଉଚ୍ଚ ହୋଇଯିବା ବେଳକୁ ମୁଁ ଚିପିଲିମା ଛାଡ଼ି କଟକ ଚାଲିଆସିଲି । ମୋ ପରେ ଯେଉଁମାନେ ରହିଲେ ସେମାନେ ସେଥି ପ୍ରତି ଦୃଷ୍ଟି ଦେଲେ ନାହିଁ । ଫଳରେ ସ୍ଥାନୀୟ ଲୋକମାନେ ସେସବୁ ଗଛ କାଟି ଜାଳ କରିଦେଲେ । ଦେଖିଲି, ସରକାରୀ ଚାକିରୀ କରି ନିଜ କର୍ତ୍ତବ୍ୟ

ସମ୍ପାଦନ ପ୍ରତି ନିଷ୍ଠା ରଖିବା ଲୋକଙ୍କ ସଂଖ୍ୟା ଅତି ନଗଣ୍ୟ । କେବଳ ଯେ ଫର୍ମମାନଙ୍କରେ ଅଧିକ ଅମନଯୋଗୀ କର୍ମଚାରୀ ଥିଲେ, ତାହା ନୁହେଁ, ବିଭାଗୀୟ ପରିଚାଳନା ଓ ପ୍ରଶାସନିକ କ୍ଷେତ୍ରରେ ମଧ୍ୟ ବହୁ ହେଳାଦସ୍ତିଆ କର୍ମଚାରୀମାନେ ଥିଲେ । ସେମାନଙ୍କ କାର୍ଯ୍ୟ ସମୀକ୍ଷା କରିବାର ଆବଶ୍ୟକତା ଅନୁଭବ କଲି ।

ଏତେଗୁଡ଼ିଏ ଜିଲା ଓ ଫାର୍ମ ଦାୟିତ୍ୱରେ ଥାଇ ପୂର୍ବତନ ଯୁଗ୍ମ ନିର୍ଦ୍ଦେଶକମାନେ ଜିଲା କିମ୍ବା ଉପଖଣ୍ଡ କାର୍ଯ୍ୟାଳୟଗୁଡ଼ିକ ପରିଦର୍ଶନ କରୁନଥିଲେ । ତେଣୁ ବରଗଡ଼, ଦେବଗଡ଼, ନୂଆପଡ଼ା, କଳାହାଣ୍ଡି, ସୋନପୁର ପରି ଜିଲାମାନଙ୍କରେ ବିଭାଗୀୟ କାମ ସବୁ ପଛେଇ ଯାଇଥିଲା । କେନ୍ଦୁଝର, ଫୁଲବାଣୀ, ବଲାଙ୍ଗୀର, କଳାହାଣ୍ଡି, ବଉଦ, ଆଦି ଜିଲାରେ ଥିବା ପଶୁପାଳନ ଫାର୍ମ ସବୁ ଠିକ୍ ଭାବେ ପରିଚାଳିତ ହେଉନଥିଲା । ମୁଁ ପ୍ରତି ଜିଲା ଓ ଉପଖଣ୍ଡମାନ ବୁଲି ଏସବୁର ପ୍ରଶାସନିକ ଉନ୍ନତି ଦିଗରେ ଲାଗିପଡ଼ିଲି । ଜିଲା ଓ ଉପଖଣ୍ଡ ପଶୁଚିକିତ୍ସା ଅଧିକାରୀମାନଙ୍କ କାର୍ଯ୍ୟାଳୟମାନଙ୍କରେ ପ୍ରାୟତଃ କିରାଣି ଶାସନ ଚାଲୁଥିଲା । ତଳିଆ କର୍ମଚାରୀମାନେ କିରାଣିମାନଙ୍କୁ ସନ୍ତୁଷ୍ଟ ନ କରିପାରିଲେ ସେମାନଙ୍କ କାମ ହୋଇପାରୁନଥିଲା । ବିଭାଗୀୟ ଉପଖଣ୍ଡ ଅଧିକାରୀ ବା ଜିଲା ଅଧିକାରୀ ମାନଙ୍କର ପ୍ରଶାସନିକ ଦକ୍ଷତାର ଅଭାବ ଦୃଷ୍ଟିରୁ କିରାଣିମାନେ ତଳିଆକର୍ମଚାରୀମାନଙ୍କୁ ହଇରାଣ ହରକତ କରୁଥିଲେ । ଏକଥା ସତ୍ୟ ଯେ ସରକାରୀ ସ୍ତରରେ କାଗଜପତ୍ର କାମଟା ବେଶୀ । କାଗଜପତ୍ରରେ ନିଷ୍ପତ୍ତି ନେବାରେ ସମୟ ଚାଲିଯାଏ । ଲାଞ୍ଚୁଆ ଅଫିସର ବା କିରାଣିମାନେ ନଥିପତ୍ର ଚାପି ରଖି ଲୋକଙ୍କୁ ହଇରାଣ କରନ୍ତି । ଲାଞ୍ଚ ରିସ୍ୱତ୍ ପାଇଲେ କାମ ହୁଏ । ନିର୍ଦ୍ଦେଶାଳୟରେ ଥାଇ ବହୁ କ୍ଷେତ୍ରରେ ମୁଁ ଏହା ଲକ୍ଷ୍ୟ କରିଛି । ତେଣୁ ମୋ ଅଧିନସ୍ଥ କାର୍ଯ୍ୟାଳୟମାନଙ୍କରୁ ଏଭଳି ଦୁର୍ନୀତି ଦୂରକରିବା ପାଇଁ ଚେଷ୍ଟାକଲି । ମୁଁ ଜିଲା ବା ଉପଖଣ୍ଡ କାର୍ଯ୍ୟାଳୟ ସବୁ ତଦାରଖ କରିବା ପୂର୍ବରୁ ଯୁଗ୍ମ ନିର୍ଦ୍ଦେଶାଳୟରେ ମୋ ଅଧୀନରେ କାର୍ଯ୍ୟକରୁଥିବା ବରିଷ୍ଠ କିରାଣିମାନଙ୍କୁ ସେସବୁ କାର୍ଯ୍ୟାଳୟକୁ ପଠାଇ କାହା ପାଖରେ କେତେ ପିଛିଲାକାମ ବାକୀ ପଡ଼ିଛି ସେସବୁ ତାଲିକାକରି ବିଭାଗୀୟ କର୍ମଚାରୀମାନଙ୍କର ପାଉଣାପତ୍ର ଦେବା କ୍ଷେତ୍ରରେ ଯେଉଁ ସବୁ କିରାଣି ଅବହେଳା କରୁଛନ୍ତି, ସେସବୁ କାଗଜପତ୍ର ଠିକ୍ ରଖିବାପାଇଁ ନିର୍ଦ୍ଦେଶ ଦେଲି ।

କର୍ମଚାରୀ ମାନଙ୍କର ଗସ୍ତଖର୍ଚ୍ଚ, ମେଡ଼ିକାଲ୍‌ବିଲ୍ ଓ ପେନ୍‌ସନ୍ ଦେବା ପାଇଁ ଉପଖଣ୍ଡ ଓ ଜିଲା କାର୍ଯ୍ୟାଳୟ ମାନଙ୍କରେ କେତେକ ଲାଞ୍ଚଖୋର କିରାଣିମାନେ କାଗଜପତ୍ର ଚାପି ରଖିବା ଖବର ମୋ କାନକୁ ଆସିଲା । କେତେକ ବିଭାଗୀୟ

କର୍ମଚାରୀ ସେମାନଙ୍କ ପ୍ରାପ୍ୟ ନପାଇ ବହୁତ ହଇରାଣ ହେଉଥିଲେ । ପରିସ୍ଥିତି ଏପରି ଥିଲାଯେ, ଜଣେ ଜିଲା ପଶୁଚିକିତ୍ସାଅଧିକାରୀ ଅବସର ଗ୍ରହଣ କରିବାପରେ ତାଙ୍କ କାର୍ଯ୍ୟାଳୟରୁ ପେନ୍‌ସନ୍ କାଗଜପତ୍ର ନିର୍ଦ୍ଦେଶାଳୟକୁ ପଠାଇବାକୁ ଦୀର୍ଘ ଏକବର୍ଷ ବିତିଗଲା । ବଡ଼ ଦୁଃଖରେ ସେ ଭଦ୍ରଲୋକ ମୋ ପାଖକୁ ବ୍ୟକ୍ତିଗତ ପତ୍ରଲେଖି ମୋର ସାହାଯ୍ୟ ପ୍ରାର୍ଥନା କଲେ । ତାଙ୍କ ଚିଠିପାଇ ମୋ ଅଫିସ୍‌ର ଜଣେ ଅଭିଜ୍ଞ କିରାଣିଙ୍କୁ ସଂପୃକ୍ତ ଜିଲା ଅଫିସ୍‌କୁ ପଠାଇ ଏଭଳି କାଗଜପତ୍ରସବୁ ଜବତ କରିବାପାଇଁ ନିର୍ଦ୍ଦେଶ ଦେଲି ।

ଦୁଇଦିନ ଛାଡ଼ି ମୁଁ ନିଜେ ଯାଇ ସେହି କାର୍ଯ୍ୟାଳୟରେ ପହଞ୍ଚି ବୁଝିଲି ଯେ, ସେଠାକାର ହେଡ୍‌କ୍ଲର୍କ ଖୁବ୍ ଲାଞ୍ଚୁଆ ଲୋକ । ଦୁଇ ଚାରିଜଣଙ୍କ ପେନ୍‌ସନ୍ କାଗଜପତ୍ର ବର୍ଷେ ଉପରେ ଏଠି ପଡ଼ିରହିଛି । ମୁଁ ସେ ହେଡ୍‌କ୍ଲର୍କଙ୍କୁ ଡାକି ଏପରି କରିବାର କାରଣ ପଚାରିବାରୁ ସେ ମୋତେ ଏଣୁ ତେଣୁ କହି ସଫେଇ ଦେବାକୁ ଚେଷ୍ଟା କଲେ । ତାଙ୍କ କଥାରେ ସନ୍ତୁଷ୍ଟ ନହୋଇ ତାଙ୍କୁ ନିଲମ୍ବିତ କରିବାକୁ ଆଦେଶ ଦେଲି । ସେହି ନିର୍ଦ୍ଦେଶ ଟାଇପ୍ କରିବାକୁ ପଠାଇବା ମାତ୍ରେ ସେ ଭଦ୍ରଲୋକ ଆସି ମୋ ଗୋଡ଼ ତଳେ ଲମ୍ବହୋଇ ପଡ଼ିଯାଇ କହିଲେ, ସାର୍ ମୋତେ ରକ୍ଷାକରନ୍ତୁ । ମୁଁ ସବୁତକ କାମ ଯଥାଶୀଘ୍ର କରିଦେବି । ଦେଖିଲି, ତାଙ୍କୁ କାର୍ଯ୍ୟରୁ ନିଲମ୍ବିତ କରିଦେଲେ କାମସବୁ ପଡ଼ିରହିବ । ଏତେଶୀଘ୍ର ଏ କାର୍ଯ୍ୟାଳୟକୁ ଜଣେ ହେଡ୍‌କ୍ଲର୍କ ଆସିବା ମଧ୍ୟ ସମ୍ଭବନୁହେଁ । ତେଣୁ କାର୍ଯ୍ୟ ହାସଲ କରିବାରେ ବିଳମ୍ବହେବ ।

ତାଙ୍କୁ କହିଲି, ପେନ୍‌ସନ୍ କାଗଜପତ୍ର ଦୁଇଦିନ ଭିତରେ ପଠାଅ ଓ ଅନ୍ୟସବୁ କର୍ମଚାରୀ ମାନଙ୍କର ପ୍ରାପ୍ୟ ବିଷୟକ ନଥିସବୁ ଏକସପ୍ତାହ ଭିତରେ ନିଷ୍ପତ୍ତି ନେଇ ମୋତେ ଜଣାଅ । ତାଛଡ଼ା ଭବିଷ୍ୟତରେ ଏପରି କରିବ ନାହିଁ ବୋଲି ଲେଖିଦିଅ । ମୋ କଥାମାନି ସେ ସବୁ କାମ କରିଦେଲେ । ଏହି କଥା ପଶ୍ଚିମାଞ୍ଚଳର ସମସ୍ତ ଉପଖଣ୍ଡ ଓ ଜିଲା କାର୍ଯ୍ୟାଳୟ ମାନଙ୍କରେ ପ୍ରଘଟ ହୋଇଗଲା । ଫଳରେ ଯେତେସବୁ ପିଛିଲା କାମ ଶୀଘ୍ର ସାରିଦେବା ପଇଁ କିରାଣିମାନେ ସବୁଆଡ଼େ ଲାଗିପଡ଼ିଲେ । ନିର୍ଦ୍ଦେଶାଳୟରେ ମଧ୍ୟ ଏକଥା ଜଣାପଡ଼ିଗଲା । ମାତ୍ର ନିର୍ଦ୍ଦେଶକ ଏମ୍. ରାଜାମଣି କୌଣସି ପ୍ରକାର ପ୍ରଭାବିତ ହେଲେ ନାହିଁ । କାରଣ ସେ ଠିକ୍‌ଭାବେ ଜିଲା କାର୍ଯ୍ୟାଳୟ ସବୁ ପରିଦର୍ଶନ କରି ପାରୁନଥିଲେ । ପଶ୍ଚିମାଞ୍ଚଳର ଆମ ବିଭାଗୀୟ କର୍ମଚାରୀମାନେ ସେମାନଙ୍କର ପ୍ରାପ୍ୟ ପାଇବା ବିଷୟରେ ନିଶ୍ଚିନ୍ତ ହେବାର ବାତାବରଣ ବିଭାଗୀୟ କାର୍ଯ୍ୟ ସାଧନରେ ସହାୟକ ହେଲା ।

ପଶ୍ଚିମାଞ୍ଚଳ ଜିଲ୍ଲା ମାନଙ୍କରେ ସର୍ବାଧିକ ପଶୁପାଳନ ଫାର୍ମ ଅଛି । ରାଜା ରାଜୁଡ଼ା ସମୟରେ ରାଜାମାନେ ନିଜନିଜର ଡ଼ାଏରୀଫାର୍ମ କରିଥିଲେ । ତଦନୁଯାୟୀ ବଲାଙ୍ଗୀର, ଭବାନୀପାଟଣା, ସୁନ୍ଦରଗଡ଼, କେନ୍ଦୁଝର, ବଉଦ, ଫୁଲବାଣୀ, ଆଦି ଜିଲାମାନଙ୍କରେ ବଡ଼ ବଡ଼ ଗୋଶାଳା, ଛେଳିଫାର୍ମ, ମେଣ୍ଢାଫାର୍ମ, ଘୁଷୁରୀଫାର୍ମ ଓ କୁକୁଡ଼ାଫାର୍ମ ମାନ ଥିଲା । ସେସବୁ ଫାର୍ମରେ ପରିଚାଳକ, କର୍ମଚାରୀ ଓ ଦିନ ମଜୁରିଆମାନେ କାମ କରୁଥିଲେ ଓ ସେଥିଲାଗି ପ୍ରତିମାସରେ ବହୁତ ଖର୍ଚ୍ଚ ହେଉଥିଲା । ମାତ୍ର ଦୁଧ, ଅଣ୍ଡା ବା ମାଂସ ବିକ୍ରୀରୁ ସେତେବେଶୀ ରାଜସ୍ୱ ମିଳୁନଥିଲା । ତେଣୁ ମୁଁ ପ୍ରତିଫାର୍ମ ପରିଦର୍ଶନ କରି ଅନୁତ୍ପାଦକ ପଶୁମାନଙ୍କ ବଦଳରେ ଅଧିକ ଉତ୍ପାଦନକ୍ଷମ ପଶୁମାନଙ୍କୁ ରଖାଇବାର ବ୍ୟବସ୍ଥାକଲି ଓ ପଶୁପକ୍ଷୀ ମାନଙ୍କର ଖାଦ୍ୟ, ପାଳନପ୍ରକ୍ରିୟା, ରୋଗନିରାକରଣ କାର୍ଯ୍ୟ ଆଦିରେ ଉନ୍ନତି ଆଣିବା ପାଇଁ ଚେଷ୍ଟା କଲି । ଫାର୍ମମାନଙ୍କର ଅନେକ ଅମନଯୋଗୀ, ଅସହଯୋଗୀ ବା ଖଳ ପ୍ରକୃତିର ଲୋକ ମଧ୍ୟ ଥିଲେ । ତେଣୁ ସେଭଳି ଲୋକମାନଙ୍କୁ ଧମକ ଚମକ ଦେଇ କାମ କରାଇନେବାକୁ ଚେଷ୍ଟାକଲି । ବଲାଙ୍ଗିର ଦୁଗ୍ଧ ଉତ୍ପାଦନ ଫାର୍ମରେ କେତେଜଣ ଅସହଯୋଗୀ ଦିନମଜୁରିଆ କାମ କରୁଥିଲେ । ସେମାନେ ପରିଚାଳକଙ୍କୁ ଧମକ ଚମକ ଦେଇ ଡରାଇ ରଖିବାକୁ ଚେଷ୍ଟା କରୁଥିଲେ । ସେଠାକାର ଶ୍ରମିକ ସଂଘ ମଧ୍ୟ ସେମାନଙ୍କୁ ପ୍ରୋତ୍ସାହିତ କରୁଥିଲା । ମୁଁ ଏକଥା ଜାଣି ଅସହଯୋଗୀ ଲୋକମାନଙ୍କୁ କାର୍ଯ୍ୟରୁ ବହିଷ୍କାର କରିବା ପାଇଁ ଧମକ ଦେଲି । କିଛିଦିନ ପାଇଁ ସେମାନେ ଟିକେ ଦବିଗଲେ । ମାତ୍ର ପୁଣି ସେଠାରେ ବିଶୃଙ୍ଖଳା ଆରମ୍ଭ ହୋଇଗଲା । ଏ ଖବର ପାଇ ମୁଁ ବଲାଙ୍ଗିର ଗଲି ଓ ସେମାନଙ୍କ ମଧ୍ୟରୁ ଅଧିକ ବିଶୃଙ୍ଖଳ ଶ୍ରମିକକୁ କାଲିଠାରୁ କାମ ନଦେବାକୁ ନିର୍ଦ୍ଦେଶ ଦେଇ ଅନ୍ୟମାନଙ୍କୁ ସାବଧାନ କରାଇଦେଲି ।

ମୋ ରୁକ୍ଷ କଥା ଶୁଣି ବଲାଙ୍ଗିରର ଜିଲା ମୁଖ୍ୟ ପଶୁଚିକିତ୍ସା ଅଧିକାରୀ ମୋତେ ଗୁପ୍ତରେ କହିଲେ ସାର୍! ଏଠାରେ ସାବଧାନତାର ସହିତ କାର୍ଯ୍ୟ ନକଲେ ପରିଣାମ କ୍ଷତିକାରକ ହେବ । କାରଣ ବର୍ଷକତଳେ ଜଣେ କର୍ମଚାରୀ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ଯୋଗୁଁ ସେ ଗୁଣ୍ଡାପଠାଇ ରାତିରେ ମୋ ଉପରେ ଆକ୍ରମଣ କରିଥିଲା । ମୋର ମୁଣ୍ଡ ଫାଟିଗଲା । ପୋଲିସ୍ କିଛି କରିପାରିଲା ନାହିଁ । କହିଲି, ତୁମେ ଏଠି ରହୁଛ । ତେଣୁ ସେ ଷଡ଼ଯନ୍ତ୍ର କରି ତୁମକୁ ମାଡ଼ ମରାଇଲା । ମୁଁ ଏଠାରେ ରହୁନାହିଁ । ତେଣୁ ମୋର ସେ ଭୟ ନାହିଁ । ତାଛଡ଼ା, ଏପରି ଲୋକଙ୍କୁ ଭୟକରି ଯଦି କୌଣସି କାର୍ଯ୍ୟାନୁଷ୍ଠାନ ନ କରିବା ତାହେଲେ, ଫାର୍ମରେ ସେମାନଙ୍କର ଆଧିପତ୍ୟ ବଢ଼ିଚାଲିବ ଓ ପରିଚାଳକ ବଦନାମ ହେବେ । ତେଣୁ ମୁଁ ଉଚିତ କାର୍ଯ୍ୟାନୁଷ୍ଠାନ କରିଛି । ମୋ

ଉପରେ ଯଦି ଆକ୍ରମଣ ହୁଏ, ତାହେଲେ ଫଳ ବିଷମୟ ହେବ । ଏପରି କହି ମୁଁ ଚିପିଲିମା ଫେରି ଆସିଲି ।

ବଲାଙ୍ଗିରରୁ ଚିପିଲିମା ଫେରି ଆସିବାପରେ ଏଠାକାର ଶ୍ରମିକମାନେ ସେମାନଙ୍କର ୟୁନିୟନ ପକ୍ଷରୁ ମଜୁରୀ ବଢ଼ାଇବା ପାଇଁ ମୋତେ ଦରଖାସ୍ତ ଦେଲେ । ସମ୍ବଲପୁରର ଜଣେ ରାଜନୈତିକ ନେତା ତାଙ୍କ ସଭାପତି ଥାଆନ୍ତି, ସେ ପ୍ରାୟ ପ୍ରତିମାସରେ ମୋତେ ଭେଟି ଶ୍ରମିକମାନଙ୍କର ବିଭିନ୍ନ ଦାବୀ ଜଣାନ୍ତି । ତାଙ୍କୁ ମୁଁ କହିଲି, ଯେଉଁ ଶ୍ରମିକମାନେ ଏ ଫାର୍ମରେ କାମ କରୁଛନ୍ତି, ସେମାନେ ମୋତେ ତାଙ୍କର ଦୁଃଖ ଜଣାଇଲେ ମୁଁ ତାହା ବିଚାର କରିବି । ଆପଣ ମୋ ଫାର୍ମ ସହିତ କୌଣସି ସୂତ୍ରରୁ ଜଡ଼ିତ ନୁହନ୍ତି । ତେଣୁ ସେମାନଙ୍କୁ କହନ୍ତୁ ମୋତେ ଭେଟି ସେମାନଙ୍କର ଅସୁବିଧା ସୁବିଧା କଥା ଜଣାଇବେ । ପାଖ ଫାର୍ମର ଜଣେ ଫିଲ୍‌ଡ଼ମ୍ୟାନ୍ ଜରିଆରେ କେତେଜଣ ଶ୍ରମିକଙ୍କୁ ଡକାଇଲି । ସେମାନଙ୍କର ଦାବୀ ବିଷୟରେ ସବୁକଥା ଶୁଣି କହିଲି, ଏସବୁ କଥା ତୁମେ ସମ୍ବଲପୁରର ସେହି ରାଜନୈତିକ ନେତାଙ୍କ ଜରିଆରେ ମୋତେ ଜଣାଇବା ଠିକ୍ ନୁହେଁ । ତୁମର ନେତୃତ୍ୱ ନେବା ପାଇଁ ସେ ଭଦ୍ରଲୋକ ନିଶ୍ଚୟ ତୁମଠାରୁ କିଛି ପାରିଶ୍ରମିକ ନେଉଥିବେ । ଜଣେ ମହିଳାଶ୍ରମିକ କହିଲା, ଆଜ୍ଞା ପ୍ରତିମାସରେ ଆମେ ଜଣପିଛା ଦଶଟଙ୍କା କରି ଦେଉ । ପଚାରିଲି ତୁମେ ଯେତେବେଳେ ମୋ ଅଧୀନରେ କାମକରୁଛ ମୋତେ ତୁମର ନେତା ମାନିଲେ କ'ଣ ହୁଅନ୍ତା ନାହିଁ ? ତୁମ ପାଇଁ ମୁଁ ମାଗଣାରେ କାମ କରନ୍ତି । ପ୍ରତି ମାସରେ ତୁମର ଦଶ ଟଙ୍କା ରହିଯାଆନ୍ତା । କାହିଁକି ତୁମେ ପର ଲୋକକୁ ପୋଷୁଛ ? ସେ ସ୍ତ୍ରୀଲୋକ କହିଲା, ଆଜ୍ଞା ପୂର୍ବରୁ ଯେଉଁ ଯୁଗ୍ମ ନିର୍ଦ୍ଦେଶକମାନେ ଥିଲେ କେହି ଦିନେ ଆମକୁ ଏପରି କହିନାହିଁ । ଆପଣ ଯାହା କହୁଛନ୍ତି, ସତରେ କ'ଣ ଆପଣ ଆମ ପାଇଁ କାମ କରିବେ ? କହିଲି ତୁମେ ମୋ ପାଇଁ ଏତେ କାମ କରୁଛ ଆଉ ମୁଁ କାହିଁକି ତୁମ ପାଇଁ ନ କରି ପାରିବି ? ଅସଲ କଥା ହେଉଛି ତୁମେ ମୋତେ ବିଶ୍ୱାସ କଲେ ହେଲା । ସେ କହିଲା ଆପଣ ଆମର ମାଆବାପା । ଆପଣଙ୍କୁ ଆମେ ବିଶ୍ୱାସ ନକରିବୁ କାହିଁକି ? କହିଲି ତୁମ ପେଟରୁ କାଟି ମାସକୁ ଦଶଟଙ୍କା ଆଉ ଦିଅନାହିଁ ।

ସ୍ତ୍ରୀ ଲୋକଟି ମୋ କଥାରେ ପ୍ରଭାବିତ ହୋଇ ଅନ୍ୟସବୁ ଶ୍ରମିକଙ୍କୁ ମଧ୍ୟ ଏହି କଥା କହିଲା । ଶ୍ରମିକ ସଂଘର ଉପସଭାପତି ଓ ସମ୍ପାଦକ ଆସି ମୋତେ ଭେଟିଲେ । କହିଲେ ଆପଣଙ୍କ ପାଇଁ ଆମ ଶ୍ରମିକସଂଘ ଭାଙ୍ଗିବାକୁ ଯାଉଛି । ପଚାରିଲି, ମୋର କ'ଣ ଦୋଷ ହେଲା ? ସେମାନେ କହିଲେ, ଆମର କେତେକ ସଭ୍ୟସଭ୍ୟା ଆମ ସଂଘର ସଭାପତିଙ୍କୁ ବାହାରି ଯିବାକୁ କହୁଛନ୍ତି । କହିଲି, ତୁମ ସଭାପତିଙ୍କୁ ବାହାର କରିଦେବାକୁ ମୁଁ କାହାକୁ

କହିନାହିଁ । ମାତ୍ର ଅଯଥାରେ ପଇସା ଖର୍ଚ୍ଚକରି ମୋ ଭିତରେ ଓ ତୁମ ଭିତରେ ଜଣେ କାହାକୁ ଦଲାଲ ରଖିବାଦ୍ୱାରା ତୁମର କିଛି ଲାଭ ହେବନାହିଁ । ତୁମର ହାନୀଲାଭ ଦୁଃଖସୁଖ ମୋତେ ସିଧା କହିବ । ମୋର ଶାସନ ତାନ୍ତ୍ରିକ କ୍ଷମତା ଭିତରେ ତୁମପାଇଁ ଯାହା ସମ୍ଭବ, ସେତକ କରିବାକୁ ମୁଁ ପଛେଇବି ନାହିଁ । କେବଳ ତୁମମାନଙ୍କର ମୋପ୍ରତି ବିଶ୍ୱାସ ଥିଲେ ହେଲା । ଏକଥା ଶୁଣି ସେମାନେ ଫେରିଗଲେ । ସେହି ଦିନଠାରୁ ସମ୍ବଲପୁରର ସେ ରାଜନୈତିକ ବ୍ୟକ୍ତି ଆଉ ମୋ ପାଖକୁ ଆସିନାହାନ୍ତି ।

କଟକ ଆସି ନିର୍ଦ୍ଦେଶାଳୟରେ ବୁଝିଲି ଯେ, ବିଭାଗରେ ଖାଲି ପଡ଼ିଥିବା ଚତୁର୍ଥଶ୍ରେଣୀ କର୍ମଚାରୀଙ୍କ ସ୍ଥାନ ପୂରଣ କରିବାକୁ ମୋର ପୂର୍ଣ୍ଣକ୍ଷମତା ଅଛି । ଏଥିଲାଗି ସରକାରଙ୍କୁ ପଚାରିବାକୁ ହେବ ନାହିଁ । ତେଣୁ ମୋ ଅଧୀନସ୍ଥ ପଶ୍ଚିମାଞ୍ଚଳର ଦଶଟି ଜିଲ୍ଲାରେ ଖାଲି ପଡ଼ିଥିବା ଚତୁର୍ଥଶ୍ରେଣୀ ପଦବୀ ଗୁଡ଼ିକର ଏକତାଲିକା ପ୍ରସ୍ତୁତ କରିବାପାଇଁ ଜିଲା ମୁଖ୍ୟଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଲି । କେତେ ଜିଲାରେ ଏଥିରୁ ଆର୍ଥିକଲାଭ ଉଠାଇବା ପାଇଁ ମଧ ସ୍ୱପ୍ନ ଦେଖିବା ଆରମ୍ଭ ହୋଇଗଲା । ଏ କଥା ମୋ କାନରେ ବାଜିବାମାତ୍ରେ ଜିଲାମାନଙ୍କୁ ଗସ୍ତକରି ଖାଲିପଡ଼ିଥିବା ସ୍ଥାନଗୁଡ଼ିକର ତଥ୍ୟ ସଂଗ୍ରହ କରିନେଲି । ପ୍ରତି ଜିଲ୍ଲାରେ ବିଭିନ୍ନ ପଶୁପାଳନ ଫାର୍ମମାନଙ୍କରେ ଦିନ ମଜୁରିଆ ଭାବେ କାର୍ଯ୍ୟ କରୁଥିବା ଲୋକମାନ୍‌ଙ୍କର ତାଲିକା ମଧ ପ୍ରସ୍ତୁତ ହେଲା । ସେହି ତାଲିକାରୁ ପଚାଶ ବର୍ଷ ବୟସରୁ କମ୍ ବୟସ୍କ ଲୋକଙ୍କୁ ବରିଷ୍ଠତା ଭିତ୍ତିରେ ବାଛି ଚତୁର୍ଥ ଶ୍ରେଣୀ ଚାକିରୀରେ ମୁତୟନ କରିଦେଲି । ଏହି ଦଶଜିଲ୍ଲାରେ ପ୍ରାୟ ଚାରିଶହ ଶ୍ରମିକ ସ୍ଥାୟୀ ଚାକିରୀ ପାଇଗଲେ ।

ଦଶଟି ଜିଲ୍ଲାର ଶ୍ରମିକମାନଙ୍କ ମଧ୍ୟରୁ ପ୍ରାୟ ପଚାଶ ଜଣ କେବଳ ଚିପିଲିମା ଫାର୍ମର ଥିଲେ । କାହାକୁ ଲାଞ୍ଚ ରିସ୍ୱତ୍ ନଦେଇ ସେମାନେ ଚାକିରୀ ପାଇଯିବା ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ମନେ ହେଉଥିଲା । ଏହା ପଛରେ ଏକ ସୁଚିନ୍ତିତ ଯୋଜନା ଥିଲା । ଚିପିଲିମା ଫାର୍ମର ଛେଳି ଓ ମେଣ୍ଢା ଫାର୍ମର ପରିଚାଳକ ଡାକ୍ତର ବିଷ୍ଣୁଚରଣ ମହାନ୍ତି ଜଣେ ସଚ୍ଚୋଟ କର୍ମଯୋଗୀଲୋକ ଥିଲେ । ଏଠାକାର ଏଷ୍ଟାବ୍ଲିଶ୍‌ମେଣ୍ଟ ଅଫିସରଙ୍କ କଟକ ବଦଳି ହେବା ପରେ ତାଙ୍କୁ ସେହି ଦାୟିତ୍ୱରେ ରଖିଲି । ଖାଲି ପଡ଼ିଥିବା ଚତୁର୍ଥଶ୍ରେଣୀ ଚାକିରୀରେ ଲୋକ ବାଛିବା ବେଳେ ଯେପରି କାହାଠାରୁ ପଇସାଟିଏ କାରବାର ନହୁଏ ସେଥିପ୍ରତି ସଜାଗ ରହିବାପାଇଁ ତାଙ୍କୁ କହିଲି । ତେଣୁ ସେ ଅତି ସତର୍କତା ସହକାରେ ଚାକିରୀ ପାଇବାକୁ ଯୋଗ୍ୟ ଶ୍ରମିକମାନଙ୍କର ତାଲିକା ପ୍ରସ୍ତୁତ କଲେ । ତଥାପି ବିଷ୍ଣୁବାବୁ ଦିନେ ମୋତେ ଚୁପ୍ କରି କହିଲେ, ସାର୍ ଚାକିରୀ ପାଇବା ଲାଗି ଲୋକେ ହଜାର ହଜାର ଟଙ୍କା ଧରି ବୁଲିଲେଣି । ଅନେକ ଆସି ମୋତେ ମଧ୍ୟ ପଇସା ଯାଚୁଛନ୍ତି ।

ଆଜିକାଲି ଚାକିରୀ ପାଇବାକୁ ଲୋକେ କୋଡ଼ିଏରୁ ପଚାଶ ହଜାର ଟଙ୍କା ପର୍ଯ୍ୟନ୍ତ ଦେବା ପାଇଁ ତିଆର ଅଛନ୍ତି । ଆପଣ ତାଙ୍କଠାରୁ ଟଙ୍କା ନନେଲେମଧ ତାଙ୍କଠାରୁ ଆପଣଙ୍କ ନାମ କହି ଟଙ୍କା ନେଇଯିବାକୁ ଲୋକ ଅଛନ୍ତି । ତେଣୁ ସମସ୍ତଙ୍କୁ ଡାକି ଏହି ଫାର୍ମର ସତ୍‌କାର୍ଯ୍ୟରେ ବିନିଯୋଗ କଲା ଭଳି ସେମାନଙ୍କ ଠାରୁ ଅଳ୍ପ କିଛି ଟଙ୍କା ନେବାକୁ କହି ଦେବା ଉଚିତ ହେବ । କହିଲି ଠିକ୍ ଅଛି ପରେ ସେ କଥା ଚିନ୍ତା କରିବା । ଏବେ ଆପଣ ସମସ୍ତଙ୍କୁ ସାବଧାନ କରାଇ ଦିଅନ୍ତୁ, ଯେପରି ଚାକିରୀ ପାଇବା ଲାଗି କେହି ଲାଞ୍ଚ କାରବାର ନକରନ୍ତି । ଥରେ କେହି ଲାଞ୍ଚ ଦେବା କଥା ଜାଣିଲେ ତାକୁ ବାହାର କରି ଦିଆଯିବ ।

ପ୍ରତିଦିନ ସକାଳୁ ଗାଡ଼ି ଚଳାଇ ମୁଁ ଚିପିଲିମା ପରିସରରେ ଥିବା ବିଭିନ୍ନ ଫାର୍ମ ବୁଲି କାମ ଦେଖେ । କୁକୁଡ଼ା ଫାର୍ମରେ ଭାବଗ୍ରାହୀ ନାମକ ଜଣେ ଦକ୍ଷ ଶ୍ରମିକର ନିଷ୍ଠାପର କାମ ଦେଖି ତାକୁ ଚତୁର୍ଥ ଶ୍ରେଣୀ କର୍ମଚାରୀ ଭାବେ ସେହି ଫାର୍ମରେ ମୁତୟନ କରିବାକୁ ଫାର୍ମ ପରିଚାଳକ ମୋ ପଛରେ ଲାଗିଗଲେ । ମୁଁ ମଧ ତାଙ୍କୁ ଅସ୍ତି ବାଚକ ସୂଚନା ଦେଲି । ଦିନେ ସକାଳୁ ସେହି ଫାର୍ମକୁ ମୁଁ ଗଲାବେଳେ ଭାବଗ୍ରାହୀ ହାତଯୋଡ଼ି ମୋ ଆଗେ ଠିଆହୋଇ କିଛି କହିବ ବୋଲି ଅନୁରୋଧ କଲା । କହିଲି, ଯାହା କହିବାର କଥା କହ । ସେ କହିଲା, ସାର୍ ଆପଣଙ୍କୁ ଏକାନ୍ତରେ କହିବି । ମୁଁ ତାକୁ ଗୋଟିଏ ଗଛମୂଳକୁ ଡାକି ନେଇ ଯାହା କହିବାର କହିବାକୁ କହିଲି । ସେ ଚାରିଆଡ଼କୁ ଚାହିଁ କହିଲା ସାର୍ ଏଠି କାମ କରୁଥିବା ଲୋକମାନେ ମୋଆଡ଼େ ଦୃଷ୍ଟି ରଖିଛନ୍ତି । ଆପଣଙ୍କୁ ଏକାନ୍ତରେ କହିବାକୁ ମୋର ଇଛା । କହିଲି, ଆଜି ତୁମେ ଅଫିସ୍‌କୁ ଆସ । ମୋ କୋଠରୀରେ ଏକାନ୍ତରେ କଥା ହେବା । ଫାର୍ମ ପରିଚାଳକଙ୍କୁ ପଚାରି ବୁଝିଲି ଯେ ସେ ଚାକିରୀ ପାଇବା ପାଇଁ ଅନେକ ଆଗରୁ ପୂର୍ବତନ ଯୁଗ୍ମନିର୍ଦ୍ଦେଶକମାନଙ୍କ ପଛରେ ଲାଗି ଲାଗି ନିରାଶ ହୋଇଥିଲା । ଏବେ ଆପଣଙ୍କୁ ହୁଏତ ତାର ମନକଥା କହିବାକୁ ଚାହୁଁଥିବ । ସେ କଥାରେ ଗୁରୁତ୍ୱ ନ ଦେଇ ଫାର୍ମ ପରିଦର୍ଶନ ପରେ ଅଫିସକୁ ଚାଲି ଆସିଲି ।

ପ୍ରାୟ ବାରଟା ବେଳସୁଦ୍ଧା ଭାବଗ୍ରାହୀ ଆସି ମୋତେ ଦେଖା କରିବା ପାଇଁ ପିଅନ ହାତରେ ଚିଠା ପଠାଇଲା । ତାକୁ ଡକାଇଲି । ସେ ଆସି ମୋ ପାଦତଳେ ପଡ଼ି ଟେବୁଲ୍ ଉପରେ ବିଡ଼ାଏ ଟଙ୍କା ରଖିଦେଲା । ମୁଁ ସାଙ୍ଗେ ସାଙ୍ଗେ ବିଷ୍ଣୁବାବୁଙ୍କୁ ଡକାଇ ପଠାଇଲି । ବିଷ୍ଣୁବାବୁଙ୍କୁ ଦେଖି ଭାବଗ୍ରାହୀ ଥରିବାକୁ ଲାଗିଲା । କହିଲି; କୌଣସି ଭୟ କର ନାହିଁ । ତୁମଠାରୁ ଟଙ୍କା ନିଆଯିବ । ବିଷ୍ଣୁବାବୁ କହିଲେ ସାର୍ ମୁଁ ଯାହା କହୁଥିଲି, ଏବେ ତାର ପ୍ରମାଣ ପାଇଲେ । ଏବେ ସମସ୍ତେ ଟଙ୍କା ଧରି ବୁଲୁଛନ୍ତି । ସେମାନଙ୍କ ଠାରୁ ଟଙ୍କା ନେବାକୁ ଲୋକେ ଜାଲ ପକାଇ ବସିଛନ୍ତି ।

ସେ କହିଲେ ଆପଣ ଏଠିକି ଆସିବାର ବର୍ଷକ ପୂର୍ବରୁ ପୂର୍ବତନ ଯୁଗ୍ମନିର୍ଦ୍ଦେଶକ ଲକ୍ଷ୍ମୀଧରବାବୁ ଜଗନ୍ନାଥ ବଳଭଦ୍ର ସୁଭଦ୍ରା ମୂର୍ତ୍ତି ଆଣି ଏ ଫାର୍ମରେ ଅବ୍ୟବହୃତ ହୋଇ ପଡ଼ିରହିଥିବା ଘାସ କଟା ସେଡ୍‌ରେ ସ୍ଥାପନ କରି ଗଲେ । ଆପଣ ଆସିବା ପରେ ତାଙ୍କ ସେବାପୂଜାର ଉତ୍ତମ ବ୍ୟବସ୍ଥା ହୋଇପାରିଛି । ମାତ୍ର ଠାକୁରଙ୍କ ପାଇଁ ଗୋଟିଏ ସ୍ଥାୟୀ ମନ୍ଦିର ଦରକାର । ତେଣୁ ଚାକିରୀ ପାଉଥିବା ଲୋକେ ସେହି ମନ୍ଦିର ତିଆରି ପାଇଁ କିଛି ଦାନ କରନ୍ତୁ । ତାଙ୍କ ପ୍ରସ୍ତାବ ମୋ ମନକୁ ପାଇଲା । ଭାବଗ୍ରାହୀକୁ କହିଲି, ଏ ଟଙ୍କା ତୁ ନେଇଯା । ଜଗନ୍ନାଥ ମନ୍ଦିର ପାଇଁ ଏବେ ଟଙ୍କା ଦରକାର । ଏହି ମନ୍ଦିର ତୋଳିବାକୁ ସ୍ୱଇଚ୍ଛାରେ ଯାହା ତୋର ଦେବା କଥା ବିଷ୍ଣୁବାବୁଙ୍କୁ ଦେଲେ ସେ ତୋତେ ରସିଦ ଦେଇ ତାର ହିସାବ ରଖିବେ । ଯା’ ତାଙ୍କୁ ଦେଖାକର ।

ବିଷ୍ଣୁବାବୁ ତାଙ୍କ କୋଠରୀକୁ ଚାଲିଗଲେ । ଅଧଘଣ୍ଟା ଛାଡ଼ି ହସି ହସି ମୋ କୋଠରୀକୁ ପଶି ଆସୁଆସୁ କହିଲେ, ସାର୍ ଭାବ କେତେ ଟଙ୍କା ଦେଲା ଶୁଣିବେ ? ମୁଁ ତାଙ୍କ ମୁହଁକୁ ଚାହିଁଲି । ସେ କହିଲେ, ଦଶହଜାର ଟଙ୍କାରୁ ସେ ଜଗନ୍ନାଥଙ୍କ ପାଇଁ ମାତ୍ର ପାଞ୍ଚଶହ ଟଙ୍କା ଦାନ କଲା । ତାକୁ ପଚାରିବାରୁ କହିଲା, ଏ ଟଙ୍କା ସାର୍‌ଙ୍କୁ ଦେବାକୁ ଆଣିଥିଲି । ସେ ତ ନେଉନାହାନ୍ତି ଆଉ ଠାକୁରଙ୍କ ପାଇଁ ସବୁତକ ଟଙ୍କା କାହିଁକି ଦେବି ? ସମସ୍ତେ ଯାହା ଦେବେ ମୁଁ ମଧ୍ୟ ସେତିକି ଦେବି । ତା ପରଦିନ ଫାର୍ମର ଗୋଟିଏ ସଭା ଡାକିଲି । ଜଗନ୍ନାଥ ମନ୍ଦିର କିପରି ହୋଇ ପାରିବ ସେ କଥା ଆଲୋଚନା ହେଲା । ଅଧିକାଂଶ ଲୋକ ମତ ଦେଲେ ଯେ, ଯେଉଁମାନେ ନୂଆ ଚାକିରୀ ପାଇବେ ସେମାନଙ୍କୁ ମନ୍ଦିରପାଇଁ ଟଙ୍କା ଦେବାକୁ ପଡ଼ିବ । କହିଲି, ଆପଣମାନଙ୍କ ପ୍ରସ୍ତାବ ଗ୍ରହଣୀୟ । ମାତ୍ର ସେମାନଙ୍କୁ ନ ବାଧିଲା ପରି ଟଙ୍କା ଆଦାୟ ହେଉ । ଏକାବେଳକେ ପାଞ୍ଚ ଦଶହଜାର ଟଙ୍କା ଆଦାୟ କରିବା ଠିକ୍‌ନୁହେଁ । ଚାକିରୀ ପାଇସାରି ଦରମା ପାଇଲେ ସେମାନେ ଏକବର୍ଷ ପର୍ଯ୍ୟନ୍ତ ମାସକୁ ଟ.୫୦୦ କରି ଦେଇପାରିବେ । ତଦ୍ୱାରା ପ୍ରତି ଲୋକକୁ ମାତ୍ର ଟ.୬୦୦୦ ଦେବାକୁ ହେବ ଓ ସେ ଟଙ୍କାକୁ ଆଧାରକରି ମନ୍ଦିର ତୋଳା କାର୍ଯ୍ୟ ଚାଲୁରହିବ । ଏ ପ୍ରସ୍ତାବକୁ ଶ୍ରମିକମାନେ ଆନନ୍ଦରେ ସମର୍ଥନ କଲେ । କେବଳ ଚିପିଲିମା ଫାର୍ମରେ ଚାକିରୀ ପାଇଥିବା ଲୋକେ ମନ୍ଦିର ପାଇଁ ଟଙ୍କାଦେଲେ । ଅନ୍ୟ ଜିଲ୍ଲାମାନଙ୍କରେ ଚାକିରୀ ପାଇବା ଲୋକଙ୍କ ଠାରୁ ଜଗନ୍ନାଥଙ୍କ ପାଇଁ କିଛି ମିଳିଲା ନାହିଁ ।

କିଛିଦିନ ଛାଡ଼ି ପୁଣି ବଲାଙ୍ଗିର ଗଲି । ସେଠାକାର ଗଣ୍ଡଗୋଳିଆ ଶ୍ରମିକମାନଙ୍କୁ ଚାକିରୀ ଲାଗି ତିଆରି ହୋଇଥିବା ପ୍ରାର୍ଥୀ ତାଲିକାରୁ ବାଦ ଦିଆଯାଇଥିଲା, ସେ ଖବର ମଧ୍ୟ ସେମାନେ ପାଇ ସାରିଥିଲେ । ମୁଁ ଜିଲ୍ଲା ଓ ଉପଖଣ୍ଡ କାର୍ଯ୍ୟାଳୟ ପରିଦର୍ଶନ କରିବା

ପୂର୍ବରୁ ସର୍କିଟ ହାଉସରେ ମୋର ଜିନିଷପତ୍ରସବୁ ରଖିଦେଇ ଯାଇଥିଲି । ଜିଲ୍ଲା ପଶୁଚିକିତ୍ସା ଅଧିକାରୀ ମୋତେ କହିଲେ ସାର୍ ଆପଣ ଏଠାକୁ ଆସୁଥିବା ଖବର ପାଇ ଆଜି ସକାଳୁ କେତେଜଣ ଅଚିହ୍ନାଲୋକ ଆସି ଆପଣଙ୍କ କାର୍ଯ୍ୟକ୍ରମ ବିଷୟରେ ପଚାରୁଥିଲେ, ଆପଣ କେଉଁଠି ରହିବେ ବୋଲି ମଧ ବୁଝୁଥିଲେ । ତେଣୁ ମୋର କାହିଁକି ସନ୍ଦେହ ହେଉଛି ଯେ ସେମାନେ ଗୁଣ୍ଡା ଶ୍ରେଣୀର ଲୋକ ହୋଇଥିବେ । ଯେଉଁ ଶ୍ରମିକମାନଙ୍କ ଉପରେ ଆପଣ ବିରକ୍ତ ହେଉଥିଲେ ଏବଂ ଯେଉଁମାନଙ୍କୁ ଚାକିରୀ ପ୍ରାର୍ଥୀ ତାଲିକାରୁ ବାଦ ଦିଆ ଯାଇଛି ସେମାନେ ଏହି ଗୁଣ୍ଡାମାନଙ୍କୁ ଆପଣଙ୍କ ବିରୁଦ୍ଧରେ ନିୟୋଜିତ କରିଥିବେ । ତେଣୁ ଆପଣ ଆଜି ସନ୍ଧ୍ୟାସୁଦ୍ଧା ଚିପିଲିମା ଫେରିଗଲେ ଭଲ ହୁଅନ୍ତା । ନୋହିଲେ ଆଜି ମୋ ଘରେ ଆପଣ ରାତ୍ରିଯାପନ କରନ୍ତୁ । କହିଲି, ସରକାରୀ କାର୍ଯ୍ୟରେ ବିଶୃଙ୍ଖଳା ସୃଷ୍ଟିକାରୀ କର୍ମଚାରୀ ବା ଶ୍ରମିକମାନଙ୍କ ବିରୁଦ୍ଧରେ ଯଦି ମୋ ପରି ଜଣେ ଉଚ୍ଚପାହ୍ୟାର ଅଫିସର କାର୍ଯ୍ୟାନୁଷ୍ଠାନ କରି ନ ପାରିବେ ତାହେଲେ ବିଭାଗ ଚାଲିବ କିପରି ? ଆପଣଙ୍କ ପ୍ରତି ହିଂସାତ୍ମକ ବ୍ୟବହାର କରାଗଲା, ମାତ୍ର ତାହା ବିରୁଦ୍ଧରେ ସରକାରୀ କାର୍ଯ୍ୟାନୁଷ୍ଠାନ କରାଯାଇ ପାରିଲା ନାହିଁ । ହୁଏତ ମୁଁ ଯଦି ଏକଥା ଜାଣି ପାରିଥାନ୍ତି ତେବେ ନିଜେଆସି ଜିଲ୍ଲାପାଳ ଓ ଆରକ୍ଷୀ ଅଧିକ୍ଷକଙ୍କୁ ଏଦିଗରେ ଅବଗତ କରାଇ କିଛି ହେଲେ କରିଥାନ୍ତି । ଏବେ ଯଦି ମୋପ୍ରତି କେହି ଦୁର୍ବ୍ୟବହାର କରେ ତେବେ ଆଇନ୍ ତା ବାଟରେ ଯିବ । ମାତ୍ର କାହାକୁ ଭୟକରି ମୁଁ ଏଠି ସେଠି ଲୁଚି ପାରିବି ନାହିଁ । ମୁଁ ନିଶ୍ଚୟ ଆଜି ସର୍କିଟ୍ ହାଉସ୍‌ରେ ରହିବି । ଦୁଇଟା ବେଳକୁ ତୁମେ ମୋ ଖାଇବା ଜିନିଷ ସର୍କିଟ୍ ହାଉସ୍‌କୁ ପଠାଅ । ମୁଁ ସେଠି ଦିନ ଦୁଇଟାରୁ ଚାରିଟା ଯାଏ ରହି ଉପରବେଳା ଫାର୍ମ ଦେଖିବାକୁ ଯିବି ।

ଜିଲ୍ଲା କାର୍ଯ୍ୟାଳୟ ଦେଖିସାରି ମୁଁ ସର୍କିଟ୍ ହାଉସ୍‌କୁ ଫେରିଗଲି । ଜିଲ୍ଲାଅଧିକାରୀ ମୋ ଖାଇବା ସେଠାକୁ ପଠାଇ ଦେଇଥିଲେ ଓ ଜଣେ ଅଫିସର୍ ମୋ ପାଇଁ ସେଠାରେ ଅପେକ୍ଷାରେ ଥିଲେ । ମୁଁ ଯାଇ ଧୁଆଧୋଇ ହେଉଥିବା ବେଳେ ତିନିଚାରିଜଣ ଲୋକ ଗୋଟିଏ ଆମ୍ବାସାଡ଼ର୍ କାର୍‌ରେ ଯାଇ ସେଠି ପହଞ୍ଚି ମୋତେ ଖୋଜିଲେ । ଅଫିସର ଜଣକ ସେମାନଙ୍କୁ ବସିବାକୁ କହି ମୋତେ ଆସି ଜଣାଇଦେଲେ । ମୁଁ ତତ୍‌କ୍ଷଣାତ୍ ସେମାନଙ୍କୁ ଡକାଇ ପଠାଇଲି । ସେମାନେ ଆସି ମୋତେ ଗୋଟିଏ ନିମନ୍ତ୍ରଣ ପତ୍ର ଦେଲେ । ସେହି ମାସର ୨୯ ତରିଖରେ ବଲାଙ୍ଗିର ଜିଲ୍ଲା ଚତୁର୍ଥ ଶ୍ରେଣୀ କର୍ମଚାରୀ ସଂଘର ବାର୍ଷିକ ଅଧିବେଶନକୁ ମୋତେ ସମ୍ମାନିତ ଅତିଥି ଭାବେ ଆମନ୍ତ୍ରିତ କରାଯାଇଥିଲା । ପଚାରିବୁଝିଲି, ସେମାନେ ଥିଲେ ଏହି ସଂଘର ସଭାପତି, ସମ୍ପାଦକ ଓ

କୋଷାଧ୍ୟକ୍ଷ । ଏହି ନିମନ୍ତ୍ରଣ ପତ୍ର ଦେବାକୁ ସେମାନେ କାଲିଠାରୁ ମୋତେ ଖୋଜୁଥିଲେ । ମୁଁ ଆନନ୍ଦର ସହିତ ସେମାନଙ୍କ ନିମନ୍ତ୍ରଣ ପତ୍ର ସ୍ୱୀକାର କଲି । ଜିଲ୍ଲା ମୁଖ୍ୟ ପଶୁଚିକିତ୍ସା ଅଧିକାରୀଙ୍କ ଧାରଣା ସମ୍ପୂର୍ଣ୍ଣ ଭୁଲ୍ ଥିଲା ।

ଓଡ଼ିଶାର ପଶ୍ଚିମାଞ୍ଚଳ ଦାୟିତ୍ୱରେ ରହି ମୁଁ ଅବିରକ୍ତ ସମ୍ବଲପୁର, ବଲାଙ୍ଗିର, କଳାହାଣ୍ଡି, ସୁନ୍ଦରଗଡ଼ ଓ କେନ୍ଦୁଝର ଜିଲ୍ଲାର ସମସ୍ତ ଉପଖଣ୍ଡ (ସବ୍‌ଡ଼ିଭିଜନ୍) ବୁଲିବୁଲି ବିଭାଗୀୟ କାର୍ଯ୍ୟର ସମୀକ୍ଷା କରିବା ସହିତ ଅଧସ୍ତନ କର୍ମଚାରୀମାନଙ୍କର ସୁବିଧା ଅସୁବିଧା ବୁଝି ପ୍ରତିକାର ବ୍ୟବସ୍ଥା କରିବାରେ ଆନନ୍ଦ ପାଉଥିଲି । ଏଥି ସହିତ ସାଧାରଣ ଜନତାଙ୍କର ମତିଗତି ବୁଝି ଉପକୂଳବର୍ତ୍ତୀ ଜିଲ୍ଲା ଲୋକଙ୍କ ପ୍ରତି ସେମାନଙ୍କର ମନୋଭାବ ବିଷୟରେ ଧାରଣା ବଦଳାଇବାକୁ ମଧ୍ୟ ଚେଷ୍ଟା କରୁଥିଲି । ସାଧାରଣତଃ ସେ ଅଞ୍ଚଳରେ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କର ଲୋକଙ୍କ ବିରୁଦ୍ଧରେ ଏକ ବିଭେଦାତ୍ମକ ଧାରଣା ସୃଷ୍ଟି କରିଦିଆଯାଇଛି । ମାତ୍ର ଯାହା ମୁଁ ଦେଖିଲି; କେବଳ ସମ୍ବଲପୁର ବା ବଲାଙ୍ଗିର ପରି ସହରରେ ଥିବା ଟାଉଟର ଶ୍ରେଣୀର କେତେକ ଲୋକ ଏପରି କଥା କହନ୍ତି । ମାତ୍ର ପଶ୍ଚିମାଞ୍ଚଳରେ ସାଧାରଣ ଜନତା ଏସବୁଠାରୁ ଅନେକ ଦୂରରେ । ଗାଆଁ ଗହଳିର ଲୋକମାନେ ଖୁବ୍ ସରଳ ପ୍ରକୃତିର । ସେମାନଙ୍କ ଭିତରେ ଏ ପ୍ରକାର ଚିନ୍ତାଧାରା ଆଦୌ ନାହିଁ । କେତେକ ମଦୁଆ ମାତାଲିଆ ବେକାର ଯୁବକଙ୍କୁ ସେ ଅଞ୍ଚଳରେ ଥିବା ଅଣଓଡ଼ିଆ ଧନୀ ଲୋକମାନେ ମଝିରେ ମଝିରେ ଟଙ୍କା ପଇସା ଦେଇ ଉପକୂଳବର୍ତ୍ତୀ ଜିଲ୍ଲାର ଲୋକଙ୍କ ବିରୁଦ୍ଧରେ ଉତ୍ତେଜିତ କରାଇବା କଥା ସେଠାକାର ଲୋକଙ୍କ ଠାରୁ ଶୁଣିବାକୁ ମିଳେ । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରୁ ପଶ୍ଚିମ ଓଡ଼ିଶାରେ କାର୍ଯ୍ୟରତ ବହୁ ସରକାରୀ ଅଫିସର ବା କର୍ମଚାରୀ ସେମାନଙ୍କର ଭଲକାମ ଯୋଗୁଁ ଲୋକମାନଙ୍କର ଅତ୍ୟନ୍ତ ପ୍ରିୟଭାଜନ ହେବା ମୁଁ ଦେଖିଛି । ମୋର ତିନିବର୍ଷ କାର୍ଯ୍ୟକାଳ ଭିତରେ ମୁଁ ସ୍ଥାନୀୟ ଲୋକଙ୍କ ଠାରୁ ଅନେକ ଆଦର ସମ୍ମାନ ପାଇଛି । ଏପରିକି ମୁଁ ନିର୍ଦ୍ଦେଶକ ପଦବୀରେ ଆସି ରହିବା ପରେ ସେ ଅଞ୍ଚଳର ବହୁ ଲୋକ ମୋତେ ଭେଟିବା ପାଇଁ କଟକ ଆସୁଥିଲେ । ଚାକିରିରୁ ଅବସର ନେବାପରେ ମୁଁ ଲଗାଏତ ସାତବର୍ଷ କାଳ ଚିପିଲିମା ଯାଇ ଅଧା ହୋଇ ପଡ଼ିରହିଥିବା ଶ୍ରୀ ଜଗନ୍ନାଥମନ୍ଦିର ନିର୍ମାଣ ଶେଷକରି ଠାକୁରଙ୍କୁ ନୂଆ ମନ୍ଦିରରେ ପ୍ରତିଷ୍ଠା କରିବା ପାଇଁ ସ୍ଥାନୀୟ ଲୋକମାନଙ୍କ ସହାୟତାରେ କାର୍ଯ୍ୟ କରୁଥିଲି ।

ସେ ଅଞ୍ଚଳରେ ଅନ୍ୟ ଏକ ଅସୁବିଧା ହେଉଛି 'ମଦ' । ଅଧିକାଂଶ ଲୋକ ମଦ ପିଇବାରେ ଅଭ୍ୟସ୍ତ । ଅଧିକାଂଶ ଦିନମଜୁରିଆ କାମ ସାରି ଘରକୁ ଫେରିଲେ ମଦ ପିଇବାକୁ ଭାଟିକୁ ଚାଲିଯାଆନ୍ତି । ପିଲାମାନେ ଖାଇପିଇ ଶୋଇବା ପରେ ସେମାନଙ୍କ ମଧ୍ୟରୁ ଅନେକଲୋକ ମଦନିଶାରେ ଟଳିଟଳି ଘରକୁ ଫେରନ୍ତି । ମଦନିଶାରେ ସେମାନଙ୍କର

ନିଜ ଉପରେ ନିୟନ୍ତ୍ରଣ ନଥାଏ, ତେଣୁ କେତେକ ଲୋକ ଘରକୁ ଫେରିନପାରି ରାସ୍ତା କଡ଼ରେ ଗଡ଼ିପଡ଼ନ୍ତି । ତେଣୁ ରାତି ୯ଟା ପରେ ରାସ୍ତାରେ ଗାଡ଼ି ଚଳାଇଲା ବେଳେ ଏପରି ଲୋକଙ୍କ ପ୍ରତି ନିଘାରଖିବା ଅତ୍ୟନ୍ତ ଜରୁରୀ । ବେଳେ ବେଳେ ମଦୁଆମାନେ ରାସ୍ତା ମଝିରେ ପଡ଼ି ରହିଥିବାର ମଧ୍ୟ ଦେଖାଯାଏ । ଏପରି ଲୋକଙ୍କୁ ରାସ୍ତାରୁ ହଟାଇବା କଷ୍ଟକର କଥା । ଅଚେତ୍ ହୋଇ ପଡ଼ିଥିବା ଲୋକଙ୍କୁ ରାସ୍ତା ମଝିରୁ ନେଇ ରାସ୍ତାକଡ଼ରେ ଶୁଆଇ ଦେଇ ହେବ । ମାତ୍ର ଚେତାଥିବା ମଦୁଆମାନେ ଖୁବ୍ ଗାଳି ଫଜିତ୍ କରନ୍ତି । କେହି କେହି ମାରିବାକୁ ତିଆର ହୋଇଯାନ୍ତି । ନିର୍ବାଚନ ସମୟରେ ସେସବୁ ଅଞ୍ଚଳରେ ମଦର ବନ୍ୟା ଛୁଟେ । ବିଭିନ୍ନ ରାଜନୈତିକ ଦଳପକ୍ଷରୁ ପ୍ରଚୁର ମଦ ବାଣ୍ଟିବାର ବ୍ୟବସ୍ଥା ହୁଏ । ଲୋକମାନଙ୍କୁ ପ୍ରଭାବିତ କରିବାକୁ ମଦ ଏକ ସହଜ ମାଧ୍ୟମ । ଅଧିକାଂଶ ବେକାର ଯୁବକ ମଦ ପିଇ ନାନାଦି କୁକର୍ମରେ ଲିପ୍ତ ରହନ୍ତି । ପଇସାବାଲା ଲୋକେ ଶତ୍ରୁପକ୍ଷଲୋକଙ୍କୁ ଜବତ୍ କରିବାକୁ ବେକାର ଯୁବକମାନଙ୍କୁ ମଦ ପିଇବାକୁ ଦେଇ ସେମାନଙ୍କୁ ଗାଳିଫଜିତ୍ କରିବା କିମ୍ବା ମାଡ଼ ମାରିବାର ବ୍ୟବସ୍ଥା ମଧ୍ୟ କରନ୍ତି । ଫଳରେ ନିଜେ ସଂପୃକ୍ତ ନରହି ଏମାନଙ୍କ ଜରିଆରେ କାର୍ଯ୍ୟ ହାସଲ କରିବା ଖୁବ୍ ସହଜ ସାଧ୍ୟ ହୋଇପଡ଼େ । ହାତରେ ପଇସା ନଥାଇ ଯେଉଁମାନେ ମଦ ପିଇବାକୁ ବିକଳ ହୋଇ ବୁଲୁଥାନ୍ତି, ସେମାନେ ମଦ ପିଇବାକୁ ପାଇଗଲେ ତେଣିକି ସେମାନଙ୍କର ଭଲମନ୍ଦ ବାଛବିଚାର ନଥାଏ ।

ଯୁଗ୍ମନିର୍ଦ୍ଦେଶକ ଭାବେ ଚିପିଲିମାରେ ମୁଁ ଏଭଳି ଜଣେ ମଦ୍ୟପ ଯୁବକର ସଂସ୍ପର୍ଶରେ ଆସିଥିଲି । ସେ ଅଞ୍ଚଳରେ ଜଣେ ଗୁଣ୍ଡା ଭାବେ ତାର ଦୁର୍ନାମ ଥାଏ । ସେ ଯେତେବେଳେ ଆମ ହତା ଭିତରକୁ ପଶିଆସେ, ତାକୁ ଦେଖି ଆମ କାର୍ଯ୍ୟାଳୟର ଅନେକ ଲୋକ ଲୁଚିଯାଆନ୍ତି । ବିଶେଷତଃ ସମ୍ବଲପୁର ବାହାର ଜିଲ୍ଲାର ଲୋକମାନଙ୍କୁ ସେ ହଇରାଣ କରେ । "ଶଳେ କଟ୍‌କୀ" ବୋଲି କହି ସେମାନଙ୍କୁ ଧମକ ଚକମ ଦେଇ ମଦ ପିଇବାକୁ ପଇସା ଆଦାୟ କରେ । କାର୍ଯ୍ୟାଳୟ ବାହାରେ ଠିଆ ହୋଇ ସେ ପାଟିତୁଣ୍ଡ କରେ । ମାତ୍ର ମୁଁ ନଥିବା ବେଳେ କାର୍ଯ୍ୟାଳୟ ଭିତରେ ପଶିଯାଇ ଲୋକମାନଙ୍କୁ ସେ ଧମକ ଚମକ ଦିଏ । ବୁର୍ଲାର ଚିପିଲିମା ବା ବରଗଡ଼ ରାସ୍ତା ଉପରେ ତାର ଗାଆଁ । ବେଳେବେଳେ ରାସ୍ତା ଉପରକୁ ଆସି ଲୋକଙ୍କ ଉପରେ ସେ ଜୁଲମ କରିବା କଥା ମଧ୍ୟ ସମସ୍ତେ ଜାଣନ୍ତି । ତେଣୁ ମୋ କାର୍ଯ୍ୟାଳୟର କିରାଣିମାନେ ତାକୁ ଭୟ କରନ୍ତି ।

ଥରେ ଏ ବିଷୟରେ କେତେ ଜଣ କର୍ମଚାରୀ ଆପତ୍ତି କଲେ । କହିଲି, ସେ ଆସିଲେ ମୋ ପାଖକୁ ଡାକିଆଣ । ସେମାନେ କହିଲେ, ଆପଣଙ୍କ ପ୍ରତି ସେ ଖରାପ ବ୍ୟବହାର କରିପାରେ । ତେଣୁ ଥାନାବାବୁଙ୍କ ସହିତ ଆପଣ କଥା ହୁଅନ୍ତୁ । କହିଲି

ଥାନାବାବୁ ମଧ୍ୟ ଏ ଲୋକକୁ ଜାଣିଥିବେ । ସେ କିଛି ଆଜି ନୂଆକରି ମଦ ପିଉନାହିଁ । ତୁମେ ତାକୁ ମୋ ପାଖକୁ ଡାକିଆଣ । ପ୍ରାୟ ସପ୍ତାହକପରେ ସେ ଯୁବକ ଆମ ହତା ଭିତରକୁ ଆସି ତାର ପୁରୁଣା ପ୍ରକୃତି ଦୋହରାଇବସିଲା । ଆମ ଅଫିସ୍‌ରେ ବରିଷ୍ଠ କିରାଣି ଭାବେ କାମ କରୁଥିବା ଜଣେ ସ୍ଥାନୀୟ ବ୍ୟକ୍ତି ତାକୁ ବୁଝାଇ ଶୁଝାଇ ମୋ ପ୍ରକୋଷ୍ଠକୁ ନେଇ ଆସିଲେ । ମୁଁ ତାକୁ ବସିବାକୁ ଚୌକୀ ଦେଇ ତାର ପରିଚୟ ଓ ପାରିବାରିକ ବିଷୟ ପଚାରିବସିଲି । ସେ ଏକ ବ୍ରାହ୍ମଣ ଯୁବକ । ମାଟ୍ରିକ୍ ପରେ ଘରେ ବସି ରହିଛି । ମାତ୍ର ମଦ ପିଇବାରେ ସେ ଏତେ ଅଭ୍ୟସ୍ତ ଯେ, ଅନ୍ୟ କୌଣସି କାର୍ଯ୍ୟ ପ୍ରତି ତାର ନିଘା ନାହିଁ । ଆମ ଦେଶ ତଥା ସମାଜରେ ବ୍ରାହ୍ମଣମାନଙ୍କର ସ୍ଥାନ କେତେ ଉଚ୍ଚରେ ସେ ବିଷୟରେ ତାକୁ ଅନେକ ବୁଝାଇଲି । ମାତ୍ର ମୋର କିଛି କଥା ଶୁଣିବାକୁ ତାର ଧୈର୍ଯ୍ୟ ନଥିଲା । ସେଦିନ ତାକୁ ପାଞ୍ଚଟଙ୍କା ଦେଇ ଆସନ୍ତା କାଲି ଆମ ଜଗନ୍ନାଥ ମନ୍ଦିରରେ ପ୍ରସାଦ ପାଇବା ପାଇଁ ନିମନ୍ତ୍ରଣ କଲି । ଜାଣିଥିଲି, ସେ ପ୍ରସାଦ ପାଇବାକୁ ଆସିବ ନାହିଁ । ହେଲେ, ଆମ କାର୍ଯ୍ୟାଳୟର ଲୋକମାନଙ୍କୁ କହିଲି, ତାକୁ ଯେଉଁଠି ଦେଖିବ ମୁଁ ଡାକିଛି ବୋଲି କହିବ । ତା ପରେ ପ୍ରାୟ ମାସେକାଳ ସେ ଆଉ ଆମହତା ମାଡ଼ିଲା ନାହିଁ । ଆମ ଲୋକମାନେ କହିଲେ, ସାର୍ ତାକୁ କଅଣ କହିଦେଲେ ଯେ, ସେ ଆଉ ଆମ ଉପରେ ପୂର୍ବପରି ଜୁଲମ କରୁନାହିଁ କିମ୍ବା ଇଆଡ଼େ ଆସୁନାହିଁ ।

ପ୍ରାୟ ଅଧିକାଂଶ ଦିନ ମୋତେ ସମ୍ବଲପୁର ଯିବାକୁ ପଡ଼େ । ବାଟରେ ସେହି ଯୁବକର ଗାଆଁ ସାନଟିକିରା । ଦିନେ ସମ୍ବଲପୁରରୁ ଫେରିଲାବେଳେ ଦେଖିଲି ସାନଟିକିରା ଛକଠାରେ ଗାଡ଼ିସବୁ ଧାଡ଼ିହୋଇ ରହିଛନ୍ତି । ଚାନ୍ଦା ଆଦାୟ କରିବାକୁ ସେ ଗାଆଁର କେତେଜଣ ଯୁବକ ଜୁଲମ କରୁଛନ୍ତି । ଚାନ୍ଦା ଦେବାପରେ ଗୋଟିଏ ଗୋଟିଏ ଗାଡ଼ି ଛଡ଼ାଯାଉଛି । ମୋ ଗାଡ଼ି ପାଖେଇ ଆସିବା ବେଳକୁ ସେ ଯୁବକଟି ଗାଆଁ ପିଲାଙ୍କୁ ଅଟକାଇ ଦେଇ କହିଲା, ଏଇଟା ଆମ ସାର୍‌ଙ୍କ ଗାଡ଼ି । ଏଥିରୁ ଚାନ୍ଦା ଆଦାୟ ହେବ ନାହିଁ । ଡ୍ରାଇଭରକୁ କହିଲା, ତୁମେ ସାର୍‌ଙ୍କୁ ନେଇ ଏ କଡ଼େକଡ଼େ ଚାଲିଯାଅ । ମୁଁ ତାକୁ ଡାକି କହିଲି; ଯଦି ସମସ୍ତେ ଚାନ୍ଦା ଦେଉଛନ୍ତି, ମୁଁ ମଧ୍ୟ ଦେବି । କାରଣ ତୁମ ଉପରେ ମୋର ଅଭିମାନ ଅଛି । ତୁମେ ଜଗନ୍ନାଥଙ୍କ ପ୍ରସାଦକୁ ନିନ୍ଦାକଲ । ଗାଡ଼ିର ପଛଡୋର ଖୋଲି ସେ ମୋର ପାଦଧରି କହିଲା, ସାର୍ ମୋର ଭୁଲ୍ ହୋଇଯାଇଛି । କାଲି ଯାଇ ମୁଁ ପ୍ରସାଦ ପାଇବି । ଆପଣ ଯାଆନ୍ତୁ । ତା'ପରଦିନ ସେ ଆସି ପ୍ରସାଦ ପାଇଲା । ମୁଁ ତାକୁ ଦଶଟଙ୍କା ଦେଇ କହିଲି, ଏ ଟଙ୍କାରେ ମଦ ପିଇବ ନାହିଁ । ତୁମେ ଶ୍ରୀ ଜଗନ୍ନାଥଙ୍କ ପର୍ବପର୍ବାଣିରେ ଆସି ଆମ ସହିତ ସହଯୋଗ କର । ତୁମକୁ ଆମେ ବ୍ରାହ୍ମଣର ସମ୍ମାନ ଦେବୁ । ମୁଁ ଟିପିଲିମାରେ ଥିବା ପର୍ଯ୍ୟନ୍ତ ସେ ଯୁବକ ଆଉ ପୂର୍ବ ପରି ଦୁର୍ବ୍ୟବହାର କରିବା ଶୁଣିନାହିଁ । ପରେ

ଯେତେବେଳେ ମୁଁ ମନ୍ଦିର ତିଆରି ପାଇଁ ଯାଉଥିଲି, ସେତେବେଳକୁ ସେ ବହୁତ ବଦଳି ଯାଇଥିଲା ଓ ୨୦୦୨ ମସିହାରେ ତାର ବିବାହ-ନିମନ୍ତ୍ରଣ ପତ୍ର ମୋର କଟକ ଠିକଣାରେ ପଠାଇଥିଲା । ଏଥିରୁ ସେଠାକାର ଲୋକମାନଙ୍କର ସରଳତା ସ୍ପଷ୍ଟ ଜଣାପଡ଼ିଯାଏ । ଆଜି ଯେଉଁ ବିଚ୍ଛିନ୍ନତାବାଦ ବା କୋଶଳ ଆନ୍ଦୋଳନ କଥା ଉଠୁଛି, ତାହା କେବଳ କେତେକ ରାଜନୈତିକ ନେତାମାନଙ୍କ ଯୋଗୁଁ । ତାଛଡ଼ା ଏଠାକାର ଅଣଓଡ଼ିଆ ଲୋକେ ଯୁବଗୋଷ୍ଠୀକୁ ପ୍ରଭାବିତ କରି ବିବାଦୀୟ ପରିସ୍ଥିତି ସୃଷ୍ଟି କରୁଛନ୍ତି ।

ଇତି ମଧ୍ୟରେ ପଶୁପାଳନ ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଭାବେ ମୋର ପଦୋନ୍ନତି ହୋଇଗଲା । ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇବା ମାତ୍ରେ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗିର ଓ ସୋନପୁର ଜିଲ୍ଲା ପକ୍ଷରୁ ମୋତେ ସ୍ୱାଗତ ଜଣାଇବାକୁ ନିମନ୍ତ୍ରଣ ମିଳିଲା । ପ୍ରଥମେ ବଲାଙ୍ଗିର ଯିବାର କାର୍ଯ୍ୟକ୍ରମ ଥିଲା । ସେଦିନ ସକାଳୁ ବଲାଙ୍ଗିର ବାହାରିଗଲି ।

ଦିନ ଏଗାରଟା ସୁଦ୍ଧା ବଲାଙ୍ଗିର ପହଞ୍ଚି ଦେଖିଲି ଜିଲ୍ଲା ଅଧିକାରୀଙ୍କ କାର୍ଯ୍ୟାଳୟରେ ପ୍ରାୟ ଶହେରୁ ଉର୍ଦ୍ଧ୍ୱ କର୍ମଚାରୀ ମୋ ଅପେକ୍ଷାରେ ଅଛନ୍ତି । ଭୋଜି ପାଇଁ ରୋଷେଇ ଆରମ୍ଭ ହୋଇଯାଇଛି । ପହଞ୍ଚିବା ମାତେ ଜିଲ୍ଲା ଅଧିକାରୀ ଖବର ଦେଲେ ଯେ ସଚିବାଳୟରୁ ଆମବିଭାଗର ଯୁଗ୍ମସଚିବ ମୋତେ ଖୋଜୁଛନ୍ତି । କହିଲି, ସେଥିପ୍ରତି ଗୁରୁତ୍ୱ ଦିଅନ୍ତୁ ନାହିଁ । ହୁଏତ ଆଜି ଆପଣମାନଙ୍କ ସହିତ ବସିବାର ମୋର ଅନ୍ତିମ ଦିବସ ହୋଇପାରେ । କାରଣ ମୋର କଟକ ବଦଳି ହୋଇଯିବା କଥା ଶୁଣାଯାଉଛି । ସମସ୍ତଙ୍କ ସାଙ୍ଗେ ବସି ପଙ୍‌କ୍ତି ଭୋଜନ କରିବାର ଆଜି ମୋ ପାଇଁ ପ୍ରଥମ ଓ ଶେଷ ସୁଯୋଗ । ଏପରି କଥା ହେଉଥିଲାବେଳେ ଫୋନ୍ ରିଂ ହେଲା । ଭୁବନେଶ୍ୱରରୁ ଯୁଗ୍ମସଚିବ ବିନୟ ପାତ୍ର ମୋ ସହିତ କଥା ହେବାକୁ ଲଗାଇଛନ୍ତି । ସେ କହିଲେ, ଆପଣ ଏବେ ଭୁବନେଶ୍ୱର ବାହାରି ଆସନ୍ତୁ । ବିଭାଗୀୟ ସଚିବ ୟୁ.ଶରତଚନ୍ଦ୍ରନ୍‌ଙ୍କୁ ଆପଣ ଆଜି ସନ୍ଧ୍ୟାସୁଦ୍ଧା ଭେଟନ୍ତୁ । କହିଲି, ଆଜି ରାତି ଦଶଟା ସୁଦ୍ଧା ମୁଁ କଟକ ପହଞ୍ଚିବା ଅସମ୍ଭବ । ଆଜି ସନ୍ଧ୍ୟାରେ କେମିତି ଭେଟିବି ? ସେ କହିଲେ ସଚିବଙ୍କର ଯାହା ଆଦେଶ ଅଛି ଆପଣଙ୍କୁ କହିଲି । ତେଣିକି ଆପଣଙ୍କ ଇଚ୍ଛା ।

ଏକଥା ଶୁଣି ଜିଲା ଅଧିକାରୀ ଓ ଅନ୍ୟ କେତେଜଣ ଅଫିସର କହିଲେ, ସାର୍ ଆପଣ ଏବେ ଏଠୁ ବାହାରିଲେ ଚିପିଲିମାରୁ ଆପଣଙ୍କର ଜିନିଷପତ୍ର ଧରି କଟକ ପହଞ୍ଚିବାକୁ ଡେରିହେବ । ତେଣୁ ଆପଣ ଆଗେ ଖାଇଦେଇ ବାହାରିଯାନ୍ତୁ । ଖାଇବାରେ ଆଉ ମୋର ସ୍ପୃହା ନଥିଲା । ଯେଉଁମାନେ ମୋ ସହିତ ବସି ପଙ୍‌କ୍ତି ଭୋଜନ କରି ଆନନ୍ଦ ପାଇଥାନ୍ତେ ସେମାନଙ୍କ ମଧ୍ୟରୁ ଅନେକଙ୍କର ଅନୁପସ୍ଥିତିରେ ମୋର ଅନିଚ୍ଛାସତ୍ତ୍ୱେ ବଲାଙ୍ଗିର ଛାଡ଼ି ବାହାରିଆସିଲି ।

# ଅତିରିକ୍ତ ନିର୍ଦ୍ଦେଶକରୁ ନିର୍ଦ୍ଦେଶକ

ବଲାଙ୍ଗିରରୁ ଆସି କଟକରେ ରାତି ବିତାଇବା ପରେ ତା ପରଦିନ ୧୧ଟା ବେଳକୁ ସଚିବାଳୟକୁ ଗଲି । ଯୁଗ୍ମସଚିବ ବିନୟ ପାତ୍ରଙ୍କ ସହିତ କଥାହେବା ପରେ ସଚିବଙ୍କ ପାଖକୁ ଗଲି । ସଚିବ ୟୁ.ଶରତଚନ୍ଦ୍ରନ ଜଣେ କେରଳୀ ଆଇ.ଏ.ଏସ୍. ଅଫିସର । ଓଡ଼ିଶା କ୍ୟାଡ଼ର୍‌ରେ ରହି କେନ୍ଦ୍ର ସରକାରଙ୍କ ଅଧୀନକୁ ଚାଲି ଯାଇଥିଲେ । ତିନିବର୍ଷ ପାଇଁ ତାଙ୍କୁ ଯୁକ୍ତରାଷ୍ଟ୍ର ଆମେରିକାରେ ଉଚ୍ଚଶିକ୍ଷା ପାଇବାର ସୁବିଧା ମିଳିଲା । ଉଇସ୍‌କନ୍‌ସିନ୍ ବିଶ୍ୱବିଦ୍ୟାଳୟରେ ଡକ୍ଟରେଟ୍ କରିବାକୁ ଏତକ ସମୟ ବିତାଇ ପୁଣି ଭାରତ ଫେରିବା ପରେ ଓଡ଼ିଶାକୁ ଆସି ଏବେ ସେ ପଶୁପାଳନ ବିଭାଗ ଦାୟିତ୍ୱରେ ଅଛନ୍ତି । ସେ ଯୋଗଦେଲା ବେଳେ ଗୋକୁଳଚନ୍ଦ୍ର ପତି ଆମ ବିଭାଗର ନିର୍ଦ୍ଦେଶକ ଥିଲେ । ଶିକ୍ଷ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଭାବେ ତାଙ୍କର ବଦଳି ହୋଇ ଯିବାରୁ ତାଙ୍କ ସ୍ଥାନରେ ଏମ୍. ରାଜାମଣି ନାମକ ଜଣେ ତାମିଲ୍ ଆଇ.ଏ.ଏସ୍ ଅଫିସର ଆମବିଭାଗ ଦାୟିତ୍ୱରେ ରହିଲେ । ପଶୁପାଳନବିଭାଗ ପରି ଏକ ବଡ଼ବିଭାଗର ବହୁ କାର୍ଯ୍ୟକ୍ରମ, ଯୋଜନା ଓ ଅଣଯୋଜନା ସେକ୍ଟରରେ ଚାଲିଥାଏ । ତେଣୁ ଜଣେ ଆଇ.ଏ.ଏସ୍. କର୍ମକର୍ତ୍ତା ନୂଆକରି ଦାୟିତ୍ୱ ନେବା ପରେ ଏସବୁ କାର୍ଯ୍ୟକ୍ରମ ବିଷୟରେ ଜାଣିବା ଅତି କଷ୍ଟକର ବ୍ୟାପାର । ତେବେ ପ୍ରତି ସପ୍ତାହର ସୋମବାର ଦିନ ବିଭାଗୀୟ ନିର୍ଦ୍ଦେଶକ ଏସବୁ କାର୍ଯ୍ୟକ୍ରମ ଗୁଡ଼ିକର ଅଗ୍ରଗତି ବିଷୟରେ ସଚିବଙ୍କ ସହିତ ଆଲୋଚନା କରିବାକୁ ଶରତଚନ୍ଦ୍ରନ ସାହେବ ନିର୍ଦ୍ଦେଶ ଦେଇଥିଲେ । ସମସ୍ତ ବିଭାଗୀୟ କାର୍ଯ୍ୟକ୍ରମ ତାଙ୍କ କମ୍ପ୍ୟୁଟରରେ ସେ ଲିପିବଦ୍ଧ କରି ଆଲୋଚନା ବେଳେ ପ୍ରତି କାର୍ଯ୍ୟକ୍ରମ ଉପରେ ନିର୍ଦ୍ଦେଶକଙ୍କୁ ପ୍ରଶ୍ନ କରନ୍ତି । ଅଧିକାଂଶ ଆଇ.ଏ.ଏସ୍ ଅଫିସର୍ ସମସ୍ତ ବିଭାଗୀୟ କାର୍ଯ୍ୟ ବିଷୟରେ ଅବହିତ ନଥାନ୍ତି । ସେମାନେ ବିଭାଗୀୟ ଅଧିକାରୀମାନଙ୍କ ଉପରେ ପୂରା ନିର୍ଭର କରିଥାନ୍ତି । ବେଳେବେଳେ ଉଚ୍ଚସ୍ତରୀୟ ଆଲୋଚନା ସମୟରେ ପ୍ରକୃତତଥ୍ୟ ମନେ ନ ପଡ଼ିଲେ ସେମାନେ ମନରୁ ଫାନ୍ଦି ଭୁଲ୍‌କଥା କହିଦେଇ କାମ ଚଳାଇନେବା ଦେଖାଯାଏ । ମାତ୍ର ଶରତଚନ୍ଦ୍ରନ୍‌ଙ୍କ ପାଖରେ ଏହା ଆଦୌ ସମ୍ଭବ ନଥିଲା । ଆମ ବିଭାଗୀୟ ନିର୍ଦ୍ଦେଶକ ରାଜାମଣି ସାହେବ ଥରେ ଦୁଇଥର ସଚିବଙ୍କ ସହିତ ଆଲୋଚନା ବେଳେ ଭୁଲ୍ କଥା କହିଦେଇ କମ୍ପ୍ୟୁଟର ସାମନାରେ ଧରାପଡ଼ି ଯିବାପରେ ତୃତୀୟ ଥରକୁ ଶରତଚନ୍ଦ୍ରନ୍ ସାହବ ତାଙ୍କୁ ରୁଲ୍‌ବାଡ଼ି ଉଞ୍ଚେଇ ତାଙ୍କ କୋଠରୀରୁ ତଡ଼ି ଦେଇଥିଲେ । ସେ ଯାଇ ଯୁଗ୍ମନିର୍ଦ୍ଦେଶକ ବିନୟ ପାତ୍ରଙ୍କୁ କହିଲେ, ଆମେ ଯେଉଁଠାକୁ ଯିବୁ ବିଭାଗୀୟ ମୁଖ୍ୟ ବା ପ୍ରଶାସନିକ ମୁଖ୍ୟ ଭାବେ କାର୍ଯ୍ୟ କରିବୁ । ଏ ବିଭାଗରେ ରହି ଅପମାନିତ ହେବାର କୌଣସି କାରଣ ନାହିଁ । ବୈଷୟିକ ବିଭାଗର

ଉଚ୍ଚାଧିକାରୀମାନଙ୍କୁ ଡକାଇ ସଚିବ ମହୋଦୟ ବିଭାଗୀୟ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା କରିବାରେ କୌଣସି ବାଧା ନାହିଁ । ଏବେ ଜଣେ ବିଭାଗୀୟ ଲୋକ ଅତିରିକ୍ତ ନିର୍ଦ୍ଦେଶକ ରହିଲେଣି । ତାଙ୍କୁ ଏ ଦାୟିତ୍ୱ ଦିଆଯାଉ । ଆମେ କାହିଁକି ଅପମାନିତ ହେବୁ ? ସେ ଯାଇ ଏକଥା ସଚିବ ଶରତଚନ୍ଦ୍ରନ୍‌ଙ୍କୁ କହିବାରୁ ସେ ଜରୁରୀ ସନ୍ଦେଶ ଦେଇ ମୋତେ ଡକାଇ ପଠାଇଲେ ।

ଶ୍ରୀ ୟୁ ଶରତଚନ୍ଦ୍ରନ୍ ଓଡ଼ିଶା କ୍ୟାଡ଼ର୍ ଆଇ.ଏ.ଏସ୍. ଅଫିସର ହୋଇଥିଲେ ମଧ୍ୟ ଅତ୍ୟନ୍ତ ମେଧାବୀ ଓ କର୍ତ୍ତବ୍ୟ ପରାୟଣ ବ୍ୟକ୍ତି । ନିଜର କାର୍ଯ୍ୟଦକ୍ଷତା ଉପରେ ତାଙ୍କର ଦୃଢ଼ ବିଶ୍ୱାସ ଥିବାର ପ୍ରବଳ ସ୍ୱାଭିମାନ ଯୋଗୁଁ ଓଡ଼ିଶାରେ ରହି ନିଜ ବିଭାଗ ବିଷୟରେ ସବିଶେଷ ଜ୍ଞାନ ନଥିବା ମନ୍ତ୍ରୀମାନଙ୍କ ଅଧୀନରେ କାର୍ଯ୍ୟକରିବାକୁ ପସନ୍ଦ କରୁନଥିଲେ । ତେଣୁ ସେ ଆରମ୍ଭରୁ କେନ୍ଦ୍ରକୁ ଯାଇ ଦିଲ୍ଲୀରେ ଯୋଜନା, ଅର୍ଥ ଓ ଦେଶରକ୍ଷା ବିଭାଗରେ ଦକ୍ଷତା ସହକାରେ କାର୍ଯ୍ୟ କରୁଥିଲେ । ଆମେରିକା ଯାଇ ଅର୍ଥନୀତିରେ ଡକ୍ଟରେଟ୍ କରିବାକୁ ସୁବିଧା ପାଇ ସରକାରୀ ପ୍ରୋତ୍ସାହନରେ ସେ ଉଇସ୍‌କନ୍‌ସିନ୍ ବିଶ୍ୱବିଦ୍ୟାଳୟରେ ଡକ୍ଟରେଟ୍ କଲେ ଓ ପାଠ୍ୟକ୍ରମ ଶେଷରେ ଓଡ଼ିଶା କ୍ୟାଡ଼ର୍‌କୁ ଫେରିଆସି କାର୍ଯ୍ୟରେ ଯୋଗ ଦେଲେ । ଆମେରିକାରେ ତାଙ୍କର ସମସ୍ତ ଗବେଷଣା କମ୍ପ୍ୟୁଟର ଜରିଆରେ ହୋଇଥିବା ଫଳରେ ବିଭାଗୀୟ କାର୍ଯ୍ୟରେ କମ୍ପ୍ୟୁଟର ବ୍ୟବହାର କରି ମୂଳଯୋଜନା ବିଷୟକ ସମସ୍ତ ତଥ୍ୟର ଟିକିନିଖି ବିବରଣୀ ଜାଣି ବିଭାଗୀୟ ନିର୍ଦ୍ଦେଶକମାନେ କାମ କରୁଛନ୍ତି କି ନାହିଁ ତାର ସାପ୍ତାହିକ ସମୀକ୍ଷା କରୁଥିଲେ । ଯୋଗକୁ ତାଙ୍କୁ ମତ୍ସ୍ୟ ଓ ପଶୁପାଳନ ବିଭାଗ ଦାୟିତ୍ୱରେ ରଖାଗଲା । ଓଡ଼ିଶା କ୍ୟାଡ଼ର୍‌ରେ ଥିବା ଅଧିକାଂଶ ଆଇ.ଏ.ଏସ୍. ଅଫିସର କେବଳ କାମ ଚଳାଇବା ଲୋକ । କେବଳ ଓଡ଼ିଶା କାହିଁକି ସମଗ୍ର ଦେଶରେ ଥିବା ଆଇ.ଏ.ଏସ୍. ଗୋଷ୍ଠୀରେ ଖୁବ୍ କମ୍ ଅଭିଜ୍ଞ କାର୍ଯ୍ୟଦକ୍ଷ ଲୋକ ଦେଖିବାକୁ ମିଳନ୍ତି । କାରଣ ମୂଳରୁ ସେମାନଙ୍କୁ ଗୋଟିଏ ବିଭାଗ ଦାୟିତ୍ୱରେ ଦୀର୍ଘକାଳ ନରଖି ରାଜନୀତିଜ୍ଞମାନଙ୍କ ସୁବିଧା ଅନୁସାରେ ବିଭିନ୍ନ ବିଭାଗକୁ ବଦଳି କରାଯାଏ । ତେଣୁ କୌଣସି ଏକ ବିଭାଗ ଉପରେ ସେମାନଙ୍କର ସମ୍ୟକ୍ ଧାରଣା ହେବା ପୂର୍ବରୁ ଅନ୍ୟ ବିଭାଗକୁ ବଦଳି ହୋଇଯାଏ । ତେଣୁ ବିଭାଗୀୟ ତଥ୍ୟ ଉପରେ ସାଧାରଣ ଜ୍ଞାନ ନଥାଇ ସ୍ଥଳ ବିଶେଷରେ ମନଇଚ୍ଛା ବିବୃତି ଦେଇ କାମ ଚଳାଇ ନେବାରେ ଅଧିକାଂଶ ଆଇ.ଏ.ଏସ୍ ଅଫିସର ବେଶ୍ ପାରଙ୍ଗମ । ହେଲେ ଶରତ ଚନ୍ଦ୍ରନ୍‌ଙ୍କ ପରି ଜଣେ ଦକ୍ଷ ଲୋକଙ୍କ ପାଖରେ ମିଛକହି ଖସିଯିବା ଅସମ୍ଭବ । ବିଶେଷତଃ ପଶୁପାଳନ, ମତ୍ସ୍ୟ, ସ୍ୱାସ୍ଥ୍ୟ, ବିଦ୍ୟୁତ୍ ବା ଜଙ୍ଗଲ ବିଭାଗ ପରି ବୈଷୟିକ ବିଭାଗ ଗୁଡ଼ିକରେ କେବଳ ବୈଷୟିକ ବିଶେଷଜ୍ଞମାନେ ହିଁ ଦକ୍ଷତା ସହକାରେ ଉନ୍ନତି କରାଇପାରିବେ । ଆଇ.ଏ.ଏସ୍ ଅଫିସରମାନେ ବୈଷୟିକ ବିଭାଗ ଦାୟିତ୍ୱ ନେଇ

ଚଳାଇବା ଦେଶ ପକ୍ଷରେ କ୍ଷତିକାରକ । ସେଥିଲାଗି ଆମେରିକା, ଇଂଲଣ୍ଡ, ଅଷ୍ଟ୍ରେଲିଆ, କାନାଡ଼ା, ଫ୍ରାନ୍ସ ବା ଜର୍ମାନ ପରି ଉନ୍ନତ ରାଷ୍ଟ୍ରମାନଙ୍କରେ ପ୍ରଶାସନିକ ସେବା ବା ଆଡ୍‌ମିନିଷ୍ଟ୍ରେଟିଭ୍ ସର୍ଭିସ୍ ପରି କିଛି ନାହିଁ । ବୈଷୟିକ ଦକ୍ଷତା ସମ୍ପନ୍ନ ଲୋକମାନେ ସେସବୁ ଦେଶରେ ବିଭାଗୀୟ ପରିଚାଳନା ଦାୟିତ୍ୱରେ ରହନ୍ତି । ହେଲେ ସ୍ୱାଧୀନତାର ସତୁରୀ ବର୍ଷ ପରେ ମଧ୍ୟ ଆମ ଦେଶରେ ସେହି ଇଂରେଜ ଢାଞ୍ଚାରେ ଶାସନଚାଲିଛି । ଇଂରେଜମାନେ, ଦେଶ ଛାଡ଼ି ଚାଲିଯିବାର ସତୁରୀବର୍ଷ ପରେ ମଧ୍ୟ ଏ ଦେଶରେ ରାଜତାନ୍ତ୍ରିକ ଶାସନ ତିଷ୍ଠି ରହିଛି ।

ମୁଁ ଯାଇ ଶରତଚନ୍ଦ୍ରନ୍ ସାହେବଙ୍କୁ ଦେଖା କଲି । ସେ କହିଲେ ଏଣିକି ତୁମେ ବିଭାଗୀୟ କାର୍ଯ୍ୟକ୍ରମଗୁଡ଼ିକର ସମୀକ୍ଷା କରି ସେସବୁର ଅଗ୍ରଗତି ବିଷୟରେ ଜିଲ୍ଲା ଅଧିକାରୀମାନଙ୍କୁ ସଚେତନ କରାଅ । ସେମାନଙ୍କର ଦୋଷତ୍ରୁଟି ସୂଚାଇ ପ୍ରତିକାର ଦିଗରେ ପଦକ୍ଷେପ ନିଅ । ଅସୁବିଧା ସୁବିଧା କଥା ମୋତେ ଜଣାଇଲେ ମୁଁ ସେକଥା ବୁଝିବି । ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଆମର ମନ୍ତ୍ରୀ ଥାଆନ୍ତି । ମୁଁ ତାଙ୍କ ସହିତ ଆଲୋଚନା କଲି । ମୋର ସାନସଡୁ ଶକ୍ତିଧର ଦାସଙ୍କ ସହିତ ସୂର୍ଯ୍ୟବାବୁଙ୍କର ବନ୍ଧୁତା ଥିଲା । ମୋର କାର୍ଯ୍ୟଦକ୍ଷତା ବିଷୟରେ ମନ୍ତ୍ରୀ ଅନେକ ଲୋକଙ୍କ ଠାରୁ ମଧ୍ୟ ପୂର୍ବରୁ ଶୁଣିଥିଲେ । ତେଣୁ ମୋତେ ନିର୍ଦ୍ଦେଶକ ଭାବେ ପଦୋନ୍ନତି ଦେବାଲାଗି ସେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ଅନୁରୋଧ କଲେ ।

ପ୍ରତିମାସରେ ଜିଲ୍ଲାମୁଖ୍ୟମାନଙ୍କୁ ଡକାଇ ବିଭାଗୀୟ କାର୍ଯ୍ୟାବଳିର ସମୀକ୍ଷା ହେଉଥିଲା । ସେ କାର୍ଯ୍ୟ ମୋତେ ହିଁ କରିବାକୁ ପଡୁଥିଲା । କେଉଁଠି ଅବନତି ଦେଖାଦେଲେ ମୁଁ ତାହାର ପ୍ରତିକାର ଲାଗି ବ୍ୟବସ୍ଥା କରୁଥିଲି । ଭାରତୀୟ ପ୍ରଶାସନିକସେବାର ଅଧିକାରୀମାନେ ଆମ ବିଭାଗର କାର୍ଯ୍ୟପନ୍ଥା ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞଥାଇ ଜିଲ୍ଲା ବା ଉପଖଣ୍ଡ ଅଧିକାରୀମାନଙ୍କୁ ବୈଷୟିକ ଉପଦେଶ ଦେବାରେ ଅକ୍ଷମ । ତେଣୁ ବିଭିନ୍ନ ଯୋଜନାରେ ହେଉଥିବା କାର୍ଯ୍ୟାବଳି ସମୀକ୍ଷା କରି ସେ ସବୁର ଉନ୍ନତି ଦିଗରେ କୌଣସି ଦିଗ୍‌ଦର୍ଶନ ଦେବା ସେମାନଙ୍କ ପକ୍ଷରେ ସମ୍ଭବପର ନଥିଲା । ଚିପିଲିମା ଫାର୍ମ ପରଚାଳନା ତଥା ତାର ଉନ୍ନତି ଦିଗରେ କରିଥିବା ମୋର ସମସ୍ତ କାର୍ଯ୍ୟ ଆମବିଭାଗର ଆଦର୍ଶ ସ୍ଥାନୀୟ ହୋଇଥବା ଯୋଗୁଁ ମୋ ପକ୍ଷରେ ପଶୁପାଳନ କାର୍ଯ୍ୟକ୍ରମ ପରିଚାଳନା ସହଜସାଧ ଥିଲା । ପୋଥିଗତ ବିଦ୍ୟା ଓ କର୍ମକ୍ଷେତ୍ରରେ ତାହାର ସଠିକ ପ୍ରୟୋଗ ହେବା ମଧ୍ୟରେ ଅନେକ ତଫାତ୍ ଥିଲା । ପୂର୍ବରୁ ଚିପିଲିମାରେ ଥିବା ଯୁଗ୍ମ ନିର୍ଦ୍ଦେଶକମାନେ କେବଳ ଫାଇଲ୍‌ଚାଷ କରିବାରେ ଧୂରନ୍ଧର ଥିଲେ । ଜର୍ସି ଶଙ୍କରଗୋରୁ, କୁକୁଡ଼ା, ଛେଳି, ମେଣ୍ଢା, ଘୁଷୁରୀ, ମଇଁଷି ବା ଠେକୁଆମାନଙ୍କର ଉତ୍ପାଦନ

ବୃଦ୍ଧି କ୍ଷେତ୍ରରେ ପଦକ୍ଷେପ ନେବା ଦୂରେଥାଉ, ଏସବୁ ଚିନ୍ତା କରିବା ମଧ୍ୟ ସେମାନଙ୍କ ପକ୍ଷରେ ସମ୍ଭବ ହେଉ ନଥିଲା । ମାତ୍ର ପ୍ରାଣୀପୁଷ୍ଟି ତତ୍ତ୍ୱରେ ମୋର ସ୍ନାତକୋତ୍ତର ଶିକ୍ଷା ଓ ଗବେଷଣାଲାବ୍ଧ ଜ୍ଞାନର ଉପଯୋଗ ଦ୍ୱାରା ପଶୁପକ୍ଷୀମାନଙ୍କର ଉତ୍ପାଦନବୃଦ୍ଧି ଦିଗରେ ମୁଁ ସଫଳକାମ ହୋଇ ପାରିଥିଲି । ୧୯୭୪ ମସିହା ଠାରୁ ୧୯୮୫ ମସିହା ମଧ୍ୟରେ ମୁଁ 'ଗୋଖାଦ୍ୟ', 'ଉନ୍ନତ ବାଛୁରୀ ପାଳନ', 'ଛାଗ ପାଳନ' ଓ 'ମେଷ ପାଳନ' ଉପରେ ଚାରିଖଣ୍ଡ ପୁସ୍ତକ ରଚନା କରିଥିଲି । ଶ୍ରୀ ଭ୍ରମରବର ଜେନା ଆମ ବିଭାଗର ନିର୍ଦ୍ଦେଶକ ଥିଲାବେଳେ ଏସବୁବହି ପ୍ରତି ପଶୁଚିକିତ୍ସାଳୟରେ କାର୍ଯ୍ୟରତ ଡାକ୍ତରମାନଙ୍କର ଜ୍ଞାନ ବୃଦ୍ଧି ଲାଗି ରଖାଯାଇଥିଲା । ସେ ସବୁ ବହିପଢ଼ି ବହୁ ପଶୁଚିକିତ୍ସକ ଲାଭବାନ୍ ହେବା କଥା ମୋତେ ଜଣାଇଥଲେ ।

ଯୁଗ୍ମ ନିର୍ଦ୍ଦେଶକ ପଦବୀରେ ରହିବା ପରେ ଜିଲ୍ଲାସ୍ତରୀୟ ଅଧିକାରୀ ବା ଫାର୍ମ ପରିଚାଳକମାନଙ୍କୁ ନିର୍ଦ୍ଦେଶନା ଦେବାର ଯୋଗ୍ୟତା ମୁଁ ହାସଲ କରିଥିଲି । ମୋ କହିବା ଅନୁସାରେ କାର୍ଯ୍ୟ ହେବା ଦ୍ୱାରା ବିଭାଗୀୟ ଫାର୍ମଗୁଡ଼ିକର ଉତ୍ପାଦନ ବୃଦ୍ଧି ପାଇଲା । ଏବେ ଅତିରିକ୍ତ ନିର୍ଦ୍ଦେଶକ ଭାବେ ପ୍ରତି ଦୁଇମାସରେ ବିଭାଗୀୟ କାର୍ଯ୍ୟର ସମୀକ୍ଷା କରିବାର ଅଧିକାର ପାଇ ଏ ଦିଗରେ ଅଧିକ ସଫଳତା ହାସଲ କରିବାର ଆନନ୍ଦ ମୋତେ ମିଳିଲା । ରାଜ୍ୟରେ ୧୧ଟି ଗୋପ୍ରଜନନ ଫାର୍ମ ୪ଟି କୁକ୍କୁଟ ପ୍ରଜନନ ଫାର୍ମ, ୪ଟି ଲେଖାଏଁ ମେଣ୍ଢା, ଛେଳି ଓ ଘୁଷୁରୀ ଫାର୍ମ ଥାଇ ସେସବୁର ସୁପରିଚାଳନା ଦିଗରେ ନିର୍ଦ୍ଦେଶକମାନେ ସମ୍ପୂର୍ଣ୍ଣ ଅଜ୍ଞ ଥିବା ପରି ମନେ ହେଉଥିଲା । ଫାର୍ମ ଗୁଡ଼ିକରେ ପରିଚାଳକ ଭାବେ ପଶୁଚିକିତ୍ସାବିତ୍‌ମାନେ କାର୍ଯ୍ୟ କରୁଥିଲେ ମଧ୍ୟ ପଶୁପକ୍ଷୀଙ୍କ ଉତ୍ପାଦନ ବୃଦ୍ଧି କ୍ଷେତ୍ରରେ ପ୍ରାୟତଃ ଅଜ୍ଞ ଥିଲେ । କାରଣ ସେସବୁର ପରିଚାଳନା ଦିଗରେ ଜ୍ଞାନ ବା ଅଭିଜ୍ଞତା ନଥିବା ଲୋକମାନଙ୍କୁ ଯେ କୌଣସି ସ୍ଥାନରୁ ବଦଳି କରାଇଆଣି ଫାର୍ମ ଦାୟିତ୍ୱରେ ରଖାଯାଉଥିଲା । ସେମାନେ ଫାର୍ମପରିଚାଳନାରେ କିଛି ଅଭିଜ୍ଞତା ହାସଲ କରିବା ପୂର୍ବରୁ ପୁଣି ବଦଳି ଚକ୍ରରେ ପଡ଼ିଯାଉଥିଲେ ଓ ନୂଆ ଲୋକ ଆସି ପରିଚାଳନା ଦାୟିତ୍ୱ ଗ୍ରହଣ କରୁଥିଲେ । ତେଣୁ ପରିଚାଳକମାନଙ୍କର ଅଜ୍ଞତା ଯୋଗୁ ଫାର୍ମମାନଙ୍କରେ ଥିବା ପଶୁପକ୍ଷୀମାନଙ୍କର ଉତ୍ପାଦନ କ୍ଷମତା ବଢ଼ିବା ପରିବର୍ତ୍ତେ କମି ଯାଉଥିଲା । ନିର୍ଦ୍ଦେଶାଳୟ ସ୍ତରରେ ସମୀକ୍ଷା କରି ଫାର୍ମଗୁଡ଼ିକର ପରିଚାଳନାଗତ ସଂସ୍କାର ଆଣିବା ପାଇଁ ମୁଁ ଏକ ନୀତି ନିର୍ଦ୍ଧାରଣ କମିଟି କରି ପ୍ରଥମେ ପ୍ରତିଫାର୍ମର ଲକ୍ଷ୍ୟ ଓ ଉତ୍ପାଦନବୃଦ୍ଧିର ଉପାୟ ଚିଠା କରାଇଲି । ଗୋ-ପ୍ରଜନନ ଫାର୍ମମାନଙ୍କରେ ବିଭିନ୍ନ ଜାତିର ଗୋରୁ ମିଶାମିଶି କରି ରଖାଯାଉଥିଲା । ତାହା ନକରି ଜଳବାୟୁ ଅନୁସାରେ ଚିପିଲିମାରେ ଜର୍ସି, କଟକ (ଖପୁରିଆ)ରେ ଲାଲ୍‌ସିନ୍ଧି ମୁରା; ଜର୍ସିଶଙ୍କର ଗୋରୁ, କୁଆର ମୁଣ୍ଡାରେ ମଇଁଷି ଓ

ବୌଦଫୁଲବାଣୀରେ ହୋଲ୍‌ଷ୍ଟିନ୍ ଶଙ୍କର ଗାଈ ରଖିବାର ବ୍ୟବସ୍ଥା କରାଇଲି । କାରଣ ଏସବୁ ସ୍ଥାନର ଜଳବାୟୁ ସେହି ଜାତିର ଗୋରୁଙ୍କ ପାଇଁ ଉପଯୁକ୍ତ ବୋଲି ପୂର୍ବତନ ନିର୍ଦ୍ଦେଶକମାନେ ଚିନ୍ତା କରିନଥିଲେ ।

ଓଡ଼ିଶାରେ ଧଳା ହରିଆନା ବଳଦଙ୍କର ଖୁବ୍ ଚାହିଦାଥିବାରୁ ମୟୂରଭଞ୍ଜର କାଠପାଳ ଫାର୍ମରେ କେବଳ ହରିଆନା ଗୋରୁଙ୍କୁ ରଖିବାର ବ୍ୟବସ୍ଥା ହେଲା । ହିସାର ଠାରେ ଥିବା ହରିଆନା କୃଷିବିଶ୍ୱବିଦ୍ୟାଳୟ ଫାର୍ମରୁ ଏକଶହ ଭଲ ହରିଆନାଗାଈ ଆଣି ଏହି ଫାର୍ମରେ ପାଳନ କରାଗଲା । ମୋର ସହପାଠୀ ବନ୍ଧୁ ଡକ୍ଟର ଖଗେଶ୍ୱର ପ୍ରଧାନ ହରିଆନା କୃଷି ବିଶ୍ୱବିଦ୍ୟାଳୟର ବରିଷ୍ଠ ଅଧ୍ୟାପକ ତଥା ଡିନ୍ ଥିଲେ । ତାଙ୍କ ଜରିଆରେ ସେହି ବିଶ୍ୱବିଦ୍ୟାଳୟର ଗୋପାଳନ କେନ୍ଦ୍ରରୁ ଓଡ଼ିଶାକୁ ଏକ ଶହ ବଛା ବଛା ହରିଆନା ଗାଈଙ୍କୁ ଆଣିବା ମୋ ପକ୍ଷେ ସମ୍ଭବ ହୋଇପାରିଲା ।

କୁକୁଡ଼ା ଫାର୍ମମାନଙ୍କରେ ଅଣ୍ଡାଦିଆ କୁକୁଡ଼ା, ବ୍ରଏଲରଛୁଆ ଉତ୍ପାଦନ; କଟକ ଓ ଚିପିଲିମାରେ ବତକଉତ୍ପାଦନ ଏବଂ ଛେଳି ମେଣ୍ଢା ବା ଘୁଷୁରୀ ଫାର୍ମ ବିଷୟରେ ନୀତି ନିର୍ଦ୍ଧାରଣ କରାଗଲା । ଗୋ ପ୍ରଜନନ ଫାର୍ମ ମାନଙ୍କରେ ଯେପରି ଯଥେଷ୍ଟ ପରିମାଣରେ ଘାସ ଉତ୍ପାଦନ ହୋଇ ପାରିବ ତାର ମଧ୍ୟ ବ୍ୟବସ୍ଥା କରାଗଲା ।

ବିଭାଗୀୟକାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ମୁଁ କଟକରେ ହେଉଥିବା ସାହିତ୍ୟ, ସଂସ୍କୃତି ବା ସାମାଜିକ ସମସ୍ୟା ଜଡ଼ିତ ସଭାସମିତିମାନଙ୍କରେ ଯୋଗଦେଉଥିଲି । ଓଡ଼ିଶାରେ ପ୍ରକାଶିତ ସାହିତ୍ୟ ପତ୍ରିକାମାନଙ୍କ ପାଇଁ ବିଭାଗୀୟ ବିଜ୍ଞାପନ ଦେବାର ବ୍ୟବସ୍ଥା କଲି । କଟକ ବେତାରକେନ୍ଦ୍ରରେ ଦୀର୍ଘ ତିରିଶବର୍ଷରୁ ଉର୍ଦ୍ଧ୍ୱକାଳଧରି କାର୍ଯ୍ୟରତ ଡକ୍ଟର ବ୍ରଜମୋହନ ମହାନ୍ତି ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଥିଲେ । ସେ ପାଠକସଂସଦ ଗଠନ କରିଥିଲେ । ପ୍ରତିବର୍ଷ ଗ୍ରାମାଞ୍ଚଳମାନଙ୍କରେ ପାଠକ ସଂସଦର ବାର୍ଷିକ ଅଧିବେଶନ ହେଉଥିଲା ଏବଂ ମୁଁ ପ୍ରାୟ ବିଗତ ଦଶବର୍ଷ ଧରି ଏହି ଅନୁଷ୍ଠାନ ସହିତ ସଂପୃକ୍ତ ଥିଲି । ୧୯୯୪ ଫେବୃୟାରୀ ୨୪ ତାରିଖରେ ସାଲେପୁରଠାରେ ପାଠକ ସଂସଦ ଅଧିବେଶନ ହେଲା । ଆମେ ସବୁ ସକାଳ ଆଠଟା ବେଳକୁ ରାମଚନ୍ଦ୍ର ଭବନରେ ଏକତ୍ରିତ ହୋଇ ବିଭିନ୍ନ ଗାଡ଼ିରେ ଦଳଦଳ ହୋଇ ସାଲେପୁର ଗଲୁ । ମୋ ବିଭାଗରୁ ମଧ୍ୟ ଗୋଟିଏ ବା ଦୁଇଟି ଗାଡ଼ି ପାଠକ ସଂସଦ ପାଇଁ ମୁଁ ବ୍ୟବସ୍ଥା କରିଥାଏ । ଅଧିବେଶନ ଆରମ୍ଭ ହେଲା ବେଳକୁ ସେଦିନ ଆମ ନିର୍ଦ୍ଦେଶାଳୟର ଗୋଟିଏ ଜିପ୍‌ରେ ଜଣେ ଏଷ୍ଟାବ୍ଲିଶ୍‌ମେଣ୍ଟ ଅଫିସର ମୋତେ ଘରେ ଖୋଜି ନପାଇ ସେଠାରୁ ସାଲେପୁର ଯାଇ ପହଞ୍ଚିଲେ । ମୋତେ ଭେଟି କହିଲେ ସାର୍ ସଚିବାଳୟରୁ ଫୋନ୍‌ପାଇ ଆପଣଙ୍କୁ ଡାକିବାକୁ ଆସିଛି । ଆପଣ ଆସି ରାଜାମଣି ସାହେବଙ୍କଠାରୁ ଦାୟିତ୍ୱ ଗ୍ରହଣ କରିବେ । ପଚାରିଲି, ଆସନ୍ତା କାଲି ଗଲେ ଚଳନ୍ତା

ନାହିଁ ? ସେ କହିଲେ ନାଇଁ ସାର୍ । ଆଜି ରବିବାର ହୋଇଥିଲେ ମଧ୍ୟ ଶ୍ରୀରାଜାମଣି ନିର୍ଦ୍ଦେଶାଳୟରେ ଆପଣଙ୍କ ଅପେକ୍ଷାରେ ବସିଛନ୍ତି । ତାଙ୍କୁ ରିଲିଭ୍ କରିବା ଓ ଆପଣଙ୍କର ନିର୍ଦ୍ଦେଶକ ଭାବେ ଦାୟିତ୍ୱ ଗ୍ରହଣ କରିବା କାଗଜପତ୍ର ସକାଳୁ ଠିକ୍ କରି ରଖାଯାଇଛି । ଆପଣ ଶୀଘ୍ର ଆସନ୍ତୁ । ମୁଁ ଯାଇ ଡକ୍ଟର ବ୍ରଜମୋହନ ମହାନ୍ତିଙ୍କୁ ଏ ଖବର ଜଣାଇ ଦେଲି । ସେ ମୋତେ ମଞ୍ଚ ଉପରକୁ ଡାକି ପାଠକ ସଂସଦ ପକ୍ଷରୁ ପଶୁପାଳନ ବିଭାଗର ନୂତନ ନିର୍ଦ୍ଦେଶକ ଭାବେ ସମ୍ବର୍ଦ୍ଧନା ଜ୍ଞାପନ କଲେ । ଉପସ୍ଥିତ ଜନତା ତାଳିମାରି ମୋତେ ବଧେଇ ଜଣାଇଲେ ।

# ନିର୍ଦ୍ଦେଶକ ପଦବୀରେ

ପ୍ରାୟ ବାରଟା ସୁଦ୍ଧା ନିର୍ଦ୍ଦେଶାଳୟରେ ପହଞ୍ଚି ନିର୍ଦ୍ଦେଶକ ଭାବେ ଦାୟୀତ୍ୱ ଗ୍ରହଣ କଲି । ସେଦିନ ସନ୍ଧ୍ୟାରେ ଆମ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ରଙ୍କୁ ସାକ୍ଷାତ କଲି । ସେ କହିଲେ ଆଇ.ଏ.ଏସ୍. ଲବି ଆପଣଙ୍କ ବିଭାଗର ନିର୍ଦ୍ଦେଶକ ପଦବୀ ଛାଡ଼ିବାକୁ ରାଜି ନୁହନ୍ତି । ତଥାପି ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କୁ କହି ରାଜାମଣିଙ୍କ ସ୍ଥାନରେ କୌଣସି ଆଇ.ଏ.ଏସ୍ ଅଫିସରଙ୍କୁ ନିଆଯାଇ ନାହିଁ । ଆପଣଙ୍କ ଫାଇଲ ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଛି । ଆପଣ ନିର୍ଦ୍ଦେଶକ ଦାୟିତ୍ୱ ନେଇ ବିଭାଗ ପରିଚାଳନା କରନ୍ତୁ । ଇତି ମଧ୍ୟରେ ଆପଣଙ୍କ ଫାଇଲ୍ ମୁଖ୍ୟମନ୍ତ୍ରୀଙ୍କ ସ୍ୱୀକୃତି ପାଇ ଫେରିଆସିବ ।

ମନ୍ତ୍ରୀ କହିଲେ, ପ୍ରାୟ ଦଶବର୍ଷ ହେଲାଣି ଆଉ କୌଣସି ଠାରେ ନୂଆ ପଶୁ ଚିକିତ୍ସାଳୟ କିମ୍ୱା ପଶୁ ସହାୟକକେନ୍ଦ୍ର ଖୋଲାଯାଇ ପାରିନାହିଁ । ଆପଣଙ୍କ କାର୍ଯ୍ୟକାଳ ଭିତରେ ଅନେକକିଛି ହୋଇପାରିବ ବୋଲି ମୁଁ ଆଶା କରୁଛି । କହିଲି, ବିଭାଗୀୟ ଅର୍ଥବ୍ୟବସ୍ଥା ଦେଖି ସବୁକିଛି କରାଯାଇ ପାରିବ । ହେଲେ, ପରେ ଏ ବିଷୟରେ ଆପଣଙ୍କ ସହିତ ଆଲୋଚନା କରିବି ।

ତାପରଦିନ ନିର୍ଦ୍ଦେଶାଳୟର ସବୁ ଅଫିସରଙ୍କୁ ଡକାଇ ଆଲୋଚନା କଲାବେଳେ ବୁଝିଲି, ଆମର ଯୋଜନା ବ୍ୟୟ ଏ ବର୍ଷ ପାଇଁ ଯେଉଁ ଦଶକୋଟି ପଚାଶ ଲକ୍ଷ ଟଙ୍କା ଥିଲା; ମାତ୍ର ଦୁଇଦିନ ତଳେ ଅର୍ଥ ବିଭାଗ ତହିଁରୁ ଅଢ଼େଇ କୋଟି ଟଙ୍କା କାଟି ନେଇଛନ୍ତି । ଆମ ସଚିବ ଶ୍ରୀ ଶରତଚନ୍ଦ୍ରନ୍‌ଙ୍କୁ ଏକଥା କହିବାରୁ ସେ କହିଲେ, ଥରେ ସେମାନେ ନିଷ୍ପତ୍ତି ନେଇ ସାରିବାପରେ ଆଉ ଆମକଥା ଶୁଣିବେ ନାହିଁ । ବରଂ ଆସନ୍ତାବର୍ଷ ସେଟଙ୍କା ଫେରି ପାଇବା ପାଇଁ ଚେଷ୍ଟା କରିବା । କହିଲି, ଯଦି ମୁଁ ଦିଲ୍ଲୀ ଯାଇପାରନ୍ତି ତା ହେଲେ କେନ୍ଦ୍ର ସରକାରଙ୍କ ଠାରୁ ଅନେକ ଟଙ୍କା ଆଣିପାରନ୍ତି । ସଚିବ, କହିଲେ, ତାହେଲେ

ଆପଣ ଯାଆନ୍ତୁ । କେତେଟଙ୍କା ଆଣିପାରିବେ ଦେଖାଯିବ । ଆସନ୍ତା ସପ୍ତାହରେ ମୋର ଦିଲ୍ଲୀଯିବା କଥା ହେଲା ।

ଦିଲ୍ଲୀରେ ପହଞ୍ଚି କେନ୍ଦ୍ରୀୟ ପଶୁପାଳନ ଆୟୁକ୍ତ (ଆନିମଲ ହଜବାଣ୍ଡ୍ରି କମିଶନର୍)ଙ୍କୁ ଭେଟିଲି । ତାଙ୍କ ଅଧୀନରେ ଯେତେ ଯୁଗ୍ମ, ସହକାରୀ ବା ଉପାୟୁକ୍ତମାନେ ଥିଲେ ତାଙ୍କ ସହିତ ମଧ୍ୟ ଭେଟିଲି । ସେମାନେ ସମସ୍ତେ ପଶୁଚିକିତ୍ସାବିତ୍ ଥିଲେ । ତେଣୁ ଓଡ଼ିଶାରେ ବହୁ ଦିନ ଧରି ଆଇ.ଏ.ଏସ୍. ଅଫିସରମାନେ ନିର୍ଦ୍ଦେଶକ ରହିବା ପରେ ମୁଁ ସେହି ପଦବୀରେ ରହିବା ସମ୍ବାଦ ଶୁଣି ସେମାନେ ପୂର୍ବରୁ ଅତ୍ୟନ୍ତ ଖୁସି ହୋଇଥିଲେ । ଏବେ ଜଣଜଣ କରି ସମସ୍ତେ ମୋତେ ଅଭିନନ୍ଦନ ଜଣାଇଲେ । ସମସ୍ତେ ମୋତେ କି ପ୍ରକାର ସାହାଯ୍ୟ କରିବେ ବୋଲି ପଚାରୁଥିଲେ । ମୋର ସେଇ ଗୋଟିଏ ଉତ୍ତରଥିଲା । ବିଭାଗୀୟ କାର୍ଯ୍ୟ କରିବାପାଇଁ ଅଧିକ ଅର୍ଥର ଆବଶ୍ୟକତା ବିଷୟ ସମସ୍ତଙ୍କୁ ଜଣାଇଲି । ସେମାନେ ପଚାରୁ ଥିଲେ - ତୁମର କେତେଟଙ୍କା ଦରକାର ? କିହଲି, ଏଇ ତିନିଚାରି କୋଟି ଟଙ୍କା ମିଳିଲେ  ମୋର ଧାର୍ଯ୍ୟ ଲକ୍ଷ୍ୟ ଏବର୍ଷପାଇଁ ପୂରଣ ହୋଇପାରିବ । ଯାହାକୁ ମୁଁ ଏକଥା କହିଲି, ସେ ମୋତେ ଚାହିଁ ହସୁଥିଲା । ସେମାନେ କହୁଥିଲେ, ଆରେ ଏତିକି ପଇସା କ'ଣ ମାଗୁଛ, ଆମ ପାଖେ ତିନି ହଜାର କୋଟି ଟଙ୍କା ଅଛି' । ତହିଁରୁ ଓଡ଼ିଶାରେ ଯେତେ ଟଙ୍କା ଖର୍ଚ୍ଚ କରି ପାରିବ ସେଥିଲାଗି ତୁମ ଯୋଜନାର ରୂପରେଖ ଆମକୁ ଜଣାଅ, ତହିଁରୁ ଯେଉଁସବୁ ସ୍କିମ୍ ଆମ ଯୋଜନା ସହିତ ଖାପ୍‌ଖାଇବ ସେବାଟେ ଆମ ପାଖରୁ ଅର୍ଥ ଯୋଗାଇ ହେବ । ପଞ୍ଜାବ, ହରିଆନା, ଆନ୍ଧ୍ର, ତାମିଲ୍‌ନାଡୁ କର୍ଣ୍ଣାଟକ ଆଦି ରାଜ୍ୟର ନିର୍ଦ୍ଦେଶକମାନେ ଆମଠୁଁ ଶହଶହ କୋଟି ଟଙ୍କା ନେଉଛନ୍ତି । ମାତ୍ର ତୁମରାଜ୍ୟରେ ଆଇ.ଏ.ଏସ୍. ନିର୍ଦ୍ଦେଶକମାନେ ଏସବୁ ବିଷୟରେ ଜାଣନ୍ତି ନାହିଁ । ତୁମେ ଏବେ ବିଭାଗୀୟ ମୁଖ୍ୟ ହେଲଣି । ତୁମର ଆଉ ଅର୍ଥାଭାବ ରହିବ ନାହିଁ । କେନ୍ଦ୍ରିୟ ସ୍ୱତନ୍ତ୍ର ଯୋଜନା ଫଣ୍ଡରୁ ତୁମପାଇଁ ଅର୍ଥ ବରାଦ କରାଯିବ । ମାତ୍ର ସେଥିପାଇଁ ତୁମେ ସ୍କିମ୍ ଦିଅ ।

ଦିଲ୍ଲୀସ୍ଥ କୃଷିଭବନରେ କୃଷି ଓ ପଶୁପାଳନ ବିଭାଗୀୟ ସଚିବ ତଥା କୃଷି ଅନୁସନ୍ଧାନ ପରିଷଦ ଅନ୍ତର୍ଗତ ବିଭିନ୍ନ ବୈଷୟିକ ବିଶେଷଜ୍ଞମାନେ ଏ ଦେଶର କୃଷି, ପଶୁପାଳନ, ପଶୁଚିକିତ୍ସା, ଦୁଗ୍ଧଉତ୍ପାଦନ, ଅଣ୍ଡା ଓ ମତ୍ସ୍ୟ ଉତ୍ପାଦନଲାଗି ବିଭିନ୍ନ ପ୍ରଦେଶରେ ପ୍ରଚଳିତ କାର୍ଯ୍ୟକ୍ରମ ଗୁଡ଼ିକୁ ନିୟନ୍ତ୍ରିତ କରିବାକୁ କାର୍ଯ୍ୟ କରନ୍ତି । ରାଜ୍ୟ ସରକାରଙ୍କ ପକ୍ଷରୁ ସେମାନଙ୍କ ସହିତ ସଂଯୋଗ ରକ୍ଷା କରିବା ଦାୟିତ୍ୱ ବିଭାଗୀୟ ସଚିବ ଓ ନିର୍ଦ୍ଦେଶକ ମାନଙ୍କର । ଦେଶର ଏହି ସର୍ବୋଚ୍ଚ ସଂସ୍ଥା ହାତରେ ଏ ସବୁ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧିଲାଗି ବିଭିନ୍ନ ଯୋଜନା ଅନୁଯାୟୀ ପ୍ରଚୁର ଅର୍ଥ ରହିଛି । ପ୍ରତି ପଞ୍ଚବାର୍ଷିକ ଯୋଜନାରେ ଏବାବଦ

ଅର୍ଥ ରାଶି ବଢ଼ିବଢ଼ି ଚାଲିଛି । ମାତ୍ର ଏସବୁ ଅର୍ଥ କେନ୍ଦ୍ରରୁ ଆଣି ରାଜ୍ୟର ବିକାଶ ଲାଗି ବିଭିନ୍ନ ରାଜ୍ୟ ସରକାର ସେମାନଙ୍କ ବୈଷୟିକ ବିଶେଷଜ୍ଞମାନଙ୍କ ଉପରେ ନିର୍ଭରଶୀଳ । ସେଥିଲାଗି ତାମିଲନାଡୁ, ଆନ୍ଧ୍ର, ପଞ୍ଜାବ, ହରିଆନ୍ନା, ପଶ୍ଚିମବଙ୍ଗ, ଗୁଜୁରାଟ ବା କର୍ଣ୍ଣାଟକ ପରି ରାଜ୍ୟମାନଙ୍କରେ ବୈଷୟିକ ବିଭାଗ ସବୁର ପରିଚାଳନା ଦାୟିତ୍ୱ ବୈଷୟିକ ବିଶେଷଜ୍ଞମାନଙ୍କ ଉପରେ ନ୍ୟସ୍ତ ଥାଏ । ସେମାନେ ଦିଲ୍ଲୀ ଯାଇ କୃଷି ଭବନରେ ଥିବା ବିଶେଷଜ୍ଞମାନଙ୍କ ସହିତ ସଂଯୋଗ ରକ୍ଷା କରି ନିଜନିଜ ରାଜ୍ୟର ବିକାଶ ଲାଗି ପ୍ରଚୁର ଅର୍ଥ ଆଣି ଇପ୍‌ସିତ ଲକ୍ଷ୍ୟ ହାସଲ କରନ୍ତି । ଆମ ବିଭାଗ ଦାୟିତ୍ୱରେ ଆଇ.ଏ.ଏସ୍ ଅଫିସରମାନଙ୍କୁ ରଖାଯିବା ଫଳରେ ସେମାନେ ଭାରତୀୟ କୃଷି ଅନୁସନ୍ଧାନ ବା ପଶୁପାଳନ ଆୟୁକ୍ତଙ୍କ ସହିତ ସମ୍ପର୍କ ରଖିପାରନ୍ତି ନାହିଁ । ଫଳରେ ପଶୁପାଳନ ଦିଗରେ ଓଡ଼ିଶାରାଜ୍ୟ ଅନ୍ୟରାଜ୍ୟ ତୁଳନାରେ ବହୁ ପଛରେ ପଡ଼ିଛି । ପଶୁଚିକିତ୍ସା ଓ ପଶୁପାଳନ ବିଷୟକ ଅଧ୍ୟୟନ ଗବେଷଣା ବା ସମ୍ପ୍ରସାରଣଗତ ଅଭିଜ୍ଞତା ଥାଇ ବୈଷୟିକ ବିଶେଷଜ୍ଞମାନଙ୍କୁ ବିଭାଗୀୟ ନିର୍ଦ୍ଦେଶକ ବା ସଚିବ ଦାୟୀତ୍ୱ ନ ଦେଇ ଏ ସବୁ ବିଷୟରେ କୌଣସି ଜ୍ଞାନଗାରିମା ବିହୀନ ଆଇ.ଏ.ଏସ୍. ଅଫିସରମାନଙ୍କୁ ଏହି ବିଭାଗ ଦାୟିତ୍ୱରେ ରଖିବା ଫଳରେ ଅନ୍ୟରାଜ୍ୟମାନଙ୍କ ତୁଳନାରେ ଓଡ଼ିଶା ପ୍ରଦେଶ ବହୁ ପଛରେ ପଡ଼ିରହିଛି । ତଥାପି ଓଡ଼ିଶାର ରାଜନୈତିକ ନେତୃବୃନ୍ଦ ଏପର୍ଯ୍ୟନ୍ତ କେବଳ ଆଇ.ଏ.ଏସ୍. ବା ଓ.ଏ.ଏସ୍. ଅଧିକାରୀମାନଙ୍କୁ ବୈଷୟିକ ବିଶେଷଜ୍ଞମାନଙ୍କ ତୁଳନାରେ ଅଧିକ ଗୁରୁତ୍ୱ ଦେଇ ଚାଲିଛନ୍ତି ।

ଆଠଜଣ ଆଇ.ଏ.ଏସ୍. ଅଫିସରଙ୍କ ପରେ ମୁଁ ପଶୁପାଳନ ବିଭାଗର ନିର୍ଦ୍ଦେଶକ ହେବା ଯୋଗୁଁ କେନ୍ଦ୍ରୀୟ ସାହାଯ୍ୟ ପାଇବା ଦିଗରେ ଚେଷ୍ଟା କଲି । କେଉଁ ସବୁ ସ୍କିମ୍‌ରେ ପଇସା ମିଳି ପାରିବ ସେ ବିଷୟରେ ମୋର ଧାରଣା ଆଦୌ ନଥିଲା । ଅନ୍ୟରାଜ୍ୟମାନେ ଯେଉଁଳି ଯୋଜନା କାର୍ଯ୍ୟକାରୀ କରୁଛନ୍ତି ସେ ସବୁର ନକଲ ସେହି କାର୍ଯ୍ୟାଳୟରୁ ପାଇବାକୁ ଅନୁରୋଧ କଲି । ଦୁଗ୍ଧ ଉତ୍ପାଦନ, ମେଷ, ଛାଗ ଓ ଘୁଷୁରୀ ପାଳନ ଲାଗି ପ୍ରଚୁର ଅର୍ଥ ଥିବାର ଜାଣି ସେସବୁ ଲାଗି ଯୋଜନା ପ୍ରସ୍ତୁତ କଲି । ସେତେବେଳକୁ ଓଡ଼ିଶାର ତେର ଜିଲ୍ଲା ମଧ୍ୟରୁ କଟକ, ପୁରୀ, କେନ୍ଦୁଝର ଓ ସମ୍ବଲପୁର ଜିଲ୍ଲାମାନଙ୍କରେ ଓମ୍‌ଫେଡ୍ ଜରିଆରେ ଦୁଗ୍ଧ ଉତ୍ପାଦନ ଯୋଜନା ଚାଲିଥିଲା । ଆଉ ନଅଟି ଜିଲ୍ଲାରେ ଦୁଗ୍ଧ ଉତ୍ପାଦନ ଲାଗି ପ୍ରାରମ୍ଭିକ ଯୋଜନା ପ୍ରସ୍ତୁତ କରି ପରେ ପୂର୍ଣ୍ଣାଙ୍ଗ ଯୋଜନାର ରୂପରେଖ ଦାଖଲ କରିବି ବୋଲି ଲେଖିଦେଲି । ଓଡ଼ିଶା ଭବନରେ ରହି ଆମ ରାଜ୍ୟରେ ମେଣ୍ଢା, ଛେଳି ଓ ଘୁଷୁରୀ ପାଳନ ପାଇଁ ଉତ୍ତମ ବୋଦା ପ୍ରଜନନ ସ୍କିମ୍ ତିଆରି କରି ଦୁଇଦିନ ମଧ୍ୟରେ ଦାଖଲ କରିଦେଲି । ଯାହା କାଗଜପତ୍ର ଏଠାରେ ଦାଖଲ କଲି ସେସବୁ ଆମ

ରାଜ୍ୟ ସରକାରଙ୍କ ଅନୁମୋଦନ ପାଇ ଫେରି ଆସିବା ପରେ କେନ୍ଦ୍ରୀୟ ଅର୍ଥ ମିଳିପାରିବ ବୋଲି ମୋତେ କମିଶନର କହିଲେ । ଏସବୁ ଯୋଜନାର ଏ ବର୍ଷ ପାଇଁ ସମୁଦାୟ ଅର୍ଥ ଆବଶ୍ୟକତା ପ୍ରାୟ ୩୭ କୋଟି ଟଙ୍କା ଥିଲା । ତହିଁରୁ କେନ୍ଦ୍ରୀୟ ଅନୁଦାନ ଥିଲା ୧୭ କୋଟି ଟଙ୍କା । ତେବେ ଏତକ ଟଙ୍କା ଖର୍ଚ୍ଚ କରି ସାରି ତାର ବିନିଯୋଗ ପତ୍ର କେନ୍ଦ୍ର ସରକାରଙ୍କୁ ଦାଖଲ କରିବା ପରେ ଆସନ୍ତା ବର୍ଷପାଇଁ ଟଙ୍କା ମିଳିବ ବୋଲି ବୁଝିଲି ।

ଓଡ଼ିଶା ଫେରିଆସି ବିଭାଗୀୟସଚିବ ଶରତ ଚନ୍ଦ୍ରନ୍‌ଙ୍କୁ ସମସ୍ତ କାଗଜପତ୍ର ଦେଇ ଏ ବର୍ଷ ପାଇଁ ୧୭ କୋଟି ଟଙ୍କା ମିଳିବା କଥା କହିବାରୁ ସେ ଖୁବ୍ ଖୁସି ହୋଇଗଲେ । ଆଉ କାଳ ବିଳମ୍ବ ନ କରି ଏ ଖବର ମୁଖ୍ୟ ଶାସନ ସଚିବ ଓ ଅର୍ଥ ବିଭାଗ ସଚିବଙ୍କୁ ଜଣାଇବାକୁ ଚାଲିଗଲେ । ମୁଁ ମନ୍ତ୍ରୀଙ୍କ ସହିତ ଆଲୋଚନା ସାରି କଟକ ଫେରି ଆସିଲି । ପ୍ରତି ଜିଲ୍ଲାର ମୁଖ୍ୟ ଅଧିକାରୀ ଓ ଫାର୍ମ ପରିଚାଳକମାନଙ୍କୁ ଡକାଇ ପଠାଇଲି । ପ୍ରାୟ ଏକ ସପ୍ତାହ ପରେ ସେମାନେ ଆସି କେନ୍ଦ୍ରୀୟ ସାହାଯ୍ୟ ପ୍ରାପ୍ତ ଯୋଜନାଗୁଡ଼ିକ ପାଇଁ ସମସ୍ତ ଆନୁସଙ୍ଗିକ ବ୍ୟବସ୍ଥା କରିବା ପାଇଁ ସେମାନଙ୍କୁ ଉପଯୁକ୍ତ କାର୍ଯ୍ୟପନ୍ଥା ବୁଝାଇ ଦେଇ ଗୋଟିଏ ମାସ ଭିତରେ ସେସବୁ ଶେଷ କରିବା ପାଇଁ ନିର୍ଦ୍ଦେଶ ଦେଲି ।

ପଶୁପାଳନ ବିଭାଗଟା ରାଜ୍ୟର ଏକ ବଡ଼ ବିଭାଗ । ଓଡ଼ିଶାର ପ୍ରତି ସହର, ଥାନା ଓ ପଞ୍ଚାୟତ ମାନଙ୍କରେ ଏହି ବିଭାଗର ବିଭିନ୍ନ କାର୍ଯ୍ୟାଳୟ ଅଛି । ଏ ବିଭାଗରେ ଯେତେ ଆଇ.ଏ.ଏ.ଏସ୍. ନିର୍ଦ୍ଦେଶକ ଥିଲେ ପ୍ରାୟ ପନ୍ଦରହଜାର ତଳିଆ କର୍ମଚାରୀମାନଙ୍କର ଆପତ୍ତି ଅଭିଯୋଗ ଶୁଣିବାକୁ ସେମାନଙ୍କର ସମୟ ନ ଥିଲା । ନିର୍ଦ୍ଦେଶକଙ୍କୁ ଭେଟି ନିଜର ଦୁଃଖ ଜଣାଇବାକୁ କେହି ତଳିଆ କର୍ମଚାରୀ ଚାହିଁଲେ, ଯୁଗ୍ମ ନିର୍ଦ୍ଦେଶକ, ଉପନିର୍ଦ୍ଦେଶକ ବା ଏଷ୍ଟାବ୍ଲିଶମେଣ୍ଟ ଅଫିସରଙ୍କ ପାଖକୁ ସେମାନଙ୍କୁ ପଠାଇ ଦିଆଯାଉଥିଲା । ରାଜାମଣିଙ୍କ ସମୟରେ ନିର୍ଦ୍ଦେଶକଙ୍କ ପ୍ରକୋଷ୍ଠ ସାମନାରେ ସବୁବେଳେ ନାଲିବତୀ ଜଳୁଥିଲା । କେବଳ ଯୁଗ୍ମ ନିର୍ଦ୍ଦେଶକ ବା ଅତିରିକ୍ତ ନିର୍ଦ୍ଦେଶକ ଦରଜା ଖୋଲି ନିର୍ଦ୍ଦେଶକଙ୍କୁ ଦେଖା କରିପାରୁଥିଲେ । ସେମାନଙ୍କ ଛଡ଼ା ନିର୍ଦ୍ଦେଶାଳୟର ବରିଷ୍ଠ କିରାଣୀମାନେ ଫାଇଲ୍ ଧରି ନିର୍ଦ୍ଦେଶକଙ୍କ କକ୍ଷ ଭିତରକୁ ଯାଇ ପାରୁଥିଲେ । ମାତ୍ର ଜିଲ୍ଲା କିମ୍ବା ଉପଖଣ୍ଡ ଅଧିକାରୀ, ଉପନିର୍ଦ୍ଦେଶକ ବା ଜିଲ୍ଲାସ୍ତରୀୟ କର୍ମଚାରୀମାନେ ନିର୍ଦ୍ଦେଶକଙ୍କୁ ଭେଟିବା ସହଜସାଧ ନ ଥିଲା । ବିଭିନ୍ନ ଜିଲ୍ଲାର ଚତୁର୍ଥଶ୍ରେଣୀ, ତୃତୀୟଶ୍ରେଣୀ ବା ଦ୍ୱିତୀୟଶ୍ରେଣୀ କର୍ମଚାରୀମାନେ ସେମାନଙ୍କର ଅଭାବ ଅସୁବିଧା ବିଷୟରେ ନିର୍ଦ୍ଦେଶକଙ୍କୁ ଜଣାଇ ତାଙ୍କର ସାହାଯ୍ୟ ପ୍ରାର୍ଥନା କରିବାକୁ କୋରାପୁଟ, କଳାହାଣ୍ଡି, ସୁନ୍ଦରଗଡ଼ ବା କେନ୍ଦୁଝର ପରି ଦୂରଦୂରାନ୍ତରୁ ଆସି ତାଙ୍କର ଦେଖା ପାଉ ନଥିଲେ । ଶହଶହ ଟଙ୍କା ଖର୍ଚ୍ଚକରି ବିଭିନ୍ନ ଜିଲାରୁ ଆସି କଟକରେ ତିନି ଚାରିଦିନ ରହିବା ପରେ ସେମାନେ

ନିରାଶ ହୋଇ ଫେରୁଥିଲେ । ସାରା ରାଜ୍ୟରେ ଆମ ବିଭାଗର ପ୍ରାୟ ୧୫୦୦୦ କର୍ମଚାରୀ ଓ ଶ୍ରମିକମାନେ କାମ କରୁଥଲେ ମଧ୍ୟ ସେମାନଙ୍କର ସମସ୍ୟା ବିଷୟରେ କେହି ଚିନ୍ତା କରୁ ନ ଥିଲେ । ପ୍ରତିଦିନ ନିର୍ଦ୍ଦେଶାଳୟକୁ ୪/୫ଶହ ଚିଠି ଆସୁଥିଲା । ସେସବୁ ଖୋଲା ଯାଇ ପ୍ରଥମେ ନିର୍ଦ୍ଦେଶକଙ୍କ ଅବଗତି ନିମନ୍ତେ ସେଥିରୁ ବଛାବଛା କେତେଖଣ୍ଡ ସରକାରୀଚିଠି ପଠାଇଦେଇ ବାକୀ ସବୁ ନମ୍ବର ପଡ଼ି ବିଭିନ୍ନ ସେକ୍ସନ୍‌କୁ ପଠାଯାଉଥିଲା । ସେସବୁ ଚିଠି ନିର୍ଦ୍ଦେଶକଙ୍କ ଦୃଷ୍ଟିକୁ ଆସିବାକୁ ମାସ ମାସ ବିତିଯାଉଥିଲା । କୌଣସି କୌଣସି ଚିଠି ଉପରେ ମଧ୍ୟ ପ୍ରତିକାରାତ୍ମକ କାର୍ଯ୍ୟ ହେବା ଅସମ୍ଭବ ହୋଇପଡୁଥିଲା । ଲୋକେ ଚିଠି ଉପରେ ଚିଠି ଲେଖି ନିଜନିଜର ଦୁଃଖ ଜଣାଉଥିଲେ । ମାତ୍ର ସେସବୁ ବିଡ଼ା ବନ୍ଧାହୋଇ କିରାଣିବାବୁଙ୍କ ଟେବୁଲ ଉପରେ ପଡ଼ିରହୁଥିଲା । ତେଣୁ ନିର୍ଦ୍ଦେଶାଳୟକୁ ଆସୁଥିବା ସବୁତକ ଚିଠି ସିଧା ମୋ ପାଖକୁ ପଠାଇ ଦେବାକୁ ନିର୍ଦ୍ଦେଶ ଦେଲି । ସେସବୁ ଚିଠି ପଢ଼ି ମୋର ହୃଦ୍‌ବୋଧ ହେଲେ, ଯାହା କରିବା କଥା ସେଭଳି ନିର୍ଦ୍ଦେଶ ଦେଇ ଚିଠିଗୁଡ଼ିକ ସେକ୍ସନ୍‌କୁ ଫେରାଇବା ଆରମ୍ଭ କଲି । ଏଭଳି କରିବା ଦେଖି ନିର୍ଦ୍ଦେଶାଳୟର କିରାଣୀ ମହଲରେ ହଇଚଇ ପଡ଼ିଗଲା ।

ବିଭିନ୍ନ ଜିଲ୍ଲାରୁ ବିଭାଗୀୟ ତଳିଆ କର୍ମଚାରୀମାନେ ବାରମ୍ବାର ସେମାନଙ୍କର ଆପତ୍ତି ଅଭିଯୋଗ ଚିଠିଲେଖି ଜଣାଇବା ପରେ ବର୍ଷବର୍ଷ ଧରି କୌଣସି ପ୍ରତିକାର ନ ହେଲେ ସେମାନେ ଛୁଟିନେଇ କଟକ ଆସୁଥିଲେ ଓ ନିର୍ଦ୍ଦେଶକଙ୍କୁ ଭେଟି ଦୁଃଖ ଜଣାଇବା ଅସମ୍ଭବ ଜାଣି ନିର୍ଦ୍ଦେଶାଳୟର କିରାଣୀମାନଙ୍କୁ ଭେଟି ସେମାନଙ୍କ ଚିଠି ଉପରେ ପ୍ରତିକାର ବ୍ୟବସ୍ଥା କରିବାଲାଗି ଅନେକ ଲାଞ୍ଚ ରିସ୍ୱତ ମଧ୍ୟ ଦେଉଥିଲେ । ଯେଉଁ କେତେଦିନ ମୁଁ ନିର୍ଦ୍ଦେଶକ ଦାୟିତ୍ୱରେ ରହିବି ସେତିକି ସମୟ ମଧ୍ୟରେ ଏ ପରି ନ ଘଟୁ ବୋଲି ଚିନ୍ତାକରି ଏହି ନୂଆବ୍ୟବସ୍ଥା କଲି । ଅସୁବିଧାରେ ପଡ଼ି ଦୂରଦୂରାନ୍ତରୁ ଆସୁଥିବା ତଳିଆ କର୍ମଚାରୀମାନେ ଯେପରି ମୋତେ ଭେଟି ସେମାନଙ୍କର ଦୁଃଖ ଜଣାଇ ପାରିବେ, ସେଥିଲାଗି ଅନ୍ୟ ବିକଳ୍ପ ବ୍ୟବସ୍ଥା ମଧ୍ୟ କଲି ।

ନିର୍ଦ୍ଦେଶକ ହେବା ପରେ ବିଭାଗୀୟ ଶାସନ ସଚିବ ମୋତେ କାଣ୍ଟେନ୍‌ମେଣ୍ଟ ରୋଡ୍‌ରେ ଥିବା ଆମ ବିଭାଗୀୟ ନିର୍ଦ୍ଦେଶକଙ୍କ ପଇଁ ଉଦ୍ଦିଷ୍ଟ କ୍ୱାର୍ଟରରେ ରହିବା ପାଇଁ କହିଲେ । ମାତ୍ର ମୋର ଚାକିରୀ ଆଉ ମାତ୍ର ତିନି ବର୍ଷ ଥିବାରୁ ବାଦାମବାଡ଼ିରେ ଥିବା ମୋ ନିଜଘର ଛାଡ଼ି ବିଭାଗୀୟ କ୍ୱାର୍ଟରରେ ରହିବାକୁ ମୁଁ ରାଜି ହେଲିନାହିଁ ।

ଯେତେବେଳେ ମୁଁ ଉତ୍ତରାଞ୍ଚଳରେ ଯୁଗ୍ମ ନିର୍ଦ୍ଦେଶକ ଭାବେ ଚିପିଲିମାରେ ଥିଲି, ସେତେବେଳେ ଅନୁଗୁଳରେ ଥିବା ବିଭାଗୀୟ କୁକୁଡ଼ା ଫାର୍ମ ଉଠାଇ ଦେବାକୁ ଦାବୀ ହେଲା । ଏହି ଫାର୍ମଟି ଓଡ଼ିଶାର ସର୍ବପୁରାତନ କୁକୁଡ଼ା ଫାର୍ମ । ସ୍ୱାଧୀନତାର ପ୍ରାକ୍ କାଳରୁ

ଏହା ପ୍ରତିଷ୍ଠିତ । ହେଲେ, ବିଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଅନୁଗୁଳ ସହରର ଆୟତନ ବୃଦ୍ଧି ପାଇବାରେ ଲାଗିଛି । ଏବେ ଆମ ଫାର୍ମଟା ଅନୁଗୁଳ ସହରର ମଧ୍ୟଭାଗରେ ରହିଗଲାଣି । ଅଠାବନ ଏକର ଜମିରେ ଏହି ଫାର୍ମ ଥିବାରୁ ଏତେ ମୂଲ୍ୟବାନ ଜମିକୁ ସାମାନ୍ୟ କେତେ ହଜାର କୁକୁଡ଼ା ପାଳିବା ପାଇଁ ଦେବାକୁ ରାଜସ୍ୱ ବିଭାଗ ପକ୍ଷରୁ ବିରୋଧ କରାଗଲା । ତା ଛଡ଼ା ଏହି ଅଠାବନ ଏକର ଜମି ଆମ ବିଭାଗ ନାମରେ ନ ଥିଲା । ଏଥିଲାଗି ଉତ୍ତରାଞ୍ଚଳ ରାଜସ୍ୱ କମିଶନର ଏକ ସଭା ଡକାଇଲେ । ଆମ ବିଭାଗ ପକ୍ଷରୁ ମୁଁ ଏହି ସଭାରେ ଯୋଗ ଦେଇ ଫାର୍ମ ଉଠାଇ ନେବାକୁ ରାଜିହେଲି । ମାତ୍ର ଏଥିପାଇଁ ସହର ବାହାରେ ଏକଶହ ଏକର ଜମି ପଶୁପାଳନ ବିଭାଗକୁ ଦେବାକୁ ଦାବୀ କଲି । ଏଥିପାଇଁ ଏକ ନକ୍ସା ତିଆରି ହେଲା । ଅନୁଗୁଳରୁ ସମ୍ବଲପୁର ଫେରିବା ବେଳକୁ କମିଶନରଙ୍କ ଗାଡ଼ିରେ ମୁଁ ଆସିଲି । ବାଟରେ ଆମ ବିଭାଗ ବିଷୟରେ ଅନେକ ଆଲୋଚନା ହେଲା । ବିଭାଗୀୟ କାର୍ଯ୍ୟ ଉପରେ ମୋର ଭବିଷ୍ୟତ ଚିନ୍ତାଧାରା ବିଷୟରେ ଜାଣି କମିଶନର ଶ୍ରୀ ଶ୍ରୀନିବାସ ରଥ କହିଲେ, ଦେବଗଡ଼ ଅଞ୍ଚଳରେ ଆପଣଙ୍କ ବିଭାଗର କିଛି କାର୍ଯ୍ୟକ୍ରମ ନାହିଁ। ସେଠାରେ ଅନେକ ସରକାରୀ ଜାଗା ପଡ଼ିଛି । ଏବେ ନୂଆ ଜଳସେଚନ ଯୋଜନା କାର୍ଯ୍ୟକ୍ଷମ ହେଲେ ବହୁତ ଜମି ଆବାଦ ହୋଇ ପାରିବ । ଆପଣ ସେଥିପାଇଁ ପ୍ରସ୍ତାବ ଦେଲେ ମୁଁ ଆପଣଙ୍କ ବିଭାଗକୁ ଆବଶ୍ୟକ ଜମି ଦେଇପାରିବି । ଏହାର ଏକମାସ ମଧ୍ୟରେ ମୁଁ ଦେବଗଡ଼ରେ ଏକ ଘାସଫାର୍ମ ଓ ପଶୁପାଳନ ଫାର୍ମ ପାଇଁ ପ୍ରସ୍ତାବ ଦେଲି । ଶ୍ରୀ ରଥ ମୋ ପ୍ରସ୍ତାବ ପାଇବା ପରେ ଦେବଗଡ଼ ସହରଠାରୁ ୧୭ ମାଇଲ ଦୂରରେ ତିନିଶହ ଏକର ସରକାରୀ ଜମି ଆମ ବିଭାଗକୁ ଦେଇଦେଲେ । ନିର୍ଦ୍ଦେଶକ ହେବା ପରେ ସେହି ଜମିରେ ମୁଁ ଛେଳି ଓ ମେଣ୍ଢାମାନଙ୍କୁ ରଖାଇ ପ୍ରାୟ ପଚାଶ ଏକର ଜମିରେ ଘାସ ଚାଷ କରାଇଲି । କର୍ମଚାରୀମାନେ ରହିବା ପାଇଁ ବିଭାଗୀୟ ବଜେଟ୍‌ରୁ ଘର ତିଆରି କରାଇ ତାରବାଡ଼ ଦେବାର ବ୍ୟବସ୍ଥା କରାଇଲି । ମୋର ଅବସର ଗ୍ରହଣ କରିବା ପରେ ସେଠାକାର କାର୍ଯ୍ୟକ୍ରମ ବିଷୟରେ ଏପର୍ଯ୍ୟନ୍ତ କିଛି ଶୁଣି ନାହିଁ ।

ସରକାରୀ ଚାକିରୀଟାଏ ପାଇବା ସବୁକାଳରେ ସୌଭାଗ୍ୟଜନକ କଥା । ବିଂଶ ଶତାବ୍ଦୀରେ ସରକାରୀ ଚାକିରୀ ପ୍ରତି ଯେତେ ପ୍ରଲୋଭନ ଥିଲା, ଏକବିଂଶ ଶତାବ୍ଦୀରେ ଆହୁରି ବଢ଼ିଯାଇଛି । ଥରେ ଜଣେ ଏହି ସୁବିଧା ପାଇଗଲେ ମୃତ୍ୟୁ ପର୍ଯ୍ୟନ୍ତ ପରାନୁଶରଣ ନକରି ସ୍ୱଛନ୍ଦରେ ସେ ଚଳିଯାଏ । ମାତ୍ର ଚାକିରୀକାଳ ଭିତରେ ଯଦି ତା'ର ମୃତ୍ୟୁ ହୁଏ ତେବେ ତା'ର ପରିବାର ଅଭାବ ଅସୁବିଧାର ସମ୍ମୁଖୀନ ହୁଅନ୍ତି । ସେଥିଲାଗି ଜଣେ ସରକାରୀ କର୍ମଚାରୀର ମୃତ୍ୟୁ ହେଲେ ତା ପରିବାରକୁ ଥଇଥାନ କରିବାକୁ ସେହି ପରିବାରର ଜଣେ କାର୍ଯ୍ୟକ୍ଷମ ଲୋକକୁ ଚାକିରୀ ଦେବାର ବ୍ୟବସ୍ଥା ରହିଛି । ଅଶୀଦଶକରେ ସରକାରୀ

କର୍ମଚାରୀଙ୍କୁ ଆଉ ଏକ ସୁବିଧା ଦିଆଗଲା । କୋଡ଼ିଏ ବର୍ଷ ସରକାରୀ ଚାକିରୀ କରିଥିବା ଲୋକ ଯଦି ଅବସର ନେବାକୁ ପ୍ରାର୍ଥୀ ହୁଏ ତେବେ ତା ପରିବାରର ଜଣକୁ ଚାକିରୀ ଦିଆଯାଇପାରିବ । ଅତି କମ୍‌ରେ ପାଞ୍ଚବର୍ଷ ଚାକିରୀ ଥାଇ ଲୋକ ଏ ସୁବିଧା ପାଇବାର ବ୍ୟବସ୍ଥା କରିବାର କଥା । ଏପରି ଲୋକଙ୍କର ଆମ ନିର୍ଦ୍ଦେଶାଳୟରେ ଏକ ଲମ୍ବା ତାଲିକା ଥିଲା । ମୃତଲୋକଙ୍କ ପିଲାମାନେ କିମ୍ବା ସ୍ୱେଚ୍ଛାରେ ଅବସର ନେଇଥିବା ସରକାରୀ କର୍ମଚାରୀଙ୍କ ପିଲା ପକ୍ଷରେ ଚାକିରୀ ପାଇବା ସହଜସାଧ୍ୟ ନଥିଲା । ଲାଞ୍ଚ ରିସ୍ୱତ୍ ଦେଇ ପାରିଲେ ଲୋକେ ଚାକିରୀ ପାଉଥିଲେ । ସର୍ବନିମ୍ନ ତିରିଶ ହଜାର ଟଙ୍କାରୁ ଏକ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଜଣ ପିଛା ଲାଞ୍ଚ ଅସୁଲକରି କିରାଣିମାନେ ଭାଗବାଣ୍ଟି ନେଉଥିଲେ । ଅଳ୍ପପଇସା ଦେଉଥିବା ଲୋକକୁ ଚତୁର୍ଥ ଶ୍ରେଣୀ ଓ ବେଶୀ ଲାଞ୍ଚ ଦେଉଥିବା ଲୋକ ତୃତୀୟ ଶ୍ରେଣୀ ଚାକିରୀରେ ମୁତୟନ କରାଯାଉଥିଲା । ଅନୁସନ୍ଧାନ କର ଦେଖିଲି ଏଗାର ଶହ ଲୋକଙ୍କର ଦରଖାସ୍ତ ପଡ଼ିରହିଛି । ଲାଞ୍ଚ ପାଇବା ପରେ ଗୋଟିଏ ଗୋଟିଏ ନଥି କାଢ଼ି ତା ଉପରେ ନିର୍ଦ୍ଦେଶକଙ୍କ ଅନୁମତି ନିଆ ଚାଲିଛି । ମୋ ପୂର୍ବରୁ ଥିବା ନିର୍ଦ୍ଦେଶକମାନେ ବଦନାମ ହେବା ଭୟରେ ଏସବୁ ନଥି ଆଦୌ ଖୋଲୁ ନ ଥିଲେ । ମାତ୍ର ଚାକିରୀ ଲୋଭରେ ଅସୁବିଧାରେ ଥିବା ଲୋକମାନେ ହଜାର ହଜାର ଟଙ୍କା ଧରି ପ୍ରତିଦିନ ଆମ ନିର୍ଦ୍ଦେଶାଳୟର କିରାଣୀମାନଙ୍କ ଘରକୁ ଧାଉଁ ଥିଲେ । ଏସବୁ କଥା ମୁଁ ଜାଣିଥିଲି । ତେଣୁ ଏପରି ଦୁର୍ନୀତିର ପୂର୍ଣ୍ଣଚ୍ଛେଦ ପକାଇବା ପାଇଁ ପଦକ୍ଷେପ ନେଲି ।

ମୁଁ ଏକ କମିଟି ଗଠନ କରି ଦରଖାସ୍ତ ପାଇବାର ବରିଷ୍ଠତା ଭିତ୍ତିରେ ଥରକେ ଏକଶହ କରି ଏଗାର ଦଳ ପ୍ରାର୍ଥୀଙ୍କୁ ବଛାବଛି ପରୀକ୍ଷା ପାଇଁ ଡକାଇଲି । ସେମାନଙ୍କର ଶିକ୍ଷାଗତ ଯୋଗ୍ୟତା ଓ ଲେଖାଲେଖି ପରୀକ୍ଷା କରାଇ କାହାକୁ କେଉଁ ଚାକିରୀ ଦିଆଯାଇପାରିବ ସେଭଳି ତାଲିକା ପ୍ରସ୍ତୁତ କରିସାରି ଚୟନ କମିଟି ଦ୍ୱାରା ତାହା ଠିକ୍ ଭାବେ ତଦାରଖ କରାଇ ଚାକିରୀ ଦେବାର ବ୍ୟବସ୍ଥା କଲି । ଫଳରେ ପ୍ରାୟ ତିନିମାସ ଭିତରେ ଏଗାରଶହ ପ୍ରାର୍ଥୀ ଚାକିରୀ ପାଇଗଲେ । ମୋର ଏ କାର୍ଯ୍ୟ ଫଳରେ ଲାଞ୍ଚ ନେଉଥିବା ଲୋକେ ହତାଶ ହୋଇଗଲେ । ଏଥି ସହିତ ଦୀର୍ଘଦିନ ଧରି ଚାକିରୀ ନପାଇ ଦୁଃଖ କଷ୍ଟରେ ଚଳୁଥିବା ଯୁବ ଗୋଷ୍ଠୀଙ୍କର ଥଇଥାନ ସମ୍ଭବହେଲା ।

ଯୁଗ୍ମ ନିର୍ଦ୍ଦେଶକ ଥିଲାବେଳେ ଉତ୍ତରାଞ୍ଚଳର ଦଶଟି ଜିଲାରେ ଖାଲିଥିବା ଚତୁର୍ଥ ଶ୍ରେଣୀ ପଦବୀମାନଙ୍କରେ ସେସବୁ ଜିଲ୍ଲାରେ ନିୟୋଜିତ ବିଭାଗୀୟ ଶ୍ରମିକମାନଙ୍କୁ ଥଇଥାନ କରାଇଥିଲି । ଏବେ କେନ୍ଦ୍ରାଞ୍ଚଳ ଓ ଦକ୍ଷିଣାଞ୍ଚଳ ଜିଲ୍ଲାମାନଙ୍କରେ ଖାଲି ରହିଥିବା ଚତୁର୍ଥ

ଶ୍ରେଣୀ ଚାକିରୀରେ ସେସବୁ ଜିଲ୍ଲାରେ କାର୍ଯ୍ୟରତ ବିଭାଗୀୟ ଶ୍ରମିକମାନଙ୍କୁ ରଖାଇବାକୁ କାଗଜପତ୍ର ଠିକ୍ କରାଇଲି । କଟକର ଖପୁରିଆ, ଭଞ୍ଜନଗର, କୋରାପୁଟ, କଳାହାଣ୍ଡି ବା ସିମିଳିଗୁଡ଼ା ଆଦି ଫାର୍ମ ଓ କୋଡ଼ିଏଟି ଜିଲ୍ଲାରେ ଥିବା ଜିଲ୍ଲା ତଥା ଉପଖଣ୍ଡ କାର୍ଯ୍ୟାଳୟମାନଙ୍କରେ କାର୍ଯ୍ୟରତ ଶ୍ରମିକ ମାନଙ୍କ ମଧ୍ୟରୁ ବରିଷ୍ଠତା ଭିତ୍ତିରେ ବାଛି ପ୍ରାୟ ଏକହଜାର ଲୋକଙ୍କୁ ଚାକିରୀ ଦିଆଗଲା । ଫଳରେ ଦୀର୍ଘଦିନରୁ ଏ ବିଭାଗ ପାଇଁ ଦିନମଜୁରିଆ ଭାବେ କାର୍ଯ୍ୟକରୁଥିବା ବହୁ ଗରିବ ଲୋକଙ୍କୁ ଥଇଥାନ କରାଯାଇ ପାରିଲା । ପୂର୍ବରୁ ଏ କାର୍ଯ୍ୟ କରିବାକୁ କୌଣସି ନିର୍ଦ୍ଦେଶକ ସାହସ କରୁନଥିଲେ । ଏହାର ମୁଖ୍ୟ କାରଣ ହେଉଛି ସ୍ୱାର୍ଥପରତା । ପାଠଶାଠ ପଢ଼ି ଆଇ.ଏ.ଏସ୍. କିମ୍ବା ଓ.ଏ.ଏସ୍ ପଦବୀରେ ଉପରିସ୍ଥ କର୍ମଚାରୀଭାବେ ଚାକିରୀ ପାଇଲେ ଲୋକ କେବଳ ନିଜର ଭବିଷ୍ୟତ କଥା ଚିନ୍ତା କରେ । ନିଜର କେମିତି ପଦୋନ୍ନତି ହେବ, ଦରମା ବଢ଼ିବ, ଗାଡ଼ିଘୋଡ଼ା ଥାଟପଟାଳି ମଧ୍ୟରେ ସୁଖରେ ଦିନ କଟିବ ଓ ପାରିବାରିକ ଉନ୍ନତି ହେବ, ତାହା ଶତକଡ଼ା ୯୫ ଭାଗ ଲୋକ ଚିନ୍ତା କରନ୍ତି । ଅନ୍ୟ ଲୋକର ଦୁଃଖ ବିଷୟରେ କେବେ ସେମାନେ ଭାବନ୍ତି ନାହିଁ । ତଳିଆ କର୍ମଚାରୀଟିଏ କେତେ ଦୁଃଖରେ ଅଛି, ତାର ରୋଗ ବ୍ୟାଧି ବେଳେ ଆର୍ଥିକ ସାହାଯ୍ୟ ଦିଆଯାଉଛି କି ନା ତା'ର ପିଲାମାନେ ମଣିଷ ହେବାକୁ ସୁବିଧା ଅଛି କି ନା, ତା'ର ନ୍ୟାଯ୍ୟ ପାଉଣା ତାକୁ ଯଥା ସମୟରେ ମିଳୁଛି କି ନାହିଁ ଏ ସବୁ କଥା ଚିନ୍ତା କରିବାକୁ ବଡ଼ ଅଫିସରଙ୍କର ବେଳ ନ ଥାଏ । ତଳିଆ ସରକାରୀ କର୍ମଚାରୀଙ୍କ ଠାରୁ ଆହୁରି ଦୁଃଖରେ ଥାଆନ୍ତି ସରକାରୀ କାର୍ଯ୍ୟରେ ନିୟୋଜିତ ଦିନ ମଜୁରିଆମାନେ । ସେମାନଙ୍କର ରହିବାକୁ ବାସଗୃହ ନଥାଏ, ପିଲାଙ୍କୁ ପଢ଼ାଇବାକୁ ପଇସା ନଥାଏ, ବେମାର ହେବା ସମୟରେ ଔଷଧ କିଣିବାକୁ ମଧ୍ୟ ସମ୍ବଳ ନଥାଏ । ଉଚ୍ଚ ପଦାଧିକାରୀ ସରକାରୀ ଅଫିସରଙ୍କ ପାଖକୁ ଯାଇ ସେମାନଙ୍କ ଦୁଃଖ ଜଣାଇବାର ସୁବିଧା ମଧ୍ୟ ନଥାଏ । ସେଭଳି ଲୋକଙ୍କ ଠାରୁ ଲାଞ୍ଚ ରିସ୍ୱତ୍ ପାଇବାକୁ ଅମଲାତାନ୍ତ୍ରିକ ଲୋକେ ଚାହିଁ ବସିଥାନ୍ତି । ବିଭାଗୀୟ କର୍ମକର୍ତ୍ତାମାନେ ସେମାନଙ୍କ ବିଷୟରେ ଆଦୌ ଚିନ୍ତା ନକରି କେବଳ ନିଜ ସ୍ୱାର୍ଥ ପ୍ରତି ସଚେତନ ଥାଆନ୍ତି । ତେଣୁ କାହାର ଦୁଃଖ ଶୁଣି ତାକୁ ସାହାଯ୍ୟ କରିବା କଥା ସେମାନଙ୍କ ମନରେ ନଥାଏ । ଖାଲିପଡ଼ିଥିବା ପଦ ପଦବୀରେ ବେକାର ଯୁବକମାନଙ୍କୁ ଯୋଗ୍ୟତା ଭିତ୍ତିରେ ରଖାଇବାର ସାହସ ଅଧିକାଂଶ ଉଚ୍ଚପଦାଧିକାରୀଙ୍କର ନଥାଏ । ଏହା ଦ୍ୱାରା କାଳେ ସେମାନଙ୍କୁ ଭବିଷ୍ୟତରେ କେହି ବଦନାମ କରିଦେବ, ସେପରି ଭୟଯୋଗୁଁ ଲୋକଙ୍କୁ ସାହାଯ୍ୟ କରିବା କଥା ସେମାନେ ମନରୁ ଦୂରେଇ ଦିଅନ୍ତି । ଅଧିକାଂଶ ଲୋକଙ୍କ ନୀତି ହେଉଛି - "ଆପେ ବଞ୍ଚିଲେ ବାପର ନାଆଁ ।" ସ୍ୱାର୍ଥନଥାଇ କାହାକୁ ସାହାଯ୍ୟ କରିବା ସେମାନଙ୍କର ନୀତି ବିରୁଦ୍ଧ କଥା । ହେଲେ, ମୁଁ ପିଲାଟି ଦିନରୁ ଲୋକମାନଙ୍କୁ ମୋ ବାପା ଯେପରି ସାହାଯ୍ୟ କରିବା ଦେଖି ଆସିଛି; ତାହା ମୋତେ ଉଦ୍‌ବୁଦ୍ଧ କରିଥିଲା ।

ଉପକୃତ ହେଉଥିବା ଲୋକର ଆନନ୍ଦରେ ମୋ ବାପା ସୁଖ ପାଉଥିବା ମୁଁ ଅନୁଭବ କରିଛି । ତେଣୁ ଯେତେ ଅଧିକ ଲୋକଙ୍କୁ ସାହାଯ୍ୟ କରାଯାଇ ପାରେ ସେଥିପାଇଁ ଲାଗିପଡ଼ିବା ମୋ ପକ୍ଷରେ ଆମୋଦଦାୟକ ଥିଲା । ଗରିବ ଲୋକଙ୍କୁ ସାହାଯ୍ୟ କରିବାର ଅଦମ୍ୟ ସାହସ ନେଇ ଲାଞ୍ଛିତ ଠାରୁ ବହୁ ଦୂରରେଥାଇ ଏକାର୍ଯ୍ୟ ମୁଁ ସମାହିତ କରିବାକୁ ଶ୍ରେୟ ମନେକଲି । ତଥାପି ଏହି ଅସନ୍ତୁଷ୍ଟ କିରାଣୀ ଗୋଷ୍ଠୀ କିଛି ଅଘଟଣ ଘଟାଇବାର ଆଶଙ୍କା ସବୁବେଳେ ମୋ ମନରେ ଥିଲା ।

ପ୍ରତ୍ୟେକ ବର୍ଷ ଆମ ବିଭାଗର ଘରଦ୍ୱାର ସବୁ ମରାମତି କରିବା ପାଇଁ ଦୁଇତିନି କୋଟି ଟଙ୍କା ବଜେଟ୍‌ରେ ରହୁଥିଲା । ମାତ୍ର ଏହିଟଙ୍କା ଖର୍ଚ୍ଚକରିବା ଦାୟିତ୍ୱରୁ ମୁକ୍ତ ରହିବା ପାଇଁ ଆମ ବିଭାଗ ପକ୍ଷରୁ ସେ ଟଙ୍କାକୁ ରାସ୍ତା ଓ ଗୃହନିର୍ମାଣ ବିଭାଗର ମୁଖ୍ୟ ଯନ୍ତ୍ରୀଙ୍କ ଜରିଆରେ ଖର୍ଚ୍ଚ କରିବା ପାଇଁ ଦିଆଯାଉଥିଲା । ହେଲେ ରାଜନୈତିକ ବ୍ୟକ୍ତିମାନଙ୍କୁ ସନ୍ତୁଷ୍ଟ କରିବାକୁ ମୁଖ୍ୟଯନ୍ତ୍ରୀ ବା ନିର୍ବାହୀଯନ୍ତ୍ରୀମାନେ ଆମ ବିଭାଗ ଟଙ୍କାକୁ ସେମାନଙ୍କ ମରଜି ଅନୁସାରେ ଅନ୍ୟାନ୍ୟ ବିଭାଗର ଘରଦ୍ୱାର ବା ରାସ୍ତାଘାଟ କରିବାକୁ ଖର୍ଚ୍ଚ କରିଦେଉଥିଲେ । ମୋ ବିଭାଗର କୋଠାବାଡ଼ି ସବୁ ମରାମତି ନ ହୋଇ କଦର୍ଯ୍ୟ ଅବସ୍ଥାରେ ପଡ଼ିଥିଲା । ତେଣୁ କେନ୍ଦ୍ରୀୟ ଯୋଜନା କାର୍ଯ୍ୟକାରୀ କରିବା ଆଳରେ ମୋ ନିର୍ଦ୍ଦେଶାଳୟରେ ଜଣେ କନିଷ୍ଠ ଯନ୍ତ୍ରୀଙ୍କୁ (ଜୁନିୟର ଇଞ୍ଜିନିୟର) ମୁତୟନ କଲି । ନିର୍ଦ୍ଦେଶକ ଭାବେ ଘରଦ୍ୱାର ମରାମତି ପାଇଁ ମୋର କ୍ଷମତା ଥିଲା, ପ୍ରତିପ୍ରକଳ୍ପ ଲାଗି ମାତ୍ର ଏକ ଲକ୍ଷ ଟଙ୍କା । ବିଭିନ୍ନ ଜିଲାରେ ଆମର ବହୁ ପଶୁ ଚିକିତ୍ସାଳୟ, ସାତଶହ ପଶୁ ସହାୟକ କେନ୍ଦ୍ର ଏବଂ ଦଶଗୋଟି ଉପଖଣ୍ଡ ବା ଜିଲ୍ଲା କାର୍ଯ୍ୟାଳୟ ମଧ୍ୟ ଭଡ଼ା ଘରେ ଚାଲୁଥିଲା । ସେଥିଲାଗି ଘରଭଡ଼ା ବାବଦ ଆମ ବିଭାଗର ପ୍ରତିବର୍ଷ କୋଟିଏ ବା ତତୋଧିକ ଟଙ୍କା ଖର୍ଚ୍ଚ ହେଉଥିଲା । ଏସବୁ ଟଙ୍କା ଔଷଧ ବା ଯନ୍ତ୍ରପାତି କିଣା ବଜେଟ୍‌ରୁ କାଟି ଖର୍ଚ୍ଚ କରାଯାଉଥିଲା । ଫଳରେ ଡାକ୍ତରଖାନା ବା ପଶୁସହାୟକ କେନ୍ଦ୍ର ମାନଙ୍କରେ ଔଷଧ ପତ୍ର କିଣିବା ପାଇଁ ପ୍ରତିବର୍ଷ ଅର୍ଥ ନିଅଣ୍ଟ ହେଉଥିଲା । ତେଣୁ ଘରଭଡ଼ା ବାବଦ ଖର୍ଚ୍ଚ ହେଉଥିବା ଟଙ୍କାକୁ ପଶୁଚିକିତ୍ସା ଲାଗି ଔଷଧ ପତ୍ର କିଣିବାରେ ବ୍ୟୟ କରିବା ପାଇଁ ମୁଁ ନିର୍ଦ୍ଦେଶ ଦେଲି । ଘର ମରାମତି ବାବଦ ବରାଦି ଅର୍ଥକୁ ଆଉ ଗୃହ ନିର୍ମାଣ ବିଭାଗକୁ ନ ଦେଇ ସେହି ଟଙ୍କାରେ ଭଡ଼ା ଦେଉଥିବା ପଶୁ ସହାୟକ କେନ୍ଦ୍ର, ଡାକ୍ତରଖାନା ଓ ଅନ୍ୟାନ୍ୟ ବିଭାଗୀୟ ଘର ସବୁ ତିଆରି କରାଇଲି । ଦୁଇ ତିନି ବର୍ଷ ମଧ୍ୟରେ ପ୍ରାୟ ଛଅ ସାତକୋଟି ଟଙ୍କା ଖର୍ଚ୍ଚହୋଇ ସାତଆଠଶହ କାର୍ଯ୍ୟାଳୟ ପାଇଁ ଘର ତିଆରି ହୋଇଗଲା ଓ ସେ ବାବଦ ଦିଆଯାଉଥିବା ଭଡ଼ା ଅର୍ଥ ବଂଚି ଯାଇ ପାରିଲା । ମୋ ପୂର୍ବରୁ ନିର୍ଦ୍ଦେଶକ ଥିବା ଲୋକମାନେ ଏପରି କରିବା ଦ୍ୱାରା ଭବିଷ୍ୟତରେ ସେମାନେ ଏଥିଲାଗି ଅଡ଼ିଟ୍‌ର ସମ୍ମୁଖୀନ

ହୋଇ ବଦନାମ ହେବା ଭୟରେ ବିଭାଗୀୟ ଅର୍ଥର ବଦଖର୍ଚ୍ଚ ବିଷୟରେ ଚିନ୍ତା କରୁ ନ ଥିଲେ । ନିଜସ୍ୱ ଗୃହ ନିର୍ମାଣ ହେବା ଫଳରେ ସ୍ୱଚ୍ଛନ୍ଦରେ କର୍ମଚାରୀମାନେ ନିଜ କାର୍ଯ୍ୟାଳୟରେ କାମ କରିପାରିଲେ ଓ ପଶୁପକ୍ଷୀମାନଙ୍କର ଔଷଧ ଖର୍ଚ୍ଚ ପାଇଁ ଥିବା ଟଙ୍କାର ପୂର୍ଣ୍ଣ ସଦୁପଯୋଗ ହେଲା ।

ମୁଁ ଦେଇଥିବା ଯୋଜନା ପ୍ରତି କେନ୍ଦ୍ର ସରକାରଙ୍କ ଅନୁମୋଦନ ମିଳିବା ପରେ ଆମ ଅର୍ଥବିଭାଗକୁ ସେବାବଦ ପ୍ରଥମକିସ୍ତି ଟଙ୍କା ଆସିଗଲା । ଆର୍ଥିକ ବର୍ଷ ସରିବା ପୂର୍ବରୁ ସେ ଅର୍ଥର ଉପଯୋଗ ହୋଇଥିବା ନ ଜଣାଇଲେ ଆସନ୍ତା ବର୍ଷକୁ ଆଉ କେନ୍ଦ୍ରୀୟ ଅନୁଦାନ ଆସିବ ନାହିଁ । ମୁଁ ଏବେ କୋରାପୁଟ, କଳାହାଣ୍ଡି, ଫୁଲବାଣି, ବଉଦ, ସୋନପୁର, ବଲାଙ୍ଗୀର, ବାଲେଶ୍ୱର, ମୟୁରଭଞ୍ଜ ଆଦି ଗସ୍ତ କରି ଜିଲାସ୍ତରରେ ବିଭାଗୀୟ ମିଟିଂ ଡକାଇ ସେସବୁ କାର୍ଯ୍ୟକ୍ରମ କିପରି ଆଗେଇବ ତା'ର ବ୍ୟବସ୍ଥା କଲି । ତା ଛଡ଼ା ପ୍ରଚଳିତ କାର୍ଯ୍ୟକ୍ରମ ସବୁ ଠିକ୍ ଭାବେ କରାଇବା ଓ ତହିଁରୁ ଅଧିକରୁ ଅଧିକ ଲକ୍ଷ୍ୟ ହାସଲ କରିବାପାଇଁ ପ୍ରତିମାସରେ ବିଭାଗୀୟ କର୍ମକର୍ତ୍ତାମାନଙ୍କୁ ସୁଚିନ୍ତିତ ଉପାୟ ବତାଇବା ଓ ସେମାନଙ୍କ କାର୍ଯ୍ୟର ସମୀକ୍ଷା କରିବାରେ ନିଷ୍ଠାପର ଉଦ୍ୟମ କଲି । ପ୍ରତିଦିନ ସକାଳୁ ଉଠି ଦଶଟି ଜିଲ୍ଲାର ମୁଖ୍ୟ ଅଧିକାରୀମାନଙ୍କୁ ଫୋନ୍ କରି ସେମାନଙ୍କୁ ଦିଆଯାଇଥିବା ଦାୟିତ୍ୱ ସମ୍ପାଦନ ବିଷୟରେ ପଚାରି ବୁଝୁଥିଲି । ସେମାନଙ୍କ ଅସୁବିଧା ବୁଝି ତା'ର ପ୍ରତିକାର ବ୍ୟବସ୍ଥା ମଧ୍ୟ କରୁଥିଲି ।

ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁବାବୁ ମୋ ସହିତ ଆଲୋଚନା କରିବାକୁ ମୁଖ୍ୟ ଶାସନସଚିବ ଓ ବିଭାଗୀୟ ସଚିବଙ୍କୁ ନିର୍ଦ୍ଦେଶ ଦେଲେ । ଧାର୍ଯ୍ୟ ସମୟରେ ମୁଁ ଯାଇ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ପହଞ୍ଚିଲା ବେଳକୁ ମୁଖ୍ୟ ଶାସନ ସଚିବ ଶ୍ରୀ ରବୀନ୍ଦ୍ର ନାଥ ଦାସ, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରାଜ କିଶୋର ଭୂଜବଳ ଓ ଆମ ସଚିବ ଶ୍ରୀ ଶରତଚନ୍ଦ୍ରନ୍ ସେଠାରେ ମୋତେ ଅପେକ୍ଷା କରିଥିଲେ । ସମସ୍ତେ ମୁଖ୍ୟମନ୍ତ୍ରୀଙ୍କ ଚାମ୍ବରକୁ ଗଲୁ । ମୁଖ୍ୟମନ୍ତ୍ରୀ ମୋତେ ହସି ହସି କୁଶଳ ପ୍ରଶ୍ନ କଲେ । ତାପରେ ପଚାରିଲେ ନିର୍ଦ୍ଦେଶକ ହେବା ପରେ ତୁ କିପରି ଓଡ଼ିଶାର ଉନ୍ନତି କରିବାକୁ ଭାବୁଛୁ ? ମୁଁ କିଛି କହିବା ଆଗରୁ ଆମ ସଚିବ ଶରତ୍‌ଚନ୍ଦ୍ରନ୍ କହିଲେ, ସେଥିପାଇଁ ଆମେ ଏକ ଖସଡ଼ା ତିଆରି କରିଛୁ । ଏତିକି ଶୁଣି ଦେଇ ବିଜୁ ବାବୁ ତାଙ୍କ ଉପରେ ଚିଡ଼ି ଉଠି କହିଲେ, ମୁଁ ତାକୁ ପଚାରୁଛି, ସେ ମୋ ପ୍ରଶ୍ନର ଉତ୍ତର ଦେଉ । ତୋତେ ପଚାରିଲେ ତୁ ପରେ ମୋତେ କହିବୁ ।

ମୁଁ କେନ୍ଦ୍ରୀୟ ଯୋଜନା କଥା କହିଲି । ଆଉ ଦୁଇ ତିନି ବର୍ଷ ଭିତରେ ଓଡ଼ିଶାରେ ନଅଟି ଜିଲ୍ଲାରେ ଦୁଗ୍ଧ ଉତ୍ପାଦକସଂଘ ଗଢ଼ି କେତେଲକ୍ଷ ଲିଟର ଦୁଗ୍ଧ ଉତ୍ପାଦନ ବଢ଼ାଇବା

ଓ ଛେଳି, ମେଣ୍ଢା, ଘୁଷୁରୀ ଉତ୍ପାଦନରେ ଉନ୍ନତି ଆଣିବା କଥା ତାଙ୍କୁ କହିଲି । ସେ ଖୁସି ହେଲେ । ପଚାରିଲେ ଏଥିପାଇଁ ତୋର କେତେ ଟଙ୍କା ଆବଶ୍ୟକ ? ମୁଁ ଟଙ୍କା ପରିମାଣ କହିବାରୁ ସେ ମୁଖ୍ୟ ଶାସନ ସଚିବଙ୍କୁ ତା'ର ବ୍ୟବସ୍ଥା କରିବାକୁ କହିଲେ । ଆମର ସାକ୍ଷାତକାର ସରିଗଲା । ମାତ୍ର ଅତିରିକ୍ତ ମୁଖ୍ୟ ଶାସନସଚିବ ଶ୍ରୀ ଭୂଜବଳ ତାଙ୍କ ଚାମ୍ବରକୁ ମୋତେ ଡାକିନେଇ ବହେ ଗାଳିଦେଲେ । କହିଲେ, ତୁମେ ମୁଖ୍ୟମନ୍ତ୍ରୀଙ୍କୁ ଯେତେ ଟଙ୍କା ମାଗିଲ ସେ ଦେଇ ପାରିବେ କି ? ନ ବୁଝି ନ ଶୁଝି ଗୁଡ଼ାଏ ଗପିଗଲ କାହିଁକି ? ସେ କ'ଣ ତୁମର ସାଙ୍ଗ ବୋଲି ଭାବିଲ ?

ତାଙ୍କ ପ୍ରଶ୍ନର ମୁଁ କିଛି ଉତ୍ତର ଭାବି ପାରୁ ନ ଥାଏ । କହିଲି, ପ୍ରଥମ କରି ମୁଖ୍ୟମନ୍ତ୍ରୀ ମୋ ସହିତ ଆଲୋଚନା କରୁଛନ୍ତି । ଆପଣମାନେ ମୋ ପାଖରେ ଅଛନ୍ତି । ତେଣୁ ବିଭାଗର ଉନ୍ନତି ପାଇଁ ଯାହା ମୁଁ ଚିନ୍ତା କରିଛି ସେସବୁ କଥା କହିଲି । ଏଥିରେ ଯଦି ମୋର ଦୋଷ ଥାଏ ଆପଣ କ୍ଷମା ଦେବେ । ସେ ଖାଲି ବିରକ୍ତ ହେଉଥାନ୍ତି । ମୁଁ ଚାଲିଆସିଲି ।

ସେହି ଆର୍ଥିକବର୍ଷ ସରିବା ପୂର୍ବରୁ କେନ୍ଦ୍ରରୁ ଆସିଥିବା ଟଙ୍କା ସବୁ ଖର୍ଚ୍ଚ କରିବା ପାଇଁ ବିଭିନ୍ନ ଜିଲ୍ଲାଅଧିକାରୀ, ଉପଖଣ୍ଡଅଧିକାରୀ ବା ସଂପୃକ୍ତ ଅଫିସର ମାନଙ୍କ ପାଖେ ଗଚ୍ଛିତରଖି ମୁଁ କେନ୍ଦ୍ର ଦେଇଥିବାଅର୍ଥ ପାଇଁ ବିନିଯୋଗ ପତ୍ର ତିଆରିକରି ହାତେହାତେ ନେଇ ଦାଖଲ କରିବାକୁ ଦିଲ୍ଲୀ ଯାଇ (ଆନିମଲ୍ ହଜ୍‌ବାଣ୍ଡ୍ରି କମିଶନର୍) କେନ୍ଦ୍ରୀୟ ପଶୁପାଳନ ଆୟୁକ୍ତଙ୍କୁ ଭେଟିଲି । ଯଥା ସମୟରେ ଓଡ଼ିଶାରେ ଅର୍ଥ ବିନିଯୋଗ ହୋଇଛି ଜାଣି ସେ ଆସନ୍ତା ବର୍ଷ ପାଇଁ ଧାର୍ଯ୍ୟଟଙ୍କା ଓଡ଼ିଶା ସରକାରଙ୍କୁ ଶୀଘ୍ର ଦେଇଦେବା ପାଇଁ ଆଦେଶ ଦେଲେ । ସେହି ଆଦେଶର ଏକ ନକଲ ଧରି ଓଡ଼ିଶା ଫେରି ଆସି ସଚିବଙ୍କୁ ଏକଥା ଜଣାଇ ଦେଲି । ଖୁବ୍ ଶୀଘ୍ର କାମରେ ଆଗେଇ ଯିବାକୁ ସେ ମୋତେ କହିଲେ । ସେତେବେଳକୁ ଓଡ଼ିଶାର ୧୩ଟି ଜିଲ୍ଲା ୩୦ ଜିଲ୍ଲାରେ ବିଭକ୍ତ ହୋଇ ଯିବାର ଆଦେଶ ଜାରୀ ହୋଇ ଗଲାଣି । ନୂଆ ଜିଲ୍ଲା ମାନଙ୍କ ଦାୟିତ୍ୱରେ କେଉଁ ଅଫିସର ମାନେ ରହିବେ ତାର ଏକ ତାଲିକା ପ୍ରସ୍ତୁତ କରି ସଚିବାଳୟକୁ ପଠାଇଲି । ବିଭାଗୀୟ କାର୍ଯ୍ୟ ସାଙ୍ଗକୁ କେନ୍ଦ୍ରୀୟ ଯୋଜନାକୁ ରୂପାୟିତ କରିବାକୁ କେଉଁ ଜିଲ୍ଲା ଅଧିକାରୀଙ୍କର କ'ଣ ଦାୟିତ୍ୱ ରହିବ ତାହାର ଏକ ଚିଠା ପ୍ରସ୍ତୁତ କରି ତଦନୁଯାୟୀ କାର୍ଯ୍ୟ କରିବା ପାଇଁ ଜିଲ୍ଲା ଅଧିକାରୀମାନଙ୍କୁ ଆଦେଶ ଦେଲି । ସେସବୁ କାର୍ଯ୍ୟର ଅଗ୍ରଗତି ବିଷୟରେ ପ୍ରତିଦିନ ସକାଳ ୭ଟାରେ ଦଶଜଣ ଜିଲ୍ଲାମୁଖ୍ୟଙ୍କୁ ଫୋନ୍ କରି ବୁଝୁଥିଲି । ପୁଣି ପ୍ରତି ଜିଲ୍ଲା ଅଧିକାରୀକୁ ଦୁଇ ଦିନ ଛାଡ଼ି ଫୋନ୍ କରି ବିଭାଗୀୟ କାର୍ଯ୍ୟର ଅଗ୍ରଗତି ଓ ସୁବିଧା ଅସୁବିଧା ବିଷୟ ପଚାର

ପ୍ରତିକାରବ୍ୟବସ୍ଥା କରୁଥିଲି । ଏହା ଦ୍ୱାରା ସବୁ ଜିଲ୍ଲାରେ କାମ ଆଗେଇଚାଲିଲା । ବାଲେଶ୍ୱର, ମୟୂରଭଞ୍ଜ, ଫୁଲବାଣୀ, ବଲାଙ୍ଗୀର, କଳାହାଣ୍ଡି ଓ କୋରାପୁଟ ଆଦି ଜିଲ୍ଲା ମାନଙ୍କରେ ଦୁଗ୍ଧ ସଂଗ୍ରହ ଓ ପ୍ରକ୍ରିୟାକରଣ ପାଇଁ କାମ ଚାଲିଥାଏ । ବଲାଙ୍ଗୀର ଜିଲ୍ଲାର ସଇଁତଳାଠାରେ ପ୍ରଥମ ଦୁଗ୍ଧ ପ୍ରକ୍ରିୟାକରଣ କାରଖାନା ତିଆରି ହୋଇ ଦୁଗ୍ଧ ବିକ୍ରୟ ଆରମ୍ଭ ହେଲା । ମୁଖ୍ୟମନ୍ତ୍ରୀ ଏହି ପ୍ରକଳ୍ପକୁ ଉଦ୍‌ଘାଟନ କରିବା ଦିନ ଧାର୍ଯ୍ୟ ହେଲା । ମୁଖ୍ୟମନ୍ତ୍ରୀ ବିଜୁବାବୁ ହେଲିକେପ୍ଟରରେ ଯାଇ ସଇଁତଳାରେ ଓହ୍ଲାଇଲେ । ସ୍ଥାନୀୟ ନେତାମାନଙ୍କ ଜୟଧ୍ୱନି ଭିତରେ ସେ ଆସି ଏହି ପ୍ରକଳ୍ପର ଉଦ୍‌ଘାଟନ କଲେ । ଏତେ ଶୀଘ୍ର ପ୍ରକଳ୍ପଟି ଶେଷ ହେବା ଦେଖି ସେ ଖୁସି ହୋଇଗଲେ । ଉଦ୍‌ଘାଟନ ପରେ ସେ ନେତାମାନଙ୍କ ସହିତ ପ୍ଲାଣ୍ଟ ପରିସରରେ କିଛି ସମୟ ବସିବା ଭିତରେ ସମସ୍ତଙ୍କୁ ସୁବାସିତ ଦୁଗ୍ଧ ପିଇବାକୁ ଦିଆଗଲା । ପ୍ରଥମ ବୋତଲଟି ମୁଁ ନେଇ ମୁଖ୍ୟମନ୍ତ୍ରୀଙ୍କ ହାତରେ ଦେଲି । ସେ ପିଇବାକୁ ଆରମ୍ଭ କଲେ ଓ ମୋ ଆଡ଼େ ଚାହିଁ ହସୁଥାନ୍ତି । ମୁଁ ଅନ୍ୟମାନଙ୍କୁ ଦୁଧବୋତଲ ଦେବା ପାଇଁ ମୋ କର୍ମଚାରୀମାନଙ୍କୁ କହିଲା ବେଳେ ହାତଠାରି ମୋତେ ମୁଖ୍ୟମନ୍ତ୍ରୀ ପାଖକୁ ଡାକିଲେ । ଛୁଆମାନେ ମିଠେଇ ମାଗିବାକୁ ଅଳି କଲା ପରି ମୋତେ ଚୁପ୍ କରି ପଚାରିଲେ ଆଉ ଗୋଟିଏ ବୋତଲ ମୋତେ ଦେବୁ? ମୁଁ ଦୌଡ଼ିଯାଇ ଦୁଇଟି ବୋତଲ ଧରି ତାଙ୍କ ପାଖେ ଆସି ଠିଆହେଲି । ସେ ଗୋଟିଏ ବୋତଲ ମୋ ହାତରୁ ନେଇ ମୋତେ କହିଲେ ତୁ ଗୋଟିଏ ପିଇ ଦେ । ମୋ ଆଖିରୁ ଲୁହ ବୁନ୍ଦାଏ ଝରି ପଡ଼ିଲା । ଏତେ ବଡ଼ ଲୋକଙ୍କର ମୋ ପ୍ରତି ଏଭଳି ବାତ୍ସଲ୍ୟ ସ୍ନେହ ଦେଖି ବିଜୁବାବୁଙ୍କର ବିଶାଳ ମାନବିକତା ବିଷୟରେ ମୋର ସାମାନ୍ୟ ଅନୁଭୂତି ହେଲା । ମୁଁ ବୁଝିଗଲି ଯେ ବଲାଙ୍ଗୀର, କଳାହାଣ୍ଡି ବା କୋରାପୁଟ ପରି ଅନୁନ୍ନତ ଜିଲ୍ଲା ମାନଙ୍କରେ ଏଭଳି କାର୍ଯ୍ୟ କରାଇବା ଦ୍ୱାରା ବିଜୁବାବୁ ବେଶ୍ ସନ୍ତୁଷ୍ଟ ହୋଇଛନ୍ତି । ସେଥିପାଇଁ ମୋ ପରି ଜଣେ ଅଫିସର ପ୍ରତି ତାଙ୍କର ବାତ୍ସଲ୍ୟ ସ୍ନେହ ପ୍ରକଟିତ କରି ମୋ କାର୍ଯ୍ୟ ଦକ୍ଷତାର ପୁରସ୍କାର ସେ ଦେଇଛନ୍ତି । ତାଙ୍କର ମହନୀୟତା ଦେଖି ଏ ଦେଶରେ ଯେ ଅନ୍ୟ କେହି କ୍ଷମତାଶୀନ ରାଜନେତା ତାଙ୍କର ସମକକ୍ଷ ହୋଇପାରନ୍ତି, ତାହା ମୁଁ ଭାବିପାରୁନଥିଲି । ଏଇ ହୃଦୟସ୍ପର୍ଶୀ ମୁହୂର୍ତ୍ତଟି ଚିରଦିନ ଲାଗି ମୋ ହୃଦୟରେ ଗାର ହୋଇ ରହିଗଲା ।

ତାଙ୍କ ବିଷୟରେ ଆଉ ଏକ ଘଟଣା ଉଲ୍ଲେଖ କରିବାକୁ ମନ ହୁଏ । ଥରେ ଭୁବନେଶ୍ୱରରେ ଓମ୍‌ଫେଡ୍ ଦିବସ ପାଳିତ ହେଲା । ସେଦିନ ଓଡ଼ିଶାର ଚାରିଜିଲ୍ଲାରୁ ପ୍ରାୟ ୮-୧୦ ହଜାର ଦୁଗ୍ଧ ଉତ୍ପାଦକ ଚାଷୀ ପି.ଏମ୍.ଜି. ଛକରେ ଏକତ୍ରିତ ହୋଇଥାନ୍ତି । ସଭାରେ ମୁଖ୍ୟମନ୍ତ୍ରୀ ଓ ଆମମନ୍ତ୍ରୀ ସୂର୍ଯ୍ୟବାବୁ ଉଦ୍‌ବୋଧନ ଦେବା କଥା । ଶ୍ରୀ ଅରୁଣ

ପଣ୍ଡା ଓମ୍‌ଫେଡ଼୍‌ର ପରିଚାଳନା ନିର୍ଦ୍ଦେଶକ ଥାଆନ୍ତି । ମୋତେ ମଧ୍ୟ ନିମନ୍ତ୍ରଣ ମିଳିଥାଏ । ଅପରାହ୍ଣ ୪ଟା ବେଳକୁ ମୁଖ୍ୟମନ୍ତ୍ରୀ ଆସି ପହଞ୍ଚିବେ । ମନ୍ତ୍ରୀ ମୋତେ ୨ଟା ବେଳେ ଫୋନ୍ କରି ଶୀଘ୍ର ଯାଇ ପହଂଚିବା କଥା କହିଲେ । ସାଙ୍ଗେ ସାଙ୍ଗେ ବାହାରି ପ୍ରାୟ ୪୫ ମିନିଟ୍ ଭିତରେ ପି.ଏମ୍.ଜି ଛକରେ ପହଞ୍ଚିଲି । ଅନେକ ଦୂରରେ ଗାଡ଼ି ରଖି ଚାଲି ଚାଲି ସଭାସ୍ଥଳରେ ପହଞ୍ଚିଲା ବେଳକୁ ମନ୍ତ୍ରୀ ମୋତେ ଅପେକ୍ଷାକରି ବସିଛନ୍ତି । ସେ କହିଲେ ଅରୁଣ ବାବୁଙ୍କ ଦେହଖରାପ । ତେଣୁ ଆପଣ ଏ ସଭାରେ ସଭାପତିତ୍ୱ କରିବେ । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ପାଖରେ ଘଣ୍ଟାଏ ବସିବାକୁ ହେବ । ସେ ମୋତେ କ'ଣ କହିବେ ? ଠିକ୍ ଭାବେ ତାଙ୍କ ପ୍ରଶ୍ନର ଉତ୍ତର ନ ପାଇଲେ ସେ ବିରକ୍ତ ହୋଇପାରନ୍ତି । ଓମଫେଡ଼ ବିଷୟରେ ସେ ଯଦି କିଛି ପ୍ରଶ୍ନ କରିବେ ମୁଁ ସଠିକ୍ ଉତ୍ତର ଦେଇ ପାରିବି କି ନାହିଁ, ଏସବୁ କଥା ଭାବି ମୁଁ ଦ୍ୱନ୍ଦ୍ୱରେ ପଡ଼ିଗଲି । ଅରୁଣ ବାବୁ ଥିଲେ ମୁଁ କେବଳ ଜଣେ ଅତିଥି ଭାବେ ରହିଥାନ୍ତି । ଏବେ ଓମ୍‌ଫେଡ଼୍ ବିଷୟରେ କୌଣସିତଥ୍ୟ ନବୁଝି ତାଙ୍କ କାମ ଚଳାଇବାକୁ ହେବ । ମୁଁ ଖୁବ୍ ଅଡୁଆରେ ପଡ଼ିଲି । ମନ୍ତ୍ରୀଙ୍କୁ ଏକଥା କହିଲି । ସେ କହିଲେ, ଅରୁଣବାବୁ କହିଛନ୍ତି ଆପଣ ହିଁ ସବୁ ତୁଲାଇ ନେଇପାରିବେ । ତେଣୁ ତାଙ୍କ ଜାଗାରେ ଆଉ କାହାକୁ ଡକାଇବାକୁ ମନାକଲେ । ମୁଁ ଆଉ କିଛି କହିବା ପୂର୍ବରୁ ଦୂରରୁ ପୋଲିସ୍‌ଗାଡ଼ି ସାଇରନ୍ ଶୁଭିଲା । ୪ଟା ବାଜିବାକୁ ପନ୍ଦର ମିନିଟ୍ ଥାଇ ମୁଖ୍ୟମନ୍ତ୍ରୀ ଆସି ପହଞ୍ଚିଗଲେ । ମନ୍ତ୍ରୀ ଓ ମୁଁ, ଫୁଲତୋଡ଼ା ଧରି ତାଙ୍କୁ ପାଛୋଟି ଆଣିଲୁ । ସେ ମଞ୍ଚ ଉପରକୁ ଯିବା ପରେ ମୁଁ ପ୍ରାରମ୍ଭିକ ସୂଚନା ଦେଇସାରି ଦୁଗ୍ଧ ଉତ୍ପାଦନକାରୀମାନଙ୍କୁ ଉଦ୍‌ବୋଧନ ଦେବାକୁ ମନ୍ତ୍ରୀଙ୍କୁ ଅନୁରୋଧ କଲି । ମନ୍ତ୍ରୀ ସୂର୍ଯ୍ୟବାବୁ ତାଙ୍କ ଭାଷଣ ଦେଲା ବେଳେ ମୁଖ୍ୟମନ୍ତ୍ରୀ ବିଜୁବାବୁ ମୋତେ ପଚାରିଲେ, ଏମାନଙ୍କୁ ମୋ ଭାଷଣରେ କଅଣ କହିବି ? କହିଲି, ଅରୁଣବାବୁଙ୍କ ଦେହ ଖରାପ ହେବାରୁ ଏଇ ଦୁଇଘଣ୍ଟା ତଳେ ମନ୍ତ୍ରୀ ମୋତେ ଡକାଇ ପଠାଇଛନ୍ତି । ମୁଁ ଆପଣଙ୍କ ଲାଗି ଭାଷଣ ଚିଠା କରିପାରିନାହିଁ । ସେ କହିଲେ, ଆରେ ଚିଠାଟା କ'ଣ କରିବୁ; ଏଇଠି ମୋତେ କହ । କହିଲି ଓଡ଼ିଶାରେ କିପରି ଅଧିକ ଦୁଗ୍ଧ ଉତ୍ପାଦନ ହୋଇପାରିବ ଓ ସେ ସବୁ ସଂଗ୍ରହ କରି ତାର ପ୍ରକ୍ରିୟା କରଣ ଓ ବିକ୍ରୟ ବିଷୟରେ ଆମେ ଯେଉଁସବୁ ଯୋଜନା କରିଛୁ ସେ ବିଷୟରେ ଚାଷୀମାନଙ୍କୁ ଜଣାଇବାକୁ ହେବ । ସେ ପଚାରିଲେ ଦୁଗ୍ଧ ଉତ୍ପାଦନ ବଢ଼ିବ କେମିତି ? କହିଲି, ଅଧିକ ଉତ୍ପାଦନକ୍ଷମ ମାଈ ବାଛୁରୀ ଜନ୍ମ ହେଲେ ସେମାନଙ୍କଠାରୁ ଦୁଇ ବର୍ଷ ପରେ ଦୁଗ୍ଧ ଉତ୍ପାଦନ ବଢ଼ିପାରିବ । ଏବେ ଓଡ଼ିଶାରେ ପ୍ରତିବର୍ଷ ମାତ୍ର ପଚାଶହଜାର ଅଧିକ ଦୁଗ୍ଧ ଉତ୍ପାଦନକ୍ଷମ ବାଛୁରୀ ଜନ୍ମ ହେଉଛନ୍ତି । ସେହି ସଂଖ୍ୟାକୁ ଏ ବର୍ଷ ଠାରୁ ଏକଲକ୍ଷକୁ ବଢ଼ାଇ ଦିଆଯିବ । ବିଜୁବାବୁ

ଚିଡ଼ି ଉଠି କହିଲେ ଆରେ ବିଜୁ ପଟ୍ଟନାୟକ ବର୍ଷକୁ ମାତ୍ର ଏକଲକ୍ଷ ଦୁଧିଆଳୀ ବାଛୁରୀ ଉତ୍ପାଦନ କଥା କହିପାରିବନାହିଁ । ଏହି ସଂଖ୍ୟା କୋଟିଏ ହେବାକୁ ପଡ଼ିବ । କୋଟିଏରୁ କମ୍ କଥା ମୁଁ କହି ପାରିବି ନାହିଁ । କହିଲି, ସାରା ଭାରତବର୍ଷରେ ବର୍ଷକୁ କୋଟିଏ ଦୁଗ୍ଧ ଉତ୍ପାଦନକ୍ଷମ ବାଛୁରୀ ସୃଷ୍ଟି ହେବା ମଧ୍ୟ କଷ୍ଟକର । ଓଡ଼ିଶାରେ ଏହା ହେବାକଥା କେମିତି ମୁଖ୍ୟମନ୍ତ୍ରୀ କହିବେ । ସେ କହିଲେ ତାହେଲେ ମୁଁ ପଚାଶ ଲକ୍ଷ କଥା କହିବି । କହିଲି, ବର୍ତ୍ତମାନ ପରିସ୍ଥିତିରେ ଏଭଳି ପାଞ୍ଚଲକ୍ଷ ବାଛୁରୀ ଉତ୍ପାଦନ କରିବା ମଧ୍ୟ କଷ୍ଟକର କଥା । ସେଥିଲାଗି ବିଶାଳ ଯୋଜନା ହେବା ଦରକାର । ବହୁତ ଅର୍ଥ ବିନିଯୋଗ କରିବାକୁ ହେବ । ଚିଡ଼ିଉଠି ସେ କହିଲେ, ବିଜୁ ପଟ୍ଟନାୟକ ପାଞ୍ଚଲକ୍ଷ, ଦଶ ଲକ୍ଷ କଥା କହେ ନାହିଁ । ଯଦି କହେ, ତେବେ କୋଟିଏ ଦୁଇକୋଟି କଥା ହିଁ କହିବ । କହିଲି, ଓଡ଼ିଶାରେ ଗୋ ମହିଷାଦି ସଂଖ୍ୟା ମାତ୍ର ଦେଢ଼ କୋଟି । ତନ୍ମଧ୍ୟରୁ ବାଛୁରୀ ଉତ୍ପାଦନକ୍ଷମ ଗାଈଙ୍କ ସଂଖ୍ୟା ମାତ୍ର ୪୦ ଲକ୍ଷ । ତନ୍ମଧ୍ୟରୁ ମାତ୍ର ଅଢ଼େଇ ଲକ୍ଷ ଗାଈଙ୍କୁ କୃତ୍ରିମ ପ୍ରଜନନ କରାଯାଇ ପାରୁଛି । ସେମାନଙ୍କ ଠାରୁ ଆମେ ବର୍ଷକୁ ଏକ ଲକ୍ଷ ବାଛୁରୀ ପାଉଛୁ । ଏହି ସଂଖ୍ୟାର ଅଧା ବା ପଚାଶ ହଜାର ମାଈ ବାଛୁରୀଙ୍କୁ ଆମେ ଗାଈ ହେବାକୁ ପାଳନ କରି ସେମାନଙ୍କଠାରୁ ଅଧିକ ଦୁଗ୍ଧ ଉତ୍ପାଦନ କରିପାରୁଛୁ । ମୁଖ୍ୟମନ୍ତ୍ରୀ ଯାହା କହିବେ, ତାହା ଆମର ଭବିଷ୍ୟତ କାର୍ଯ୍ୟକ୍ରମ ହେବ । ତେଣୁ ମୁଁ ଏକଲକ୍ଷ କଥା କହିଥିଲି । ଏବେ ସେ ମୋ କଥାଟା ବୁଝିଗଲେ । ତାଙ୍କ ଭାଷଣରେ କହିଲେ, ଏବେ ଓଡ଼ିଶାର ଅଢ଼େଇଲକ୍ଷ ଗାଈଙ୍କୁ କୃତ୍ରିମ ପ୍ରଜନନ କରାଯାଇ ଅଧିକ ଦୁଗ୍ଧଉତ୍ପାଦନକ୍ଷମ ବାଛୁରୀ ସୃଷ୍ଟି କରାଯାଉଛି । ଆସନ୍ତାବର୍ଷ ଠାରୁ ଦଶଲକ୍ଷ ଗାଈଙ୍କୁ କୃତ୍ରିମ ପ୍ରଜନନ କରାଯାଇ ଚାରିଗୁଣ ଅଧିକ ଦୁଗ୍ଧ ଉତ୍ପାଦନକ୍ଷମ ବାଛୁରୀ ସୃଷ୍ଟି କରାଯିବ । ମୁଁ ଟିକେ ଆସ୍ୱସ୍ତ ହେଲି । କେନ୍ଦ୍ରୀୟ ଯୋଜନାକୁ ଠିକ୍ ଭାବେ କାର୍ଯ୍ୟକ୍ଷମ କରାଇ କୃତ୍ରିମ ପ୍ରଜନନ ସଂଖ୍ୟା ୫ଲକ୍ଷକୁ ବଢ଼ାଇବାକୁ ସେହିଦିନଠାରୁ ମୁଁ ଚେଷ୍ଟାରେ ରହିଲି । ଉତ୍କଳର ବରପୁତ୍ର ବିଜୁପଟ୍ଟନାୟକଙ୍କ ସ୍ୱପ୍ନ ଚରିତାର୍ଥ କରିବାକୁ ଯେତେଦୂର ସମ୍ଭବ ବିଭାଗୀୟ ବିଧିବ୍ୟବସ୍ଥା ସେ ଦିଗରେ ପରିଚାଳିତ କରାଇବାରେ ଯତ୍ନବାନ୍ ହେଲି ।

ସେହିବର୍ଷ ନିର୍ବାଚନରେ ବିଜୁବାବୁଙ୍କ ଜନତାଦଳକୁ ହରାଇ ଜାନକୀବାବୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କଲେ । ପଶୁପାଳନ କାର୍ଯ୍ୟକ୍ରମ ପ୍ରତି ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କର ଯେଭଳି ଦୃଷ୍ଟି ଆକର୍ଷିତ ହୋଇଥିଲା, ସେଭଳି ଗୁରୁତ୍ୱ ଆଉ ରହିଲା ନାହିଁ । ଶରତ୍‌ଚନ୍ଦ୍ରନ୍ ମଧ୍ୟ ଓଡ଼ିଶା ଛାଡ଼ି କେନ୍ଦ୍ର ଅର୍ଥମନ୍ତ୍ରଣାଳୟରେ ଯୋଗଦେବାକୁ ଦିଲ୍ଲୀ ଚାଲିଗଲେ । ଶ୍ରୀ ହିମାଂଶୁ ଶେଖର ସରକାର ଆମର ସଚିବ ହୋଇ ଆସିଲେ । ସେ ବେଶ୍ ଶାନ୍ତସରଳ ଅମାୟିକ

ଲୋକ ଥିଲେ । ମୋ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । କାରଣ ଏ ବିଭାଗର ଦାୟିତ୍ୱ ନେବା ପୂର୍ବରୁ ମୋ ବିଷୟରେ ସେ ଯଥେଷ୍ଟ ତଥ୍ୟ ସଂଗ୍ରହ କରିଥିଲେ । ତେଣୁ ବିଭାଗୀୟ କାର୍ଯ୍ୟ ମୋ ଉପରେ ଛାଡ଼ି ଦେଇ ସେ ଟିକେ ଆରାମରେ ସମୟ କଟାଇବାକୁ ଚାହୁଁ ଥିଲେ ।

ସରକାରୀ କାମରେ ପ୍ରାୟ ପ୍ରତି ମାସେ ଦେଢ଼ମାସଛାଡ଼ି ମୋତେ ଦିଲ୍ଲୀ ଯିବାକୁ ପଡୁଥାଏ । ଥରେ ସରକାରୀ କାମରେ ଦିଲ୍ଲୀରେ ଓଡ଼ିଶା ଭବନରେ ମୁଁ ଥିଲି । ଭାରତୀୟ କୃଷି ଗବେଷଣା ସଂସ୍ଥାରେ ମୋ କାମ ସାରି ଓଡ଼ିଶା ଭବନକୁ ଫେରିଲାବେଳକୁ ଠିକ୍ ବାଟମୁହଁରେ ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁବାବୁ ବସିଥିବାର ଦେଖିଲି । ସୁନ୍ଦର ମସ୍‌ରାଇଜ ଧୋତି ଉପରେ ପଞ୍ଜାବୀ ଓ କଳାରଙ୍ଗର ବୋତାମ ଦିଆ ସ୍ୱେଟର ପିନ୍ଧି ଗୋଟିଏ ବେତ ଚୌକିରେ ସେ ବସିଥାନ୍ତି । ମୁଁ ଯାଇ ପ୍ରଣାମ କଲି । କେଉଁଦିନ ଆସିଛୁ ବୋଲି ପ୍ରଶ୍ନ କଲେ । ପଚାରିଲେ ଏଇଠି ଅଛୁ ? ଖାଇବା ପିଇବା ଭଲ ହେଉଛି ତ ? କହିଲି ହଁ ସବୁ ଠିକ୍‌ଅଛି । ସେ କହିଲେ, ଏବେ ଥଣ୍ଡାଦିନ । ଦିଲ୍ଲୀରେ ହୁସିଆର ହୋଇ ଚଳିବୁ । ନୋହିଲେ ତୋତେ ଥଣ୍ଡା ଲାଗିବ । ସେଇ କେତେପଦ କଥା ତାଙ୍କପରି ଏତେବଡ଼ ଲୋକଙ୍କ ମୁହଁରୁ ଶୁଣିବା ମୋପରି ଲୋକ ପକ୍ଷରେ ଆଶୀର୍ବାଦ ପରି ଲାଗୁଥିଲା । ମୁଁ ତାଙ୍କର ଦଳୀୟଲୋକ ନୁହେଁ କିମ୍ବା ସମ୍ପର୍କିୟ ମଧ୍ୟ ନୁହେଁ । ଏଇମାତ୍ର ଦୁଇବର୍ଷ ହେବ ଏକ ବିଭାଗୀୟ ନିର୍ଦ୍ଦେଶକ ଭାବେ ସେ ମୋତେ ଜାଣିଛନ୍ତି । ମାତ୍ର ମୋ କାର୍ଯ୍ୟ ଦକ୍ଷତାରେ ତାଙ୍କ ସନ୍ତୋଷ ଯୋଗୁଁ ମୋ ପ୍ରତି ତାଙ୍କର ସ୍ନେହ ଅତୁଟ ରହିଛି । ଦେଖିବାମାତ୍ରେ ମୋର ଭଲମନ୍ଦ ବୁଝିବାକୁ ଏହି ପିତୃତୁଲ୍ୟ ଜନନାୟକ ଯେଉଁ ସ୍ନେହ ବୋଳାକଥା କେତେପଦ ମୋତେ ପଚାରିଲେ; ଜୀବନସାରା ସେ କଥା ମୁଁ ଭୁଲି ପାରିବି ନାହିଁ ।

ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବାପରେ ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟ କରିବାକୁ ଆଦେଶନାମା ଜାରୀକଲେ । ସେହି ଆଦେଶ ପାଇବାମାତ୍ରେ ନିର୍ଦ୍ଦେଶାଳୟର ସମସ୍ତ କିରାଣୀଙ୍କୁ ଡକାଇ ଏକ ସଭା କଲି । ପ୍ରାୟ ତିନିଶହ ଲୋକ ଆମ ନିର୍ଦ୍ଦେଶାଳୟରେ କାର୍ଯ୍ୟ କରନ୍ତି । ସେମାନଙ୍କ ମଧ୍ୟରୁ ଅନେକ କହିଲେ ଏହା ଏକ କଷ୍ଟକର ବ୍ୟାପାର । ଆଉ କେତେ କହିଲେ, ଅପେକ୍ଷାକରି ଦେଖନ୍ତୁ ଅନ୍ୟ ନିର୍ଦ୍ଦେଶାଳୟ ମାନଙ୍କରେ କ'ଣ ହେଉଛି ! ସମସ୍ତେ ଯାହାକରିବେ ଆମେ ମଧ୍ୟ ସେୟା କରିବା । ଆଉ କେହି କହିଲେ, ଆମର ଏଇଟା ଏକ ବୈଷୟିକ ବିଭାଗ । ଆମ ପକ୍ଷରେ ବୈଷୟିକ ବିଷୟ ପାଇଁ ଲେଖିବାକୁ ଇଂରାଜୀ ଭାଷା ହିଁ ଠିକ୍ । ସରକାରୀ ନିର୍ଦ୍ଦେଶ ଆମ ବିଭାଗ ପକ୍ଷରେ ଗ୍ରହଣୀୟ ନୁହେଁ । କହିଲି, ଓଡିଶା ଆମର ଜନ୍ମଭୂମି । ଆମର ମାତୃଭାଷା ଓଡ଼ିଆ । ଏ

ନିର୍ଦ୍ଦେଶାଳୟରେ ଆମେ ସମସ୍ତେ ଓଡ଼ିଆରେ ହିଁ କଥା ହେଉଛେ । ତେଣୁ ଆମ ମାତୃଭାଷାରେ ନଥିପତ୍ର ବା ଚିଠି ଲେଖିବା ଆମର କର୍ତ୍ତବ୍ୟ । ତାହା ଆମେ ନକରୁଥିବାରୁ ସରକାର ଏତେଦିନ ପରେ ଆମକୁ ନିର୍ଦ୍ଦେଶ ଦେଇ ଓଡ଼ିଆରେ ନଥିପତ୍ର ଲେଖିବାକୁ ସୂଚାଇ ଦେଇଛନ୍ତି । ଆଉ କାଳବିଳମ୍ବ ନକରି ଆମେ ଓଡ଼ିଆରେ ନଥି ଓ ଚିଠିପତ୍ର ଲେଖିବା । ଅନ୍ୟ ନିର୍ଦ୍ଦେଶାଳୟରେ କ'ଣ ହେଉଛି ବା ହେବ, ସେ ବିଷୟରେ ଆମେ ଚିନ୍ତା କରିବା ଅନୁଚିତ୍ । ସରକାରୀ ନିର୍ଦ୍ଦେଶ ପାଳନକରିବା ଆମର ପ୍ରଥମ କର୍ତ୍ତବ୍ୟ । ତାଛଡ଼ା ବୈଷୟିକ ବିଭାଗ କହିଲେ ଯେଉଁମାନେ ଆମ ବିଭାଗର ଡାକ୍ତର ବା ପଶୁସହାୟକ ହୋଇଛନ୍ତି, ସେମାନେ ଓଡ଼ିଆ ଭାଷାରେ ଲେଖି ନପାରିଲେ ମୁଁ ସେ କଥା ବୁଝିବି । ନଥିପତ୍ର ଲେଖିବା ଆପଣମାନଙ୍କର କାର୍ଯ୍ୟ ଓ ଆପଣମାନଙ୍କର ମୁଖ୍ୟ ଭାବରେ ମୁଁ ଆପଣଙ୍କର ନିର୍ଦ୍ଦେଶକ ଅଛି । ମୁଁ କିଛି ଆଇ.ଏ.ଏସ୍. ଅଫିସର୍ ନୁହଁ । ମୁଁ ଜଣେ ବୈଷୟିକ ଶିକ୍ଷାବିତ୍ । ତେଣୁ ଆମ ମାତୃଭାଷା ଓଡ଼ିଆରେ ଲେଖିବା ପାଇଁ ମୋର ଯଦି ଆଗ୍ରହ ହେଉଛି; ଆପଣମାନେ ପଛେଇ ଯିବା ଠିକ୍‌ନୁହେଁ । କେତେଜଣ କହିଲେ, ଚାକିରୀ ଆରମ୍ଭରୁ ଆମେ ଇଂରାଜୀରେ ନଥିପତ୍ର ଲେଖି ଆସୁଛୁ । ଆଜି ଭୁସ୍‌କରି ଆମକୁ ଓଡ଼ିଆରେ ଲେଖିବାକୁ କହିଲେ କେମିତି ହେବ ? କହିଲି ଆପଣମାନେ ଓଡ଼ିଆ ବିଦ୍ୟାଳୟରୁ ମାଟ୍ରିକ୍ ପାଶ୍ କରି ଓଡ଼ିଶାର ଯେ କୌଣସି କଲେଜରେ ପାଠପଢ଼ିଛନ୍ତି । ମାତ୍ର ମୁଁ ଏକ ବୈଷୟିକ ମହାବିଦ୍ୟାଳୟରୁ ଡିଗ୍ରୀ ପାଶ୍ କରି ଯୁକ୍ତରାଷ୍ଟ୍ର ଆମେରିକାରେ ପାଞ୍ଚବର୍ଷ ପାଠପଢ଼ି ଦେଶକୁ ଫେରିଛି । ଆପଣମାନଙ୍କ ତୁଳନାରେ ମୁଁ କମ୍ ସମୟ ଓଡ଼ିଆ ଶିକ୍ଷା ପାଇଛି । ଏହା ସତ୍ତ୍ୱେ ମୁଁ ଯଦି ଓଡ଼ିଆରେ ସବୁ ନଥିପତ୍ର ଲେଖିବାକୁ ଆଗ୍ରହୀ, ତେବେ ଆପଣମାନେ କାହିଁକି ପଛେଇ ଯାଉଛନ୍ତି ?

ଆପଣମାନେ ଲେଖିବା ଆରମ୍ଭ କରନ୍ତୁ ଅସୁବିଧା ହେଲେ ମୋତେ ପଚାରିବେ । ମୁଁ ସମସ୍ତଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛି । କାଲି ଠାରୁ ମୋ ପାଖକୁ ଯେଉଁ ନଥି ପଠାଇବେ ତହିଁରେ ସମସ୍ତ ଟିପ୍ପଣୀ ଓଡ଼ିଆରେ ଲେଖାଥିବ । ତା ନହେଲେ ସରକାରୀ ନିର୍ଦ୍ଦେଶ ଅବମାନନା କରିବା ଦୋଷରେ ଆପଣ ଦଣ୍ଡିତ ହେବେ ।

ତା ପରଦିନ ମୋତେ ଜଣେ ସେକ୍ସନ୍ ଅଫିସର ଆସି କହିଲେ, ସାର୍ ! ତିନି ଜଣ ଯୁବକ ଏ ଆଦେଶ ମାନିବେ ନାହିଁ ବୋଲି କହୁଛନ୍ତି । ସେମାନେ ଇଂରାଜୀରେ ନଥି ଲେଖିବେ । କହିଲି ଠିକ୍ ଅଛି । ସେମାନଙ୍କ ନଥି ମୋ ପାଖକୁ ଆସିଲେ ଯାହା କରିବାର କରାଯିବ । ଦୁଇ ଚାରିଦିନ ଭିତରେ ଉକ୍ତ ତିନିଜଣଙ୍କ ନଥି ମୋ ପାଖକୁ ଆସିଲା । ତାହା

ପାଇ ସରକାରୀ ନିର୍ଦ୍ଦେଶ ସେମାନେ କାହିଁକି ଅବମାନନା କରିଛନ୍ତି ବୋଲି କୈଫତ୍ ମାଗିଲି । ସେମାନଙ୍କ ମଧ୍ୟରୁ ଜଣେ ଯୁବକ ମୋତେ ଲେଖି ଜଣାଇଦେଲା ଯେ, ସେ ଓଡ଼ିଆରେ ନଥି ଲେଖିପାରିବେନାହିଁ । ତା'ର ଚିଠି ପାଇ ସାଙ୍ଗେ ସାଙ୍ଗେ ତାକୁ କାର୍ଯ୍ୟରୁ ନିଲମ୍ବିତ କରିଦେଇ ପୁନର୍ବାର ମାଟ୍ରିକ୍ ପରୀକ୍ଷା ଦେଇ ଓଡ଼ିଆରେ ପାଶ୍ କରିବାର ପ୍ରମାଣ ପତ୍ର ଦାଖଲ କରିବା ପାଇଁ ଆଦେଶ ଦେଲି । ଓଡ଼ିଆଭାଷାରେ ମାଟ୍ରିକସ୍ତରୀୟ ଜ୍ଞାନ ନହେବା ପର୍ଯ୍ୟନ୍ତ ସେ ଆଉ ଅଫିସ୍ ନ ଆସିବା ପାଇଁ ସେହି ଚିଠିରେ ସୂଚାଇ ଦିଆଗଲା । ଏ ଚିଠି ପାଇବା ପରେ ସେ ଆସି ଦୋଷ ସ୍ୱୀକାର କଲା ଓ ଏଣିକି ଓଡ଼ିଆରେ ନଥି ଲେଖିବ ବୋଲି ଲିଖିତ ଭାବେ ଜଣାଇଲା । ତାପରେ ସମସ୍ତେ ଓଡ଼ିଆରେ ନଥି ଓ ଚିଠିପତ୍ର ଲେଖିବା ଆରମ୍ଭ କଲେ । ଯାହାର ଅସୁବିଧା ହେଲା, ତାକୁ ମୁଁ ସାହାଯ୍ୟ କଲି ।

ପ୍ରାୟ ମାସକ ଭିତରେ ଆମ ନିର୍ଦ୍ଦେଶାଳୟର ସମସ୍ତ ନଥିପତ୍ର ଓଡ଼ିଆରେ ଲେଖା ହୋଇଗଲା । ଜଣେ ଜଣେ କିରାଣୀ ଖୁବ୍ ସୁନ୍ଦର ଓ ସାବଲୀଳ ଭାଷାରେ ନଥି ଲେଖିବା ଆରମ୍ଭ କଲେ । ଭାବିଲି, ଏକଥା ମୁଖ୍ୟମନ୍ତ୍ରୀଙ୍କୁ ଜଣାଇ ଦେବି । ସେ ଜାଣିଲେ ନିଶ୍ଚୟ ଖୁସି ହେବେ । ତେଣୁ ଦିନେ ଭୋର୍ ସକାଳୁ ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କ ବାସଭବନକୁ ଗଲି । ସେ ତାଙ୍କ ହତାଭିତରେ ପ୍ରଭାତଭ୍ରମଣ କରୁଥିଲେ । ଗେଟ୍‌ରେ ଥିବା ଲୋକମାନେ ମୋତେ ତାଙ୍କ ପାଖକୁ ନେଇଗଲେ । ମୁଁ ତାଙ୍କୁ ନମସ୍କାର ଜଣାଇବା ମାତ୍ରେ ସେ ମୋ ଆସିବାର କାରଣ ପଚାରିଲେ । କହିଲି, ଆପଣଙ୍କୁ ଗୋଟିଏ ଭଲଖବର ଜଣାଇବାକୁ ଆସିଲି । ସେ ଚାଲିବା ବନ୍ଦ କରିଦେଇ ଠିଆହୋଇ ଆଗ୍ରହର ସହିତ ପଚାରିଲେ, କି ଖବର ? କହିଲି, ଆପଣଙ୍କ ନିର୍ଦ୍ଦେଶମାନି ମୋ କାର୍ଯ୍ୟାଳୟର ସବୁତକନଥି ଓଡ଼ିଆ କରିଦେଲି । ସେ କହିଲେ ଓଃ ଏଇକଥା ? ଆଉ କିଛି ଗୁରୁତ୍ୱପୂର୍ଣ୍ଣ ଖବର ଥିଲା କି ? କହିଲି ନା । ମୁଖ୍ୟମନ୍ତ୍ରୀ ତାଙ୍କ ପ୍ରଭାତ ଭ୍ରମଣରେ ପୁଣି ଚାଲିଲେ । ଦେଖିଲି ଏ ଖବରଟା ମୁଖ୍ୟମନ୍ତ୍ରୀଙ୍କ ପାଇଁ ସୁଖ ଦାୟକ ହେଲାନାହିଁ । ତାଙ୍କ ପାଖରୁ ଫେରିଲା ବେଳେ ଭାବିଲି; ଓଡ଼ିଆରେ ସରକାରୀ କାର୍ଯ୍ୟ କରିବା ମୁଖ୍ୟମନ୍ତ୍ରୀଙ୍କ ପକ୍ଷରେ ସେପରି କିଛି ଗୁରୁତ୍ୱପୂର୍ଣ୍ଣ ବିଷୟ ନୁହେଁ । ତାଙ୍କ ଅମଳରେ ଗୋଟାଏ କିଛି ନୂଆ କଥା କରିବା ପାଇଁ ଏପରି ନିର୍ଦ୍ଦେଶ ସେ ଦେଇଛନ୍ତି । ମାତ୍ର ସେହି ନିର୍ଦ୍ଦେଶ କିଏ କାର୍ଯ୍ୟକାରୀ କଲା କି ନ କଲା, ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ତେବେ ମୋର ଏପରି ଭାବିବାଟା ଭୁଲ୍ ହୋଇପାରେ । ତେଣୁ ଆଉ ଥରେ ମୁଖ୍ୟମନ୍ତ୍ରୀଙ୍କ ମନୋଭାବ ବୁଝିବାକୁ ମନସ୍ଥ କଲି ।

ଦଶବାର ଦିନ ଛାଡ଼ି ପୁଣିଥରେ ମୁଖ୍ୟମନ୍ତ୍ରୀଙ୍କୁ ଭୋର ସକାଳେ ତାଙ୍କ ପ୍ରଭାତ ଭ୍ରମଣ ବେଳେ ଦେଖାକରି ଓଡ଼ିଆରେ ସରକାରୀ କାର୍ଯ୍ୟ ହେବା ବିଷୟରେ ତାଙ୍କ ପ୍ରଚେଷ୍ଟା ପାଇଁ ଧନ୍ୟବାଦ ଦେଇ ପଚାରିଲି, ଆପଣଙ୍କ ନିର୍ଦ୍ଦେଶ ପାଇ ମଧ୍ୟ ଯେଉଁ ନିର୍ଦ୍ଦେଶାଳୟମାନେ ଓଡ଼ିଆରେ ନଥିପତ୍ର ଓ ଚିଠି ଲେଖୁନାହାନ୍ତି, ସେମାନଙ୍କ ପାଇଁ କିଛି ଦଣ୍ଡ ଅଛି କି ? ସେ ଚୁପ୍ ରହିଲେ । ପୁଣି ପଚାରିଲି, ଯଦି ଏହି ଆଦେଶ ଅମାନ୍ୟ କଲେ କାହା ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ ନହେବ, ତାହେଲେ ଯେଉଁମାନେ ଏହି ଆଦେଶପାଳନ କରିଛନ୍ତି ତାଙ୍କପାଇଁ କିଛି ପୁରସ୍କାର ଅଛି କି ? ଜାନକୀବାବୁ କଥାଟାକୁ ଆଡ଼େଇ ଦେଇ ଅନ୍ୟ ପ୍ରସଙ୍ଗ ଉଠାଇଲେ । ଜାଣିପାରିଲି ଯେ, ଏପରି କରିବାରେ ତାଙ୍କର କୌଣସି ଆନ୍ତରିକତା ନାହିଁ, ସେଥିଲାଗି କୌଣସି କାର୍ଯ୍ୟାଳୟରେ ଓଡ଼ିଆ ଭାଷାକୁ ଏପର୍ଯ୍ୟନ୍ତ ସରକାରୀ ଭାଷାଭାବେ ଗ୍ରହଣ କରାଯାଇ ନାହିଁ । ମୋ ନିଜ ନିର୍ଦ୍ଦେଶାଳୟ ଏଥିରୁ ଏକ ବ୍ୟତିକ୍ରମ । ଯଦି ତାଙ୍କର ଆନ୍ତରିକତା ଥାଆନ୍ତା, ତେବେ ସବୁ ସରକାରୀ କାର୍ଯ୍ୟାଳୟରେ ଓଡ଼ିଆରେ ନଥିପତ୍ର ଲେଖିବା ଅଭ୍ୟାସଗତ ହୋଇସାରନ୍ତାଣି । ଜାନକୀବାବୁ ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ, ସାମ୍ବାଦିକ ଓ ସ୍ତମ୍ଭକାର । ସେ ପନ୍ଦରବର୍ଷକାଳ ମୁଖ୍ୟମନ୍ତ୍ରୀ ଭାବେ ଓଡ଼ିଶା ଶାସନକଲେ । ସେ ଚାହିଁଥିଲେ ଏଇ ସମୟକାଳ ଭିତରେ ଓଡ଼ିଆ ଭାଷା ନିଶ୍ଚିତଭାବେ ସରକାରୀଭାଷା ହୋଇ ପାରିଥାନ୍ତା । କେବଳ ଜାନକୀବାବୁ ଯେ ମାତୃଭାଷା ଓଡ଼ିଆକୁ ସରକାରୀ ଭାଷା କରିବାକୁ ନିଷ୍ପତ୍ତି ନେଇଥିଲେ ତାହା ନୁହେଁ । ସ୍ୱାଧୀନତା ପ୍ରାପ୍ତିପରେ ପ୍ରଥମ ନିର୍ବାଚନରେ ଜୟଯୁକ୍ତ ହୋଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିବା ଶ୍ରୀ ନବକୃଷ୍ଣ ଚୌଧୁରୀ ୧୯୫୪ ମସିହାରେ ଏହି ଅଧ୍ୟାଦେଶ ଜାରୀ କରିଥିଲେ । ମାତ୍ର ସେ ମଧ୍ୟ ଏଥିପ୍ରତି ଗୁରୁତ୍ୱ ଦେଇନାହାନ୍ତି । ଇଂରେଜମାନେ ଭାରତ ଛାଡ଼ିବା ପରେ ଏ ଦେଶର ଶାସନ କାର୍ଯ୍ୟରେ ମାତୃଭାଷାକୁ ଗୁରୁତ୍ୱଦେବା ଜାତିରପିତା ଗାନ୍ଧିଜୀଙ୍କର ନିର୍ଦ୍ଦେଶ ଥିଲା । ତଦନୁଯାୟୀ କେବଳ ଓଡ଼ିଶା କାହିଁକି ଦେଶର ଅନ୍ୟସବୁ ପ୍ରଦେଶରେ ମାତୃଭାଷାକୁ ସରକାରୀ ଭାଷାର ମାନ୍ୟତା ଦେବାକୁ ଗାନ୍ଧିବାଦୀ ବିଧାୟକମାନେ ଦାବୀ କରିଥିଲେ । ବିହାର, ମଧ୍ୟପ୍ରଦେଶ, ଉତ୍ତର ପ୍ରଦେଶ, ଆଦି ହିନ୍ଦୀଭାଷୀ ରାଜ୍ୟ ମାନଙ୍କରେ ୧୯୫୪ ମସିହା ଠାରୁ ହିନ୍ଦୀ ଭାଷାକୁ ସରକାରୀ ଭାଷାର ମାନ୍ୟତା ଦିଆଯାଇଛି । ଆଜିକାଲି ଆହୁରି ଅନେକ ନୂଆ ରାଜ୍ୟ – ଝାଡଖଣ୍ଡ, ଛତିଶଗଡ଼, ହରିଆନା, ଉତ୍ତରାଖଣ୍ଡ ଆଦି ରାଜ୍ୟର ସରକାରୀ ଭାଷା ହେଉଛି ହିନ୍ଦୀ । ସେହିପରି ତାମିଲନାଡୁ, ଆନ୍ଧ୍ର, ଗୁଜୁରାଟ, ମୁମ୍ବଇ ଓ ପଞ୍ଜାବ ଆଦି ରାଜ୍ୟରେ ମଧ୍ୟ ପ୍ରାଦେଶିକ ଭାଷାକୁ ସଂପୃକ୍ତ ରାଜ୍ୟର ସରକାରୀଭାଷା

ଭାବେ ସ୍ୱୀକୃତି ଦିଆଯାଇଛି । ମାତ୍ର ଓଡ଼ିଶାରେ ଏପର୍ଯ୍ୟନ୍ତ କୌଣସି ଦଳୀୟ ସରକାର ନିଷ୍ଠାପର ଭାବେ ଏଭଳି ନିଷ୍ପତ୍ତିକୁ କାର୍ଯ୍ୟକାରୀ କରି ନାହାନ୍ତି । ଅନ୍ୟ ଏକ ମୁଖ୍ୟ ସମସ୍ୟା ହେଉଛି, ରାଜ୍ୟବାସୀଙ୍କର ଏ ଦିଗରେ ଆନ୍ତରିକତା । ସରକାର କେବଳ ନିୟମ କରିଦେଉଛନ୍ତି, ମାତ୍ର ନିୟମକୁ କାର୍ଯ୍ୟକାରୀ କରିବା ସରକାରୀ କର୍ମଚାରୀମାନଙ୍କର ଦାୟିତ୍ୱ । ଓଡ଼ିଶା ରାଜ୍ୟରେ ଓଡ଼ିଆମାନେ ହିଁ ସରକାରୀ କର୍ମଚାରୀ ଭାବେ କାର୍ଯ୍ୟକରନ୍ତି । ମାତ୍ର ଅଧିକାଂଶ ଓଡ଼ିଆଲୋକ ନିଜ ମାତୃଭାଷା ପ୍ରତି ବୀତସ୍ପୃହ । ମାତୃଭାଷା ପ୍ରତି ଆଦର ନଥାଇ ସରକାରୀ ନଥିପତ୍ରରେ ଓଡ଼ିଆକୁ ସ୍ଥାନ ଦେବା ଆମରି ଓଡ଼ିଶାବାସୀଙ୍କ ଯୋଗୁ ହୋଇ ପାରୁନାହିଁ । ତଥାପି ମୁଁ ନିର୍ଦ୍ଦେଶକ ପଦବୀରେ ରହିବା ମାତ୍ରେ ଏହି ଆଦେଶକୁ ପଶୁପାଳନ ବିଭାଗରେ କାର୍ଯ୍ୟକାରୀ କରାଇବାରେ ସଫଳକାମ ହୋଇ ପାରିଥିଲି । ନିର୍ଦ୍ଦେଶାଳୟର ସମସ୍ତ ନଥିପତ୍ର ଓଡ଼ିଆରେ ଲେଖା ହେଉଥିଲା ଓ ଚିଠିପତ୍ର ଓଡ଼ିଆରେ ଥିଲା । ମୁଁ ଅବସର ନେବା ପରେ ଯେଉଁମାନେ ନିର୍ଦ୍ଦେଶକ ଭାବେ କାର୍ଯ୍ୟ କଲେ, ସେମାନେ ପୁଣି ଇଂରାଜୀ ଉପରେ ପ୍ରାଧନ୍ୟ ଦେଲେ । ଭାବିଲେ ଦୁଃଖ ଲାଗେ ଯେ, ଓଡ଼ିଆ ଜାତିଟା ଅତି ମାତ୍ରାରେ ସ୍ୱାର୍ଥକୈନ୍ଦ୍ରିକ ହୋଇପଡ଼ିଛି । ଫଳରେ ସାମାନ୍ୟ ସ୍ୱାର୍ଥଲାଗି ନିଜର ସ୍ୱାଭିମାନ ହରାଇବାରେ କାହାର ହେଲେ ଦୁଃଖ ନାହିଁ । ଏ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ କେବଳ ଲୋକାପବାଦ ଏଡାଇବା ପାଇଁ ଏ ଦିଗରେ ଗୋଟିଏ ଗୋଟିଏ ଆଦେଶନାମା ଜାରୀ କରିଦେଇ ନିଜର କର୍ତ୍ତବ୍ୟ ସାରି ଦେଉଛନ୍ତି । ମାତ୍ର ସେମାନଙ୍କ ଆଦେଶ ପାଳିତ ହେବା ନ ହେବା ଉପରେ କେହି ଗୁରୁତ୍ୱ ଦେଉନାହାନ୍ତି । ତେବେ ଓଡ଼ିଆ ଭାଷାକୁ ସରକାରୀ ଭାଷା କରିବା ଦିଗରେ ମୁଁ ଏକୁଟିଆ ହୋଇପଡ଼ିଲି ।

ପଶୁପାଳନ ବିଭାଗର ନିର୍ଦ୍ଦେଶକ ଭାବରେ ପଶୁ ମୃତ୍ୟୁସଂଖ୍ୟା କମାଇବା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଏ ବିଭାଗର ନିର୍ଦ୍ଦେଶକମାନେ କେବଳ ଚିକିତ୍ସା ଉପରେ ପ୍ରାଧାନ୍ୟ ଦେବା ମୁଖ୍ୟତଃ ଜଣାଯାଏ । ଚିଲିକା ଅଞ୍ଚଳର ମଇଁଷିମାନେ ବହୁ ସଂଖ୍ୟାରେ ମରିବା ଏକ ମାମୁଲି କଥା । ଏହା ଶୁଣି ତାର ପ୍ରତିକାର ବିଷୟରେ ମୁଁ ଚିନ୍ତା କଲି ।

ଚିଲିକା ହ୍ରଦ ଏ ଦେଶର ବୃହତ୍ତମ ହ୍ରଦ ଭାବେ ସୁଖ୍ୟାତ । ଏହି ହ୍ରଦର ଚତୁଃପାର୍ଶ୍ୱରେ ଥିବା ଗ୍ରାମମାନଙ୍କରେ ଲୋକେ ମଇଁଷି ପାଳନ କରନ୍ତି । ବ୍ରହ୍ମଗିରି ଓ କୃଷ୍ଣପ୍ରସାଦ ବ୍ଲକ୍‌ର ଲୋକେ ଚଳିବା ପାଇଁ ମାଛ ଧରିବା ଓ ମଇଁଷି ରଖି କିଛି ଦୁଧ ବିକ୍ରୀ କରିବା ଉପରେ ନିର୍ଭର କରନ୍ତି । ମଇଁଷିମାନେ ବେଶୀକିଛି ଦୁଧ ଦିଅନ୍ତି ନାହିଁ । ଗୋଟିଏ ମଇଁଷି ଦିନକୁ

୨୫୦ ଗ୍ରାମ୍‌ରୁ ଅଧାଲିଟର ପର୍ଯ୍ୟନ୍ତ ଦୁଧ ଦେଇଥାଏ । ମାତ୍ର ସେ ଦୁଧ ଅତ୍ୟନ୍ତ ବହଳିଆ ହୋଇଥାଏ । ଗୋଟିଏ ପରିବାର ୧୦ଟି ରୁ ୫୦ ବା ଶହେ ପର୍ଯ୍ୟନ୍ତ ମଇଁଷି ପାଳି ଦିନକୁ ୨/୩ ଲିଟରରୁ ୧୦ ଲିଟର ପର୍ଯ୍ୟନ୍ତ ଦୁଧ ବିକ୍ରୀ କରନ୍ତି । ଏତେ ସଂଖ୍ୟକ ମଇଁଷିଙ୍କୁ ପାଳିବା ପାଇଁ ଲୋକଙ୍କର କିଛି ଖର୍ଚ୍ଚ ନଥାଏ । ଚିଲିକା ହ୍ରଦ ହିଁ ସେମାନଙ୍କର ଚରାଭୂଇଁ । ମଇଁଷିମାନେ ଦିନସାରା ଚିଲିକା ହ୍ରଦରେ ବୁଲି ଦଳଖାଇ ସନ୍ଧ୍ୟା ବେଳକୁ ଚିଲିକା କୂଳରେ ଆଶ୍ରୟ ନିଅନ୍ତି । ଲୋକେ କେବଳ ନିଜ ମଇଁଷିଙ୍କୁ ଚିହ୍ନି ସେମାନେ କେଉଁଠି ଶୋଇଛନ୍ତି ଦେଖି ଦୁଧ ଦୁହିଁ ଆଣନ୍ତି । ହେଲେ, ବିନା ଖର୍ଚ୍ଚରେ ମଇଁଷି ପାଳିବା କେତେଦୂର ଲାଭଜନକ ତାହା ଲୋକେ ଚିନ୍ତା କରନ୍ତି ନାହିଁ । ମାଆ ଚିଲିକା କୋଳରେ ବଢ଼ିଥିବା ମଣିଷଠାରୁ ପଶୁ ପର୍ଯ୍ୟନ୍ତ ଚିଲିକାରୁ ଯେତିକି ପାଆନ୍ତି ସେତିକିରେ ସନ୍ତୁଷ୍ଟ ରହନ୍ତି । ଖରା ଦିନେ ହ୍ରଦରୁ ପାଣି ଶୁଖିଗଲେ ପ୍ରଚୁର ଗିରିଙ୍ଗା ଘାସ ହୁଏ । ମଇଁଷିମାନେ ପେଟେ ପେଟେ ଘାସ ଖାଇ ଖରାବେଳେ ଗାଆଁ ମୁଣ୍ଡ ତୋଟା ବା ବରଗଛ ମୂଳେ ଆଶ୍ରୟ ନିଅନ୍ତି । ସେମାନଙ୍କ ମଧ୍ୟରୁ ବହୁ ସଂଖ୍ୟକ ମଇଁଷି ଅକାଳରେ ମୃତ୍ୟୁବରଣ କରନ୍ତି । ଯିଏ ବା ରହନ୍ତି ସେମାନଙ୍କର ଦୁଗ୍ଧ ଉତ୍ପାଦନ କ୍ଷମତା ବହୁତ କମ୍ ଥାଏ । ଏହାର କାରଣ ବିଷୟରେ ଏ ପର୍ଯ୍ୟନ୍ତ କେହି ଅନୁଧ୍ୟାନ କରିନାହାଁନ୍ତି । ସେ ଅଞ୍ଚଳ ଗସ୍ତ କରି ମୁଁ ଯାହା ଦେଖିଲି, ଚିଲିକା ପାଣିରେ ମଇଁଷିମାନେ ମଳମୂତ୍ର ତ୍ୟାଗ କରିବା ଯୋଗୁଁ ସେମାନଙ୍କ ପେଟରେ ଥିବା କୃମି ସବୁ ଚିଲିକା ପାଣିରେ ବଢ଼ି ଅନ୍ୟମାନଙ୍କ ଶରୀରକୁ ସଂକ୍ରମିତ କରୁଛନ୍ତି । କଲିଜାକୃମି, ଫିତାକୃମି ଓ ଅନ୍ୟାନ୍ୟ ରକ୍ତଶୋଷକ କୃମିମାନେ ମଇଁଷିଙ୍କ ପେଟରେ ଏତେ ପରିମାଣରେ ହୁଅନ୍ତି ଯେ, ମଇଁଷି ବଞ୍ଚିବା କଷ୍ଟକର ହୋଇଯାଏ । କୃମି ଲାଗି ସେମାନଙ୍କର ଦୁଧ ଦେବାଶକ୍ତି ବହୁତ କମିଯାଏ । ଫୁଲନଖରା ଠାରେ ପଶୁରୋଗ ଗବେଷଣା ପ୍ରତିଷ୍ଠାନ ଆରମ୍ଭ କରି ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଏଭଳି ରୋଗବ୍ୟାଧି ବିଷୟରେ ତଥ୍ୟ ସଂଗ୍ରହ କରି ତାର ପ୍ରତିକାର ଲାଗି ଆଦେଶ ଦେଲି । ଚିଲିକା ମଇଁଷିଙ୍କୁ କୃମି ନାଶକ ଔଷଧ ଦେଇ ସେମାନଙ୍କର ସ୍ୱାସ୍ଥ୍ୟରକ୍ଷା ତଥା ଦୁଗ୍ଧ ଉତ୍ପାଦନ ବୃଦ୍ଧିଲାଗି ଦୁଇଚାରିଟି ଦଳରେ ବିଭିନ୍ନ ଗ୍ରାମରେ ପଶୁଚିକିତ୍ସା ଶିବିର କରିବା ପାଇଁ ବ୍ୟବସ୍ଥାକଲି । ଏହାର ଫଳ ଖୁବ୍ ଭଲହେଲା ଓ ମଇଁଷିମାନେ ଚିକ୍କଣ ଦେଖାଗଲେ । ଲୋକେ ଅଧିକ ଦୁଧ ପାଇଲେ । ତେଣୁ ସେମାନେ ଏପରି ଶିବିର ନିୟମିତ ଭାବେ କରିବାକୁ ଦରଖାସ୍ତ ଦେଲେ । ଏହା ଦ୍ୱାରା ଆମ ବିଭାଗୀୟ ଡାକ୍ତର, ପଶୁସହାୟକ ଓ ପଶୁରୋଗ ଗବେଷଣା ପ୍ରତିଷ୍ଠାନର କର୍ମଚାରୀମାନଙ୍କ ଉପରେ ଅଧିକ ଚାପ ପଡ଼ିଲା । ମୁଁ ନିର୍ଦ୍ଦେଶକ ଥିବା ଯାଏ ଏହି କାର୍ଯ୍ୟ

ଚାଲୁ ରହିଲା । ତାପରେ ବନ୍ଦ ହୋଇଗଲା । ସେଥିପ୍ରତି କେହି ଆଉ ନଜର ଦେଲେ ନାହିଁ । ଫଳରେ ଏବେ ମଧ୍ୟ ବହୁ ସଂଖ୍ୟକ ମଇଁଷି କୃମିରୋଗରେ ମରୁଛନ୍ତି ଓ ସେମାନଙ୍କର ଉତ୍ପାଦିକା ଶକ୍ତି କମିଯାଉଛି । ଏହାର ସ୍ଥାୟୀ ପ୍ରତିକାର ଆବଶ୍ୟକ ।

ଚିପିଲିମାରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ତିଆରି କାର୍ଯ୍ୟ ଚାଲିଥାଏ । ଡାକ୍ତର ବିଷ୍ଣୁଚରଣ ମହାନ୍ତି ସେ ଦାୟିତ୍ୱରେ ଥାଆନ୍ତି । ଚାରି ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚରେ ମନ୍ଦିରର ମୂଳଦୁଆ, ଓ ବାଇଶିପାହାଚ ତିଆରି ହୋଇ ମୁଖ୍ୟମନ୍ଦିର ଓ ଚାରିପାଖରେ କାନ୍ଥ ସବୁ ଅଧା ଉଠିଯାଇଥାଏ । ସେ ବର୍ଷ ନବ କଳେବର ପଡ଼ିଲା । ଏତେବଡ଼ ମନ୍ଦିରରେ ପୂର୍ବରୁ ଥିବା ଛୋଟ ମୂର୍ତ୍ତି ରଖି ପୂଜିବା ଠିକ୍ ହେବ ନାହିଁ ଭାବି ଚିପିଲିମାର ଅଫିସରମାନଙ୍କୁ ଡକାଇ ସେମାନଙ୍କର ମତ ଚାହିଁଲି । ନବକଳେବର ସମୟରେ ଛୋଟ ମୂର୍ତ୍ତିମାନଙ୍କୁ ସମାଧିସ୍ଥ କରି ବଡ଼ ବଡ଼ ଜଗନ୍ନଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ପୁରୀରେ ନିର୍ମାଣ କରିବାର ନିଷ୍ପତ୍ତି ହେଲା । ପୁରୀର ମୁଖ୍ୟଜିଲ୍ଲା ଅଧିକାରୀଙ୍କୁ ଡକାଇ ଠାକୁରମାନଙ୍କୁ ଗଢ଼ିବା ପାଇଁ ବରାଦ ଦିଆଗଲା । ତିନିମୂର୍ତ୍ତି ଓ ସୁଦର୍ଶନଙ୍କୁ ନିର୍ମାଣ କରିବାକୁ ୩୦ ହଜାର ଟଙ୍କା ଖର୍ଚ୍ଚ ହେବାର ଅଟକଳ ହେଲା । ଆମେ ତିନିଜଣ ଅଫିସର ସେ ଖର୍ଚ୍ଚ ବାଣ୍ଟି ନେଲୁ । ମୂର୍ତ୍ତିସବୁ ଗଢ଼ାସରିବା ପରେ ଆମ ବିଭାଗର ତିନିଟି ମିନିଟ୍ରକ୍‌ରେ ପଶୁସହାୟକ ତାଲିମ ନେଉଥିବା ୩୦ ଜଣ ବ୍ରାହ୍ମଣଯୁବକ ପୁରୀ ଆସି ପ୍ରତିଟ୍ରକ୍‌ରେ ଗୋଟିଏକରି ମୂର୍ତ୍ତିନେଇ ଚିପିଲିମା ଚାଲିଗଲେ । ପୁରୀରୁ ଚାରିଜଣ ଦଇତାପତି ପୂଜକଙ୍କ ସହିତ ଦୁଇଜଣ ପୂଜାପଣ୍ଡା ଯାଇ ଚିପିଲିମାରେ ଠାକୁରମାନଙ୍କୁ ପ୍ରତିଷ୍ଠା କରାଇଲେ । ମୋତେ କର୍ତ୍ତା ହେବାକୁ ସମସ୍ତେ ଅନୁରୋଧ କଲେ । ତିନିଦିନ ଧରି ସମୟ ଦେବାକୁ ମୋ ପକ୍ଷରେ ଅସମ୍ଭବ ଥିଲା । ତେଣୁ ଚିପିଲିମାରେ ଶ୍ରୀ ଜଗନ୍ନାଥଙ୍କ ପୂଜା ଆରମ୍ଭ କରିଥିବା ପୂର୍ବତନ ଯୁଗ୍ମନିର୍ଦ୍ଦେଶକ ଡାକ୍ତର ଲକ୍ଷ୍ମୀଧର ମହାନ୍ତିଙ୍କୁ ଏହି କାର୍ଯ୍ୟ ପାଇଁ ଡକାଇଲି ।

ମୁଁ ଚିପିଲିମା ଯାଇ ନବକଳେବର ଅଧିବାସ ପୂଜା କରି ଲକ୍ଷ୍ମୀଧରବାବୁଙ୍କୁ ଗୁଆ ଟେକି ଦେଇ କଟକ ଚାଲିଆସିଲି । ତାଙ୍କଦ୍ୱାରା ନୂଆ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ପ୍ରତିଷ୍ଠା କାର୍ଯ୍ୟ ସମ୍ପନ୍ନ ହେଲା । ମାତ୍ର ନୂତନ ମନ୍ଦିର ନିର୍ମାଣ ହେବାରେ ଆହୁରି ଅନେକ ଡେରିହେବ ବୋଲି ପୁରୁଣା ମନ୍ଦିରରେ ଠାକୁରମାନେ ପୂଜା ପାଇଲେ ।

ଆମ ଗ୍ରାମରେ ମଧ୍ୟ ଇଷ୍ଟଦେବତା ଗୋପାଳଜୀଉଙ୍କ ମନ୍ଦିର ନଥିବା କଥା ପୂର୍ବରୁ କହିଛି । ଏକ ଟିଣ ଛପର ଘରେ ଠାକୁର ପୂଜା ପାଉଥିଲେ । ଟିଣସବୁ କଳଙ୍କିଖାଇ ଫୁଟିଗଲା । ୧୯୯୦ ମସିହାରେ ମୁଁ "ପାତାଳପୁରୀର ହାଲ୍‌ଚାଲ୍" ଶୀର୍ଷକ ଭ୍ରମଣ କାହାଣୀ

ଲେଖି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲି । ସେଥିଲାଗି ପାଇଥିବା ୧୦ ହଜାର ଟଙ୍କା ଗୋପାଳଙ୍କ ମନ୍ଦିର ତିଆରିଲାଗି ମୂଳଜମା ଭାବେ ରଖିଲି । ୧୯୯୪ ମସିହା ଠାରୁ ମନ୍ଦିରତିଆରି କାର୍ଯ୍ୟ ଆରମ୍ଭ ହେଲା । ବଡ଼ବାପାଙ୍କ ପୁଅ ଭାଇ ଶ୍ରୀନୃସିଂହଚରଣ ମହାନ୍ତି ଏହି ମନ୍ଦିରତିଆରି ଦାୟିତ୍ୱରେ ଥାଆନ୍ତି । ତାଛଡ଼ା ଆମଗାଆଁର ଶ୍ରୀକୃଷ୍ଣଚନ୍ଦ୍ର ଭଞ୍ଜ କୃଷିବିଭାଗ ଚାକିରୀରୁ ଅବସର ଗ୍ରହଣ କଲାପରେ ଏହିକାର୍ଯ୍ୟରେ ଭାଇଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ମଝିରେ ମଝିରେ ମୁଁ ଯାଇ ଏ କାର୍ଯ୍ୟର ଅଗ୍ରଗତି ଦେଖି ଆସୁଥିଲି । ୧୯୯୬ ମସିହା ଜାନୁୟାରୀ ମାସରେ ମନ୍ଦିର ନିର୍ମାଣ ଶେଷ ହେଲା । ପାଞ୍ଚ ଦିନ ବ୍ୟାପୀ ଯଜ୍ଞ ଓ ଦୁଇଦିନ ଅଷ୍ଟପ୍ରହରୀ ନାମଯଜ୍ଞ କରାଇ ଠାକୁର ନୂତନ ମନ୍ଦିରକୁ ଯିବା ପାଇଁ ନିଷ୍ପତ୍ତି ହେଲା । ପୁରୀର ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହଦେବ ସରସ୍ୱତୀପୂଜା ଦିନ ଯାଇ ଶ୍ରୀ ଗୋପଳଜୀଉଙ୍କ ନୂତନ ମନ୍ଦିର ପ୍ରବେଶପରେ ପୂଜାର୍ଚ୍ଚନା କରି ଯଜ୍ଞରେ ଆହୂତି ପ୍ରଦାନକଲେ ।

ଏଠାରେ ଗଜପତି ମହାରାଜା କିପରି ଏହି ପବିତ୍ର ଉତ୍ସବରେ ଯୋଗଦେଲେ, ସେ ବିଷୟରେ ଉଲ୍ଲେଖ କରିବା ଉଚିତ୍ ମନେହୁଏ । ମୋର କଟକ ବାଦାମବାଡ଼ିସ୍ଥିତ ଘର ନିକଟରେ ଶ୍ୟାମସୁନ୍ଦର ମଠ ଅଛି । ସେହିମଠକୁ ପୁରୀ ଭାଗବତଆଶ୍ରମ ମଠାଧୀଶ ବାବାଜୀ ଶ୍ରୀ ଚୈତନ୍ୟ ଚରଣ ଦାସ ମହାରାଜ ଆସନ୍ତି । ତାଙ୍କସହିତ ସମ୍ପର୍କ ହେବାପରେ ଇଷ୍ଟଦେବତା ଶ୍ରୀ ଗୋପାଳଜୀଉଙ୍କ ମନ୍ଦିର ପ୍ରତିଷ୍ଠାବେଳକୁ ତାଙ୍କ ଉପସ୍ଥିତି କାମନାକଲି । ଗଜପତି ମହାରାଜାଙ୍କୁ ନିମନ୍ତ୍ରଣ କରିବାକୁ ସେ ପ୍ରସ୍ତାବ ଦେଲେ । କଥାହେଲା, ଆମେଦୁହେଁ ଯାଇ ମହାରାଜାଙ୍କୁ ଭେଟିବୁ । ତାହା ହିଁ ହେଲା । ମୁଁ ପୁରୀଯାଇ ଶ୍ରୀନଅରରେ ଗଜପତି ଦିବ୍ୟସିଂହଦେବଙ୍କୁ ସାକ୍ଷାତ କଲି । ଚୈତନ୍ୟଚରଣ ବାବା ସାଥିରେଥିଲେ । ମୋ ବିଷୟରେ ସବୁ ଜାଣିବା ପରେ ଗଜପତି ଏହି ଉତ୍ସବରେ ଯୋଗଦେବାକୁ ରାଜିହେଲେ । ମୁଁ ଆସି ମନ୍ଦିର ପ୍ରତିଷ୍ଠା ଲାଗି ନିମନ୍ତ୍ରଣପତ୍ରରେ ଗଜପତିମହାରାଜା ଉଦ୍‌ଘାଟକ ଭାବେ ଯୋଗଦେବାକଥା ଛପାଇ ଦେଲି । ଏହାର ଏକସପ୍ତାହ ପରେ ଦିନେ ଗଜପତି ମୋତେ ଫୋନ୍‌କରି ତାଙ୍କୁ ଭେଟିବାଲାଗି ଡକାଇଲେ । ମନ୍ଦିରପ୍ରତିଷ୍ଠା ଆଉ ମାତ୍ର ପାଞ୍ଚ ଛଅ ଦିନ ଥାଏ । ଅଫିସ୍ କାମସାରି ମୁଁ ପୁରୀ ବାହାରିଗଲି ଗଜପତିଙ୍କୁ ଭେଟିବାକୁ । ସେ, ମୋତେ ପଚାରିଲେ, ଆପଣଙ୍କର ଏ ମନ୍ଦିର ସର୍ବଧାରଣଙ୍କର କି କେବଳ ଆପଣଙ୍କ ମାର୍ଫତ୍‌ଦାରୀରେ ପରିଚାଳିତ ? କହିଲି, ଏହା ସର୍ବସାଧାରଣ ମନ୍ଦିର ନୁହେଁ । ଆମ ବଂଶର ଚାରିଟି ପରିବାର ପରିଚାଳନା ଦାୟିତ୍ୱରେ ଅଛନ୍ତି । ସେ କହିଲେ ଗୁରୁବାବୁ !

ଏକ ନିୟମ ନୀତି ଭିତରେ ମୁଁ ପରିଚାଳିତ । କେବଳ ସର୍ବସାଧାରଣ ମନ୍ଦିରମାନଙ୍କୁ ମୋର ଯିବାକଥା । କୌଣସି ଘରୋଇମନ୍ଦିରକୁ ଏପର୍ଯ୍ୟନ୍ତ ମୁଁ ଯାଇନାହିଁ । ଆପଣଙ୍କୁ ସମ୍ମତିଦେବା ମୋର ନୀତିଗତ ଭୁଲ୍ ହୋଇଗଲା । କହିଲି, ମୋର ଇଷ୍ଟଦେବତା ଶ୍ରୀ ଗୋପାଳଜୀଉ ପ୍ରଭୁ ଜଗନ୍ନାଥଙ୍କ ପରି ପ୍ରତ୍ୟକ୍ଷଦେବତା । ତାଙ୍କୁ ଦର୍ଶନକଲେ ଆପଣ ଏକଥା ଜାଣିପାରିବେ । ତଥାପି ମୋ ବିଚାରରେ ଓଡ଼ିଆଜାତିର ଚଳନ୍ତିବିଷ୍ଣୁ ଗଜପତିମହାରାଜାଙ୍କର ନୀତିନିୟମ ଠିକ୍ ରହିବା ଉଚିତ୍ । ଆପଣଙ୍କ ସମ୍ମତିପାଇ ମୁଁ ନିମନ୍ତ୍ରଣ ଛପାଇ ଦେଇଛି, ଅସୁବିଧାବଶତଃ ଗଜପତି ଆସି ପାରିଲେ ନାହିଁ ବୋଲି ଲୋକଙ୍କୁ ଜଣାଇଦେବି । ତେଣୁ, ଏଥିଲାଗି ମୋ ମନରେ ଦୁଃଖ ନାହିଁ । ତେବେ, ଏତିକି କହି ଯାଉଛି; ଯାହାର ମନ୍ଦିର ପ୍ରତିଷ୍ଠା ହେଉଛି, ତାଙ୍କଠାରୁ ନିର୍ଦ୍ଦେଶପାଇଲେ ନିଶ୍ଚୟ ଆପଣ ଏ କାର୍ଯ୍ୟରେ ଯୋଗ ଦେବେ ବୋଲି ମୋର ବିଶ୍ୱାସ ।

ତିନିଦିନ ପରେ ପୁଣି ଗଜପତି ମହାରାଜଙ୍କ ଠାରୁ ଫୋନ୍ ବାର୍ତ୍ତାପାଇ ମୁଁ ପୁଣି ପୁରୀଯାଇ ତାଙ୍କୁଭେଟିଲି । ସେ କହିଲେ; ଆପଣ ଯାହା କହିଯାଇଥିଲେ ତାହା ହିଁ ସତ୍ୟହେଲା । ଶ୍ରୀ ଗୋପାଳଜୀଉଙ୍କ ଦର୍ଶନ ପାଇଁ ମୋତେ ଯିବାକୁ ହେବ । ତେଣୁ ଗଜପତି ପ୍ରଭୁଙ୍କର ଚାମରସେବା କରିବାପାଇଁ ଯେଉଁସବୁ ବିଧିବ୍ୟବସ୍ଥା ରହିଛି ତାହା ଆପଣ କରିବେ । ତଦନୁଯାୟୀ ପୁରୀରୁ ରାଜଗୁରୁ ଯାଇ ଗଜପତିଙ୍କର ମଙ୍ଗଳାର୍ପଣ କରିବାପରେ ସେ ଠାକୁରଙ୍କୁ ଧୂପ, ଦୀପ ଦେଇ ଚାମରସେବା କରିବେ । ଏକଥା ଶୁଣି ପ୍ରଭୁ ଶ୍ରୀ ଗୋପାଳଜୀଉଙ୍କ ମହିମାର ପ୍ରଭାବ ଗଜପତି ମହାରାଜା ମଧ ଅନୁଭବ କରିବା କଥା ମୁଁ ବୁଝିଗଲି । ପୁରୀ ଜିଲ୍ଲା ପଶୁଚିକିତ୍ସା ଅଧିକାରୀଙ୍କୁ ରାଜଗୁରୁଙ୍କ ସହିତ ଭେଟହୋଇ ତାଙ୍କୁ ନିମନ୍ତ୍ରଣକରିବା ଓ ମଙ୍ଗଳାର୍ପଣ କର୍ମଲାଗି ଚିଠାପ୍ରସ୍ତୁତ କରିବାକୁ ଅନୁରୋଧ କରିଆସିଲି । ସାତଦିନ ଏହି ଉତ୍ସବରେ ସ୍ଥାନୀୟ ଲୋକମାନେ ଆସି ପ୍ରସାଦ ପାଉଥିଲେ । ମଧାହ୍ନ ୧୨ ଠାରୁ ରାତି ୧୦ ଟା ପର୍ଯ୍ୟନ୍ତ ଅନ୍ନଯଜ୍ଞ ଚାଲୁରହିଥାଏ । ଆମ ଗୁରୁଜେଜେଙ୍କ ସାନପୁଅ ପଣ୍ଡିତ ଶ୍ରୀ ଅଦ୍ୱୈତ ପ୍ରସାଦ ମିଶ୍ର ଯଜ୍ଞର ମୁଖ୍ୟପୁରୋଧା ଥିଲେ । ଯଜ୍ଞ ଆରମ୍ଭ ହେବା ପୂର୍ବରୁ ସେ ମୋତେ ଦୀକ୍ଷା ପ୍ରଦାନ କରି କର୍ତ୍ତା ହେବାର ଅଧିକାର ଦେଲେ । ସେହିବର୍ଷ ଠାରୁ ପ୍ରତିବର୍ଷ ସରସ୍ୱତୀ ପୂଜା ଦିନ ତିନି ଦିବସୀୟ ଯଜ୍ଞ ଓ ପରଦିନ ଅଷ୍ଟପ୍ରହରୀ ନାମଯଜ୍ଞ ହେଉଥିଲା । ୧୨ ବର୍ଷ ପୂର୍ତ୍ତି ହେବାରେ ୨୦୦୭ ମସିହା ପର୍ଯ୍ୟନ୍ତ ତିନିଦିନ ବ୍ୟାପୀ ଯଜ୍ଞ ପରେ ଅଷ୍ଟପ୍ରହରୀ ହୋଇଥିଲା । ତାପରେ ଏବେ ଏକଦିନାତ୍ମକ ଯଜ୍ଞ ଓ ଅଷ୍ଟପ୍ରହର ନାମଯଜ୍ଞ ପ୍ରତିବର୍ଷ ଚାଲୁରହିଛି ।

# ଆଉ କିଛି ବିଭାଗୀୟ କଥା

ମୁଁ ଯେତେବେଳେ ପ୍ରାଣୀପୁଷ୍ଟିତତ୍ତ୍ୱ ଦାୟିତ୍ୱରେ ଉପନିର୍ଦ୍ଦେଶକ ଥିଲି ସେତେବେଳେ ଲକ୍ଷ୍ମୀସାଗରସ୍ଥ କୁକ୍କୁଟ ଉନ୍ନୟନ ପ୍ରକଳ୍ପ ଅଧିକାରୀଙ୍କ ପରିସରରେ କୁକୁଡ଼ା ଓ ଗୋଖାଦ୍ୟର ମାନନିର୍ଦ୍ଧାରଣ ନିମନ୍ତେ ଏକ ଗବେଷଣାଗାର କରିଥିଲି । ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରୁ ପ୍ରାଣୀପୁଷ୍ଟିତତ୍ତ୍ୱ ବିଷୟକ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରିଥିବା ଜଣେ ଅଫିସରଙ୍କୁ ଏହି ଲାବ୍ ଦାୟିତ୍ୱରେ ରଖାଇ କୁକୁଡ଼ା ଓ ଗୋଖାଦ୍ୟ ଉପାଦାନ ଓ ମିଶ୍ରିତ ଗୋଖାଦ୍ୟ ନମୁନାଗୁଡ଼ିକ ପରୀକ୍ଷା କରାଇ ସର୍ବସାଧାରଣଙ୍କୁ ଉତ୍ତମ ପଶୁଖାଦ୍ୟ ଚୟନଦିଗରେ ସାହାଯ୍ୟ କରୁଥିଲି । ଆମ ରାଜ୍ୟରେ କେନ୍ଦ୍ରସରକାରଙ୍କ ସାହାଯ୍ୟପାଇ ବାଛୁରୀପାଳନ, କୁକୁଡ଼ା ଓ ଘୁଷୁରୀପାଳନ ଯୋଜନାମାନ ୧୯୭୭ରୁ କାର୍ଯ୍ୟକାରୀ ହେଲା । ସେଥିଲାଗି ବହୁଲୋକ ମିଶ୍ରିତପଶୁଖାଦ୍ୟର ପ୍ରସ୍ତୁତିକରଣ କାରଖାନା ବସାଇବାକୁ ବ୍ୟାଙ୍କରୁ ଋଣ କଲେ । ସେମାନଙ୍କୁ ମୁଁ ସମସ୍ତପ୍ରକାର ବୈଷୟିକସାହାଯ୍ୟ ଦେଉଥିଲି । କାରଖାନା ବସାଇବାକୁ ସରକାରୀ ଅନୁମୋଦନ ତଥା ଲାଇସେନ୍ସ ମଧ୍ୟ ମୋ ସେକ୍ସନ୍‌ରୁ ଦିଆଯାଉଥିଲା । ସେଥିଲାଗି ଆବଶ୍ୟକୀୟ ନିୟମ ବା ଅଧିନିୟମ ସବୁ ପୂର୍ବରୁ ଓଡ଼ିଶା ବିଧାନସଭାରେ ଗୃହୀତ ହୋଇ ଆଇନ୍‌ରେ ପରିଣତ ହୋଇଥିଲା । ସେହି ଆଇନ୍‌କୁ ଠିକ୍ ଭାବେ ପାଳନ କରାଇବାର ସମ୍ପୂର୍ଣ୍ଣ ଦାୟିତ୍ୱ ପ୍ରାଣୀ ପୁଷ୍ଟିତତ୍ତ୍ୱ ବିଶାରଦ ଭାବେ ମୋ ଉପରେ ନ୍ୟସ୍ତ ଥିଲା । ମୁଁ ୧୯୭୭ ରୁ ୧୯୯୦ ପର୍ଯ୍ୟନ୍ତ ତେର ବର୍ଷଧରି ଏହି ଦାୟିତ୍ୱରେ ଥାଇ ଓଡ଼ିଶାରେ ଅଠେଇଶଟି ପଶୁଖାଦ୍ୟ ପ୍ରସ୍ତୁତି କରଣ କାରଖାନା ପାଇଁ ସମସ୍ତ ସାହାଯ୍ୟ ସହଯୋଗ କରି ସେ ସବୁର ସାମୟିକ ପରିଦର୍ଶନ ଓ ଯାଞ୍ଚ କରୁଥିଲି । ମୁଁ ଅବସର ଗ୍ରହଣ କରିବା ପରେ ଏହି କାର୍ଯ୍ୟ ବନ୍ଦ ହୋଇଗଲା ।

ପ୍ରାୟ ୧୯୮୪ ମସିହାବେଳକୁ ମୋର ସହପାଠୀ ବନ୍ଧୁ ଚୌଧୁରୀ ଗୌରହରି ମିଶ୍ର ନନ୍ଦନକାନନର ଡି.ଏଫ୍.ଓ. ଥିଲେ । ବହୁ ସଂଖ୍ୟାରେ ହରିଣ, ସମ୍ବର ଓ କୁଟୁରା ଜାତିର ପଶୁଙ୍କର ମୃତ୍ୟୁ ହେବା ଦେଖି ସେ ମୋତେ ଡକାଇଲେ । ଦେଖିଲି, ସେମାନଙ୍କର ଖାଦ୍ୟାଭାବ ଜନିତ ମୃତ୍ୟୁ ହେଉଛି । ନନ୍ଦନକାନନକୁ ପଶୁପକ୍ଷୀଙ୍କ ଖାଦ୍ୟ କଣ୍ଟ୍ରାକ୍ଟରମାନଙ୍କ ଜରିଆରେ କିଣାଯାଏ । ଦେଖିଲି ସେମାନେ ପ୍ରଚୁର ଟଙ୍କା ଲାଭ କରି ନିକୃଷ୍ଟ ଖାଦ୍ୟ ଯୋଗାଉଛନ୍ତି । ତୃଣଭୋଜୀ ପ୍ରାଣୀଙ୍କ ପାଇଁ ମଧ୍ୟ ପେଟପୁରା ଖାଦ୍ୟ ଦିଆଯାଉନାହିଁ । ଗୌରହରି ଓ ମୁଁ ଏହାର ପ୍ରତିକାର ପାଇଁ ବ୍ୟବସ୍ଥା କଲୁ । ନନ୍ଦନକାନନରେ ବହୁତ ଜମିକୁ ପମ୍ପ୍ ଦ୍ୱାରା ପାଣି ଉଠାଇ ଘାସଚାଷ କରାଗଲା । ଆମ ବିଭାଗରୁ ଘାସଚାରା ସବୁ ପଠାଇଲି । ଲାଭଖୋର କଣ୍ଟ୍ରାକ୍ଟରଙ୍କୁ ପ୍ରଶ୍ରୟ ନଦେଇ ଆଗ୍ରୋଇଣ୍ଡଷ୍ଟ୍ରି କର୍ପୋରେସନ

ଜରିଆରେ ମୋ ନିର୍ଦ୍ଦେଶରେ ଦାନା ତିଆରି ହେଲା । ସେସବୁ ଦାନାର ଖାଦ୍ୟଗୁଣ ଝାରପଡ଼ାସ୍ଥ ମୋ ପରୀକ୍ଷାଗାରରେ ପରୀକ୍ଷା କରାଯାଇ ଉତ୍ତମ ପଶୁଖାଦ୍ୟ କମ୍ ଖର୍ଚ୍ଚରେ ପ୍ରସ୍ତୁତ ହେଲା । ଫଳରେ ପଶୁମାନଙ୍କ ସ୍ୱାସ୍ଥ୍ୟ ଖୁବ୍ ସୁନ୍ଦର ହେଲା ଓ ସେମାନଙ୍କ ବଂଶ ବୃଦ୍ଧି ହେଲା । ଏହାଦ୍ୱାରା ବହୁ କଣ୍ଟ୍ରାକ୍ଟର ଗୌରହରି ମିଶ୍ର ଓ ମୋ ବିରୁଦ୍ଧରେ ସରକାରୀ ସ୍ତରରେ ପ୍ରତିଶୋଧାତ୍ମକ କାର୍ଯ୍ୟ କରି ବିଫଳ ହେଲେ ।

୧୯୮୧ ମସିହାରେ ଜଣେ ଆଇ.ଏ.ଏସ୍. ଅଫିସର ଶ୍ରୀ ଭ୍ରମରବର ଜେନା ଆମ ବିଭାଗର ନିର୍ଦ୍ଦେଶକ ଦାୟିତ୍ୱ ଗ୍ରହଣ କଲେ । ବିଭାଗୀୟ କାର୍ଯ୍ୟ ସହିତ ଆମ ବିଭାଗର ଅନ୍ୟ ଏକ ଶାଖା ଭାବେ ୧୯୩୭ ମସିହାରୁ ଥିବା ଉତ୍କଳଗୋମଙ୍ଗଳ ସମିତିର ସଂସ୍କାରକରାଇ ତାକୁ ଏକ କର୍ପୋରେସନ୍ ପରି ଗଢ଼ିତୋଳିବାର ଲକ୍ଷ୍ୟ ନେଇ ସେ କାର୍ଯ୍ୟ କଲେ । ଉତ୍କଳ୍ ଗୋମଙ୍ଗଳ ସମିତି ଜରିଆରେ ଗୋପ୍ରଜନନ ଲାଗି ଗାଆଁ ଗହଳିରେ ଉନ୍ନତ ଷଣ୍ଢ ସବୁ ଯୋଗାଇ ଦିଆଯାଉଥିଲା । ଅଧିକରୁ ଅଧିକ ଷଣ୍ଢ ଯୋଗାଣ ଲାଗି ସେ ଦୁଇତିନି ଜାଗାରେ ଷଣ୍ଢପାଳନକେନ୍ଦ୍ର ଆରମ୍ଭ କରାଇ ବହୁ ଲୋକଙ୍କୁ ସେ ଦାୟିତ୍ୱରେ ରଖାଇଲେ, ସେସବୁ ଲୋକମାନେ ଦରମା ପାଇବାପାଇଁ କିପରି ଗୋମଙ୍ଗଳସମିତି ପକ୍ଷରୁ ଅଧିକଅର୍ଥ ଆୟ କରାଯାଇ ପାରିବ ସେ ବିଷୟରେ ମୋର ସହଯୋଗ ସେ ଚାହିଁଲେ । ଷଣ୍ଢମାନଙ୍କୁ ବାହାରୁ କିଣାଯାଇ ଦାନା ଖାଇବାକୁ ଦିଆଯାଉଥିଲା । ତେଣୁ ସମିତିର ନିଜସ୍ୱ ଦାନା ତିଆରି କାରଖାନା କଲେ ସେଥିରୁ ନିଜ ଫାର୍ମ ପାଇଁ ଦାନା ପାଇବା ସାଙ୍ଗକୁ ପଶୁପାଳନ ବିଭାଗର ଫାର୍ମମାନଙ୍କୁ ମଧ୍ୟ ଦାନା ବିକ୍ରୀକରି ଲାଭ କରିହେବ ବୋଲି ତାଙ୍କୁ ପରାମର୍ଶ ଦେଲି । ମହାନଦୀ ପଠାରେ ଗୋମଙ୍ଗଳ ସମିତିର ଷଣ୍ଢ ଫାର୍ମ ଥିଲା । ସେମାନଙ୍କପାଇଁ ପ୍ରାୟ ଦେଢ଼ଶହଏକର ଜମିରେ ଘାସ ଚାଷ କରାଯାଉଥିଲା । ସେଇଠି ଦାନା କାରଖାନା ତିଆରି ହେଲା । ପ୍ରାୟେ ବର୍ଷକଭିତରେ ଏଥିରୁ ଭଲ ଲାଭହେଲା । ସେହିଲାଭରୁ ଗୋମଙ୍ଗଳସମିତିର କର୍ମଚାରୀମାନେ ଦରମା ପାଇବା ଖର୍ଚ୍ଚଉଠିବାର ବ୍ୟବସ୍ଥାହେଲା ।

ଓଡ଼ିଶାର ଜଣେ ପ୍ରଭାବଶାଳୀ ମନ୍ତ୍ରୀ ସେତେବେଳେ ଉତ୍କଳ ଗୋମଙ୍ଗଳ ସମିତିର ଅଧ୍ୟକ୍ଷ ଥିଲେ, ମହାନଦୀ ପଠାରେ ଥିବା ଏହି ଛୋଟ ଦାନା ମିଶ୍ରଣ କେନ୍ଦ୍ରର ଲାଭ ଦେଖି ସେ ଗୋଟିଏ ବଡ଼ ଗୋଖାଦ୍ୟ କାରଖାନା ବସାଇବାକୁ ପ୍ରସ୍ତାବ ଦେଲେ । ସେତେବେଳକୁ ମୁଁ ଚିପିଲିମାରେ ଯୁଗ୍ମ ନିର୍ଦ୍ଦେଶକ ଥିଲି । ପାଞ୍ଚ ଏକର ଜାଗା ଚିହ୍ନିତ କରାଗଲା । ଏହି କାରଖାନା ପାଇଁ ଦୁଇ କୋଟି ଟଙ୍କାର ପୁଞ୍ଜି ଆବଶ୍ୟକ ହେଲା । ଏହି ମନ୍ତ୍ରୀ ମହୋଦୟ ସେତେବେଳେ ଉପମୁଖ୍ୟମନ୍ତ୍ରୀ ଭାବେ ବହୁ କ୍ଷମତାର ଅଧିକାରୀ ଥିଲେ । ସରକାରୀ

ସୂତ୍ରରୁ ଏଥିଲାଗି କୋଟିଏ ଟଙ୍କା ଅନୁଦାନ ମିଳିଲା ଓ ଆଉ କୋଟିଏ ଟଙ୍କା ଭାରତୀୟ ଷ୍ଟେଟବ୍ୟାଙ୍କରୁ ଋଣ କରାଗଲା । ହେଲେ ମୁଁ ସେତେବେଳେ ଭାବିପାରି ନଥିଲି ଯେ ଏଥିଲାଗି ଦିନେ ମୋତେ ଫସାଇ ଦିଆଯିବ ଓ କୌଣସି ଦୋଷ ନଥାଇ ମୋତେ ସର୍ବସାଧାରଣରେ ନିନ୍ଦିତ କଲାଭଳି ପଦକ୍ଷେପ ନିଆଯିବ ।

ମନ୍ତ୍ରୀ ମହୋଦୟଙ୍କର ଜଣାଶୁଣା କେତେଜଣ ଯୁବକ "ଇନ୍‌କନ୍" ନାମରେ ଗୋଟିଏ କମ୍ପାନୀ ଗଠନ କରି ଏହି କାରଖାନା ବସାଇବାର ଦାୟିତ୍ୱ ନେଲେ । ସେମାନେ ଦେଶର ବିଭିନ୍ନ ସ୍ଥାନରୁ ଯେଉଁସବୁ ଯନ୍ତ୍ରପାତି ମଗାଇ କାରଖାନା ଗଢ଼ିଲେ, ସେସବୁ ଠିକ୍ ଭାବେ କାମକଲା ନାହିଁ । ଗୋଟିଏ ଦିନ ଗୋଖାଦ୍ୟ ତିଆରି ହେଲେ ତା ପରଦିନ କାରଖାନା ଚାଲିଲା ନାହିଁ । ଏପରିକି ଦଶ ପନ୍ଦରଦିନ ବ୍ୟବଧାନରେ କାରଖାନା ଥରେ ମାତ୍ର କାମକରି ପୁଣି ବନ୍ଦ ହୋଇଗଲା । ସେଠାରେ କାମ କରୁଥିବା ଲୋକମାନେ ମଧ୍ୟ ବିନାକାମରେ ବସି ରହିବାକୁ ଉଚିତ ମଣନ୍ତି ନାହିଁ । ହେଲେ, କମ୍ପାନୀ କରିଥିବା ଯୁବକମାନେ ତାଙ୍କର ପ୍ରାପ୍ୟ ଉଠାଇ ନେଉଥାନ୍ତି ।

୧୯୯୪ ମସିହା ଫେବୃୟାରୀ ମାସରେ ମୁଁ ନିର୍ଦ୍ଦେଶକ ଦାୟିତ୍ୱରେ ରହିବା ପରେ ଗୋମଙ୍ଗଳ ସମିତିର ଅବୈତନିକ ସମ୍ପାଦକ ଭାବେ କାର୍ଯ୍ୟ କଲି । ଇନ୍‌କନ୍ କମ୍ପାନୀର ବାକିଆ ଟଙ୍କା ପଇଠ କରିବାକୁ ମୋ ପାଖରେ ନଥି ପେଶ୍ ହେଲା । ମୋ ପୂର୍ବରୁ ଥିବା ଆଇ.ଏ.ଏସ୍. ନିର୍ଦ୍ଦେଶକମାନେ ଚିପିଲିମା ଦାନା କାରଖାନା ବିଷୟରେ କିଛି ନ ଜାଣି ରାଜନୈତିକ ଚାପରେ ଇନ୍‌କନ୍ କମ୍ପାନୀଙ୍କ ସବୁ ଦେୟ ଦେଇ ସାରିଥିଲେ । କେବଳ ତାଙ୍କର ସିକ୍ୟୁରିଟି ଜମା ଟଙ୍କା ପାଇବାର ଥିଲା । ସେତକ ଦେଇଦେବାକୁ ମୋ ପାଖରେ ନଥି ପେଶ୍ ହେବା ମାତ୍ରେ ସେହି କାରଖାନା ଚାଲିବା ବିଷୟରେ ମୁଁ ପ୍ରଶ୍ନ କଲି । ଜାଣିବାକୁ ପାଇଲି ଯେ କାରଖାନାଟି ବନ୍ଦ ହୋଇ ପଡ଼ିରହିଛି । ତେଣୁ ମୁଁ ନଥିରେ ଲେଖିଦେଲି ଯେ, ଇନ୍‌କନ୍ କମ୍ପାନୀ ଏହି କାରଖାନାକୁ କାର୍ଯ୍ୟକ୍ଷମ କରି ଦୁଇ ମାସ ଚଳାଇ ସାରିଲେ ମୁଁ ସେମାନଙ୍କ ସିକ୍ୟୁରିଟି ଟଙ୍କା ଦେଇଦେବି । ସେମାନେ ଯାଇ ମୋ ବିରୁଦ୍ଧରେ ଗୋମଙ୍ଗଳ ସମିତି ଅଧ୍ୟକ୍ଷ ମନ୍ତ୍ରୀ ମହୋଦୟଙ୍କୁ କହିଲେ । ତେଣୁ ମୋ ଉପରେ ଭୀଷଣ ବିରକ୍ତ ହୋଇ ମନ୍ତ୍ରୀ ମହୋଦୟ ତତ୍କାଳୀନ ପଶୁପାଳନ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତାଙ୍କୁ ଡକାଇ ମୋତେ ନିର୍ଦ୍ଦେଶକ ପଦବୀରୁ ଅପସାରିତ କରି ଜଣେ ଆଇ.ଏ.ଏସ୍ ଅଫିସରଙ୍କୁ ଦାୟିତ୍ୱ ଦେବାକୁ କହିଲେ । ମାତ୍ର ଶ୍ରୀ ଦେବତା କହିଲେ, ନିର୍ଦ୍ଦେଶକ ଭାବେ ଗୁରୁ ମହାନ୍ତି କନ୍‌ଫର୍ମ (ସିଦ୍ଧ) ହୋଇ ସାରିଛନ୍ତି । ତାଙ୍କୁ ଏହି ପଦବୀରୁ ଖସାଇ ହେବ ନାହିଁ ।

ଆମ ମନ୍ତ୍ରୀ ପ୍ରକାଶ ବାବୁ ମୋତେ ଡକାଇ ସବୁକଥା କହିଲେ । କହିଲି, ସେଇଥି ପାଇଁ ପଶୁପାଳନ ବିଭାଗଟା ଆଇ.ଏ.ଏସ୍ ଅଫିସରମାନଙ୍କ ହାତରେ ଥିଲା । ସେମାନେ ରାଜନୈତିକ ଚାପ ଅନୁସାରେ କାର୍ଯ୍ୟ କରିବେ । କାରଣ ସେମାନଙ୍କର ସ୍ୱପ୍ନିଳ ଭବିଷ୍ୟତ ଅଛି । ନିଜର ସ୍ୱାର୍ଥ ଦୃଷ୍ଟିରୁ କ୍ଷମତାଶାଳୀ ରାଜନିତୀଜ୍ଞମାନଙ୍କ ଇଙ୍ଗିତରେ ସେମାନେ କାମ କରିବାକୁ ବାଧ୍ୟ । ଏହି ଗୋଷ୍ଠୀ ଉପରେ ଭରସା କରି କ୍ଷମତାଶାଳୀ ରାଜନୀତିଜ୍ଞମାନେ ସେମାନଙ୍କର ସ୍ୱାର୍ଥ ସାଧନ କରି ଚାଲିଛନ୍ତି । ଦୁର୍ନୀତିର ଚେର ମାଡ଼ି ମାଡ଼ି ଚାଲିଛି । ମାତ୍ର ମୋ ପରି ଜଣେ ବିଭାଗୀୟ ନିର୍ଦ୍ଦେଶକ ଏପରି କରିବାକୁ ସାହସ କରିବ ନାହିଁ । ସିକ୍ୟୁରିଟି ଟଙ୍କା ଦେଇସାରିବା ପରେ ଯଦି କାରଖାନା ବନ୍ଦ ହୋଇ ପଡ଼ିରହେ ତେବେ କିପରି ଭାବେ ମୁଁ ଟଙ୍କା ଦେଇଦେଲି, ସେଥିଲାଗି ମୋତେ କୈଫିୟତ୍ ଦେବାକୁ ପଡ଼ିବ ଓ ପରବର୍ତ୍ତୀ ସମୟରେ ମୁଁ ଜଣେ ଦୁର୍ନୀତିଗ୍ରସ୍ତ ଅଫିସର ଭାବେ ନିନ୍ଦିତ ହେବି । ସବୁବେଳେ ଉଚିତ କଥା କହିବା ଫଳରେ ମୁଁ ଏପର୍ଯ୍ୟନ୍ତ କୌଣସି ଉପରିସ୍ଥ ଅଫିସରଙ୍କ ନିଜର ହୋଇ ପାରିନାହିଁ । କାରଣ ଜନସାଧାରଣଙ୍କ ସ୍ୱାର୍ଥ ସହିତ ବିଭାଗୀୟ ସ୍ୱାର୍ଥପ୍ରତି ମୁଁ ସର୍ବଦା ଧ୍ୟାନ ଦେଇ ଆସିଛି । ଆପଣ ମୋତେ ଏ ଚାକିରୀରୁ ଅବ୍ୟାହତି ଦେଇପାରନ୍ତି । ମୋ ଦ୍ୱାରା ଅନ୍ୟାୟ କାର୍ଯ୍ୟ ହୋଇ ପାରିବ ନାହିଁ । ପ୍ରକାଶ ବାବୁ ହସିଲେ । କହିଲେ ଆପଣଙ୍କ ପ୍ରତି ମୋର ସଦିଚ୍ଛା ରହିଛି । ଆପଣଙ୍କ ଦ୍ୱାରା ବିଭାଗୀୟ କାର୍ଯ୍ୟ ଭଲରେ ଚାଲିଛି, ସେତିକିରେ ମୁଁ ଖୁସି ।

ମୋ ବିଭାଗୀୟ ମନ୍ତ୍ରୀଙ୍କର ସଦିଚ୍ଛା ପାଇ ମୁଁ ଆତ୍ମସନ୍ତୋଷ ଲାଭକଲି ସତ, ମାତ ଜଣେ କ୍ଷମତାଶାଳୀ ବ୍ୟକ୍ତିଙ୍କ ନିର୍ଦ୍ଦେଶକୁ ବେଖାତିର କରି ନୀତି ନିୟମ ଜଗି କାର୍ଯ୍ୟ କରିବାର ଫଳ ମୋ ପାଇଁ ଭବିଷ୍ୟତରେ ଯେ କେତେ ବିଷମୟ ହେବ ସେ ବିଷୟରେ ମୋର ସାମାନ୍ୟତମ ଧାରଣା ନଥିଲା । ଚାକିରୀରୁ ଅବସର ଗ୍ରହଣ କରିବାର ଦୁଇବର୍ଷପରେ ମଧ୍ୟ ଇନ୍‌କନ୍ କମ୍ପାନୀଙ୍କ ବିଲ୍ ପାଶ୍ ନ କରିବାର ଦଣ୍ଡ ମୋ ପାଇଁ ଗଚ୍ଛିତ ରହିଥିଲା । ଗାଆଁ ଓ ଚିପିଲିମାରେ ମନ୍ଦିର ମପାଯାଇ ମୋର ଆୟ ବହିର୍ଭୁତ ସମ୍ପତ୍ତି ହିସାବ ହେଲା । ମନ୍ତ୍ରୀ ମହୋଦୟ ମୋ ବିରୁଦ୍ଧରେ ଭିଜିଲାନ୍ସ ମକଦ୍ଦମା କରିବାକୁ ବ୍ୟବସ୍ଥା କରିଥିଲେ । ୧୯୯୮ ମସିହା ମେ ମାସ ଶେଷ ସପ୍ତାହରେ ମୋ ବିରୁଦ୍ଧରେ ଭିଜିଲାନ୍ସ ମକଦ୍ଦମା ହେଲା । ୨୦୧୫ ଅଗଷ୍ଟ ପ୍ରଥମ ସପ୍ତାହରେ ମୁଁ ନିର୍ଦ୍ଦୋଷ ବୋଲି କୋର୍ଟ ରାୟ ଦେଲେ ।

ମୁଁ ନିର୍ଦ୍ଦେଶକ ରହିବାର ଦୁଇବର୍ଷ ଆଠମାସ ଭିତରେ ବିଭାଗୀୟ ଯୋଜନାବ୍ୟୟ ତିନିଗୁଣ ବଢ଼ିଯାଇଥିଲା । ଓଡ଼ିଶା ସରକାର ଏବାବଦ ଆଠକୋଟି ପଚାଶ ଲକ୍ଷ ଟଙ୍କା

ଦେଉଥିଲେ ମଧ୍ୟ ଭାରତ ସରକାରଙ୍କ ଠାରୁ ବର୍ଷକୁ ସତର କୋଟି ଟଙ୍କା ଅଧିକ ମିଳୁଥିଲା । ମୁଁ ନିର୍ଦ୍ଦେଶକ ଭାବେ ଯୋଗ ଦେଲା ବେଳକୁ ବିଭାଗୀୟ ଅଣଯୋଜନା ବ୍ୟୟ ବାବଦ ଯୋଜନା ଓ ସମନ୍ୱୟ ବିଭାଗରୁ ବର୍ଷକୁ ତେତିଶକୋଟି ଟଙ୍କା ମିଳୁଥିଲା । ପଶୁପାଳନ ବିଭାଗ ପରି ଏକ ବଡ଼ ବିଭାଗ ପାଇଁ ଏତିକି ଟଙ୍କା କେବଳ ଦରମା ବାବଦ ଅଣ୍ଟୁ ନଥିଲା । ତେଣୁ ଏହି ପରିମାଣ ବଢ଼ାଇବା ଲାଗି ମୁଁ ନିର୍ଦ୍ଦେଶାଳୟର କେତେଜଣ କରିତ୍କର୍ମା କର୍ମଚାରୀଙ୍କୁ ସଚିବାଳୟକୁ ପଠାଇ ଚେଷ୍ଟା ଚଳାଇଲି । ଟଙ୍କା ବାଣ୍ଟୁଥିବା କର୍ମଚାରୀମାନଙ୍କୁ ପ୍ରଭାବିତ କରି ପ୍ରତିବର୍ଷ ଆମ ଅଣଯୋଜନା ବ୍ୟୟ ବାବଦ ପାଞ୍ଚକୋଟି କରି ବଜେଟ୍ ଅଟକଳ ବଢ଼ାଇ ତିନିବର୍ଷ ଭିତରେ ପନ୍ଦର କୋଟି ଟଙ୍କା ଅଧିକ ମିଳିବାର ବ୍ୟବସ୍ଥା କରାଇ ପାରିଲି । ୧୯୯୬ ମସିହା ଅପ୍ରେଲ ପହିଲା ସୁଦ୍ଧା ଏହି ପରିମାଣର ୪୮ କୋଟି ଟଙ୍କା ହୋଇପାରିଥିଲା ।

ଯୋଜନା ଓ ଅଣଯୋଜନା ଅଟକଳ ବଢ଼ିବା ସହିତ ବିଭାଗୀୟ କାର୍ଯ୍ୟ ମଧ୍ୟ ଦୁଇଗୁଣ ବଢ଼ିଗଲା । ଏତେ କାମ କରିବାକୁ ଲୋକ ନଥିଲେ । ଉପଯୁକ୍ତ ବୈଷୟିକ ଜ୍ଞାନ ସମ୍ପନ୍ନ କର୍ମଚାରୀ ନ ହେଲେ ସେସବୁ କାର୍ଯ୍ୟ ହୋଇ ନ ପାରିବାର ଭୟ ଥିଲା । ଫଳରେ ଭାରତ ସରକାରଙ୍କ ଟଙ୍କା ଖର୍ଚ୍ଚ ହୋଇ ନପାରି ଫେରିଯିବାର ଅଶଙ୍କା ମୋ ପକ୍ଷରେ ଅପମାନ ଜନକ ଲାଗୁଥିଲା । କାରଣ ଦିଲ୍ଲୀରେ ଭାରତୀୟ କୃଷି ଗବେଷଣା ପରିଷଦର ପଶୁପାଳନ ଶାଖାରୁ ମୁଁ ଓଡ଼ିଶା ପାଇଁ ବହୁତ ଟଙ୍କା ଆଣିଥିଲି । ଜଣେ ବୈଷୟିକ ନିର୍ଦ୍ଦେଶକର ପାରଗତା ଉପରେ ଭରସାରଖି ଦିଲ୍ଲୀସ୍ଥ କେନ୍ଦ୍ରୀୟ ପଶୁପାଳନ ବିଶେଷଜ୍ଞମାନେ ଟଙ୍କା ମଞ୍ଜୁର କରିଥିଲେ । ତେଣୁ ବିଭାଗରୁ ଅବସର ଗ୍ରହଣ କରିଥିବା ଅଭିଜ୍ଞ ବୈଷୟିକ ବିଶେଷଜ୍ଞମାନଙ୍କୁ ଡକାଇ ମାସିକ ଭତ୍ତାଦେଇ ବିଭିନ୍ନ କାର୍ଯ୍ୟରେ ନିୟୋଜିତ କରାଇଲି । ବିଭିନ୍ନ ଜିଲ୍ଲା ଓ ଉପଖଣ୍ଡମାନଙ୍କରେ କାର୍ଯ୍ୟଦକ୍ଷତା ବଢ଼ାଇବା ପାଇଁ ବିଭିନ୍ନ ଯୋଜନାରେ ଭାରତ ସରକାରଙ୍କ ଅର୍ଥ ବିନିଯୋଗ କରି ଦୁଇଶହ ନୂଆ ଗାଡ଼ି କିଣାଇବା ସହିତ ମରାମତି ନ ହୋଇ ବିଭିନ୍ନ ସ୍ଥାନରେ ପଡ଼ିରହିଥିବା ଦେଢ଼ଶହ ଜିପ୍ ମରାମତି କରି କାର୍ଯ୍ୟରେ ଲଗାଇଲି । ପ୍ରତି ମାସରେ ଜିଲା ଅଧିକାରୀମାନଙ୍କୁ ଡକାଇ କାମ ବରାଦ କରିବା ପରେ ସପ୍ତାହରେ ଦୁଇଦିନ ସେମାନଙ୍କୁ ଫୋନ୍ କରି କାର୍ଯ୍ୟର ସାଫଲ୍ୟ ବିଷୟରେ ବୁଝୁଥିଲି । କୌଣସି ଅସୁବିଧା ହେଲେ ସାଙ୍ଗେ ସାଙ୍ଗେ ତାର ପ୍ରତିକାର ବ୍ୟବସ୍ଥା କରାଯାଉଥିଲା ।

ଆମ ମନ୍ତ୍ରୀ ମହୋଦୟ ମୋତେ ଡାକି କହିଲେ; ଓଡ଼ିଶାର ସମସ୍ତ ନିର୍ବାଚନ ମଣ୍ଡଳୀରେ ପଶୁସହାୟକ କେନ୍ଦ୍ର ଓ ନୂଆ ଡାକ୍ତରଖାନା ଖୋଲିବାକୁ ଦାବୀ ହେଉଛି । ମାତ୍ର ବିଭାଗୀୟ ସଚିବ ମୋ ପ୍ରସ୍ତାବରେ ରାଜି ହେଉ ନାହାନ୍ତି । କାରଣ ପ୍ରତି ପଶୁଚିକିତ୍ସାଳୟ ପାଇଁ

ଡାକ୍ତର, ସହାୟକ, ପିଅନ, ଚୌକିଦାର ରଖାଯିବା ସାଙ୍ଗକୁ ପ୍ରତି ପଶୁସହାୟକ କେନ୍ଦ୍ର ପାଇଁ ଜଣେ ପଶୁସହାୟକ ଓ ଜଣେ ପିଅନର ଆବଶ୍ୟକତା ଅଛି । ଅତିକମ୍‌ରେ ୩୦ଟି ନୂଆ ପଶୁ ଚିକିତ୍ସାଳୟ ଓ ତିନିଶହ ପଶୁସହାୟକ କେନ୍ଦ୍ରର ଆବଶ୍ୟକତା ଦୃଷ୍ଟିରୁ ୩୦ ଜଣ ପଶୁଚିକିତ୍ସକ, ୩୫୦ ଜଣ ପଶୁସହାୟକ ଓ ଚାରିଶହ ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ପଦବୀ ସୃଷ୍ଟି ହେବା ଆବଶ୍ୟକ । ଏତକ ନହେଲେ ସରକାରୀ ମଞ୍ଜୁରୀ ମିଳିପାରିବ ନାହିଁ । ଏଥିପାଇଁ ଅର୍ଥ ବିଭାଗ ଆଦୌ ରାଜି ହେବେ ନାହିଁ । ତେଣୁ ବିଭାଗୀୟ ସଚିବଙ୍କର ଏବିଷୟରେ ସମ୍ମତି ସମ୍ଭବ ନୁହେଁ । କେବଳ ଆପଣଙ୍କ ଜରିଆରେ ଯାହାକିଛି ସମ୍ଭବ ହୋଇପାରେ । କହିଲି, ଯଦି ବିଭାଗୀୟ ସଚିବ ଆପଣଙ୍କ କଥାରେ ରାଜି ହେଉ ନାହାନ୍ତି ତେବେ ମୋ ଦ୍ୱାରା କ'ଣ ହୋଇପାରିବ ? ମନ୍ତ୍ରୀ କହିଲେ ସରକାରୀ ମଞ୍ଜୁରୀ ପାଇଁ ବିଭିନ୍ନ ବିଭାଗର ସମର୍ଥନ ମିଳିବା ଅସମ୍ଭବ । ତେଣୁ ବିଭାଗୀୟ ସଚିବ ବା ମନ୍ତ୍ରୀ ଏ ଦିଗରେ ପଦକ୍ଷେପ ନେଇ ପାରିବେ ନାହିଁ । ଆପଣ ନିର୍ଦ୍ଦେଶକ ଭାବେ ଯାହା କରିପାରିବେ ସେତିକି ସମ୍ଭବ ହେବ । ତେଣୁ ଏ ଦିଗରେ ମୋତେ ସାହାଯ୍ୟ କରିବାକୁ ଟିକେ ଚେଷ୍ଟା କରନ୍ତୁ । କହିଲି, କେନ୍ଦ୍ରୀୟ ଅନୁଦାନ ପାଇବା ପରେ କାର୍ଯ୍ୟ କରିବାକୁ ଲୋକ ଅଭାବ ହେବାରୁ ମୁଁ ଯେପରି ଚୁକ୍ତି ଭିତ୍ତିକ ନିଯୁକ୍ତି ଦେଇ ଲୋକ ରଖି କାମ ଚଳାଇଛି ସେହିଭଳି କିଛି ମାତ୍ରାରେ ଚେଷ୍ଟା କରିବି । ମାତ୍ର ଆପଣ ଯେତେ ଅନୁଷ୍ଠାନ ଖୋଲିବାକୁ ଚାହୁଁଛନ୍ତି ସେପରି କରିବା ସମ୍ଭବ ହୋଇ ପାରିବ ନାହିଁ । ସେ ଭାରି ଖୁସି ହୋଇ କହିଲେ; ପ୍ରଥମେ ମୋ ଗାଆଁରେ ଗୋଟିଏ ପଶୁଚିକିତ୍ସାଳୟ ଓ ମୋ ନିର୍ବାଚନ ମଣ୍ଡଳୀରେ ଦଶଟି ପଶୁସହାୟକ କେନ୍ଦ୍ର ଖୋଲାଇ ଦିଅନ୍ତୁ । କହିଲି ଆପଣଙ୍କ କାର୍ଯ୍ୟ ସାରି ମୋ ଗାଆଁ ଆଳିପିଙ୍ଗଳରେ ଗୋଟିଏ ପଶୁଚିକିତ୍ସାଳୟ ଆପଣଙ୍କ ହାତରେ ଉଦ୍‌ଘାଟନ କରାଇବା ମଧ୍ୟ ମୋର ଇଚ୍ଛା । ମନ୍ତ୍ରୀ ହସି ହସି କହିଲେ, ମୁଁ ଜାଣେ ଆପଣ ଆଦୌ ଛାଡ଼ିବେ ନାହିଁ । ତା ହେଲେ ପ୍ରଥମେ ଆଳିପିଙ୍ଗଳରେ ପଶୁଚିକିତ୍ସାଳୟ ଖୋଲାଯାଉ ।

ପ୍ରାୟ ମାସେ ଭିତରେ ଆଳିପିଙ୍ଗଳରେ ଥିବା ପଶୁସହାୟକ କେନ୍ଦ୍ରଟି ପଶୁଚିକିତ୍ସାଳୟ ଭାବେ ମନ୍ତ୍ରୀଙ୍କ ଦ୍ୱାରା ଉନ୍ମୋଚିତ ହେଲା । ଜଗତସିଂହପୁର ବିଧାୟକ ଶ୍ରୀ ବିଷ୍ଣୁଦାସଙ୍କ ଅନୁରୋଧରେ ପ୍ରାୟ ଦଶଟି ନୂଆ ପଶୁସହାୟକ କେନ୍ଦ୍ର ସେହି ଜିଲାରେ ଖୋଲାଗଲା । ମନ୍ତ୍ରୀଙ୍କ ବରଗଡ଼ ଜିଲାରେ ଦୁଇଟି ପଶୁ ଚିକିତ୍ସାଳୟ ଓ ପ୍ରାୟ ସାତ ଆଠଟି ପଶୁ ସହାୟକ କେନ୍ଦ୍ର ଖୋଲାଯିବା ପରେ ବିଭିନ୍ନ ଜିଲାର ବିଧୟକମାନେ ମନ୍ତ୍ରୀଙ୍କୁ ଘେରି ସେମାନଙ୍କ ଦାବୀ ଜଣାଇଲେ । ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ମନ୍ତ୍ରୀ ମହୋଦୟ ମୋତେ ଅନୁରୋଧ କରି କହିଲେ ଆପଣ ତ ଜନ୍ମଭୂମିର ସେବା କରିବାକୁ ଇଚ୍ଛା କରନ୍ତି । ଏ ସବୁ କରିବା

ଦ୍ୱାରା ପ୍ରକୃତ ସେବା ହୋଇ ପାରିବ । ମୁଁ ଅବସରନେବା ପୂର୍ବରୁ ସାରା ଓଡ଼ିଶାରେ ୨୫ଟି ନୂଆ ପଶୁ ଚିକିତ୍ସାଳୟ ଓ ୨୫୦ଟି ପଶୁସହାୟକ କେନ୍ଦ୍ର ଖୋଲାଇ ପାରିଥିଲି । ଜୀବେ ନିଷ୍ଠୁରତା ନିରୋଧ ସମିତି ପକ୍ଷରୁ କଟକ ସହରର ସତୀଚଉରା ରାସ୍ତାରେ ଇନ୍ଦିରାଗାନ୍ଧି କଲେଜ ପାଖାପାଖି ଏକ ଘର ଓ ହତା ଭଡ଼ାନେଇ ଗୋଟିଏ ପଶୁଚିକିତ୍ସାଳୟ ଖୋଲାଯାଇଥିଲା । ମୁଁ ଅବସର ନେବାର ପ୍ରାୟ ଦୁଇ ତିନି ବର୍ଷ ପରେ ଏହା ବନ୍ଦ ହୋଇଗଲା ।

## ଓଡ଼ିଶା ପଶୁ ଚିକିତ୍ସା ମହାବିଦ୍ୟାଳୟ ପାଇଁ କିଛି କାର୍ଯ୍ୟ ଓ ଅବସର ଗ୍ରହଣ

ପଶୁପାଳନ ବିଭାଗର ମୁଖ୍ୟ ସମସ୍ୟା ହେଉଛି ବୈଷୟିକ ବିଶେଷଜ୍ଞ ବା ଡାକ୍ତରମାନଙ୍କ ଅଭାବ । ୧୯୯୪ ମସିହା ପର୍ଯ୍ୟନ୍ତ ଓଡ଼ିଶାପଶୁ ଚିକିତ୍ସା ମହାବିଦ୍ୟାଳୟରେ ମାତ୍ର ୬୦ଟି ସିଟ୍ ଥିଲା । ତନ୍ମଧ୍ୟରୁ ୧୦ / ୧୫ ଟି ସିଟ୍ ବାହାର ରାଜ୍ୟ ଓ ବିଦେଶରୁ ଆସୁଥିବା ଛାତ୍ରଛାତ୍ରୀମାନଙ୍କ ପାଇଁ ସଂରକ୍ଷିତ ଥିଲା । ତେଣୁ ପ୍ରତିବର୍ଷ ମାତ୍ର ୪୦ / ୪୫ ଜଣ ଓଡ଼ିଆ ପଶୁଚିକିତ୍ସାବିତ୍ ଏହି କଲେଜରୁ ବାହାରୁ ଥିଲେ । ତନ୍ମଧ୍ୟରୁ ପ୍ରାୟ ଏକ ଚତୁର୍ଥାଂଶ ଲୋକ ଅଧିକ ଦରମା ପାଇ କେନ୍ଦ୍ରୀୟ ଚାକିରୀ ବା ଔଷଧ କମ୍ପାନୀମାନଙ୍କ ଦ୍ୱାରା ନିୟୋଜିତ ହେବାରୁ ବାକୀ ମାତ୍ର ୩୦ / ୩୫ ଜଣ ଓଡ଼ିଶା ସରକାରଙ୍କ ଅଧୀନରେ କାର୍ଯ୍ୟ କରିବାକୁ ମିଳୁଥିଲେ । ଫଳରେ ସବୁ ସମୟରେ ୧୦୦ ବା ୧୫୦ ବିଭାଗୀୟ ପଦବୀ ଖାଲି ରହୁଥିଲା ।

ଏହି ଅଭାବ ମେଣ୍ଟାଇବା ଲାଗି ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ଛାତ୍ର ସଂଖ୍ୟା ବଢ଼ାଇବା ଜରୁରୀ ହୋଇପଡ଼ିଥିଲା । ଠିକ୍ ସେତିକିବେଳେ ମୋର ସହପାଠୀ ବନ୍ଧୁ ଡକ୍ଟର ଖଗେଶ୍ୱର ପ୍ରଧାନ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର କୁଳପତି ଭାବେ ଯୋଗ ଦେଲେ । ତାଙ୍କୁ ହରିଆନାରୁ ଏଠିକି ଆଣିବା ପାଇଁ ତତ୍କାଳୀନ ପଶୁପାଳନ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଓ ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକଙ୍କୁ ମୁଁ ପ୍ରଭାବିତ କରିପାରିଥିଲି । ସେ ଆସିବା ପରେ ଆମ ଦୁହିଙ୍କର ପ୍ରଥମ କାର୍ଯ୍ୟ ହେଲା ପଶୁଚିକିତ୍ସା ମହାବିଦ୍ୟାଳୟର ସିଟ୍ ସଂଖ୍ୟା ୬୦ ରୁ ୮୦ କୁ ବୃଦ୍ଧି କରିବା । ସରକାରଙ୍କ ପକ୍ଷରୁ ପ୍ରସ୍ତାବ ପଠାଇ ଓ ୟୁ ଏ ଟି ପରିଚାଳନା ବୋର୍ଡ଼ରେ ତାହା ଗୃହୀତ କରାଇବା ପରେ କେନ୍ଦ୍ର ଭେଟେରିନାରି କାଉନ୍ସିଲ୍ରୁ ମଞ୍ଜୁରୀ

ଆଣିବା କଥା ବନ୍ଧୁ ଖଗେଶ୍ୱର ବାବୁଙ୍କ କାର୍ଯ୍ୟ ଥିଲା । କାରଣ ହରିଆନା କୃଷି ବିଶ୍ୱବିଦ୍ୟାଳୟର ଜଣେ ବରିଷ୍ଠ ଅଧ୍ୟାପକ ଭାବେ ଦିଲ୍ଲୀରେ ତାଙ୍କର ଭଲ ଲବି ଥିଲା । ତାଙ୍କ ଲାଗି ମୁଁ ଏହି କାର୍ଯ୍ୟରେ ସଫଳକାମ ହୋଇ ପାରିଥିଲି । ଫଳରେ ଆଜି ପଶୁଚିକିତ୍ସା କଲେଜରେ ୮୦ ଟି ସିଟ୍ ରହିଛି । ଓଡ଼ିଶାର ୮୦ ଜଣ ଛାତ୍ରଛାତ୍ରୀ ପ୍ରତିବର୍ଷ ଏହି କଲେଜରେ ନାମ ଲେଖାଇ ୪ ବର୍ଷ ପରେ ଖୁବ୍ ଭଲ ଦରମାରେ ନିଯୁକ୍ତ ହେବାର ସୁଯୋଗ ପାଉଛନ୍ତି ଏବଂ ଓଡ଼ିଶା ପଶୁପାଳନ ବିଭାଗ ପାଇଁ ମିଳୁଥିବା ଡାକ୍ତର ସଂଖ୍ୟା ପୂର୍ବାପେକ୍ଷା ଅଧିକ ହୋଇ ପାରୁଛି । ଆମ ଲୋକଙ୍କର ଗୋଟାଏ ଖଳପ୍ରକୃତି ହେଉଛି, ପଛରୁ ଗୋଡ଼ଟାଣିବା । ଯେ କୌଣସି ଲୋକହିତକର କାର୍ଯ୍ୟ କରିବାକୁ ବସିଲେ ଆମ ଓଡ଼ିଆ ଲୋକେ ତହିଁରୁ କିଛି ନା କିଛି ଦୋଷ ଦୁର୍ବଳତା ବାଛି ବିରୁଦ୍ଧାଚାରଣ କରନ୍ତି । ଏପରି ଲକ୍ଷଣ ତେଲୁଗୁ, ତାମିଲ, ବଙ୍ଗାଳି ବା ଗୁଜୁରାଟି ଲୋକଙ୍କ ଭିତରେ ପ୍ରାୟତଃ ଦେଖିବାକୁ ମିଳେନା । ଏତେକ କହିବାର କାରଣ ହେଉଛି, ପଶୁଚିକିତ୍ସା ମହାବିଦ୍ୟାଳୟରେ ସିଟ୍ ସଂଖ୍ୟା ବଢ଼ାଇ ଦେବାପରେ କେତେକ କୁଚକ୍ରୀ ଲୋକ ଭାରତୀୟ ପଶୁଚିକିତ୍ସା କାଉନ୍‌ସିଲ୍‌କୁ ଏହା ବିରୁଦ୍ଧରେ ଲେଖିଲେ । ଫଳରେ ଭେଟେରିନାରୀ କାଉନ୍‌ସିଲ୍ ପକ୍ଷରୁ ଏହାର ତଦନ୍ତ କରିବାକୁ ବିଶେଷଜ୍ଞଦଳ ଭୁବନେଶ୍ୱର ଆସିଲେ । ମାତ୍ର ବନ୍ଧୁ ଖଗେଶ୍ୱର ବାବୁଙ୍କର ଦିଲ୍ଲୀ ମହଲରେ ଥିବା ସୁନାମ ଯୋଗୁ ଏହି ବିଶେଷଜ୍ଞ ଦଳର ଲୋକେ ତାଙ୍କ ସହିତ ଆଲୋଚନା କରିବା ପରେ ଆଉ ବିରୋଧାତ୍ମକ ପଦକ୍ଷେପ ନେଇ ନଥିଲେ । ତଥାପି ପଶୁଚିକିତ୍ସା କଲେଜର କେତେଜଣ ଅଧ୍ୟାପକ ମୋତେ ଦୋଷ ଦେଇ କହିଲେ ଆପଣ ଚେଷ୍ଟା କରି ସିଟ୍ ସଂଖ୍ୟା ସିନା ବଢ଼ାଇଦେଲେ, ସେହି ଅନୁପାତରେ ଅଧ୍ୟାପକ ସଂଖ୍ୟା ନବଢ଼ାଇ ଆମ ଉପରେ ଅଧିକ ଚାପ ଦେଉଛନ୍ତି । କହିଲି, ନିଜ ମାତୃଭୂମିର ସେବା ପାଇଁ ତୁମେମାନେ ଏଥିଲାଗି ଯଦି ସାମାନ୍ୟ ସ୍ୱାର୍ଥତ୍ୟାଗ ନକରିବ ତାହେଲେ ଆମ ରାଜ୍ୟର ଗରିବ ଚାଷୀମାନଙ୍କର ଉନ୍ନତି କିପରି ହେବ ? ଗୃହପାଳିତ ପଶୁପକ୍ଷୀମାନଙ୍କର, ସେବା କରିବା ପାଇଁ ପଶୁ ଚିକିତ୍ସାବିତ୍ ନାହାନ୍ତି । ତୁମ୍ଭମାନଙ୍କର ସାହାଯ୍ୟ ସହଯୋଗ ପାଇଁ ଯଦି ଏହି ସମସ୍ୟାର କିଛିଟା ସମାଧାନ ହୋଇପାରେ, ତାହା ହିଁ ହେବ ତୁମର ଦେଶସେବା ।

ତେବେ, ପ୍ରଥମେ ପ୍ରଥମେ ଯାହା ଅସୁବିଧା ଜନକ ମନେ ହେଉଥିଲା ପରବର୍ତ୍ତୀ କାଳରେ ସେସବୁ ଅଭ୍ୟାସରେ ପଡ଼ିଗଲା ଓ କାର୍ଯ୍ୟ ଠିକ୍‌ଭାବେ ଚାଲିଲା । ଏବେ ସବୁ ଠିକ୍ ଚାଲିଛି ।

ଇତି ମଧ୍ୟରେ ମୋର ଅବସର ନେବା ସମୟ ପାଖେଇ ଆସିଲା । ବିଭାଗୀୟ ସଚିବ ଶ୍ରୀ ହିମାଂଶୁ ଶେଖର ସରକାର ମୁଖ୍ୟ ଶାସନ ସଚିବଙ୍କୁ ଭେଟି ମୋତେ ଆଉ ଏକବର୍ଷ ଚାକିରୀରେ ରହିବାକୁ ପ୍ରସ୍ତାବ ଆଗତ କଲେ । ମାତ୍ର ଏହାର ପ୍ରାୟ ତିନି ସପ୍ତାହ ପୂର୍ବରୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ତାଙ୍କ ମନ୍ତ୍ରୀମଣ୍ଡଳର କେତେଜଣ ସଦସ୍ୟଙ୍କ ସହିତ ବିଦେଶ ଭ୍ରମଣରେ ଯାଇଥିଲେ । ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ସୂଚନା ମିଳିଲା ଯେ ସଚିବ ଶ୍ରୀ ସରକାରଙ୍କ ପ୍ରସ୍ତାବ ଉପରେ ମୁଖ୍ୟମନ୍ତ୍ରୀ ଫେରିବା ପରେ ନିଷ୍ପତ୍ତି ନେବେ । ତେଣୁ ୧୯୯୬ ମସିହା ଅକ୍ଟୋବର ୩୧ ତାରିଖ ଦିନ ମୋର ଅବସର ନେବା କଥା । ବିଭାଗୀୟ ସଚିବଙ୍କୁ ଦୂରଭାଷରେ ପଚାରିବାରୁ ସେ କହିଲେ ତୁମେ ଟିକେ ଅପେକ୍ଷାକର । ବିଭାଗୀୟ ଯୁଗ୍ମ ସଚିବ ଶ୍ରୀ ବିନୟ ମିଶ୍ର ଉପରବେଳା ଯାଇ ତୁମରଠାରୁ ଦାୟିତ୍ୱ ନେବେ । ଆସନ୍ତାକାଲି ଠାରୁ ତୁମେ ସଚିବାଳୟକୁ ଆସ; ମୁଖ୍ୟମନ୍ତ୍ରୀ ବିଦେଶଗସ୍ତରୁ ଫେରିଲେ ତୁମର କାର୍ଯ୍ୟକାଳ ଏକବର୍ଷ ପାଇଁ ବଢ଼ାଇ ଦେବେ । ପୁଣି ତୁମେ ନିର୍ଦ୍ଦେଶକ ଭାବେ କାର୍ଯ୍ୟ ତୁଲାଇବ । ତାଙ୍କୁ କହିଲି; ଏ ବିଭାଗରେ ଖଟି ଖଟି ମୁଁ ହାଲିଆ ହେଲିଣି । ଆଉ ଅଧିକ ଖଟିବାକୁ ମୋର ଇଚ୍ଛା ନାହିଁ । ଏବେ ମୋତେ ଟିକେ ବିଶ୍ରାମ ଆବଶ୍ୟକ । ମୋତେ ଆଉ ସଚିବାଳୟକୁ ଯିବାକଥା କହନ୍ତୁ ନାହିଁ ।

ଯୁଗ୍ମ ସଚିବ ଶ୍ରୀ ବିନୟ ମିଶ୍ର ମୋ ଠାରୁ ଦାୟୀତ୍ୱ ନେବାକୁ ଆସି ଦେଖିଲେ, ମୁଁ କାଗଜପତ୍ର ସଜାଡ଼ିବାରେ ଲାଗିଛି । ଏଷ୍ଟାବ୍ଲିଶ୍‌ମେଣ୍ଟ ଅଫିସରମାନଙ୍କୁ ଡକାଇ ମୋ ଉତ୍ତରାଧିକାରୀଙ୍କ ପାଇଁ ସବୁତକ ବାକୀ କାମର ଏକ ତାଲିକା ପ୍ରସ୍ତୁତ କରି ଟାଇପ୍ କରିବାକୁ ପଠାଇଛି । ବିନୟ ବାବୁ କହିଲେ, କାହିଁକି ଏସବୁ ଆପଣ କରୁଛନ୍ତି । ଆପଣ ତ ପୁଣି ଏ ଦାୟିତ୍ୱରେ ରହିବେ । କେବଳ ଆଜି ଦାୟିତ୍ୱ ହସ୍ତାନ୍ତର କାଗଜଟା ଦସ୍ତଖତ୍ କରିଦେଲେ ଆପଣଙ୍କର ପେନ୍‌ସନ୍ କାଗଜପତ୍ର ତିଆରି କରିବାକୁ ସୁବିଧା ହେବ । ମୁଖ୍ୟମନ୍ତ୍ରୀ ଫେରିଲେ ପୁଣି ଗୋଟିଏ ବର୍ଷ ପାଇଁ ପୁନର୍ନିଯୁକ୍ତି ଆଦେଶ ପାଇ ଆପଣ ଏହି କାର୍ଯ୍ୟ ତୁଲାଇବେ । କାହିଁକି ଏସବୁ କରୁଛନ୍ତି ?

କହିଲି, ମୋ ଜୀବନର ଆଜି ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ଦିନେ ମୁଁ ସରକାରୀ ଚାକିରୀରେ ଯୋଗ ଦେଇଥିଲି । ଆଜି ସେହି ଚାକିରୀକାଳର ଶେଷ ଦିବସ । ଏଣିକି ଯାହା କିଛି ହେବ, ତାହା ଅସ୍ଥାୟୀ ବ୍ୟବସ୍ଥା । ଆଉ ଗୁଞ୍ଜାଗୁଞ୍ଜି ଚାକିରୀର ମାଦକତା ମୋ ପାଇଁ ନାହିଁ । ମୋ ଚାକିରୀ ଜୀବନରେ ଏ ବିଭାଗର ସମସ୍ତ ସମ୍ମାନାସ୍ପଦ ଦାୟିତ୍ୱରେ ରହିବାର ସୌଭାଗ୍ୟ ମୁଁ ହାସଲ କରିଛି । କାହାକୁ ଖୋସାମତ କରିବା ମୋ ଜାତକରେ ନାହିଁ । କର୍ତ୍ତବ୍ୟ ସମ୍ପାଦନରେ ବ୍ରତୀ ହୋଇ ମାତୃଭୂମି ଓଡ଼ିଶାର ସେବାରେ ନିଷ୍ଠାପର

ଭାବେ ନିଜକୁ ମୁଁ ନିୟୋଜିତ କରିଛି । କୌଣସି କ୍ଷେତ୍ରରେ ମୁଁ ହାର୍ ମାନି ନାହିଁ । ସେଥିଲାଗି ଓଡ଼ିଶା ବାହାରେ ମୋର ସୁନାମ ରହିଛି । ସେଇ ସୁନାମ ଯୋଗୁଁ କେନ୍ଦ୍ରସରକାରଙ୍କ ଠାରୁ ଏ ବିଭାଗ ପାଇଁ ମୁଁ ଅଜସ୍ର ଟଙ୍କା ଆଣି ପାରିଛି । ଯୁଦ୍ଧ କ୍ଷେତ୍ରରେ ଜଣେ ବିଜୟୀ ସୈନିକ ଭାବେ ମୋର ଆଜି କାର୍ଯ୍ୟକାଳ ସାରି ନିଜ କାର୍ଯ୍ୟରେ ମୁଁ ସନ୍ତୁଷ୍ଟ ହୋଇ ଖୁସି ମନରେ ଆପଣଙ୍କୁ ଦାୟିତ୍ୱ ହସ୍ତାନ୍ତର କରି କର୍ତ୍ତବ୍ୟ ଶେଷ କରିବି । କଥାରେ ଅଛି, ବିଜୟ ସ୍ଥଳରେ ଆଉ ଦଣ୍ଡେ ମାତ୍ର ରହିବା ଉଚିତ୍ ନୁହେଁ । ଆଜି ମୋ ଜୀବନର ଏକ ସୁଖମୟ ଦିବସ ।

ବିନୟବାବୁ ମୋ ମୁହଁକୁ ଚାହିଁ ଟିକେ ଗୁମ୍ ମାରିଗଲେ । ପଚାରିଲେ, ଯାହା ସବୁ ଆପଣ କହି ଯାଉଛନ୍ତି, ସେସବୁ କ'ଣ ଆପଣଙ୍କ ମନର କଥା ? ଦୀର୍ଘ ଛତିଶବର୍ଷ କାଳ ଆପଣ ଯେପରି ଆଦବ କାଇଦାରେ ସମୟ କାଟି ପାରିଛନ୍ତି ଆଜିଠାରୁ ତାହାର ପରିସମାପ୍ତି ଘଟିବା କ'ଣ ଆପଣଙ୍କ ପକ୍ଷରେ ସୁଖଦାୟକ ହେବ ?

କହିଲି, ଯାହା ଚିରସ୍ଥାୟୀ ନୁହେଁ ତାକୁ ପାଇବା କିମ୍ବା ଛାଡ଼ିବାରେ ମାଦକତା ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରେ ପାଞ୍ଚବର୍ଷ କଟାଇ ସେଠାକାର ବୁଦ୍ଧିଜୀବୀ ମହଲରେ ଜଣେ କୃତୀଛାତ୍ର ଓ ଗବେଷକ ଭାବେ ପରିଚିତ ହୋଇ ସାରି ନ୍ୟୁୟର୍କରେ ଚାକିରୀ ପାଇଲା ବେଳକୁ ମୋ ବାପା ବୋଉଙ୍କ ଆଦେଶମାନି ଯେତେବେଳେ ଘରକୁ ଫେରିଲି, ମୋର ବନ୍ଧୁମାନେ ମୋତେ ଠିକ୍ ଏଇଭଳି ପ୍ରଶ୍ନ କରୁଥିଲେ । ସେମାନେ ପଚାରୁଥିଲେ, ୧୯୬୪ ମସିହାରୁ ଓଡ଼ିଶାଛାଡ଼ି ଯୁକ୍ତରାଷ୍ଟ୍ର ଆମେରିକାରେ ସୁଖପ୍ରଦ ରହଣି ସହିତ ଏଠାକାର ଖାଦ୍ୟ ପାନୀୟ ଦାମିକା କାର ଚଢ଼ିବା ଓ ବେପରବାୟ ଜୀବନ ବିତାଇବାରେ ପୂର୍ଣ୍ଣଚ୍ଛେଦ ପକାଇ ତୁମେ ଭାରତକୁ ଯାଇ କ'ଣ ସୁଖରେ ରହିପାରିବ ? ଗତ ପାଞ୍ଚବର୍ଷ ଭିତରେ ତୁମର ଜୀବନ ଶୈଳୀ ଯେପରି ବଦଳିଯାଇଛି, ଏବେ ପୁଣି ପୁରୁଣାଢାଞ୍ଚାରେ ସେଇ କଚା ସଡ଼କ, ସାଇକେଲ୍ ଚଢ଼ା, ବସ୍‌ଯାତ୍ରା ବା ଖାଦ୍ୟ ପାନୀୟ ତୁମ ଦେହରେ ଯିବ ନାହିଁ । ଆମର ପୂର୍ଣ୍ଣ ବିଶ୍ୱାସ, ତୁମେ ମାସେ ଭିତରେ ଏଠିକି ଫେରି ଆସିବ । ମୁଁ ସେମାନଙ୍କୁ କହିଥିଲି, ଏ ଦେଶରେ ଉଚ୍ଚଶିକ୍ଷା ପାଇବା ପାଇଁ ମୁଁ ଆସିଥିଲି । ସେ କାମ ସରିଯାଇଛି । ଏବେ ମୋ ଦେଶକୁ ଫେରିଯିବା କଥା । ସେଇଆ ମୁଁ କରୁଛି । ବନ୍ଧୁଘରକୁ ଆସି ଭଲ ଖାଇବା, ପିଇବା, ରହିବା, ସ୍ନେହ, ସହାନୁଭୂତି ସବୁକିଛି ମିଳିଲେ ମଧ୍ୟ ନିଜ ଘର ଛାଡ଼ି ସେଇ ବନ୍ଧୁଘରେ ରହିଯିବାକୁ ଇଚ୍ଛା କରିବା ଯାହା, ଆତ୍ମ ସୁଖ ପାଇଁ ଜନ୍ମଭୂମି ଛାଡ଼ି ଅନ୍ୟ ଦେଶରେ ରହିଯିବା ମଧ୍ୟ ଠିକ୍ ସେଇଆ । ତୁମେମାନେ ଦେଖିବ, ଆଉ ମୁଁ ଏ ଦେଶକୁ ଫେରିବି ନାହିଁ । ତାହାହିଁ ହୋଇଛି । ୧୯୬୮ ମସିହା ଶେଷଭାଗରେ ମୋ ଦେଶକୁ ଫେରି ସେହି ଦିନଠାରୁ ବହୁ ଅସୁବିଧା ଭିତରେ ମୁଁ ଜୀବନ ସଂଗ୍ରାମ କରି ଚାଲିଛି ।

ଜନ୍ମ ହେଲେ ପୁଣି ମୃତ୍ୟୁ ବରଣ କରିବାକୁ ହେବ । ସେହିପରି ଚାକିରୀ କରିବା ପରେ ଦିନେ ଚାକିରୀରୁ ଅବସର ଗ୍ରହଣ କରିବାକୁ ପଡ଼ିବ । ଥରେ ଅବସର ନେଇ ସାରିବା ପରେ ପୁଣି ବର୍ଷେ ବା ଦୁଇବର୍ଷ ପାଇଁ ଚାକିରୀରେ ଗୁଞ୍ଜି ହୋଇଯିବାରେ ମାଦକତା ନଥାଏ । ଅବଶ୍ୟ ବହୁ ଲୋକ ଚାକିରୀ ଛାଡ଼ିବା ପାଇଁ ଦୁଃଖ କରନ୍ତି । ଅବସର କାଳୀନ ଜୀବନଚର୍ଯ୍ୟା ସେମାନଙ୍କ ଲାଗି ଦୁଃଖଦାୟକ ହୁଏ । କାରଣ ଜୀବନର ସତ୍ୟକୁ ସାମନା କରିବାର ସାହସ ସେମାନଙ୍କର ନଥାଏ । ତେବେ, ସେମାନେ ବୁଝିବା ଉଚିତ୍ ଯେ ଅବସର କାଳୀନ ଜୀବନଟା ହିଁ ସେମାନଙ୍କ ଲାଗି ଏକ ଆହ୍ୱାନ । ସେଇ ଆହ୍ୱାନର ସମ୍ମୁଖୀନ ହେବା ପାଇଁ ମୁଁ ପୂର୍ବରୁ ପ୍ରସ୍ତୁତ ହୋଇ ରହିଛି ।

ବିନୟବାବୁ କହିଲେ, ଆଜି ଆପଣ ବିଛଣାରୁ ଉଠିବା ସମୟରୁ ପୁଣି ରାତିରେ ବିଛଣାକୁ ଯିବା ପର୍ଯ୍ୟନ୍ତ ଯେପରି କାର୍ଯ୍ୟରତ ହୋଇ ରହିପାରୁଛନ୍ତି କାଲି ଠାରୁ କଅଣ କରିବେ ?

କହିଲି, ଏତେଗୁଡ଼ାଏ ଦିନ ଖଟି ଖଟି ମୁଁ କେବଳ ସରକାରୀ କାର୍ଯ୍ୟ ଚିନ୍ତାରେ ସମୟ ବିତାଉଛ । କାଲିଠାରୁ ବହୁ ଗଠନମୂଳକ ଚିନ୍ତା ମୋ ମୁଣ୍ଡକୁ ଆସିବ । ମୁଁ ଜଣେ ଲେଖକ । କାର୍ଯ୍ୟବ୍ୟସ୍ତତା ଭିତରେ ଅଳ୍ପକିଛି ପୁସ୍ତକ ରଚନା କରିଛି । ଅବସର ଗ୍ରହଣ କରିବା ପରେ ମୁଁ ଯଦି ଆଉ କିଛି ପୁସ୍ତକ ରଚନା କରିପାରେ, ହୁଏତ ସେଇତକ ମୋର ସ୍ମୃତିରକ୍ଷା କରିବାରେ ସାହାଯ୍ୟ କରିପାରେ । ଆଜିର ଏ ପଦପଦବୀ ସବୁ ସମ୍ପୂର୍ଣ୍ଣ ଅଳୀକ । ଏ ବିଭାଗ ପାଇଁ ଯାହା କିଛି ମୁଁ କରିପାରିଛି, ସେ ସବୁ କେତେଟା ବର୍ଷ ମଧ୍ୟରେ ବଦଳିଯିବ । ଏହି ନିର୍ଦ୍ଦେଶାଳୟର ସମସ୍ତ କାଗଜ ପତ୍ର ମୁଁ ଓଡ଼ିଆ କରି ଦେଇଛି । ମୋ ସହିତ କାର୍ଯ୍ୟ କରୁଥିବା ସବୁ କର୍ମଚାରୀଙ୍କୁ ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟ କରିବାକୁ ସମର୍ଥ କରାଇ ପାରିଛି । ହୁଏତ ଆପଣମାନେ ପୁଣି ପୂର୍ବପରି ସବୁତକ ନଥିପତ୍ର ଇଂରାଜୀ କରି ଦେଇ ପାରନ୍ତି । ମାତ୍ର ମୁଁ ଅବସର ସମୟରେ ଯେଉଁସବୁ ବହି ଲେଖିବି ସେଗୁଡ଼ିକ କେହି ବଦଳାଇ ପାରିବେ ନାହିଁ । ଏହାଛଡ଼ା ମୁଁ ଉତ୍କଳ ସମ୍ମିଳନୀରେ ଜଣେ ସଭ୍ୟ ହୋଇ ପାରିଛି । ଓଡ଼ିଆ ଜାତିର ଏହି ପବିତ୍ର ଅନୁଷ୍ଠାନ ପାଇଁ ମୋର ଯଥେଷ୍ଟ କର୍ତ୍ତବ୍ୟ ରହିଛି ।

ଅପରାହ୍ନ ୫ଟା ବାଜିବା ମାତ୍ରେ ମୁଁ ନିର୍ଦ୍ଦେଶାଳୟର ମୁଖ୍ୟ କର୍ମଚାରୀ ମାନଙ୍କୁ ଡାକି ସେମାନଙ୍କ ଠାରୁ ବିଦାୟ ନେଲି । ସେମାନେ କହିଲେ, ସାର୍ ! ଆଉ ମାତ୍ର କେତେଟା ଦିନ ପରେ ପୁଣି ଆପଣ ଫେରି ଆସି ଏଇ ଚୌକୀରେ ବସିବେ । ଆଜି ବିଦାୟ ମାଗୁଛନ୍ତି କାହାକୁ ? କହିଲି, ଆପଣମାନେ ମୋତେ ବିଦାୟ ଦିଅନ୍ତୁ କି ନଦିଅନ୍ତୁ ମୁଁ ଏଠାରୁ ବିଦାୟ ନେଇ ଯାଉଛି । ଆଜି ଠାରୁ ବିନୟ ବାବୁ ଅପାଣମାନଙ୍କର ନିର୍ଦ୍ଦେଶକ । ମୋର ଆଶା ଓ ବିଶ୍ୱାସ; ସେ ଠିକ୍ ଭାବେ ଏ ବିଭାଗକୁ ଚଳାଇ ପାରିବେ ।

ବିନୟ ବାବୁ ମୋ ସହିତ ଗାଡିରେ ବସିଲେ । କହିଲେ, ଆଜି ମୁଁ ଆପଣଙ୍କୁ ନେଇ ଘରେ ଛାଡି ଦେବି । ବାଟରେ ମୋତେ ପଚାରିଲେ, ଏବେ ଆପଣଙ୍କୁ କେମିତି ଲାଗୁଛି । କହିଲି, ସବୁଦିନେ ଯେପରି ଲାଗେ ଠିକ୍ ସେପରି ଲାଗୁଛି । ଶାରୀରିକ ବା ମାନସିକ କୌଣସି ଅସୁସ୍ଥତା ମୁଁ ଅନୁଭବ କରୁନାହିଁ । ଆପଣଙ୍କ ପରି ଜଣେ ବନ୍ଧୁର ସାନ୍ନିଧ୍ୟ ପାଇ ମୋତେ ବେଶ୍ ଖୁସି ଲାଗୁଛି । ଅବଶ୍ୟ ପରେ ଜାଣିଲି ଯେ ବିନୟବାବୁ ମୋର ଜଣେ ସହପାଠୀ ବନ୍ଧୁ । ରେଭେନ୍ସା କଲେଜରେ ମୁଁ ବିଜ୍ଞାନ ଛାତ୍ର ଥିଲା ବେଳେ ସେ ଥିଲେ କଳାଛାତ୍ର । ଏକାବର୍ଷ ଆମେ ମାଟ୍ରିକ୍ ପାଶ୍‌କରି ରେଭେନ୍ସା କଲେଜରେ ପଢା ଆରମ୍ଭ କରିଥିଲୁ । ମୁଁ ଆଇ.ଏସ୍.ସି ପାଶ୍ କରି ପଶୁଚିକିତ୍ସା ବିଜ୍ଞାନ ପଢିଲି । ମାତ୍ର ବିନୟ ବାବୁ ରେଭେନ୍ସାରେ ବି.ଏ. ପଢିବାକୁ ରହିଲେ । ତେବେ କଲେଜରେ ମୋର ତାଙ୍କ ସହିତ ପରିଚୟ ନ ଥିଲା । ପରେ ଜାଣିଲି ସେ ମୋର ସହପାଠୀ । ଘରେ ପହଁଞ୍ଚି ଆମେ ଦୁହେଁ ଏକାଠି ଚା'ପିଇଲା ବେଳେ ବିନୟ ବାବୁ କହିଲେ ମୁଁ ଏ ପର୍ଯ୍ୟନ୍ତ ଆପଣଙ୍କୁ ଲକ୍ଷ୍ୟ କରି ଦେଖୁଛି, ସତରେ ଆପଣଙ୍କ ମନରେ ଟିକେ ହେଲେ ଦୁଃଖ ନାହିଁ । ୨୨ବର୍ଷ ବୟସରୁ ଆପଣ ସରକାରୀ ଚାକିରୀ ଆରମ୍ଭ କରି ୫୮ ବର୍ଷ ବୟସ ପର୍ଯନ୍ତ ୩୬ ବର୍ଷ କାଳ ଯେଉଁ ବିଭାଗରେ ରହିଲେ ସେ ବିଭାଗ ଛାଡିଲା ବେଳେ ମନରେ ଅପଣଙ୍କର ସାମାନ୍ୟତମ ଦୁଃଖ ନହେବା ଆଶ୍ଚର୍ଯ୍ୟର କଥା । ସାଧାରଣ କିରାଣି ପିଅନ ଅଫିସର ବା ଉଚ୍ଚପଦସ୍ଥ କର୍ମଚାରୀମାନେ ଅବସର ନେବା ଦୁଃଖରେ କାର୍ଯ୍ୟାଳୟ ଛାଡନ୍ତି । ଆଜି ଆପଣ ଏ ବିଭାଗର ସର୍ବୋଚ୍ଚ ପଦବୀ ଛାଡୁଛନ୍ତି, ସେଥିଲାଗି ଆପଣଙ୍କ ମନରେ କୌଣସି ପରିବର୍ତ୍ତନ ନ ଦେଖି ଏହି ସତ୍ୟର ଏକ ବ୍ୟତିକ୍ରମ ମୁଁ ଲକ୍ଷ୍ୟ କରୁଛି ।

ବିନୟବାବୁ ଆମ ଘରେ ଘଣ୍ଟାଏ ପର୍ଯ୍ୟନ୍ତ ବସିଲେ । ମୋ ପରିବାରର ସମସ୍ତଙ୍କ ସହିତ ତାଙ୍କର ପରିଚୟ କରାଇଲି । ମୋ ସ୍ତ୍ରୀଙ୍କୁ କହିଲେ ଆପଣଙ୍କ ସ୍ୱାମୀ ଆଜି ଏତେବଡ ପଦବୀ ତ୍ୟାଗ କରି ଦୀର୍ଘ ୩୬ ବର୍ଷର ଚାକିରୀରୁ ଅବସର ଗ୍ରହଣ କଲେ, ମାତ୍ର ଏଥିଲାଗି ତାଙ୍କ ମନରେ ସାମାନ୍ୟତମ ଦୁଃଖ ନଥବା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ସ୍ନେହଲତା କହିଲେ ସେ ଏକ ଅଜବ ମଣିଷ । ତାଙ୍କୁ ୨୫ବର୍ଷ ବୟସ ହୋଇଥିବାବେଳେ ଆମ୍ଭମାନଙ୍କୁ ଛାଡି ସେ ଉଚ୍ଚଶିକ୍ଷା ପାଇବାକୁ ଆମେରିକା ଚାଲିଗଲେ । ସେତେବେଳେ ଆମେରିକା କଥା ଭାବି ହେଉନଥିଲା । ଆଜିପରି ଟେଲିଫୋନ୍‌ର ସୁବିଧା ଓଡିଶାରେ ନଥିଲା । ପାଞ୍ଚବର୍ଷ କାଳ କେମିତି କଟିବ ସେ କଥା ଭାବି ପାରୁନଥିଲୁ । ଦୁଃଖରେ ଆମେ ସମସ୍ତେ କାନ୍ଦୁ ଥିଲାବେଳେ ସେ ହସିହସି ଆମଠାରୁ ବିଦାୟ ନେଇଗଲେ । ପିତାମାତା ବନ୍ଧୁ ପରିଜନ ସ୍ତ୍ରୀ ପିଲାଙ୍କ ବିଚ୍ଛେଦ ଦୁଃଖ ତୁଳନାରେ ସରକାରୀ ଚାକିରୀ ମୋହ ତାଙ୍କ ପାଇଁ କିଛି ନୁହେଁ । ବିନୟବାବୁ ବିଦାୟନେଇ ଗଲାବେଳେ କହିଲେ, ଆଶା କରୁଛି, ଆପଣ

ଶୀଘ୍ର ନିର୍ଦ୍ଦେଶକ ପଦବୀ ଫେରି ପାଇବେ । କହିଲି, ଯଦି ତାହା ସମ୍ଭବ ହୁଏ ତେବେ ପୁଣି ବର୍ଷକ ପରେ ଆଜିପରି ଦିନ ଆସିବା ସୁନିଶ୍ଚିତ । ତେଣୁ ମୋର ଆଉ ସେ ସବୁ ପଦପଦବୀରେ ଲାଳସା ନାହିଁ । ଆପଣ ଯଥାଶୀଘ୍ର ମୋର ପେନ୍‌ସନ୍ କାଗଜପତ୍ର କରିଦେବାକୁ ଅନୁରୋଧ କରୁଛି ।

ଦୁଇ ତିନିଦିନ ଛାଡି ବିଭାଗୀୟ ସଚିବ ଶ୍ରୀ ସୁଧାଂଶୁ ଶେଖର ସରକାର ମୋତେ ଫୋନ୍ କରି ଡକାଇଲେ । ତାଙ୍କୁ ଯାଇ ଦେଖାକଲି । ସେ କହିଲେ, ଆପଣଙ୍କ ପୁର୍ନନିଯୁକ୍ତି ଫାଇଲଟା ମୁଖ୍ୟ ଶାସନ ସଚିବଙ୍କ ପାଖରେ ଅଛି । ଆପଣ ଯାଇ ତାଙ୍କୁ ଦେଖା କରନ୍ତୁ । ଏ ପର୍ଯ୍ୟନ୍ତ ଅନ୍ୟ କୌଣସି ବ୍ୟକ୍ତିଙ୍କ ନାମ ଏଥିଲାଗି ଉଠିନାହିଁ । କହିଲି, ନିର୍ଦ୍ଦେଶକ ଭାବେ ବହୁ ପରିଶ୍ରମ କରି ଯାହା ମୁଁ କରିଛି ସେସବୁ ଯେ ଦୀର୍ଘକାଳ ସ୍ଥାୟୀ ହୋଇ ରହିବ, ତାର କିଛି ସ୍ଥିରତା ନାହିଁ । ଉତ୍ତରାଧିକାରୀମାନେ ସେମାନଙ୍କ ମରଜି ଅନୁସାରେ ଯେପରି ଚାହିଁବେ ସବୁକିଛି ବଦଳାଇ ଦେବେ । ତେଣୁ ଆଉ ବର୍ଷେ ବା ଦୁଇ ବର୍ଷ ଅଧିକ ଖଟି ଏ ବିଭାଗ ପାଇଁ ଯେ କିଛି କରି ହେବ, ସେ ବିଶ୍ୱାସ ମୋର ନାହିଁ । ବିଭାଗୀୟ କର୍ମଚାରୀ ବା ରାଜନୈତିକ ନେତୃବୃନ୍ଦଙ୍କ ସ୍ୱାର୍ଥ ଜଗିବାକୁ ମୋର ଆଉ ଧୈର୍ଯ୍ୟ ନାହିଁ ।

ଶ୍ରୀଯୁକ୍ତ ସରକାର କହିଲେ, ଯଦି ତୁମେ ଆଉ ସରକାରୀ ଚାକିରୀ କରିବାକୁ ଚାହୁଁନା, ତେଣୁ ବେସରକାରୀ କ୍ଷେତ୍ରରେ ପଶୁପାଳନ ଭିତ୍ତିକ କାର୍ଯ୍ୟକ୍ରମ ତିଆରି କର । ଗୋଟିଏ ଏନ୍.ଜି.ଓ. ଗଠନ କରି ପାରିଲେ ଭାରତ ସରକାରଙ୍କ ଠାରୁ ଯଥେଷ୍ଟ ଟଙ୍କା ଆଣିହେବ । ତୁମ ନେତୃତ୍ୱରେ ବେସରକାରୀ ଭାବେ ଯଥେଷ୍ଟ ଉନ୍ନତିମୂଳକ କାର୍ଯ୍ୟ କରାଯାଇ ପାରିବ । ତୁମେ ନିର୍ଦ୍ଦେଶକ ଭାବେ ଦିଲ୍ଲୀ ମହଲରେ ବେଶ୍ ଜଣାଶୁଣା ହୋଇ ପାରିଛ; ତେଣୁ କେନ୍ଦ୍ରିୟ ଅର୍ଥ ଆଣିବାରେ ତୁମ ପକ୍ଷରେ ଆଦୌ ଅସୁବିଧା ହେବ ନାହିଁ । ତୁମେ ଏଥିଲାଗି ପ୍ରୋଜେକ୍ଟ ତିଆରି କର । ଓଡ଼ିଶା ସରକାରଙ୍କ ପକ୍ଷରୁ ବିଭାଗୀୟ ସଚିବ ଭାବେ ମୁଁ ସବୁ ପ୍ରକାର ସାହାଯ୍ୟ କରିବି ।

ଶ୍ରୀ ସରକାରଙ୍କୁ ଅଶେଷ ଧନ୍ୟବାଦ ଦେଇ ମୁଁ କହିଲି, ମୋର କାର୍ଯ୍ୟଦକ୍ଷତା ଉପରେ ଆପଣଙ୍କର ଯେଉଁଳି ଆସ୍ଥା ରହିଛି ଓ ଆପଣ ମୋ ପ୍ରତି ଯେପରି ଅଖଣ୍ଡ ବିଶ୍ୱାସ ରଖିଛନ୍ତି ସେଥିଲାଗି ମୁଁ ଆପଣଙ୍କ ଠାରେ କୃତଜ୍ଞ । ମୋ ଦ୍ୱାରା ଏ ବିଭାଗରେ ଯେତିକି କାମ ହୋଇଛି ତାଦ୍ୱାରା ଆପଣମାନେ ସନ୍ତୁଷ୍ଟ ହେବା ମୋର ସୌଭାଗ୍ୟ । କାୟ ମନୋବାକ୍ୟରେ ମୋ ଜନ୍ମଭୂମି ଓଡ଼ିଶା ପାଇଁ ଯଦି ମୁଁ କିଛି କରିପାରିଥାଏ, ତାହା ହିଁ ମୋ ଆତ୍ମ ସନ୍ତୋଷର କାରଣ ହେବ । ପଶୁପାଳନ କ୍ଷେତ୍ରରେ ମୋର ଯଥେଷ୍ଟ ଅନୁଭୂତି, ଗବେଷଣା ଓ ଉନ୍ନତ

ଚିନ୍ତାଧାରା ରହିଛି । ସେ ଦିଗରେ କୌଣସି ସରକାରୀ ଚାପର ବଶବର୍ତ୍ତୀ ନ ହୋଇ ସ୍ୱାଧୀନ ଭାବେ ଯଥେଷ୍ଟ କାର୍ଯ୍ୟ କରାଯାଇପାରିବ, ମାତ୍ର ସେହି ଦିଗରେ ପୁଣି ମୋର ଧାଇଁବାର ଇଚ୍ଛା ଆଉ ନାହିଁ । ଏଣିକି ମୁଁ ସେ ପୁରୁଣା ବାଟ ଛାଡ଼ି ନୂଆ ବାଟରେ ଚାଲିବାକୁ ଚାହୁଁଛି । ଏବେ କୌଣସି ନୂଆ ବାଟରେ ଚାଲିବାକୁ ମୋର ସାମର୍ଥ୍ୟ ଅଛି । ଆଉ ବୟସ ବଢ଼ିଗଲେ ମୁଁ ଧର୍ଯ୍ୟ, ସାହସ ଓ ଉତ୍କଣ୍ଠା ହରାଇ ବସିବି । ତେଣୁ ମୋତେ ଆପଣ ଭୁଲ୍ ବୁଝିବେ ନାହିଁ । ଏନ୍.ଜି.ଓ. ଗଠନ କରିବା ସପକ୍ଷରେ ମୋର ଇଚ୍ଛା ନାହିଁ । ମୁଁ ଆପଣଙ୍କ ପ୍ରସ୍ତାବ କାର୍ଯ୍ୟକାରୀ କରି ନ ପାରିବା ଲାଗି ଆପଣ ମୋତେ କ୍ଷମା କରିବେ । ଶ୍ରୀଯୁକ୍ତ ସରକାର ମୋ କଳ୍ପିତ ନୂତନ ଭବିଷ୍ୟତର ସାଫଲ୍ୟ କାମନା କରି ମୋତେ ବିଦାୟ ଦେଲେ ।

## ଉତ୍କଳ ସମ୍ମିଳନୀ ଚିନ୍ତା

ଉପନିର୍ଦ୍ଦେଶକ ଥିଲା ବେଳେ ମଝିରେ ମଝିରେ ମୁଁ ବ୍ରହ୍ମପୁର ଗସ୍ତରେ ଯାଇ ରାତ୍ରିଯାପନ କରୁଥିଲି । ଥରେ ଆମ ବିଭାଗର ଜଣେ ଅଫିସର କହିଲେ ଆସନ୍ତା କାଲି, ଉତ୍କଳ ଆଶ୍ରମଠାରେ ଉତ୍କଳ ସମ୍ମିଳନୀ ସଭା ହେବ । କହିଲି, ସେ ସଭାକୁ ଯିବାପାଇଁ ମୋର ଇଚ୍ଛା ଅଛି । ଚାଲ ସାଙ୍ଗହୋଇ ଯିବା । ସେ ସଭାର ଆବାହକ ଥିଲେ ଅଧିବକ୍ତା ବସନ୍ତ କୁମାର ପାଣିଗ୍ରାହୀ । ଖୁବ୍ ଆକର୍ଷଣୀୟ ବ୍ୟକ୍ତିତ୍ୱ । ତାଙ୍କର ବକ୍ତବ୍ୟ ମୋତେ ବେଶ୍ ଭଲ ଲାଗିଲା । ସମ୍ମିଳନୀର ଆଜୀବନ ସଦସ୍ୟ ହେବା ପାଇଁ ସେ ଆମକୁ ଅନୁରୋଧ କରିଥିଲେ । ପରବର୍ତ୍ତୀ ସମୟରେ ମୁଁ ଯୁଗ୍ମ ନିର୍ଦ୍ଦେଶକ ପଦବୀ ପାଇ ଚିପିଲିମା ଚାଲିଗଲି । ଉତ୍କଳ ସମ୍ମିଳନୀ ସଭାରେ ଯୋଗ ଦେବାପରେ ମନଭିତରେ ଉଙ୍କି ମାରିଲା ଓଡ଼ିଆଜାତିର ଐତିହ୍ୟ । ପିଲାଦିନେ ଜଗତସିଂହପୁର ଆଶ୍ରମ ତୋଟାରେ ଜୟପ୍ରକାଶ ନାରାୟଣଙ୍କ ସଭାରେ ଯୋଗ ଦେବାକୁ ଯାଇ ଜାତୀୟ କବି ବୀରକିଶୋରଙ୍କ ରଚିତ ଗୀତ ଶୁଣିଥିଲି - "ଯେ ଜାତି ବୋଇତ ଭସାଏ ସାତ ସମୁଦର ତେର ନଈରେ" । ସେହି ସଙ୍ଗୀତ ମୋ ହୃଦକନ୍ଦରରେ ପୁଣି ପ୍ରତିଧ୍ୱନିତ ହେବାକୁ ଲାଗିଲା ।

ସମଗ୍ର ଭାରତବର୍ଷରେ ଓଡ଼ିଆଜାତି ଥିଲା ବୀରଜାତି । ପାଲବନ୍ଧା ବୋଇତରେ ସମୁଦ୍ର ପାର ହୋଇ ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ମାଳୟ ବା ସିଂହଳ ରାଜ୍ୟରେ ଏ ଜାତି ବାଣିଜ୍ୟ କରୁଥିଲା । ଏଇ ଜାତିର ଖାରବେଳ କଳିଙ୍ଗ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ହେଲେ, ଆଜି ଆମେ ଦୁଃସ୍ଥ, ଦରିଦ୍ର, ପଛୁଆ ଜାତିଭାବେ ଦିଲ୍ଲୀ ସିଂହାସନରେ ବସି ଆମକୁ ଶାସନ କରୁଥିବା କେନ୍ଦ୍ରୀୟ ନେତାଙ୍କର ଗୋଡ଼ାଣିଆ ହୋଇଛୁ । ମୋ ଜେଜେ

ନାରାୟଣ ପ୍ରସାଦ ମହାନ୍ତି ଥିଲେ କଟକ କଲେଜିଏଟ ହାଇସ୍କୁଲର ପ୍ରଥମ ଓଡ଼ିଆ ପ୍ରଧାନଶିକ୍ଷକ । ଇଂରାଜୀ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିବାରୁ ସେ କଟକରେ ଥିବା ଇଂରେଜ ଅଫିସର ମାନଙ୍କୁ ହେୟଜ୍ଞାନ କରୁଥିଲେ । ହେଲେ ମାତୃଭାଷା ଓଡ଼ିଆ ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ଥିଲା । ତେଣୁ ଇଂରାଜୀ, ଓଡ଼ିଆ ଓ ସଂସ୍କୃତ ଭାଷା ଛାଡ଼ା ଅନ୍ୟ କୌଣସି ଭାଷାରେ କଥା ହୋବକୁ ସେ ଇଚ୍ଛା କରୁ ନ ଥିଲେ । ମୋ ଦେହରେ ସେହିରକ୍ତ ପ୍ରବାହିତ ହେଉଥିବାର ମୁଁ ଅନୁଭବ କରୁଥିଲି । ସେହି ରକ୍ତ ସ୍ରୋତରେ ଉତ୍କଳ ସମ୍ମିଳନୀର ସ୍ପନ୍ଦନ ମୁଁ ଅନୁଭବ କରିବାପରି ବୋଧ ହେଉଥିଲା । ସରକାରୀ ଚାକିରୀ ପରେ ଉତ୍କଳ ସମ୍ମିଳନୀରେ ଯୋଗଦେଇ ନିଷ୍ଠାପର ଭାବେ ଓଡ଼ିଆଜାତି ଲାଗି କିଛି କରିବା ପାଇଁ ମୋର ଇଚ୍ଛା ହେଉଥିଲା ।

ଉତ୍କଳ ଗୌରବ ମଧୁସୂଦନ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତା ଥିଲେ । ପିଲାଟି ଦିନରୁ ଜଣେ ଓଡ଼ିଆଭାବେ ତାଙ୍କର ପ୍ରବଳ ସ୍ୱାଭିମାନ ଥିଲା । କଲିକତାରେ ତାଙ୍କୁ "ମଧୁ ଉଡ଼େ" ବୋଲି ଡାକୁଥିଲେ । ବାବୁଜୀ ରାଧାନାଥ ରଥ ୧୯୬୯ରୁ ୧୯୯୭ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର ଅଧ୍ୟକ୍ଷ ଥିଲେ ସତ, ମାତ୍ର ସେ ବହୁ କାର୍ଯ୍ୟରେ ଲିପ୍ତ ରହି ଏହି ଅନୁଷ୍ଠାନର ସର୍ବାଙ୍ଗୀନ ବିକାଶ ଦିଗରେ ପୂରାସମୟ ଦେଇ ପାରି ନ ଥିଲେ । ତାଙ୍କ ପୂର୍ବରୁ ୧୯୫୯ ମସିହାଠାରୁ ୧୯୬୯ ପର୍ଯ୍ୟନ୍ତ ଡକ୍ଟର ପ୍ରାଣକୃଷ୍ଣ ପରିଜା ଥିଲେ ଉତ୍କଳ ସମ୍ମିଳନୀର ସଭାପତି । ମାତ୍ର ଏହି ସମ୍ମିଳନୀ ପାଇଁ ପୂରା ସମୟଦେଇ କାର୍ଯ୍ୟ କରିବା ତାଙ୍କ ପକ୍ଷେ ମଧ ସମ୍ଭବ ହୋଇ ନଥିଲା । ନିଷ୍ଠାପର ଭାବରେ କାର୍ଯ୍ୟ ନକଲେ ଉତ୍କଳ ସମ୍ମିଳନୀ ଆଗେଇ ପାରିବ ନାହିଁ । ଓଡ଼ିଆମାନଙ୍କ ହୃଦୟରେ ଓଡ଼ିଆତ୍ୱ ଜାଗ୍ରତ ହୋଇପାରିବ ନାହିଁ । ଏହି ସବୁ ଚିନ୍ତା ମନଭିତରେ ବସା ବାନ୍ଧିବାକୁ ଆରମ୍ଭ କଲା । ୧୯୯୨ରେ ରାୟଗଡ଼ାଠାରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ହେଲା । ସମ୍ମିଳନୀର ଉପସଭାପତି ହରିଶ୍ଚନ୍ଦ୍ର ବକ୍ସିପାତ୍ର ଥିଲେ ଏହି ଅଧିବେଶନର ଆବାହକ । ରାୟଗଡ଼ାରେ ତାଙ୍କ ଘର । ଦୂର ଦୂରାନ୍ତରୁ ଆସୁଥିବା ପ୍ରତିନିଧିମାନଙ୍କର ରହିବା ଓ ଖାଇବାର ସୁବିଧା ସେ କରିଥିଲେ । ବିଜୁ ପଟ୍ଟନାୟକ ମନ୍ତ୍ରୀମଣ୍ଡଳରେ ସେତେବେଳେ ସେ ଜଣେ ମନ୍ତ୍ରୀ ଥାଆନ୍ତି ।

ଚାକିରୀରୁ ଛୁଟିନେଇ ମୁଁ ରେଳଯୋଗେ ରାୟଗଡ଼ା ଗଲି । ତତ୍‌କାଳୀନ ଓଡ଼ିଶା ବିଧାନସଭାର ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାଶ ଏହି ଅଧିବେଶନର ସମ୍ମାନିତ ଅତିଥି ଭାବେ ଯୋଗ ଦେଇଥିଲେ । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ସମ୍ମିଳନୀର ଉଦ୍‌ଘାଟକ ଭାବେ ଆସି ଯୋଗ ଦେବାକଥା । ଯୁଧିଷ୍ଠିର ବାବୁ ଜଗତ୍‌ସିଂହପୁର ନିକଟସ୍ଥ ପୁରୋହିତପୁର ଶାସନର ଲୋକ । ତାଙ୍କ ସାନଭାଇ ସୁଧାଂଶୁ ମାଇନର ସ୍କୁଲରୁ ହାଇସ୍କୁଲ ଶେଷ ପର୍ଯ୍ୟନ୍ତ ମୋର

ସହପାଠୀ ଥିଲା । ତାଙ୍କ ସହିତ ମୋର ଦେଖା ହେଲା । ଉତ୍କଳ ସମ୍ମିଳନୀ ପ୍ରତି ମୋର ଆଗ୍ରହ ଦେଖି ସେ ମୋତେ ଏହାର ଆଜୀବନ ସଦସ୍ୟ ହେବାକୁ ପ୍ରସ୍ତାବ ଦେଲେ । ପରେ ଉତ୍କଳ ସମ୍ମିଳନୀର ସଚିବ ଡଃ. ଗୋପାଳକୃଷ୍ଣ ଶ୍ରୀଚନ୍ଦନଙ୍କୁ ଶହେ ଟଙ୍କା ଦେଇ ଆଜୀବନ ସଦସ୍ୟ ହେଲି ।

ଭୁବନେଶ୍ୱରରୁ ହେଲିକୋପ୍ଟରରେ ମୁଖ୍ୟମନ୍ତ୍ରୀ ବିଜୁବାବୁ ଆସି ସମ୍ମିଳନୀର ରାୟଗଡ଼ା ଅଧିବେଶନକୁ ଉଦ୍‌ଘାଟନ କଲେ । ଯୁଧିଷ୍ଠିର ବାବୁ ଓ ବସନ୍ତ କୁମାର ପାଣିଗ୍ରାହୀଙ୍କ ସମେତ ଉପସଭାପତି ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ଭାଷଣ ମୋତେ ଖୁବ୍ ଭଲଲାଗିଲା । ଅଧିବେଶନ ଶେଷରେ ରେଳ ଯୋଗେ ଚିପିଲିମା ଫେରି ଆସିଲି । ତାପରେ ଗୋପାଳକୃଷ୍ଣ ବାବୁଙ୍କଠାରୁ ମଝିରେ ମଝିରେ କାର୍ଡ଼ ଚିଠି ଖଣ୍ଡେଖଣ୍ଡେ ପାଇ ପ୍ରତିବର୍ଷ ଯେଉଁସବୁ ସ୍ଥାନରେ ସଭାସମିତି ହୁଏ ତାର ସମ୍ବାଦ ମୁଁ ପାଉଥାଏ । ନିର୍ଦ୍ଦେଶକ ଭାବେ ଦାୟିତ୍ୱ ଗ୍ରହଣ କଲାପରେ ଥରେ ମୁଁ ଗୋପାଳକୃଷ୍ଣ ବାବୁଙ୍କଠାରୁ ଚିଠି ଖଣ୍ଡେ ପାଇଲି । ସେ ଲେଖିଥିଲେ ସମ୍ମିଳନୀ କାର୍ଯ୍ୟାଳୟରେ ବସିବାକୁ ଚୌକି ନାହିଁ । ତେଣୁ କେତେଖଣ୍ଡ ଚୌକି କିଣାଯିବା ପାଇଁ ଏକଶହ ଟଙ୍କା ଚାନ୍ଦା ଦେବାକୁ ହେବ । ଟେଲିଫୋନ୍‌ରେ ତାଙ୍କସହିତ କଥାହୋଇ ବୁଝିଲି ଯେ, ଉତ୍କଳ ସମ୍ମିଳନୀର ସ୍ଥାୟୀ ସଭାପତି ସମାଜ ସମ୍ପାଦକ ରାଧାନାଥ ରଥଙ୍କ ଦେହାବସାନ ପରେ ଉପସଭାପତି ହରିଶ୍ଚନ୍ଦ୍ର ବାବୁ ସଭାପତି ଦାୟିତ୍ୱରେ ରହିଛନ୍ତି । ପୂର୍ବରୁ ବସନ୍ତବାବୁ ବ୍ରହ୍ମପୁରରେ ଉତ୍କଳ ସମ୍ମିଳନୀର କାର୍ଯ୍ୟାଳୟ ରଖିଥିଲେ । ମାତ୍ର ହରିଶ୍ଚନ୍ଦ୍ର ବାବୁ ଗୋପାଳକୃଷ୍ଣ ବାବୁ, ଆଚାର୍ଯ୍ୟ ଭାବାନନ୍ଦ ଓ ଅନ୍ୟମାନେ ସେହି କାର୍ଯ୍ୟାଳୟ ଭୁବନେଶ୍ୱରକୁ ଉଠାଇ ଆଣିବାକୁ ଦାବୀ କରିବାରୁ ଏଇମାତ୍ର ଦୁଇ ମାସ ହେବ ତିନି ନମ୍ବର ୟୁନିଟ୍‌ସ୍ଥ ଗୋଦାବରୀଶ ସାହିତ୍ୟସଂସଦର ଗୋଟିଏ କୋଠରୀ ଭଡ଼ା ନେଇ ସେ ଘରେ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟ କରାଯାଇଛି । ହେଲେ ସେ ଘରେ ବସିବା ପାଇଁ ଚୌକି ନାହିଁ । ତେଣୁ ଚୌକି କେତେଖଣ୍ଡ କିଣିବାକୁ ଟଙ୍କା ଦରକାର । ସମସ୍ତେ ଶହେ ଟଙ୍କା କରି ଦେଲେ କିଛି ଚୌକି କିଣାଯିବ । ପଚାରିଲି, କେତେ ଖଣ୍ଡ ଚୌକୀ ଆପଣଙ୍କର ଦରକାର ? ସେ କହିଲେ, ଅନ୍ୟୁନ ୩୦ ଖଣ୍ଡ ହେଲେ ଚଳିବ । ପଚାରିଲି, ଆପଣଙ୍କର କେତେଜଣ ଆଜୀବନ ସଦସ୍ୟ ଅଛନ୍ତି ? ସେମାନଙ୍କଠାରୁ ଆପଣ କେତେ ଟଙ୍କା ପାଇବେ ବୋଲି ଆଶା କରୁଛନ୍ତି ?

ଶ୍ରୀଚନ୍ଦନବାବୁ କହିଲେ, ଏବେ ଆମର ପ୍ରାୟ ସତୁରୀଜଣ ଆଜୀବନ ସଦସ୍ୟ ଅଛନ୍ତି । ସେମାନଙ୍କ ମଧ୍ୟରୁ ଅତି ବେଶୀରେ ଅଧାଲୋକ ଚାନ୍ଦା ଦେବେବୋଲି ଅନୁମିତ ହେଉଛି । କହିଲି - ତା ହେଲେ ଆପଣ ମାତ୍ର ଟ୩୫୦୦ ଟଙ୍କା ପାଇବେ ବୋଲି ଭାବୁଛନ୍ତି । ସେତକ ଟଙ୍କାରେ ଆପଣଙ୍କର ଅତି ବେଶୀରେ ଆଠ ଦଶଟି ଚୌକୀ କିଣା

ଯାଇ ପାରିବ । ଆଉ ୩୦ଟି ଚୌକୀ ଆସିବ କେଉଁଠୁ ? ସେ କହିଲେ, ଯାହା ହେବ ସେତିକିରେ ସନ୍ତୁଷ୍ଟ ହେବାକୁ ପଡ଼ିବ । କହିଲି, ଠିକ୍ ଅଛି, ମୁଁ ୩୦ ଖଣ୍ଡ ଚୌକୀ କିଣିଦେବି । ଶ୍ରୀ ଚନ୍ଦନ ବାବୁ ବହୁତ ଖୁସି ହୋଇଗଲେ ।

ତିରିଶଟି ଚୌକୀ କିଣିସାରି ସେଗୁଡ଼ିକ ନେଇ ଯିବାକୁ ଖବରଦେଲି । ସେ କହିଲେ, ଆମର ଆର୍ଥିକ ସମ୍ବଳ କ'ଣ ଅଛି ଯେ ଚୌକୀ ଆଣିପାରିବୁ ? ଆପଣ ସେତକ ପଠାଇବାର ବ୍ୟବସ୍ଥା କରନ୍ତୁ । ତାଙ୍କ କଥାଶୁଣି ଗୋଟିଏ ଟ୍ରାକ୍ଟର ଭଡ଼ା କରି ୩୦ଟି ଚୌକୀ ପଠାଇ ଦେଲି । ସେହି ଦିନଠାରୁ ଦୀର୍ଘଦିନଧରି ସେହି ଚୌକୀ ସବୁ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରେ ବ୍ୟବହୃତ ହେଉଛି ।

ତାପରେ ବହୁଦିନଧରି ଶ୍ରୀଚନ୍ଦନ ବାବୁଙ୍କଠାରୁ ଚିଠିପତ୍ର ବା ଫୋନ ଜରିଆରେ କୌଣସି ସମ୍ବାଦ ପାଇଲିନାହିଁ । ଇତିମଧ୍ୟରେ ସରକାରୀ ଚାକିରୀରୁ ମୁଁ ଅବସର ନେଇଗଲି । ସେ ସମ୍ବାଦ ପାଇ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟକୁ ଯିବା ପାଇଁ ମୋତେ ସେ ଆମନ୍ତ୍ରିତ କଲେ । ଗୋଦାବରୀଶ ସାହିତ୍ୟ ସଂସଦକୁ ଯାଇ ପହଞ୍ଚିଲି । ବଙ୍କିପାତ୍ରବାବୁ, ବସନ୍ତ ପାଣିଗ୍ରାହୀ, ଶ୍ରୀଚନ୍ଦନବାବୁ ପୂର୍ବତନ ମନ୍ତ୍ରୀ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀଚରଣ ସ୍ୱାଇଁ, ଆଚାର୍ଯ୍ୟ ଭାବାନନ୍ଦ (ଡଃ ଭାବଗ୍ରାହୀ ମିଶ୍ର), ଆଦି କୋଡ଼ିଏ ପଚିଶଜଣ ଲୋକ ସେଦିନ ଉପସ୍ଥିତ ଥାଆନ୍ତି । ବସନ୍ତ ବାବୁ ମୋର ପରିଚୟ ପ୍ରଦାନ କଲେ । ସେଦିନ ନିଷ୍ପତ୍ତି ହେଲା ଯେ ଉତ୍କଳ ସମ୍ମିଳନୀର ପ୍ରସାରଲାଗି ଜିଲ୍ଲା ଶାଖାମାନ ଗଠିତହେବ । ଏବେ କେବଳ ରାଉରକେଲା ଓ ବ୍ରହ୍ମପୁରରେ ଦୁଇଟି ଶାଖା ଅଛି ତା ସାଙ୍ଗକୁ କଟକ ଓ ଭୁବନେଶ୍ୱରରେ ଦୁଇଟି ଜିଲ୍ଲାଶାଖା ଗଠିତହେବ । କଟକ ଓ ଭୁବନେଶ୍ୱର ମିଶି ଏବେ ପ୍ରାୟ ତିରିଶି ଚାଳିଶି ଜଣ ଆଜୀବନ ସଦସ୍ୟ / ସଦସ୍ୟା ଅଛନ୍ତି । ଏହି ସଂଖ୍ୟା ଆହୁରି ବଢ଼ାଇବାକୁ ହେବ । ପୂର୍ବରୁ ଭାବୁଥିଲି ଯେ, ଉତ୍କଳ ସମ୍ମିଳନୀ ଖୁବ୍ ବଡ଼ଅନୁଷ୍ଠାନ । ମାତ୍ର ଏତେ କମ୍ ସଦସ୍ୟ / ସଦସ୍ୟା ଥିବାର ଜାଣି ଏହାର ପ୍ରସାରଣ ଦିଗରେ କୌଣସି କାର୍ଯ୍ୟ ହୋଇ ନ ଥିବାର ଜାଣି ପାରିଲି । ଏ ପର୍ଯ୍ୟନ୍ତ ପଦ୍ମଭୂଷଣ ରାଧାନାଥ ରଥ ସମ୍ମିଳନୀର ସଭାପତି ଓ ବସନ୍ତ ବାବୁ ମହାସଚୀବ ଥିଲେ । ପରିଣତ ବୟସରେ ସମାଜ ସମ୍ପାଦନା ସହିତ ବହୁ ଅନୁଷ୍ଠାନ ବା ସାଙ୍ଗଠିନିକ ସଂସ୍ଥା ଦାୟିତ୍ୱରେ ଥାଇ ସେସବୁର କାର୍ଯ୍ୟାବଳୀ ଉପରେ ଯଥେଷ୍ଟ ଧ୍ୟାନ ଦେଇପାରିବା ସଭାପତି ଭାବେ ରାଧାନାଥ ବାବୁଙ୍କ ପକ୍ଷରେ ସମ୍ଭବ ନଥିଲା । ସେତେବେଳେ କଟକରୁ ସମାଜ, ପ୍ରଜାତନ୍ତ୍ର ଓ ମାତୃଭୂମି ତିନୋଟି ଦୈନିକ ସମ୍ବାଦ ପତ୍ର ପ୍ରକାଶିତ ହେଉଥିଲା । ଭୁବନେଶ୍ୱରରୁ କୌଣସି ସମ୍ବାଦ ପତ୍ର ବାହାରୁ ନ ଥିଲା । ରାଧାନାଥବାବୁଙ୍କ ଯୋଗୁଁ ପ୍ରତିବର୍ଷ ଉତ୍କଳଦିବସ ଦିନ କେବଳ 'ସମାଜ'ରେ ଗୋଟିଏ ପୂରାପୃଷ୍ଠା ବିଶେଷାଙ୍କ ପ୍ରକାଶ ପାଉଥିଲା । ସେଥିରୁ ଓଡ଼ିଶା ଗଠନ ତଥା ସେଥିଲାଗି

ଉତ୍କଳ ସମ୍ମିଳନୀର ଅବଦାନ ବିଷୟରେ ବହୁ ତଥ୍ୟ ପଢ଼ିବାକୁ ମିଳୁଥିଲା । ଉତ୍କଳ ଗୌରବ ମଧୁସୂଦନଙ୍କ ଜୟନ୍ତୀ ଓ ଉତ୍କଳମଣି ଗୋପବନ୍ଧୁଙ୍କ ଜୟନ୍ତୀରେ ସେମାନଙ୍କ ବିଷୟରେ ମଧ୍ୟ ଲେଖାମାନ ପ୍ରକାଶିତ ହେଉଥିଲା । ସେସବୁ ପଢ଼ି ମୁଁ ଉତ୍କଳ ସମ୍ମିଳନୀ ପ୍ରତି ଆକର୍ଷିତ ହୋଇଥିଲି ଓ ଅବସର ଗ୍ରହଣ କରିବାପରେ ସେଥିଲାଗି କାର୍ଯ୍ୟକରିବାକୁ ମନସ୍ଥ କରିଥିଲି । ଏକ ବୈଷୟିକ ବିଭାଗର ନିର୍ଦ୍ଦେଶକ ଭାବେ ଅବସର ନେବାପରେ ସେହି ସମ୍ପର୍କୀୟ ଅନେକ ସର୍ବଭାରତୀୟ ସଂସ୍ଥାରୁ ମୋତେ ମୋଟା ଦରମାରେ କାର୍ଯ୍ୟ କରିବାପାଇଁ ନିମନ୍ତ୍ରଣ ବା ବହୁ ସୁଯୋଗ ମିଳୁଥିଲା । ମାତ୍ର ସରକାରୀ ସ୍ତରରେ ମାତୃଭୂମି ପାଇଁ ଅନେକ ବର୍ଷ କାର୍ଯ୍ୟ କରିସାରିବା ପରେ ଆଉ ଅର୍ଥଲାଳସା ମୋର ନ ଥିଲା । ଏଣିକି ଓଡ଼ିଆ ଜାତି ବା ମାତୃଭାଷା ଓଡ଼ିଆର ସୁରକ୍ଷା ପାଇଁ କାର୍ଯ୍ୟ କରିବାକୁ ମୁଁ ସୁଯୋଗ ଖୋଜୁଥିଲି । ଏବେ ଉତ୍କଳ ସମ୍ମିଳନୀ ପାଇଁ ଜୀବନର ଅବଶିଷ୍ଟାଂଶ ଉପଯୋଗ କରିବାର ନିଷ୍ପତ୍ତି ନେଲି । ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ସଭାପତି ଦାୟିତ୍ୱରେ ରହିବା ପରେ ବିଭିନ୍ନ ଜିଲ୍ଲାରେ ଶାଖା ଗଠନ ଲାଗି ନିଷ୍ପତ୍ତି ହେଲା ।

ପ୍ରଥମେ ଗଠିତ ହେଲା ଭୁବନେଶ୍ୱର ଶାଖା, ତାପରେ ୧୯୯୭ ମସିହା ନଭେମ୍ବର ମାସରେ କଟକଶାଖା ଗଠିତହେଲା । ମହାସଚିବ ବସନ୍ତବାବୁ ଓ ସମ୍ମିଳନୀର ଉପଦେଷ୍ଟା ଅଧିବକ୍ତା ବିପିନ ବିହାରୀ ରଥ ଏହି ଶାଖା ଗଠନର ଦାୟିତ୍ୱ ନେଇଥିଲେ । ସେତେବେଳେ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ କଟକ ମ୍ୟୁନିସିପାଲିଟିର ଅଧ୍ୟକ୍ଷ ବା ଚେୟାରମ୍ୟାନ୍ ଥାଆନ୍ତି । ଗଣ୍ଡରପୁର ଅଞ୍ଚଳର ଶାନ୍ତିକମିଟି ସଦସ୍ୟ ତଥା ପୂଜା କମିଟିର ସମ୍ପାଦକ ଶ୍ରୀ ନୃସିଂହ ଚରଣ ମଲ୍ଲ କମଳାକାନ୍ତ ବିଦ୍ୟାପୀଠ ପ୍ରାଙ୍ଗଣରେ ସଭା କରି କଟକରେ ଥିବା ଉତ୍କଳ ସମ୍ମିଳନୀର ଆଜୀବନ ସଦସ୍ୟ ମାନଙ୍କୁ ତଥା ଉତ୍କଳ ସମ୍ମିଳନୀ ପ୍ରେମୀ ବ୍ୟକ୍ତିମାନଙ୍କୁ ସେହି ସଭାକୁ ଆମନ୍ତ୍ରିତ କଲେ । କଟକଶାଖା ଲାଗି ଜଣେ ସଭାପତି, ସମ୍ପାଦକ, ଉପସଭାପତି ଓ କୋଷାଧ୍ୟକ୍ଷଙ୍କୁ ବାଛିବାକୁ ବିପିନବାବୁ ଓ ବସନ୍ତବାବୁ ଦୁଇବନ୍ଧୁ ସେମାନଙ୍କ ପୂର୍ବଆଧାରିତ ନିଷ୍ପତ୍ତି ଅନୁଯାୟୀ ଅଧ୍ୟାପକ କ୍ଷେତ୍ର ମୋହନ ଶତପଥୀଙ୍କ ନାମ ସଭାପତି ଲାଗି ପ୍ରସ୍ତାବ କଲେ । କ୍ଷେତ୍ରମୋହନ ବାବୁ କହିଲେ ଏଠାରେ ତ୍ରିଲୋଚନ ବାବୁଙ୍କ ପରି ଜଣେ ଯୋଗ୍ୟବ୍ୟକ୍ତି ଥାଉଥାଉ ମୁଁ ଏ ପଦଲାଗି ନିଜକୁ ଯୋଗ୍ୟ ଭାବିପାରୁ ନାହିଁ । ତ୍ରିଲୋଚନ ବାବୁ କହିଲେ, ମୁଁ ଜଣେ ରାଜନୈତିକ ବ୍ୟକ୍ତି ଭାବେ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତଥିବାରୁ ଏଥି ଲାଗି ପୂରା ସମୟ ଦେଇ ପାରିବି ନାହିଁ । ତେଣୁ ଆପଣ ହିଁ ଯୋଗ୍ୟ ବ୍ୟକ୍ତି । ପୁଣି କ୍ଷେତ୍ରମୋହନବାବୁ ମୋତେ ଦେଖାଇ କହିଲେ ଡକ୍ଟର ଗୁରୁପ୍ରସସାଦ ମହାନ୍ତି ମୋ ଅପେକ୍ଷା ଅତ୍ୟନ୍ତ ଯୋଗ୍ୟବ୍ୟକ୍ତି । କଟକରେ ଉତ୍କଳ ସମ୍ମିଳନୀ ଲାଗି ସେ ଯାହା କରିପାରିବେ ସେପରି ମୁଁ କରିପାରିବି ନାହିଁ । ଏକଥା ଶୁଣି

ମୁଁ କହିଲି; ଆପଣ ସଭାପତି ରହନ୍ତୁ । ମୋର ଯେପରି ସାହାଯ୍ୟ ଆପଣ ଚାହିଁବେ ତାହା ମୁଁ କରିବି ବୋଲି ପ୍ରତିଶ୍ରୁତି ଦେଉଛି । ତ୍ରିଲୋଚନ ବାବୁ କହିଲେ, ତାହେଲେ ଗୁରୁବାବୁ ଉପସଭାପତି ରହନ୍ତୁ । ଉପସ୍ଥିତ ଲୋକମାନେ ତାଙ୍କକଥାରେ ସହମତ ହେଲେ । ମାତ୍ର ବସନ୍ତବାବୁଙ୍କ ମୁହଁରୁ ପଦେହେଲେ କଥା ବାହାରିଲା ନାହିଁ । ପୂର୍ବରୁ ଉତ୍କଳ ସମ୍ମିଳନୀ ପାଇଁ ମୋର କୌଣସି ଅବଦାନ ଅଛି କି ନାହିଁ, ସେ ବିଷୟରେ ସେ କିଛି ସୂଚନା ମଧ୍ୟ ଦେଲେ ନାହିଁ । ମୁଁ ଭାବୁଥିଲି, ହୁଏତ କ୍ଷେତ୍ରମୋହନ ବାବୁଙ୍କ ସଭାପତିତ୍ୱ ସହିତ ଆଉ କାହାକୁ ଉପସଭାପତି କରିବା ପାଇଁ ତାଙ୍କର ଇଚ୍ଛା ଥିଲା । ହେଲେ କ୍ଷେତ୍ରମୋହନ ବାବୁ ତାହା କରାଇଦେଲେ ନାହିଁ । ତ୍ରିଲୋଚନବାବୁଙ୍କ ପ୍ରସ୍ତାବ ଅନୁଯାୟୀ ଶ୍ରୀ ନୃସିଂହ ଚରଣ ମଲ୍ଲଙ୍କୁ ସମ୍ପାଦକ ଓ ଆଜିର ବିଜେପି ନେତା ପ୍ରତାପ ଜେନାଙ୍କୁ ସହ-ସମ୍ପାଦକ ରଖାଗଲା । ପରେ ପ୍ରତାପ ଜେନା ନବୀନ ପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳରେ ଓଡ଼ିଶାର ଜଣେ ମନ୍ତ୍ରୀ ରହି ଉତ୍କଳ ସମ୍ମିଳନୀର ବିଚ୍ଛିନ୍ନାଞ୍ଚଳ ଶିକ୍ଷା ପ୍ରସାର କାର୍ଯ୍ୟକ୍ରମ ସହିତ ସିଧାସଳଖ ସଂପୃକ୍ତ ଥିଲେ । ତାଛଡ଼ା କୋଷାଧକ୍ଷ ପଦବୀରେ ବନ୍ଧୁ ଶ୍ରୀ ଅଭୟ ସାମନ୍ତରାୟଙ୍କୁ ରଖାଯିବାକୁ ପ୍ରସ୍ତାବ ଗୃହୀତ ହେଲା ।

ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ ଉପସଭାପତି ପଦ ଲାଗି ମୋ ନାମ ପ୍ରସ୍ତାବ କରିବା ପଛରେ ତାଙ୍କର ବିଗତ ସାଢ଼େ ତିନି ବର୍ଷର ଅନୁଭୂତି ଜଡ଼ିତ ଥିଲା । ଓଡ଼ିଶାରେ ସର୍ବ ଭାରତୀୟ ଜୀବେ ନିଷ୍ଠୁରତା ପରିଷଦ ୧୯୩୬ ମସିହାଠାରୁ ଗଠିତ ହୋଇ କାର୍ଯ୍ୟ କରୁଛି । ମାନବେତର ଜୀବମାନଙ୍କ ପ୍ରତି ଦୟାପ୍ରଦର୍ଶନ କରିବା ଏହି ସଂଗଠନର ମୁଖ୍ୟ ଉଦ୍ଦେଶ୍ୟ । ଓଡ଼ିଶା ପଶୁପାଳନ ବିଭାଗ ଗଠନ ହେବାଦିନରୁ ଏହି ସଂଗଠନ ବିଭାଗୀୟ ନିର୍ଦ୍ଦେଶକମାନଙ୍କ ଅଧୀନରେ କାର୍ଯ୍ୟ କରେ । ବିଭାଗୀୟ ନିର୍ଦ୍ଦେଶକ ଏହାର ଅବୈତନିକ ସମ୍ପାଦକ ଓ ରାଜସ୍ୱ ପର୍ଷଦର ମାନ୍ୟବର ସଭ୍ୟ ଏହାର ସଭାପତି ରହନ୍ତି । ଏହାର ପରିଚାଳନା ଲାଗି ଏକ ବୋର୍ଡ଼ ଗଠିତ ହୋଇଛି । ସେହି ବୋର୍ଡ଼ରେ କେତେଜଣ ସରକାରୀ ସଭ୍ୟଙ୍କ ସହିତ ଓଡ଼ିଶାର ବିଭିନ୍ନଜିଲ୍ଲାରୁ କେତେକ ପଶୁପକ୍ଷୀପ୍ରେମୀ ନାଗରିକଙ୍କୁ ନିଆଯାଏ । କଟକର ଶ୍ରୀମତୀ ଶୈଳବାଳା ମହାନ୍ତି ଜଣେ ଅତ୍ୟନ୍ତ ଦୟାଳୁ ମହିଳା । ସେ ତାଙ୍କଘରେ ପ୍ରାୟ ୫୦/୬୦ ବିଲେଇ ଓ ୧୫/୨୦ଟି କୁକୁରଙ୍କ ରଖି ସେମାନଙ୍କର ସେବାକରନ୍ତି । ତାଛଡ଼ା କଟକ ସହରର ଗଳିକନ୍ଦିରେ ବୁଲୁଥିବା କୁକୁର ମାନଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରି ବୁଲିବୁଲି ସେମାନଙ୍କୁ ଖୁଆନ୍ତି । କଟକର ବିଦ୍ୟାଳୟ ଓ ମହାବିଦ୍ୟାଳୟ ମାନଙ୍କରେ ସଭାସମିତି କରି ଛାତ୍ରଛାତ୍ରୀମାନଙ୍କ ମନରେ ଜୀବେଦୟା ଭାବର ଉଦ୍ରେକ କରାଇବା ଦିଗରେ ମଧ୍ୟ ଚେଷ୍ଟା କରନ୍ତି । ଏହି କାର୍ଯ୍ୟରେ ଅଧ୍ୟାପକ ଶତପଥୀ ତାଙ୍କୁ ସବୁବେଳେ ସାହାଯ୍ୟ କରୁଥିଲେ । ସେ ମଧ୍ୟ ଜୀବେଦୟା ପରିଷଦର ଜଣେ ସଭ୍ୟଥିଲେ । ଏହି

ପରିଷଦ ଅଧୀନରେ ପ୍ରାୟ ୬୮୭ ଜଣ ବେତନଭୋଗୀ ଜିଲ୍ଲା ପରିଦର୍ଶକ ଚାକିରୀ କରନ୍ତି । ବିଭିନ୍ନ ଅଞ୍ଚଳରେ ଜୀବପ୍ରତି ଅତ୍ୟାଚାର କରୁଥିବା ଲୋକମାନଙ୍କ ବିରୁଦ୍ଧରେ ନ୍ୟାୟାଳୟର ଆଶ୍ରୟ ନେବା ସେମାନଙ୍କର କାର୍ଯ୍ୟ । ମାତ୍ର ମୋ ଦେଖିବାରେ ସେପରି କୌଣସି କାର୍ଯ୍ୟ ହୋଇଥିବାର ଜାଣିପାରିଲି ନାହିଁ । ପୂର୍ବତନ ବିଭାଗୀୟ ନିର୍ଦ୍ଦେଶକମାନେ ଏ ଦିଗରେ ସମୟ ଦେଇ ନ ପାରି ଏହି ପରିଦର୍ଶକ ମାନଙ୍କର କାର୍ଯ୍ୟ ସମୀକ୍ଷା ନକରି କେବଳ ସେମାନଙ୍କର ଦରମା ଓ ଭତ୍ତା ସବୁ ଦେଇ ଚାଲିଥାନ୍ତି ।

ମୁଁ ନିର୍ଦ୍ଦେଶକ ହେବା ପରେ ସେମାନଙ୍କ କାର୍ଯ୍ୟର ସମୀକ୍ଷା କରି ମୁଖ୍ୟତଃ ବିଦ୍ୟାଳୟ ମାନଙ୍କରେ ଛାତ୍ରଛାତ୍ରୀମାନଙ୍କୁ ଏ ଦିଗରେ ସୂଚନାଦେବା କାର୍ଯ୍ୟ ସହିତ ରାସ୍ତାକଡ଼ରେ ପଶୁବଧ ଓ ଦେବୀମନ୍ଦିର ମାନଙ୍କରେ ପଶୁବଳି ବନ୍ଦ କରିବାପାଇଁ କମିଟିମାନ ଗଠନ କଲି । କ୍ଷେତ୍ରମୋହନ ବାବୁ ଓ ଶୈଳବାଳା ଦେବୀଙ୍କୁ ଏହି କାର୍ଯ୍ୟରେ ଜଡ଼ିତ କରାଗଲା । ସେମାନଙ୍କ ନିଷ୍ପତ୍ତି ଅନୁଯାୟୀ ସଭାସମିତି କରାଯିବା ତଥା ରାସ୍ତାକଡ଼ରେ ପଶୁବଧ ନିଷେଧ ଲାଗି ମୋବାଇଲକୋର୍ଟ କରିବା କାର୍ଯ୍ୟ ଆରମ୍ଭ ହୋଇଗଲା । ଏଥିଲାଗି ଜୀବେଦୟା ପରିଷଦର ଜିପ୍‌କୁ ବ୍ୟବହାର କରାଗଲା । ବର୍ଷର ଅଧିକାଂଶ ଦିନ ଏହି କାର୍ଯ୍ୟ ହେବାରୁ ବହୁ ବିଦ୍ୟାଳୟ ଓ ମହାବିଦ୍ୟାଳୟରେ ସଭାସମିତି ହେଲା ଓ ରାସ୍ତକଡ଼ରେ ମାଂସ କାଟୁଥିବା କଂସେଇମାନେ ମୋବାଇଲକୋର୍ଟ ଭୟରେ ଲୁଚିଲେ । ଯେଉଁ ଜିଲା ପରିଦର୍ଶକ ମାନେ ଏସବୁ କାର୍ଯ୍ୟ କରାଇବାରେ ଅସମର୍ଥ ହେଲେ ସେମାନଙ୍କର ଦରମା ଓ ଭତ୍ତା ବନ୍ଦ କରାଗଲା । ପ୍ରତିମାସରେ ମୁଁ ସେମାନଙ୍କ କାର୍ଯ୍ୟର ସମୀକ୍ଷା କରୁଥିଲି । ତେଣୁ ସେମାନଙ୍କ ମଧ୍ୟରୁ ତିନି ଚାରିଜଣ ଲମ୍ବା ଛୁଟି ନେଇଗଲେ ଓ ଜଣେ ପରିଦର୍ଶକ ଦୁଇ ଜଣ ପ୍ରଭାବଶାଳୀ ମନ୍ତ୍ରୀଙ୍କୁ ଧରି କଟକରୁ ଅନ୍ୟ ଜିଲ୍ଲାକୁ ତାଙ୍କର ବଦଳି କରାଇ ନେଲେ । ବିଭାଗୀୟ ଜିଲ୍ଲା ଅଧିକାରୀ ଓ ଜୀବେଦୟା ପ୍ରତି ସହାନୁଭୂତିଶୀଳ ପଶୁ ସହାୟକମାନଙ୍କୁ ନେଇ ମୁଁ ଏସବୁ କାର୍ଯ୍ୟ କରାଇଲି । କଟକରେ ବୁଲା କୁକୁରମାନଙ୍କର ଜନ୍ମ ନିରୋଧ ଅସ୍ତ୍ରୋପଚାର ଲାଗି ବକ୍ସିବଜାର ଓ ଖପୁରିଆସ୍ଥିତ ପଶୁଚିକିତ୍ସାଳୟରେ ସ୍ଥାନାଭାବ ହେବାରୁ ଜୀବେ ଦୟା ପରିଷଦ ପକ୍ଷରୁ ସତୀଚଉରା ରାସ୍ତାର ଇନ୍ଦିରାଗାନ୍ଧୀ ମହିଳା ମହାବିଦ୍ୟାଳୟ ଛକରେ ଘରଭଡ଼ା ନେଇ ଗୋଟିଏ ପଶୁ ଚିକିତ୍ସାଳୟ ଖୋଲାଇଲି । କଟକରେ ରହୁଥିବା କେତେଜଣ ଅବସରପ୍ରାପ୍ତ ପଶୁ ଚିକିତ୍ସକ ଓ ପଶୁ ଧନ ନିରୀକ୍ଷକ ଏହି ଚିକିତ୍ସାଳୟ ପରିଚାଳନା ଦାୟିତ୍ୱରେ ରହିଲେ । ମୋର ଅବସର ଗ୍ରହଣ କରିବା ପରେ ଦୁଇ ବର୍ଷ ପର୍ଯ୍ୟନ୍ତ ଏହି ପଶୁ ଚିକିତ୍ସାଳୟ ସେ ଅଞ୍ଚଳରେ ଖୁବ୍ ଲୋକପ୍ରିୟ ହୋଇଥିଲା । ତେଣୁ ଏ ସମସ୍ତ କାର୍ଯ୍ୟ ଦେଖି ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀଙ୍କର ମୋର କାର୍ଯ୍ୟଦକ୍ଷତା ଉପରେ ଅଖଣ୍ଡ ବିଶ୍ୱାସ ହୋଇଯାଇଥିଲା । ସେ ମୋତେ କହିଲେ, ମୋତେ ସିନା ସଭାପତି କରାଗଲା, ମାତ୍ର

କଟକରେ ଉତ୍କଳ ସମ୍ମିଳନୀ କାର୍ଯ୍ୟ କରାଇବା ଆପଣଙ୍କ ଉପରେ ନିର୍ଭର କରୁଛି । ଆପଣ ଯାହା କରିବେ ତହିଁରେ ମୁଁ ପୂର୍ଣ୍ଣ ସହଯୋଗ କରିବି ବୋଲି ଏବେଠାରୁ ପ୍ରତିଶ୍ରୁତି ଦେଉଛି । କହିଲି, ଆପଣ ଚିନ୍ତା କରନ୍ତୁ ନାହିଁ । ସରକାରୀ ଚାକିରୀରେ ମୁଁ ଯେପରି ନିଷ୍ଠାପର ଭାବରେ କାର୍ଯ୍ୟ କରୁଥିଲି ଏବେ ଉତ୍କଳ ସମ୍ମିଳନୀର ପ୍ରଚାର ପ୍ରସାର ଓ ଉନ୍ନତି ଦିଗରେ ସେହିଭଳି କାର୍ଯ୍ୟ କରିବି । ଓଡ଼ିଆ ଜାତିର ଆଦ୍ୟ ମିଳନମଂଚ ହେଉଛି 'ଉତ୍କଳ ସମ୍ମିଳନୀ' । ପ୍ରବଳ ସ୍ୱାଭିମାନୀ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ତ୍ୟାଗ, ନିଷ୍ଠା ଓ ଅଦମ୍ୟ ପ୍ରଚେଷ୍ଟା ବଳରେ ଏହି ସମ୍ମିଳନୀ ଗଠିତ ହୋଇ ପାରିଥିଲା । ନଅଙ୍କ ଦୁର୍ଭିକ୍ଷରେ ତତ୍‌କାଳୀନ ଓଡ଼ିଶା ଡିଭିଜନର ଏକ ତୃତୀୟାଂଶ ଲୋକ ଅନାହାରରେ ମୃତ୍ୟୁବରଣ କରିବା ଦେଖି ତରୁଣ ବୟସ୍କ ମଧୁବାବୁଙ୍କ ହୃଦୟରେ ଦାରୁଣ ଦୁଃଖ ଉପୁଜିଥିଲା । ସେ ଆଶଙ୍କା କରୁଥିଲେ ଯେ, ଅଣଓଡ଼ିଆମାନଙ୍କ ଚକ୍ରାନ୍ତରେ ଦିନେ ଓଡ଼ିଆ ଜାତି ଲୋପ ପାଇଯିବ । ତେଣୁ ଏ ଜାତିକୁ ବଞ୍ଚାଇବାକୁ ହେଲେ ସବୁତକ ଓଡ଼ିଆ ଅଞ୍ଚଳ ଏକତ୍ରିତକରି ଗୋଟିଏ ସ୍ୱତନ୍ତ୍ରପ୍ରଦେଶ ଗଠନକରିବା ତାଙ୍କର ସ୍ୱପ୍ନ ଥିଲା । କଲିକତାରେ ସେ ପଢ଼ିଲାବେଳେ ତାଙ୍କର ତୀକ୍ଷ୍ଣବୁଦ୍ଧି, ଅଗାଧପାଣ୍ଡିତ୍ୟ ଓ ଗୋଟିଏ ଜାତିକୁ ନେତୃତ୍ୱ ଦେଇ ପାରିବାର ଦକ୍ଷତାଦେଖି ଯେଉଁମାନେ ମୁଗ୍ଧ ହୋଇଥିଲେ ସେମାନେ ତାଙ୍କୁ ନବଗଠିତ ଭାରତୀୟ ଜାତୀୟକଂଗ୍ରେସକୁ ନେତୃତ୍ୱ ଦେବା ପାଇଁ ଅନୁରୋଧ କରିଥିଲେ । ମାତ୍ର ମଧୁବାବୁ ପ୍ରଥମେ ଓଡ଼ିଆ ଜାତିକୁ ସୁରକ୍ଷା ଦେବା ତାଙ୍କର ମୁଖ୍ୟକର୍ତ୍ତବ୍ୟ ଭାବେ ବିଚାରକରି ଜାତୀୟ କଂଗ୍ରେସର ନେତୃତ୍ୱ ପରିତ୍ୟାଗ କରିଥିଲେ । ଓଡ଼ିଆଜାତି ଗଠନଦିଗରେ ନିଜର ଧନ, ସମ୍ପତ୍ତି, ପାରିବାରିକ ସୁଖ ତଥା ବ୍ୟକ୍ତିଗତ ସୁଖସମ୍ଭୋଗ ପରିତ୍ୟାଗ କରି ସେ ଦୁଇଥର ବିଲାତ ଯାଇ ଇଂରେଜ ସରକାରଙ୍କ ସହିତ ଯୋଗାଯୋଗ ସ୍ଥାପନକରି ପରିଶେଷରେ ଓଡ଼ିଶା ପ୍ରଦେଶ ଗଠନ କ୍ଷେତ୍ରରେ ସଫଳକାମ ହୋଇଥିଲେ ମଧ ନବଗଠିତ ଓଡ଼ିଶାର କଂଗ୍ରେସ ନେତୃବୃନ୍ଦ ଓ ମନ୍ତ୍ରୀମଣ୍ଡଳ ତାଙ୍କୁ ତଥା ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାମାନଙ୍କୁ ଇଂରେଜ ସରକାରଙ୍କ ଗୋଡ଼ାଣିଆ ଭାବେ ଚିତ୍ରିତ କରିଥିଲେ । ଫଳରେ ୧୯୭୪ ମସିହା ପର୍ଯ୍ୟନ୍ତ "ଉତ୍କଳ ଦିବସ" ପାଳିତ ହେଉନଥିଲା । ମଧୁବାବୁ, ପାରଳା ମହାରାଜା, ଫକୀରମୋହନ, ଗଙ୍ଗାଧର ମେହେର, ହରିହର ମର୍ଦ୍ଦରାଜ ବା ଉତ୍କଳ ସମ୍ମିଳନୀର ନେତୃବୃନ୍ଦଙ୍କର ଜନ୍ମଦିନ ବା ଶ୍ରାଦ୍ଧଦିବସ ଆଦି ସରକାରୀ ସ୍ତରରେ ପାଳନ କରାଯାଉନଥିଲା ।

କଟକ ବା ଭୁବନେଶ୍ୱରରେ ୧୯୨୫ ମସିହାପରେ କୌଣସି ଉତ୍କଳ ସମ୍ମିଳନୀ ଅଧିବେଶନ ହୋଇନଥିଲା । ଅଧିକାଂଶ ଅଧିବେଶନ କେବଳ ବ୍ରହ୍ମପୁର, ମଞ୍ଜୁଷା, ଜୟପୁର, ପାରଳାଖେମୁଣ୍ଡି, ଜଳନ୍ତର ବା ମହେନ୍ଦ୍ରଗିରି ପରି ଓଡ଼ିଶାର ଦକ୍ଷିଣାଞ୍ଚଳରେ

୧୯୮୩ ମସିହା ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ୧୯୫୯ ମସିହାରୁ ୧୯୬୯ ପର୍ଯ୍ୟନ୍ତ ଡଃ ପ୍ରାଣକୃଷ୍ଣ ପରିଜା ଓ ୧୯୬୯ ମସିହାରୁ ୧୯୯୮ ମସିହା ପର୍ଯ୍ୟନ୍ତ ଶ୍ରୀ ରାଧାନାଥ ରଥ ଉତ୍କଳ ସମ୍ମିଳନୀର ସଭାପତି ଥାଇ ମଧ୍ୟ କଟକ ସହରରେ ଉତ୍କଳ ସମ୍ମିଳନୀ ଅଧିବେଶନ ଅନୁଷ୍ଠିତ ହୋଇ ନ ଥିଲା । ତେଣୁ କଟକ ଜିଲ୍ଲା ଲୋକେ ଉତ୍କଳ ସମ୍ମିଳନୀ ବିଷୟରେ ଖୁବ୍ କମ୍ ଜାଣିଥିଲେ । ଏ ଦିଗରେ କାର୍ଯ୍ୟ କରି ସାଧାରଣ ଲୋକଙ୍କ ମନରେ ଉତ୍କଳୀୟତାର ଜାଗରଣ ସୃଷ୍ଟି କରିବା ଆମର ପ୍ରଧାନ କର୍ତ୍ତବ୍ୟ ଭାବେ ମନେ ହେଲା ।

କୋଷାଧ୍ୟକ୍ଷ ଅଭୟ ସାମନ୍ତରାୟ ଥିଲେ ମୋର ବାଲ୍ୟ ସହପାଠୀ ବନ୍ଧୁ । ତାଙ୍କ ଭିଣୋଇ ଶ୍ରୀ ବାଲୁଙ୍କେଶ୍ୱର ଆଚାର୍ଯ୍ୟ ଜଗତସିଂହପୁର ଶ୍ରୀକୃଷ୍ଣ ଏକାଡ଼େମୀରେ ସଂସ୍କୃତ ପଣ୍ଡିତ ଥିଲେ । ଅଭୟ ବାବୁଙ୍କୁ ଆଣି ସେ ପାଖରେ ରଖି ଅଷ୍ଟମ ଶ୍ରେଣୀରେ ପଢ଼ାଇଲେ । ଅଭୟ ଆମସହିତ କେବଳ ଅଷ୍ଟମ ଶ୍ରେଣୀରେ ପାଠପଢ଼ି ବାର୍ଷିକପରୀକ୍ଷା ପରେ ଅନ୍ୟତ୍ର ଚାଲିଗଲେ । ପରେ ଜଣେ ସାମ୍ବାଦିକ ଭାବେ ସେ କଟକରେ ସୁପରିଚିତ ହେଲେ । ସେ ବାଦାମବାଡ଼ିସ୍ଥ ଲେବର କଲୋନୀରେ ରହୁଥିବାରୁ ତାଙ୍କ ସହିତ ବସି ଉତ୍କଳ ସମ୍ମିଳନୀ ବିଷୟରେ ଆଲୋଚନା କରିବାକୁ ସୁବିଧା ହେଉଥିଲା । ଉତ୍କଳ ସମ୍ମିଳନୀ କାର୍ଯ୍ୟ କରିବାପାଇଁ ଆମ ହାତରେ କପର୍ଦ୍ଦକ ନ ଥିଲା । ଉତ୍କଳଦିବସ, ମଧୁବାବୁ, ଗୋପବନ୍ଧୁ ଓ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜୟନ୍ତୀ ପାଳନକରିବା ବିଷୟରେ ସଭାପତି କ୍ଷେତ୍ରମୋହନ ବାବୁ ଓ ସମ୍ପାଦକ ନୃସିଂହ ଚରଣ ମଲ୍ଲଙ୍କ ସହିତ ଆଲୋଚନା ବେଳେ ସେମାନେ ନିଜନିଜର ଅସହାୟତା ପ୍ରକାଶକଲେ । ମୋର ଗୋଟିଏ ଆମ୍ବାସାଡ଼ାର କାର୍ ଥିଲା । 'ଉତ୍କଳ ସମ୍ମିଳନୀ - କଟକଜିଲ୍ଲାଶାଖା' ନାମରେ ଦୁଇଟି ବ୍ୟାନର ତିଆରି କରାଇଲି । ମୋ ବୋହୂ ସେବାରାଣୀ ସେତେବେଳେ ଗୀତ ଶିଖୁଥିଲା । କଟକର କଳାବିକାଶ କେନ୍ଦ୍ରରେ ଖେୟାଲ ଶିଖାଉଥିବା ଖ୍ୟାତାନାମା ସଙ୍ଗୀତଜ୍ଞ ଜେ.ଭି.ଏସ୍.ରାଓ ତାକୁ ଶିଖାଇବା ପାଇଁ ଆମ ଘରକୁ ସପ୍ତାହରେ ଚାରିଦିନ ଆସୁଥିଲେ । ତାଙ୍କ ସହିତ ତବଲା ସଂଗତ୍ କରିବା ପାଇଁ ଭୁବନେଶ୍ୱର ସଙ୍ଗୀତ ମହାବିଦ୍ୟାଳୟର ତବଲା ଶିକ୍ଷକ ଦୀନବନ୍ଧୁ ସେଠୀ ମଧ୍ୟ ଆସୁଥିଲେ। "ବନ୍ଦେ ଉତ୍କଳ ଜନନୀ" ସଙ୍ଗୀତ ଗାଇ ଗୋଟିଏ ଟେପ୍ କରିବାକୁ ସେମାନଙ୍କୁ କହିଲି । ଗୋଟିଏ ଟେପ ରେକର୍ଡ଼ର ମଗାଇ ଜେଭିଏସ୍ ରାଓ ମୋ ବୋହୂ, ସେବାରାଣୀ; ମୋ ପୁଅ ବିଭୂତି ଓ ମୁଁ ଚାରିଜଣ ମିଶି ବନ୍ଦେ ଉତ୍କଳ ଜନନୀ ଗାଇଲୁ ଓ ଦୀନବନ୍ଧୁ ସେଠି ତବଲା ବଜାଇଲେ । ମିଳିତ କଣ୍ଠରେ ଏହି ସଙ୍ଗୀତ ଖୁବ୍ ଭଲ ଶୁଣାଗଲା । ସେହି ସଙ୍ଗୀତକୁ ଅନ୍ୟ ଏକ ଟେପ୍‌ରେ ବହୁବାର ରେକର୍ଡ଼ କରାଇ ଏକକାଳୀନ ୨୨ମିନିଟ୍ ଧରି "ବନ୍ଦେ ଉତ୍କଳ ଜନନୀ" ଶୁଣାଇବାର ବ୍ୟବସ୍ଥା

ହେଲା । ୧୯୯୮ ମସିହା ଅପ୍ରେଲ ପହିଲାଦିନ ପ୍ରଥମ କରି କଟକ ଜିଲ୍ଲା ଉତ୍କଳ ସମ୍ମିଳନୀ ପକ୍ଷରୁ ସଭାପତି, ସମ୍ପାଦକ, କୋଷାଧକ୍ଷ ଓ ମୁଁ ଚାରିଜଣ ମୋ ଆମ୍ବାସାଡ଼ର ଗାଡ଼ିରେ ଉତ୍କଳ ସମ୍ମିଳନୀ ବ୍ୟାନର ଲଗାଇ ଏକ ଡାକବାଜି ଯନ୍ତ୍ର ଭଡ଼ାକରି ତହିଁରେ 'ବନ୍ଦେ ଉତ୍କଳ ଜନନୀ' କ୍ୟାସେଟ ଲଗାଇ ଉତ୍କଳ ଗୌରବ ମଧୁସୂଦନଙ୍କ ସମାଧି ପୀଠରେ ଫୁଲମାଳ ଦେବାକୁ ଗଲୁ । ପୂର୍ବରୁ ମୁଁ ଗୋରାକବର ହାଇସ୍କୁଲକୁ ଯାଇ ପ୍ରଧାନ ଶିକ୍ଷକ ଅର୍ଜୁନଚରଣ ବିଶ୍ୱାଳଙ୍କୁ ଆମ ସହିତ ସହଯୋଗ କରିବା ପାଇଁ କହିଥିଲି । ସେ ବଡ଼ ଆଗ୍ରହର ସହିତ ମୋ ପ୍ରସ୍ତାବରେ ଏକମତ ହେଲେ । ସମାଜ ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର, ଲୋକସେବକ ମଣ୍ଡଳର ବରିଷ୍ଠ ସଭ୍ୟ ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ, ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ମୁସ୍ତାଫିଜ ଅହମ୍ମଦ, ଶ୍ରୀ ବିପିନ ବିହାରୀରଥ, ଶ୍ରୀ ଅନ୍ନଦା ପ୍ରସାଦ ରାୟ ଆଦି କଟକ ସହରର ବହୁ ପ୍ରମୁଖ ବ୍ୟକ୍ତିଙ୍କୁ ଗୋରାକବରରେ ମଧୁବାବୁଙ୍କ ସମାଧି ପୀଠରେ ମାଲ୍ୟାର୍ପଣ କରିବାକୁ ନିମନ୍ତ୍ରଣ କରିଥିଲୁ । ଗୋରାକବର ହାଇସ୍କୁଲର ସମସ୍ତ ଛାତ୍ରଛାତ୍ରୀଙ୍କ ଗହଣରେ ଆମର ଏହି ମାଲ୍ୟାର୍ପଣ କାର୍ଯ୍ୟ ଅତ୍ୟନ୍ତ ଉତ୍ସାହ ସହକାରେ ସମ୍ପନ୍ନ ହେଲା । ପ୍ରଥମକରି ଉତ୍କଳ ସମ୍ମିଳନୀ ପକ୍ଷରୁ ଏହି କାର୍ଯ୍ୟ ହେବା ଦେଖି କଟକର ସାହି ବସ୍ତିରେ ମଧ ଏ ଦିଗରେ ଉତ୍ସାହ ସୃଷ୍ଟିହେଲା । ଯେଉଁ ସବୁ ରାସ୍ତାଦେଇ ବନ୍ଦେ ଉତ୍କଳ ଜନନୀ ସଙ୍ଗୀତ ଶୁଣାଇ ଆମେ ଗଲୁ ସେସବୁ ଅଞ୍ଚଳରେ ଭୋରସକାଳୁ ଏହା ଶୁଣି ଲୋକମାନେ ଆନନ୍ଦିତ ହେଉଥିବାର ଅନୁଭବ କଲୁ । ସେହି ମାସର ୨୬ ତାରିଖରେ ଗଜପତି କୃଷ୍ଣଚନ୍ଦ୍ର ଦେବ ଓ ୨୮ ତାରିଖରେ ଉତ୍କଳ ଗୌରବ ମଧୁସୂଦନଙ୍କ ଜୟନ୍ତୀ ମଧ ସମାନ ରୀତିରେ ପାଳିତ ହେଲା । ମୋ ଗାଡ଼ିରେ ବ୍ୟାନର ବାନ୍ଧି, ଉତ୍କଳ ବନ୍ଦନା ଗାନ କରି ଏହି ପ୍ରାତଃସ୍ମରଣୀୟ ଉତ୍କଳ ସମ୍ମିଳନୀ ନେତୃବୃନ୍ଦଙ୍କ ପ୍ରତିମୂର୍ତ୍ତିମାନଙ୍କରେ ବୁଲିବୁଲି ମାଲ୍ୟାର୍ପଣ କରିବା କଟକରେ ପ୍ରଥମକରି ଆରମ୍ଭ ହେଲା । ଫଳରେ ସମ୍ମିଳନୀର କେନ୍ଦ୍ରୀୟ ନେତୃବୃନ୍ଦ ମଧ ଆମ କାର୍ଯ୍ୟକ୍ରମ ଦେଖି ଭୁବନେଶ୍ୱରରେ ଏପରି କରିବା ଆରମ୍ଭ କରିଦେଲେ ।

ଇତି ମଧରେ ସଭାପତି କ୍ଷେତ୍ରମୋହନ ବାବୁଙ୍କ ଦେହ ଖରାପ ହେଲା । ତାଙ୍କ ଜଂଘରେ ଦରଜ ହେଲା । ତେଣୁ ସେ ଛୋଟେଇବାକୁ ଲାଗିଲେ । ଦେହ ପରୀକ୍ଷା କରି ସେ ଔଷଧ ଖାଇବା ଆରମ୍ଭ କଲେ । ମୋତେ କହିଲେ, ଆପଣ ସବୁ କାମ ଚଳାନ୍ତୁ । ଆଉ ମୁଁ ପାରୁନାହିଁ । କହିଲି, ଆପଣ ନିଜ ଶରୀରପ୍ରତି ଧ୍ୟାନଦିଅନ୍ତୁ । ଇତି ମଧରେ ମୋ ସାନ ପୁଅ ଗୋପାଳର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ସେ ଆମେରିକାର ଫୋର୍ଡ଼ କମ୍ପାନୀରେ ଚାକିରୀ କରୁଥାଏ । ନବବିବାହିତା ବୋହୂକୁ ଆମେରିକା ନେବାପାଇଁ ସମସ୍ତ ଆୟୋଜନ କରିବା ଭିତରେ ତାର ଇଂଲଣ୍ଡକୁ ବଦଳି ହୋଇଗଲା । ସେ ଲଣ୍ଡନରେ ପହଞ୍ଚିବା ପରେ ବୋହୂକୁ ନେଇ ତା ପାଖରେ ଛାଡ଼ି ଦେବାକୁ ମୁଁ ଗଲି । ମୋ ଝିଅ

ଦେବଶ୍ରୀ ଯୁକ୍ତରାଷ୍ଟ୍ର ଆମେରିକାର ମିନିଆପଲିସ୍‌ରେ ରହୁଥାଏ । ଏବେ ମଧ୍ୟ ସେଇଠି ସେ ସପରିବାର ରହୁଛି । ମୁଁ ବୋହୂକୁ ଲଣ୍ଡନ୍‌ରେ ଛାଡ଼ି ଝିଅ ପାଖକୁ ଆମେରିକା ଯିବା ଯୋଗାଡ଼ରେ ରହିଲି । ମୋର ଆମେରିକା ଯିବା ଖବର ପାଇ ଶ୍ରୀ ଗୋପାଳକୃଷ୍ଣ ଶ୍ରୀଚନ୍ଦନ ମୋତେ କେନ୍ଦ୍ରୀୟ କାର୍ଯ୍ୟକାରୀ କମିଟି ବୈଠକକୁ ଡକାଇଲେ । ସେଠାରେ ଉପସ୍ଥିତ ସଭ୍ୟମାନେ ଓ ସଭାପତି ଶ୍ରୀ ବକ୍ସିପାତ୍ର ମୋର ଶୁଭକାମନା କରି ଶୀଘ୍ର ଫେରି ଆସିବାକୁ କହିଲେ । ଗୋପାଳବାବୁ କହିଲେ ଆମର କୋଷାଧ୍ୟକ୍ଷ ଆଚାର୍ଯ୍ୟ ଭାବାନନ୍ଦ ଆମେରିକାରେ ପାଞ୍ଚବର୍ଷ ଭିଜିଟିଂ ପ୍ରଫେସର ହୋଇ ଟେନିସିରେ ଅଧ୍ୟାପନା କରୁଥିଲେ । ସେଠାରେ ସେ ଦୁଇଜଣ ଓଡ଼ିଆ ଲୋକଙ୍କୁ ଉତ୍କଳ ସମ୍ମିଳନୀର ସଭ୍ୟ କରିପାରିଥିଲେ । ତେଣୁ ଗୁରୁବାବୁ ଯଦି କିଛିଲୋକଙ୍କୁ ଆମର ସଭ୍ୟଶ୍ରେଣୀଭୁକ୍ତ କରିପାରନ୍ତେ ତାହେଲେ ଉତ୍କଳ ସମ୍ମିଳନୀକୁ ସଭ୍ୟଚାନ୍ଦା ବାବଦ କିଛି ଟଙ୍କା ମିଳିପାରନ୍ତା । ଅର୍ଥାଭାବ ଯୋଗୁଁ ଦୁଇ ନମ୍ବର ୟୁନିଟ୍‌ରେ ଉତ୍କଳ ସମ୍ମିଳନୀ ପାଇଁ ସରକାର ଦେଇଥିବା ଘରକୁ ଯାଇ ହେଉ ନାହିଁ । କାରଣ ସେହି କ୍ୱାର୍ଟରକୁ କାର୍ଯ୍ୟାଳୟ କରାଯିବା ଦିନଠାରୁ ପ୍ରତି ମାସରେ ସରକାରଙ୍କୁ ଏକ ହଜାର ଟଙ୍କା ଭଡ଼ା ଦେବାକୁ ପଡ଼ିବ । ଏବେ ଗୋଦାବରୀଶ ସାହିତ୍ୟ ସଂସଦର ମାସିକ ଦୁଇ ଶହ ଟଙ୍କା ଦେବା ପାଇଁ ଆମର ସମ୍ବଳ ନାହିଁ ବୋଲି ବକ୍ସିପାତ୍ର ବାବୁ ସେତକ ନିଜ ପାଣ୍ଠିରୁ ପଇଠ କରୁଥାନ୍ତି । ମହାସଚିବ ବସନ୍ତବାବୁ କହିଲେ ଆମର ସମ୍ବିଧାନ ଅନୁଯାୟୀ ଦରିଆପାରିରେ ଉତ୍କଳ ସମ୍ମିଳନୀ ଶାଖା ଖୋଲିବା ଯୁକ୍ତି ଯୁକ୍ତ ନୁହେଁ । ସେଥିପାଇଁ ଆମକୁ ସମ୍ବିଧାନ ବଦଳାଇବାକୁ ପଡ଼ିବ । ସମସ୍ତେ ଚୁପ୍ ରହିଲେ । ଦେଖିଲି, ଉତ୍କଳ ସମ୍ମିଳନୀର କର୍ମକର୍ତ୍ତା ହେବା ପାଇଁ ସମସ୍ତେ ଲାଳାୟୀତ । ମାତ୍ର ଅର୍ଥ ଯୋଗାଡ଼ କରିବାରେ କେହି ଉଦ୍ୟମ କରୁନାହାନ୍ତି ।

୧୯୬୦ ମସିହାରୁ ବସନ୍ତବାବୁ, ମହାସଚିବ ଭାବେ କାର୍ଯ୍ୟ କରିଆସୁଛନ୍ତି । ବିଗତ ୪୦ ବର୍ଷ ଧରି ବ୍ରହ୍ମପୁର କିମ୍ବା ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ମଞ୍ଜୁଷା, ଟିକାଲି ବା ଜଳନ୍ତରରେ କିଛି ସଭା କରିଦେଇ 'ସମାଜ' ଜରିଆରେ ଖବର ଛପାଇ ଦେଲେ ତାଙ୍କର କର୍ତ୍ତବ୍ୟ ଶେଷହେଲା ବୋଲି ହୁଏତ ସେ ଆତ୍ମ ସନ୍ତୋଷ ଲାଭ କରୁଥିଲେ । ଓଡ଼ିଶାର ଅନ୍ୟ କୌଣସି ଜିଲ୍ଲାରେ କିମ୍ବା ଝାଡ଼ଖଣ୍ଡ, ମେଦିନୀପୁର ବା ଛତିଶଗଡ଼ ପରି ବିଚ୍ଛିନ୍ନାଞ୍ଚଳରେ ଉତ୍କଳ ସମ୍ମିଳନୀର ବାର୍ତ୍ତା ପ୍ରଚାର କରିବାକୁ ସେତେଟା ସମର୍ଥ ହୋଇ ପାରିନାହାନ୍ତି ।

ଓଡ଼ିଶା ସରକାର ପ୍ରତିବର୍ଷ ଉତ୍କଳ ସମ୍ମିଳନୀକୁ ଦଶ ହଜାର ଟଙ୍କା ଅନୁଦାନ ଦେଉଥିଲେ । ସେ ଟଙ୍କା ଖର୍ଚ୍ଚ କରି ବର୍ଷକୁ ଥରେ ବା ଦୁଇଥର ସଭା ସମିତି ଓ ଖାଇବା ପିଇବା କରିଦେଲେ ତାଙ୍କର କର୍ତ୍ତବ୍ୟ ଶେଷ ହେଲା ବୋଲି ଜଣା ପଡୁଥିଲା । ରାଧାନାଥ

ରଥଙ୍କ ପରେ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ସଭାପତି ହେବାଫଳରେ ବ୍ରହ୍ମପୁର ସହରରୁ "ଉତ୍କଳ ସମ୍ମିଳନୀ" କାର୍ଯ୍ୟାଳୟ ଭୁବନେଶ୍ୱରକୁ ସ୍ଥାନାନ୍ତର ହେଲା । ମାତ୍ର ଓଡ଼ିଆ ଜାତିର ଏହି ସର୍ବପୁରାତନ ଅନୁଷ୍ଠାନ ଲାଗି ଏକ ପାଣ୍ଠି ସୃଷ୍ଟିକରିବାକୁ କେହି ଏ ପର୍ଯ୍ୟନ୍ତ ଚିନ୍ତା କରି ନଥିଲେ ମଧ୍ୟ ସେ ଦିଗରେ ପ୍ରାୟ ଚେଷ୍ଟା କରିନଥିଲେ । ସ୍ୱକୀୟ ପାଣ୍ଠି ଅଭାବରେ କୌଣସି ଅନୁଷ୍ଠାନ ତିଷ୍ଠିରହିବା ଅସମ୍ଭବ । ସେଥିଲାଗି ଉତ୍କଳ ସମ୍ମିଳନୀ ଏପର୍ଯ୍ୟନ୍ତ କେବଳ କାଗଜ କଲମରେ ତିଷ୍ଠି ରହିଥିଲା । ଫଳରେ ଆମର ଭଡ଼ା ଘରଟିଏ ନେଇ ପାରିବାର ସାମର୍ଥ୍ୟ ନ ଥିଲା । ତେଣୁ ଆମେରିକାର ଓଡ଼ିଆ ବନ୍ଧୁମାନଙ୍କଠାରୁ କିଛି ଚାନ୍ଦା ସଂଗ୍ରହ କରି ଆଣିବାକୁ ମୁଁ ଚିନ୍ତା କରୁଥିଲି । କେବଳ ଗୋପାଳକୃଷ୍ଣ ଶ୍ରୀଚନ୍ଦନଙ୍କୁ ଛାଡ଼ି ଦେଲେ ଆଉକେହି ମୋତେ ଏଥିପାଇଁ କିଛି କହିନଥିଲେ । ଗୋପାଳକୃଷ୍ଣ ବାବୁ ମୋତେ ଚୁପ୍ କରି କହିଲେ, ଆପଣ ଏ ଦିଗରେ ଚେଷ୍ଟା କରିବେ । ଆମ ହାତରେ ପଇସାଟିଏ ନ ଥାଇ ସମ୍ବିଧାନ ବା ନିୟମ କାନୁନ୍ କଥା କହିଲେ ଚଳିବ ନାହିଁ । କହିଲି, ଆପଣ ମୋତେ ଗୋଟିଏ ରସିଦ ବହି ଦେଇଥାନ୍ତୁ । କିଛି ସଭ୍ୟ କରିବା ପାଇଁ ମୁଁ ଚେଷ୍ଟା କରିବି ।

# ଆମେରିକାରେ ଉତ୍କଳ ସମ୍ମିଳନୀ

ଆମେରିକା ଯିବାକୁ ଭୁବନେଶ୍ୱର ବିମାନଘାଟୀରେ ପହଞ୍ଚିବା ପରେ ଗୋପାଳକୃଷ୍ଣ ବାବୁ ଉତ୍କଳ ସମ୍ମିଳନୀର ଗୋଟିଏ ରସିଦବହି ଆଣି ପହଞ୍ଚିଗଲେ । କହିଲେ ଏଥିରେ ପନ୍ଦରଟି ରସିଦ ଅଛି । ଆପଣ ଅନ୍ତତଃ ପନ୍ଦରଜଣ ସଭ୍ୟ କରିପାରିବେ । କହିଲି ଆଚାର୍ଯ୍ୟ ଭାବାନନ୍ଦ ପାଞ୍ଚ ବର୍ଷରେ ଦୁଇଜଣ ସଭ୍ୟ କରିଥିଲେ । ମାତ୍ର ଚାରିମାସରେ ମୋ ଦ୍ୱାରା କ'ଣ ହୋଇ ପାରିବ ? ସେ ହସିଦେଇ କହିଲେ ଚେଷ୍ଟାକରନ୍ତୁ, ଯାହା ହେବ । କହିଲି, ଜାତି ଯିବ, ପେଟ ପୂରିବ ନାହିଁ । ଉତ୍କଳ ସମ୍ମିଳନୀ ପାଇଁ ଲକ୍ଷାଧିକ ଟଙ୍କା ଆବଶ୍ୟକ । ଆମେରିକାରେ ଯଦି ପନ୍ଦର ଜଣ ସଭ୍ୟସଭ୍ୟା ହେବାକୁ ରାଜି ହେବେ ତାହେଲେ ସେମାନଙ୍କଠାରୁ କେତେ ବା ଆଜୀବନ ସଭ୍ୟ ଚାନ୍ଦା ମିଳିପାରିବ ? ଶ୍ରୀଚନ୍ଦନବାବୁ କହିଲେ, ଆମର ଏଠି ଆଜୀବନ ସଭ୍ୟ ଚାନ୍ଦା ଏକ ଶହ ଟଙ୍କା । ସେଠି ଆପଣ ଜଣପିଛା ଦଶ କୋଡ଼ିଏ ଡଲାର ଆଦାୟ କରିବାକୁ ଚେଷ୍ଟା କରିବେ । ଯାହାକିଛି ମିଳିବ ଆମ କାମରେ ଆସିବ । ଏତିକିବେଳେ ମୋ ମନକୁ ଆସିଲା, ଆମେରିକାରେ ଉଭୟ ସ୍ୱାମୀ ସ୍ତ୍ରୀ ସଦସ୍ୟ ହେବାକୁ ଯଦି ଆଗ୍ରହ ପ୍ରକାଶ କରିବେ ତା'ହେଲେ ଦମ୍ପତିଙ୍କ ସଦସ୍ୟତା ପାଇଁ ଚାଳିଶ ଡଲାର ଆଣିପାରିବା । ଗୋପାଳକୃଷ୍ଣବାବୁ କହିଲେ ଏକକ ସଭ୍ୟ ପାଇଁ ଆପଣ ୨୫

ଡଲାର ସଭ୍ୟଚାନ୍ଦା ଆଦାୟ କରିପାରନ୍ତି । ସମସ୍ତଙ୍କଠାରୁ ବିଦାୟ ନେଇ ଦିଲ୍ଲୀ ଅଭିମୁଖୀ ବିମାନରେ ବସି ପଡ଼ିଲି । ଦିଲ୍ଲୀରୁ ପୁଣି ଲଣ୍ଡନ୍ ଆସି ସେଠାରେ ବୋହୂକୁ ପହଞ୍ଚାଇ ପୁଅପାଖରେ ପନ୍ଦରଦିନ ଲଣ୍ଡନରେ ରହିଲି ।

ମୋ ସାନ ପୁଅ ଗୋପାଳ ଫୋର୍ଡ଼ କମ୍ପାନୀ ପାଇଁ ସେଠି କାମ କରୁଥାଏ । ମୋର ଗୋଟିଏ ଶାଳୀ (ଡଲି) ତା ପରିବାର ସହିତ ଲଣ୍ଡନରେ ରହେ। ଆମ ସୁପ୍ରିମ୍‌କୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ଗୋପାଳବଲ୍ଲଭ ପଟ୍ଟନାୟକଙ୍କର ସେ ନିଜ ଶାଳୀ । ମୋ ସ୍ତ୍ରୀଙ୍କର ମାମୁଁ ଝିଅ ଭଉଣୀର ସ୍ୱାମୀ ଗୋପାଳବାବୁ ମୋର ଅନ୍ୟତମ ସଢୁ । ଡଲି ଓ ତାର ସ୍ୱାମୀ ଦୁହେଁ ଡାକ୍ତର । ତାଙ୍କର ଏକମାତ୍ର ପୁଅ ମଧ୍ୟ ଡାକ୍ତରୀ ପଢୁଥାଏ । ଲଣ୍ଡନଠାରୁ ଦୁଇ ଶହ ମାଇଲ ଦୂରରେ ସେମାନେ ରହନ୍ତି । ଡଲି ଆମକୁ ତା ଘରକୁ ଯିବାକୁ ନିମନ୍ତ୍ରଣ କଲା । ପୁଅ ବୋହୂଙ୍କ ସହିତ ମୁଁ ତାପାଖକୁ ଗଲି । ଖାଇବା ଟେବୁଲରେ ସେ ମୋତେ ପଚାରିଲା, କେତେ ଦିନ ଲଣ୍ଡନରେ ରହିବ ? କହିଲି, ଦୁଇ ଦିନ ରହି ସାରିଲିଣି । ଆଉ ମାତ୍ର ୧୩ ଦିନ ବାକୀ ଅଛି । ପୁଅ କହିଲା ବାପାଙ୍କୁ ମୁଁ ସ୍କଟ୍‌ଲାଣ୍ଡ ବୁଲାଇ ଆଣିବି। ଡଲି କହିଲା, ଫେରିଲା ବେଳେ ଏଠି ଛାଡ଼ି ଦେଇ ଯା । ମୋ ପାଖେ ୨/୩ ଦିନ ସେ ରହନ୍ତୁ । କହିଲି, ଗୋଟାଏ ସର୍ତ୍ତରେ ତୁମ ପାଖେ ରହିବି । ଏଠି ରହୁଥିବା ଓଡ଼ିଆ ମାନଙ୍କୁ ଏକାଠି କରି ତୁମେ ଯଦି ଏକ ବନ୍ଧୁ ମିଳନ କରିପାରନ୍ତ, ତା ହେଲେ ଖୁବ୍ ମଜ୍ଜା ଲାଗନ୍ତା । ଡଲି ହସି ଉଠି, କହିଲା, ଆମେ ଏଠି ଯେତିକି ଓଡ଼ିଆ ବସିଛୁ ସେମାନଙ୍କୁ ଦେଖି କ'ଣ ତୁମର ମନବୋଧ ହେଉ ନାହିଁ ? ତୁମର ଆହୁରି ଓଡ଼ିଆ ଲୋକ ଦରକାର !

ମୋ ବୋହୂ କହିଲା, ଆପଣ ଜାଣି ନାହାନ୍ତି ଏଥି ଭିତରେ ବାପା ଉତ୍କଳ ସମ୍ମିଳନୀର ଜଣେ ନେତା ହୋଇଯାଇଛନ୍ତି । ସେ କଟକରେ ଉତ୍କଳ ସମ୍ମିଳନୀ କାମରେ ଲାଗି ପଡ଼ିଛନ୍ତି । ଡଲି କହିଲା, ଏଠି ସେଭଳି ଚିନ୍ତା ପରିହାର କର । ଏଠି ଓଡ଼ିଆମାନେ ପାଖାପାଖି ରହନ୍ତି ନାହିଁ । ଅଧିକାଂଶ ଓଡ଼ିଆ ଏଠି ଡାକ୍ତର ଅଛନ୍ତି । ଇଂଲଣ୍ଡର ବିଭିନ୍ନ ସ୍ଥାନରେ ଗଣି ବସିଲେ ପ୍ରାୟ ଦୁଇ ଶହ ଓଡ଼ିଆ ଡାକ୍ତର ମିଳିବେ । ଆମ ଭିତରେ ଦୂରତା ୫୦/୧୦୦ ବା ଦେଢଶହ ମାଇଲ୍ । ଅବଶ୍ୟ ବର୍ଷରେ ଥରେ ବା ଦୁଇଥର ଆମେ ସବୁ ଏକାଠି ହେଉ । ତୁମେ ଯଦି ଏଠି ଛଅମାସ ରହିବ ତାହେଲେ ଓଡ଼ିଆଙ୍କ ସମାବେଶ ହୁଏତ ଦେଖିପାରିବ । ତା ହେଲେ ତୁମେ କ'ଣ ଏଇ ଓଡ଼ିଆ ସମାବେଶ କରିବ ବୋଲି ଆମେରିକା ଯାଉଛ ? କହିଲି, ନାଇମ ! ସେମିତି ଗୋଟିଏ କହିଦେଲି । ଡଲି ହସି ହସି କହିଲା, ଏଠି ତ ପୁଅ ବୋହୂଙ୍କୁ ଛାଡ଼ି ଯାଉଛ ? ସବୁ ଓଡ଼ିଆ ସମାବେଶରେ ବେଳେବେଳେ ଏଠି ପ୍ରାୟ କଳିଗୋଳ ବି ହୁଏ । ଉତ୍କଳ ସମ୍ମିଳନୀ କଥା କହିଲା ବେଳେ କେହି ଯଦି ତୁମକୁ ବିରୋଧ କରେ, ତାହେଲେ ତୁମ ପିଠି ଆଉଁସିବାକୁ ପାଖରେ କେହି ନ ଥିବେ ।

ଡଲି ଘରେ ଖାଇପିଇ ରାତ୍ରି ଯାପନ କରିସାରି ତା'ପରଦିନ ଆମେ ସ୍କଟଲାଣ୍ଡ ଅଭିମୁଖେ ବାହାରିଲୁ । ବାଟରେ ପୁଅ କହିଲା, ବାପା ଆପଣ ଏସବୁ କରନ୍ତୁ ନାହିଁ । ଓଡ଼ିଆ ମାନେ ବଙ୍ଗାଳି, ତେଲୁଗୁ, ତାମିଲ, ଗୁଜୁରାଟି ବା ପଞ୍ଜାବୀମାନଙ୍କ ପରି ସ୍ୱାଭିମାନୀ ନୁହଁନ୍ତି । ସେମାନଙ୍କ ଭିତରେ ଯେପରି ଏକତା ଥାଏ, ଓଡ଼ିଆଙ୍କ ଭିତରେ ତାହା ନାହିଁ । ତେଣୁ ଏସବୁ କଥା କହି ଆପଣ ଅପମାନିତ ହୋଇ ପାରନ୍ତି । ଆମେରିକାରେ ଚାରିମାସ ରହଣି ଭିତରେ ଆପଣ ବିଭିନ୍ନ ଜାଗା ବୁଲାବୁଲି କରି ଖୁସିରେ ଦିନ କଟାଇ ଦିଅନ୍ତୁ । ଉତ୍କଳ ସମ୍ମିଳନୀ ବିଷୟରେ ଚିନ୍ତାକରି ମନକୁ ଭାରାକ୍ରାନ୍ତ କରନ୍ତୁ ନାହିଁ । ଜୋକ ମୁହଁରେ ଲୁଣ ଦେଲା ପରି ମୁଁ ପୂରା ଚୁପ୍ ରହିଲି ।

ଖବର ମିଳିଲା ଯେ, ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଶ୍ରୀ ଜ୍ୟୋତିବସୁ ଲଣ୍ଡନ ଆସିଛନ୍ତି । ସେ ବ୍ରିଟିଶ ପାର୍ଲାମେଣ୍ଟର ଗୋଟିଏ ହଲ୍‌ରେ ଭାଷଣ ଦେବେ । ପୁଅକୁ କହିଲି, ମୋତେ ସେଇ ସଭାରେ ଛାଡ଼ି ଦେବାକୁ । ସେ ମୋତେ ନେଇ ପାର୍ଲାମେଣ୍ଟ ପାଖରେ ଛାଡ଼ି ତା ଅଫିସ୍‌କୁ ଚାଲିଗଲା । ବ୍ରିଟିଶ୍ ପାର୍ଲାମେଣ୍ଟର ସେହି ନିର୍ଦ୍ଦିଷ୍ଟ ହଲ୍‌କୁ ଯାଇ ଦେଖିଲି ଭାରତୀୟ ମାନଙ୍କ ଦ୍ୱାରା ହଲ୍‌ଟି ଭରପୂର ହୋଇଛି । ମୁଁ ଗ୍ୟାଲେରୀର ଶେଷ ଧାଡ଼ିରେ ଜାଗା ପାଇଲି । ଯଥା ସମୟରେ ଜ୍ୟୋତିବସୁ ଆସି ପହଞ୍ଚିଲେ । ଲଣ୍ଡନ୍‌ରେ ଥିବା ଭାରତୀୟ ରାଷ୍ଟ୍ରଦୂତ ତାଙ୍କ ଆସିବାର ଉଦ୍ଦେଶ୍ୟ ବର୍ଣ୍ଣନା କରି ଭାରତବର୍ଷର ଜଣେ ବୟୋଜ୍ୟେଷ୍ଠ ରାଜନୀତିଜ୍ଞ ଭାବେ ଶ୍ରୀ ବସୁଙ୍କର କରିସ୍ମା ବିଷୟରେ ସୂଚନା ଦେବା ପରେ ଶ୍ରୀ ବସୁ ଶୁଦ୍ଧ ବଙ୍ଗଳାରେ ତାଙ୍କର ଭାଷଣ ଆରମ୍ଭ କଲେ । କରତାଳିରେ ହଲ୍‌ଟା ଫାଟି ପଡୁଥାଏ । ପ୍ରାୟ ଏକ ଘଣ୍ଟା କାଳ ବଙ୍ଗଳାରେ ଭାଷଣ ଦେଇସାରି ଶ୍ରୀବସୁ ବିଦାୟ ନେଲେ । ଅନ୍ୟ କେହି ଭାରତୀୟ ନେତା ହୋଇଥିଲେ ଇଂରାଜୀରେ ଭାଷଣ ଦେଇଥାନ୍ତେ । ମାତ୍ର ମାତୃଭାଷା ବଙ୍ଗଳା ପ୍ରତି ପ୍ରତ୍ୟେକ ବଙ୍ଗୀୟ ବ୍ୟକ୍ତିଙ୍କର ପ୍ରବଳ ଆକର୍ଷଣ ସେମାନଙ୍କୁ ସମଗ୍ର ବିଶ୍ୱରେ ଏକ ସ୍ୱାଭିମାନୀ ଜାତି ଭାବେ ପରିଚିତ କରିଛି । ସେହି ଜାତିର ନେତା ଜ୍ୟୋତିବସୁ ବା ଏଥିରୁ ବାଦପଡ଼ନ୍ତେ କିପରି ? ଶହଶହ ବର୍ଷ ଧରି ବଙ୍ଗୀୟ ମାନଙ୍କ ସଂସ୍ପର୍ଶରେ ରହି ମଧ୍ୟ ଓଡ଼ିଆମାନେ ଏଥିରୁ କିଛି ହେଲେ ଶିଖିବାର ପ୍ରୟାସ କରି ନାହାନ୍ତି । ନିଜ ମାତୃଭାଷାକୁ ହୀନ ଦୃଷ୍ଟିରେ ଦେଖିବା ଆମର ଜାତିଗତ ପ୍ରକୃତି କହିବା ଭୁଲ୍ ହେବ ନାହିଁ ।

ଲଣ୍ଡନ୍‌ରେ ପନ୍ଦରଦିନ କଟାଇ ଯୁକ୍ତରାଷ୍ଟ୍ର ଆମେରିକା ଅଭିମୁଖେ ବିମାନ ଯାତ୍ରା କଲି । ବିମାନରେ ବସିବାପରେ ଲଣ୍ଡନରେ ପୁଅ ଓ ଶାଳୀଙ୍କ ଠାରୁ ଶୁଣିଥିବା କଥା ମନେପଡ଼ି ମନ ଭିତରେ ହତାଶା ଓ ଦୁଃଖ ଭରିଗଲା । ଗୋପାଳକୃଷ୍ଣ ବାବୁ ଯେଉଁ ରସିଦ ବହିଟି ଦେଇଛନ୍ତି ହୁଏତ ସେଇଟା ତାଙ୍କୁ ଫେରାଇ ଦେବାକୁ ହେବ । ସମସ୍ତେ ଯଦି ମୋତେ ଏଇ ଭଳି କହିଲେ ତାହେଲେ ମୋର ଆଉ ଉପାୟ କ'ଣ ? ମନ ଭିତରେ

ଗୋଟାଏ ଉପାୟ ଜଳଜଳ ଦେଖାଗଲା । ଲଣ୍ଡନ ଛାଡ଼ିଲା ବେଳେ ପୁଅ ମୋତେ ଖର୍ଚ୍ଚ କରିବାକୁ ପାଞ୍ଚଶହ ଡଲାର ଦେଇଛି । ସେଠି ପହଞ୍ଚିଲେ ଝିଅ ମଧ୍ୟ କିଛି ପଇସାଦେବ । ତେଣୁ ସେଇପଇସାରେ ପୁଅ ବୋହୂ ଓ ଝିଅ ଜ୍ୱାଇଁଙ୍କୁ ଉତ୍କଳ ସମ୍ମିଳନୀର ସଭ୍ୟସଭ୍ୟା କରି ୪ ଖଣ୍ଡ ରସିଦ କାଟି ଦେବି । ଡଲାସ୍‌ରେ ମୋ ବଡ଼ ଶାଳୀର ଦୁଇ ଝିଅ ମୋତେ ତାଙ୍କ ପାଖକୁ ନେଇଯିବେ । ସେମାନେ ମଧ୍ୟ ମୋ ପାଇଁ କିଛି ଖର୍ଚ୍ଚ କରିବାକୁ ଚାହିଁବେ । ଅନ୍ୟ କିଛି ଖର୍ଚ୍ଚ ନ କରି ସେମାନଙ୍କ ନାମରେ ଚାରିଟି ରସିଦ କାଟିହେବ । ତା ଛଡ଼ା ମୋର ବନ୍ଧୁ ଶୀତକଣ୍ଠ ଦାଶ ଓ ତାଙ୍କ ପୁଅ ବୋହୂଙ୍କୁ ସଭ୍ୟସଭ୍ୟା କରିବାକୁ ଅନୁରୋଧ କରିବି। ସେ ନିଶ୍ଚୟ ମୋ କଥାରେ ରାଜିହେବେ । ଆଉ ତିନିଖଣ୍ଡ ରସିଦ ଯେମିତି ହେଲେ କାଟିଦେଇ ଗୋପାଳ ବାବୁଙ୍କୁ ଅତି କମ୍‌ରେ ତିନିଶହ ଡଲାର ଦେଇପାରିବି । ମୋ ଭାବନା ଫଳପ୍ରସୂ ହେବାପାଇଁ ମା ଉତ୍କଳଜନନୀ ଓ ପ୍ରଭୁ ଜଗନ୍ନାଥଙ୍କୁ ପ୍ରାର୍ଥନା କଲି ।

ଯୁକ୍ତରାଷ୍ଟ୍ର ଆମେରିକାର ମିନିଆପଲିସ୍‌ରେ ପହଞ୍ଚି ଝିଅ ଦେବଶ୍ରୀ ପାଖେ ରହିଲି । ସେଇ ସହରରେ ବନ୍ଧୁ ଡକ୍ଟର ଶୀତକଣ୍ଠ ଦାଶ ରହନ୍ତି । ପଶୁ ଚିକିତ୍ସା ମହାବିଦ୍ୟାଳୟରେ ସେ ମୋଠାରୁ ଚାରିବର୍ଷ କନିଷ୍ଠ । ୧୯୬୪ ମସିହାରେ ମୁଁ ଆମେରିକା ଆସିବା ପରେ ତାଙ୍କପାଇଁ ଓ ଡାକ୍ତର ହରଲାଲ୍ ଚୌଧୁରୀଙ୍କ ପାଇଁ ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟରେ ନାମ ଲେଖାଇବାର ସୁବିଧା କରାଇ ପାରିଥିଲି । ମୁଁ ଉଚ୍ଚଶିକ୍ଷା ସାରି ଘରକୁ ଫେରିଯିବା ପରେ ଏମାନେ ଆସି ସେହି ବିଶ୍ୱବିଦ୍ୟାଳୟରେ ପଢ଼ିଲେ । ଶୀତକଣ୍ଠବାବୁ ମୋର ଉପଦେଷ୍ଟା (ଆଡ୍‌ଭାଇଜର୍) ଡକ୍ଟର ଭୋକର୍‌ଙ୍କ ଅଧୀନରେ ଗବେଷଣା କରି ଏମ୍.ଏସ୍ ଓ ପି.ଏଚ୍.ଡ଼ି ଡିଗ୍ରୀ ହାସଲ କରି ଏଇଠି ଅଛନ୍ତି । ମୋ ଆସିବା ସମ୍ବାଦ ପାଇ ସେ ଆସି ମୋତେ ତାଙ୍କ ଘରକୁ ନେଇଗଲେ । ତାଙ୍କ ସହିତ କଥା ହେଲା ବେଳେ ମନର ଆବେଗରେ ଉତ୍କଳ ସମ୍ମିଳନୀ କଥା ବଖାଣି ବସିଲି । ପୂର୍ବାପର ସଙ୍ଗତି ସହିତ ଓଡ଼ିଶା ଗଠନରେ ଉତ୍କଳ ସମ୍ମିଳନୀର ଭୂମିକା ବିଷୟରେ ସବୁ କଥା କହିବା ପରେ ସେ କହିଲେ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଏଥି ଭିତରେ ମୋ ସହିତ କାମ କରୁଥିବା ଜଣେ ଓଡ଼ିଆ ଯୁବକର ଝିଅକୁ ବର୍ଷେ ପୂରିବା ଉପଲକ୍ଷେ ତା ଘରେ ଏକ ଭୋଜି ହେବ । ସେଇଠି ଆପଣ ଏ ବିଷୟ ଆଲୋଚନା କରିବେ । ଉପସ୍ଥିତ ଲୋକଙ୍କର ପ୍ରତିକ୍ରିୟା ବେଶ୍ ଜାଣିପାରିବା । ତାପରେ ଆପଣ ଅନ୍ୟ ସବୁ ସହରରେ ଓଡ଼ିଆ ମାନଙ୍କୁ ଏକଥା କହିବାର ସାହସ ବାନ୍ଧି ପାରିବେ । କହିଲି, ଆପଣ ଏକଥା ଗୁପ୍ତ ରଖନ୍ତୁ । ମୋ ଝିଅଜ୍ୱାଇଁ ଜାଣିଲେ ପୁଅକୁ ସବୁ କଥା କହିଦେବେ । ସେମାନେ ସମସ୍ତେ ମିଶି ମୋତେ ଏ ବିଷୟରେ ବାରଣ କରିପାରନ୍ତି । ଶୀତକଣ୍ଠ ବାବୁ କହିଲେ ସେଦିନ ଆପଣଙ୍କ ପୁଅ ବୋହୂ ମଧ୍ୟ

ସେଠାରେ ଥିବେ । କହିଲି, ସେମାନେ ମଧ୍ୟ ସମସ୍ତଙ୍କ ସାଙ୍ଗେ ବସି ମୋ କଥା ଶୁଣିବେ । ସମସ୍ତଙ୍କ ଭିତରେ ସେଠି ମୋତେ କିଛି କହିବାକୁ ହୁଏତ ତାଙ୍କର ସାହସ ହେବ ନାହିଁ ।

ଶୀତକଣ୍ଠ ବାବୁ ମୋତେ ଭରସା ଦେଇଥିବାରୁ ମୋର ସାହସ ବଢ଼ିଗଲା । ଭାବିଲି, ସେହି ବନ୍ଧୁମିଳନ ଭୋଜିରେ ଯଦି ଲୋକେ ମୋ କଥା ଗ୍ରହଣ କରନ୍ତି, ତେବେ ପନ୍ଦରଟି ରସିଦ ମଧ୍ୟ ସେଇଠି ସରିଯାଇପାରେ । ତେଣୁ ଅସଲ ରସିଦ ନ ଦେଇ ରସିଦଗୁଡ଼ିକର ଫଟୋକପି (ଜେରକ୍ସ) କରି ସେହି ରସିଦ ଗୁଡ଼ିକ ସେଠାରେ ବ୍ୟବହାର କରିବାକୁ ମନସ୍ଥ କଲି । ଅସଲ ରସିଦ ବହିଟା ଶେଷ ପର୍ଯ୍ୟନ୍ତ ସାଇତି ରଖିବା ଉଚିତ ହେବ । କୋଡ଼ିଏ ତିରିଶଟି ଫଟୋ କପି ତିଆରି କରିନେଲି । ମୋ ଝିଅ କହିଲା; ଶୀତକଣ୍ଠ ମଉସାଙ୍କ ସହିତ କାମ କରୁଥିବା ମିଶ୍ରବାବୁ ତାଙ୍କର ଝିଅ ଜନ୍ମ ଦିନକୁ ଆମକୁ ନିମନ୍ତ୍ରଣ କରିଛନ୍ତି । ଆପଣଙ୍କୁ ସାଙ୍ଗରେ ନେଇଯିବାକୁ ବହୁତ ଅନୁରୋଧ କରିଛନ୍ତି । ଏକଥା ଶୁଣି ମୋତେ ଖୁସି ଲାଗିଲା । ଦୁଇଦିନ ପରେ ମିଶ୍ରବାବୁଙ୍କ ଝିଅର ଜନ୍ମଦିନ ପାଇଁ ତାଙ୍କ ଘରକୁ ଗଲୁ । ଶୀତକଣ୍ଠ ବାବୁ ଆଗରୁ ପହଞ୍ଚିଯାଇଥିଲେ । ଲୁଚେଇକରି ତାଙ୍କୁ ରସିଦ ଗୁଡ଼ିକ ଦେଇଦେଲି । ସେଦିନ ପ୍ରାୟ ଚାଳିଶରୁ ଅଧିକ ଲୋକ ସେମାନଙ୍କ ଛୁଆପିଲାଙ୍କ ସହିତ ମିଶ୍ରବାବୁଙ୍କ ଘରେ ପହଞ୍ଚିଲେ । ସମସ୍ତଙ୍କୁ ଜଳଖିଆ ଓ ମୃଦୁ ପାନୀୟ ଦିଆଗଲା । ତାପରେ ତାଙ୍କ ଘର ସାମନାରେ ଥିବା ପଡ଼ିଆରେ ଯୁବକ ଯୁବତୀମାନେ ଖେଳିବା ଆରମ୍ଭ କଲେ । ଶୀତକଣ୍ଠ ବାବୁ ମୋତେ ବୟସ୍କ ଲୋକମାନଙ୍କ ସହିତ ପରିଚୟ କରାଇଦେଲେ । ୧୯୬୪ ମସିହାରେ ମୁଁ ଆମେରିକା ଆସି ଉଚ୍ଚଶିକ୍ଷା ପାଇସାରି ଓଡ଼ିଶା ଫେରି ଯାଇଛି ଶୁଣି ପ୍ରାୟ ସଭିଏଁ ଆଶ୍ଚର୍ଯ୍ୟ ହେଲେ । କାରଣ ସେଠାରେ ଯେତେ ଲୋକ ଥିଲେ ସମସ୍ତେ ମୋ ଆସିବାର ବହୁବର୍ଷ ପରେ ଆସି ଏଠି ଚାକିରୀ କରିଛନ୍ତି । ଆମେରିକାର ଦୁଇଟି ବିଶ୍ୱ ବିଦ୍ୟାଳୟରେ ମୁଁ ପାଠ ପଢ଼ିସାରି ଫେରିଯିବାଟା ହୁଏତ ଅନ୍ୟମାନଙ୍କୁ ଅଜବ ମନେ ହେଲା । ସେମାନଙ୍କ ଭିତରୁ ଅନେକ ମୋତେ ଫେରିଯିବାର କାରଣ ପଚାରି ଓଡ଼ିଶାରେ ସରକାରୀ ଚାକିରୀ କରିବାର ବିଗତ ତିରିଶ ବର୍ଷର ଅନୁଭୂତି କହିବା ପାଇଁ ଅନୁରୋଧ କଲେ । ଶୀତକଣ୍ଠ ବାବୁ କହିଲେ, ତାହେଲେ, ସମସ୍ତଙ୍କୁ ଡାକି ଦେବା । ସମସ୍ତେ ଥାଇ ଗୁରୁବାବୁ ତାଙ୍କର ଅନୁଭୂତି କହିବେ । ସାଙ୍ଗେ ସାଙ୍ଗେ ସମସ୍ତଙ୍କୁ ଡକାଇ ଅଣାଗଲା । ପ୍ରଥମେ ଶୀତକଣ୍ଠ ବାବୁ ମୋ ବିଷୟରେ କହିଲେ । ମୋ ପରେ ସେ ଆସି ସାଉଥ୍‌ଡାକୋଟା ବିଶ୍ୱବିଦ୍ୟାଳୟରେ ପଢ଼ିଲାବେଳେ ତାଙ୍କୁ ମୋ ବିଷୟରେ ଅନେକ ମଜ୍ଜା କଥା ମୋତେ ପାଠ ପଢ଼ାଇଥିବା ପ୍ରଫେସର ମାନେ କହିଥିଲେ । ତେଣୁ ସବୁ କଥା କହି ସେ ସମସ୍ତଙ୍କୁ ହସାଇଲେ । ତାପରେ ଓଡ଼ିଶାରେ ମୋ ଅନୁଭୂତି ବିଷୟରେ ମୁଁ କହିବାକୁ ଆରମ୍ଭ କଲି । ମୋ ଚାକିରୀ ଜୀବନ, ଓଡ଼ିଶାର ସାମାଜିକ ଅବସ୍ଥା;

ରାଜନୈତିକ ଚିତ୍ର ଆଦି ବିଷୟରେ କହିସାରି ଓଡ଼ିଆ ମାନଙ୍କ ଜାତୀୟ ଜୀବନ ଓ ଉତ୍କଳ ସମ୍ମିଳନୀ ବିଷୟରେ କହିଲି । ସରକାରୀ ଚାକିରୀ ଛାଡ଼ିବା ପରେ ଉତ୍କଳ ସମ୍ମିଳନୀ ପାଇଁ ମୁଁ କାହିଁକି କାର୍ଯ୍ୟକରୁଛି ସେ ବିଷୟରେ କହିବାବେଳେ ଆମେରିକାରେ ଥାଇ ମଧ ଏଠାକାର ଓଡ଼ିଆ ମାନଙ୍କର ଓଡ଼ିଆତ୍ୱର ସୁରକ୍ଷାଲାଗି ସମସ୍ତଙ୍କୁ ଅନୁରୋଧ କଲି । ଆମେରିକାର ପ୍ରତି ସହରରେ ଓଡ଼ିଆ ମାନଙ୍କର ଏକତାରକ୍ଷା ସହିତ ଉତ୍କଳ ସମ୍ମିଳନୀ ଶାଖା ଗଠନକରିବା ଉଚିତହେବ ବୋଲି ମୁଁ କହିବା ପରେ ମୋତେ ଶୀତକଣ୍ଠବାବୁ, ଡକ୍ଟର ଶରତ କୁମାର ମହାପାତ୍ର ଓ ଦୁର୍ଗାପ୍ରସାଦ ପଣ୍ଡା ସମର୍ଥନ କରି ଏଠାରେ ଥିବା ସବୁଲୋକ ଉତ୍କଳ ସମ୍ମିଳନୀର ସଭ୍ୟସଭ୍ୟା ହେବା ପାଇଁ ଅନୁରୋଧ କଲେ । ଆଜୀବନ ସଦସ୍ୟ ହେବାକୁ କୋଡ଼ିଏ ଡଲାର ଚାନ୍ଦା ଦେବାକୁ ହେବ । ପ୍ରଥମେ ଶୀତକଣ୍ଠ ବାବୁ ଓ ତାଙ୍କ ସ୍ତ୍ରୀ ସଭ୍ୟସଭ୍ୟା ହେବାକୁ ଇଛା ପ୍ରକାଶକଲେ । ତାପରେ ଶରତବାବୁ, ଦୁର୍ଗାପ୍ରସାଦ ପଣ୍ଡା, ମୋ ଝିଅ ଜ୍ୱାଇଁ, ଆଜି ଆତିଥ୍ୟ ଦେଉଥିବା ମିଶ୍ରବାବୁ, ଶୀତକଣ୍ଠ ବାବୁଙ୍କ ପୁଅବୋହୂ ଆଦି ପ୍ରାୟ ୨୦/୨୨ ଜଣ ସଭ୍ୟ ସଭ୍ୟା ହେବାକୁ ଆଗ୍ରହ ପ୍ରକାଶ କଲେ । ସଭିଏଁ ଚେକ୍ ଦେବାପାଇଁ ଆଗ୍ରହ ପ୍ରକାଶ କରିବାରୁ କହିଲି, ଉତ୍କଳ ସମ୍ମିଳନୀ ନାମରେ ଚେକ୍ ଦିଅନ୍ତୁ । ସେସବୁ ନେଇ ଓଡ଼ିଶାରେ ଭଙ୍ଗାଇବାକୁ ଚେଷ୍ଟା କରିବି । ତେଣୁ ସଭିଏଁ ଉତ୍କଳ ସମ୍ମିଳନୀ ନାମରେ ଚେକ୍ ଲେଖିଲେ । ଏତକ ଚେକ୍ ନେଇ ଶୀତକଣ୍ଠ ବାବୁଙ୍କୁ ଦେଇ କହିଲି, ସବୁତକ ଆପଣ ରଖନ୍ତୁ । ମୁଁ ଗଲା ବେଳେ ସେସବୁ ନେଇ ଯିବି । ସେ କହିଲେ, ଆସନ୍ତା କାଲି ମୁଁ ବ୍ୟାଙ୍କରୁ ବୁଝି କେଉଁ ବାଟେ ଉତ୍କଳ ସମ୍ମିଳନୀ ଟଙ୍କା ପାଇବାକୁ ସୁବିଧାହେବ କହିବି ।

ତାପର ଦିନ ମୁଁ ଶୀତକଣ୍ଠ ବାବୁଙ୍କ ଘରକୁ ଗଲି । ମୋତେ ନେଇ ସେ ତାଙ୍କ ବ୍ୟାଙ୍କକୁ ଗଲେ । ସେହି ବ୍ୟାଙ୍କରେ ଉତ୍କଳ ସମ୍ମିଳନୀ ନାମରେ ଗୋଟିଏ ଆକାଉଣ୍ଟ ଖୋଲାଗଲା । ଶୀତକଣ୍ଠ ବାବୁ ସେହି ଆକାଉଣ୍ଟ ଚଳାଇବେ ବୋଲି ଦସ୍ତଖତ କରିଦେଲେ । ପଚାରିଲି, ଏତିକିରେ କ'ଣ ସରିଗଲା ? ଅନ୍ୟ ସବୁ ସହରରେ ଉତ୍କଳ ସମ୍ମିଳନୀ ଶାଖା ଖୋଲିଲେ କେମିତି ହୁଅନ୍ତା ? ସେ କହିଲେ, ଆପଣ ଯୁଆଡ଼େ ଯିବେ ସେସବୁ ସହରର ପୋଖତ ଓଡ଼ିଆମାନଙ୍କୁ ମୁଁ କହିଦେବି । ସେମାନେ ଆପଣଙ୍କ ପାଇଁ ବନ୍ଧୁମିଳନ ଯୋଗାଡ଼ କରିବେ । ମୋର ବଡ଼ଶାଳୀ ସ୍ୱର୍ଣ୍ଣଲତାଙ୍କର ଦୁଇ ଝିଅ ନବନୀତା ଓ ମଧୁମିତା ଡଲାସ୍‌ରେ ରହନ୍ତି । ସେମାନଙ୍କ ପାଖକୁ ଯିବାକୁ ହେବ । ମୋର ସହପାଠୀବନ୍ଧୁ ବିଷ୍ଣୁଚରଣ ଯୋଶୀ ଟେନିସିର ନାସ୍‌ଭିଲେ ସହରରେ ଓ ଶୀତକଣ୍ଠ ସହିତ ସାଉଥଡାକୋଟା ଆସିଥିବା ଡାକ୍ତର ହରଲାଲ୍ ଚୌଧୁରୀ ସିନ୍‌ସିନାଟିରେ ରହନ୍ତି । ମୋତେ ଭେଟେରିନାରୀ କଲେଜରେ ପଢ଼ାଉଥିବା ଡକ୍ଟର ନୀଳାମ୍ବର ବିଶ୍ୱାଳ ମେରିଲାଣ୍ଡରେ ଓ

ମୋ ପୁଅର ସାଙ୍ଗ ପ୍ରଭାତ ବେହେରା (ନିଉଜର୍ସି) ନିଉୟର୍କରେ ରହନ୍ତି । ତାଛଡ଼ା ମୋ ପୁଅର ଦେଢ଼ଶାଶୂ ରହନ୍ତି କାନାଡ଼ାରେ । ସେମାନଙ୍କ ପାଖକୁ ଯାଇ ପାରିଲେ କିଛି ନା କିଛି ହୋଇ ପାରିବ । ତେଣୁ ଏସବୁ ଜାଗାକୁ ଯିବା ଆସିବା କରିବାକୁ ବିମାନଯାତ୍ରା ଖର୍ଚ୍ଚ କଥା ଚିନ୍ତା କଲି । ବହୁତ ସନ୍ତର୍ପଣରେ ମୋ ମନକଥା ଝିଅକୁ କହିଲି । ସେ କହିଲା ମୁଁ ଏୟାର ଲାଇନ୍ ଗୁଡ଼ିକ ଦେଖି କହିବି । ହେଲେ ଗୁଡ଼ାଏ ଟଙ୍କା ଲାଗିବ । ପଚାରିଲି, କେତେ ଟଙ୍କା ? ସେ କହିଲା ଅତି କମ୍‌ରେ ତିନି ହଜାର ଡଲାର ପଡ଼ିଯିବ । ମୁଁ ଆଉ କିଛି କହିଲି ନାହିଁ । ଝିଅ କହିଲା, ବାପା, ଏଇଟା କ'ଣ ଆପଣଙ୍କର ନିହାତି ଦରକାର ? କହିଲି, ନାଇଁ ସେମିତି କିଛି ନୁହେଁ । ସମ୍ଭବ ହୋଇଥିଲେ ଭଲ ହୋଇଥାନ୍ତା ନ ହେଲେ ବି ଦୁଃଖ ନାହିଁ ।

ଝିଅ କହିଲା, ବାପା ! ଆପଣ ଆମକୁ ଉଚ୍ଚ ଶିକ୍ଷା ଦେଇ ଏ ଦେଶକୁ ପଠାଇଛନ୍ତି, ଆଜି ପ୍ରଥମକରି ଏଠିକି ଆସି ଯାହା କରିବାକୁ ଇଛା କରୁଛନ୍ତି, ସେଥିଲାଗି ବହୁତ ଖର୍ଚ୍ଚ ହେବ । ଏତକ ଟଙ୍କା ଆପଣଙ୍କ ହାତରେ ଦେଇ ପାରିଲେ, ଘରେ ସମସ୍ତେ ଖୁସି ହୁଅନ୍ତେ । ମାତ୍ର ଆପଣ ଏତେ ଗୁଡ଼ାଏ ଟଙ୍କା ଖର୍ଚ୍ଚକରି ଉତ୍କଳ ସମ୍ମିଳନୀ କାର୍ଯ୍ୟ କରିବାକୁ ଚାହାନ୍ତି ।

ଆପଣ ଚାହୁଁଛନ୍ତି ମାନେ ମୁଁ ନିଶ୍ଚୟ ତା'ର ବ୍ୟବସ୍ଥା କରିବି । ମାତ୍ର ଏତେ ଗୁଡ଼ାଏ ଜାଗାକୁ ଟିକେଟ କରିବାକୁ ସମୟ ଲାଗିବ । ମୁଁ ପ୍ରତିଦିନ ଅଫିସ୍‌ରୁ ଫେରି ଇଣ୍ଟରନେଟ୍ ଦେଖି ଟିକେଟ ଖୋଜିବି । ଆପଣ ଏସବୁ ଜାଗାକୁ ଯିବେ । ହେଲେ ସେଠାରେ ଆପଣଙ୍କର ରହିବାର ସୁବିଧା, ଆପଣଙ୍କୁ ବିମାନଘାଟୀରୁ ନେବା ଆଣିବା କରିବା, ସେଠାକାର ଲୋକମାନଙ୍କୁ ଡାକି ଏକାଠି କରାଇ ଆପଣଙ୍କ ସହିତ ପରିଚୟ କରାଇବା ଓ ସେମାନଙ୍କୁ ଉତ୍କଳ ସମ୍ମିଳନୀ ସଭ୍ୟସଭ୍ୟା କରାଇବା ସହଜ କଥା ନୁହେଁ । ଏ ସହର ମିନିଆପଲିସ୍ କଥା ଅଲଗା । ଏଠି ଶୀତକଣ୍ଠ ମଉସାଙ୍କର ଯଥେଷ୍ଟ ଲୋକ ସମ୍ପର୍କ ରହିଛି । ମାତ୍ର ଆମେରିକାରେ ରହୁଥିବା ଓଡ଼ିଆମାନଙ୍କୁ ଆପଣ ଯେମିତି ଭାବୁଛନ୍ତି, ସେମାନେ ସେପରି ସରଳ ନୁହଁନ୍ତି । ଟଙ୍କାପଇସା ଖର୍ଚ୍ଚ କରିବାରେ ସେମାନେ ଖୁବ୍ ହୁସିଆର । କାହାକୁ ଆପଣଙ୍କ କଥା ଭଲ ନ ଲାଗିଲେ ସେ ସିଧାସିଧା ଦୁଇପଦ ବତେଇ ଦବ । ଏଠି ଶୀତକଣ୍ଠ ମଉସା, ଶରତବାବୁ, ଦୁର୍ଗାବାବୁ ପ୍ରଭୃତି ଥିଲେ ବୋଲି ଯେତେ ସହଜରେ ଲୋକମାନେ ଆପଣଙ୍କ କଥାରେ ସମ୍ମତ ହୋଇଗଲେ, ଅନ୍ୟ ସବୁ ଜାଗାରେ ତାହା ସମ୍ଭବ ନୁହେଁ । ଗୋଟିଏ ଲୋକ ଯୁକ୍ତି ଆରମ୍ଭ କରିଦେଲେ ଅନ୍ୟମାନେ ତା ସହିତ ପାଳି ଧରିବେ । ଆପଣ ଅପମାନିତ ବୋଧ କରିବେ । ପଇସା ଖର୍ଚ୍ଚ କରି ଜାଗାକୁ ଜାଗା ବୁଲି ଆପଣ ମନ ଦୁଃଖରେ ଫେରିବା ଅପେକ୍ଷା ଆପଣଙ୍କ ପ୍ଲେନ୍ ଟିକେଟ ପାଇଁ ଯେତିକି ଟଙ୍କା

ଖର୍ଚ୍ଚ ହେବ ସେତକ ମୋ ଠାରୁ ନେଇ ଉତ୍କଳ ସମ୍ମିଳନୀରେ ଦାନ କରି ଦିଅନ୍ତୁ । ଏକକାଳୀନ ଆପଣ ଏତେଗୁଡ଼ାଏ ଟଙ୍କା ଦେଇପାରିଲେ ବୋଲି ହୁଏତ ଆପଣଙ୍କର ସମ୍ମାନ ବଢ଼ିବ । ତା ପରିବର୍ତ୍ତେ ଆମେରିକାର ଦୂରଦୂରାନ୍ତ ସହର ବୁଲି ହାଲିଆ ହୋଇ ଯଦି ମନଦୁଃଖରେ ଫେରନ୍ତି, ତେବେ ବହୁତ ଖରାପ ଲାଗିବ ଓ ଉତ୍କଳ ସମ୍ମିଳନୀ ପାଇଁ ମଧ୍ୟ ଆର୍ଥିକ ସାହାଯ୍ୟ ମିଳିପାରିବ ନାହିଁ । ତା କଥାରେ ମୋର କୌଣସି ପ୍ରତ୍ୟୁତ୍ତର ଦେବାର ନ ଥିଲା । ମୁଁ ନୀରବ ରହିଲି । ଝିଅ କହିଲା, ଆପଣ ମୋ କଥା ଖରାପ ଭାବନ୍ତୁ ନାହିଁ । ଆପଣଙ୍କ ମନ ଖୁସି ପାଇଁ ମୁଁ ଗୋଟିଏ ଦୁଇଟି ଜାଗାକୁ ଏୟାର ଟିକେଟ ଖୋଜୁଛି । ଯେଉଁଠିକି ଯିବେ, କେବଳ ଶନିବାର ସନ୍ଧ୍ୟାରେ ଲୋକଙ୍କୁ ଭେଟି ହେବ । ଶୁକ୍ରବାର ସନ୍ଧ୍ୟା ବା ରବିବାର ଦିନବେଳା ବେଶୀ ଲୋକ ଆସିବେ ନାହିଁ । କେବଳ ଶନିବାର ଦିନ ସମସ୍ତଙ୍କର ସମୟ ଅଛି । ତେଣୁ ଗୁରୁବାର କିମ୍ବା ଶୁକ୍ରବାର ଆପଣ ଏଠୁ ଯିବେ ଓ ରବିବାର କିମ୍ବା ସୋମବାର ଫେରିବେ । ସେସବୁ ଦିନରେ ବିମାନଯାତ୍ରା ଖୁବ୍ ଭିଡ଼ ଥାଏ । ତାଛଡ଼ା ଆପଣଙ୍କୁ ବିମାନଘାଟୀରେ ଛାଡ଼ିବା ଓ ଆଣିବା ପାଇଁ ଆମ ଦୁହିଁଙ୍କୁ ମଧ୍ୟ ସମୟଥିବା ଦରକାର । ସବୁକଥା ଭଲଭାବେ ବୁଝି ମୁଁ ବ୍ୟବସ୍ଥା କରିବି ।

ଡଲାସ୍‌ରେ ଥିବା ଝିଆରୀମାନଙ୍କ ସହିତ କଥା ହୋଇ ସେମାନଙ୍କ ପାଖକୁ ଯିବା ଲାଗି ଦେବଶ୍ରୀ ଟିକେଟ କରିଦେଲା । ନବନୀତା ଓ ମଧୁମିତାଙ୍କ ପାଖରେ ମୁଁ ରହିବା ଭିତରେ ସାନ ଜ୍ୱାଇଁ ଅଶୋକକୁ ଉତ୍କଳ ସମ୍ମିଳନୀ ବିଷୟରେ କହିଲି । ସେ କହିଲା, ପାଖରେ ଥିବା ଗୋଟିଏ କ୍ଲବ ଘର ଭଡ଼ା ନେଇ ସ୍ଥାନୀୟ ଓଡ଼ିଆମାନଙ୍କୁ ସେଠାକୁ ଡାକିବା । କେତେକ ପରିବାର ସହିତ ଆମର ସୁସମ୍ପର୍କ ଅଛି । ସେମାନେ ନିଶ୍ଚୟ ସହଯୋଗ କରିବେ । ଏକଶହ ଡଲାର ଦେଇ ସେ କ୍ଲବ ଘର ଭଡ଼ା ନେଇଗଲା । ମୋ ଝିଆରୀ ଦୁହେଁ ସେମାନଙ୍କର ବନ୍ଧୁମାନଙ୍କୁ ଏକ ସାନ୍ଧ୍ୟ ମିଳନକୁ ଡକାଇଲେ । ସେଥିଲାଗି ଦୁଇ ଭଉଣୀ ସେମାନଙ୍କ ଘରେ ନାନାଦି ଖାଦ୍ୟ ଦ୍ରବ୍ୟ ତିଆରି କରି ପ୍ରାୟ ପଚାଶ ଜଣ ଲୋକଙ୍କ ପାଇଁ ସାନ୍ଧ୍ୟ ଭୋଜନ ନେଇ ସେ କ୍ଲବ୍‌କୁ ଗଲେ । ମୋ ସହିତ ଆଗନ୍ତୁକମାନଙ୍କର ପରିଚୟ ହେବା ପରେ ମୁଁ ସେମାନଙ୍କୁ ଉତ୍କଳ ସମ୍ମିଳନୀ ବିଷୟରେ କହିଲି । ଏକଥା ପ୍ରାୟ ଅଧିକାଂଶ ଲୋକଙ୍କୁ ନୂଆ ପରି ଲାଗିଲା । ଏଠି ଗୋଟେ ଉତ୍କଳ ସମ୍ମିଳନୀ ଶାଖା ଗଠନ କରିବାକୁ ଅନୁରୋଧ କଲି । ଶ୍ରୀ ହରିଅର୍ଜ୍ଜୁନ ପାତ୍ର ଓ ମୋ ସାନ ଝିଆରୀଜ୍ୱାଇଁ ଅଶୋକ ଦୁହେଁ ଏହି ଶାଖାର ଆବାହକ ହେଲେ । ପ୍ରାୟ କୋଡ଼ିଏ ଜଣ ଲୋକ ଆଜୀବନ ସଦସ୍ୟ ହେଲେ । ସେମାନଙ୍କ ସଭ୍ୟ ଚାନ୍ଦା ଉତ୍କଳ ସମ୍ମିଳନୀ ନାମରେ ଚେକ୍ ଆକାରରେ ଦେଲେ । ମିନିଆପଲିସ୍ ଫେରିଆସି ସେସବୁ ଚେକ୍ ଶୀତକଣ୍ଠ ବାବୁଙ୍କୁ ଦେଲି । ଅବଶ୍ୟ ଏହି ଚାନ୍ଦା ପରିମାଣ ମୋ ଯିବାଆସିବା ବିମାନ ଭଡ଼ାର ପ୍ରାୟ ଅଧା ଥିଲା ।

ସିନ୍ସିନାଟିରୁ ହରଲାଲ୍ ଚୌଧୁରୀଙ୍କଠାରୁ ଫୋନ୍ ପାଇ ତାଙ୍କ ପାଖକୁ ଯିବାକୁ ମୋ ଝିଅ ଟିକେଟ କରି ରଖିଥିଲା । ପ୍ରାୟ ୪/୫ ଦିନ ପାରେ ମୁଁ ସିନ୍ସିନାଟି ଗଲି । ହରଲାଲ୍ ବାବୁଙ୍କ ଘରେ ରାତ୍ରିଯାପନ କରିବା ପରେ ଦୁହେଁ ତାଙ୍କ କାର୍‌ରେ ଟେନିସି ବାହାରିଲୁ । ବାଟରେ ମୋର ଜଣେ ସମ୍ପର୍କୀୟ ଭାଇ ଅମୀୟ କୁମାର ମହାନ୍ତିଙ୍କ ଘର ପଡ଼େ । ତାଙ୍କ ଘରେ ମଧ୍ୟାହ୍ନ ଭୋଜନ କରିବାକୁ ଆଗରୁ ସେ କହିଥିଲେ । ଖାଇବା ପୂର୍ବରୁ ଅମୀୟ ଭାଇ, ଭାଉଜ ଓ ହରଲାଲ ଚୌଧୁରୀଙ୍କୁ ସପତ୍ନୀକ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟସଭ୍ୟା ହେବା ପାଇଁ ଅନୁରୋଧ କଲି । ଅମୀୟ ଭାଇ କହିଲେ, ତୁ ଯେତେବେଳେ ଏତେ କଷ୍ଟ କରି ମୋ ଘରକୁ ଆସିଛୁ; ତୁ ଯାହା କହିବୁ କରିବାରେ ମୋର ଦ୍ୱିଧା ନାହିଁ । ଉତ୍କଳ ସମ୍ମିଳନୀ ସଭ୍ୟ ହେବା ତ ଆହୁରି ଆନନ୍ଦର କଥା । ତାଙ୍କ ଘରେ ଖାଇସାରି ମୁଁ ଓ ହରଲାଲ ଦୁହେଁ ଟେନିସ ଅଭିମୁଖେ ବାହାରିପଡ଼ିଲୁ । ସନ୍ଧ୍ୟା ୬ଟା ସୁଦ୍ଧା ନାସ୍‌ଭିଲେ ପହଞ୍ଚି ଡକ୍ଟର ବିଷ୍ଣୁଚରଣ ଯୋଶୀଙ୍କ ଘରେ ରହିଲୁ । ରାତିରେ ବସି ବହୁ ସମୟ ଗପସପ କରିବା ପରେ ମୁଁ ଯୋଶୀବାବୁଙ୍କୁ ଉତ୍କଳ ସମ୍ମିଳନୀ କଥା କହିଲି । ସେ କହିଲେ ଶନିବାର ଅପରାହ୍ନରେ ଆମ ଜଗନ୍ନାଥ ମନ୍ଦିର ପରିସରରେ ଏକ ବନ୍ଧୁମିଳନ କରିବା ।

ମାତ୍ର ଦୁଇବର୍ଷ ତଳେ ନାସ୍‌ଭିଲେ ସହରରେ ମନ୍ଦିର ତୋଳାଯାଇ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପ୍ରତିଷ୍ଠା କରାଯାଇଛି । ଶ୍ରୀ ବିଷ୍ଣୁ ଚରଣ ଯୋଶୀ ଏହାର ମୁଖ୍ୟ ଉଦ୍ୟୋକ୍ତା ଥିଲେ । ନାସ୍‌ଭିଲେ ସହରରେ ଥିବା ଅଧିକାଂଶ ଭାରତୀୟ ଏଥିଲାଗି ଅର୍ଥଦାନ କରି ମନ୍ଦିର ନିର୍ମାଣ କରାଇ ବିଗ୍ରହମାନଙ୍କୁ ପ୍ରତିଷ୍ଠା କରାଇଥିଲେ । ଧାର୍ଯ୍ୟ ସମୟରେ ଆମେ ସବୁ ମନ୍ଦିର ପ୍ରାଙ୍ଗଣରେ ଏକତ୍ରିତ ହେଲୁ । ଠାକୁରଙ୍କ ପହୁଡ଼ ଫିଟାଯାଇ ପୂଜାର୍ଚ୍ଚନା ପରେ ଭୋଗଲଗା ହୋଇ ସଭିଙ୍କୁ ବିତରଣ କରାଗଲା । ଠାକୁରଙ୍କ ପହୁଡ଼ ଫିଟିବା ପୂର୍ବରୁ ପୂଜା ଦାୟିତ୍ୱରେ ଥିବା ଦୁଇଜଣ ତାମିଲ ବ୍ରାହ୍ମଣ ଖୁବ୍ ସୁନ୍ଦରଭାବେ ବେଦପାଠ କଲେ । ସେମାନେ ପାଟଲୁଗା ପିନ୍ଧି ବେଣି ରଖିଥାନ୍ତି । ଯୋଶୀ ବାବୁଙ୍କୁ ପଚାରିଲି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପୂଜା ଦାୟିତ୍ୱରେ ତାମିଲ ବ୍ରାହ୍ମଣମାନଙ୍କୁ କାହିଁକି ରଖିଛନ୍ତି ? ପୁରୀରୁ ଓଡ଼ିଆ ବ୍ରାହ୍ମଣଙ୍କୁ ଅଣାଯାଇ ପାରିଥାନ୍ତା । ଆମ ଓଡ଼ିଆ ପୂଜକମାନେ ଲାଭବାନ୍ ହୋଇଥାନ୍ତେ । ଯୋଶୀ ବାବୁ କହିଲେ, ଆପଣ ଏହି ପୂଜକଙ୍କର ପୂଜାବିଧି, ମନ୍ତ୍ରପାଠ ଓ ସଦାଚାର ଦେଖିପାରୁଛନ୍ତି । ଆମ ଓଡ଼ିଆ ବ୍ରାହ୍ମଣମାନେ ଏମାନଙ୍କ ପରି ସଂସ୍କୃତ ପାରଙ୍ଗମ ନୁହଁନ୍ତି । ସେମାନଙ୍କ ସଦାଚାର ନାହିଁ । ମାଛ, ମାଂସ, ଅଣ୍ଡା ଆଦି ଆମିଷ ଭକ୍ଷଣ ସାଙ୍ଗକୁ ଏ ଦେଶକୁ ଆସି ମଦ୍ୟପାନ କରିବାରେ ସେମାନେ ବେଶ ଦକ୍ଷତା ପ୍ରଦର୍ଶନ କରିବାର ଭୟରହିଛି । ସବୁଠାରୁ ବଡ଼କଥା ହେଲା, ସେମାନଙ୍କଠାରେ ଭକ୍ତିଭାବ ଆଦୌ ନାହିଁ ।

ଭକ୍ତିହୀନ ପୂଜା ଦେଖି ଏଠାକାର ଉଚ୍ଚଶିକ୍ଷିତ ହିନ୍ଦୁମାନେ ବିରକ୍ତି ପ୍ରକାଶ କରିବେ ! ଆଉ ଏ ବିଷୟରେ ମୋର କିଛି କହିବାର ନ ଥିଲା । କାରଣ ପୁରୀରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାୟତମାନେ କେମିତି ସେବାପୂଜା କରୁଛନ୍ତି, ସେ ବିଷୟରେ ସମସ୍ତେ ଜାଣନ୍ତି । ସେମାନଙ୍କ ମଧ୍ୟରୁ କାହାକୁ ଆମେରିକା ନେଇ ଆମର ଦୁର୍ବଳତା ପ୍ରକାଶ କରିବାଟା ଅସଙ୍ଗତ ମନେ ହେଲା ।

ମନ୍ଦିରର ଏକ ସଭାଗୃହରେ ଆମେ ସବୁ ବସିଲୁ । ଯୋଶୀବାବୁ ସମସ୍ତଙ୍କ ସହିତ ମୋର ପରିଚୟ କରାଇଦେଲେ । ଓଡ଼ିଶା ବିଷୟରେ କିଛି କହିବାକୁ ମୋତେ ଅନୁରୋଧ କରାଗଲା । ମୁଁ ଉତ୍କଳ ସମ୍ମିଳନୀ ବିଷୟରେ କହି ଏଠାରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଲାଗି ଏକ ଶାଖା ଗଠନ କରିବାକୁ ସମସ୍ତଙ୍କୁ ଅନୁରୋଧ କଲି । ସେମାନଙ୍କ ଭିତରେ ଭଦ୍ରକ ବାଉଦପୁରର ଜଣେ ବଙ୍ଗୀୟ ମହିଳା ଥିଲେ । ସେ ଏଠାରେ ବହୁ ବର୍ଷ ଧରି ରହିଛନ୍ତି । ସେ ଜଣେ ଅବିବାହିତା ନାରୀ । ମୋତେ ପଚାରିଲେ ଓଡ଼ିଶାରେ ଏବେ ଉତ୍କଳ ସମ୍ମିଳନୀର କେତେ ସଭ୍ୟସଭ୍ୟା ଅଛନ୍ତି ? ଏପରି ପ୍ରଶ୍ନ ପାଇଁ ମୁଁ ପ୍ରସ୍ତୁତ ନଥିଲି । ଯାହା ବୁଝିଥିଲି ସେ ପର୍ଯ୍ୟନ୍ତ ଆମର ସଭ୍ୟସଂଖ୍ୟା ମାତ୍ର ୭୦ ଭିତରେ ସୀମିତ ଥିଲା । ମୁଁ ସେଇ ସଂଖ୍ୟାକୁ ବଢ଼ାଇ ଦେଇ କହିଲି; ପ୍ରାୟ ସାତ ଶହ ସଭ୍ୟ ସଭ୍ୟା ଅଛନ୍ତି । ସେ କହିଲେ, ଚାରିକୋଟି ଓଡ଼ିଆଙ୍କ ଭିତରୁ ଯଦି ମାତ୍ର ସାତଶହ ଲୋକ ଏଭଳି ଏକ ଅନୁଷ୍ଠାନର ସଭ୍ୟ ସଭ୍ୟା ହୋଇଛନ୍ତି, ତେବେ ଆପଣ ଏତେ ଦୂର ଆସି ଆମ୍ଭମାନଙ୍କୁ ସଭ୍ୟ କରିବାକୁ କାହିଁକି ଚେଷ୍ଟା ଚଳାଇଛନ୍ତି ? ବରଂ ଓଡ଼ିଶାର ତିରିଶ ଜିଲ୍ଲାରେ ବୁଲି ସଭ୍ୟ ସଂଖ୍ୟା ବଢ଼ାନ୍ତୁ । କହିଲି, ଆସିଥିଲି ବୋଲି ଆପଣମାନଙ୍କୁ ଭେଟିବାର ସୌଭାଗ୍ୟ ମିଳିଛି । ତେଣୁ ଏଠାରେ ଉତ୍କଳ ସମ୍ମିଳନୀର ଶାଖା ଖୋଲିବା ପାଇଁ କହୁଛି । ଏହି ଅନୁଷ୍ଠାନ ଜରିଆରେ ଆପଣମାନେ ଆମେରିକାରେ ଥାଇ ମାତୃଭାଷା ଓଡ଼ିଆ ତଥା ଆମ ସାହିତ୍ୟ ସଂସ୍କୃତିର ସୁରକ୍ଷା ଲାଗି ଚେଷ୍ଟା କରିବେ । ଅତି କମ୍‌ରେ କୋଡ଼ିଏଜଣ ସଭ୍ୟ ସଭ୍ୟା ହେଲେ ଆପଣ ଏଠାରେ ଶାଖାଟିଏ ଖୋଲି ପାରିବେ । ବିଷ୍ଣୁ ବାବୁ ଓ ତାଙ୍କ ସ୍ତ୍ରୀ ପ୍ରଭା ଦେବୀ ସଭ୍ୟ ହେବା ପାଇଁ ଇଚ୍ଛା ପ୍ରକାଶ କଲେ । ତାଙ୍କର ଦୁଇ ଭାଇ ଓ ସେମାନଙ୍କ ସ୍ତ୍ରୀମାନେ ମଧ୍ୟ ସଭ୍ୟ ହୋଇଗଲେ । ଏହାପରେ ଆଉ ଛଅଟି ପରିବାର ସଭ୍ୟ ହେବା ପରେ ଏଠାରେ ଏକ ଶାଖା କରିବାର ପ୍ରସ୍ତାବ ହେଲା । ପ୍ରଭା ଦେବୀ ଓ ଶ୍ରୀପଞ୍ଚାନନ ଶତପଥି ଏହି ଶାଖାର ଆବାହକ ହେଲେ ।

ମୁଁ ଝିଅ ପାଖକୁ ଫେରିଲା ବେଳକୁ ଲଣ୍ଡନରୁ ମୋ ପୁଅ ଗୋପାଳ ଫୋର୍ଡ଼ କମ୍ପାନୀର ମୁଖ୍ୟ କାର୍ଯ୍ୟାଳୟ ଡେଟ୍ରୟେଟ୍‌ରେ ଦୁଇ ମାସ ରହି ତାର ଅଫିସ କାମ କରିବାକୁ ଆସି

ପହଞ୍ଚିଲା । ତାର ଡେଟ୍ରୟେଟ୍‌ରେ ଥିବା ଘରକୁ ମୁଁ ଚାଲିଗଲି । ଡେଟ୍ରୟେଟ, ନଦୀର ଆରପାଖେ କାନାଡ଼ା ରାଜ୍ୟ । ସେ ରାଜ୍ୟର ମଣ୍ଟ୍ରିଆଲରେ ପୁଅର ବଡ଼ ସଢୁ ଓ ଦେଢଶାଶ୍ ରହନ୍ତି । ସେମାନେ ମଧ୍ୟ ମୋତେ ନାଏଗ୍ରା ଜଳପ୍ରପାତ ଦେଖାଇବା ପାଇଁ ଆଗ୍ରହ ପ୍ରକାଶ କଲେ । ଡେଟ୍ରୟେଟ୍‌ରେ ପୁଅର ସହପାଠୀବନ୍ଧୁ ମନୋଜ ପଣ୍ଡାଙ୍କ ଘରେ ବିଷ୍ଣୁ ସହସ୍ର ନାମ ପାଠ କରାଯିବାର ଆୟୋଜନ ହେଲା । ସେଥିଲାଗି ତା ଘରକୁ ପାୟ ୧୫/୧୬ ଜଣ ଓଡ଼ିଆ ଲୋକ ଆସିଲେ । ମୋ ସହିତ ସମସ୍ତଙ୍କର ପରିଚୟ ହେବା ପରେ ସେଠାରେ ଏକ ଉତ୍କଳ ସମ୍ମିଳନୀ ଶାଖା ଆରମ୍ଭ କରିବାକୁ ମୁଁ ସେମାନଙ୍କୁ ଅନୁରୋଧ କଲି । ଡାକ୍ତର ରମେଶ ଚନ୍ଦ୍ର ମିଶ୍ର ମୋ କଥାକୁ ସମର୍ଥନ କଲେ । ମୋ ପୁଅ ଓ ମନୋଜ ପରିବାରକୁ ମିଶାଇ ୧୪ ଜଣ ଲୋକ ଉତ୍କଳ ସମ୍ମିଳନୀର ସଭ୍ୟ ସଭ୍ୟା ହେଲେ । ରମେଶ ବାବୁ ଓ ମନୋଜଙ୍କୁ ସେହି ଶାଖାର ଆବାହକ ରହିବାକୁ ଅନୁରୋଧ କଲି ।

ଏହାର ଦୁଇ ଦିନ ପରେ ପୁଅ ମୋତେ ସାଙ୍ଗରେ ନେଇ କାନାଡ଼ାର ଟରଣ୍ଟୋ ସହରକୁ ଗଲା । ସେଠାରେ ଶ୍ରୀ ପ୍ରତାପ ଚନ୍ଦ୍ର ପଟ୍ଟନାୟକଙ୍କ ଘରେ ଆମେ ସନ୍ଧ୍ୟାରେ ପହଞ୍ଚିଲୁ । ମଣ୍ଟ୍ରିଆଲ୍‌ରୁ ପୁଅର ଦେଢ଼ଶାଶୂ ଡଲି ଓ ବୁଟୁବାବୁ ଆସି ପହଞ୍ଚିଥିଲେ । ସେଇ ସହରର ଗୋପାଳ ବାରିକ ନାମକ ଜଣେ ଓଡ଼ିଆ ଯୁବକଙ୍କର ବୁଟୁବାବୁଙ୍କ ସହିତ ପୂର୍ବରୁ ବନ୍ଧୁତା ଥିଲା । ବୁଟୁବାବୁ ତାଙ୍କୁ ମୋ ଆସିବା କଥା କହିଲେ । ସେ ପଚାରିଲେ ଯେଉଁ ଗୁରୁବାବୁଙ୍କ ନାମ କହିଲ, ସେ କ'ଣ ଜଣେ ଲେଖକ ? ବୁଟୁବାବୁ ତାଙ୍କୁ ହଁ ବୋଲି କହିବାରୁ ସେ ମୋ ଲିଖିତ କେତେ ଖଣ୍ଡ ବହି ଆଣି ଆସି ପହଞ୍ଚିଯାଇ କହିଲେ, ମୋ ଶ୍ୱଶୁର ଆପଣଙ୍କର ଜଣେ ପ୍ରଶଂସକ । ତାଙ୍କଠାରୁ ମୁଁ ଏସବୁ ବହି ଆଣିଛି । ସୁଦୂର କାନାଡ଼ାରେ ମୋ ଲେଖାକୁ ଭଲ ପାଉଥିବା ଜଣେ ଓଡ଼ିଆ ଯୁବକଙ୍କୁ ଦେଖି ମୋତେ ଖୁବ୍ ଖୁସି ଲାଗିଲା । କେବେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ଯେ, ସୁଦୂର କାନାଡ଼ା ଦେଶରେ ମୋ ଲେଖାକୁ ପଢ଼ିବାର ପାଠକ ଅଛନ୍ତି, ମୋତେ ଯେପରି ମୋର ସମସ୍ତ ପରିଶ୍ରମର ଫଳ ମିଳିଯିବା ପରି ଲାଗିଲା । ହେଲେ ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ବ୍ୟସ୍ତରହିବା ପରେ ମୁଁ ଲେଖାଲେଖି କମାଇଦେଇଛି । ଭାବୁଥିଲି, କେହି ଆଉ ଓଡ଼ିଆବହି ପଢୁ ନାହାନ୍ତି ବୋଲି । ମାତ୍ର ସାତଦରିଆ ପାରିରେ ମୋ ଲେଖା ପଢ଼ିବାର ପାଠକ ଯେ ଅଛନ୍ତି ତାହା ମୋତେ ଯୁଗପତ୍ ଆନନ୍ଦ ଆଣିଦେଲା ।

ତା ପରଦିନ ସ୍ଥାନୀୟ ହିନ୍ଦୁ ମନ୍ଦିରରେ ଓଡ଼ିଆ ଲୋକେ ଏକତ୍ରିତ ହେବେବୋଲି ବାରିକ ବାବୁ କହିଲେ । ତଦନୁଯାୟୀ ପରଦିନ ଆମେ ସବୁ ସେହି ମନ୍ଦିରକୁ ଗଲୁ । ଗୋପାଳ ବାରିକ ମୋତେ ସମସ୍ତଙ୍କ ସହିତ ପରିଚିତ କରାଇଦେଲେ । ମୁଁ ଉତ୍କଳ ସମ୍ମିଳନୀର

ବାର୍ତ୍ତା ପ୍ରଚାର କରୁଛି ଶୁଣି ସେ ବିଷୟରେ ପ୍ରାଞ୍ଜଳ ଭାବରେ କହିବାକୁ କେତେକ ଲୋକ ଅନୁରୋଧ କଲେ । ମନ୍ଦିରର ଗୋଟିଏ କକ୍ଷରେ ବସି ପ୍ରାୟ ଅଧଘଣ୍ଟାଏ ସେମାନଙ୍କୁ ଓଡ଼ିଆ ଜାତି, ଭାଷା ଓ ସଂସ୍କୃତି ବିଷୟରେ କହି ଏଠାରେ ଗୋଟିଏ ଉତ୍କଳ ସମ୍ମିଳନୀ ଶାଖା ଗଢ଼ିବାକୁ ଅନୁରୋଧ କଲି । ଡଲି, ପ୍ରତାପବାବୁ, ଗୋପାଳବାବୁ ଓ ଅନ୍ୟ ସାତଟି ପରିବାର ଆଜୀବନ ସଭ୍ୟ/ସଭ୍ୟା ହେବା ପାଇଁ ସମ୍ମତ ହେଲେ । ଫଳରେ କାନାଡ଼ାର ଟରଣ୍ଟୋ ସହରରେ ମଧ୍ୟ ଉତ୍କଳ ସମ୍ମିଳନୀ ଶାଖା ଗଠିତ ହେଲା । ଡଲି (ସ୍ମୃତିରେଖା କାନୁନ୍‌ଗୋ) ଓ ପ୍ରତାପ ପଟ୍ଟନାୟକ ଦୁହେଁ ଏହାର ଆବାହକ ହେଲେ । ତା ପରଦିନ ନାଏଗ୍ରା ଜଳପ୍ରପାତ ଦେଖିସାରି କାନାଡ଼ାର ଲଣ୍ଡନସହର ଦେଇ ଫେରିଲା ବେଳେ ଆମେ ପ୍ରଖ୍ୟାତ କବି ମାୟାଧର ମାନସିଂଙ୍କ ବଡ଼ପୁଅ ଲଲାଟେନ୍ଦୁ ମାନସିଂଙ୍କ ଘରେ ମଧ୍ୟାହ୍ନ ଭୋଜନ କଲୁ । ଲଲାଟେନ୍ଦୁ ବାବୁ ସସ୍ତ୍ରୀକ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ/ସଭ୍ୟା ହେଲେ । ତାଙ୍କ ମାଆ ମୋ "ପାତାଳପୁରୀର ହାଲ୍‌ଚାଲ୍' ପୁସ୍ତକର ଜଣେ ବିଦଗ୍ଧ ପାଠିକା ଜାଣି ବହୁତ ଖୁସି ଲାଗିଲା ।

ଶ୍ରୀମତୀ ହେମଲତା ମାନସିଂ ତାଙ୍କ ସାନପୁଅ ଲଳିତେନ୍ଦୁ ମାନସିଂଙ୍କ ସହିତ ୱାଶିଂଟନ ଡି.ସି.ରେ ରହୁଥିଲେ । ଓଡ଼ିଶାର ପ୍ରଖ୍ୟାତ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦଙ୍କ ସମ୍ପାଦିତ "ସଂସାର" ପତ୍ରିକାର ସେ ଥିଲେ ଜଣେ ଗ୍ରାହିକା । କଟକରୁ 'ସଂସାର'ର ପ୍ରତିଟି ସଂଖ୍ୟା ତାଙ୍କ ପାଖକୁ ଆମେରିକା ପଠାଯାଉଥିଲା ଓ ସେଥିରୁ 'ପାତାଳପୁରୀର ହାଲ୍‌ଚାଲ୍' ପଢ଼ି ଶ୍ରୀମତୀ ମାନସିଂ ଅତ୍ୟନ୍ତ ଖୁସିହୋଇ ରାମକୃଷ୍ଣବାବୁଙ୍କୁ ଚିଠି ଲେଖିଥିଲେ ଓ ଆମେରିକାରେ ଥାଇ ସେ ଯାହା ଅନୁଭବ କରି ନଥିଲେ 'ପାତାଳ ପୁରୀର ହାଲ୍‌ଚାଲ୍' ପଢ଼ି ସେ ସ୍ପଷ୍ଟଭାବେ ସେ ସବୁ ଅନୁଭବ କରିଥିବା କଥା ଜଣାଇଥିଲେ ।

କାନାଡ଼ାରୁ ଫେରି ଡେଟ୍ରୟେଟ୍‌ରେ ପହଞ୍ଚିବା ପରେ ମୋ ପୁଅ ନ୍ୟୁୟର୍କ (ନିଉଜର୍ସି)ରେ ଥିବା ତାର ସାଙ୍ଗ ପ୍ରଭାତ ବେହେରାଙ୍କ ସହିତ କଥା ହେଲା । ପ୍ରଭାତ ଓ ତାର ସ୍ତ୍ରୀ ଆନି ଦୁହେଁ ଗୋଟିଏ ଛୋଟ ଆପାର୍ଟମେଣ୍ଟରେ ରହୁଥାନ୍ତି। ସେମାନେ ମୋ ସହିତ ଫୋନ୍‌ରେ କଥା ହୋଇ ତାଙ୍କ ପାଖକୁ ଯିବାକୁ ଅନୁରୋଧ କଲେ । ତାଙ୍କ ପାଖରୁ ମେରୀଲାଣ୍ଡ ଖୁବ୍ କମ୍ ବାଟ । ସେଠାରେ ରହୁଥିବା ମୋର ଶିକ୍ଷକ ଡକ୍ଟର ନୀଳାମ୍ବର ବିଶ୍ୱାଳଙ୍କ ସହିତ ମଧ୍ୟ କଥା ହେଲି । ସେ କହିଲେ ତୁମେ ଆସ । ମେରୀଲାଣ୍ଡ ଓ ୱାଶିଂଟନ୍‌ରେ ରହୁଥିବା ବହୁ ଓଡ଼ିଆ ଲୋକଙ୍କୁ ଏଠିକି ଡାକିବା । ପୁଅ ମୋ ପାଇଁ ନ୍ୟୁୟର୍କ ଓ ମେରୀଲାଣ୍ଡ ଯିବାକୁ ଏୟାର ଟିକେଟ କରିଦେଲା । ଡେଟ୍ରୟେଟ୍‌ରୁ ସିଧା ନ୍ୟୁୟର୍କ ଗଲି । ସେଠାରେ ମୋର ଠିକ୍ ତଳକ୍ଲାସ୍‌ରେ ପଢୁଥିବା ପଶୁଚିକିତ୍ସା ମହାବିଦ୍ୟାଳୟର ବନ୍ଧୁ ଡାକ୍ତର ଦିବାକରପାଣିଗ୍ରାହୀ ଦେଖାହେଲେ । ଆନି ସହିତ ସେମାନେ ମିଶି ନ୍ୟୁୟର୍କର

୧୬ ଜଣ ଓଡ଼ିଆ ଲୋକଙ୍କୁ ଉତ୍କଳସମ୍ମିଳନୀର ସଭ୍ୟସଭ୍ୟା କରାଇ ଦେଲେ । ତାଙ୍କ ପାଖରେ ୩/୪ ଦିନ ରହି ମୁଁ ମେରୀଲାଣ୍ଡ ଗଲି । ନୀଳାମ୍ବର ବାବୁ ମୋତେ ଆସି ବିମାନଗାଟୀରୁ ନେଇଗଲେ । ତାପର ଦିନ ତାଙ୍କ ଘରେ ପ୍ରାୟ ସତୁରୀ ଜଣ ଓଡ଼ିଆ ଲୋକଙ୍କ ସମାବେଶ ହେଲା । ସ୍ୱାମୀ ସ୍ତ୍ରୀ ଦୁହେଁ ମିଶି ରାତି ସାରା କାମରେ ଲାଗି ପଡ଼ି ଏତେ ଲୋକଙ୍କ ପାଇଁ ରୋଷେଇବାସ କରି ସମସ୍ତଙ୍କୁ ମଧ୍ୟାହ୍ନ ଭୋଜନ ଦେଲେ । ତାପରେ ସଭାହେଲା । ମୁଁ ଉତ୍କଳ ସମ୍ମିଳନୀ ବିଷୟରେ କହିଲି । ଜଣେ ଯୁବକ ମୋତେ ପଚାରିଲେ, ଆପଣଙ୍କ ସଭାପତି କିଏ ? କହିଲି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର । ସେ କହିଲେ ତାଙ୍କ ରାୟଗଡ଼ା ଜିଲ୍ଲାରୁ ଓଡ଼ିଆ ଭାଷା ଉଠିଗଲାଣି । ସେଠି ଲୋକେ ଓଡ଼ିଆ ବଦଳରେ ତେଲୁଗୁ କହୁଛନ୍ତି । ତେଣୁ ଆପଣ ଆମକୁ ଏଠି ଓଡ଼ିଆ ଭାଷାର ସୁରକ୍ଷା କଥା କ'ଣ କହୁଛନ୍ତି ? ଓଡ଼ିଶାରେ ଆଗେ ଓଡ଼ିଆ ଭାଷାକୁ ରକ୍ଷା କରନ୍ତୁ । ମୋର ଆଉ କିଛି କହିବାର ନ ଥିଲା । ତଥାପି ସେଠାରେ ୨୬ ଜଣ ଲୋକ ଉତ୍କଳ ସମ୍ମିଳନୀର ସଭ୍ୟସଭ୍ୟା ହେଲେ । ଶ୍ରୀମତୀ ଅନୁ ବିଶ୍ୱାଳ ୱାଶିଂଟନ୍ ଶାଖାର ଆବାହକ ହେଲେ । ତାପରଦିନ ମୁଁ ମିନିଆପଲିସ୍ ଫେରି ଆସିଲି ।

ଆମେରିକା ଓ କାନାଡ଼ାର ବିଭିନ୍ନ ସହରରେ ଉତ୍କଳ ସମ୍ମିଳନୀ ଶାଖା ଗଠନ କରି ସଭ୍ୟସଭ୍ୟାମାନଙ୍କଠାରୁ ସଂଗୃହୀତ ଉତ୍କଳ ସମ୍ମିଳନୀ ଚେକ୍‌ଗୁଡ଼ିକ ଶୀତକଣ୍ଠ ବାବୁଙ୍କୁ ଦେଇଦେଲି । ସେ କହିଲେ ଆପଣଙ୍କର ଫେରିବାବେଳ ହୋଇଗଲାଣି । ଏସବୁ ଡଲାର ନେଇ ଉତ୍କଳ ସମ୍ମିଳନୀରେ ଦେଲେ ସେମାନେ ଭଙ୍ଗାଇ ଟଙ୍କାରେ ପରିବର୍ତ୍ତିତ କରିପାରିବେ ତ ? କହିଲି, ଓଡ଼ିଶାରେ ଏତେ ଗୁଡ଼ାଏ ଡଲାର ଭଙ୍ଗାଇବାକୁ ଅସୁବିଧା ହୋଇପାରେ । କାରଣ ସେମାନେ ଏତେଡଲାର୍ ଭାଙ୍ଗିବାକୁ ସରକାରୀ ଅନୁମୋଦନ ଖୋଜିବେ । ଉତ୍କଳ ସମ୍ମିଳନୀ ବିଦେଶରୁ ଅର୍ଥ ସଂଗ୍ରହ କରିବା ପାଇଁ ରିଜର୍ଭ ବ୍ୟାଙ୍କରୁ ଅନୁମତି ପାଇବା ଆବଶ୍ୟକ। ତେଣୁ ଆପଣ ଏସବୁ ଡଲାରଚେକ୍ ଭଙ୍ଗାଇ ଦିଅନ୍ତୁ । ତଦନୁଯାୟୀ ସେ ଡଲାରତକ ଟଙ୍କାରେ ପରିବର୍ତ୍ତିତ କରିଦେଲେ । ସେତକ ପ୍ରାୟ ଏକଲକ୍ଷ ଅଠାନବେ ହଜାର ଟଙ୍କା ହୋଇଗଲା । ଏତେଗୁଡ଼ାଏ ଟଙ୍କା ଉତ୍କଳ ସମ୍ମିଳନୀ ପାଇବା ହୁଏତ ଏହା ପ୍ରଥମହେବ ଭାବି ମୋତେ ଭାରି ଖୁସିଲାଗୁଥାଏ । ମୋର ଯୁକ୍ତରାଷ୍ଟ୍ର ଆମେରିକା ଆସିବା ସଫଳ ହେବା ପରି ବୋଧ ହେଉଥାଏ । ଚାରିମାସ ରହଣି ପରେ ମୁଁ ଘରକୁ ଫେରିବାର ହେଲା । ହେଲେ ମୋ ପୁଅ ଓ ଝିଅ ଦୁହେଁ ମୋ ଉପରେ ଖୁସି ନ ଥିଲେ । ଝିଅ କହିଲା, ବାପା ଆପଣ ମାତ୍ର ଚାରିମାସ ପାଇଁ ଆସିଲେ । ଆମ ପାଖରେ ଏତେକ ଦିନ ରହିଥିଲେ ଭାରି ଭଲ ଲାଗିଥାନ୍ତା । ଆମେରିକା ସାରା ବୁଲି ବୁଲି ଆପଣ ଏତେ ଦିନ ଧରି ଉତ୍କଳ ସମ୍ମିଳନୀ କାର୍ଯ୍ୟ କରିବେ ବୋଲି ମୁଁ ଭାବି ନ ଥିଲି । କହିଲି, ପାଠଶାଠ ପଢ଼ି ସରକାରୀ ଚାକିରୀକରି ଯଥାସମ୍ଭବ ଦେଶସେବା କରିବାର ସୌଭାଗ୍ୟ ମିଳିଲା, ଈଶ୍ୱରଙ୍କ ଦୟାରେ

ତୁମେମାନେ ମଣିଷ ହୋଇଛ । ଆଉ ପରିବାର ପ୍ରତି ମୋର କିଛି କର୍ତ୍ତବ୍ୟ ନାହିଁ । ଏବେ ଜାତି ସେବାର ସୌଭାଗ୍ୟ ମିଳିଛି । ପିତାମାତା, ପରିବାର ଓ ଜନତାର ସେବା ପରେ ଓଡ଼ିଆ ଜାତି ପାଇଁ କିଛି କରିବା ଅତି ଭାଗ୍ୟର କଥା । ଏହି କାର୍ଯ୍ୟରେ ତୁମେମାନେ ଧନ, ମନ ଓ ଶ୍ରମ ଦାନ କରି ଧନ୍ୟ ହୋଇଛ ତେଣୁ ତୁମପାଖରେ ଆସି ରହିବାଟା ବଡ଼ କଥା ନୁହେଁ । ଉତ୍କଳ ସମ୍ମିଳନୀ କାର୍ଯ୍ୟଟା ହିଁ ବଡ଼ ।

ଆମେରିକାରୁ ଫେରି ଘରେ ପହଞ୍ଚିଲି, ସାଙ୍ଗେ ସାଙ୍ଗେ ଗୋପାଳକୃଷ୍ଣ ଶ୍ରୀଚନ୍ଦନଙ୍କୁ ଫୋନ୍ କଲି । ତାଙ୍କ ପାଇଁ ଚେକ୍‌ଟିଏ ଅଛି ବୋଲି କହିଲି । ସେ ପଚାରିଲେ କେତେ ଟଙ୍କାର ଚେକ୍ ? କହିଲି, ଆପଣ ଆସନ୍ତୁ ଚେକ୍ ନେଲାବେଳେ ଜାଣିବେ । ଶ୍ରୀଚନ୍ଦନବାବୁ ଆଉ ଡେରି ନକରି ଆସି ପହଞ୍ଚିଗଲେ । ଏକଲକ୍ଷ ଅଠାନବେ ହଜାର ଟଙ୍କାର ଚେକ୍ ଦେଖି ସେ ଆଶ୍ଚର୍ଯ୍ୟ ହୋଇ କହିଲେ, ଉତ୍କଳ ସମ୍ମିଳନୀକୁ ଏକକାଳୀନ ଏତେ ଟଙ୍କା ମିଳିବ ବୋଲି ମୋର ଆଶା ନ ଥିଲା । ସମ୍ମିଳନୀକୁ ଓଡ଼ିଶା ସରକାର ଏଇ କେତେ ବର୍ଷ ହେବ ବାର୍ଷିକ ଦଶ ହଜାର ଟଙ୍କା ଅନୁଦାନ ଦେଉଛନ୍ତି । ସେଇ ଚେକ୍‌ଟା ଆମ ପାଇଁ ଯଥେଷ୍ଟ ବୋଲି ଭାବୁ । ଯାହାହେଉ ଏତକ ଟଙ୍କା ପାଇ ଆମେ ନୂଆଘରକୁ ସମ୍ମିଳନୀ କାର୍ଯ୍ୟାଳୟ ଉଠାଇ ନେଇପାରିବା । ତେବେ, ଯାହା କିଛି କରାଯିବ ସେ ବିଷୟ ଆମ କାର୍ଯ୍ୟକାରୀ କମିଟିରେ ପଡ଼ି ନିଷ୍ପତ୍ତି ହେବ । କହିଲି, ମୋତେ ସେହି କମିଟି ବୈଠକରେ ଉପସ୍ଥିତ ରହିବାର ସୁଯୋଗ ଦେବାକୁ ଅନୁରୋଧ କରୁଛି । ସେ କହିଲେ, ଆମ ସଭାପତି ବଳ୍କିପାତ୍ର ବାବୁ ନିଶ୍ଚୟ ଆପଣଙ୍କୁ ଡାକିବେ ।

ପ୍ରାୟ ୧୦/୧୨ ଦିନ ଛାଡ଼ି ମୋତେ ଗୋଦାବରୀଶ ସାହିତ୍ୟ ସଂସଦରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ କାର୍ଯ୍ୟକାରୀ କମିଟି ବୈଠକକୁ ଡକା ହେଲା । ଯୁକ୍ତରାଷ୍ଟ୍ର ଆମେରିକାରେ ସାତଟି ଶାଖା ସୃଷ୍ଟି କରି ସଭ୍ୟ/ସଭ୍ୟାମାନଙ୍କଠାରୁ ଏତେ ଗୁଡ଼ାଏ ଆଜୀବନ ସଭ୍ୟ ଚାନ୍ଦା ସଂଗ୍ରହ କରି ଉତ୍କଳ ସମ୍ମିଳନୀକୁ ଦେଉଥିବାରୁ ସଭାପତି ମୋତେ ଧନ୍ୟବାଦ ଜଣାଇଲେ । ଏଣିକି ବିଦେଶରେ ଉତ୍କଳ ସମ୍ମିଳନୀ ଶାଖା ଗଠନକରାଯାଇ ପାରିବ ବୋଲି ଏହି କମିଟିରେ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହେଲା । ଏହିପ୍ରସ୍ତାବ ଅନୁଯାୟୀ ସମ୍ମଳନୀର ସମ୍ବିଧାନରେ ବ୍ୟବସ୍ଥା ରହିବ । ମହାସଚିବ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ କହିଲେ, ସମ୍ବିଧାନ ଅନୁସାରେ ଆମର ଆଜୀବନ ସଭ୍ୟ ଚାନ୍ଦା ମାତ୍ର ଟ.୧୦୦/- ରଖାଯାଇ ପାରିବ । ମାତ୍ର ଆମେରିକାର ଓଡ଼ିଆ ମାନେ ଏ ବାବଦ ଜଣପିଛା ଟ୮୦୦/- ଦେଇଛନ୍ତି । ତେଣୁ ଏଥିରୁ ଶହେ ଟଙ୍କା ଆଜୀବନ ସଭ୍ୟଚାନ୍ଦା ବାବଦ ରଖାଯାଇ ବଳକା ସାତଶହ ଟଙ୍କା ଉତ୍କଳ ସମ୍ମିଳନୀକୁ ସେମାନଙ୍କର ଦାନ ବୋଲି ଦେଖାଇ ଦିଆଯାଉ । ମୁଁ କହିଲି, ଏପରି କରିବାଦ୍ୱାରା ମୋତେ ଜଣେ ପ୍ରବଞ୍ଚକ ଭାବେ ଆମେରିକାର ଓଡ଼ିଆ ମାନେ ଘୃଣା କରିବେ । ସେମାନଙ୍କୁ ଯେଉଁ ରସିଦ ଦିଆଯାଇଛି; ତହିଁରେ ସ୍ୱାମୀ ସ୍ତ୍ରୀ ଦୁହିଁଙ୍କର ଆଜୀବନ

ସଭ୍ୟ ଚାନ୍ଦା ଚାଳିଶ ଡଲାର ବା ଷୋଳଶହ ଟଙ୍କା ଲେଖା ହୋଇଛି । ତେଣୁ ଜଣ ପିଛା ଆଠ ଶହ ଟଙ୍କା ସେମାନଙ୍କଠାରୁ ଆଜୀବନ ସଭ୍ୟ ଚାନ୍ଦା ଆଦାୟ ହୋଇଥିବା ସ୍ଥଳେ ଏଠି ଏକ ଶହ ଟଙ୍କା ରଖାଯିବା ଅନ୍ୟାୟ ବୋଲି ଧରାଯିବ । ସଭାପତି ମୋତେ ସମର୍ଥନ କଲେ । ମୁଁ ପୁଣି କହିଲି, ସେଠାକାର ଓଡ଼ିଆମାନଙ୍କ ମତରେ ଏହି ଟଙ୍କା ଉତ୍କଳ ସମ୍ମିଳନୀ ନାମରେ ବ୍ୟାଙ୍କରେ ସ୍ଥାୟୀଜମା ଭାବେ ରଖାଯିବ ଓ ସେଥିରୁ ପ୍ରତିବର୍ଷ ଯେଉଁ ସୁଧ ମିଳିବ ତହିଁରେ ସମ୍ମିଳନୀର ଘରଭଡ଼ା, କର୍ମଚାରୀଙ୍କ ଦରମା ବା ଅନ୍ୟାନ୍ୟ କାର୍ଯ୍ୟାଳୟ ଖର୍ଚ୍ଚ ଚଳିବ । ଏଥିସହିତ ପୂର୍ବରୁ ଯେତେ ସଂଖ୍ୟକ ସଭ୍ୟମାନଙ୍କ ଠାରୁ ଆଜୀବନ ସଭ୍ୟ ଚାନ୍ଦା ସଂଗୃହୀତ ହୋଇଛି, ସେସବୁ ଅର୍ଥ ମଧ ସ୍ଥାୟୀଜମା ଭାବେ ବ୍ୟାଙ୍କରେ ଗଚ୍ଛିତ ରହିବ । ଶ୍ରୀଚନ୍ଦନବାବୁ କହିଲେ ଆମର ଆର୍ଥିକସମ୍ବଳ ନ ଥିବାରୁ ସେସବୁ ଟଙ୍କା ଆମେ ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ଖର୍ଚ୍ଚ କରି ଦେଉ ପୁଣି ସଭ୍ୟଚାନ୍ଦା ବା ଦାନ ମିଳିଲେ ସେ ଟଙ୍କା ଭରଣା ଲକ୍ଷ୍ୟରେ ଅପେକ୍ଷା କରିଥାଉ । କହିଲି, ଏ ପର୍ଯ୍ୟନ୍ତ ଖୁବ୍ କମ୍ ଲୋକ ସମ୍ମିଳନୀର ଆଜୀବନ ସଦସ୍ୟ ଅଛନ୍ତି । ସେମାନଙ୍କ ସଂଖ୍ୟା ଆମେରିକାର ସଭ୍ୟସଭ୍ୟାଙ୍କ ଠାରୁ ଢେର କମ୍ ହେବ । ତେଣୁ ଏହି ଅର୍ଥ ପରିମାଣ ଆନୁମାନିକ ସାତ-ଆଠ ହଜାର ଟଙ୍କାରୁ ବେଶୀ ହେବ ନାହିଁ । ଏବେ ସ୍ଥାୟୀ ଜମା ଉପରେ ବ୍ୟାଙ୍କ ସୁଧ ଶତକଡ଼ା ୧୨ ହୋଇଥିବାରୁ ଏହି ଟଙ୍କାର ସୁଧରୁ ସେତିକି ଟଙ୍କା ସେ ସଭ୍ୟଚାନ୍ଦା ବାବଦ ବ୍ୟାଙ୍କରେ ପୁଣି ସ୍ଥାୟୀ ଜମା ଭାବେ ରଖାଯାଇ ପାରିଲେ ଅଭାବ ମେଣ୍ଟି ଯାଇପାରିବ । ତା ଛଡ଼ା ଏବେ ପ୍ରତି ଜିଲ୍ଲାରେ ଉତ୍କଳ ସମ୍ମିଳନୀର ଶାଖା ଖୋଲା ଯାଇ ଅଧିକରୁ ଅଧିକ ସଭ୍ୟ / ସଭ୍ୟାଙ୍କୁ ନିଆଯାଇ ପାରିଲେ ସଭ୍ୟଚାନ୍ଦା ବାବଦ ସେସବୁ ଅର୍ଥ ମଧ ଗଚ୍ଛିତ ହୋଇ ରହି ପାରିବ । ଏସବୁ ପ୍ରସ୍ତାବ ସଭା ବହିରେ ଲେଖା ହୋଇ ରହିଲା । ଯୁକ୍ତରାଷ୍ଟ୍ର ଆମେରିକାର ପ୍ରତିଶାଖାରେ ସଭ୍ୟ ସଭ୍ୟାଙ୍କର ଠିକଣା ଓ ଫୋନ ନମ୍ବର ଥାଇ ମୁଁ ପ୍ରସ୍ତୁତ କରିଥିବା ଏକ ତାଲିକା ସଭାପତିଙ୍କୁ ଦେଇ କହିଲି, ଗୋପାଳକୃଷ୍ଣ ବାବୁ ମୋତେ ମାତ୍ର ୧୫ଟି ରସିଦ ଦେଇଥିଲେ । ସେସବୁର ଜେରକ୍ସ କପି କରି ମୁଁ ଆମେରିକାରେ ସଭ୍ୟ ସଭ୍ୟାଙ୍କୁ ଦେଇଛି । ଏବେ ସେମାନେ ଉତ୍କଳ ସମ୍ମିଳନୀର ବିଧିବଦ୍ଧ ସଭ୍ୟସଭ୍ୟା ହେଲେ ବୋଲି ସଭାପତି ଓ ମହାସଚିବଙ୍କ ଦସ୍ତଖତ ଥାଇ ପ୍ରତି ସଭ୍ୟ ଓ ସଭ୍ୟାଙ୍କ ପାଖକୁ ଚିଠି ଲେଖାଯାଉ । ସେପରି ଚିଠି ପାଇଲେ ସେମାନେ ଖୁସି ହେବେ ଓ ସେଠାକାର ଶାଖା ଗୁଡ଼ିକ ପରିଚାଳିତ କରିବାକୁ ପ୍ରେରଣା ପାଇବେ । ଏହି ପ୍ରସ୍ତାବ ସର୍ବସମ୍ମତି କ୍ରମେ ସ୍ୱୀକୃତ ହେଲା । ବକ୍ସିପାତ୍ର ବାବୁ କହିଲେ ଏହି ଚିଠିଟି କିପରି ଲେଖାଯିବ, ଆପଣ ଓ ଶ୍ରୀଚନ୍ଦନବାବୁ ତାର ଏକ ଚିଠା ପ୍ରସ୍ତୁତ କରନ୍ତୁ । ସାଙ୍ଗେ ସଙ୍ଗେ ଚିଠା ପ୍ରସ୍ତୁତ ହେଲା । ମାତ୍ର ପ୍ରତି ଚିଠି ପାଇଁ ଟ ୧୪/- ଡାକଟିକେଟ ହିସାବ କରି ସେ ବାବଦ ପ୍ରାୟ ତିନି ହଜାର ଟଙ୍କା ଖର୍ଚ୍ଚ ହୋଇ ଯିବାର ହିସାବ ଦେଖି ମୁଁ କହିଲି ଉତ୍କଳ ସମ୍ମିଳନୀ ପକ୍ଷରେ ଏତେ ଗୁଡ଼ାଏ ଟଙ୍କା ଡାକ ଖର୍ଚ୍ଚ

କରିବା ଠିକ୍ ହେବ ନାହିଁ । ତେଣୁ ପ୍ରତି ଶାଖାର ଆବାହକ ମାନଙ୍କ ପାଖକୁ ସେହି ଶାଖାର ସଭ୍ୟ ସଭ୍ୟାଙ୍କ ଚିଠିଗୁଡ଼ିକ ଗୋଟିଏ ଗୋଟିଏ ଲଫାପାରେ ଭରି ପଠାଇ ଦେଲେ ମାତ୍ର ୧୦/୧୨ଟି ଚିଠିରେ କାମ ଚଳିଯିବ । ତାହାହିଁ ହେଲା ।

ଏସବୁ କାମ ସାରି କଟକ ଜିଲ୍ଲା ସଭାପତି ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀଙ୍କୁ ଦେଖା କରିବାକୁ ଯାଇ ଦେଖିଲି, ସେ କର୍କଟ ରୋଗରେ ପୀଡ଼ିତ ହୋଇ ଶଯ୍ୟାଶାୟୀ ହୋଇଛନ୍ତି । ତାଙ୍କର ଜଂଘ ସନ୍ଧିରୁ ଏହି ରୋଗ ଆରମ୍ଭ ହୋଇ ଆଣ୍ଠୁ ପର୍ଯ୍ୟନ୍ତ ମାଡ଼ି ଯାଇଥିଲା । ତେଣୁ ସେ ଚାଲିପାରୁ ନ ଥିଲେ । ଏବେ ସେହି ରୋଗ ତାଙ୍କର ପେଟ ଭିତରକୁ ମାଡ଼ିଯାଇ ଶରୀରରକ୍ଷାକାରୀ ଗୁରୁତ୍ୱପୂର୍ଣ୍ଣ ଅଂଶଗୁଡ଼ିକୁ ନଷ୍ଟ କରିଦେଇଛି । ସେ ଆଉ କଥା କହିପାରୁନଥିଲେ । ତାଙ୍କୁ ଦେଖି ମୋତେ ବହୁତ ଦୁଃଖ ଲାଗିଲା । ମୁଁ ଯୁକ୍ତରାଷ୍ଟ୍ର ଆମେରିକାରେ ରହିବାର ମାତ୍ର ଚାରିମାସ ଭିତରେ ସେ ଏପରି ହୋଇପଡ଼ିବେ ବୋଲି ମୁଁ ଭାବିପାରୁନଥିଲି । ତାଙ୍କୁ ଆଗରେ ରଖି ସମସ୍ତ ଉତ୍କଳ ସମ୍ମିଳନୀ କାର୍ଯ୍ୟ ମୁଁ କରି ଯାଉଥିଲି । ଏଣିକି ସେହି କାର୍ଯ୍ୟ ଏକା ତୁଲାଇବାକୁ ପଡ଼ିବ ।

## କଟକ ଲେଖକ ସହଯୋଗ ସମିତି

ସରକାରୀ ଚାକିରୀରୁ ଅବସର ଗ୍ରହଣ କରିବା ବେଳକୁ ପ୍ରାୟ ୧୫/୧୬ ଖଣ୍ଡ ପୁସ୍ତକ ମୋର ପ୍ରକାଶିତ ହୋଇ ସାରିଥିଲା । ସେଥିଲାଗି ମୁଁ ତିନି ଚାରି ଜଣ ପ୍ରକାଶକଙ୍କର ସାହାଯ୍ୟ ଲୋଡ଼ିଥିଲି । ଗ୍ରନ୍ଥମନ୍ଦିର, କଟକ ପବ୍ଲିସିଂ ହାଉସ୍, ସାଥିମହଲ ଓ ଜେ. ମହାପାତ୍ର ଏଣ୍ଡ କୋ ମୋର କେତେ ଖଣ୍ଡ ବହି ଛାପିଥିଲେ, ମାତ୍ର ନିଜ ଲୋକଙ୍କୁ ବାଣ୍ଟିବା ପାଇଁ ମୋତେ ସେମାନଙ୍କଠାରୁ ଖୁବ୍ କମ୍ ବହି ମିଳୁଥିଲା । ସେଥିଲାଗି ମୋ ନିଜର ଏକ ପ୍ରକାଶନ ସଂସ୍ଥା ଆରମ୍ଭ କଲି । ମୁଁ ଉପନିର୍ଦ୍ଦେଶକ ଥିଲା ବେଳେ ଲେଖକ ଯୁଗଳ କିଶୋର ଦତ୍ତ ମୋ ବିଭାଗରେ ସହକାରୀ ନିବନ୍ଧକ ଭାବେ କାର୍ଯ୍ୟ କରୁଥିଲେ । ଆମେ ଭୁବନେଶ୍ୱର ଲେଖକ ସାମ୍ମୁଖ୍ୟ ସହିତ ଜଡ଼ିତ ଥିଲୁ । ଭୁବନେଶ୍ୱରରେ ଗୋଟିଏ ଲେଖକ ସହଯୋଗ ସମିତି ଅଛି ବୋଲି ତାଙ୍କଠାରୁ ଜାଣିଥିଲି, ହେଲେ କଟକରେ ସେହିଭଳି ଏକ ସଂସ୍ଥା ଥିବାର ଜାଣି ନ ଥିଲି । ଭୁବନେଶ୍ୱର ଲେଖକ ସହଯୋଗ ସମିତି ପଛରେ ଲେଖକ ସାମ୍ମୁଖ୍ୟର ପୂର୍ଣ୍ଣ ସମର୍ଥନ ରହିଛି । ଲେଖକ ସାମ୍ମୁଖ୍ୟର ସଭାପତି ଶ୍ରୀ ସାତକଡ଼ି ହୋତା ମଧ୍ୟ ସେହି ଲେଖକ ସହଯୋଗ ସମିତିର ଏ ପଯ୍ୟନ୍ତ ସଭାପତି ରହିଛନ୍ତି । ଚାରିନମ୍ବର ସେକ୍ଟରର ଗୋଟିଏ ସରକାରୀ କ୍ୱାଟର ଏହି ସମିତିର କାର୍ଯ୍ୟାଳୟ ଭାବେ ମିଳିଛି । ମାତ୍ର କଟକ ଲେଖକ ସହଯୋଗ ସମିତିର ନିଜସ୍ୱ ଘର ନାହିଁ କିମ୍ବା ଏକ ସଂଗଠିତ ଲେଖକମଣ୍ଡଳି ଏହାପଛରେ ନାହାନ୍ତି । ତେଣୁ ଏହି ସଂସ୍ଥାକୁ ବଞ୍ଚାଇ ରଖିବା

ଅସମ୍ଭବ ମନେ ହେଉଥିଲା । ଏପରିକି ଲେଖକମାନେ ଯେ ଏକ ସହଯୋଗ ସମିତି ଗଠନ କରିପାରନ୍ତି ସେ ଧାରଣା ମୋର ନ ଥିଲା । ଗତ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଲେଖକମାନଙ୍କର ପାଣ୍ଡୁଲିପି ଛାପିବା ପାଇଁ ନୂଆ ନୂଆ ପ୍ରକାଶକମାନେ ଆଗ୍ରହୀ ହୋଇ ସେମାନଙ୍କୁ ସାହାଯ୍ୟ କରୁଥିଲେ । ମାତ୍ର କ୍ରମଶଃ ଲେଖକ ଓ କବିଙ୍କ ସଂଖ୍ୟା ବୃଦ୍ଧି ପାଇବା ବେଳକୁ ପ୍ରକାଶନ ସଂସ୍ଥା ତଦନୁଯାୟୀ ନ ବଢ଼ିବା ଫଳରେ ବହୁ ଲେଖକ ଓ କବିଙ୍କର ପାଣ୍ଡୁଲିପି ଲୋକଲୋଚନକୁ ଆସିବା ସମ୍ଭବପର ହେଲା ନାହିଁ । ତେଣୁ ପ୍ରଥମେ ଭୁବନେଶ୍ୱରରେ ଏକ ସହଯୋଗ ସମିତି ଗଠିତ ହେଲା । ଯେଉଁ ଲେଖକମାନେ ପ୍ରକାଶନ କ୍ଷେତ୍ରରେ ଅସୁବିଧା ଭୋଗ କଲେ ସେମାନେ ଏକତ୍ରିତ ହୋଇ ସମବାୟ ସମିତି ଜରିଆରେ ପୁସ୍ତକ ପ୍ରକାଶ କଲେ । ଓଡ଼ିଶା ସରକାରଙ୍କ ସମବାୟ ବିଭାଗ ପକ୍ଷରୁ ମଧ୍ୟ ପ୍ରତିବର୍ଷ କିଛି ଅନୁଦାନ ଏହି ସମବାୟ ସମିତିକୁ ମିଳୁଥିଲା । ଲେଖକମାନେ ଚାନ୍ଦା କରି ସମବାୟ ସମିତି ଜରିଆରେ ବହୁ ପୁସ୍ତକ ଛପାଇ ବିକ୍ରୀ କରିବାର ସୁବିଧା ସୃଷ୍ଟି କଲେ । ଭୁବନେଶ୍ୱର ପରେ କଟକରେ ଗତ ଶତାବ୍ଦୀର ସତୁରି ଦଶକରେ ଲେଖକ ସମବାୟ ସମିତି ସୃଷ୍ଟି ହେଲା । ଲେଖକମାନଙ୍କ ପାଇଁ କଟକରେ ଏପରି ଏକ ସମବାୟ ସଂସ୍ଥା ତିଆରି ହେବା କେବଳ ସମ୍ଭବ ହେଲା ବ୍ୟଙ୍ଗ ସାହିତ୍ୟିକ ଫତୁରାନନ୍ଦଙ୍କ ଯୋଗୁଁ । ତାଙ୍କରି ସହଯୋଗରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର କଟକରେ ପ୍ରେସ କରି 'ଡଗର' ପତ୍ରିକା ଛପାଉଥିଲେ । ଫତୁରାନନ୍ଦ ମହାଶୟ ସେ ସମୟରେ ଲେଖକମାନଙ୍କର ଅସୁବିଧା ହୃଦୟଙ୍ଗମ କରିଥିଲେ । ତେଣୁ ସେ ସମୟର ସୀମିତ ସଂଖ୍ୟକ ପ୍ରକାଶକଙ୍କ ଦ୍ୱାରା ନୂଆ କରି ଲେଖା ଆରମ୍ଭ କରୁଥିବା କବି ଓ ଲେଖକମାନେ ଉପକୃତ ନ ହୋଇପାରିବା ଆଶଙ୍କାରେ ଏପରି ଏକ ସଂସ୍ଥାର ଆବଶ୍ୟକତା ସେ ଅନୁଭବ କରିଥିଲେ । ହେଲେ, ଏପରି ଏକ ସଂଗଠନ ଥିବା ବିଷୟରେ ମୋର ଆଦୌ ଧାରଣା ନ ଥିଲା । ସେଥିଯୋଗୁଁ ମୋର ପ୍ରଥମ ବହିଟି ଛପାଇବାକୁ ଜଣେ ଠକ ମୁଦ୍ରାକର ହାବୁଡ଼େ ପଡ଼ି କ୍ଷତିଗ୍ରସ୍ତ ହୋଇଥିଲି ।

ସେଦିନ ବାଦାମବାଡ଼ି ଜୀବନବୀମା କଲୋନୀରେ ରହୁଥିବା ଶ୍ରୀ ନଟବର ସାହୁଙ୍କ ସହିତ ମୋର ଦେଖା ହେଲା । ସେ ମୋତେ କଟକ ଲେଖକ ସହଯୋଗ ସମିତି କଥା କହିଲେ । ଏହି ଅନୁଷ୍ଠାନର ପ୍ରତିଷ୍ଠାତା ବ୍ୟଙ୍ଗସାହିତ୍ୟିକ ଫତୁରାନନ୍ଦଙ୍କ ସହିତ ମୋର କେବେ ସାକ୍ଷାତ ହୋଇ ପାରିନଥିଲା । ମାତ୍ର ତାଙ୍କ ବିଷୟରେ ମୁଁ ବହୁ ବାବୁଙ୍କଠାରୁ ଶୁଣିଥିଲି । ତାଙ୍କ ସଭାପତିତ୍ୱରେଏହି ଅନୁଷ୍ଠାନ ଗଠିତ ହୋଇଥିଲା । ମାତ୍ର ଅର୍ଥାଭାବରୁ ଠିକ୍‌ଭାବେ ଏହା ପରିଚାଳିତ ହୋଇ ପାରୁ ନଥିଲା । ନଟବରବାବୁ କହିଲେ ଆପଣ ଏହାର ଦାୟିତ୍ୱ ନେଲେ ଭଲ ହୁଅନ୍ତା । କହିଲି, ଠିକ୍ ଅଛି ଦେଖିବା । ସାହୁବାବୁ ଚାଲିଗଲେ । ମାତ୍ର ଦିନେ ରବିବାର ସକାଳେ ଆସି ସମିତିର ସମ୍ପାଦକ ଶ୍ରୀ ରଘୁନାଥ

ମହାପାତ୍ର ଲେଖକ ସହଯୋଗ ସମିତି ମିଟିଂକୁ ଯିବା ପାଇଁ ମୋତେ ନିମନ୍ତ୍ରଣ କଲେ । ସେଦିନ ଉପରବେଳା କାର୍ଯ୍ୟକାରୀ କମିଟିର ଦଶ ବାର ଜଣ ସଭ୍ୟ ଏହି ମିଟିଂରେ ଉପସ୍ଥିତ ଥାଆନ୍ତି । ଫତୁରାନନ୍ଦଙ୍କ ପରେ ବହୁବର୍ଷ ଧରି ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନ୍ତି ଏହି ଅନୁଷ୍ଠାନର ସଭାପତି ରହିଥିଲେ । ଅଧ୍ୟାପକ ବିଜୟାନନ୍ଦ ସିଂ ମଧ୍ୟ କାର୍ଯ୍ୟକାରୀ କମିଟିର ସଭ୍ୟ ଥାଆନ୍ତି । ମୋତେ ଏମାନେ ଅନୁଷ୍ଠାନର ଆଜୀବନ ସଭ୍ୟ ହେବା ପାଇଁ ଅନୁରୋଧ କଲେ । ସାଙ୍ଗେସାଙ୍ଗେ ସମ୍ପାଦକ ଶ୍ରୀ ରଘୁନାଥ ମହାପାତ୍ର ମୋଠାରୁ ସଭ୍ୟଚାନ୍ଦା ନେଇ ରସିଦ କାଟିଦେଲେ। ତାପରେ ଅନୁଷ୍ଠାନର ନିର୍ବାଚନ ପ୍ରଶ୍ନ ଉଠିଲା । ନଟବର ବାବୁଙ୍କ ପ୍ରସ୍ତାବ ଅନୁସାରେ ମୁଁ ସଭାପତି ହେବା ପାଇଁ ସମସ୍ତେ ସହମତ ହେଲେ । ପଚାରିଲି ପନ୍ଦରବର୍ଷ ଧରି ଏହି ଅନୁଷ୍ଠାନ ଏ ପର୍ଯ୍ୟନ୍ତ କିଛି ଆର୍ଥିକସମ୍ବଳ ନଥାଇ କିପରି ଭାବରେ କାର୍ଯ୍ୟ କରୁଛି ? ତହିଁରେ ଉନ୍ନତି ଆଣିବା ମୋ ପକ୍ଷେ ଅସମ୍ଭବ ହୋଇ ପଡ଼ିବା ଭଳି ଲାଗୁଛି । ତେଣୁ ଆପଣମାନେ ଏ ଗୁରୁ ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରିବା ଠିକ୍ ହେବ ନାହିଁ । ଡକ୍ଟର ଶ୍ୟାମସୁନ୍ଦର ମିଶ୍ର କହିଲେ ଆପଣ ଏହି କାମକୁ ଠିକ୍ ବାଟରେ ଚଳାଇ ପାରିବେ ବୋଲି ଆମେ ଭାବୁଛୁ । ଆପଣ ଦାୟିତ୍ୱ ନିଅନ୍ତୁ, ଆମେସବୁ ସାଙ୍ଗରେ ଅଛୁ । ଏତେ ସ୍ୱନାମଧନ୍ୟ ବ୍ୟକ୍ତିମାନଙ୍କ ଅନୁରୋଧ ମାନିନେବାକୁ ବାଧ୍ୟ ହେଲି ।

ଦୁଇ ଚାରିଦିନ ଛାଡ଼ି ସମ୍ପାଦକ ରଘୁନାଥ ମହାପାତ୍ରଙ୍କ ସହିତ ଲେଖକ ସହଯୋଗ ସମିତିର ପୁସ୍ତକ ବିକ୍ରୟକେନ୍ଦ୍ର ଦେଖିବା ପାଇଁ ଗଲି । ବାଦାମବାଡ଼ି ବସ୍‌ଷ୍ଟାଣ୍ଡରୁ ଯେଉଁ ପଟେ ବସ୍‌ଗୁଡ଼ିକ ବାଦାମବାଡ଼ି-ଖାନ୍‌ଗନର ରାସ୍ତା ଉପରକୁ ଉଠି ଲିଙ୍କ୍‌ରୋଡ୍ ରାସ୍ତାକୁ ଯାଆନ୍ତି, ସେହି ଉଠାଣି ରାସ୍ତା ଆରପଟେ ଗୋଟିଏ ଆଜବେଷ୍ଟସ୍ ଘର ଭଡ଼ା ନେଇ ସେହି ଘରେ ବହିପତ୍ର ରଖାଯାଇ ବିକ୍ରି କରାଯାଉଥାଏ । ମାସକୁ ଘରଭଡ଼ା ଛଅଶହ ଟଙ୍କା ଦିଆ ହୁଏ । ଲେଖକମାନଙ୍କ ପକ୍ଷରୁ ପ୍ରକାଶିତ ପୁସ୍ତକଗୁଡ଼ିକର କ୍ୱଚିତ୍ ବିକ୍ରୀବଟା ହୁଏ, ମାତ୍ର ବିଦ୍ୟାଳୟ ମାନଙ୍କରେ ପ୍ରଚଳିତ ପାଠ୍ୟ ପୁସ୍ତକ ବିକ୍ରୀ କରି ସାମାନ୍ୟ କିଛି ପଇସା ମିଳେ । ପିଲାଙ୍କ ପାଠ୍ୟବହି ବିକ୍ରୀକରିବା କାମ ବର୍ଷରେ ମାତ୍ର ତିନି ଚାରି ମାସର ବ୍ୟବସାୟ । ଜୁନ୍ ମାସରୁ ଅଗଷ୍ଟଶେଷ ସୁଦ୍ଧା ପାଠ୍ୟ ପୁସ୍ତକ ବିକ୍ରୀ ହୁଏ । ଏହି ସମୟରେ ସେଥିପାଇଁ ଚାରିଆଡ଼େ ବହି ଦୋକାନ ସବୁ ଖୋଲିଯାଏ । ବଜାରରେ କାଗଜ, ପେନ୍‌ସିଲ, କଲମ ଆଦି ପାଠ୍ୟୋପକରଣ ବିକୁଥିବା ଦୋକାନୀମାନେ ମଧ୍ୟ ଏସବୁବହି ବିକ୍ରୀ କରନ୍ତି । ତେଣୁ ଏ ଦିଗରେ ବେଶ୍ ପ୍ରତିଯୋଗିତା ହୁଏ । ଏଥିରେ ପାରି ଉଠିବା ଲେଖକ ସହଯୋଗ ସମିତି ପକ୍ଷରେ ସହଜ ନୁହେଁ । ବହି କିଣିଆଣି ବିକ୍ରୀ କରିବାରେ ବେହିସାବି ହେଲେ ତଳିତଳାନ୍ତ ହୋଇଯିବା କଥା । କାରଣ ଅଗଷ୍ଟ ମାସ ପରେ ଯେତେ ସବୁ ବହି ବିକ୍ରୀ ନ ହୋଇ ରହିଯିବ ସେ ବାବଦ ପ୍ରବଳ କ୍ଷତି ହେବାର ଭୟ ଥାଏ ।

ତହିଁରେ ପୁଣି ବର୍ଷକୁ ବର୍ଷ ପାଠ୍ୟପୁସ୍ତକ ବଦଳି ଯାଏ । ବଳି ପଡୁଥିବା ବହିସବୁ ଲେଖକ ସହଯୋଗ ସମିତି ଉପରେ ବୋଝ ହୋଇ ରହିଯାଏ । ଦେଖିଲି, ଆଉ ପାଞ୍ଚ ବର୍ଷ ଭିତରେ ସମିତି ହାତରେ ଥିବା ସବୁତକ ଟଙ୍କା ନିଃଶେଷ ହୋଇଯିବ ।

ସହଯୋଗ ସମିତିର ଏକ ସଭାଡକାଇ ଏସବୁ କଥା ଆଲୋଚନା ହେଲା । ଘର ଭଡ଼ା ନେଇ ବହିଦୋକାନ ଖୋଲି ଜଣେ ବିକ୍ରେତାକୁ ଦରମାଦେଇ ରଖିବାପାଇଁ ଆମ ପାଖରେ ଆଉ ଟଙ୍କାନାହିଁ ବୋଲି ହିସାବ ବୁଝାଇ ଦେବା ପରେ ପ୍ରଶ୍ନଉଠିଲା ଏବେକ'ଣ କରିବା ? କହିଲି, ଏଥିପାଇଁ ଆମର ନିଜସ୍ୱ ଗୃହର ଆବଶ୍ୟକତା ଅଛି । ରଘୁବାବୁ କହିଲେ ନିଜସ୍ୱ ଜାଗା ନଥାଇ ଘରର ସ୍ୱପ୍ନ ଦେଖିବା ଅସମ୍ଭବ । ଅନ୍ୟମାନେ କହିଲେ ଆମେ ବହୁବାର କଟକ ଜିଲ୍ଲାପାଳଙ୍କୁ ଜାଗାଖଣ୍ଡେ ପାଇଁ ଦରଖାସ୍ତ ଦେଇ ନିରାଶ ହୋଇଛୁ । ହେଲେ କଟକ ପରି ମହାନଗରୀରେ ମାଗଣାରେ ଜାଗାଖଣ୍ଡେ ମିଳିବା ଅସମ୍ଭବ କଥା । ଗୁଣ୍ଠେ ଜମିର ଦାମ୍ କୋଡ଼ିଏ ପଚିଶ ହଜାର ଟଙ୍କାରୁ କମ୍ ନୁହେଁ । ତେଣୁ କଥା ହେଲା, ଏବେ କଟକ ଉନ୍ନୟନ କର୍ତ୍ତୃପକ୍ଷଙ୍କୁ ଲେଖି ଜଣାଇବା । ମର୍କତ ନଗରରେ ହୁଏତ ଜାଗା ଖଣ୍ଡେ ମିଳିପାରେ । କହିଲି, ଏଥିଲାଗି ଦରଖାସ୍ତ ଦେଇସାରି ତା ପଛରେ ଗୋଡ଼େଇବା ଆମ ପକ୍ଷରେ ସହଜ କଥା ନୁହେଁ । ଯଦିବା ଆମେ ଏଥିପାଇଁ ଚେଷ୍ଟା କରିବା, ତଥାପି ଜାଗା ମିଳୁମିଳୁ ୪/୫ ବର୍ଷରୁ କମ୍‌ସମୟ ଲାଗିବ ନାହିଁ । ତାଛଡ଼ା, ସରକାରୀ ଜାଗାଖଣ୍ଡେ ମିଳିବା ସମ୍ଭବ ନୁହେଁ । ସେଥିଲାଗି ରାଜନୈତିକ ଚାପର ଆବଶ୍ୟକତା ଜରୁରୀ । ରାଜନୈତିକ ଲୋକମାନଙ୍କର ସ୍ୱାର୍ଥଦୃଷ୍ଟିରୁ ସରକାରୀ ଜାଗା ଯୋଗାଇବାକୁ ସରକାରୀ କର୍ମଚାରୀମାନେ ଆଗଭର ହୁଅନ୍ତି । କାରଣ ସେମାନଙ୍କର ଭବିଷ୍ୟତ ରାଜନୀତିଜ୍ଞମାନଙ୍କ ହାତରେ । ସେଥିଲାଗି ବାରବାଟୀ ଷ୍ଟାଡ଼ିୟମ୍ ହେଉ ବା ମର୍କତନଗରର ମୁଖ୍ୟରାସ୍ତା ହେଉ, ପୁରୀର ସ୍ୱର୍ଗଦ୍ୱାର ଶ୍ମଶାନ ଜମି ହେଉ କିମ୍ବା ଶିପସରୁବାଲି ହେଉ ସେସବୁକୁ ରାଜନୈତିକ ଲୋକଙ୍କ ନାମରେ କବଲା କରି ଦେବାର ଅସୁବିଧା ନାହିଁ, ମାତ୍ର ଲେଖକ ସହଯୋଗ ସମିତି ପରି ଏକ ଅନୁଷ୍ଠାନ ପାଇଁ କେଉଁଠାରେ ବଖରାଏ ଘର କରିବାକୁ ସରକାରୀ ଜାଗା ମିଳିବା ଅସମ୍ଭବ । ତେଣୁ କଟକ ସହରରେ ଲୋକମାନେ ଯେପରି ଜବରଦଖଲ କରି ଜାଗା ମାଡ଼ି ବସୁଛନ୍ତି ସେପରି ଜାଗାରୁ କିଛି ବୁଝିଲେ ତହସିଲଦାରଙ୍କୁ ଦରଖାସ୍ତ କରି ଲେଖକ ସହଯୋଗ ସମିତି ପାଇଁ ଦୌଡ଼ି ଦୌଡ଼ି ହାଲିଆ ହେବାକୁ ପଡ଼ନ୍ତା ନାହିଁ।

ଆମ ଘରପାଖ କାଠଯୋଡ଼ି ନଦୀ ରିଂବନ୍ଧ କଡ଼ରେ କେତେଟା ଘର ଗଢ଼ିଉଠିଲା । ଘର କରୁଥିବା ଲୋକମାନଙ୍କୁ ପଚାରି ବୁଝିଲି ଯେ ସେ ଜାଗା ଖାନନଗର ଦକ୍ଷିଣକାଳି ମନ୍ଦିରଠାରୁ ସେମାନେ ପାଇଛନ୍ତି । ତେଣୁ କାଳିମନ୍ଦିରକୁ ଯାଇ ଲେଖକ ସହଯୋଗ ସମିତିକୁ ଖଣ୍ଡେ ଜାଗା ଦେବାପାଇଁ ଅନୁରୋଧ କଲି । କାଳିମନ୍ଦିର ପ୍ରତିଷ୍ଠାତା ଯୋଗୀ ବାବାଙ୍କ

ବଡ଼ ପୁଅ କାଳନ୍ଦି ପାଣିଗ୍ରାହୀ ଆମ ପ୍ରସ୍ତାବରେ ରାଜି ହେଲେ ଓ ତାଙ୍କ ଓକିଲ ଶ୍ରୀ ନାରାୟଣ ପରିଜାଙ୍କୁ ଭେଟିବାକୁ କହିଲେ । ନାରଣ ବାବୁ ଆମ ଜଗତସିଂହପୁର ଜିଲ୍ଲାର ଲୋକ । ଏକ ଶିକ୍ଷିତ ଖାନ୍‌ଦାନୀ ପରିବାରରେ ତାଙ୍କର ଜନ୍ମ । ସେ ଲେଖକ, କବି ବା ପ୍ରାବନ୍ଧିକମାନଙ୍କୁ ସମ୍ମାନ ଦିଅନ୍ତି । ତେଣୁ ଲେଖକ ସହଯୋଗ ସମିତିକୁ ଜାଗା ଦେବା ପାଇଁ ସେ ସାହାଯ୍ୟ କରିବାକୁ ରାଜି ହେଲେ। ସେ କହିଲେ କାଳିମନ୍ଦିର ଜାଗାକୁ ଏବେ କାଠଯୋଡ଼ି ରିଂବନ୍ଧର ନୟନଜୋରୀ ଭାବେ କଟକ ମୁନ୍ୟୁନିସିପାଲିଟି ଚିତ୍ରଣ କରିଛି । ଯେତେବେଳେ ରିଂ ବନ୍ଧ ନ ଥିଲା ଏବଂ ମଇଳାଖାତର ପାଚେରୀ ହୋଇ ନ ଥିଲା, ସେତେବେଳେ ଏହି ଜାଗାଟା ସ୍ପଷ୍ଟ ଜଣାପଡୁଥିଲା । ଏବେ ରିଂବନ୍ଧ ଓ ମଇଳାଖାତ ପାଚେରୀ ମଝିରେଥିବା ଜାଗାକୁ ଜଳସେଚନ ବିଭାଗର ଜମି ବୋଲି ଆଖ୍ୟା ଦେଇ ନୂଆ ନକ୍ସାରେ ଚିତ୍ରଣ କରିଥିବାରୁ କାଳିମନ୍ଦିର ପକ୍ଷରୁ ସରକାରଙ୍କର ବିରୁଦ୍ଧରେ ମକଦ୍ଦମା ହୋଇଛି । ଏତିକିବେଳେ କଟକ ଲେଖକ ସହଯୋଗ ସମିତି ପରି ଏକ ସାର୍ବଜନୀନ ଅନୁଷ୍ଠାନ ଆମଜାଗାରେ ଗଢ଼ି ଉଠିଲେ ଆମର ମଧ୍ୟ ମହତ୍ୱ ବଢ଼ିବ । ତେଣୁ ସେଥିଲାଗି କାଳିମନ୍ଦିର ପକ୍ଷରୁ ଜାଗା ଦିଆଯିବା ଅତ୍ୟନ୍ତ ଆନନ୍ଦର କଥା । ଆମେ ଏହି ଜାଗାକୁ ଦାନସୂତ୍ରରେ ଦେବା । ଲେଖକ ସହଯୋଗ ସମିତି ଥିବାପର୍ଯ୍ୟନ୍ତ ଏହି ଜାଗା ସେମାନଙ୍କର ଅଧିକାରରେ ରହିବ । ଯଦି କୌଣସି କାରଣରୁ ସେହି ଅନୁଷ୍ଠାନର କାର୍ଯ୍ୟ ବନ୍ଦ ହୋଇଯାଏ ତାହହେଲେ କାଳି ମନ୍ଦିର ଏହି ଜାଗା ଫେରାଇ ନେବେ ।

ତାହାହିଁ ହେଲା । ନାରାୟଣ ବାବୁ ଏକ ଦାନ ପତ୍ର ପ୍ରସ୍ତୁତ କରି କାଳନ୍ଦିବାବୁଙ୍କୁ ଦେଲେ ଓ ସେ ତାଙ୍କ ମାଆଙ୍କଠାରୁ ଦସ୍ତଖତ କରାଇ ଆମକୁ ଜାଗା ଦେଖାଇ ସାରି ସେହି କାଗଜଟି ଦାନ କଲେ । ଟଙ୍କାଟିଏ ଖର୍ଚ୍ଚ ନ କରି କଟକ ମହାନଗରୀର ମୁଖ୍ୟ ରାସ୍ତା କଡ଼ରେ ୩୦ ଡ଼େସିମିଲ ଜାଗା ପାଇବା ଏକ ସ୍ୱପ୍ନ ପରି ଲାଗୁଥିଲା । ଗୋଟିଏ ମିଟିଂ ଡାକି ସଭ୍ୟମାନଙ୍କୁ ଏ ଖବର ଜଣାଇବା ପରେ ସମସ୍ତେ ଖୁସି ହୋଇଗଲେ । ଏବେ ପ୍ରଶ୍ନ ଉଠିଲା ସେ ଜାଗାରେ କେମିତି ଘରଟିଏ ହେବ? କହିଲି, ଜାଗା ମିଳିଲାଣି ତ ଘର ହୋଇଯିବ । ଆଜବେଷ୍ଟସ୍ ଘର ମାସିକ ଛଅଶହଟଙ୍କା ଦେଇ ଘରଭଡ଼ାନେବା ତୁଳନାରେ ଏହି ଜାଗାରେ ଶସ୍ତାରେ ଘରଟାଏ ତୋଳିବାଦ୍ୱାରା ଭବିଷ୍ୟତରେ ଅର୍ଥାଭାବରୁ ଏହି ସମିତି ବନ୍ଦ ହେଇ ଯିବାର ଭୟ ଆଉ ରହିବନାହିଁ ।

ସହଯୋଗ ସମିତି ଆକାଉଣ୍ଟରେ ମାତ୍ର ତିରିଶି ହଜାର ଟଙ୍କା ଥାଏ । ରଘୁବାବୁଙ୍କୁ କହିଲି କୌଣସି କାର୍ଯ୍ୟ କରିବାକୁ ସାହସ ବାନ୍ଧିବା ହେଉଛି ଅସଲ କଥା । ହାତରେ ଧନ ନ ଥାଇ ମଧ୍ୟ ଭଲ କାମରେ ଆଗେଇବାକୁ ହେବ । କାମଟା ଆରମ୍ଭ ହେବାପରେ ନିଷ୍ଠାପର ଭାବରେ ଚେଷ୍ଟା କଲେ ଡେରିରେ ହେଲେ ମଧ୍ୟ ତାହା ସମ୍ପନ୍ନ ହୋଇ ପାରିବ ।

ତେଣୁ ହାତରେ ଯେତିକି ପୁଞ୍ଜି ଅଛି ସେଇଆକୁ ସମ୍ବଳ କରି ଲେଖକ ସହଯୋଗ ସମିତି ପାଇଁ ଘର ତିଆରି ଆରମ୍ଭକରିଦେବା ।

ଏତିକି ଟଙ୍କାରେ ଘରର ମୂଳଦୁଆ ପକାଇଦେବା । ଟିକିଏ ଚିନ୍ତା କରି ସେ କହିଲେ ଆଉ ଟଙ୍କା ଯୋଗାଡ଼ ନ କରି ଏତିକି ଟଙ୍କାରେ କାମଟା ଆଧା କରି ରଖିବା କାହିଁକି ? କହିଲି, ଏ ଟଙ୍କାଟା ଆମ ପାଖେ ପଡ଼ି ରହିଲେ ଏହାର ମୂଲ୍ୟ କମିଯିବ । ଏବେ ଇଟା, ପଥର ସିମେଣ୍ଟ ବା ମୂଲମଜୁରୀ ଯେତିକି ଅଛି, ଆସନ୍ତାବର୍ଷକୁ ସେସବୁ ବଢ଼ି ଯାଇଥିବ । ତେଣୁ ଏବେ ଏତକ ଖର୍ଚ୍ଚ କରି ଯେତିକିକାମ ହୋଇ ପାରିବ ଛ ମାସ ବା ବର୍ଷେ ପରେ ଆହୁରି କମ୍ କାମ ହେବ । କାମ ଆରମ୍ଭ କରି ସାରି ସମବାୟବିଭାଗରୁ ଏଥିଲାଗି କିଛି ସାହାଯ୍ୟ କିମ୍ବା ଋଣ ମାଗିବା ।

ମୂଳଦୁଆ ତିଆରି ଆରମ୍ଭ ହେଲା । ପନ୍ଦର ଫୁଟ ଚଉଡ଼ା ଓ ୩୦ ଫୁଟ ଲମ୍ବ ବିଶିଷ୍ଟ ଘର ପାଇଁ ଛଅ ଫୁଟ ଉଚ୍ଚ କାନ୍ଥ ତିଆରି ହୋଇଗଲା । ଇତି ମଧ୍ୟରେ ସମବାୟ ବିଭାଗ ପକ୍ଷରୁ ୪୦ ହଜାର ଟଙ୍କାର ଋଣ ମଧ୍ୟ ମଞ୍ଜୁର ହୋଇଗଲା । କିଛି ଲୋକଙ୍କଠାରୁ ଉଧାର ବି ମିଳିଲା । ଛାତ ପଡ଼ିବା ପରେ କବାଟ ଝରକା ତିଆରି ପାଇଁ କାଠ କିଣା ଓ ବଢ଼େଇ ମଜୁରୀ ପାଇଁ ମଧ୍ୟ ଖୁବ୍ ଅଳ୍ପ ଟଙ୍କା ହାତରେ ଥିଲା । ସେତିକି ଭିତରେ ଯେଉଁ ଅଳ୍ପ କାଠ ମିଳିଲା ସେଥିରେ କବାଟ ଚଉକାଠ ଓ ଝରକା ଆଦି କାମ ସାରି ଗୃହ ପ୍ରବେଶ ପାଇଁ ପ୍ରସ୍ତୁତ ହୋଇଗଲୁ । ଶୁଣିବା ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । ଏକ ଲକ୍ଷ ଟଙ୍କାରେ ଘର ତିଆରିହୋଇଛି ଶୁଣି ଆମର ସଭ୍ୟ ସଭ୍ୟାମାନେ ବହୁତ ଖୁସିହେଲେ । ଆମେ ଘର ଭଡ଼ାରୁ ରକ୍ଷାପାଇଲୁ । ମାତ୍ର ହାତରେ ଆଉ ଟଙ୍କାଟିଏ ବି ନ ଥିଲା ।

ବହୁଲେଖକ ତାଙ୍କର ପାଣ୍ଡୁଲିପି ଛପାଇବାକୁ ଅନୁରୋଧ କଲେ । ତନ୍ମଧ୍ୟରେ ଥିଲେ ଝାଡ଼ଖଣ୍ଡ ରାଜ୍ୟର ଡାକ୍ତର ବିନି ଷଡ଼ଙ୍ଗୀ । ସେ ଜଣେ ଓଡ଼ିଆକବି ଓ ଲେଖିକା । ତାଙ୍କ ସ୍ୱାମୀ ଡାକ୍ତର ଦୀନେଶ କୁମାର ଷଡ଼ଙ୍ଗୀ ଝାଡ଼ଖଣ୍ଡର ସ୍ୱାସ୍ଥ୍ୟମନ୍ତ୍ରୀ ଥାଆନ୍ତି । ବିନି ଷଡ଼ଙ୍ଗୀଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ ପୁସ୍ତକ ଆମେ ଛାପିବାକୁ ଗ୍ରହଣକଲୁ । ତା ସାଙ୍ଗକୁ କଟକର ମଧ୍ୟ ୫/୬ ଜଣ ଲେଖକ ଓ କବି ସେମାନଙ୍କର ବହି ଛପାଇବାକୁ ଆଗ୍ରହୀ ଥିଲେ । ଘରତିଆରି ସରିବାପରେ ବହିଛାପିବା କାମରେ ଆମେ ଲାଗିପଡ଼ିଲୁ । ଅବଶ୍ୟ ଆମହାତରେ ଆଦୌ ମୂଳଧନ ନ ଥିଲା । ମାତ୍ର ଲେଖକ ଲେଖିକାମାନେ ଆବଶ୍ୟକୀୟ ଅର୍ଥ ସାହାଯ୍ୟ କଲେ । ସେସବୁ ବହି ବିକ୍ରୀକରିବା ପାଇଁ ଜଣେ ଯୁବକଙ୍କୁ ରଖାଗଲା । ସେ ବିଭିନ୍ନ ପୁସ୍ତକମେଳା ଓ ବହି ଦୋକାନ ବୁଲି ଆମ ବହିସବୁ ବିକ୍ରୀ କରିବାକୁ ଚେଷ୍ଟାକଲେ ମାତ୍ର ତାଙ୍କର ଦରମା ପାଇଁ ବିକ୍ରିଲବ୍ଧଧନ ଆଦୌ ଅଣ୍ଟିଲା ନାହିଁ । ବହି ବିକ୍ରୀକରି ତାଙ୍କର ଦରମା ଦେବା ଅସମ୍ଭବ ହୋଇ ପଡ଼ିଲା । ଉତ୍କଳ ସମ୍ମିଳନୀ ପାଇଁ ମଧ୍ୟ ଜଣେ ଲୋକ ସାମୟିକ

କାର୍ଯ୍ୟ କରିବାକୁ ଆବଶ୍ୟକ ହେଉଥିଲା । ତେଣୁ ସେହି ପାଣ୍ଠିରୁ ତାଙ୍କ ଦରମାରୁ ଅଧା ଭରଣା କରାଗଲା । ହେଲେ ଲେଖକ ସହଯୋଗ ସମିତି ପାଇଁ ବହି ବିକିବାକୁ ଲୋକରଖିବା ଆମପାଇଁ ଖୁବ୍ ମହଙ୍ଗା ପଡ଼ିଲା । ଘର ସାରା ବହିସବୁ ଥାକଥାକ ହୋଇ ଭରିଗଲା । ମାତ୍ର ବହି ଖଣ୍ଡେ କିଣିବାକୁ ଗ୍ରାହକ ନାହାନ୍ତି । ଡିସେମ୍ବର ଠାରୁ ଅପ୍ରେଲ ମାସ ଭିତରେ ବିଭିନ୍ନ ସ୍ଥାନରେ ପୁସ୍ତକମେଳା ହୁଏ । ପୁସ୍ତକ ମେଳାରେ ନିଜର ଗୋଟିଏ ଦୋକାନ ଖୋଲି ଦଶପନ୍ଦର ଦିନ ପାଇଁ ଯେତିକି ଭଡ଼ା ପଡ଼େ ସେତିକି ଟଙ୍କାର ବହି ବିକ୍ରି ହୁଏ ନାହିଁ । ଏପରି କି ଅନ୍ୟ ଦୋକାନ ସହିତ ଅଂଶୀଦାର ହୋଇ ବହି ବିକ୍ରୀପାଇଁ ପଠାଇଲେ ମଧ୍ୟ ବହି ବିକ୍ରୀପଇସା; ଜାଗାଭଡ଼ା ବିକ୍ରୀ କରୁଥିବା ଲୋକର ମଜୁରୀ ଓ ବାଟଖର୍ଚ୍ଚକୁ ନିଅଣ୍ଟ ହୁଏ । ତେଣୁ ପୁସ୍ତକ ମେଳାକୁ ବହି ପଠାଇବା ମଧ୍ୟ ବନ୍ଦ ହୋଇଗଲା ।

ମୋ ସାଙ୍ଗକୁ ସବୁଯାକ ଚାପପଡ଼ିଲା ସମ୍ପାଦକ ରଘୁନାଥ ମହାପାତ୍ରଙ୍କ ଉପରେ । ଲେଖକ ମାନଙ୍କର ବହି ଛପାଇବା କାର୍ଯ୍ୟ ସେ ନିଷ୍ଠାର ସହିତ କରନ୍ତି । ଆମେ ଦୁହେଁ ମିଶି ପ୍ରୁଫ୍‌ରିଡ଼ିଂ କରିଦେଉ । କେବଳ ଯେ, କଟକ ବା ଭୁବନେଶ୍ୱରରେ କିମ୍ବା ଓଡ଼ିଶା ରାଜ୍ୟରେ ଲେଖକ ଓ କବିମାନେ ସେମାନଙ୍କର ଲେଖା ଛାପିବାପାଇଁ ଲାଳାୟିତ ସେ କଥା ନୁହେଁ । ଝାଡ଼ଖଣ୍ଡ, ଛତିଶଗଡ଼, ଆନ୍ଧ୍ର ଓ ପଶ୍ଚିମବଙ୍ଗରେ ଥିବା ବିଚ୍ଛିନ୍ନାଞ୍ଚଳରେ ବହୁ ଓଡ଼ିଆଲୋକ ନିଜ ମାତୃଭାଷାକୁ ଭଲ ପାଆନ୍ତି । ତନ୍ମଧ୍ୟରୁ ଅନେକଲୋକ ଗଳ୍ପ, କବିତା, ଆଦି ଲେଖିବସନ୍ତି ମାତ୍ର ସେସବୁ ରାଜ୍ୟରେ ଓଡ଼ିଆ ଛାପାଖାନା ପ୍ରାୟ ନାହିଁ କହିଲେ ଚଳେ । ଓଡ଼ିଶାର କୌଣସି ପ୍ରକାଶକ ସେମାନଙ୍କର ପାଣ୍ଡୁଲିପିକୁ ଯେ ଛପାଇ ଦେବ ସେପରି ବିଶ୍ୱାସ ସେମାନଙ୍କର ନାହିଁ। ତେବେ ଉତ୍କଳ ସମ୍ମିଳନୀ ପକ୍ଷରୁ ଝାଡ଼ଖଣ୍ଡରେ ଓଡ଼ିଆ ଶିକ୍ଷାପ୍ରସାର କାର୍ଯ୍ୟ କରିବା ଫଳରେ ବିଚ୍ଛିନ୍ନାଞ୍ଚଳରେ ମଧ୍ୟ ଓଡ଼ିଆକବି ଓ ଲେଖକମାନେ ଥିବାର ସନ୍ଧାନ ମୋତେ ମିଳିଲା । ସେମାନଙ୍କ ପାଇଁ କଟକ ଲେଖକ ସହଯୋଗ ସମିତି ଏକମାତ୍ର ଆଶା ଭରସାର ସ୍ଥଳ ପରି ମୁଁ ଅନୁଭବ କଲି ।

ଝାଡ଼ଖଣ୍ଡ ଲେଖିକା ଡାକ୍ତର ବିନି ଷଡ଼ଙ୍ଗୀଙ୍କର ପ୍ରଥମ ଗଳ୍ପସଂକଳନ ପ୍ରକାଶ ପାଇବା ପରେ ତାଙ୍କ ସ୍ୱାମୀ ଡାକ୍ତର ଦୀନେଶ ଷଡ଼ଙ୍ଗୀ ତାଙ୍କର ପରଲୋକଗତ ଦୁଇ ଭାଇଙ୍କର କବିତାବହି ଛାପିବାପାଇଁ ଦେଲେ । ତାଙ୍କ ସବାବଡ଼ଭାଇ ଝାଡ଼ଖଣ୍ଡର ଖଣ୍ଡାମୌଦା ହାଇସ୍କୁଲରୁ ମାଟ୍ରିକ୍ ପାଶ୍ କରି ୧୯୪୪ ମସିହାରେ ରେଭେନ୍ସା କଲେଜରେ ପଢୁଥିଲେ । ସେ ଥିଲେ କବି ଦେବଦାସ ଷଡ଼ଙ୍ଗୀ । ହାଇସ୍କୁଲରେ ସେ କବିତା ଲେଖୁଥିଲେ । ରେଭେନ୍ସା କଲେଜରେ ପ୍ରଥମବର୍ଷ ଛାତ୍ର ଥିବାବେଳେ ସେ ଥରେ ଜୋବ୍ରା ଆନିକଟକୁ ଗାଧୋଇବାକୁ ଯାଇ ମହାନଦୀରେ ଜଳସମାଧି ନେଲେ । ଏପରିକି ତାଙ୍କର ଶବ ମଧ୍ୟ ମିଳିଲା ନାହିଁ । ତାଙ୍କର ସବୁତକ କବିତା ଏକାଠି କରି 'କହ ଗୋ ଶୁକ୍ରତାରା' କବିତା ସଂକଳନଟି

ଆମେ ଛପାଇଲୁ । ତାପରେ ଦିନେଶ ବାବୁଙ୍କ ଉପର ଭାଇ ଦିଲ୍ଲୀପ ଷଡ଼ଙ୍ଗୀଙ୍କର ଦୁଇଟି କବିତା ସଂକଳନ ଛପାଇବାକୁ ପୁଣି ସେ ଆମକୁ ଅନୁରୋଧ କଲେ । ଦିଲ୍ଲୀପ ବାବୁ ଜାମସେଦପୁରରେ ଓକିଲାତି କରୁଥିଲେ । ଓଡ଼ିଆରେ କବିତା ଲେଖିବା ତାଙ୍କର ରୁଚି ଥିଲା । ଦିଲ୍ଲୀପ ବାବୁଙ୍କର ମଧ୍ୟ ତିନିଟି କବିତାସଂକଳନ ଛପା ହେଲା । ତାପରେ ପୁଣି ଡାକ୍ତର ବିନି ଷଡ଼ଙ୍ଗୀଙ୍କର ଦ୍ୱିତୀୟ ଗଳ୍ପସଂକଳନ ଆମେ ଛାପିଲୁ । ଏଥି ସହିତ କଟକର କେତେକ ଲେଖକ ଓ କବିଙ୍କର ବହି ସବୁ ଛପାଇବାରେ ପୂର୍ବାପେକ୍ଷା ଲେଖକ ସହଯୋଗସମିତି ଅଧିକ ତତ୍ପର ହୋଇ ଉଠିଲା ।

ଇତି ମଧ୍ୟରେ ଏହି ଅନୁଷ୍ଠାନର ୨୫ ବର୍ଷ ପୂର୍ତ୍ତି ଉପଲକ୍ଷେ ରୌପ୍ୟ ଜୁବୁଲି ଉତ୍ସବ ପାଳନ କରିବାକୁ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ପ୍ରସ୍ତାବ ଦେଲେ । ପାଖରେ ପଇସା ନାହିଁ, ତଥାପି ବିଗତ ୨୫ ବର୍ଷର କଟକ ଲେଖକ ସହଯୋଗ ସମିତିର ଅଗ୍ରଗତି ବିଷୟରେ ସମିତିର ପୁରାତନ ସଭ୍ୟମାନଙ୍କର ଲେଖା ଆହ୍ୱାନ କରାଗଲା । ଭୁବନେଶ୍ୱର ଲେଖକ ସହଯୋଗ ସମିତିର ସଭାପତି ତଥା 'ସମୟ'ର ସମ୍ପାଦକ ଶ୍ରୀ ସାତକଡ଼ି ହୋତାଙ୍କୁ ମୁଖ୍ୟ ଅତିଥି ଭାବେ ଓ ସମାଜ ସମ୍ପାଦକ ଶ୍ରୀ ଶରତ ମିଶ୍ରଙ୍କୁ ଉଦ୍‌ଘାଟକ ଭାବେ ନିମନ୍ତ୍ରଣ କରାଗଲା । ରୌପ୍ୟ ଜୁବୁଲି ବିଶେଷାଙ୍କ ଛପାଇବା ପାଇଁ କାଗଜ କିଣିବା ଠାରୁ ଛପାଇବା ଓ ବନ୍ଧେଇ କାମ ପର୍ଯ୍ୟନ୍ତ ସବୁ ବାକୀରେ ହୋଇଗଲା । ସେଦିନ ପ୍ରାୟ ଏକ ଶହ ଲୋକଙ୍କର ଖାଇବା ପାଇଁ ରୁଚିମସଲା କମ୍ପାନୀର ମାଲିକ ଶ୍ରୀ ଶରତସାହୁଙ୍କୁ ଅନୁରୋଧ କଲି । ସେ ମୋ କଥାରେ ରାଜି ହୋଇଗଲେ । ଠିକଣାଦିନ ସାତକଡ଼ି ବାବୁ ଓ ସମାଜର ସମ୍ପାଦକ ଶ୍ରୀ ଶରତ ବାବୁଙ୍କୁ ଫୋନ୍ କରି ସନ୍ଧ୍ୟା ୫ଟା ପୂର୍ବରୁ ପହଞ୍ଚିବାକୁ ଅନୁରୋଧ କଲି । ସମ୍ମାନିତ ଅତିଥି ଭାବେ ଅଧ୍ୟାପକ ବୈଷ୍ଣବ ଚରଣ ସାମଲଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥିଲା । ଶରତବାବୁ ଓ ବୈଷ୍ଣବ ବାବୁ ଯଥା ସମୟରେ ପହଞ୍ଚିଲେ । ମାତ୍ର ସାତକଡ଼ି ବାବୁଙ୍କର ଡେରି ହେଲା । ତାଙ୍କ ଘରକୁ ଫୋନ୍ କରି ବୁଝିଲି ଯେ ସେ ଅପରାହ୍ଣ ୪ଟା ବେଳୁ ବାହାରି ଆସିଲେଣି । ଘଣ୍ଟାଏ ଅପେକ୍ଷା କରିବାପରେ ସଭାକାର୍ଯ୍ୟ ଆରମ୍ଭ ହେଲା । ହେଲେ ସାତକଡ଼ିବାବୁ ଆଦୌ ଆସିଲେ ନାହିଁ । ସଭା ପରେ ଖିଆପିଆ ହେଲା । ଫୋନ୍ କରି ବୁଝିଲି ଯେ ଏପର୍ଯ୍ୟନ୍ତ ସାତକଡ଼ି ବାବୁ ଘରକୁ ଫେରିନାହାନ୍ତି । ପର ଦିନ ବୁଝା ପଡ଼ିଲା ଯେ ସାତକଡ଼ି ବାବୁ କଟକ ଆସିବା ପାଇଁ ରେଳଷ୍ଟସନକୁ ଆସି ଭୁଲ୍‌ରେ ସମ୍ବଲପୁର ଇଣ୍ଟରସିଟି ଟ୍ରେନ୍‌ରେ ବସି ପଡ଼ିଥିଲେ । ଢେଙ୍କାନାଳ ଷ୍ଟେସନ୍‌ରେ ଓହ୍ଲାଇ ଘରକୁ ଫୋନ୍ କରିବାକୁ ଫୋନ୍ ବୁଥ୍ ଖୋଜି ଖୋଜି ବଜାରକୁ ଆସିଲା ବେଳେ ପ୍ରବଳ ବର୍ଷା ହେଲା । ବର୍ଷାରୁ ରକ୍ଷା ପାଇବାକୁ ଗୋଟିଏ ଚାଳିଆରେ ଆଶ୍ରୟ ନେଇ ରାତି ପ୍ରାୟ ନଅଟା ବେଳକୁ ଫୋନ୍ ବୁଥ୍‌କୁ ଆସି ଘରକୁ ଫୋନ୍ କଲେ । ତାଙ୍କୁ ଆଣିବା

ପାଇଁ ଭୁବନେଶ୍ୱରରୁ ଗାଡ଼ିଧରି ତାଙ୍କ ଡ୍ରାଇଭର ଢେଙ୍କାନାଳ ପହଞ୍ଚିଲା ବେଳକୁ ରାତି ୧୨ଟା ହୋଇଥିଲା । ଅଖିଆ ଅପିଆ ସେ ଘରେ ଯାଇ ପହଞ୍ଚିଲା ବେଳକୁ ରାତି ପ୍ରାୟ ତିନିଟା ହେଲା । ଆମଲାଗି ସେ ଏତେ କଷ୍ଟପାଇଲେ । ଶୁଣି ଖୁବ୍ ଦୁଃଖ ଲାଗିଲା । ତାଙ୍କ ଘରକୁ ଯାଇ ମୋର ସମବେଦନା ଜଣାଇଲି ।

ନିଜସ୍ୱଆୟ ନଥାଇ କୌଣସି ସଂସ୍ଥା ଚଳାଇବା ସମ୍ଭବ ନୁହେଁ । ନିଜସ୍ୱ ଘରଟାଏ ଥିବାଫଳରେ ଘରଭଡ଼ା ଖର୍ଚ୍ଚରୁ ପରିତ୍ରାଣ ମିଳିଲାସିନା ଆଉକୌଣସି କାର୍ଯ୍ୟ ହୋଇପାରିବା କଷ୍ଟକର ହୋଇ ପଡ଼ିଲା । କବି ଓ ଲେଖକମାନଙ୍କର ବହିଛପାଇ ବିକ୍ରି କରି ନ ପାରିଲେ ସେସବୁ ଗୋଦାମ ଘରେ ପଡ଼ି ପଡ଼ି ଉଇ ମୂଷା ଅସରପା ବା ଝିଟିପିଟିଙ୍କ ଦ୍ୱାରା ନଷ୍ଟ ହୋଇଯିବା ଛଡ଼ା ଅନ୍ୟଗତି ନାହିଁ । ବାଙ୍କା ବଜାରରେ ବହୁ ଦଶନ୍ଧିଧରି ଯେଉଁ ପ୍ରକାଶକମାନେ ଦୋକାନ କରିଛନ୍ତି, ସେମାନଙ୍କର ପ୍ରକାଶିତ ପୁସ୍ତକଗୁଡ଼ିକୁ ବିକ୍ରି କରିବାକୁ ଲୋକ ରଖିଛନ୍ତି । ତାଛଡ଼ା ସରକାରୀକଳ ଓ ରାଜାରାମମୋହନ ରାୟ ପାଠାଗାର ପାଇଁ ପ୍ରତିବର୍ଷ କିଣାଯାଉଥିବା ପୁସ୍ତକଲାଗି ପ୍ରକାଶକମାନେ ପୁସ୍ତକ ଚୟନ କମିଟିରେ ଥିବା ସଭ୍ୟ/ସଭ୍ୟାମାନଙ୍କୁ ନାନା ବାଟରେ ପ୍ରଭାବିତ କରନ୍ତି । ମାତ୍ର ଆମ ପକ୍ଷରେ ସେସବୁ ସମ୍ଭବ ନୁହେଁ । ଧନ, ପ୍ରତିପତ୍ତି ଓ ଲାଞ୍ଚ ବଳରେ ଆମ ଦେଶରେ ଅସାଧ୍ୟ ସାଧନ କରାଯାଇପାରେ । କଳାରଙ୍ଗ ଧଳାରେ ପରିଣତ ହୁଏ । ଅସତ୍ୟ ସତ୍ୟ ହୋଇଯାଏ ବା ଅମଣିଷକୁ ଲୋକେ ସୁପୁରୁଷ ଜ୍ଞାନରେ ସମ୍ମାନ ଦିଅନ୍ତି । ଏଭଳି ପରିସ୍ଥିତିରେ ଲେଖକ ସହଯୋଗସମିତି ଦ୍ୱାରା ପ୍ରକଶିତ ପୁସ୍ତକ ଗୁଡ଼ିକୁ ଚୟନ କମିଟି ସଭ୍ୟ/ସଭ୍ୟାମାନଙ୍କ ପାଖରେ ପହଞ୍ଚାଇ ତନ୍ମଧ୍ୟରୁ ଉପାଦେୟପୁସ୍ତକ ଚୟନକରାଇବା ଆମପକ୍ଷରେ ଅସମ୍ଭବ । ତେଣୁ ରାଜା ରାମମୋହନ ରାୟ ପାଠାଗାର ମାନଙ୍କରେ ଆମ ସଂସ୍ଥା ଦ୍ୱାରା ପ୍ରକାଶିତ ପୁସ୍ତକ ପହଞ୍ଚିପାରିବା ସହଜସାଧ୍ୟ ହୋଇପାରେ ନାହିଁ ।

ଆମ ଦ୍ୱାରା ପ୍ରକାଶିତ ପୁସ୍ତକଗୁଡ଼ିକ ବିକ୍ରି କରିବାକୁ ଜଣେ ବେତନଭୋଗୀ କର୍ମଚାରୀ ରଖିବାକୁ ଚିନ୍ତା କରିବା ଆମ ପକ୍ଷେ ଅସମ୍ଭବ । କାରଣ ବହି କିଣିବାକୁ ଗରାଖ ନାହାନ୍ତି । ଆମ ଲୋକଙ୍କର ବହି କିଣି ପଢ଼ିବାର ଅଭ୍ୟାସ ଖୁବ୍ କମ୍ । ଉପାଦେୟ ପୁସ୍ତକଟିଏ ଦେଖିଲେ ବହୁ ଲୋକ ମାଗିନେଇ ପଢ଼ନ୍ତି । କେତେକ ବିବେକୀଲୋକ ପଢ଼ିସାରି ବହିଟି ଫେରାଇ ଦିଅନ୍ତି । ଅନେକ ଲୋକ ମାଗି ଆଣିଥିବା ବହିଟି ଫେରାଇବାକୁ ମଧ୍ୟ ଭୁଲି ଯାଆନ୍ତି । ସେମାନଙ୍କୁ ବହି ଦେଇଥିବା ଲୋକ ଏକଥା ଥରକୁ ତିନିଥର ମନେ ପକାଇଲେ ବହି ଫେରସ୍ତ ମିଳେ ନୋହିଲେ ହଜିଗଲା ବୋଲି ଭାବିନେବାକୁ ହେବ । ଏପରି ସ୍ଥଳେ ବହି ବିକିବା ଲୋକ ଦ୍ୱାର ଦ୍ୱାର ବୁଲି ବହି ଖଣ୍ଡେ ବିକିବାକୁ ଚେଷ୍ଟା କଲେ ମଧ୍ୟ ତାର ମାସକ ଦରମା ଉଠିବା ଅସମ୍ଭବ । ଏ ବିଷୟରେ ମୋର ଗୋଟିଏ ଅନୁଭୂତି ଏଠାରେ ଉଲ୍ଲେଖ କରିବାକୁ ଭାବୁଛି ।

ଥରେ ଜଗତସିଂହପୁର (ଗାଁ)ରୁ ଫେରିଲା ବେଳେ ଓ.ଏମ୍.ପି. ଛକରୁ ଅଟୋରେ ଆସିଲା ବେଳେ ଝିଅଟିଏ ବାଦାମବାଡ଼ି ଆସିବାକୁ ସେହି ଅଟୋରେ ବସିଲା । ବସିସାରି ବଡ଼ ଦୁଃଖରେ ସେ କହିଲା, ଅଟୋରେ ଯିବା ପାଇଁ ମୋ ପାଖେ ପଇସା ନାହିଁ । ତଥାପି ମୁଁ ଯିବାକୁ ଚାହୁଁଛି କାରଣ ମୁଁ ସକାଳୁ ଏ ପର୍ଯ୍ୟନ୍ତ ବୁଲି ବୁଲି ପୂରା ହାଲିଆ ହୋଇପଡ଼ିଛି । ଆଜି ଦିନସାରା ମୋତେ ଖାଇବାକୁ ମିଳିନାହିଁ । ତେଣୁ ଚାଲିବାକୁ ମୋ ଦେହରେ ଆଉ ଶକ୍ତି ନାହିଁ । ଖଣ୍ଡେ ମଧ୍ୟ ବହି ବିକ୍ରୀ ହେଲା ନାହିଁ । ବହି ବିକିଥିଲେ ପ୍ରଥମେ ମୁଁ କିଛିଖାଇଥାନ୍ତି । ତାପରେ ଯାହା ବଳିଥାନ୍ତା ଫେରାଇଥାନ୍ତି । ହେଲେ, ଆଜି ଦିନଟା ମୋ ପାଇଁ ଦୁର୍ଦ୍ଦିନରେ ପରିଣତ ହେଲା । ପଚାରି ବୁଝିଲି ଯେ, ତାର ବିଧବା ମାଆକୁ ସାହାଯ୍ୟ କରିବାକୁ ସେ ଏଇ କାମ ଧରିଛି । ଦ୍ୱାର ଦ୍ୱାର ବୁଲି ବହି ବିକ୍ରି କରିବ ଓ ପ୍ରତି ବହି ଦାମ୍‌ର ଏକ ଚତୁର୍ଥାଂଶ ପାରିଶ୍ରମିକ ବାବଦ ପାଇବ । ଏପରି ଏକ ଚାକିରୀରେ ତାର ପେଟ ପୁରୁ ନାହିଁ । ମାଆକୁ ଚଳାଇବାକୁ ପଇସା ପାଇବା କଥା ଆଉ ସେ ଭାବି ପାରୁନି । ଅଟୋ ଭଡ଼ା ଦେବାକୁ ଦଶଟଙ୍କା ତା ହାତକୁ ବଢ଼ାଇ ଦେଲି । ସେ କହିଲା ଖାଲି ଭଡ଼ାଟା ଆପଣ ଦେଇ ପାରନ୍ତି । କହିଲି, ବାକି ପଇସାଟା ତୋ ପାଖେ ରଖିଥା । ସେହିଦିନରୁ ବୁଲି ବୁଲି ବହି ବିକିବା କଥା କହିଲେ ମୁଁ ବିରୋଧ କରେ । ଯେଉଁମାନେ ଦ୍ୱାରଦ୍ୱାର ବୁଲି ବହି ବିକ୍ରୀ କରନ୍ତି; ସେମାନଙ୍କଠାରୁ ଦୁଃଖୀ ହୁଏତ ଆଉ କେହି ନ ଥିବେ । କାରଣ ଆମ ଦେଶରେ ବହି କିଣୁଥିବା ଲୋକଙ୍କ ସଂଖ୍ୟା ଅତି ନଗଣ୍ୟ । ସେଭଳିଲୋକ ବଡ଼ ବଡ଼ ବହିଦୋକାନକୁ ଯାଇ ପ୍ରତିଷ୍ଠିତ ଲେଖକ ବା କବିମାନଙ୍କ ବହି କିଣନ୍ତି । ମାତ୍ର ବୁଲେଇ ବିକୁଥିବା ଲୋକର ବହି କିଣିବାକୁ ଖୁବ୍ କମ୍ ଲୋକ ଆଗ୍ରହ ପ୍ରକାଶ କରନ୍ତି ।

ଏଥିଲାଗି ସହଯୋଗ ସମିତି ପକ୍ଷରୁ କାହାକୁ ମୁତୟନ କରିବା କଥା ସମ୍ଭବ ହେଲା ନାହିଁ । ରଘୁବାବୁ ପ୍ରତିଦିନ ଆସି ପୁସ୍ତକ ଭଣ୍ଡାର ଝଡ଼ାଝଡ଼ି କରିଯାଆନ୍ତି । ମଝିରେ ମଝିରେ ସେଠାରେ ଉତ୍କଳ ସମ୍ମିଳନୀ ପକ୍ଷରୁ କାର୍ଯ୍ୟକାରୀ କମିଟିର ସଭାସମିତି ହୁଏ । ମୁଁ ନିଜେ ଯାଇ ରଘୁବାବୁଙ୍କୁ ସାହାଯ୍ୟ କରେ । କହିଲି କେତେ ଦିନ ଆମେ ଏ କାମ କରିବା ? ଘରଟାକୁ ମଧ୍ୟ କେତେବେଳେ କେମିତି ମରାମତି କରିବାକୁ ବା ତହିଁରେ ଚୂନ ବୋଳିବା ପାଇଁ ଆମର ସମ୍ବଳ ନାହିଁ । ତେଣୁ ସଭାସମିତି କରିବା ପାଇଁ ଏ ଘରଟାକୁ ଭଡ଼ା ଦେଲେ ହୁଅନ୍ତା । ମାତ୍ର ଆମର ବହିପତ୍ର ସବୁ ରଖିବାପାଇଁ ଜାଗା ଦରକାର । ସେଥିପାଇଁ ଏ ଘର ଛାତଉପରେ ଗୋଟିଏ ସଭାଗୃହ ତିଆରି କରି ପାରିଲେ ସେ ଘରର ଭଡ଼ାରୁ ଲେଖକ ସହଯୋଗ ସମିତିର ଖର୍ଚ୍ଚ ଚଳନ୍ତା । ଏପରି ଘରଟାଏ ତିଆରି କରିବାକୁ ଠିକ୍ ଭାବେ ଆକଳନ କରିବା ମୋ ପକ୍ଷେ ସମ୍ଭବପର ନଥିଲା । ତେବେ ତଳଘରଟା ଯଦି ଏକଲକ୍ଷ

ଟଙ୍କାରେ ତିଆରି ହୋଇପାରେ ତେବେ ଉପର ଘର ପାଇଁ ଦୁଇଲକ୍ଷ ଟଙ୍କାର ଯୋଗାଡ଼ କରିବାକୁ ମୁଁ ରଘୁବାବୁଙ୍କୁ କହିଲି । ସେ ହସିଲେ, କହିଲେ, ମାସରେ ଏକ ହଜାର ଟଙ୍କା ଖର୍ଚ୍ଚ କରିବାକୁ ଆୟୋଜନ କରିବା ଆମ ପକ୍ଷେ ଅସମ୍ଭବ ହୋଇପଡ଼ୁଛି ତହିଁରେ ପୁଣି ଦୁଇଲକ୍ଷ ଟଙ୍କା ଆମେ ପାଇବା କେଉଁଠୁ ?

ଯୁକ୍ତରାଷ୍ଟ୍ର ଆମେରିକାରେ ଥିବା ଡକ୍ଟର ଉଦୟ ନାଥ ଦାଶଙ୍କୁ ମୁଁ ମଝିରେ ମଝିରେ ଚିଠି ଲେଖେ । ଏକଥା ମଧ୍ୟ ତାଙ୍କୁ ଜଣାଇଲି । ସେ ଲେଖିଲେ, ତାଙ୍କର ଫ୍ଲୋରିଡ଼ାସ୍ଥିତ ବନିତା ସ୍ପ୍ରିଙ୍ଗ୍‌ରେ ଥିବା ବଡ଼ ଘରଟାକୁ ବିକି ଦେଇ ଏବେ ନେପ୍ଲସ୍‌ଠାରେ ଏକ ଛୋଟ ଘର କିଣି ରହିବେ । ସେଇ ଘରର ବିକ୍ରୀ ଲବ୍ଧ ଧନରୁ କିଛି ଏଥିଲାଗି ଦାନ କରିବାକୁ ବିଚାର କରିବେ । ଏ ଚିଠି ପାଇଁ ମନରେ ମୋର ସାହସ ହେଲା । ରଘୁବାବୁଙ୍କୁ କହିଲି ରାଜ୍ୟ ସରକାରଙ୍କର ସମବାୟ ବିଭାଗକୁ ଲେଖି କିଛି ଋଣ ମାଗିବା । ଭାବିଲି ଉଦୟ ନାଥ ବାବୁଙ୍କ ଟଙ୍କା ଆସିବା ବେଳକୁ ଯଦି କିଛି ଋଣ ଯୋଗାଡ଼ ହୋଇପାରେ ତାହେଲେ ଏ ଦିଗରେ ଆଗେଇବା । ସରକାରଙ୍କୁ ଦରଖାସ୍ତ ଦେଲୁ । ଇତି ମଧ୍ୟରେ ଉଦୟନାଥ ବାବୁ ଏକ ଲକ୍ଷ ଟଙ୍କାର ଚେକ୍ ପଠାଇଲେ । ଆମେ କଟକ ଅର୍ବାନ୍ କୋ-ଅପରେଟିଭ ବ୍ୟାଙ୍କ୍‌ରେ ସେ ଟଙ୍କା ବର୍ଷକ ପାଇଁ ସ୍ଥାୟୀ ଜମା ଭାବେ ରଖିଦେଲୁ । ଇତି ମଧ୍ୟରେ ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ମୋତେ ଅଧିକ ସମୟ ଦେବାକୁ ପଡ଼ିଲା ଓ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀମନ୍ଦିର ପରିଚାଳନାରେ ଯେପରି ସବୁ ବିଭ୍ରାଟ ଲାଗି ରହିଛି ତାର ନିରାକରଣ ଲାଗି 'ଶ୍ରୀ ଜଗନ୍ନାଥ ଭକ୍ତ ସମାଜ' ଆରମ୍ଭ ହେଲା । ସେଥିଲାଗି ମଧ୍ୟ ସମୟ ଦେବାକୁ ପଡ଼ିଲା । ତହିଁରେ ପୁଣି 'ଜୀବେ ହିତୈଷୀ ସଂଘ' ପାଇଁ ସମ୍ପାଦିକା ଶ୍ରୀମତୀ ଶୈଳବାଳା ମହାନ୍ତି ମୋ ଉପରେ ସବୁତକ ଦାୟିତ୍ୱ ଲଦିଦେଲେ । ଇତି ମଧ୍ୟରେ ଦୁଇ ବର୍ଷରୁ ଅଧିକ ସମୟ ବିତିଗଲା । ଲେଖକ ସହଯୋଗ ସମିତିର ସଭ୍ୟସଭ୍ୟାମାନେ ଘର ତିଆରି କଥା ଶୁଣି ନ ଶୁଣିଲା ପରି ବ୍ୟବହାର କଲେ । ଏପରିକି ସଭାସମିତିରେ ମଧ୍ୟ ଅଧିକାଂଶ ଲୋକ ଯୋଗ ଦେଲେ ନାହିଁ । ଦେଖିଲି, ରଘୁବାବୁ ଓ ମୁଁ ଦୁହେଁ ଏଥିପାଇଁ ନିଷ୍ଠାପର ଭାବେ ନ ଲାଗିଲେ କାମ ହେବ ନାହିଁ ।

ଇତି ମଧ୍ୟରେ ଡାକ୍ତର ଦାଶଙ୍କର ଲକ୍ଷେଟଙ୍କା ବ୍ୟାଙ୍କରେ ସ୍ଥାୟୀ ଜମା ଭାବେ ଏକ ଲକ୍ଷ ଅଠର ହଜାରକୁ ବଢ଼ି ଯାଇଥିଲା । ସେ ଟଙ୍କାଟା ଉଠାଇ ଆଣି କାମ ଆରମ୍ଭ କରିଦେଲୁ । ଛାତ ଉପରକୁ ପାହାଚ କରି ସାରି ଉପର ମହଲାର କାନ୍ଥ ସବୁ ଉଠାଇ ତହିଁରେ ଲିଣ୍ଟାଲ୍ ପଡ଼ିଗଲା । ଏହା ଜାଣିପାରି ଡାକ୍ତର ବିଜୟକୁମାର ନନ୍ଦ ଆମକୁ ଡାକି ପ୍ରଥମେ ୮୫୦୦୦ ଟଙ୍କା ଚାନ୍ଦାଦେଲେ । କିଛିଦିନ ଛାଡ଼ି ପୁଣି ବିଜୟ ବାବୁ ଆଉ ଦଶ ହଜାର ଟଙ୍କା ଦାନ କଲେ । ତାପରେ ଡାକ୍ତର ସନାତନ ରଥଙ୍କୁ ଦେଖାକଲୁ । ସେ

କହିଲେ ଆପଣଙ୍କର ଯେତେ ଟଙ୍କା ଦରକାର ଦେବି । ତାଙ୍କୁ ଟଙ୍କା ମାଗିବାକୁ ତୁଣ୍ଡ ଲେଉଟିଲା ନାହିଁ । କହିଲି, ଘରଟା ସରିବାକୁ ଅତିକମ୍‌ରେ ଆଉ ଦୁଇଲକ୍ଷ ଟଙ୍କା ଲାଗିବ, ହେଲେ ଆପଣ ଯେତିକି ଦେବାକୁ ଚାହାଁନ୍ତି ଦେଲେ ଆମର ଛାତ ପଡ଼ିଯିବ । ସେ କହିଲେ ମୁଁ କେତେ ଦେବି ଆପଣ କୁହନ୍ତୁ ।

ଛାତ ପଡ଼ିବାକୁ ଆମର ଅତିକମ୍‌ରେ ଲକ୍ଷେ ଟଙ୍କାର ଆବଶ୍ୟକତା ଥିଲେ ମଧ ଡାକ୍ତର ରଥଙ୍କୁ ଏତେ ଟଙ୍କା ମାଗିବାର ସାହସ ମୋର ନ ଥିଲା । କହିଲି ପଚାଶ ହଜାର ଟଙ୍କା ହେଲେ ଚଳିବ । ସେ କହିଲେ ଠିକ୍ ଅଛି ମୁଁ ଦେବି । ତାଙ୍କ ପ୍ରତି କୃତଜ୍ଞତାରେ ହୃଦୟ ଭରିଗଲା । ତାଙ୍କର ବଦାନ୍ୟତା ଦେଖି ଅନ୍ୟ ବନ୍ଧୁମାନଙ୍କୁ ଏଥିଲାଗି ଦାନ ମାଗିବାର ସାହସ ମୋର ବଢ଼ିଗଲା । ଅଧ୍ୟାପକ ବୈଷ୍ଣବ ଚରଣ ସାମଲ ଓ ରଘୁବାବୁ ମୋ ସାଙ୍ଗେ ଯାଇ କେତେ ଲୋକଙ୍କୁ ସାକ୍ଷାତ କରି ଏଥିଲାଗି ଦାନ ସଂଗ୍ରହ କଲୁ । ଘରର ଛାତ ପଡ଼ିସାରି କବାଟ ଝରକା ଓ ଚଉକାଠ ଲଗା ସରିବା ପରେ ଉପର ଶିଡ଼ିଘର, ଭିତର ପଲସ୍ତରା ଓ ରଙ୍ଗ ଆଦି କାମ ପଡ଼ି ରହିଲା । ଆମେ କଟକ-ଚୌଦ୍ୱାର ବିଧାୟକ ଶ୍ରୀ ପ୍ରଭାତ ରଞ୍ଜନ ବିଶ୍ୱାଳଙ୍କୁ ଦେଖାକଲୁ । ସେ ପଚାଶ ହଜାର ଟଙ୍କା ମଂଜୁର କଲେ । ତଥାପି ଘରଟା ପୂର୍ଣ୍ଣାଙ୍ଗ ହେବାର ଆଶା ହେଲା ନାହିଁ । ରଘୁବାବୁ କହିଲେ ପଶ୍ଚିମ ପଟ କାମ ସବୁ ବନ୍ଦ ରଖି ଉପର ଘରଟାକୁ ସଭାଗୃହରେ ପରିଣତ କରିଦେବା ପରେ ଏଠାରେ ସଭାସମିତି ହୋଇପାରିବ । ଜଣେଲୋକ ଏଠି ରହି ପରିଷ୍କାର ପରିଚ୍ଛନ୍ନତା ରକ୍ଷାକରିବା ସହିତ ସମିତିର ପୁସ୍ତକ ବିକ୍ରୟ କାର୍ଯ୍ୟ କରିପାରିଲେ ଆମେ ଟିକେ ବିଶ୍ରାମ ପାଇପାରିବା । ପ୍ରତିଦିନ ସକାଳୁ ଉଠି ଏହି ଘରକୁ ପୂର୍ଣ୍ଣାଙ୍ଗ କରିବା ଉଦ୍ଦେଶ୍ୟରେ ରଘୁବାବୁଙ୍କୁ ନେଇ କଟକର ବିଭିନ୍ନ ଲୋକଙ୍କୁ ଭେଟିବାକୁ ଯିବାଟା ମୋତେ ଭାରି ବାଧିଲା । କଥାରେ ଅଛି – 'ଦେବାକୁ ଓ ମରିବାକୁ କେହି ଭଲ ପାଆନ୍ତି ନାହିଁ । ତେଣୁ ସକାଳୁ ସକାଳୁ ଲୋକଙ୍କ ପାଖକୁ ଯାଇ ଯେକୌଣସି କାମ ପାଇଁ ଚାନ୍ଦାମାଗିବା ଦ୍ୱାରା ମାଗୁଥିବା ଲୋକର ମର୍ଯ୍ୟାଦାହାନୀ ହେବା କଥା । କଟକ ଲେଖକ ସହଯୋଗ ସମିତିକୁ ବଞ୍ଚାଇ ରଖିବାକୁ ହେଲେ ସମିତିର ଏକ ନିଜସ୍ୱ ସଭାଗୃହ କରିବା ଏକାନ୍ତ ଆବଶ୍ୟକ । ସେତିକି କରିଦେଇ ଏ ଅନୁଷ୍ଠାନକୁ ଭବିଷ୍ୟତ ପିଢି ହାତରେ ସମର୍ପି ଦେଲେ ହୁଏତ ଆଉ କେତେ ଦଶନ୍ଧି ପାଇଁ ସେମାନେ ଯାକୁ ବଞ୍ଚାଇ ଦେଇପାରିବେ । ଏଇ ଆଶାନେଇ ମୋର ନିଜକାମ ସବୁ ପଛରେ ପକାଇ ଦେଇ ଏଇ ନୂତନ ସଭାଗୃହ ତିଆରି କାର୍ଯ୍ୟରେ ଲାଗି ପଡ଼ିଲି ।

ଇତିମଧ୍ୟରେ ମୋର ଯୁକ୍ତରାଷ୍ଟ୍ର ଆମେରିକା ଯିବାକଥା ହେଲା । ୨୦୧୦ ଜୁଲାଇ ୪ ତାରିଖ ଦିନ କାଲିଫର୍ଣ୍ଣିଆର ସାନ୍‌ଫ୍ରାନ୍‌ସିସ୍କୋଠାରେ ଓଡ଼ିଶା ସୋସାଇଟି ଅଫ୍ ଆମେରିକାର ୪୧ ତମ ଅଧିବେଶନକୁ ଯିବାଲାଗି ମୋତେ ନିମନ୍ତ୍ରଣ ମିଳିଲା । ମୋ

ସାନପୁଅ ଗୋପାଳ ଲସ୍‌ଏଞ୍ଜେଲେସ୍‌ରେ ଅଛି । ଝିଅ ଦେବଶ୍ରୀ ଅଛି ମିନିଆପଲିସ୍‌ରେ । ମୋ ବଡ଼ଶାଳୀ ସ୍ୱର୍ଣ୍ଣଲତାର ଝିଅ ମାମୁନି ଓ ଲିଚି ଦୁହେଁ ଡଲାସ୍‌ରେ ଓ ତାର ପୁଅ ପିଙ୍କୁ ଅଷ୍ଟିନ୍‌ରେ ରହେ । ମୋ'ପୁଅର ଦେଢଶାଶୁ ଡଲିଙ୍କଝିଅ ଲିରାର ବିବାହ ଜୁଲାଇ ୨୫ ତାରିଖରେ କାନାଡ଼ାର ମଣ୍ଟ୍ରିଆଲ୍‌ରେ ହେଉଛି । ସେହି ଉତ୍ସବରେ ମୋତେ ଯୋଗ ଦେବାକୁ ହେବ । ତେଣୁ ଆମେରିକା ଯିବାକୁ ଟିକେଟ୍ କରିବା କଥା । ୨୦୧୦ ମସିହା ଖରାଦିନର ଗରମ ସହି ହେଉ ନ ଥାଏ । ମୋର ଇଚ୍ଛାଥିଲା ଉତ୍କଳଦିବସ ପରେ ଆମେରିକା ଚାଲିଯିବାକୁ । ଗରମ ଦିନଗୁଡ଼ାକ ସେଇଠି କଟାଇଦେଇ ସେପ୍ଟେମ୍ବର ମାସରେ ଫେରି ଆସିଲେ ଠିକ୍‌ହେବ । ମାତ୍ର ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ଉତ୍ସବପାଇଁ ମହାବିଦ୍ୟାଳୟର କୁଳପତି, ଡିନ୍ ଓ ଅଧ୍ୟାପକମାନେ ମୋତେ ଡେରିରେ ଯିବା ପାଇଁ ଅନୁରୋଧ କଲେ ।

୧୯୫୫ ମସିହାରେ ଏହି ମହାବିଦ୍ୟାଳୟଟି କଟକର ମଙ୍ଗଳାବାଗଠାରେ ଥିବା ପଶୁପାଳନ ନିର୍ଦ୍ଦେଶାଳୟ ହତାରେ ଜନ୍ମଲାଭ କରିଥିଲା । ୨୦୦୫ ମସିହାରେ ଏହାର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ସୁବର୍ଣ୍ଣ ଜୁବୁଲି ପାଳିତ ହେବାକଥା । ହେଲେ, କେହି ଏ ବିଷୟରେ ମୁଣ୍ଡ ଖେଳାଇଲେ ନାହିଁ । ଇତି ମଧ୍ୟରେ ୨/୩ ବର୍ଷ ବିତିଗଲା । କଲେଜ୍‌ର ଡିନ୍ ଡକ୍ଟର ବିଜୟକୁମାର ସାହୁଙ୍କୁ ମୁଁ ୧୯୬୯ ମସିହାରେ ଆମେରିକାରୁ ଫେରି ସେହି କଲେଜରେ ଗବେଷକ ଭାବେ କାର୍ଯ୍ୟ କରୁଥିବାବେଳେ ପଢ଼ାଇଥିଲି । ତାଛଡ଼ା ସେହି କଲେଜରେ ଅଧ୍ୟାପନା କରୁଥିବା ମୋର ବହୁଛାତ୍ର ମୋତେ ସେମାନଙ୍କର ଶିକ୍ଷକଭାବେ ସମ୍ମାନ କରୁଥିଲେ । ମହାବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ନହେବା କଥା ସେମାନଙ୍କୁ ପଚାରିବାରୁ ଅଧିକାଂଶ ମତ ଦେଲେ ଯେ, ସେ ବିଷୟରେ କେହି ମୁଣ୍ଡ ନ ଖେଳାଇବାରୁ ୨୦୦୫ରେ ସୁବର୍ଣ୍ଣ ଜୟନ୍ତୀ ପାଳିତ ହୋଇପାରିଲା ନାହିଁ । କହିଲି ବିଗତ ୫୩/୫୪ ବର୍ଷ ଭିତରେ ଏହି ମହାବିଦ୍ୟାଳୟରୁ ବହୁ ଛାତ୍ରଛାତ୍ରୀ ଉତ୍ତୀର୍ଣ୍ଣ ହୋଇ ଦେଶର ବିଭିନ୍ନ ସ୍ଥାନରେ କାର୍ଯ୍ୟ କରୁଛନ୍ତି । ଯେଉଁ ମହାବିଦ୍ୟାଳୟରେ ଚାରିବର୍ଷକାଳ ଅଧ୍ୟୟନ କରି ଛାତ୍ରଛାତ୍ରୀମାନେ ନିଜ ନିଜର ସୁନେଲି ସ୍ୱପ୍ନ ସାକାର କରୁଛନ୍ତି, ସେପରି ଶିକ୍ଷାନୁଷ୍ଠାନକୁ ଭୁଲିଯିବା ମାନବିକତାର ପରିଚୟ ନୁହେଁ । ସେହି ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ପଶୁପାଳନ, ପ୍ରାଣୀ ସ୍ୱାସ୍ଥ୍ୟସେବା ଓ ଗବେଷଣା କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିବା ଅତ୍ୟନ୍ତ ସୌଭାଗ୍ୟର କଥା । ଓଡ଼ିଶାର ପଶୁପାଳନ ବିଭାଗ ଏ ରାଜ୍ୟର ଏକ ବଡ଼ବିଭାଗ ଭାବେ ସମଗ୍ର ରାଜ୍ୟର ପଶୁପକ୍ଷୀମାନଙ୍କର ସ୍ୱାସ୍ଥ୍ୟସେବା ଓ ଉତ୍ପାଦନ ବୃଦ୍ଧି ନିମନ୍ତେ କାର୍ଯ୍ୟ କରିଚାଲିଛି । ସେହି ବିଭାଗରେ କାର୍ଯ୍ୟ କରୁଥିବା ସମସ୍ତ ଦାୟିତ୍ୱସମ୍ପନ୍ନ କର୍ମଚାରୀମାନେ ଓଡ଼ିଶା ଭେଟେରିନାରି କଲେଜର ଛାତ୍ର । ଏହି ମହାବିଦ୍ୟାଳୟର ଛାତ୍ର ଭାବେ ମୁଁ ମଧ୍ୟ

ଗର୍ବ ଅନୁଭବ କରେ । ସ୍ୱାଧୀନତା ପ୍ରାପ୍ତିର ମାତ୍ର ଆଠବର୍ଷ ପରେ ଏ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ମୁଁ ଏହାର ଦ୍ୱିତୀୟ ବ୍ୟାଚ୍ ଛାତ୍ର । ଆମ ଶ୍ରେଣୀରେ ମାତ୍ର ୪୮ ଜଣ ଛାତ୍ର ନାମ ଲେଖାଇଥିଲେ । ତନ୍ମଧ୍ୟରୁ ପନ୍ଦର ଜଣ ଥିଲେ କେରଳ, ମହୀଶୂର, ଦିଲ୍ଲୀ, ରାଜସ୍ଥାନ, ହିମାଚଳ ପ୍ରଦେଶ ଓ ପଶ୍ଚିମବଙ୍ଗର । ଆମେ ମାତ୍ର ୩୩ ଜଣ ଓଡ଼ିଆ ଛାତ୍ର ମଧ୍ୟରୁ ଦଶ ଜଣ ଯୁକ୍ତରାଷ୍ଟ୍ର ଆମେରିକା ଯାଇ ଉଚ୍ଚଶିକ୍ଷା ଲାଭ କରିଥିଲୁ । ଏତେସଂଖ୍ୟକ ଛାତ୍ର ଅନ୍ୟ କୌଣସି ବ୍ୟାଚ୍‌ରୁ ନିଜ ଉଦ୍ୟମରେ ବିଦେଶ ଯାଇ ଉଚ୍ଚଶିକ୍ଷା ପାଇ ନାହାଁନ୍ତି । ଏହି ମହାବିଦ୍ୟାଳୟର ତତ୍‌କାଳୀନ ଅଧ୍ୟକ୍ଷ ଡକ୍ଟର ଗଣେଶ୍ୱର ବିଶ୍ୱାଳ ଆମକୁ ଶିକ୍ଷାଦାନ କରିବା ସଙ୍ଗେସଙ୍ଗେ ଆମ ମନରେ ଉଚ୍ଚଶିକ୍ଷା ପାଇବାର ଆକାଂକ୍ଷା ସୃଷ୍ଟି କରିଥିଲେ । ତାଙ୍କ ପରି ଜଣେ ଛାତ୍ରବତ୍ସଳ ଅଧ୍ୟାପକଙ୍କୁ ଏ ଜନ୍ମରେ ଭୁଲିବାର ନୁହେଁ । ତାଙ୍କର ପ୍ରେରଣାରୁ ଯୁକ୍ତରାଷ୍ଟ୍ର ଆମେରିକା ଯାଇ ଉଚ୍ଚଶିକ୍ଷା ଲାଭ କରିବାର ସୌଭାଗ୍ୟ ଆମ୍ଭମାନଙ୍କୁ ମିଳିଥିଲା । ଆମଶ୍ରେଣୀର ଏକ ତୃତୀୟାଂଶ, ଛାତ୍ର ବିଦେଶଯାଇ ଉଚ୍ଚଶିକ୍ଷା ପାଇବାକୁ ଲାଳାୟିତ ଥିଲୁ । ସେଥିଲାଗି ମୋ ହୃଦୟରେ ଆମର ଏହି ଶିକ୍ଷାନୁଷ୍ଠାନର ସ୍ଥାନ ଥିଲା ସ୍ୱତନ୍ତ୍ର । ସାରାଦେଶରେ ଏ କଲେଜର ସୁନାମ ଅଛି । ସେହି ପରିପ୍ରେକ୍ଷୀରେ ଏହାର ସୁବର୍ଣ୍ଣଜୟନ୍ତୀ ପାଳନ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ତେଣୁ ଏ ବିଷୟରେ ମୁଣ୍ଡ ଖେଳାଇବାକୁ ହେବ । ଯଦିଓ ଦୁଇ ତିନିବର୍ଷ ଡେରି ହୋଇଥିଲା, ତଥାପି ଏହି ଉତ୍ସବ ଆଦୌ ପାଳନ ନକରିବା ଏ କଲେଜରୁ ବିଗତ ପଚାଶବର୍ଷ ଭିତରେ ପାଠପଢ଼ି ମଣିଷ ହୋଇଥିବା ପୂର୍ବତନ ଛାତ୍ରମାନଙ୍କ ପକ୍ଷରେ ଅତି ନିନ୍ଦନୀୟ କଥା ।

ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର କୁଳପତି ଡଃ ଦେବୀପ୍ରସାଦ ରାୟଙ୍କୁ ମୁଁ ଭେଟିଲି । ଭେଟେରିନାରି କଲେଜର ସୁବର୍ଣ୍ଣଜୟନ୍ତୀ ଉତ୍ସବ ପାଳନଲାଗି ସେ ରାଜିହେଲେ । ସେଥିଲାଗି ସେ ଗୋଟିଏ ମିଟିଂ ମଧ୍ୟ ଡକାଇଲେ । ମୋର ସହପାଠୀ ତଥା ଏହି ବିଶ୍ୱ ବିଦ୍ୟାଳୟର ପୂର୍ବତନ କୁଳପତି ଡଃ ଖଗେଶ୍ୱର ପ୍ରଧାନ, ପଶୁପଳନ ବିଭାଗର ପୂର୍ବତନ ନିର୍ଦ୍ଦେଶକ ଡଃ ସୁରେନ୍ଦ୍ରକୁମାର ରାୟ ଓ ଭେଟେରିନାରି କଲେଜର ସବୁ ବିଭାଗୀୟ ମୁଖ୍ୟଙ୍କ ସହିତ ଡିନ୍‌ଙ୍କୁ ଏହି ମିଟିଂକୁ ଆମନ୍ତ୍ରିତ କରାଗଲା । କଥା ହେଲା, ୨୦୦୮ ମସିହା ନଭେମ୍ବର ମାସରେ ସୁବର୍ଣ୍ଣଜୟନ୍ତୀ ଉତ୍ସବ ପାଳିତହେବ । ମାତ୍ର ତାହାମଧ୍ୟ ହୋଇ ପାରିଲା ନାହିଁ । ମୁଁ ପୁନର୍ବାର କୁଳପତିଙ୍କୁ ଭେଟିଲି । ସେ ଡିନ୍‌ଙ୍କୁ ଡାକି ଶୀଘ୍ର ନିଷ୍ପତ୍ତି ନେବାକୁ କହିଲେ । ପୁଣି ଥରେ ଆମେ ବସିଲୁ ଓ ୨୦୦୯ ମସିହା ମାର୍ଚ୍ଚ ମାସରେ ଏହି ଉତ୍ସବ ହେବାକଥା ସ୍ଥିରହେଲା । ହେଲେ ଡିନ୍ ବିଜୟବାବୁ ଏ ବିଷୟରେ ଠିକ୍‌ଭାବେ କାର୍ଯ୍ୟ କରିପାରିଲେ ନାହିଁ । ଏହି ତାରିଖ ପୁଣି ଅକ୍ଟୋବର ମାସକୁ ଗଡ଼ିଲା । ତା ପୂର୍ବରୁ ବିଜୟସାହୁ ଅବସର ଗ୍ରହଣ କଲେ । ମୋର ଅନ୍ୟତମ ଛାତ୍ର ଡଃ ପ୍ରବୀଣ କୁମାର ଦେହୁରୀ

ଡିନ୍‌ଭାବେ ଦାୟିତ୍ୱ ଗ୍ରହଣକଲେ । ମୁଁ ଯାଇ ତାଙ୍କୁ ଭେଟିଲି । ସେ କହିଲେ ଆପଣ ଦୁଇବର୍ଷ ହେଲା ଲାଗିଛନ୍ତି, ତଥାପି ଏହା ହୋଇ ପାରୁନାହିଁ । ମାତ୍ର ଏଥର ନିଶ୍ଚିତ ଭାବେ ହେବ । ଡଃ ଦାମୋଦର ରାଉତ ପଶୁପାଳନ, କୃଷି ଓ ସମବାୟ ବିଭାଗର ମନ୍ତ୍ରୀ ହେବାପରେ ମୁଁ ତାଙ୍କୁ ଭେଟି ସୁବର୍ଣ୍ଣଜୟନ୍ତୀ କଥା କହିଲି । ଓଡ଼ିଶା ପଶୁ ଚିକିତ୍ସା ମହାବିଦ୍ୟାଳୟର ଜଣେ ପୂର୍ବତନ ଛାତ୍ର ତଥା ଜଣେ ପୂର୍ବତନ ସହକର୍ମୀ ଭାବେ ତାଙ୍କସହିତ ମୋର ଖୁବ୍ ଭଲସମ୍ପର୍କ ଅଛି । ଓଡ଼ିଶାର ଜଣେ ଖ୍ୟାତନାମା ରାଜନୀତିଜ୍ଞ ତଥା ବହୁ ବର୍ଷ ଧରି ମନ୍ତ୍ରୀ ଭାବେ ଓଡ଼ିଶାକୁ ଶାସନ କରିଥିବା ଦାମବାବୁ ଏହି ମହାବିଦ୍ୟାଳୟର ଛାତ୍ର ଭାବେ ଗର୍ବ ଅନୁଭବ କରନ୍ତି । ଏ ଦିଗରେ ସେ ତାଙ୍କ ଆଡୁ ମଧ୍ୟ ଟିକେ ଚାପ ପକାଇଲେ । ୨୦୧୦ ମସିହା ଜୁନ୍ ୩/୪ ତାରିଖ ଦୁଇ ଦିନ ଧରି ସୁବର୍ଣ୍ଣଜୟନ୍ତୀ ପାଳିତ ହେବାର ସ୍ଥିରହେଲା । ତେଣୁ ମୋର ଆମେରିକା ଯିବାକଥା ଏହି ତାରିଖ ପରେ ରଖିଲି । ମୋ ପୁତୁରା ଡୁଗୁ ଇମେଲ୍ ଟିକେଟ୍ ଖୋଜି ଜୁନ୍ ୭ ତାରିଖକୁ ଦିନ ଧାର୍ଯ୍ୟକଲା ଓ ତଦନୁଯାୟୀ ଲସ୍‌ଏଞ୍ଜେଲେସ୍‌ରୁ ମୋ ପୁଅ ଗୋପାଳ ଟିକେଟ କରିଦେଲା । ଏହାରପ୍ରାୟ ଦଶଦିନ ପରେ ଡିନ୍ ଦେହୁରୀ ମୋତେ ଫୋନ୍ କରି ଜଣାଇଲେ ଯେ ଜୁନ୍ ୩ ଓ ୪ ତାରିଖ ଦୁଇଦିନ ମୁଖ୍ୟମନ୍ତ୍ରୀ ଓଡ଼ିଶା ବାହାରେ ଥିବାରୁ ସୁବର୍ଣ୍ଣଜୟନ୍ତୀ ତାରିଖ ଜୁନ୍ ୮ ଓ ୯ କୁ ଘୁଞ୍ଚିଗଲା । ହେଲେ, ମୋ ପକ୍ଷରେ ଆମେରିକା ଯିବା ତାରିଖ ଘୁଞ୍ଚାଇବା ଅସମ୍ଭବ ଥିଲା । କାରଣ ମୋର ଜୁଲାଇ ୨ ରୁ ୪ ତାରିଖ ପର୍ଯ୍ୟନ୍ତ ଓଡ଼ିଶା ସୋସାଇଟି ଅଫ୍ ଆମେରିକାର ବାର୍ଷିକ ଅଧିବେଶନରେ ଯୋଗ ଦେବାର ଥିଲା । ଦୀର୍ଘ ତିନିବର୍ଷ ଧରି ପଶୁ ଚିକିତ୍ସା ମହାବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଇଁ ଚେଷ୍ଟା କରି ଠିକ୍ ତାହା ସାକାର ହେଲାବେଳକୁ ମୁଁ ରହିପାରିଲି ନାହିଁ । ସେଥିପାଇଁ ମୋତେ ଦୁଃଖ ଲାଗୁଥାଏ ।

ଲେଖକ ସହଯୋଗ ସମିତିର ସମ୍ପାଦକ ରଘୁବାବୁ କହିଲେ ଆପଣ ଆମେରିକା ଯିବାପୂର୍ବରୁ ଆମ ନୂତନ ସଭାଗୃହର ଉଦ୍‌ଘାଟନ ଉତ୍ସବ କାର୍ଯ୍ୟ ସାରିଦେଇ ଯାଆନ୍ତୁ । ତେଣୁ ଆମେଦୁହେଁ ସେଇକାମରେ ଲାଗିପଡ଼ିଲୁ । କାମ କରିବାକୁ ମୂଲିଆ ମିଳୁ ନଥାନ୍ତି । କାର୍ଯ୍ୟାଳୟ ସାମନାରୁ ମାଟି ଉଠାଯାଇ ପଣ୍ଟିମପଟ ପୋତାଯିବ, ପାଚେରୀ ଗଢ଼ା ହେବ ଓ ଶିଡ଼ି ଘର ପଲସ୍ତରା କରାଯାଇ ରଙ୍ଗ ହେବ । ସଭାଗୃହ ଭିତରେ ମଣ୍ଡପ ତିଆରିହୋଇ ରଙ୍ଗକାମ ହେବା ମଧ୍ୟ ବାକୀଥାଏ । ମୂଲିଆଙ୍କ ସାଙ୍ଗରେ ରହି ସେମାନଙ୍କୁ ସାହାଯ୍ୟ କରିବାକୁ ପଡ଼ିଲା । ବାଉଁଶ ଉଠାଇ ଭାରା ବାନ୍ଧିବାକୁ ହେଲା । ମୋ ନିଜ ଘର ତିଆରି ପାଇଁ ଆବଶ୍ୟକ ସ୍ଥଳେ ମୂଲିଆ ବା ମିସ୍ତ୍ରୀ ପାଖରେ ଏପରି କେବେ କାମ କରିବାକୁ ପଡ଼ି ନଥିଲା । ମାତ୍ର ଦିନଦିନଧରି ମୋତେ ମୂଲିଆଙ୍କ ସାଙ୍ଗେ ମିଶି ଦୈହିକ ପରିଶ୍ରମ ଲେଖକ ସହଯୋଗ ସମିତି ପାଇଁ କରିବାକୁ ପଡ଼ିଲା । ମଝିରେ ମଝିରେ ଉତ୍କଳ ସମ୍ମିଳନୀ ଓ

ଜଗନ୍ନାଥ ଭକ୍ତ ସମାଜ କାମ ମଧ୍ୟ ଚାଲିଥାଏ । ଯୁକ୍ତରାଷ୍ଟ୍ର ଆମେରିକା ପାଇଁ ଜୁନ୍ ୭ ତାରିଖରେ ବିମାନଯାତ୍ରା କରିବାକୁ ହେବ । ତେଣୁ ନୂତନ ସଭାଗୃହ ଉଦ୍‌ଘାଟନ ଉତ୍ସବ ଜୁନ୍ ୬ ତାରିଖ ସନ୍ଧ୍ୟା ୬ଟା ବେଳକୁ ରଖାଗଲା । ଏହାର ଦୁଇଦିନ ପୂର୍ବରୁ ପ୍ରବଳ ଗରମ ପଡ଼ିଥାଏ । ସମିତିର ସମସ୍ତ ସଭ୍ୟ/ସଭ୍ୟାଙ୍କ ସହିତ ଉତ୍କଳସମ୍ମିଳନୀର କର୍ମକର୍ତ୍ତାମାନଙ୍କୁ ନିମନ୍ତ୍ରଣ କରାଗଲା । ହେଲେ ୬ ତାରିଖ ସକାଳୁ ପ୍ରବଳ ଗୁଳୁଗୁଳି ଆରମ୍ଭ ହୋଇଗଲା । ପ୍ରାୟ ସାଢ଼େପାଞ୍ଚଟା ସୁଦ୍ଧା ଆମର କେତେଜଣ ସଭ୍ୟ ଆସି ପହଞ୍ଚିଲେ । ଡାକ୍ତର ସନାତନରଥ ଆସି ଠିକ୍ ଛଅଟା ବେଳକୁ ପହଞ୍ଚିଗଲେ । ଅଧଘଣ୍ଟାକ ଭିତରେ ଡକ୍ଟର ବୈଷ୍ଣବଚରଣ ସାମଲ, ହୋସେନ୍‌ରବି ଗାନ୍ଧି, ଡାକ୍ତର ବିଜୟକୁମାର ନନ୍ଦ ଆଦି ପ୍ରାୟ ୨୫/୩୦ ଜଣ ସଭ୍ୟସଭ୍ୟା ଉପସ୍ଥିତ ହୋଇଗଲେ । ପ୍ରବଳଗରମ ଓ ଗୁଳୁଗୁଳି ଯୋଗୁଁ ସଭାଗୃହର ପଙ୍ଖାସବୁ ଘରଟାକୁ ଥଣ୍ଡା କରିପାରୁ ନଥାନ୍ତି । ସାତଟା ସୁଦ୍ଧା ଆମର ବିଧାୟକ ଶ୍ରୀ ପ୍ରଭାତରଞ୍ଜନ ବିଶ୍ୱାଳ ଆସିବା ପରେ ସଭାକାର୍ଯ୍ୟ ଆରମ୍ଭ ହେଲା । ପହଞ୍ଚିବାମାତ୍ରେ ସେ କହୁଥିଲେ, ମୋତେ ପନ୍ଦର ମିନିଟ ଭିତରେ ଛାଡ଼ିଦେବେ । ଡାକ୍ତର ରଥଙ୍କର ମଧ୍ୟ ଅପରେସନ୍ କରିବାର ଥିଲା । ମାତ୍ର ସଭା ଆରମ୍ଭ ହେବାପରେ ଦୁହେଁ ସେ ଗରମ ଓ ଗୁଳୁଗୁଳି ଭିତରେ ଦୁଇ ଘଣ୍ଟା ଧରି ସମସ୍ତେ ବସି ରହିଲେ । ଆମକୁ ମାଗଣାରେ ଜାଗା ଦେଇଥିବା କାଳିମନ୍ଦିର ପରିଚାଳକ ଶ୍ରୀ କାଳନ୍ଦି ଚରଣ ପାଣିଗ୍ରାହୀଙ୍କ ସହିତ ସଭାଗୃହ ପାଇଁ ଅର୍ଥ ଦାନ କରିଥିବା ବ୍ୟକ୍ତିମାନଙ୍କୁ ଫୁଲତୋଡ଼ାରେ ସମ୍ମାନିତ କଲୁ । ବାକି ପଡ଼ିଥିବା କାମ ପାଇଁ ବିଧାୟକ ପ୍ରଭାତ ବାବୁ ଅର୍ଥ ଯୋଗାଇ ଦେବେବୋଲି ପ୍ରତିଶ୍ରୁତିଦେଲେ । ରାତି ପ୍ରାୟ ନଅଟାସୁଦ୍ଧା ଏହି ଉତ୍ସବ ସାରି ଘରକୁଆସି ମୁଁ ଆମେରିକା ଯିବା ପାଇଁ ଜିନିଷ ପତ୍ର ସଜାଡ଼ି ବସିଲି ।

# ଜୀବେ ହିତୈଷୀ ସଂଘ

ଈଶ୍ୱର ସୃଷ୍ଟ ଏହି ସୁନ୍ଦର ପୃଥିବୀପୃଷ୍ଠରେ କୋଟିକୋଟି ଜାତି ପ୍ରଜାତିର ଜୀବ ରହିଛନ୍ତି । ହେଲେ ସବୁରି ଉପରେ ମନୁଷ୍ୟ ହେଉଛି ଶ୍ରେଷ୍ଠ ଜୀବ । କାରଣ ତା'ର ଜ୍ଞାନ, ବୁଦ୍ଧି, ଧୀଶକ୍ତି ଓ ବିଚାରଶକ୍ତି ଅଛି, ଯାହା ବଳରେ ସେ ସମଗ୍ର ପୃଥିବୀ ତଥା ଜୀବଜଗତର ସୁରକ୍ଷା ଦିଗରେ ଚିନ୍ତା କରୁଛି । ମନୁଷ୍ୟେତର ଜୀବମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରିବା ହିଁ ମାନବିକତା ।

ଓଡ଼ିଶା ପ୍ରଦେଶ ସୃଷ୍ଟି ହେବାପରେ ଜୀବେ ନିଷ୍ଠୁରତା ନିରୋଧ ସମିତି Society for Prevention of Cruelity to Animals ଓଡ଼ିଶାଶାଖା ସୃଷ୍ଟି ହୋଇଛି । ଏହାର ମୁଖ୍ୟ କାର୍ଯ୍ୟାଳୟ ଲଣ୍ଡନରେ ଥାଇ ବ୍ରିଟିଶ ଅଧିକୃତ ସମସ୍ତ ଦେଶରେ ଏହାର ଶାଖାମାନ

ସ୍ଥାପିତ ହୋଇଥିଲା । ଓଡ଼ିଶା ଶାଖାର ଅବୈତନିକ ସମ୍ପାଦକ ଭାବେ ରାଜ୍ୟ ପଶୁପାଳନ ବିଭାଗର ନିର୍ଦ୍ଦେଶକ କାମକରନ୍ତି ଓ ତାଙ୍କ ଅଧିନରେ କେତେଜଣ ବେତନଭୋଗୀ କର୍ମଚାରୀ ଜୀବେ ନିଷ୍ଠୁରତା ନିରୋଧ ସମିତିର ପରିଦର୍ଶକ ରହି ବିଭିନ୍ନ ଜିଲ୍ଲାରେ ଜୀବମାନଙ୍କ ପ୍ରତି ନିଷ୍ଠୁରତା ଆଚରଣ କରୁଥିବା ଲୋକମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାଲାଗି ନିୟୋଜିତ ଥାଆନ୍ତି । ମୁଁ ନିର୍ଦ୍ଦେଶକ ଭାବେ ପଶୁପାଳନ ବିଭାଗର ଦାୟିତ୍ୱ ନେବାପରେ ଏହି ସଂସ୍ଥାର ଅବୈତନିକ ସମ୍ପାଦକ ହେଲି । ବେତନଭୋଗୀ ପରିଦର୍ଶକମାନେ ଠିକ୍ ଭାବେ କାର୍ଯ୍ୟ କରୁ ନ ଥିବା ଦେଖି ମୋତେ ଭଲ ଲାଗିଲା ନାହିଁ । ପୂର୍ବରୁ-ଥିବା ନିର୍ଦ୍ଦେଶକମାନେ ଏ ଦିଗରେ କିଛି କରୁ ନ ଥିବା ସ୍ଥଳେ ମୁଁ ଗୋଟିଏ ସ୍ୱତନ୍ତ୍ର ଏସ୍.ପି.ସି.ଏ. ପଶୁ ଚିକିତ୍ସାଳୟ ସ୍ଥାପନ କରି ବୁଲା କୁକୁରମାନଙ୍କର ବନ୍ଧ୍ୟାକରଣ ଅସ୍ତ୍ରୋପଚାର; ଗ୍ରାମାଞ୍ଚଳରେ ପଶୁ ଚିକିତ୍ସା ଶିବିର, ରାସ୍ତା କଡ଼ରେ ମାଂସକଟା ବିରୋଧୀ ଅଭିଯାନ ଆଦି ଅନେକ କାମ ଆରମ୍ଭ କଲି । ଏତିକିବେଳେ ଇନ୍ଦିରାଗାନ୍ଧୀଙ୍କ ସାନପୁଅ ସଞ୍ଜୟଗାନ୍ଧୀଙ୍କ ଧର୍ମପତ୍ନୀ ଶ୍ରୀମତୀ ମେନକା ଗାନ୍ଧି 'ପିପୁଲ ଫର ଆନିମଲ୍ସ' (ପି.ଏଫ୍.ଏ.) ସଂସ୍ଥା ଗଠନକଲେ । ସେ ଓଡ଼ିଶା ଆସି ଭୁବନେଶ୍ୱରସ୍ଥ ରାଜ୍ୟ ସରକାରୀ ଅତିଥିଭବନରେ ଅବସ୍ଥାନ କଲାବେଳେ ମୋତେ ଡକାଇଲେ ଓ ଆମ ରାଜ୍ୟରେ ପି,ଏଫ୍.ଏ.ର ଗୋଟିଏ ଶାଖା ଗଠନ କରିବାକୁ ଅନୁରୋଧ କଲେ । ସରକାରୀ କାମରେ ପ୍ରତ୍ୟେକଥର ଦିଲ୍ଲୀ ଯିବାବେଳେ ତାଙ୍କୁ ଯାଇ ଭେଟିବାକୁ ମଧ୍ୟ ଆମନ୍ତ୍ରିତ କଲେ ।

କଟକରେ ଶ୍ରୀମତୀ ଶୈଳବାଳା ମହାନ୍ତି ଜଣେ ଜୀବକଲ୍ୟାଣମୟୀ ମହିଳା ଭାବେ ଖ୍ୟାତି ଅର୍ଜନ କରିଛନ୍ତି । ତାଙ୍କ ଘରେ ପ୍ରାୟ ୬୦/୭୦ଟି ବିଲେଇ ଓ ୧୦/୧୫ଟି କୁକୁର ପାଳି ସେମାନଙ୍କୁ ଖାଇବାକୁ ପିଇବାକୁ ଦେଇ ସେମାନଙ୍କର ସ୍ୱାସ୍ଥ୍ୟ ବିଷୟରେ ସେ ଅତ୍ୟନ୍ତ ସଚେତନ ରହନ୍ତି । ସେଥିଲାଗି ତାଙ୍କ ପରିବାରରେ ଅଶାନ୍ତି ଦେଖାଦେଲେ ମଧ୍ୟ ସେଥିପ୍ରତି ତାଙ୍କର ଖାତିର ନଥାଏ । କଟକ ନାରୀସଂଘ ସଦନର ସଂପାଦିକା ଭାବେ ସେହି ଅନୁଷ୍ଠାନର ସବୁଦାୟିତ୍ୱ ନିର୍ବାହ କରିବାପରେ ଘରକୁ ଫେରି କୁକୁର ବିଲେଇଙ୍କର ଯତ୍ନ ନେବା ତାଙ୍କର କାମ । ତା ସାଙ୍ଗକୁ ବିଦ୍ୟାଳୟ, ମହାବିଦ୍ୟାଳୟ ବା ସଭାସମିତିରେ ଜୀବେଦୟା ବିଷୟରେ ଆଲୋଚନା କରି ଛାତ୍ରଛାତ୍ରୀ ବା ସାଧରଣ ଲୋକଙ୍କ ମନରେ ଜୀବପ୍ରତି ଦୟାଭାବ ଉଦ୍ରେକକରିବାର ପ୍ରଯତ୍ନ ସେ କରନ୍ତି । ମୁଁ ଓଡ଼ିଶାରେ ମେନକା ଗାନ୍ଧିଙ୍କ ପିପୁଲ ଫର୍ ଆନିମଲ୍ ସଂସ୍ଥାର ପ୍ରଥମ ଶାଖା ଖୋଲିବା ପାଇଁ ତାଙ୍କର ସାହାଯ୍ୟ ଲୋଡ଼ିଲି । ଆମ ସହିତ ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ, ଅଧିବକ୍ତା ଗୋକୁଳାନନ୍ଦ ପଟ୍ଟନାୟକ, ସଦୟଲକ୍ଷ୍ମୀ ପଟ୍ଟନାୟକ, ମମତା ଦାଶ, ଚକ୍ରଧର ବେହେରା, ଶକୁନ୍ତଳା ମହାନ୍ତି, ପିଙ୍କି, ଜୁବ୍ବୁ, ନବ କିଶୋର ମିଶ୍ର, ଗୋବର୍ଦ୍ଧନ ପଟ୍ଟନାୟକ ଆଦି ବ୍ୟକ୍ତିମାନେ

ଏହି ଅନୁଷ୍ଠାନରେ ଯୋଗ ଦେଲେ । ପଶୁପାଳନ ବିଭାଗର ବହୁ ଅବସରପ୍ରାପ୍ତ ଅଧିକାରୀ ମଧ୍ୟ ଏହାର ସଭ୍ୟ ହେବା ପାଇଁ ଆଗ୍ରହ ପ୍ରକାଶ କଲେ । ସବୁତକ ଆଜୀବନ ସଭ୍ୟଚାନ୍ଦା ମେନକା ଗାନ୍ଧିଙ୍କ ପାଖକୁ ପଠାଇ ଦିଆଗଲା ବିଭିନ୍ନ ସ୍ଥାନରେ ସଭାସମିତି କରି ଜୀବେଦୟା ବିଷୟରେ ଲୋକମାନଙ୍କୁ ସଚେତନ କରିବା ସହିତ ଫୁଲନଖରାଠାରେ ଥିବା ପଶୁ ରୋଗ ଗବେଷଣା କେନ୍ଦ୍ର ସାହାଯ୍ୟରେ ସ୍ଥାନେ ସ୍ଥାନେ ପଶୁଚିକିତ୍ସା ଶିବିର ଆୟୋଜିତ ହେଲା । ମୁଁ ଯେତେଥର ସରକାରୀ କାର୍ଯ୍ୟରେ ଦିଲ୍ଲୀଯାଏ ସେତେବେଳେ ମେନକାଗାନ୍ଧିଙ୍କ ଘରକୁ ଯାଇ ଓଡ଼ିଶାରେ ହୋଇଥିବା କାର୍ଯ୍ୟ ବିଷୟରେ ତାଙ୍କ ସହିତ ଆଲୋଚନା କରେ । ସେ କହିଲେ ଭାରତର ବିଭିନ୍ନ ରାଜ୍ୟରେ ପି.ଏଫ୍.ଏ.ର ଗୋଟିଏ ଗୋଟିଏ କେନ୍ଦ୍ର ସ୍ଥାପନ କରିବା ତାଙ୍କର ଇଚ୍ଛା । ସେଥିଲାଗି ୫ ଏକରରୁ ୧୦ ଏକର ପର୍ଯ୍ୟନ୍ତ ଜାଗା ମିଳିବା ଦରକାର । ଏପରି ଜାଗା ଯୋଗାଡ଼ କରିବାକୁ ହେବ । ସେସବୁ କେନ୍ଦ୍ରରେ ଅକର୍ମଣ୍ୟ ଜୀବଜନ୍ତୁମାନଙ୍କୁ ରଖିବାର ବ୍ୟବସ୍ଥା ହେବ । ଗୋଟିଏ ପଶୁ ଚିକିତ୍ସାଳୟ ଓ ଭ୍ରାମ୍ୟମାଣ ପଶୁଚିକିତ୍ସା ଗାଡ଼ି ରହିବ । ରୁଗ୍ଣ ପଶୁମାନଙ୍କୁ ଦୂର ସ୍ଥାନରୁ ଆଣି ଚିକିତ୍ସା କରିବାକୁ ଗୋଟିଏ ବା ଦୁଇଟି ଆମ୍ବୁଲାନ୍ସ ରହିବ । ଅସହାୟ ଗୃହପାଳିତ ପଶୁପକ୍ଷୀମାନଙ୍କ ପାଇଁ ସେଇ ହତା ଭିତରେ ଘର ତିଆରି ହେବ ଓ ସେମାନଙ୍କ ପାଇଁ ଖାଦ୍ୟ ପାନୀୟର ବ୍ୟବସ୍ଥା ହେବ । ଏସବୁ ପାଇଁ ଭାରତୀୟ ଜୀବମଙ୍ଗଳ ବୋର୍ଡ଼ ଆବଶ୍ୟକ ଅର୍ଥ ଯୋଗାଇ ଦେବେ । ସରକାରୀ ସୂତ୍ରରୁ ଏପରି ଜାଗା ଖୋଜି ଠିକ୍ କରିବା ପାଇଁ ମୋର ବିଭାଗୀୟ ଜିଲ୍ଲା ଅଧିକାରୀମାନଙ୍କୁ କହିଲି ।

ସେତେବେଳେ ବରଗଡ଼ ଜିଲ୍ଲାର ବିଧାୟକ ଶ୍ରୀ ପ୍ରକାଶଚନ୍ଦ୍ର ଦେବତା ଆମର ମନ୍ତ୍ରୀ ଥାଆନ୍ତି । ଶ୍ରୀଯୁକ୍ତ ଦୟାନିଧି ରାଉତ ନାମକ ଜଣେ ଭଦ୍ରବ୍ୟକ୍ତି ତାଙ୍କ ପାଖକୁ ଆସନ୍ତି । ଖୁବ୍ ମେଳାପି ଲୋକ ସେ । ଥରେ ମୋତେ ପଚାରିଲେ ଆପଣ କେବେ ଅବସର ନେଉଛନ୍ତି ? କହିଲି, ଆଉ ମାତ୍ର ଆଠଦଶ ମାସ ପରେ । ସେ କହିଲେ, ଅବସର ନେବା ପରେ ଆପଣ ମୋ ସହିତ ଗୋଟିଏ ଅଣସରକାରୀ ସଂଗଠନରେ ଯୋଗ ଦିଅନ୍ତୁ । ଏକ ସରକାରୀ ବିଭାଗର ନିର୍ଦ୍ଦେଶକ ଭାବେ ଆପଣ ଯେତେ ଦରମା ପାଉଛନ୍ତି, ତାର ଦୁଇଗୁଣ ରୋଜଗାର କରିବେ । ପଚାରିଲି, ଆପଣଙ୍କର କେଉଁ ସଂଗଠନ ? ସେ କହିଲେ ଏ ଯେଉଁ କାର୍ଯ୍ୟ ଆପଣ ସରକାରୀ ଭାବେ କରୁଛନ୍ତି, ସେହି କାର୍ଯ୍ୟ ଆପଣ ବେସରକାରୀ ସଂଗଠନ ଜରିଆରେ କରିବେ । ତେଣୁ ଆପଣଙ୍କ ସହଯୋଗ ପାଇଲେ ମୁଁ ଅନେକ କିଛି କରିଦେଇ ପାରିବି । କହିଲି; ସେ ବେଳ ତ ପାଖେଇ ଆସୁଛି ମୁଁ ଆପଣଙ୍କ ସହିତ ଯୋଗାଯୋଗ କରିବି ।

ପରେ ତାଙ୍କ ବିଷୟରେ ଆମ ମନ୍ତ୍ରୀଙ୍କୁ ପଚାରିଲି । ସେ କହିଲେ ରାଉତବାବୁ ବରାବର ଦିଲ୍ଲୀ ଓ ମାନ୍ଦ୍ରାଜ ଯିବାଆସିବା କରି ଭାରତୀୟ ଜୀବମଙ୍ଗଳ ବୋର୍ଡ଼ର କର୍ମକର୍ତ୍ତା

ଓ ମେନକା ଗାନ୍ଧୀଙ୍କ ସହିତ ଯୋଗସୂତ୍ର ରଖିଛନ୍ତି । ଓଡ଼ିଶାପାଇଁ ଗୋଟିଏ ବଡ଼ ପ୍ରୋଜେକ୍ଟ ଦେଇ ତାହାକୁ କାର୍ଯ୍ୟକାରୀ କରିବାକୁ ସେ ଅଣ୍ଟା ଭିଡ଼ିଛନ୍ତି । ସେହିଭଳି ଭୁବନେଶ୍ୱରର ଆଉଜଣେ ବ୍ୟକ୍ତି ମଧ୍ୟ ଏ ଦିଗରେ ଆଗେଇଛନ୍ତି । ଅନୁସନ୍ଧାନ କରି ବୁଝିଲି, ପଶୁପାଳନ ସମ୍ପର୍କରେ ଏ ଦୁଇ ଭଦ୍ରଲୋକଙ୍କର କୌଣସି ଅଭିଜ୍ଞତା ବା ଶିକ୍ଷାଦୀକ୍ଷା ନାହିଁ । ଜଣେ ଓକିଲାତି ପଢ଼ିଛନ୍ତି, ଆଉ ଜଣେ ସାଧାରଣ ଗ୍ରାଜୁଏଟ୍ । ଏସବୁ କଥା ଶୈଳଅପାଙ୍କୁ କହି ସେମାନଙ୍କୁ ପିପୁଲ ଫର ଆନିମଲ୍ସର ସଭ୍ୟ କରିବାକୁ କହିଲି । ସେ କହିଲେ, ସେମାନେ ମେନକା ଗାନ୍ଧିଙ୍କୁ କହି ପି.ଏଫ.ଏ.ର ଗୋଟିଏ ଗୋଟିଏ ଶାଖା ଖୋଲିଛନ୍ତି । ସେହି ଶାଖା ଜରିଆରେ ଏସବୁ କାମ କରିବାକୁ ଚେଷ୍ଟା ଚଳାଇଛନ୍ତି । ମେନକା ଗାନ୍ଧି ଆମକୁ ମଧ୍ୟ ସରକାରୀ ଜମି ଲିଜ୍ ନେବାକୁ ଅନୁରୋଧ କରିଛନ୍ତି । ଆମେ ଜମି ଖୋଜି ବାହାର କଲେ ଏସବୁ ବାବଦ ଟଙ୍କା ଆସିବ । କହିଲି ଟଙ୍କା ଆଣିବାଟା ବଡ଼ କଥା ନୁହେଁ । ତାକୁ ଠିକ୍ ବାଟରେ ଖର୍ଚ୍ଚ କରିବା ହେଉଛି ଅସଲକଥା ।

ମୋର ଅବସର ନେବାପାଇଁ ପ୍ରାୟ ଦୁଇମାସ ବାକୀଥାଏ, ଭାରତୀୟ ଭେଟେରିନାରି କାଉନ୍‌ସିଲ୍‌ରୁ ଆସିଥିବା ଦୁଇଜଣ କର୍ମକର୍ତ୍ତାଙ୍କୁ ଭେଟିବା ପାଇଁ ଭୁବନେଶ୍ୱରସ୍ଥ ସରକାରୀ ଅତିଥି ଭବନକୁ ଗଲି । ସେଠାରେ ମେନକାଗାନ୍ଧି ଥିବାକଥା ଜାଣିବାକୁ ପାଇଲି । ତାଙ୍କ ପାଖକୁ ଯାଇ ପଚାରିଲି, ଆପଣ ଭୁବନେଶ୍ୱର ଆସିଲେ, ମାତ୍ର ମୋତେ ଜଣାଇଲେ ନାହିଁ କାହିଁକି ? ଆମେ ଆପଣଙ୍କ ସହିତ ସମ୍ପର୍କ ରଖିଛୁ । ତେଣୁ ଆଶା କରୁଛୁ ଯେ, ଆପଣ ଓଡ଼ିଶା ଆସିଲେ ଆମକୁ ନିଶ୍ଚୟ ଭେଟିବେ ।

ସେ କହିଲେ ଭାରତୀୟ ଜୀବମଙ୍ଗଳ ସଂସ୍ଥା ପକ୍ଷରୁ ଏହି ସହରର ଜଣେ ବ୍ୟକ୍ତିଙ୍କୁ ଗୋଟିଏ ପ୍ରୋଜେକ୍ଟରେ କାର୍ଯ୍ୟ କରିବା ପାଇଁ ପ୍ରଥମ କ୍ଷେପରେ ତିନିଲକ୍ଷ ଟଙ୍କା ଦିଆଯାଇଥିଲା । ତାଙ୍କର କାର୍ଯ୍ୟ ତଦାରଖ କରିବା ପାଇଁ ମୁଁ ଆସିଥିଲି । କାହାକୁ ନ ଜଣାଇ ଗୁପ୍ତରେ ତାଙ୍କ କାର୍ଯ୍ୟ ଦେଖିବା ପାଇଁ ମୁଁ ଯାଇଥିଲି । ମାତ୍ର ଯାହା ଦେଖିଲି ସବୁ ମିଛକଥା । ପ୍ରୋଜେକ୍ଟ ପାଇଁ ପ୍ରଥମ ପର୍ଯ୍ୟାୟ କାର୍ଯ୍ୟ କିଛି ହୋଇନାହିଁ ବୋଲି ଧରି ନେବାକୁ ହେବ । ତେଣୁ ଦ୍ୱିତୀୟ ପର୍ଯ୍ୟାୟ ଲାଗି ତାଙ୍କୁ ଆଉ ଅର୍ଥ ଦିଆଯିବ ନାହିଁ । ସେ କହିଲେ, ଆପଣ ପ୍ରଥମେ ଜାଗା ନେଇଯାଅନ୍ତୁ, କାମ କରିବାପାଇଁ ଆପଣଙ୍କୁ ଯଥେଷ୍ଟ ଟଙ୍କା ଦିଆଯିବ । କହିଲି ଟଙ୍କାଟା ବଡ଼ କଥା ନୁହେଁ । ବଡ଼ କଥା ହେଉଛି ସେହି ଅର୍ଥକୁ ଠିକ୍ ଭାବେ ଉପଯୋଗ କରିବା

ଅବସର ନେବା ପୂର୍ବରୁ ସରକାରୀ କାର୍ଯ୍ୟରେ ଦିଲ୍ଲୀ ଯିବାବେଳେ ମେନକା ଗାନ୍ଧିଙ୍କୁ ଦେଖା କଲି । ସେ ମୋତେ ଗୋଟିଏ ଦଶହଜାର ଟଙ୍କାର ଚେକ୍ ଦେଇ କହିଲେ ଆପଣ ୩/୪ ଏକର ଜାଗା ନେବା ନିହାତି ଆବଶ୍ୟକ । ଏ ଟଙ୍କା ଆପଣ ନିଅନ୍ତୁ, ଆଉ ଯାହା

ଦରକାର ହେବ ଆପଣମାନେ ସ୍ଥାନୀୟ ଲୋକଙ୍କଠାରୁ ସଂଗ୍ରହକରି ଜାଗା ଯୋଗାଡ କରିବେ । ଜାଗା ମିଳିବାପରେ ଜୀବମଙ୍ଗଳ ସଂସ୍ଥାକୁ ପ୍ରୋଜେକ୍ଟ ଦେଲେ ସେଠୁ ଟଙ୍କା ମିଳିବ । ତାଙ୍କୁ ଆଉ କିଛି ନ କହି ମୁଁ ଚେକଟି ଧରି କଟକ ଫେରିଲି । ପି.ଏଫ.ଏ.ର ସଭ୍ୟସଭ୍ୟାମାନଙ୍କୁ ଡକାଇ ସବୁକଥା କହିଲି । ପ୍ରାୟ ବର୍ଷେହେବ ସରକାରୀ ଜାଗା ଖଣ୍ଡେ ପାଇବାକୁ ଦରଖାସ୍ତ ଦେଇ ଆଜି ପର୍ଯ୍ୟନ୍ତ କିଛି ହୋଇ ପାରିଲା ନାହିଁ । ଦଶ ହଜାର ଟଙ୍କାଧରି କଅଣ କରିହେବ ? ଏତିକି ବେଳେ ଜଗତସିଂହପୁର ନିକଟସ୍ଥ ବଡ଼ବାଗ ଗ୍ରାମରୁ ସମାଜସେବୀ ଶ୍ରୀ ବୃନ୍ଦାବନ ସାହୁ ଆସି ଶୈଳବାଳା ମହାନ୍ତିଙ୍କୁ କହିଲେ ତାଙ୍କର ଅଳକା ନଦୀ ପଠାରେ ବହୁତ ଜମି ଅଛି, ସେଥିରୁ ଚାରି ଏକର ସେ ଜୀବେନିଷ୍ଠୁରତା ନିରୋଧ କାର୍ଯ୍ୟ ଲାଗି ଦାନ କରିବାକୁ ଚାହାନ୍ତି, ବୃନ୍ଦାବନବାବୁ ଜଗତସିଂହପୁର ଅଞ୍ଚଳର ଜଣେ ଖ୍ୟାତନାମା ଲୋକ । ସ୍ୱାଧୀନତା ସଂଗ୍ରାମ ଚାଲିଥିଲା ବେଳେ ସେ ବଡ଼ବାଗର ତନ୍ତୀମାନଙ୍କୁ ଏକତ୍ରିତ କରି ଏକ ସମବାୟ ସମିତି ଗଠନ କରିଥିଲେ । ସେହି ସମିତି ପକ୍ଷରୁ ଖଦଡ଼ଲୁଗା, ଲୁଙ୍ଗି ଓ ଗାମୁଛା ତିଆରି ହୋଇ ବିକ୍ରୀ ହେଉଥିଲା । ଏବେ ସେ ନବେବର୍ଷ ବୟସରେ ପଦାର୍ପଣ କରିଛନ୍ତି । ବଡ଼ବାଗରେ ତାଙ୍କର ପ୍ରଚୁର ଭୂସମ୍ପତ୍ତି ଅଛି ଜୀବମଙ୍ଗଳ ପାଇଁ ସେ ଭୂମି ଦାନଦେଇ କିଛି ଶୁଭକାର୍ଯ୍ୟ କରିବାକୁ ଚାହାନ୍ତି । ମୁଁ ଓ ଶୈଳଅପା ବଡ଼ବାଗ ଯାଇ ସେହିଜମି ଦେଖିଲୁ । ଅଳକା ନଦୀପଠାରେ ତାଙ୍କର ପ୍ରାୟ ତିରିଶଏକର ଜମି ଅଛି । ତନ୍ମଧ୍ୟରୁ ଯେଉଁଠି ଜମି ନେବାକୁ ଚାହିଁଲେ ସେ ଦେବେ ବୋଲି କହିଲେ । ଜଳସେଚନର କୌଣସି ସୁବିଧା ନାହିଁ । ବୋରିଂ କରି ପାଣି ଉଠାଇବାକୁ ହେବ । ସେ ଜମିର କାଗଜପତ୍ର ନେଇ ରେଜିଷ୍ଟ୍ରିଖାନାରେ ପଚାରିଲୁ । କୌଣସି ମୂଲ୍ୟ ନଦେଇ ବୃନ୍ଦାବନ ବାବୁ ପିପୁଲ ଫର୍ ଆନିମଲ୍ସ ସଂସ୍ଥା ନାମରେ ଦତ୍ତ ପତ୍ର କରିଦେବେ । ଏହି ଦତ୍ତପତ୍ର ରେଜେଷ୍ଟ୍ରି କରିବାକୁ କେତେ ଫିସ୍ ପଡ଼ିବ ? ବୁଝିଲା ବେଳକୁ ସତଷଠି ହଜାର ଟଙ୍କା ପଡ଼ିବ ବୋଲି ଜଣାଗଲା । ଜଗତ୍‌ସିଂହପୁର ଥାନାର ଗ୍ରାମାଞ୍ଚଳ ଜମିପାଇଁ ଏକରପିଛା ଅଠରହଜାର ଟଙ୍କା ପଡ଼ିବା ଅସମ୍ଭବ କଥା । ରେଜିଷ୍ଟ୍ରିଖାନାର ବଡ଼ବାବୁ କହିଲେ ବଡ଼ବାଗ ଗ୍ରାମଟି ଜଗତସିଂହପୁର ଏନ୍.ଏ.ସି. ଭିତରେ ଆସୁଛି । ତେଣୁ ସହରାଞ୍ଚଳ ସମ୍ପତ୍ତିପାଇଁ ଅଧିକଫିସ୍ ପଡ଼ିବ । ଆମ ପାଖରେ ଏତେ ଟଙ୍କା ବା ଆସିବ କୁଆଡୁ ? ଏ ବିଷୟରେ ମେନକା ଗାନ୍ଧିଙ୍କୁ ଚିଠି ଲେଖି ଜଣାଇଲୁ । ସେ କୌଣସି ଉତ୍ତର ଦେଲେ ନାହିଁ । ପ୍ରାୟ ମାସକପରେ ତାଙ୍କଠାରୁ ଗୋଟିଏ ଚିଠି ମିଳିଲା ଯେ ପି.ଏଫ୍.ଏ. ଓଡ଼ିଶାକୁ ଅନ୍ୟ ଏକ ନାମଦେଇ ରେଜେଷ୍ଟ୍ରିଭୁକ୍ତ କରାଯାଉ । କାରଣ ପିପୁଲ୍ ଫର୍ ଆନିମଲ୍ସ ନାମ ରହିଲେ ଭାରତୀୟ ଜୀବମଙ୍ଗଳ ସଂସ୍ଥା ବା ଭାରତ ସରକାରଙ୍କ ପକ୍ଷରୁ ଆମକୁ କୌଣସି ଆର୍ଥିକ ସାହାଯ୍ୟ ମିଳିପାରିବ ନାହିଁ । ପି.ଏଫ.ଏ. ନାମରେ ସମସ୍ତସାହାଯ୍ୟ ଦିଲ୍ଲୀ ଠିକଣାରେ ଶ୍ରୀମତୀ ମେନକା ଗାନ୍ଧୀଙ୍କ ନାମରେ ହିଁ ପଠାଯାଇପାରିବ । ତେଣୁ ଆମକୁ ନାମବଦଳାଇ

ଓଡ଼ିଶାର ଏକ ପ୍ରମୁଖ ଜୀବ କଲ୍ୟାଣକାରୀ ଅନୁଷ୍ଠାନଭାବେ ରେଜିଷ୍ଟ୍ରିଭୁକ୍ତ କରିବାକୁ ହେବ । ଆମର ସମସ୍ତ ସଭ୍ୟସଭ୍ୟାମାନଙ୍କୁ ଡକାଇ ଏକ ସଭାରେ ଏ ବିଷୟରେ ଆଲୋଚନା ହେଲା । ଏହାର ନାମ ରଖାଗଲା "ଜୀବେ ହିତୈଷୀ ସଂଘ, ଓଡ଼ିଶା" । ତିନି ଚାରି ମାସ ପରେ ଏହି ସଂସ୍ଥା ରେଜିଷ୍ଟ୍ରିଭୁକ୍ତ ହୋଇଗଲା ।

ଇତି ମଧ୍ୟରେ ମୁଁ ଚାରିମାସ ପାଇଁ ଯୁକ୍ତରାଷ୍ଟ୍ର ଆମେରିକା ଚାଲିଗଲି । ଫେରିଲା ବେଳକୁ ଶୈଳଅପା ମୋତେ ମେନକା ଗାନ୍ଧିଙ୍କଠାରୁ ଆସିଥିବା ଦୁଇତିନିଟି ଚିଠି ଦେଖାଇଲେ । ଆମ ଦ୍ୱାରା ଏ ପର୍ଯ୍ୟନ୍ତ କିଛି ହୋଇ ପାରିଲାନାହିଁ ବୋଲି ସେ ଅସନ୍ତୋଷ ପ୍ରକାଶ କରିଥିଲେ । କହିଲି, ଆମର ଏ ସଂସ୍ଥାରେ କାମ କରିବାକୁ ଅଳ୍ପ କେତେଲୋକ ଇଛା କରୁଛନ୍ତି । ଥରେ ଏକଶହ ଟଙ୍କା ଦେଇ ସଭ୍ୟ ବା ସଭ୍ୟା ହୋଇ ସାରି ତାପରେ ଆଉ ଅଧିକ ଟଙ୍କା ଦେବା ପାଇଁ କାହାର ଇଛା ନାହିଁ । ତେଣୁ ଚାରିଏକର ଜମି ରେଜିଷ୍ଟ୍ରି କରିବାକୁ ଷାଠିଏ ହଜାର ଟଙ୍କା ଆମଭିତରୁ ଚାନ୍ଦା ଉଠାଇବା ଆଦୌ ସମ୍ଭବ ନୁହେଁ । ତାଛଡ଼ା କଟକରେ ଥାଇ ଜଗତସଂହପୁରରେ ଦୈନନ୍ଦିନ କାର୍ଯ୍ୟ କରିବା ମଧ୍ୟ ଅସମ୍ଭବ କଥା । ଜମି କବଲାକରି ଭାରତୀୟ ଜୀବମଙ୍ଗଳ ସଂସ୍ଥାକୁ ପ୍ରୋଜେକ୍ଟ ପଠାଇ ଟଙ୍କା ପାଇବାକୁ ଧାଁ ଦଉଡ଼ କରିବାକୁ ହେବ । ଯଦି ଟଙ୍କା ମିଳିଗଲା ତେବେ ଯେଉଁ ବାବଦ ଯେତେ ଟଙ୍କା ଦିଆଯାଇଛି ତାହା ଠିକ୍‌ଠିକ୍ ଖର୍ଚ୍ଚକରି ରିପୋର୍ଟ ଦେବା ମଧ୍ୟ ଆମ ଦ୍ୱାରା ହୋଇପାରିବ ନାହିଁ । ଏଭଳି କାର୍ଯ୍ୟ ପାଇଁ ଯଥେଷ୍ଟ ଲୋକବଳ ଆବଶ୍ୟକ । ଶତାଧିକ ପଶୁପକ୍ଷୀ ରଖି ସେମାନଙ୍କର ସେବାଯତ୍ନ କରିବା ସହଜ କଥା ନୁହେଁ । ଶୈଳବାଳା ଅପା ଆମର ସମ୍ପାଦିକା ଥାଇ ଜଗତସିଂହପୁର ଯିବା ଆସିବା କରିପାରିବେ ନାହିଁ । ତାଙ୍କୁ ମଧ୍ୟ ଅଶୀ ବର୍ଷରୁ ଅଧିକ ବୟସ ହେଲାଣି । ତାଙ୍କ ସ୍ୱାମୀ ମାଧବବାବୁ ପକ୍ଷାଘାତ ରୋଗରେ ପୀଡ଼ିତ । ତେଣୁ ସଭାପତି ଦାୟିତ୍ୱରେ ଥାଇ ମୋତେହିଁ ଏସବୁ କରିବାକୁ ହେବ । ପାଖରେ ଯଥେଷ୍ଟ ଅର୍ଥବଳ ଥିଲେ ଏଭଳି କାର୍ଯ୍ୟରେ ହାତ ଦେବା ପାଇଁ ସାହସ ହୁଅନ୍ତା । କେବଳ କାଗାଟା ଦସ୍ତପତ୍ର କରିବା ପାଇଁ ଆମ ପାଖରେ ପଇସା ନଥିଲା । ତା'ଛଡ଼ା ଉତ୍କଳ ସମ୍ମିଳନୀ, ଲେଖକ ସହଯୋଗ ସମିତି, ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାଶୀ ମଣ୍ଡଳ ଓ ଅମ୍ବିକା ମନ୍ଦିର ପରିଚାଳନା ସମିତି ଆଦି ସଂସ୍ଥା ଗୁଡ଼ିକ ଛାଡ଼ିଦେଇ ଏହି କାମରେ ଲାଗିବା ମୋ ପକ୍ଷରେ ସମ୍ଭବ ନୁହେଁ । ତେଣୁ ଜୀବେ ହିତୈଷୀ ସଂଘର ଏକ ସଭା ଡକାଇ ସଭାପତି ପଦରୁ ମୋତେ ଅବ୍ୟାହତି ଦେବା ପାଇଁ ଅନୁରୋଧ କଲି । ଉପସ୍ଥିତ ସଭ୍ୟ ସଭ୍ୟମାନେ ଏହାର ବିରୋଧ କଲେ । ପ୍ରସ୍ତାବ ହେଲା ଯେ ମେନକାଗାନ୍ଧିଙ୍କ ଦଶହଜାର ଟଙ୍କା ଫେରାଇ ଦିଆଯିବ ଓ ଆମର ଶକ୍ତି ଅନୁସାରେ ଜୀବେ ନିଷ୍ଠୁରତା ନିରୋଧ କାର୍ଯ୍ୟ କରାଯିବ । ବିଦ୍ୟାଳୟ ମାନଙ୍କରେ ଛାତ୍ରଛାତ୍ରୀମାନଙ୍କୁ ଏ ଦିଗରେ ପ୍ରଭାବିତ କରିବାସହିତ

ମନ୍ଦିର ମାନଙ୍କରେ ବଳି ବନ୍ଦକରିବା, ସହରାଞ୍ଚଳରେ ବୁଲା କୁକୁରମାନଙ୍କୁ ବିଷ ଦେଇ ମାରିବା ବିରୁଦ୍ଧରେ ଆନ୍ଦୋଳନ କରିବା, ଅବହେଳିତ ପଶୁପକ୍ଷୀଙ୍କୁ ପାଳନକରିବା, ବୁଲା କୁକୁରମାନଙ୍କର ବନ୍ଧ୍ୟାକରଣ ଓ ଗ୍ରାମାଞ୍ଚଳରେ ଜୀବେଦୟା ବିଷୟକ ଆଲୋଚନା କରିବା ଆମର କାମ ହେବ । ସୁବିଧା ପାଇଲେ ପଶୁପାଳନ ବିଭାଗ ସହିତ ସହଯୋଗ କରି ପଶୁ ଚିକିତ୍ସା ଶିବିର ଆୟୋଜନ କରିବା ମଧ୍ୟ ଆମର କାର୍ଯ୍ୟକ୍ରମ ଭିତରେ ରହିଲା ।

ଏହି ନିଷ୍ପତ୍ତି ନେବାପରେ ମେନକା ଗାନ୍ଧିଙ୍କ ଟଙ୍କା ଫେରାଇ ଦିଆଗଲା । ଅଧିବକ୍ତା ଗୋକୁଳାନନ୍ଦ ପଟ୍ଟନାୟକ ଓ ସଦୟଲକ୍ଷ୍ମୀ ପଟ୍ଟନାୟକ କୁକୁରମାନଙ୍କୁ ବିଷ ଦେଇ ମାରିବା ବନ୍ଦକରିବାକୁ କଟକ ମ୍ୟୁନିସିପାଲିଟି ବିରୁଦ୍ଧରେ ହାଇକୋର୍ଟରେ ଆମ ପକ୍ଷରୁ ମକଦ୍ଦମା କଲେ ଓ ସେଥିରେ ଆମେ ଜୟଯୁକ୍ତ ହେଲୁ । କଟକ ସହରରେ କୁକୁର ମାରିବା ବନ୍ଦ ହେଲା । ଆଠଗଡ଼ ଉପଖଣ୍ଡରେ ବହୁ ସ୍ଥାନରେ ବଳି ଦିଆଯାଉଥିଲା । ଆମେ ଯାଇ ସେସବୁ ସ୍ଥାନରେ ସଭାସମିତି କରି ବହୁଜାଗାରେ ବଳିଦାନ ବନ୍ଦ କରାଇଲୁ । ଜୀବେ ହିତୈଷୀ ସଂଘର ଢେଙ୍କାନାଳ, ଜଗତସିଂହପୁର ଓ ଖୋର୍ଦ୍ଧା ଶାଖାମାନ ଖୋଲାଯାଇ ସେସବୁ ଜିଲ୍ଲାରେ ସଭାସମିତିମାନ କରାଯାଇ ଜୀବେ ନିଷ୍ଠୁରତା ବିରୁଦ୍ଧରେ ସଚେତନତା ସୃଷ୍ଟି କରାଗଲା । ନାରୀସଂଘସଦନ ହତାରେ ୧୬/୧୭ଟି ଅସହାୟ କୁକୁରଙ୍କୁ ରଖାଯାଇ ସଂଘ ତରଫରୁ ପାଳନ କରାଗଲା । ଖରାଦିନେ ବୁଲା ଗୋରୁଗାଈଙ୍କ ପାଇଁ ପିଇବାପାଣି ଯୋଗାଇବାର ବ୍ୟବସ୍ଥାହେଲା । ଭାରତୀୟ ଜୀବମଙ୍ଗଳ ବୋର୍ଡ଼ଙ୍କୁ ଆମର କାର୍ଯ୍ୟ ବିବରଣୀ ଜଣାଇବାରୁ ସେଠାରୁ ଅସହାୟ ପଶୁମାନଙ୍କର ଔଷଧ ଖର୍ଚ୍ଚ ବାବଦକୁ ୧୦/୧୫ ହଜାର ଟଙ୍କା ମିଳିଲା । କଟକର ବିଦ୍ୟାଳୟ ମାନଙ୍କରେ ସଭାସମିତି କରାଯାଇ ଛାତ୍ରଛାତ୍ରୀମାନଙ୍କୁ ଜୀବେଦୟା ବିଷୟରେ ସଚେତନ କରାଗଲା । ବିଭିନ୍ନ ଗୋଶାଳା, ହରିଣପାର୍କ, କପିଳାସ ଓ ଚଣ୍ଡିଖୋଲର ମାଙ୍କଡ଼ମାନଙ୍କୁ ବିଭିନ୍ନ ସମୟରେ ଖାଇବାକୁ ଦିଆଗଲା ।

ମୁଁ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଥିଲା ବେଳେ ଜୀବେ ନିଷ୍ଠୁରତା ନିରୋଧ ସମିତି ପକ୍ଷରୁ କଟକର ସତୀଚଉରା ଠାରୁ ସେଲ୍‌ଟର ଛକ ପର୍ଯ୍ୟନ୍ତ ଥିବା ମୁଖ୍ୟ ରାସ୍ତା କଡ଼ରେ ଏକ ଘରୋଇ ଜମିଭଡ଼ା ନେଇ ସେଠାରେ ଗୋଟିଏ ପଶୁଚିକିତ୍ସାଳୟ ଖୋଲାଇଥିଲି । ସେହି ଡାକ୍ତରଖାନାରେ ପ୍ରାଣୀ ଚିକିତ୍ସା ସାଙ୍ଗକୁ ବୁଲା କୁକୁରଙ୍କ ବନ୍ଧ୍ୟାକରଣ ଅପରେସନ୍ ହେଉଥିଲା । ମାତ୍ର ପାଞ୍ଚ ବର୍ଷ ପରେ ସେହି ଜାଗାର ମାଲିକ ଘର ତିଆରି କରିବାକୁ ସେଠାରୁ ଡାକ୍ତରଖାନା ଉଠାଇଦେଲେ । ପଶୁପାଳନ ବିଭାଗ ବା ଜୀବେନିଷ୍ଠୁରତା ନିରୋଧ ସମିତି ପକ୍ଷରୁ ଅନ୍ୟ କେଉଁଠାକୁ ଡାକ୍ତରଖାନା ଉଠାଇ ନେବାର ଚେଷ୍ଟା କରାଗଲା ନାହିଁ । ଶୈଳଅପା ଯାଇ ପଶୁପାଳନ ବିଭାଗ ନିର୍ଦ୍ଦେଶକଙ୍କୁ ଦେଖାକରି ବଡ଼ବାଗର ବୃନ୍ଦାବନସାହୁଙ୍କ ଜାଗାନେଇ ସେଠାରେ ଏସ୍.ପି.ସି.ଏ ପକ୍ଷରୁ ଜୀବମଙ୍ଗଳ କାର୍ଯ୍ୟକ୍ରମ

ଚାଲୁ ରଖିବାକୁ ଅନୁରୋଧ କଲେ । ଏହି ସଂସ୍ଥାର ଡାକ୍ତରଖାନା ବନ୍ଦ ହୋଇଯିବା ପରେ ଏଭଳି ଅନ୍ୟଏକ ନୂଆ କାର୍ଯ୍ୟକ୍ରମ ହାତକୁନେବା ଉଚିତହେବ ବୋଲି ସେ ନିର୍ଦ୍ଦେଶକଙ୍କୁ କହିଲେ । ଫଳରେ ଏସ.ପି.ସି.ଏ. ପକ୍ଷରୁ ବୃନ୍ଦାବନ ବାବୁଙ୍କ ଜାଗା ନିଆଯାଇ ଆମେ ଯେଉଁସବୁ ଜୀବମଙ୍ଗଳ କାର୍ଯ୍ୟ କରିବାର ଲକ୍ଷ୍ୟ ଧାର୍ଯ୍ୟକରିଥିଲୁ, ସେ ଦିଗରେ କାର୍ଯ୍ୟ ଆରମ୍ଭ ହେଲା ।

କଟକ ସହରରେ ବୁଲାକୁକୁରଙ୍କ ସଂଖ୍ୟା ବଢ଼ିଯିବାରୁ କୁକୁରମାନଙ୍କ ବନ୍ଧ୍ୟାକରଣ ବିଷୟରେ ଚିନ୍ତା କରାଗଲା । ଜୀବମଙ୍ଗଳ ବୋର୍ଡ଼ ତରଫରୁ ଏଦିଗରେ ସାହାଯ୍ୟ ଦିଆଯାଉଥିବା ଜାଣି କଟକ ମହାନଗରନିଗମ ପକ୍ଷରୁ ଏକ ପ୍ରୋଜେକ୍ଟ କରାଇ କେନ୍ଦ୍ରୀୟ ସାହାଯ୍ୟ ଯୋଗାଡ଼ କରାଗଲା ଓ ସେ ବାବଦ ଟଙ୍କା ମିଳିବାପରେ ଜୀବେହିତୈଷୀ ସଂଘ ଜରିଆରେ ଏ କାର୍ଯ୍ୟ କରିବାପାଇଁ ଆମେ ବିଚାର କଲୁ । ମାତ୍ର ଏଥିଲାଗି ଆମର ଲୋକବଳ ନ ଥଲା କିମ୍ବା ସ୍ଥାନ ମଧ୍ୟ ନ ଥିଲା । ଏହି ପରିପ୍ରେକ୍ଷୀରେ ସରକାରୀ ଚାକିରୀରେ ଥିବାବେଳେ କ୍ଷମତାର ଉପଯୋଗ କରି ଅଳ୍ପ ଖର୍ଚ୍ଚରେ ଅତି ସହଜରେ ସାମାଜିକ କାମ କରାଇ ନେବା କେତେ ସହଜସାଧ୍ୟ ତାହା ଏବେ ଅନୁଭବ କରୁଥିଲି । କାରଣ ସରକାରୀ ସ୍ତରରେ ଜନବଳ ଅଧିକ ଥାଏ ଓ ସେମାନଙ୍କ ହାତରେ ଯେଉଁ କାର୍ଯ୍ୟ କରାଇ ହେବ ତାହା ବେସରକାରୀ ସଙ୍ଗଠନ ପକ୍ଷରେ ସମ୍ଭବ ନୁହେଁ । ମୁଁ ନିର୍ଦ୍ଦେଶକ ଥିବା ବେଳେ ଜୀବେ ନିଷ୍ଠୁରତା ନିରୋଧ ସମିତି ଜରିଆରେ କୁକୁରମାନଙ୍କର ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଉଥିଲି । ସେହି ସଂଗଠନର ବେତନଭୋଗି କର୍ମଚାରୀମାନେ ଅଛନ୍ତି ଓ ବାର୍ଷିକ ବଜେଟ୍‌ରେ ଖର୍ଚ୍ଚ କରିବାପାଇଁ ଯଥେଷ୍ଟ ଅର୍ଥ ବରାଦ କରାଯାଇପାରେ । ସେହିଭଳି, କଟକରେ ଥିବା ପ୍ରାଣୀ ଚିକିତ୍ସାଳୟମାନଙ୍କରେ ଡାକ୍ତର, ସାହାଯ୍ୟକାରୀ କର୍ମଚାରୀ ଓ ସ୍ଥାନର ଅଭାବ ନଥିଲା । ମୁଁ ଆଉ କିଛି ମାସ ସମୟ ପାଇଥିଲେ ପ୍ରତି ପ୍ରାଣୀ ଚିକିତ୍ସାଳୟରେ ଏହି କାର୍ଯ୍ୟ କରାଇବାର ସ୍ଥାୟୀ ବ୍ୟବସ୍ଥା କରିପାରିଥାନ୍ତି । ମାତ୍ର ଏହି କାର୍ଯ୍ୟ କରାଇବା ପୂର୍ବରୁ ମୁଁ ଅବସର ନେଇଗଲି । ଏ ଦିଗରେ ପ୍ରାଥମିକଖର୍ଚ୍ଚ କରିବାକୁ ଜୀବେହିତୈଷୀ ସଂଘ ପାଖରେ ଅର୍ଥ ନ ଥିଲା ଓ କୌଣସି ସାହାଯ୍ୟକାରୀ ଲୋକ ମଧ୍ୟ ନଥିଲେ । ତେଣୁ ଏ ଚିନ୍ତା ମୁଁ ପରିହାର କଲି । ସଂପାଦିକା ଭାବରେ ଶୈଳଅପା ଯେତିକି କାଗଜପତ୍ର କାମ କରୁଥିଲେ ସେତିକି ତାଙ୍କ ପକ୍ଷରେ ଯଥେଷ୍ଟ ମନେ ହେଉଥିଲା । ତାଙ୍କୁ ସାହାଯ୍ୟ କରିବାକୁ ଆଉ କେହି ନ ଥିଲେ । କଟକର ପୂର୍ବପ୍ରାନ୍ତସ୍ଥ ସାରତୋଳ ଗ୍ରାମର ଶୁକଦେବ ତ୍ରିପାଠୀ ଆମ ଅନୁଷ୍ଠାନ ସହିତ ଜଡ଼ିତଥିଲେ । ସେଠାକାର ମହିଳାସମିତି ପକ୍ଷରୁ ସେ ଏହିକାର୍ଯ୍ୟ କରିବାପାଇଁ ଇଚ୍ଛା ପ୍ରକାଶକଲେ । ତାଙ୍କୁ ଏ ବିଷୟରେ ଆବଶ୍ୟକୀୟ ବୈଷୟିକ ଉପଦେଶ ଦେବା ପାଇଁ ମୁଁ ସମ୍ମତହେଲି । ତେଣୁ ସାରତୋଳ ଗ୍ରାମରେ ବୁଲାକୁକୁର ବନ୍ଧ୍ୟାକରଣ

କାର୍ଯ୍ୟ ଆରମ୍ଭହେଲା । ମାତ୍ର ତିନିଚାରିବର୍ଷ ଭିତରେ ଯାହା ଦେଖାଗଲା, କଟକରେ ଥିବା ବୁଲାକୁକୁରଙ୍କ ସଂଖ୍ୟା ଅନୁପାତରେ ବନ୍ଧ୍ୟାକରଣ ମାତ୍ର ଅତି କମ୍‌ହେଉଛି । ତା ଛଡ଼ା ଖର୍ଚ୍ଚର ପରିମାଣ ମଧ୍ୟ ବର୍ଷକୁବର୍ଷ ବଢ଼ି ଚାଲିଥିଲା । ତଦନୁଯାୟୀ ସରକାରୀ ଅନୁଦାନ ନ ବଢ଼ିବା ଫଳରେ ବନ୍ଧ୍ୟାକରଣ ସଂଖ୍ୟା ମଧ୍ୟ ବର୍ଷକୁବର୍ଷ କମୁଥିଲା । ତେବେ ସାରତୋଳ ଗ୍ରାମରେ ଏହି କାର୍ଯ୍ୟ ଚାଲୁରହିଲା । ଏ କ୍ଷେତ୍ରରେ ଘରୋଇ ଉଦ୍ୟମରେ ହେଉଥିବା କାର୍ଯ୍ୟ ତୁଳନାରେ ସରକାରୀ ଉଦ୍ୟମରେ ସେହି କାର୍ଯ୍ୟ କରାଇବା ଦ୍ୱାରା ଏହି କାର୍ଯ୍ୟକ୍ରମକୁ ଅଧିକ ତ୍ୱରାନ୍ୱିତ କରିବାର ବିଶ୍ୱାସ ମୋର ଅଛି । ପ୍ରତି ସହରରେ ଏକାଧିକ ପ୍ରାଣୀ ଚିକିତ୍ସାଳୟ ଅଛି ଓ ଯଥେଷ୍ଟସଂଖ୍ୟକ ବିଶେଷଜ୍ଞ ମଧ୍ୟ ଅଛନ୍ତି । ଏହି ବିଶେଷଜ୍ଞ ମାନଙ୍କ ସାହାଯ୍ୟରେ କାର୍ଯ୍ୟ ସମ୍ପାଦନକରି ଘରୋଇ ଲୋକ ଯଥେଷ୍ଟ ଲାଭବାନ ହେଉଛନ୍ତି । ଗୋଟିଏ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରି ପାଞ୍ଚଟି ଦେଖାଇବା ଘରୋଇ ଲୋକଙ୍କ ପକ୍ଷରେ ସହଜସାଧ୍ୟ । ମାତ୍ର ସରକାରୀ ଉଦ୍ୟମରେ ଏହା ସମ୍ଭବ ନୁହେଁ । ମୁଁ ନିର୍ଦ୍ଦେଶକ ଥିଲାବେଳେ ସରକାରୀ ସ୍ତରରେ ଏ କାର୍ଯ୍ୟ କମ୍ ଖର୍ଚ୍ଚରେ କରି ଦେଖାଇଦେଇ ପାରିଥାନ୍ତି । ମାତ୍ର ମୋର ଦୁଇବର୍ଷ ଆଠ ମାସ କାର୍ଯ୍ୟକାଳ ଭିତରେ ସବୁସ୍ୱପ୍ନକୁ ସାକାର କରିବା ସମ୍ଭବ ହେଲାନାହିଁ । ତଥାପି ବକ୍ସିବଜାର ଓ ନୂଆବଜାର ପ୍ରାଣୀ ଚିକିତ୍ସାଳୟରେ ଥିବା ପୁରୁଣା ସେଡ୍‌କୁ ଭାଙ୍ଗି ଅସ୍ତ୍ରୋପଚାର ହୋଇଥିବା କୁକୁରମାନଙ୍କ ପାଇଁ କେନେଲ୍ ତିଆରି କରିବାକୁ ଅର୍ଥ ବରାଦ କରିବାର ଚେଷ୍ଟା ଚଳାଇଥିଲି । ହେଲେ ସ୍ୱପ୍ନ ଦେଖିବାକୁ ଆଉ ରାତି ନ ଥିଲା ।

ଅର୍ଥାଭାବ ହେଲେ ପ୍ରତ୍ୟେକ କାର୍ଯ୍ୟରେ ବିଘ୍ନ ସୃଷ୍ଟି ହୁଏ । ଯେକୌଣସି କାର୍ଯ୍ୟ କରିବା ପୂର୍ବରୁ ଅର୍ଥ ଯୋଗାଡ଼କରିବା ଏକାନ୍ତଆବଶ୍ୟକ । ଏ ଦେଶରେ ଯୋଗାଡ଼ି ଲୋକଙ୍କର ଅଭାବନାହିଁ ମାତ୍ର ଅଧିକାଂଶଲୋକ କେବଳ ନିଜପାଇଁ ଯୋଗାଡ଼ କରନ୍ତି । ନିଜ ସ୍ୱାର୍ଥଛଡା ସେମାନେ ଅନ୍ୟକିଛି ଦେଖି ପାରନ୍ତିନାହିଁ । ତଣ୍ଣୁ ଅଧିକାଂଶ ମାନବଧର୍ମୀ ଜନ କଲ୍ୟାଣକାରୀ ଅନୁଷ୍ଠାନ ଭାଙ୍ଗିଯାଏ । ଜନକଲ୍ୟାଣ ଲାଗି ଉଦ୍ଦିଷ୍ଟ ଅର୍ଥକୁ ଲୋକେ ଲୁଟିନେଇ ନିଜପାଇଁ ଖର୍ଚ୍ଚକରନ୍ତି । ଏପରି ଲୋକଙ୍କର ବିରୋଧ କରିବାକୁ ସାଧରଣ ଲୋକ ସାହସ କରିପାରେନା । ଏହି ପରିପ୍ରେକ୍ଷୀରେ ଯାହା ଦେଖାଯାଏ, ଜୀବମଙ୍ଗଳ ପାଇଁ ବିଭିନ୍ନ ଯୋଜନା ପ୍ରସ୍ତୁତ କରି ଅର୍ଥାଗମର ବାଟ ଦେଖାଯିବା ମାତ୍ରେ ବହୁ ସ୍ୱାର୍ଥପର ଚତୁର ବ୍ୟକ୍ତିମାନେ ନିଜକୁ ଜୀବପ୍ରେମୀ ଭାବେ ପରିଚିତ କରାଇ ସେସବୁ ଅର୍ଥ ହାତେଇବାକୁ ଚେଷ୍ଟାକରନ୍ତି ଓ ସେବା କାର୍ପଣ୍ୟ ଭକ୍ତି ବଳେ ସେହି ଅର୍ଥ ଲାଭ କରି ନିଜର ସ୍ୱାର୍ଥ ସାଧନ କରନ୍ତି । ଶୈଳବାଳା ମହାନ୍ତିଙ୍କ ପରି ଜୀବ ପ୍ରେମୀମାନେ ନିରାଶ୍ରୟ ପଶୁମାନଙ୍କର ଯତ୍ନ ନେବାପାଇଁ ନିଜର ସମସ୍ତ ପାରିବାରିକ ସୁଖ ତ୍ୟାଗକରି ଆଜୀବନ

ସେମାନଙ୍କର ସେବାରେ ନିୟୋଜିତ ରହିବାବେଳେ ଓଡ଼ିଶା ତଥା ଭାରତବର୍ଷର ବହୁ ଚତୁରବ୍ୟକ୍ତି ଜାତୀୟ ଜୀବମଙ୍ଗଳ ସଂସ୍ଥାରୁ ଅର୍ଥଆଣି ନିଜର ସ୍ୱାର୍ଥସାଧନ ଲାଗି ବ୍ୟୟ କରିପାରନ୍ତି । କେବଳଯେ, ଜୀବମଙ୍ଗଳ କ୍ଷେତ୍ରରେ ଏପରି ଦେଖାଯାଏ ତାହା ନୁହେଁ । ଭାରତବର୍ଷର ଅଧିକାଂଶ ସରକାରୀ ବା ବେସରକାରୀ କ୍ଷେତ୍ରରେ ବହୁଳ ଭାବେ ବହୁଗୁଣରେ ଏହା ପରିଲକ୍ଷିତ ହୁଏ । ସରକାରୀ କ୍ଷେତ୍ରରେ କ୍ଷମତାସୀନ ବ୍ୟକ୍ତିମାନେ ଯେତେ ପରିମାଣରେ ଅନୀତି ଆଚରଣ କରିପାରନ୍ତି ତାହା ଆମପରି ସାଧାରଣ ଲୋକଙ୍କ ପକ୍ଷରେ କଳ୍ପନାତୀତ ବା ଅଚିନ୍ତନୀୟ । ଏ ଦେଶର ବିଭିନ୍ନ ରାଜ୍ୟରେ ବହୁସଂଖ୍ୟକ ମାୟାବତୀ, ଲାଲୁଯାଦବ ବା ଜୟଲଳିତା ଅଛନ୍ତି, ଯେଉଁମାନଙ୍କର ଅପର୍ଯ୍ୟାପ୍ତ କଳାଧନ ସୁଇସ୍ ବ୍ୟାଙ୍କରେ ଗଚ୍ଛିତ ଅଛି । ଦେଶର ବିଭିନ୍ନ ପ୍ରଦେଶରେ ବହୁ ରାଜନୀତିଜ୍ଞ, ପ୍ରଶାସକ ବା ଦୁର୍ନୀତିସମ୍ପନ୍ନ ସରକାରୀ କର୍ମଚାରୀମାନେ ଅଛନ୍ତି ଯେଉଁମାନେ ଲକ୍ଷଲକ୍ଷ କୋଟିକୋଟି ଟଙ୍କା ଦରିଦ୍ର ଲୋକଙ୍କ ପେଟରୁ କାଟି ଅନ୍ୟାୟଭାବେ ଲୁଚାଇ ରଖିଛନ୍ତି । ସେହିଅର୍ଥ ଯଦି ଦେଶର ସମୃଦ୍ଧିଲାଗି ଠିକ୍‌ବାଟରେ ଖର୍ଚ୍ଚ କରାଯାଇ ପାରନ୍ତା, ତେବେ ଆମ ଦେଶ ପୃଥିବୀର ସମସ୍ତ ଉନ୍ନତ ଦେଶଙ୍କର ଶୀର୍ଷସ୍ଥାନକୁ ଉନ୍ନିତ ହୋଇପାରନ୍ତା । ଏହି ପରିପ୍ରେକ୍ଷୀରେ ଯୁକ୍ତରାଷ୍ଟ୍ର ଆମେରିକା ବା ୟୁରୋପୀୟ ଦେଶ ମାନଙ୍କରେ ପିପୁଲ୍ ଫର୍ ଆନିମଲ୍ସ ପକ୍ଷରୁ କୁକୁର, ବିଲେଇ, ବା ଅନ୍ୟାନ୍ୟ ଗୃହପାଳିତ ପଶୁମାନଙ୍କର ଯେପରି ଯତ୍ନ ନିଆଯାଉଛି, ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଏସବୁ ପଶୁ ବା ପକ୍ଷୀଙ୍କୁ ଏପରି ପରିଷ୍କାର ପରିଚ୍ଛନ୍ନତା ଭିତରେ ରଖାଯାଇଛି ଯାହା ନ ଦେଖିଲେ ବୁଝି ହେବ ନାହିଁ । ଏତେ ପଶୁପକ୍ଷୀଙ୍କ ରହିବା ଜାଗା ଦୁର୍ଗନ୍ଧହୀନ, ମଳମୂତ୍ରତ୍ୟାଗର ଚିହ୍ନବର୍ଣ୍ଣ ନଥିବା କିମ୍ବା କେଉଁଠାରେ ସେମାନଙ୍କ ଅଇଠାଁକଣ୍ଟା ପଡ଼ିବାର ସାମାନ୍ୟତମ ତ୍ରୁଟି ଆଖିରେପଡ଼େନା । ଶତାଧିକ ପଶୁପକ୍ଷୀଙ୍କୁ ଯେ ଏତେ ଆରାମରେ ରଖାଯାଇପାରେ ତାହା ଆମପରି ଲୋକଙ୍କ ପକ୍ଷରେ ବୁଝିବା କଷ୍ଟକର । ସେସବୁ ସ୍ଥାନରେ ରହି କିଛିଦିନ କାମ କରିବା ପରେ ହିଁ ଲୋକ ସେଭଳି ଏକ କେନ୍ଦ୍ରର ପରିଚାଳନା ବିଷୟରେ ଅଭିଜ୍ଞତା ଅର୍ଜନ କରିପାରିବ । ଏଥିଲାଗି ପ୍ରଚୁର ଅର୍ଥର ଆବଶ୍ୟକତା ଯେକେହି ଅନୁମାନ କରିବା ସ୍ୱାଭାବିକ । ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ, ଫ୍ରାନ୍ସ ବା ଜର୍ମାନ ପରି ଦେଶମାନଙ୍କରେ ଥିବା ଜୀବେ ନିଷ୍ଠୁରତା ନିରୋଧ ସମିତି ମାନଙ୍କୁ ସାଧାରଣଜନତା ଓ ରାଜ୍ୟ ସରକାରଙ୍କଠାରୁ ପ୍ରଚୁର ଆର୍ଥିକ ସାହାଯ୍ୟ ମିଳେ ଓ ସେସବୁ ଅର୍ଥରୁ ସାମାନ୍ୟତମ ଅପବ୍ୟୟ ବା ବାଟମାରଣା ହେବାର ଆଦୌ ସମ୍ଭାବନା ନ ଥାଏ । ହେଲେ ଆମଦେଶ କଥା ନିଆରା । ଆମ ଦେଶରେ ଏ ବାବଦ ଯାହା ଆର୍ଥିକ ସାହାଯ୍ୟ ମିଳେ ତହିଁରୁ ଅର୍ଦ୍ଧାଧିକ ସ୍ୱାର୍ଥପର କର୍ମୀମାନଙ୍କ ପେଟରେ ପଡ଼ିବାପରେ ଯତ୍ ସାମାନ୍ୟ ଅର୍ଥ ପଶୁପକ୍ଷୀଙ୍କ କାମରେ ଲାଗିବା ଏକ ମାମୁଲି କଥା ।

ଏ ଦେଶର ଲକ୍ଷାଧିକ ଅର୍ଥପିପାସୁ ରାଜନୀତିଜ୍ଞଙ୍କ ପାଇଁ କୌଣସି ପ୍ରତିରୋଧକାରୀ ଶକ୍ତି ନାହିଁ । ସେମାନେ ଦେଶର ଦଣ୍ଡବିଧି ଆଇନ୍ କାନୁନ୍‌ଠାରୁ ବହୁ ଉର୍ଦ୍ଧ୍ୱରେ । ମାତ୍ର ସବୁରାଜ୍ୟରେ ଦୁର୍ନୀତିନିବାରଣ ବିଭାଗର କର୍ମଚାରୀମାନେ ଶାଗଖିଆ ପେଜଖିଆ ବା ନିମ୍ନସ୍ତରୀୟ ଦୁର୍ନୀତି ସମ୍ପନ୍ନ ବ୍ୟକ୍ତିମାନଙ୍କୁ ଧରିବାରେ ସକ୍ଷମ । ଏପରିକି ଦୁର୍ନୀତିରେ ଆଦୌ ଲିପ୍ତ ନ ଥିବା ସଦାଚାରୀ ଲୋକଙ୍କ ଉପରେ ଦୁର୍ନୀତି ସମ୍ପନ୍ନ ରାଜନୈତିକ ନେତାଙ୍କର କୋପଦୃଷ୍ଟି ପଡ଼ିଲେ ଦୁର୍ନିତୀ ନିବାରଣ ବିଭାଗ ବା ସି.ବି.ଆଇ. ପକ୍ଷରୁ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯିବା ଆମରାଜ୍ୟ ତଥା ଏ ଦେଶରେ ଏକ ମାମୁଲିକଥା ।

ଓଡ଼ିଶା ସଚିବାଳୟର ଜଣେ ଉଚ୍ଚପଦସ୍ଥ କର୍ମକର୍ତ୍ତା ମୋତେ ଖୁବ୍ ଭଲ ପାଉଥିଲେ । ମୋ ଦ୍ୱାରା କରାଯାଉଥିବା କାର୍ଯ୍ୟାବଳୀ ଓ କାର୍ଯ୍ୟ କରିବାର ଧାରାକୁ ସେ ବେଶ୍ ପସନ୍ଦ କରୁଥିଲେ । ମୁଁ ଅବସର ଗ୍ରହଣ କରିବା ପୂର୍ବରୁ ସେ ମୋତେ ଏ ଦିଗରେ ଏକ ବେସରକାରୀ ସଂସ୍ଥା ଗଠନ କରିବାକୁ ପ୍ରବର୍ତ୍ତାଉଥିଲେ । କହୁଥିଲେ ଗୋଟିଏ ଏନ୍.ଜି.ଓ. ଗଠନକରି ଆମେ ଦୁହେଁ ଏକାଠି କାମ କରିବା । ମୁଁ ଟଙ୍କା ଆଣିବା ଦାୟିତ୍ୱରେ ରହିବି । ତୁମେ ଅନୁଷ୍ଠାନକୁ ଠିକ୍ ଭାବେ ଚଳାଇବ । ଚାକିରୀ ତୁଳନାରେ ଆମେ ବହୁ ଅଧିକ ରୋଜଗାର କରିପାରିବା । ହେଲେ ତାଙ୍କକଥାଟା ନ ଶୁଣିଲା ପରି ମୁଁ କୌଣସି ଉତ୍ତର ଦେଉ ନ ଥିଲି । କାରଣ ଅଧିକରୁ ଅଧିକ ରୋଜଗାର କରିବା ମୋର ଲକ୍ଷ୍ୟ ନ ଥିଲା । ଜୀବନରେ କିଛି ଭଲ କାମ କରିବାକୁ ପ୍ରଭୁମୋତେ ଗଙ୍ଗାନଦୀର ପ୍ରଖର ସ୍ରୋତରୁ ଉଦ୍ଧାର କରିଥିଲେ; ଅଧିକ ରୋଜଗାର କରି ଧନୀ ହେବାକୁ ନୁହେଁ ।

# ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ

**ବିଚ୍ଛିନ୍ନାଞ୍ଚଳ ଯାତ୍ରା :**

ଉତ୍କଳ ସମ୍ମିଳନୀରେ ଯୋଗଦେଇ କଟକଶାଖାର ଦାୟିତ୍ୱ ନେବାପରେ ବହୁ ଲୋକ ମୋତେ ପ୍ରଶ୍ନ କଲେ - ଷଢେଇକଳା ଖରସୁଆଁ କେବେ ଓଡ଼ିଶାରେ ମିଶୁଛି ? ହେଲେ ସେ ବିଷୟରେ କିଛି କହିବାକଥା ଦୂରେଥାଉ ଷଢ଼େଇକଳା-ଖରସୁଆଁର ବର୍ତ୍ତମାନ ସ୍ଥିତି କଣ, ସେ ଦିଗରେ ମୋର ଆଦୀ ଜ୍ଞାନ ନ ଥିଲା । ଏଇ ଯେତିକିଦିନ ମୁଁ ଉତ୍କଳ ସମ୍ମିଳନୀ କେନ୍ଦ୍ରକାର୍ଯ୍ୟାଳୟକୁ ଯାଇଛି, ଏ ବିଷୟରେ କାହାରିଠାରୁ କିଛି ଶୁଣିନାହିଁ । କାରଣ ଏହି ସମ୍ମିଳନୀର ସଭ୍ୟସଭ୍ୟାମାନେ କେବେ ବିଚ୍ଛିନ୍ନାଞ୍ଚଳକୁ ଯାଇଥିବା ବିଷୟରେ ଜଣା ନାହିଁ । ବହୁବର୍ଷଧରି ବସନ୍ତକୁମାର ପାଣିଗ୍ରାହୀ ଉତ୍କଳସମ୍ମିଳନୀର ମହାସଚିବ ଅଛନ୍ତି । ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କୁ ମୁଁ ରେଭେନ୍ସା କଲେଜରେ ପଢୁଥିଲାବେଳେ ଜଣେ ଛାତ୍ରନେତାଭାବେ

ଦେଖିଛି । ୧୯୫୬ ମସିହା ସୀମା ଆନ୍ଦୋଳନ ବେଳେ ସେ ଆମର ନେତୃତ୍ୱ ନେଇଥିଲେ । ଷଢେଇକଳା ଖରସୁଆଁକୁ ବିହାର ସହିତ ମିଶାଇ ଦେଇଥିବାରୁ ଓଡ଼ିଶାରେ ଛାତ୍ରଆନ୍ଦୋଳନ ପ୍ରବଳହୋଇ ଉଠିଥିଲା । ଉତ୍କଳ ସମ୍ମିଳନୀ କେନ୍ଦ୍ର କାର୍ଯ୍ୟାଳୟରେ ମଧ୍ୟ ଏ ବିଷୟରେ ବିଶେଷ କିଛି ଆଲୋଚନା ମୋ କାନରେ ପଡ଼ି ନ ଥିଲା । ବ୍ରହ୍ମପୁରରୁ ଉତ୍କଳ ସମ୍ମଳିନୀ କେନ୍ଦ୍ର କାର୍ଯ୍ୟାଳୟକୁ ଭୁବନେଶ୍ୱର ଉଠାଇ ଆଣିବା ପରେ ବିଭିନ୍ନ ଜିଲ୍ଲାରେ ଶାଖା ସୃଷ୍ଟିକରିବା ତଥା ଏହି ସଂଗଠନର ଅଭାବ ଅସୁବିଧା କିଭଳି ଦୂର ହୋଇପାରିବ ସେ ବିଷୟରେ ସମସ୍ତଙ୍କର ମୁଣ୍ଡ ଖେଳୁଥିଲା । ତେଣୁ ମୁଁ ଆମେରିକାରେ ଉତ୍କଳ ସମ୍ମିଳନୀ ଶାଖାମାନ ସୃଷ୍ଟି କରି ଦୁଇ ଲକ୍ଷ ଟଙ୍କା ନେଇ କେନ୍ଦ୍ର କାର୍ଯ୍ୟାଳୟରେ ଜମାଦେବାପରେ ଆର୍ଥିକ ଦିଗରୁ ସମସ୍ତେ ଟିକେ ଆଶ୍ୱସ୍ତ ହେଲେ । କିନ୍ତୁ ଷଢ଼େଇକଳା-ଖରସୁଆଁ ବା ବିଚ୍ଛିନ୍ନାଞ୍ଚଳରେ ଉତ୍କଳ ସମ୍ମିଳନୀ ପକ୍ଷରୁ ଯେ କିଛି କରାଯାଇପାରିବ ସେ ବିଷୟରେ ସମ୍ମିଳନୀ କାର୍ଯ୍ୟାଳୟରେ କୌଣସି ଆଲୋଚନା ହେବାର ମୁଁ ଜାଣିନଥିଲି ।

ସେଦିନ ଶ୍ରୀ ପର୍ଶୁରାମ ଦ୍ୱିବେଦୀ ମୋତେ ଫୋନ୍‌ରେ ଡାକି ଭୁବନେଶ୍ୱରରେ ପୂର୍ଣ୍ଣାଙ୍ଗଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ ସଭାକୁ ଆସିବା ପାଇଁ ନିମନ୍ତ୍ରଣ କଲେ । ଏହି ସଂଗଠନ ବିଷୟରେ ମୁଁ ଆଦୌ କିଛି ଜାଣିନଥିଲି । ମାତ୍ର ପର୍ଶୁରାମବାବୁଙ୍କ ସହିତ ମୋର ବହୁଦିନରୁ ବନ୍ଧୁତାଥିଲା । ମୁଁ ପଶୁପାଳନ ବିଭାଗର ଉପନିର୍ଦ୍ଦେଶକ ଥିଲା ବେଳେ ଓଡ଼ିଶା କୁକ୍କୁଟଉନ୍ନୟନ ମହାସଂଘ ଦାୟିତ୍ୱ ମୋତେ ଦିଆଗଲା । ଓଡ଼ିଶା ପୋଲଟ୍ରି ଡେଭଲପମେଣ୍ଟ ଫେଡ଼େରେସନ୍‌ର ମୁଁ ଥିଲି ପ୍ରଥମ ପରିଚାଳନା ନିର୍ଦ୍ଦେଶକ । ଚାକିରୀଟା ଖୁବ୍ ଉଚ୍ଚପଦସ୍ଥ ଜଣାପଡୁଥିଲେ ମଧ୍ୟ ସେଥିଲାଗି ସମୁଦାୟ ବଜେଟ୍ ଥିଲାମାତ୍ର ଉଣେଇଶି ହଜାର ଟଙ୍କା । ସେତେବେଳେ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଥିଲେ ଶ୍ରୀଭ୍ରମରବର ଜେନା । ଏତିକି ଟଙ୍କାରେ ଗୋଟିଏ ବିଭାଗ କେମିତି ଚାଲିବବୋଲି ତାଙ୍କୁ ପଚାରିବାରେ ସେ କହିଲେ ଆପଣ କେବଳ ଏହି କାର୍ଯ୍ୟ ଚଳାଇପାରିବେ ବୋଲି ମୋର ବିଶ୍ୱାସଅଛି । ତେଣୁ କୁକ୍କୁଟ ଉତ୍ପାଦନ ଲାଗି ଯେଉଁ ସୂତ୍ରରୁ ଅର୍ଥ ମିଳିପାରିବ ସେଇଭଳି ସଂସ୍ଥାମାନଙ୍କର ମୁଁ ସାହାଯ୍ୟ ନେଲି ।

ସେତେବେଳେ ଓଡ଼ିଶା ହରିଜନ ଆଦିବାସୀ ଉନ୍ନୟନ ସମବାୟ ନିଗମର ଅଧ୍ୟକ୍ଷ ଥାଆନ୍ତି ଭାରତୀୟ ପ୍ରଶାସନିକସେବା ଅଧିକାରୀ ଶ୍ରୀ ପୋଦାର୍ । ତାଙ୍କ ଅଧୀନରେ ଶ୍ରୀ ପର୍ଶୁରାମ ଦ୍ୱିବେଦୀ ଉନ୍ନୟନ ଅଧିକାରୀ ଭାବେ କାର୍ଯ୍ୟ କରୁଥାନ୍ତି । ଏହି ନିଗମରୁ ଅର୍ଥ ସାହାଯ୍ୟ ପାଇ ହରିଜନ ଆଦିବାସୀମାନଙ୍କର କୁକୁଡ଼ା ପାଳନ ଜରିଆରେ ଉପାର୍ଜନ ବୃଦ୍ଧି କରାଇବା ଲାଗି ମୁଁ ପୋଦାର ସାହେବଙ୍କୁ ଦେଖାକଲି । ସେ ମୋତେ ପର୍ଶୁରାମ ବାବୁଙ୍କ ସହିତ ପରିଚିତ କରାଇ ଦେବା ପରେ ଉପଯୁକ୍ତ ପ୍ରସ୍ତାବଦେଇ ଟଙ୍କାନେବାପାଇଁ କହିଲେ ।

ସେହି କାର୍ଯ୍ୟାଳୟରେ ମଧ୍ୟ ଶ୍ରୀ ସୁରସିଂହ ପଟ୍ଟନାୟକ ସମବାୟ ଉପନିବନ୍ଧକ ଭାବେ କାର୍ଯ୍ୟ କରୁଥିଲେ । ଏ ଦୁହିଁଙ୍କ ସହିତ ମୋର ବେଶ୍ ବନ୍ଧୁତା ହୋଇଗଲା ।

ଅବସର ଗ୍ରହଣକରିବା ପରେ ପର୍ଶୁରାମବାବୁ ପୂର୍ଣ୍ଣାଙ୍ଗଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳର ସାଧାରଣସମ୍ପାଦକ ଭାବେ ଦାୟିତ୍ୱନେଲେ । ଏହି ସଂସ୍ଥାର ସଭାପତି ଥିଲେ ପୂର୍ବତନସାଂସଦ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ । ଉତ୍କଳଗୌରବ ମଧୁସୂଦନ ଦାସ ଯେଉଁ ଉତ୍କଳସଭା ଗଠନ କରିଥିଲେ, ସେହି ସଭାର ବହୁସଦସ୍ୟ ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆମାନଙ୍କର ଭାଷାସୁରକ୍ଷା ଦିଗରେ ଚିନ୍ତାକରି ସେଠାରେ କିପରି ଓଡ଼ିଆ ଶିକ୍ଷା ଦିଆଯାଇ ପାରିବ ସେଥିପାଇଁ ଏକ ନ୍ୟାସ ବା ଟ୍ରଷ୍ଟ ଗଠନ କରିବାକୁ ଉଦ୍ୟମ କଲେ । ସେହି ଟ୍ରଷ୍ଟର ନାମ ଥିଲା ''ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସ'' । ଏହି ନ୍ୟାସର ଆଜୀବନସଦସ୍ୟ ହେବାପାଇଁ ଏକହଜାର ଟଙ୍କା ଦେବାକୁ ପଡୁଥିଲା । ଶ୍ରୀ ଦ୍ୱିବେଦୀଙ୍କ ଠାରୁ ଏ ବିଷୟରେ ଜାଣି ମୁଁ ମଧ୍ୟ ଏହାର ସଭ୍ୟ ହେବା ପାଇଁ ଏକହଜାର ଟଙ୍କା ଦାନକଲି । କାରଣ ଯେ କୌଣସି ଅନୁଷ୍ଠାନ ବା ସଙ୍ଗଠନ ଓଡ଼ିଆମାଟିର ସୁରକ୍ଷା ଲାଗି କାର୍ଯ୍ୟ କରିବ, ସେହିଭଳି ସଂଗଠନ ପାଇଁ କାର୍ଯ୍ୟ କରିବା ଥିଲା ମୋର ଲକ୍ଷ୍ୟ । ଉତ୍କଳ ସମ୍ମିଳନୀ ହେଉ ବା ନ୍ୟାସୀମଣ୍ଡଳ ହେଉ, ଯାହା ଜରିଆରେ ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆ ମାନଙ୍କର ମାତୃଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଲାଗି କାର୍ଯ୍ୟ କରାଯାଇପାରିବ ସେହି ସଂଗଠନ ମୋର ପ୍ରିୟ । ତେଣୁ ଏକହଜାର ଟଙ୍କା ଦେଇ ଏହାର ଆଜୀବନ ସଭ୍ୟହେଲି । ମୋ ପରି ଏକହଜାର ସଭ୍ୟଙ୍କଠାରୁ ସଭ୍ୟଚାନ୍ଦା ବାବଦ ଏକକୋଟି ଟଙ୍କା ସଂଗ୍ରହକରି ସ୍ଥାୟୀଜମା ଭାବେ ରଖିପାରିଲେ ତା'ର ସୁଧରେ ବିଚ୍ଛିନ୍ନାଞ୍ଚଳ ମାନଙ୍କରେ ଓଡ଼ିଆଭାଷା ଶିକ୍ଷାଦେବା ଥିଲା ନ୍ୟାସୀମଣ୍ଡଳର ଲକ୍ଷ୍ୟ ।

ଦ୍ୱିବେଦୀବାବୁଙ୍କ ନିମନ୍ତ୍ରଣ ପାଇ ମୁଁ ଭୁବନେଶ୍ୱରସ୍ଥ ସ୍ୱାଧୀନତା ସଂଗ୍ରାମୀ ଭବନକୁ ଗଲି । ସେଠାରେ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ଶ୍ରୀ ଭଗବାନ ରଥ ଓ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀଙ୍କ ପରି ବହୁ ବରିଷ୍ଠବ୍ୟକ୍ତିଙ୍କ ସହିତ ଦେଖା ହେଲା । ମୁଁ ଯୁକ୍ତରାଷ୍ଟ୍ର ଆମେରିକାରେ ଉତ୍କଳ ସମ୍ମିଳନୀର ଶାଖାମାନ ଖୋଲି ସମ୍ମିଳନୀପାଇଁ ଦୁଇଲକ୍ଷ ଟଙ୍କା ଆଣିଥିବା କଥା ସେମାନେ ଜାଣିଥିଲେ । ତେଣୁ ମୋତେ ସେମାନେ ଏଥିଲାଗି ବଧାଇ ଜଣାଇଲେ । ପୂର୍ଣ୍ଣାଙ୍ଗ ଉତ୍କଳ ନ୍ୟାସର ପନ୍ଦରଜଣ ନ୍ୟାସୀସଭ୍ୟ ଥାଆନ୍ତି । ତନ୍ମଧ୍ୟରୁ ଜଣେ ନ୍ୟାସୀ ଶ୍ରୀ ଗୋପାଳ ମହାନ୍ତିଙ୍କର ତିନିମାସ ତଳେ ଦେହାନ୍ତ ହୋଇଥାଏ । ତାଙ୍କସ୍ଥାନରେ ମୋତେ ନେବା ପାଇଁ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ପ୍ରସ୍ତାବ ଦେଲେ । ଉପସ୍ଥିତ ସଦସ୍ୟ ମାନଙ୍କର ପୂର୍ଣ୍ଣ ସମର୍ଥନ ପାଇ ନ୍ୟାସୀଭାବେ ମୋତେ ଗ୍ରହଣକରାଗଲା । ସଭାପତି ମୋତେ କିଛି କହିବାପାଇଁ ଅନୁରୋଧ କରିବାରୁ ମୁଁ କହିଲି, ଯେଉଁ ବିଚ୍ଛିନ୍ନାଞ୍ଚଳ ପାଇଁ ଏହିସଂସ୍ଥା ଗଠିତ ହୋଇଛି;

ସେ ବିଷୟରେ ମୁଁ କିଛି ଜାଣିନାହିଁ । ବିଚ୍ଛିନ୍ନାଞ୍ଚଳ ଦେଖିବାର ସୌଭାଗ୍ୟ ଏପର୍ଯ୍ୟନ୍ତ ମୋର ଜୁଟିନାହିଁ । ତେଣୁ ଆପଣମାନେ ଯେତେବେଳେ ବିଚ୍ଛିନ୍ନାଞ୍ଚଳ ଯିବେ ମୋତେ ସାଙ୍ଗରେ ନେବା ପାଇଁ ମୁଁ ଅନୁରୋଧ କରୁଛି । ସଭାପତି କହିଲେ ଆଉ ଡେରି ନକରି ଆସନ୍ତା ମାସରେ ସିଂହଭୂମି ଯିବା ପାଇଁ ଦିନ ଧାର୍ଯ୍ୟକରାଯାଉ । ସଚିବାବୁ କହିଲେ ମେ'ମାସ ୨୪ ତାରିଖରେ ଆମେ ଚକ୍ରଧରପୁର ଯିବାପାଇଁ ମୁଁ ବ୍ୟବସ୍ଥା କରିବି । ମୋ ସହିତ ଭଗବାନବାବୁ, ପର୍ଶୁରାମବାବୁ ଓ ଗୁରୁବାବୁ ଯିବେ । ଏକଥା ଶୁଣି ମୋତେ ବହୁତଖୁସି ଲାଗିଲା । ଦୁଇବର୍ଷ ଧରି ଉତ୍କଳ ସମ୍ମିଳନୀ ପାଇଁ କାର୍ଯ୍ୟ କରି ଯେଉଁ ସ୍ଥାନକୁ ମୁଁ ଯାଇପାରି ନଥିଲି, ଆଜି ଏ ସଂଗଠନର ପ୍ରଥମ ସଭାରେ ଯୋଗଦେବାମାତ୍ରେ ଏତେ ଶୀଘ୍ର ଯେ ସେ ସ୍ଥାନରେ ମୁଁ ପହଞ୍ଚିପାରିବି ଜାଣି ସଚିବାବୁଙ୍କୁ ମୋର କୃତଜ୍ଞତା ଜଣାଇଲି ।

ସେହିଦିନଠାରୁ ବିଚ୍ଛିନ୍ନାଞ୍ଚଳର ସ୍ୱପ୍ନ ମୋ ମନରେ ଉଙ୍କିମାରିଲା । ମୂଳ ଭୂଖଣ୍ଡରୁ ବିଚ୍ଛିନ୍ନହୋଇ ଓଡ଼ିଆମାନେ କେତେଦୁଃଖରେ ବାହାରରାଜ୍ୟ ମାନଙ୍କରେ ଅଛନ୍ତି ! ନିଜର ମାତୃଭାଷା କହିବାର ସାହସ ସେମାନଙ୍କର ନାହିଁ । ଶହଶହ ବର୍ଷ ଧରି ନିଜର ଭିଟାମାଟିରେ ଥାଇ ମଧ ସଂପୃକ୍ତ ଅଣଓଡ଼ିଆ ରାଜ୍ୟର ଲୋକେ ସେମାନଙ୍କୁ ଭିନ୍ନ ଦୃଷ୍ଟିରେ ଦେଖିବା ଅତ୍ୟନ୍ତ ଦୁଃଖଦାୟକ । ସରକାରୀ ଚାକିରୀ ବା ସରକାରୀସାହାଯ୍ୟ ପାଇବା ସେମାନଙ୍କ ପକ୍ଷେ ଅତ୍ୟନ୍ତ ଦୁରୂହ ।

ପେଟପାଇଁ ଅନ୍ୟର ଭାଷା କହି ସେମାନଙ୍କ ପାଖରେ ହାତଯୋଡ଼ିବାକୁ ହେଉଥିବ । ନିଜେ ଜଣେ ଓଡ଼ିଆବୋଲି ପରିଚୟ ଦେବାକୁ ଭୟ ହେଉଥିବ । ତଥାପି ନିଜର ଭିଟାମାଟିରେ ବଞ୍ଚିବା ପାଇଁ ସେମାନଙ୍କର ପ୍ରୟାସ କେତେ କଷ୍ଟସାଧ ତାହା କଟକରେ ବସି ଅନୁଧ୍ୟାନକରିବା ଅପେକ୍ଷା ସେଠିଯାଇ ସ୍ୱଚକ୍ଷୁରେ ଦେଖି ଆସିବାକୁ ହେବ । ଯିଏ ନିଜ ଘରେ ଆରାମରେ ରହୁଛି, ସେ ପର ଘରେ ଅନ୍ୟର ଅନୁଗ୍ରହରେ ବଞ୍ଚିବାର ମନୋବେଦନା କେବେହେଲେ ଅନୁଭବ କରିପାରିବ ନାହିଁ । ତେଣୁ ବିଚ୍ଛିନ୍ନାଞ୍ଚଳ ଓଡ଼ିଆଙ୍କ ଦୁଃଖ ବୁଝିବାକୁ ହେଲେ ସେମାନଙ୍କର ମନରକଥା ପାଖରେ ବସି ଶୁଣିବାକୁହେବ । ସେମାନଙ୍କ ମର୍ମବେଦନା ନିଜ ହୃଦୟରେ ଅନୁଭବ କରିହେବ । ଭାଇଭାବରେ ସେମାନଙ୍କୁ ସାହାଯ୍ୟ କରିବା କଥା ଚିନ୍ତାକରି ସେଥିଲାଗି କିଛି ଫଳପ୍ରସୂ କାର୍ଯ୍ୟକ୍ରମ ସ୍ଥିରକରିବାକୁ ହେବ । ତାହାହିଁ ଉତ୍କଳସମ୍ମିଳନୀର ମୁଖ୍ୟକାର୍ଯ୍ୟ ହେବାଉଚିତ୍ । କଟକ ବା ଭୁବନେଶ୍ୱରରେ ବସି ଓଡ଼ିଆଜାତିର ସୁରକ୍ଷାକଥା ଚିନ୍ତା କରାଯାଇ ପାରେନା । ଯେଉଁଠି ଓଡ଼ିଆ ଲୋକ ନିଜର ଭାଷା, ସଂସ୍କୃତି ଓ ପାରିବାରିକ ସୁରକ୍ଷାଲାଗି ସଂଗ୍ରାମକରୁଛି, ତା'ପାଖରେ ପହଞ୍ଚି ତାକୁ ସାହାଯ୍ୟକରିବା ଉଚିତ୍ । ହେଲେ, ପୂର୍ଣ୍ଣାଙ୍ଗଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ ବିଚ୍ଛିନ୍ନାଞ୍ଚଳର ଏତେ ନିକଟବର୍ତ୍ତୀ ହୋଇପାରେ ବୋଲି ମୋର ଧାରଣା ନଥିଲା ।

ମେ'ମାସ ୨୦ ତାରିଖ ବେଳକୁ ପର୍ଶୁରାମବାବୁ ମୋତେ ଫୋନ୍‌କରି କହିଲେ, ଚକ୍ରଧରପୁରକୁ ଆମ ଯିବା କଥା ଲେଖାଯାଇଥିଲା; ମାତ୍ର ଏ ପର୍ଯ୍ୟନ୍ତ କୌଣସି ଉତ୍ତର ମିଳିନାହିଁ । ତେଣୁ ସଚ୍ଚିବାବୁ ଜୁନ୍ ପ୍ରଥମ ସପ୍ତାହରେ ଆମର ଯିବାବିଷୟ ଚିନ୍ତାକରୁଛନ୍ତି । ସେତେବେଳେ କଟକରେ ବେଶ୍ ଗରମ ପଡ଼ିଥାଏ । ଚକ୍ରଧରପୁର ଠାରେ ଆହୁରି ଗରମ ଥିବ । ସବୁକଥା ବୁଝି ଆମକୁ ବାହାରିବାକୁ ହେବ । ମୋର ଆଉ କିଛି କହିବାର ନଥିଲା । ଆମର ବିଚ୍ଛିନ୍ନାଞ୍ଚଳ ଯିବା ପାଇଁ ଯେ ବ୍ୟବସ୍ଥା ହେଉଛି, ତାହାହିଁ ମୋ ପାଇଁ ଯଥେଷ୍ଟ ଥିଲା ।

ଜୁନ୍ ୪ ତାରିଖ ବେଳକୁ ପର୍ଶୁରାମବାବୁ ଜଣାଇ ଦେଲେ ଯେ, ସଚ୍ଚିଦାନନ୍ଦ ବାବୁ ରାଉରକେଲାରେ ତାଙ୍କ ଝିଅଘରେ ଅଛନ୍ତି । ଚୌଦ୍ୱାର ଟାଙ୍ଗୀରୁ ଆସନ୍ତାକାଲି ଶ୍ରୀ ଭଗବାନ ରଥ ତାଙ୍କ ପାଖକୁ ଯିବେ ଓ ୭ ତାରିଖ ଦିନ ଦୁହେଁଯାଇ ଚକ୍ରଧରପୁରଠାରେ ପହଞ୍ଚିବେ । ଉତ୍କଳ ଏକ୍ସପ୍ରେସ୍‌ରେ ଆମ ପାଇଁ ଟିକେଟ ହୋଇଛି । ୬ ତାରିଖ ସନ୍ଧ୍ୟାରେ ଆମେ ଦୁହେଁ ସେହି ଟ୍ରେନ୍‌ରେ ଯାଇ ୭ ତାରିଖ ସକାଳେ ଚକ୍ରଧରପୁରରେ ପହଞ୍ଚିବା । ତାହାହିଁ ହେଲା । ଆମେ ଚକ୍ରଧରପୁର ରେଳଷ୍ଟେସନରେ ପହଞ୍ଚିଲା ବେଳକୁ ପୁରୁଣାବସ୍ତିରୁ ଶ୍ରୀ ପ୍ରବୋଧ କୁମାର ମିଶ୍ର ଓ ରବୀନ୍ଦ୍ରନାଥ ଷଡ଼ଙ୍ଗୀ ଆସି ଆମକୁ ପୁରୁଣାବସ୍ତିକୁ ନେଇଗଲେ । ମଧ୍ୟାହ୍ନ ସୁଦ୍ଧା ସଚ୍ଚିବାବୁ ଓ ଭଗବାନବାବୁ ରାଉରକେଲାରୁ ଆସି ପହଞ୍ଚିଲେ । ଉପରବେଳା ଆମେ ପୁରୁଣାବସ୍ତି ଓଡ଼ିଆ ମଧ୍ୟବିଦ୍ୟାଳୟ ଓ କେରା ଓଡ଼ିଆ ମଧ୍ୟବିଦ୍ୟାଳୟ ଦେଖିଲୁ । ବହୁ ସଂଖ୍ୟକ ଓଡ଼ିଆ ପିଲା ଏସବୁ ବିଦ୍ୟାଳୟରେ ଓଡ଼ିଆମାଧ୍ୟମରେ ଶିକ୍ଷା ପାଉଛନ୍ତି । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ୧୯୧୫ ମସିହାରୁ ସିଂହଭୂମିରେ କାର୍ଯ୍ୟକରି ୫-୭ ବର୍ଷ ଭିତରେ ପ୍ରାୟ କୋଡ଼ିଏଟି ଓଡ଼ିଆ ବିଦ୍ୟାଳୟ ସ୍ଥାପନ କରିଥିଲେ, ତନ୍ମଧ୍ୟରୁ କେତେ ଗୁଡ଼ିଏ ବିଦ୍ୟାଳୟ ଭାଙ୍ଗି ଯାଇଛି । ଆଉ ମାତ୍ର ଆଠଦଶଟି ବଞ୍ଚିରହିଛି । ସେଥିଲାଗି ଉତ୍କଳମଣି ଗୋଟିଏ ପଇସିକିଆ ପାଣ୍ଠି ଗଠନକରିଥିଲେ । ୧୯୧୫ ମସିହା ବେଳକୁ ଗୋଟିଏ ପଇସାର ମୂଲ୍ୟ ଯଥେଷ୍ଟ ବେଶୀ ଥିଲା । ଦାତାମାନେ ପ୍ରତିମାସରେ ଏହି ପାଣ୍ଠିକୁ ପଇସାଟିଏ ମାତ୍ର ଦାନ କରୁଥିଲେ । ସେହି ଅର୍ଥ ସିଂହଭୂମିର ଡାକଘର ମାନଙ୍କରେ ଜମା ରହୁଥିଲା ଓ ଶିକ୍ଷକମାନେ ଏହି ପାଣ୍ଠିରୁ ଦରମା ପାଉଥିଲେ । ଏହି ଦୁଇ ବିଦ୍ୟାଳୟ ଦେଖିସାରି ଆମେ ଦେଓଗାଁ ଗଲୁ। ଶ୍ରୀ ସରୋଜକୁମାର ପ୍ରଧାନ ଏହି ଗ୍ରାମର ଜଣେ ଯୁବକ । ସେ ଉତ୍କଳ ସମ୍ମିଳନୀର ମଧ୍ୟ ଜଣେ ସଭ୍ୟ । ତାଙ୍କ ଗ୍ରାମର ଓଡ଼ିଆ ପ୍ରାଥମିକ ବିଦ୍ୟାଳୟଟି ହିନ୍ଦୀ ବିଦ୍ୟାଳୟରେ ପରିଣତ ହୋଇଛି । ସେହିଭଳି ବିହାର ସରକାର ସିଂହଭୂମିର ପ୍ରାୟ ତିନିଶହ ଓଡ଼ିଆ ପ୍ରାଥମିକବିଦ୍ୟାଳୟକୁ ହିନ୍ଦୀବିଦ୍ୟାଳୟରେ ପରିଣତ କରିଦେଇଛନ୍ତି । ଏବେ ମାତ୍ର ଆଉ ୬୦-୬୫ଟି ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ରହିଛି ।

ମାତ୍ର ସେସବୁ ବିଦ୍ୟାଳୟର ଓଡ଼ିଆ ଶିକ୍ଷକମାନେ ଅବସର ଗ୍ରହଣକରିବା ପରେ ସେମାନଙ୍କ ସ୍ଥାନରେ ହିନ୍ଦୀ ଶିକ୍ଷକମାନଙ୍କୁ ରଖାଯାଉଥାଏ । ମଝିରେମଝିରେ କେତେକ ବିଦ୍ୟାଳୟରୁ ଓଡ଼ିଆ ଶିକ୍ଷକଙ୍କୁ ହିନ୍ଦୀ ବିଦ୍ୟାଳୟକୁ ବଦଳିକରାଯାଇ ସେମାନଙ୍କ ସ୍ଥାନରେ ହିନ୍ଦୀଶିକ୍ଷକଙ୍କୁ ରଖାଯାଉଥାଏ । ଫଳରେ ଓଡ଼ିଆ ପିଲାମାନେ ହିନ୍ଦୀ ପଢ଼ିବାକୁ ବାଧ୍ୟ ହେଉଥାନ୍ତି । ଏସବୁ ସତ୍ତ୍ୱେ ଓଡ଼ିଶା ସରକାରଙ୍କ ପକ୍ଷରୁ କୌଣସି ପ୍ରତିକାରତ୍ମକ ପଦକ୍ଷେପ ନିଆଯାଏନା। ବିହାରୀ କଂଗ୍ରେସ ନେତାମାନଙ୍କ ପ୍ରତି ଓଡ଼ିଶାର କଂଗ୍ରେସ ସରକାରରେ ଥିବା ନେତାମାନଙ୍କର ପ୍ରବଳ ଭୟ ରହୁଥିବାରୁ ବିହାର, ମଧ୍ୟପ୍ରଦେଶ ବା ଆନ୍ଧ୍ରରେ ଥିବା ଓଡ଼ିଆ ବିଚ୍ଛିନ୍ନାଞ୍ଚଳମାନଙ୍କରୁ ଓଡ଼ିଆ ଭାଷା ଲୁପ୍ତ ପ୍ରାୟ ହେଲାଣି । ଏ ଦିଗରେ କିଛି ପ୍ରତିକାର କରିବା ପାଇଁ ସେଠାକାର ଓଡ଼ିଆ ଲୋକମାନେ ଆମକୁ ଅନୁରୋଧ କଲେ । ବହୁ ଲୋକ ମଧ୍ୟ ଆମ ଉପରେ ଅଭିମାନ କରି ନାନା କଥା କହିଲେ । କିଏ କହିଲା, ଆଉ କାହିଁକି ଆପଣ ଏଠିକି ଆସିଛନ୍ତି ? ଓଡ଼ିଶାର ଲୋକେ ଆମକୁ ଅଲଗା କରିଦେଇ ଆନନ୍ଦରେ ଅଛନ୍ତି । ଏଠାକାର ଓଡ଼ିଆ ଭାଇମାନେ ମଲେ କି ଗଲେ କିଏ ଭାବୁଛି ? ବିହାରସରକାର ଆମମୁହଁରୁ ଓଡ଼ିଆ ଭାଷା ଛଡ଼ାଇନେବାକୁ ଚେଷ୍ଟା ଚଳାଉଛି । ଆମ ପିଲାଏ ଚାକିରୀ ବାକିରୀ ପାଉନାହାନ୍ତି । ଉତ୍ତର ବିହାରରୁ ଲୋକମାନେ ଆସି ଏଠି ପିଅନ, ଚପରାଶି, ଅମୀନ, ଆର୍ ଆଇ, କନେଷ୍ଟବଳ ବା ଫରେଷ୍ଟଗାର୍ଡ଼ ଆଦି ଚତୁର୍ଥ ଶ୍ରେଣୀରୁ ଆରମ୍ଭ କରି ପ୍ରଥମ ଶ୍ରେଣୀପର୍ଯ୍ୟନ୍ତ ସମସ୍ତ ସରକାରୀ ଚାକିରୀ ପାଉଛନ୍ତି । ମାତ୍ର ଆମେ ଏଠି ଭୋକରେ ମରୁଛୁ । ଓଡ଼ିଆ କହିଲେ ଏଠି ସରକାରୀ ଲୋକଙ୍କ ଠାରୁ ସାହାଯ୍ୟ ମିଳେନାହିଁ । ଆପଣମାନେ ଆମର କେଉଁସୁଖ ଦେଖିବାକୁ ଆସିଛନ୍ତି ? ଇତ୍ୟାଦି ନାନାକଥା ଶୁଣିବାକୁ ମିଳିଲା । ଓଡ଼ିଆମାନଙ୍କର ଏପରି ଦୁର୍ଦ୍ଦଶା ଯେ କେବଳ ଝାଡ଼ଖଣ୍ଡରେ ହେଉଥିଲା, ତାହା ନୁହେଁ, ଆନ୍ଧ୍ର, ପଶ୍ଚିମବଙ୍ଗ ଓ ଛତିଶଗଡ଼ରେ ମଧ୍ୟ ଓଡ଼ିଆ ଲୋକେ ଅବହେଳିତ ହୋଇ ରହିଥିଲେ ।

ସଚ୍ଚିଦାନନ୍ଦ ମିଶ୍ର ସେଠାରେ ଶିକ୍ଷକତା କରୁଥିଲେ । ସେତେବେଳେ ଉତ୍କଳସଭା ପକ୍ଷରୁ ଏକ ବିଚ୍ଛିନ୍ନାଞ୍ଚଳ ସେବାକମିଟି ଥିଲା । ଯେଉଁ ଯୁବକମାନେ ବିଚ୍ଛିନ୍ନାଞ୍ଚଳରେ ସ୍ୱେଚ୍ଛାସେବକ ଭାବେ କାମକରିବାକୁ ଆଗ୍ରହୀ ହେଉଥିଲେ, ସେମାନଙ୍କୁ ଇପ୍‌ସିତ ସ୍ଥାନକୁ ପଠାଇ ଦିଆଯାଉଥିଲା । ବିଚ୍ଛିନ୍ନାଞ୍ଚଳ ସେବାକମିଟି ପକ୍ଷରୁ ସଚ୍ଚିବାବୁ ଏଠାରେ ଚାରିପାଞ୍ଚବର୍ଷ ଶିକ୍ଷକତା କରିଥିଲେ । ଭଗବାନବାବୁ ମଧ୍ୟ କିଛିବର୍ଷ ଶିକ୍ଷକତା କରିବା ପରେ ଗଡ଼ଜାତ ମିଶ୍ରଣ ହେବାମାତ୍ରେ ଷଢ଼େଇକଳା ଖରସୁଆଁର ଜିଲାଶିକ୍ଷା ପରିଦର୍ଶକ ଭାବେ କାର୍ଯ୍ୟ କରିଥିଲେ । ତାଙ୍କର ଛାତ୍ରଥିବା କେତେକ ମଧ୍ୟବୟସ୍କ ଲୋକ ଆସି ବହୁଦିନ ପରେ ଗୁରୁଙ୍କ ପାଦଧୂଳି ନେଲେ ।

ଆମ ସହିତ ସ୍ଥାନୀୟ ଲୋକଙ୍କର ଅନେକ ଆଲୋଚନା ହେଲା । ଆମେ କହିଲୁ; ବିହାର ଓ ଆନ୍ଧ୍ର ତୁଳନାରେ ଆନ୍ଧ୍ରର ଓଡ଼ିଆମାନେ ଓଡ଼ିଆ ଶିକ୍ଷାଦିଗରେ ଅଧିକ ସଚେତନ ଅଛନ୍ତି । ସେଠାରେ ଆନ୍ଧ୍ରଓଡ଼ିଆ ଶିକ୍ଷକସଂଘ ଗଠନ କରାଯାଇ ସେହି ଶିକ୍ଷକସଂଘ ଜରିଆରେ ଓଡ଼ିଆଶିକ୍ଷା ସମ୍ବନ୍ଧୀୟ ଅନେକ ଦାବୀ ଉପସ୍ଥାପିତ ହୋଇପାରୁଛି । ମାତ୍ର ବିହାରରେ ୬୦/୬୫ଟି ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ଓ ମାଧ୍ୟମିକ ବିଦ୍ୟାଳୟରେ ଶତାଧିକ ଶିକ୍ଷକ ଥିଲେମଧ ସେମାନଙ୍କ ମଧ୍ୟରେ କୌଣସି ଯୋଗସୂତ୍ର ନଥିବାରୁ ଓଡ଼ିଆ ଶିକ୍ଷା ସମ୍ପର୍କରେ ଅଗ୍ରଗତି ହୋଇପାରୁ ନାହିଁ କିମ୍ୱା ସେ ଦିଗରେ କେହି ସ୍ୱର ଉତ୍ତୋଳନ କରି ପାରୁନାହାନ୍ତି ।

ସେ ଦିନ ଚକ୍ରଧରପୁରରେ ରାତ୍ରିଯାପନ କରି ତା ପରଦିନ ଷଢ଼େଇକଳା - ଖରସୁଆଁ ଗଲୁ । ଖରସୁଆଁରେ ଡାକ୍ତର ବିଶ୍ୱନାଥ କରଙ୍କ ସହିତ ଦେଖା ହେଲା । ଭଗବାନ ରଥଙ୍କ ପାଖରେ ପାଠପଢ଼ିଥିବା କେତେଜଣ ଲୋକଙ୍କୁ ସେ ଡକାଇଲେ । ବହୁଦିନ ପରେ ଗୁରୁଙ୍କ ସହିତ ଦେଖା ହେବାରୁ ସେହି ଲୋକମାନେ ବହୁତ ଖୁସି ହେଲେ । ଷଢ଼େଇକଳା ଖରସୁଆଁ ଦୁଇ ରାଜ୍ୟର ରାଜାମାନେ ସେମାନଙ୍କ ରାଜ୍ୟ ଓଡ଼ିଶାସହିତ ମିଶିଯିବାପାଇଁ ଲେଖିଦେଇ ଥିବା ସତ୍ତ୍ୱେ ବିହାରୀ ନେତାମାନଙ୍କର ଚକ୍ରାନ୍ତ ଓ ତତ୍‌କାଳୀନ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ କୌଶଳରେ ଏ ଦୁଇରାଜ୍ୟକୁ ଓଡ଼ିଶାଠାରୁ ବିଚ୍ଛିନ୍ନକରାଇ ଯେପରି ବିହାର ସହିତ ମିଶାଇଦିଆଗଲା ତାହା ବିରୁଦ୍ଧରେ ସୁପ୍ରୀମ କୋର୍ଟରେ ଅପିଲ କରିବାକୁ ଡାକ୍ତର ବିଶ୍ୱନାଥ କର ଆମକୁ ଅନୁରୋଧ କଲେ । ରାଜାମାନେ ସୃଷ୍ଟି କରିଥିବା ଶତାଧିକ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟକୁ ବିହାରସରକାର ଯେପରି ହିନ୍ଦୀ ବିଦ୍ୟାଳୟରେ ପରିଣତ କରିଦେଲେ ସେ କଥା କହି ଖରସୁଆଁର ଲୋକମାନେ ସେମାନଙ୍କ ପ୍ରତି ଅବିଚାର କରାଯାଉଛି ବୋଲି ଅନେକ ଦୁଃଖ ପ୍ରକାଶ କଲେ । ଏବେ କେଉଁଠି ହେଲେ ଓଡ଼ିଆ ପଢ଼ା ହେଉନାହିଁ । ଖରସୁଆଁ ବଜାରରେ ବହି ଦୋକାନ ଦେଇଥିବା ସୁମନ୍ତ ମହାନ୍ତିଙ୍କୁ ତାଙ୍କ ଦୋକାନରେ ବର୍ଣ୍ଣବୋଧ ବହି ରଖିବାକୁ ଆମେ ଅନୁରୋଧ କଲୁ । ଖରସୁଆଁରୁ ଷଢ଼େଇକଳା ଯାଇ ସେଠାରେ ଅସୀତ୍‌କବିଙ୍କ ପରିବାରଙ୍କୁ ଭେଟି ଓଡ଼ିଶାର ଜନସାଧାରଣଙ୍କ ପକ୍ଷରୁ ଅଭିନନ୍ଦନ ଜଣାଇଲୁ । ଷଢେଇକଳା ରାଜ୍ୟର ସମସ୍ତ ଓଡ଼ିଆ ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟକୁ ବିହାର ସରକାର ହିନ୍ଦୀ ବିଦ୍ୟାଳୟରେ ପରିଣତ କରିଥିବା ଜାଣି ବହୁତ ଦୁଃଖଲାଗିଲା ।

ସନ୍ଧ୍ୟାରେ ଚକ୍ରଧରପୁର ଫେରିଲା ବେଳକୁ ଯେଉଁ ରାସ୍ତାରେ ଯିବାପାଇଁ ଷଢ଼େଇକଳାର ବନ୍ଧୁମାନେ ପରାମର୍ଶଦେଲେ, ସେ ରାସ୍ତା ଖୁବ୍ ଖରାପ ଥିଲା । ଆମ ଟାକ୍ସିର ଟାୟାର୍ ମଧ ଭଲ ନଥାଏ । ବାଟସାରା ଜଙ୍ଗଲିଆ ରାସ୍ତା ଓ ମଦ୍ୟପମାନଙ୍କର ଭୟ । ତେଣୁ କେଉଁଠି ଯେପରି ଆମେ ଅଟକି ନଯାଉ, ସେଥିଲାଗି ସଚ୍ଚିବାବୁ ପ୍ରାର୍ଥନା ଗାଇବା ଆରମ୍ଭ କରିଦେଲେ । ଆମେ ସମସ୍ତେ ପାଳି ଧରୁଥାଉ । ଅନ୍ଧାର ରାତିରେ ଯଦି ଟାୟାର୍ ବା

ଟିଉବ୍ ଖରାପ ହୁଏ ତା'ହେଲେ ଟାୟାରଖୋଲି ଲଗାଇବାକୁ ଆମପାଖରେ ଆଲୁଅ ନାହିଁ । ଆସିବା ପୂର୍ବରୁ ଆମେ ଏସବୁକଥା ଚିନ୍ତା କରି ନଥିଲୁ । ତେବେ ଈଶ୍ୱରଙ୍କ ଦୟାରୁ ବାଟରେ କୌଣସି ଅସୁବିଧା ହେଲାନାହିଁ । ନିରାପଦରେ ଆମେ ଚକ୍ରଧରପୁର ପହଞ୍ଚି ରାତିରେ ବିଶ୍ରାମ ନେଲୁ ।

ତାପରଦିନ ଭୋର ଟ୍ରେନ୍‌ରେ ଆମେ ଜାମସେଦ୍‌ପୁର ବାହାରି ପ୍ରାୟ ପୂର୍ବାହ୍ନ ୧୦ଟା ସୁଦ୍ଧା ସେଠାରେ ପହଞ୍ଚିଗଲୁ । ଗୋଲମୁରୀ ଉତ୍କଳ ସମାଜ ପକ୍ଷରୁ ଶ୍ରୀ ରବୀନ୍ଦ୍ରକୁମାର ମିଶ୍ର ରେଳଷ୍ଟେସନକୁ ଆସି ଆମକୁ ତାଙ୍କଘରକୁ ନେଇଗଲେ । ତାଙ୍କର ସ୍ତ୍ରୀ ଶାନ୍ତି, ପୁଅ ଓ ଝିଅ ସେଠି ରହୁଥାଆନ୍ତି । ଶାନ୍ତି ଆମ ପାଇଁ ରୋଷେଇବାସ କରି ଖୁଆଇଲେ । ଉପରବେଳା ଗୋଲମୁରୀ ଉତ୍କଳ ସମାଜ ଉଚ୍ଚ ବିଦ୍ୟାଳୟରେ  ଏକ ଛୋଟ ସଭା ହେଲା । ବିଦ୍ୟାଳୟ ପରିଚାଳନା କମିଟିର ସଭ୍ୟମାନଙ୍କ ସହିତ ଟେଲ୍‌କୋ ଓଡ଼ିଆ ହାଇସ୍କୁଲ ଓ ସିଦକାହ୍ନୁ ଓଡ଼ିଆ ମାଧ୍ୟମିକ ବିଦ୍ୟାଳୟର କେତେଜଣ କର୍ମକର୍ତ୍ତା ଯୋଗଦେଇ ଜାମସେଦ୍‌ପୁରରେ ଓଡ଼ିଆଶିକ୍ଷା ବିଷୟରେ ଆମକୁ ଧାରଣାଦେଲେ । ଏଠାରେ ଆଉ କୌଣସି ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ନଥିବା ଯୋଗୁଁ ଓଡ଼ିଆ ମାଧ୍ୟମିକ ଓ ଉଚ୍ଚବିଦ୍ୟାଳୟ ଲାଗି ପିଲା ମିଳୁନାହାନ୍ତି । ନ୍ୟାସୀମଣ୍ଡଳ ପକ୍ଷରୁ ଯଦି ଓଡ଼ିଆ ପ୍ରାଥମିକ  ବିଦ୍ୟାଳୟମାନ ଖୋଲିପାରନ୍ତା ତେବେ ଏ ଦିଗରେ ଉନ୍ନତି ହୋଇପାରନ୍ତା । ଆମେ କହିଲୁ, ପ୍ରଥମେ ଏଠାରେ ଏକ ଓଡ଼ିଆ ଶିକ୍ଷକସଂଘ ଗଠନ କରାଯିବା ଉଚିତହେବ । ଏହି ସଂଘ ଜରିଆରେ ବିହାରସରକାରଙ୍କ ଉପରେ ଚାପ ପକାଇହେବ । ରାଜ୍ୟ ସରକାରଙ୍କ ଉପରେ କୌଣସି କର୍ତ୍ତୃତ୍ୱ ନଥାଇ ଓଡ଼ିଶାରୁ ଯେ କୌଣସି ସଂଗଠନ ଏଠି କାର୍ଯ୍ୟକଲେ ବିହାରୀମାନେ ମଝିରେ ଯଦି କିଛି ଅସୁବିଧା ସୃଷ୍ଟି କରନ୍ତି, ତାହେଲେ କେହି ତାର ପ୍ରତିରୋଧ କରି ପାରିବେ ନାହିଁ। ସେଥିଲାଗି ଏଠିକାର ଓଡ଼ିଆମାନଙ୍କର ଏହିପରି ଶିକ୍ଷକସଂଘ ବା ଓଡ଼ିଆ ଶିକ୍ଷାପ୍ରସାର ସମିତି ଆଦି ସୃଷ୍ଟିହେବା ଦରକାର । ପର୍ଶୁରାମବାବୁ ଓ ମୁଁ ଦୁହେଁ ପାଞ୍ଚଶହ ଟଙ୍କା ଲେଖାଏଁ ଚକ୍ରଧରପୁର ପୁରୁଣାବସ୍ତିର ଗୋପବନ୍ଧୁ ଓଡ଼ିଆ ମଧ୍ୟବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କୁ ବଢ଼ାଇଦେଇ କହିଲୁ ଆସନ୍ତା ୧୫ ଦିନ ଭିତରେ  ଆପଣଙ୍କ ବିଦ୍ୟାଳୟରେ  ପଶ୍ଚିମ ସିଂହଭୂମି ଓ ପୂର୍ବସିଂହଭୂମି ଜିଲ୍ଲାରେଥିବା ଓଡ଼ିଆ ଶିକ୍ଷକମାନଙ୍କୁ ଏକତ୍ରିତକରି ଏକସଂଘ ଗଠନକରନ୍ତୁ । ସେ ବାବଦ ପ୍ରାରମ୍ଭିକଖର୍ଚ୍ଚ ଲାଗି ଆମେ ଏହି ଏକ ହଜାର ଟଙ୍କା ଦେଲୁ । ଏହି କାର୍ଯ୍ୟରେ ସମସ୍ତେ ସହଯୋଗ କରିବେ ବୋଲି କଥାଦେଲେ ।

ଚକ୍ରଧରପୁର ଓ ଜାମସେଦପୁରରେ ଓଡ଼ିଆ ଚାଟଶାଳୀ ଖୋଲିବା ପାଇଁ ଉପସ୍ଥିତ ଲୋକମାନେ ଅନୁରୋଧ କଲେ । ଗୋଲମୁରୀ ହାଇସ୍କୁଲ ଠାରୁ ଅଳ୍ପଦୂରରେ  ଥିବା ଦଶନମ୍ବର ହରିଜନ କଲୋନୀରେ; ସିଦକାହ୍ନୁ ବିଦ୍ୟାଳୟରେ ଓ ଚକ୍ରଧରପୁର ନିକଟସ୍ଥ

ଦେଓଗାଁ ଗ୍ରାମରେ ଗୋଟିଏ କରି ଚାଟଶାଳୀ ଖୋଲି ପିଲାମାନଙ୍କୁ ଓଡ଼ିଆ ଶିଖାଇବାର ପ୍ରସ୍ତାବ ହେଲା । ନ୍ୟାଶୀମଣ୍ଡଳ ନାମରେ ଜମାହୋଇଥିବା ଟଙ୍କାରୁ ଯଥେଷ୍ଟ ସୁଧ ହୋଇଗଲେ ଏସବୁ ଚାଟଶାଳୀକୁ ଲଗାଏତ ଆର୍ଥିକ ସାହାଯ୍ୟ ଦିଆଯାଇପାରିବ । ମାତ୍ର ତାହା ପୂର୍ବରୁ ଛଅ ସାତମାସ ପାଇଁ ପ୍ରତି ଚାଟଶାଳୀରେ ପଢ଼ାଉଥିବା ଶିକ୍ଷକ ବା ଶିକ୍ଷୟତ୍ରୀଙ୍କୁ ମାସିକ ତିନିଶହଟଙ୍କା ଦରମା ଓ ଚକ୍ ଆଦି କିଣିବାକୁ ହାତରେ ୩୦ଟଙ୍କା କରି ଦେବା ପାଇଁ ପ୍ରତି ମାସରେ ମୁଁ ଓ ପର୍ଶୁରାମବାବୁ ପାଞ୍ଚଶହ ଟଙ୍କା ଲେଖାଏଁ ଦେବାର କଥା ହେଲା । ତାପରଦିନ ଆମେ ସବୁ ଓଡ଼ିଶା ଫେରିଆସିଲୁ ।

ଯଥା ସମୟରେ ଚକ୍ରଧରପୁରରୁ ରବୀନ୍ଦ୍ରଷଡ଼ଙ୍ଗୀ ମୋତେ ଓ ପର୍ଶୁରାମ ବାବୁଙ୍କୁ ଶିକ୍ଷକସଂଘ ହେବାକୁଥିବା ଦିନରେ ସେଠାରେ ଉପସ୍ଥିତ ରହିବାପାଇଁ ନିମନ୍ତ୍ରଣ ପଠାଇଲେ । ସେ ଦିନକୁ ମୋର ଅନ୍ୟ କାର୍ଯ୍ୟକ୍ରମ ଥିବାରୁ ଯାଇ ପାରିଲିନାହିଁ । ପର୍ଶୁରାମବାବୁ ଯାଇ ସିଂହଭୂମି ଓଡ଼ିଆ ଶିକ୍ଷକସଂଘ ଗଠନକରି ଫେରିଆସିଲେ ।

ସେତେବେଳେ ଶେଖ୍ ମତଲୁବଅଲ୍ଲି ଓଡ଼ିଶାର ଗଣଶିକ୍ଷା ମନ୍ତ୍ରୀ ଥାଆନ୍ତି । ନ୍ୟାଶୀମଣ୍ଡଳ ପକ୍ଷରୁ ମୁଁ ଓ ପର୍ଶୁରାମ ବାବୁ ତାଙ୍କୁ ଭେଟି ବିହାର ରାଜ୍ୟ ସରକାର ସିଂହଭୂମି ଅଞ୍ଚଳରେ ଯେଉଁଭଳି ଓଡ଼ିଆ ବିରୋଧି କାର୍ଯ୍ୟ କରୁଛନ୍ତି; ସେ ବିଷୟରେ ସୂଚନା ଦେଲୁ । ମତଲୁବ ବାବୁ କହିଲେ ଆମ ପକ୍ଷରୁ ଯାହା ସାହାଯ୍ୟ କରିବାକଥା କରାଯିବ। ତେବେ ବର୍ତ୍ତମାନ ପାଇଁ ଆର୍ଥିକ ଅନୁଦାନ କଥା ଛାଡ଼ି ଆଉ କଅଣ କରାଯାଇପାରିବ ଆପଣ କହନ୍ତୁ । ଆମେ କହିଲୁ ଯେଉଁସବୁ ଓଡ଼ିଆ ବିଦ୍ୟାଳୟ ରହିଛି ସେମାନେ ହିନ୍ଦୀ ପାଠ୍ୟପୁସ୍ତକକୁ ଓଡ଼ିଆରେ ପଢ଼ାଉଛନ୍ତି । ଓଡ଼ିଆ ପାଠ୍ୟ ପୁସ୍ତକ ସେଠି ମିଳୁନାହିଁ । ମନ୍ତ୍ରୀ କହିଲେ, କେଉଁ ଶ୍ରେଣୀର କେତେ ପାଠ୍ୟ ପୁସ୍ତକ ଦରକାର ଆପଣ ଲେଖିକରି ଦିଅନ୍ତୁ । ଜାମସେଦପୁର ଚକ୍ରଧରପୁର ଓ ଖରସୁଆଁକୁ ଚିଠି ଲେଖି ସେମାନଙ୍କଠାରୁ ଓଡ଼ିଆ ସାହିତ୍ୟବହି ଗୁଡ଼ିକର ତାଲିକା ପାଇଲୁ । ପ୍ରଥମ ଶ୍ରେଣୀରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରାୟ ୩୯୦୦୦ ଓଡ଼ିଆ ସାହିତ୍ୟ ବହି ପାଇବାକୁ ଗଣଶିକ୍ଷାମନ୍ତ୍ରୀ ମହୋଦୟଙ୍କୁ ଚିଠି ଦେଲୁ । ଓଡ଼ିଶା ପାଠ୍ୟପୁସ୍ତକ ମୁଦ୍ରଣ ପ୍ରେସ୍‌ରୁ ସେସବୁ ବହି ନେଇଯିବାକୁ ଆମ ପାଖକୁ ଚିଠି ଆସିଲା । ଏତେଗୁଡ଼ାଏ ବହି କେମିତି ନିଆଯିବ ? ଏସବୁ କରିବାର ଦାୟିତ୍ୱ ଏତେଶୀଘ୍ର ଆମଉପରେ ପଡ଼ିଯିବ ବୋଲି ଭାବିନଥିଲି । ଏଣେ ଏସବୁ ବହି ସରକାରୀ ଛାପାଖାନାରୁ ଜିମାନେବାକୁ ପଡ଼ିବ ଓ ସାଙ୍ଗେସାଙ୍ଗେ ନେଇ ଝାଡ଼ଖଣ୍ଡରେ ବାଣ୍ଟିବାକୁ ହେବ । ପର୍ଶୁରାମ ବାବୁଙ୍କ ବିମାନଘାଟୀ ଅଞ୍ଚଳରେ ଥିବା ଘରେ ନେଇ ସେସବୁ ବହି ରଖିବାକଥା ହେଲା । ସେଇଠୁ ଟ୍ରକ୍‌ରେ ଲଦି ସିଂହଭୂମି ନେବାପାଇଁ ହେବ । ଆମପାଖରେ ଏସବୁ ବହି ବୋହିବା ପାଇଁ ଏତେଟଙ୍କା ଆସିବ କୁଆଡୁ ? ପର୍ଶୁରାମବାବୁଙ୍କର ଗୋଟିଏ ଆମ୍ବାସାଡ଼ର କାର୍ ଓ ମୋର

ଏକ ମାରୁତି ଭ୍ୟାନ୍ ଥିଲା । କଥାହେଲା ଏ ଦୁଇଟି ଗାଡ଼ିରେ ସରକାରୀ ପାଠ୍ୟପୁସ୍ତକ ଛାପାଖାନାରୁ ବହିସବୁ ବୋହି ନେଇ ପର୍ଶୁରାମ ବାବୁଙ୍କ ଘରେ ରଖାଯିବ । ତାହେଲେ କେବଳ ପେଟ୍ରୋଲ ଖର୍ଚ୍ଚ ଛାଡ଼ି ଆଉ ଅଧିକପଇସା ପଡ଼ିବନାହିଁ । ଗାଡ଼ି ଦୁଇଟି ନେଇ ଛାପାଖାନାରୁ ବହିଲଦି ବିମାନଘାଟୀ ଅଞ୍ଚଳରେ ରଖୁଥାଉ । ଆମ୍ବାସାଡ଼ାରରେ ମାରୁତି ଭ୍ୟାନ ତୁଳନାରେ କମ୍ ବହି ଧରେ । ଡ୍ରାଇଭରମାନଙ୍କ ସହିତ ଆମେଦୁହେଁ ବହିତକ ବୋହିନେଇ ଗାଡ଼ିରେ ରଖୁ । ପୁଣି ଗାଡ଼ିରୁନେଇ ତାଙ୍କ ଘରେ ଗଦାମାରୁ । ମୋ ଗାଡ଼ିରେ ଦୁଇଥର ବୋହି ଆଣିବା ପରେ ଶେଷଥରକୁ ଟିକେ ଅଧକ ବହି ଲଦିଦେଲି । କାରଣ ଅଳ୍ପ କିଛି ବହି ନେବା ପାଇଁ ପୁଣି ଚତୁର୍ଥ ଥର ଆସିବାକୁ ପଡ଼ିବ । ହେଲେ, ଡ୍ରାଇଭର୍ ଏହାର ବିରୋଧ କରୁଥାଏ । ଅଧାବାଟ ଯିବା ପରେ ଗାଡ଼ିର ସ୍ପ୍ରିଙ୍ଗ ଭାଙ୍ଗିଗଲା । କାହାକୁ ଆଉ କହିବି ? ବାଧ ହୋଇ ତିନିଚକିଆ ଟେମ୍ପୋ ଭଡ଼ା କରି ବହିତକ ନେଇ ପର୍ଶୁରାମ ବାବୁଙ୍କ ଘରେ ରଖିଲି । ସ୍ପ୍ରିଙ୍ଗ ଭାଙ୍ଗିବା କଥା ଘରେ କାହାକୁ ନ କହିବା ପାଇଁ ଡ୍ରାଇଭରକୁ ଅନୁରୋଧ କଲି । କାରଣ ଏଥିଲାଗି ଘରେ ଅଶାନ୍ତି ସୃଷ୍ଟି ହୋଇପାରେ । ଗାଡ଼ିରେ ନୂଆ ସ୍ପ୍ରିଙ୍ଗ ପକାଇସାରି ହିସାବ କରି ଦେଖିଲି ମିନିଟ୍ରକ୍‌ଟିଏ କରିଥିଲେ ଅନେକ ଶସ୍ତା ପଡ଼ିଥାନ୍ତା ।

ଭୁବନେଶ୍ୱରରୁ ବହିତକ ଟ୍ରକ୍‌ରେ ନେଇ ଚକ୍ରଧରପୁର ଓ ଜାମସେଦପୁରରେ ଦେଇ ଆସିବା ପାଇଁ ଗୋଟିଏ ଟ୍ରକ୍ ବୁଝିବା ପାଇଁ ପର୍ଶୁରାମ ବାବୁଙ୍କୁ କହିଲି । ସେ ବୁଝି କହିଲେ ଚାରିହଜାର ଟଙ୍କାରୁ କମ୍ ପଡ଼ିବ ନାହିଁ । ଉତ୍କଳ ସମ୍ମିଳନୀର ସଭାପତି ଶ୍ରୀ ହରିଶ୍ଚନ୍ଦ୍ରବକ୍ସିପାତ୍ରଙ୍କୁ ଯାଇ କହିଲି । ସେ କହିଲେ ସମ୍ମିଳନୀର କୌଣସି ଟଙ୍କା ନାହିଁ । କେବଳ ଆମେରିକାରୁ ଆସିଥିବା ଦୁଇଲକ୍ଷ ଟଙ୍କା ସ୍ଥାୟୀଜମା ଭାବେ ରଖାଯାଇଛି । ତେବେ ତାଙ୍କ ନିଜପକେଟରୁ ଦୁଇହଜାର ଟଙ୍କା ସେ ଦେବେ ବୋଲି କହିଲେ । ନ୍ୟାଶୀ ମଣ୍ଡଳର ମଧ ସବୁତକ ଆଜୀବନ ସଭ୍ୟଚାନ୍ଦା ସ୍ଥାୟୀଜମା ଭାବେ ରଖାଯାଇଛି । ତଥାପି ଯେତିକି ଟଙ୍କା ହାତରେ ଅଛି ସେଥିରୁ ଏକ ହଜାର ଟଙ୍କା ଦେବା ପାଇଁ ପର୍ଶୁରାମବାବୁ ରାଜିହେଲେ । ଆଉ ଏକହଜାର ଟଙ୍କାକୁ ଆମେ ଦୁହେଁ ପାଞ୍ଚଶହ କରି ଦେବା କଥାହେଲା ।

ଅଗଷ୍ଟ ମାସ ୧୩ ତାରିଖ୍‌ଦିନ ଗୋଟିଏ ୪୦୭ ଟ୍ରକ୍‌ରେ ବହିପତ୍ର ଲଦି ଆମେ ଦୁହେଁ ଭୁବନେଶ୍ୱରରୁ ଦିନପ୍ରାୟ ଗୋଟାଏ ସୁଦ୍ଧା ବାହାରିଲୁ । ଡ୍ରାଇଭର ପାଖରେ ଆମେଦୁହେଁ ଜାକି ହୋଇ ବସିଥାଉ । ବାମ ପାଖରେ ଟ୍ରକ୍‌ର କ୍ଲିନର ବସିଲା । ପାଣି କୋଇଲିରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ପ୍ରାୟ ୫ଟା ବେଳ । ଗୋଟିଏ ଜାଗାରେ ଗୋଡ଼ ସ୍ଥିରରଖି ବାଆଁ ପାଖଟା ଝିମ୍‌ଝିମ୍ ହୋଇଯାଉଥାଏ । କାଠ ସିଟ୍‌ଉପରେ ବସି ପିଚା ପୋଡ଼ିବାକୁ ଆରମ୍ଭ କଲାଣି । ସେଠି ଗାଡ଼ିରଖି ଟିକେ ବାହାରୁ ଯାଇ ବୁଲି ଆସିଲୁ ।

ଆଜି ଅତି କମ୍‌ରେ କେନ୍ଦୁଝରରେ ପହଞ୍ଚି କେଉଁଠି ଟିକେ ଶୋଇ ଯିବାକୁ ହେବ । ରାତି ସାଢ଼େ ନଅଟା ସୁଦ୍ଧା ଘଟଗାଁରେ ପହଞ୍ଚିଲୁ । ଟ୍ରକ୍‌ରୁ ଓହ୍ଲାଇ ତାରିଣୀଙ୍କ ମନ୍ଦିର ସାମନାରେ ଠିଆହୋଇ ପ୍ରଣାମକରି ପୁଣି କେନ୍ଦୁଝର ରାସ୍ତା ଧରିଲୁ । ପ୍ରାୟ ଘଣ୍ଟାକ ପରେ ଟ୍ରକ୍‌ର ପଛଚକା ଫାଟିଗଲା । ସେଠାରୁ କେନ୍ଦୁଝର ଆଉ ପ୍ରାୟ କୋଡ଼ିଏ କିଲୋମିଟର ବାଟ ଥାଏ । କେଉଁଠି ଚକାଟାକୁ ମରାମତି କରିବାକୁ ହେବ । ଡ୍ରାଇଭର ଓ କ୍ଲିନର ଦୁହେଁ ଚାଲି ଚାଲି ଆଗକୁ ଗଲେ । ଆମେଦୁହେଁ ଗାଡ଼ିରୁ ଓହ୍ଲାଇ ରାସ୍ତାରେ ଟିକେ ଗୋଡ଼ ସଳଖିବାକୁ ଚେଷ୍ଟା କଲୁ । ମୋ ପିଚାଟା ପ୍ରବଳ ଦରଜ ଲାଗୁଥାଏ । ପୂର୍ବଦିନ ବହି ପୁଡ଼ା ସବୁ କାନ୍ଧରେ ବୋହି ଦେହହାତ ଦରଜ ଥାଏ । ସେଥିରେ ପୁଣି ପୁରୁଣା ମିନିଟ୍ରକ୍‌ର ଟାଣ କତାଗଦି ଉପରେ ଘଣ୍ଟା ଘଣ୍ଟା ବସି ଖାଲଖମା ପୂର୍ଣ୍ଣ ଗୋଡ଼ି ରାସ୍ତାରେ ଆସିବାର କଷ୍ଟ । ଇଚ୍ଛାହେଉଥାଏ କେଉଁଠି ଲମ୍ବହୋଇ ଶୋଇଯିବାକୁ । ପ୍ରାୟ ଅଧଘଣ୍ଟାକ ପରେ କ୍ଲିନର ଆସି ଚକା ଖୋଲିବାକୁ ଆରମ୍ଭକଲା । ପ୍ରାୟ ଦୁଇକିଲୋମିଟର ଦୂରରେ ଗୋଟିଏ ଚକା ମରାମତି ଦୋକାନ ଅଛି । ଡ୍ରାଇଭର ସେ ଦୋକାନୀକୁ ଘରୁ ଡାକିଆଣି ଅପେକ୍ଷା କରି ବସିଛି । କ୍ଲିନର ଚକା ଖୋଲି ଗଡ଼ାଇଗଡ଼ାଇ ନେଇ ଚାଲିଗଲା । ରାସ୍ତା କଡ଼ରେ ଥିବା ଗଛକୁ ଆଉଜି ଠିଆ ହେଲି । ପିଚା ଦରଜ ଯୋଗୁଁ ବସି ହେଉ ନ ଥାଏ । ପର୍ଶୁରାମବାବୁ ଡ୍ରାଇଭର ସିଟ୍‌ରେ ବସି ଷ୍ଟିଅରିଂ ଉପରେ ଟିକେ ଘୁମେଇ ପଡ଼ିଥାନ୍ତି । ରାତ୍ରି ପ୍ରାୟ ୧୨ଟା ସୁଦ୍ଧା ଚକା ଗଡ଼ାଇଗଡ଼ାଇ ଡ୍ରାଇଭର କ୍ଲିନର ଦୁହେଁ ପହଞ୍ଚିଲେ । ଚକାଟା ଲଗାଇସାରି ଆମେ କେନ୍ଦୁଝର ଅଭିମୁଖେ ବାହାରି ପଡ଼ିଲୁ । ରାତ୍ରି ପ୍ରାୟ ଗୋଟାଏ ବେଳକୁ କେନ୍ଦୁଝର ପହଞ୍ଚି ଗୋଟିଏ ହୋଟେଲ୍‌ରେ ପର୍ଶୁରାମବାବୁ ଓ ମୁଁ ବିଶ୍ରାମ ନେଲୁ । ଦେହରେ ଜୀବନ ପଶିଲା ପରି ଲାଗୁଥାଏ । ଭୋର୍ ଛଅଟାରେ ଉଠି ଗାଧୁଆପାଧୁଆ ସାରି ଡ୍ରାଇଭର ଓ କ୍ଲିନର୍‌ଙ୍କୁ ସେଇ ହୋଟେଲ୍‌ରେ ନିତ୍ୟକର୍ମ ସାରିନେବାକୁ କହିଲୁ । ଜଳଖିଆ ଖାଇସାରି କେନ୍ଦୁଝର ଛାଡ଼ିଲାବେଳକୁ ସକାଳ ୮ଟା । ଗାଡ଼ିର ଷ୍ଟେପିନ୍‌ଟା ମଧ୍ୟ ଭଲ ନାହିଁ । ତେଣୁ ତାହା ଥିବା ନ ଥିବା ସମାନ । ଠାକୁରଙ୍କୁ ଡାକି ଚମ୍ପୁଆ ଅଭିମୁଖେ ଚାଲିଲୁ । ଚମ୍ପୁଆ ଟପି ପଶ୍ଚିମ ସିଂହଭୂମ୍ ଜିଲ୍ଲାର ଜୟନ୍ତୀଗଡ଼ ପାର ହେଲାବେଳକୁ ଥାନା ସାମନାରେ ଆମ ଟ୍ରକ୍ ଯିବାବେଳେ କାଳେ ଓଡ଼ିଆ ବହିପତ୍ର ଦେଖି ବିହାରପୋଲିସ ଆମକୁ ଅଟକାଇ ଦେବେ ବୋଲି ଭୟଥାଏ । ସାଙ୍ଗରେ ଗୋଟିଏ ଉତ୍କଳସମ୍ମିଳନୀ ବ୍ୟାନର୍ ମୁଁ ନେଇଥିଲି । ଚମ୍ପୁଆ ପାର ହେଲା ବେଳେ ସେହି ବ୍ୟାନର୍‌ଟା ଟ୍ରକ୍ ସାମନାରେ ବାନ୍ଧିବାକୁ କହିଲି । ପର୍ଶୁରାମବାବୁ ପଚାରିଲେ କାହିଁକି ଏପରି କରୁଛନ୍ତି ? କହିଲି, ବ୍ୟାନର୍‌ଟା ଦେଖିଲେ ଏଇଟା ଏକ ସାଧାରଣ ଟ୍ରକ୍ ନୁହେଁ ବୋଲି ଧାରଣା ହେବ । କୌଣସି ସଙ୍ଗଠନ ପକ୍ଷରୁ କିଛି ନିଆଯାଉଛି ବୋଲି ଜାଣିଲେ ଟ୍ରକଟାକୁ ଅଟକାଇ ଦେବାକୁ କାହାର ସାହସ ହେବ ନାହିଁ । ପର୍ଶୁରାମ ବାବୁ ମୋ କଥାର ବିରୋଧ କଲେନାହିଁ । ଟ୍ରକ୍ ସାମନାରେ ସମ୍ମିଳନୀ

ବ୍ୟାନର୍ ବନ୍ଧା ହୋଇଥାଏ । ଥାନା ସାମନାରେ ଜଣେ କନେଷ୍ଟବଳ ଟ୍ରକ୍ ଅଟକାଇ ପଚାରିଲା ଏ ଟ୍ରକ୍ କୁଆଡ଼େ ଯାଉଛି ? କହିଲି ଉତ୍କଳ ସମ୍ମିଳନୀ ପକ୍ଷରୁ ଚକ୍ରଧର ପୁରକୁ ବହି ନେଇ ଯାଉଛି । ଆସନ୍ତାକାଲି ସ୍ୱାଧୀନତା ଦିବସରେ ସେଠାକାର ଛାତ୍ରଛାତ୍ରୀମାନଙ୍କୁ ବଣ୍ଟା ହେବ । ସେ କହିଲା କାଲି ସ୍ୱାଧିନତା ଦିବସରେ ଖର୍ଚ୍ଚ କରିବାକୁ ଆମକୁ କିଛି ଦେଇଯାଅ । ପଚାଶଟା ଟଙ୍କା ତା ହାତରେ ଦେଇ ଆମେ ବାହାରିଗଲୁ । ଦିନ ସାଢ଼େଗୋଟାଏ ସୁଦ୍ଧା ଆମେ ଚକ୍ରଧର ପୁର ସୀମାରେ ପହଞ୍ଚିଲୁ । ରାସ୍ତା ଉପରେ ଜଣେ ପୋଲିସ୍ ଇନ୍ସପେକ୍ଟର ଠିଆ ହୋଇଥାନ୍ତି । ସେ ଆମକୁ ଅଟକାଇବା ପୂର୍ବରୁ ମୁଁ ତାଙ୍କ ସାମନାରେ ଟ୍ରକ୍ ଅଟକାଇ ପୁରୁଣାବସ୍ତି ହାଇସ୍କୁଲକୁ ରାସ୍ତା ପଚାରିଲି । ପ୍ରଥମେ ସେ ପଚାରିଲେ; ଏ ଟ୍ରକ୍ କ'ଣ ସେହି ହାଇସ୍କୁଲ୍‌କୁ ନେଉଛନ୍ତି ? କହିଲୁ ହଁ କାଲିପାଇଁ ଏ ଟ୍ରକ୍‌ରେ ବହି ନେଉଛୁ । ବଣ୍ଟାହେବ । ସେ ଆମକୁ ବାଟ ବତାଇ ଦେଲେ । ପ୍ରାୟ ଅପରାହ୍ଣ ଦୁଇଟାସୁଦ୍ଧା ଆମେ ସେହି ବିଦ୍ୟାଳୟରେ ପହଞ୍ଚିଗଲୁ । ପ୍ରଧାନଶିକ୍ଷକ ଶ୍ରୀ ରବୀନ୍ଦ୍ରକୁମାର ଷଡ଼ଙ୍ଗୀ ତାଙ୍କର ଛାତ୍ରମାନଙ୍କୁ ଲଗାଇ ଘଣ୍ଟାକଭିତରେ ବହିପତ୍ର ଖାଲିକରି ବିଦ୍ୟାଳୟର ଗୋଟିଏ କୋଠରୀରେ ରଖିଦେଲେ । ହୋଟେଲ୍‌ରେ ଖାଇସାରି ଟ୍ରକ୍ ଡ୍ରାଇଭର କହିଲା ଆସନ୍ତୁ ଫେରିଯିବା । ଆମେଦୁହେଁ ଅତ୍ୟନ୍ତ ହାଲିଆହୋଇ ପଡ଼ିଥିଲୁ । ଗୋଡ଼ଦୁଇଟା ପାରାଲିସିସ୍ ହୋଇଯିବାପରି ଲାଗୁଥାଏ । ଚୌକୀରେ ବସିଲା ବେଳକୁ ପିଚା ଦରଚ ହୋଇ ପ୍ରବଳ କଷ୍ଟ ହେଉଥାଏ । ସେହି ଟ୍ରକ୍‌ର ଆଗ ସିଟ୍‌ରେ ବସିବା ଯମଯନ୍ତ୍ରଣା ପରି ମନେ ହେଉଥିଲା । ଏପରିସ୍ଥଳେ ସେ ଟ୍ରକ୍‌ରେ ବସି ଫେରିବା ଆମ ପକ୍ଷରେ ଆଦୌ ସମ୍ଭବ ନଥିଲା । ଆସନ୍ତା କାଲି ସନ୍ଧ୍ୟାରେ ଉତ୍କଳ ଏକ୍ସପ୍ରେସ୍‌ରେ ଫେରିବା ପାଇଁ ଟିକେଟ୍ କରି ସେଠି ରାତି ବିତାଇଲୁ । ଟ୍ରକ୍ ଫେରିଲା ବେଳକୁ କହିଲା ଉତ୍କଳ ସମ୍ମିଳନୀ ବ୍ୟାନର ବାନ୍ଧି ଆମେ ଚମ୍ପୁଆ ପର୍ଯ୍ୟନ୍ତ ଯିବୁ । ତା ନହେଲେ ଏ ଗାଡ଼ିକୁ ନେଇ ବିହାର ପୋଲିସ ଥାନାରେ ଭର୍ତ୍ତିକରି ଦେଇପାରେ । ବ୍ୟାନରଟି ତାକୁ ଦେଇ ଆମେ ରହିଗଲୁ ଓ ସନ୍ଧ୍ୟାରେ ଶ୍ରୀ ପ୍ରବୋଧ ମିଶ୍ର, ରବୀନ୍ଦ୍ର ଷଡ଼ଙ୍ଗୀ ଓ ସରୋଜ ପ୍ରଧାନଙ୍କ ସହିତ ବହିସବୁ କିପରି ଓ କେବେ ବଣ୍ଟାଯାଇ ପାରିବ ତାର ଏକ ଖସଡ଼ା ପ୍ରସ୍ତୁତକଲୁ । ଦେହହାତ ସବୁ ପ୍ରବଳ ଦରଜ ହୋଇ ଯାଇଥିଲା । ଚଉକିରେ ବସିବାକୁ ପ୍ରବଳ କଷ୍ଟ ହେଉଥିଲା । ରେଳ ଯୋଗେ ମୁଁ କଟକ ଫେରିଆସିଲି । ଘରେ ଯେପରି ଏସବୁ କଥା କେହି ନଜାଣନ୍ତି ସେ ବିଷୟରେ ମୁଁ ସାବଧାନ ଥିଲି ।

ଚକ୍ରଧରପୁର, ଜାମସେଦପୁର, ଷଢ଼େଇକଳା ଓ ଖରସୁଆଁର ବିଦ୍ୟାଳୟମାନଙ୍କରେ ବହିସବୁ ବଣ୍ଟାଯାଇ ଆମ ପାଖକୁ ଏକ ତାଲିକା ଆସିଗଲା । ଶ୍ରୀ ପ୍ରବୋଧ ମିଶ୍ର ସିଂହଭୂମି ଅଞ୍ଚଳରେ ଓଡ଼ିଆ ଶିକ୍ଷା ବିସ୍ତାରଲାଗି ଓଡ଼ିଶା ସରକାରଙ୍କ ପକ୍ଷରୁ ସ୍ଥାୟୀ ଭାବେ ସାହାଯ୍ୟ

ଦେବା ପାଇଁ ସରକାରଙ୍କୁ ଅନୁରୋଧ କରି ଚିଠି ଖଣ୍ଡେ ପଠାଇଲେ । ସେମାନଙ୍କ ପକ୍ଷରୁ ଏକ ପ୍ରତିନିଧିଦଳ ଓଡ଼ିଶା ଆସିବା ପାଇଁ ଆମେ ପ୍ରବୋଧବାବୁଙ୍କୁ ଲେଖି ଜଣାଇ ଦେଲୁ। ସେପ୍ଟେମ୍ବର ମାସ ୨୭ ତାରିଖରେ ଚାରିଜଣ ପ୍ରତିନିଧି ଆସି କଟକ ଷ୍ଟେସନରେ ପହଞ୍ଚିବାର କଥା ହେଲା ।

ସେପ୍ଟେମ୍ବର ୨୭ ତାରିଖ ଭୋର ୬ଟା ବେଳେ ଝାଡ଼ଖଣ୍ଡ ପ୍ରତିନିଧି ଦଳ ଆସି କଟକ ରେଳଷ୍ଟେସନରେ ପହଞ୍ଚିଗଲେ । ମୁଁ ଯାଇ ଏହି ପ୍ରତିନିଧିଦଳଙ୍କୁ ଘରକୁ ନେଇଆସିଲି । ସେମାନେ ଥିଲେ ଚକ୍ରଧର ପୁରର ଶ୍ରୀ ରବୀନ୍ଦ୍ର ଷଡ଼ଙ୍ଗୀ ଓ ଶ୍ରୀ ସରୋଜ ପ୍ରଧାନ; ଜାମସେଦପୁରର ଶ୍ରୀ ଗୋବିନ୍ଦଚନ୍ଦ୍ର ଦାସ ଓ ଶ୍ରୀ ରବୀନ୍ଦ୍ର ମିଶ୍ର । ଆମଘରେ ଗାଧୁଆପାଧୁଆ ଓ ଜଳଖିଆ ପର୍ବ ସାରି ଆମେ ସମସ୍ତେ ମୋ ଗାଡ଼ିରେ ଭୁବନେଶ୍ୱର ଗଲୁ । ଉତ୍କଳ ସମ୍ମିଳନୀର ସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ସେମାନଙ୍କ ପାଇଁ ହୋଟେଲ୍ ରହଣିର ବ୍ୟବସ୍ଥା କରିଥିଲେ । ହୋଟେଲରେ ପହଞ୍ଚିବା ପରେ ହରିଶ୍ଚନ୍ଦ୍ର ବାବୁ, ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ଶ୍ରୀ ଭାବଗ୍ରାହୀ ମିଶ୍ର, ଶ୍ରୀ ପର୍ଶୁରାମ ଦ୍ୱିବେଦୀ ଓ ମୁଁ ସେମାନଙ୍କ ସହିତ ଆଲୋଚନା କଲୁ । ଓଡ଼ିଶାର ଗଣଶିକ୍ଷା ମନ୍ତ୍ରୀଙ୍କ ସହିତ କଥା ହେବା ପାଇଁ ବ୍ୟବସ୍ଥା ହେଲା । ତା ପରଦିନ ୧୧ଟା ବେଳେ ମନ୍ତ୍ରୀଙ୍କ ପାଖକୁ ଯିବା ପୂର୍ବରୁ ଆମର ଦାବୀପତ୍ର ଲେଖି ଟାଇପ୍ କରାଇନେଲୁ । ସକାଳବେଳା ଆଲୋଚନାସାରି ସନ୍ଧ୍ୟା ଟ୍ରେନ୍‌ରେ ଶ୍ରୀ ସରୋଜ ପ୍ରଧାନ ଓ ଗୋବିନ୍ଦବାବୁ ଫେରିଯିବେ । ରବିବାବୁ ଓ ଷଡ଼ଙ୍ଗୀବାବୁ ଏହାର ଦୁଇଦିନ ପରେ ଫେରିଯିବାପାଇଁ କହିଲେ ।

ସେପ୍ଟେମ୍ବର ୨୮ ତାରିଖ ୧୧ଟା ବେଳେ ଆମେସବୁ ସଚିବାଳୟ ଯାଇ ଗଣଶିକ୍ଷାମନ୍ତ୍ରୀ ଶେଖ୍ ମତୁଲବ୍ ଅଲ୍ଲୀଙ୍କୁ ଦେଖାକଲୁ । ଉତ୍କଳ ସମ୍ମିଳନୀ ଓ ନ୍ୟାସୀମଣ୍ଡଳ ପକ୍ଷରୁ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର ଲାଗି ସମସ୍ତ ଦାବୀକୁ ବିଚାରକୁ ନେଇ ତଦନୁଯାୟୀ ବ୍ୟବସ୍ଥାକରିବେ ବୋଲି ମନ୍ତ୍ରୀ ମହୋଦୟ ସୂଚନା ଦେଲେ । ଏଣିକି ପ୍ରତିବର୍ଷ ପ୍ରଥମ ଶ୍ରେଣୀରୁ ଦଶମଶ୍ରେଣୀ ପର୍ଯ୍ୟନ୍ତ ପଢ଼ାଯାଉଥିବା ପାଠ୍ୟପୁସ୍ତକ ସବୁ ଯୋଗାଇ ଦେବାକୁ ନିଷ୍ପତ୍ତି ହେଲା । ପ୍ରତିନିଧିମାନଙ୍କ ହାତରେ ଉତ୍କଳମଣି ଗୋପବନ୍ଧୁଙ୍କର ବଡ଼ କ୍ୟାଲେଣ୍ଡର୍ ଆକୃତିର ପଚାଶଟି ଫଟୋ, ପଚାଶଟି ଓଡ଼ିଆ ଅକ୍ଷରଚାର୍ଟ ଓ ପ୍ରାୟ ଏକଶହ ବର୍ଣ୍ଣବୋଧ ବହି ଦିଆଗଲା ।

ପ୍ରତିନିଧିମାନେ ସନ୍ଧ୍ୟାରେ ରେଳଷ୍ଟେସନକୁ ଯିବାକୁ ପ୍ରସ୍ତୁତ ହେବାପରେ ମୋ ଗାଡ଼ିରେ ସେମାନଙ୍କୁ ନେଇ ଭୁବନେଶ୍ୱର ରେଳଷ୍ଟେସନରେ ଛାଡ଼ିଦେଲି । ରବୀନ୍ଦ୍ର ଷଡ଼ଙ୍ଗୀ ପରଦିନ ତାଙ୍କର ବନ୍ଧୁଘରକୁ ଯିବା ପାଇଁ ରାତିରେ ପର୍ଶୁରାମ ବାବୁଙ୍କ ଘରେ ରହିଲେ । ଷ୍ଟେସନରେ ପହଞ୍ଚିଲାବେଳକୁ ପ୍ରବଳବେଗରେ ବାତ୍ୟା ଆସୁଥିବାର ସୂଚନାମିଳିଲା ।

ଗୋବିନ୍ଦବାବୁ କହିଲେ ଆଜି ବାତ୍ୟାପାଇଁ ଉତ୍କଳ ଏକ୍ସପ୍ରେସ୍ ସହିତ ସବୁଟ୍ରେନ୍ ବାତିଲ୍ ହୋଇଯିବାର ଆଶଙ୍କାଅଛି । ଯଦି ତାହା ହୁଏ, ତେବେ ସରୋଜ ଓ ରବି ବାବୁ ଦୁହିଙ୍କୁ ଆଜି ରାତିରେ ଆମଘରକୁ ନେଇଯିବି । ମୁଁ କଟକ ଚାଲି ଆସିଲି ।

ରାତି ପ୍ରାୟ ୧୨ଟା ସୁଦ୍ଧା ପ୍ରବଳବାତ୍ୟା ଆରମ୍ଭ ହୋଇଗଲା । ସକାଳୁ ଉଠିଲା ବେଳକୁ ଆମଘରେ ପ୍ରାୟ ୬୦/୭୦ ଜଣ ଲୋକ ଆସି ଶିଡ଼ିପାହାଚ ଉପରେ ବସି ରହିଥିଲେ । ବାହାରେ ପ୍ରବଳ ଘୂର୍ଣ୍ଣିବାତ୍ୟା ଓ ମୂଷଳଧାରାରେ ବର୍ଷା ଚାଲିଛି । ଆମଘର ପାଖକୁଲାଗି ରହିଥିବା ବାଉରି ସାହିର ଚାଳଘର ସବୁ ଉଡ଼ିଯିବାରୁ ବାସହୀନ ଲୋକମାନେ ଆମଘରକୁ ଚାଲି ଆସିଛନ୍ତି । ଆମ ଉପର ମହଲାରେ ଥିବା ମୋର ଆମେରିକାବାସୀ ସାନପୁଅପାଇଁ ଥିବା ଶୋଇବା ଘରଟି ଖୋଲି ଦେଲୁ । ଶିଡ଼ିଘରେ ଓ ସେ ଘରେ ଲୋକମାନେ ରହିଗଲେ । ଯୋଗକୁ ମୋ ଘର ପାଇଁ ମାସିକିଆ ସଉଦାପତ୍ର କିଣି ଘରେ ରଖିଦେଇଥିଲି । ଗୋଟିଏ ହଣ୍ଡାରେ ମୋ ବୋହୂ ଶିବାନୀ ଏକଶହ ଲୋକଙ୍କୁ କିଛି କିଛି ଖାଇବାକୁ ଦେବା ଭଳି ଖେଚେଡ଼ି ଭାତ ରାନ୍ଧିଲା । ସବୁ ଲୋକଙ୍କୁ ଦେଇସାରି ନଈବନ୍ଧ ମହିଳା ସମିତି ଘରେ ଥିବା ଲୋକଙ୍କ ପାଇଁ ମୋପୁଅ ବିଭୂତି ଆମଘରେ ରହୁଥବା ସନ୍ୟାସୀ ସହିତ ଦୁଇଟି ଟୋକେଇରେ ଖେଚେଡ଼ି ଭାତ ନେଇ ବାହାରିଲା ବେଳକୁ ଆମ ଦାଣ୍ଡରାସ୍ତାରେ ଛାତିଏ ପାଣିରେ ପଶି ବାତ୍ୟାପବନରେ ଠେଲି ହୋଇ ସାମନା ଗଳି ଭିତରକୁ ସେମାନେ ଚାଲିଗଲେ । ଝଙ୍କାରପବନ ପ୍ରବଳବେଗରେ ବହୁଥାଏ । କୌଣସି ସ୍ଥାନରେ ଠିଆ ହେବାକୁ ସମ୍ଭବ ହେଉ ନଥାଏ । ପବନର ବେଗକୁ ଲକ୍ଷ୍ୟ ରଖି ମଝିରେ ମଝିରେ ମୋ ପୁଅ ଓ ସନ୍ୟାସୀ ଦୁହେଁ ଦଶବାର ପାଦ କରି ଧୀରେ ଧୀରେ ଆଗେଇଯାଇ ପ୍ରାୟ ଅଧଘଣ୍ଟାକ ପରେ ଏକଶହ ମିଟର ଅତିକ୍ରମକରି ସେ ଘରେ ପହଞ୍ଚି ସମସ୍ତଙ୍କୁ ଖାଦ୍ୟ ଦେଇ ବଡ଼ କଷ୍ଟରେ ଘରକୁ ଫେରିଲେ । ସାରାଦିନ ଝଡ଼ ଲାଗିରହିଥାଏ । ସନ୍ଧ୍ୟା ୫ଟା ସୁଦ୍ଧା ଆମଘରେ ଥିବା ସତୁରୀ ଜଣ ଲୋକଙ୍କୁ ଚା'ଟିକେ ଟିକେ ଦିଆଗଲା । ପୁଣି ରାତିରେ ହଣ୍ଡା ବସାଇ ଖେଚେଡ଼ି କରି ଆମଘରେ ଥିବା ଲେକଙ୍କ ସହିତ ନଈବନ୍ଧ ଲୋକଙ୍କୁ ବଣ୍ଟାହେଲା । ପୂର୍ବରୁ ମୁଁ ବାତ୍ୟା ଆସିବାର ଖବର ପାଇ ବସ୍ତାଏ ଚାଉଳ, ଡାଲି, ଆଳୁ, କଖାରୁ, ସୋରିଷତେଲ, ଚା' ଚିନି ଆଦି ଆଣି ଘରେ ରଖିଥିଲି । ତାପରଦିନ ଝଡ଼ର ବେଗ ଟିକେ କମିଆସିଲା । ତଥାପି ବର୍ଷାପବନ ଲାଗି ରହିଥାଏ । ଲୋକମାନଙ୍କୁ ଦିନ ବାରଟା ସୁଦ୍ଧା ଖେଚେଡ଼ି ଦେଇ ସାରିବା ପରେ ସେମାନେ ଆମ ଘରୁ ବାହାରି ସେମାନଙ୍କର ଘରର ଅବସ୍ଥା ଦେଖିବାକୁ ନିଜ ନିଜ ଘରକୁ ଗଲେ ।

ଏପରି ଝଡ଼ରେ ସିଂହଭୂମିରୁ ଆସିଥିବା ଆମର ଅତିଥିମାନଙ୍କର ଅବସ୍ଥା କଅଣ ହେଲା ବୁଝିହେଉନଥାଏ । କଟକ, ଯାଜପୁର, କେନ୍ଦ୍ରାପଡ଼ା ଓ ଜଗତ୍‌ସିଂହପୁର

ଜିଲ୍ଲାମାନଙ୍କରେ ପ୍ରଳୟ ତାଣ୍ଡବ ସୃଷ୍ଟି ହୋଇ ହଜାର ହଜାର ଲୋକ ମରିଗଲେ । ଲକ୍ଷ ଲକ୍ଷ ଲୋକ ଗୃହଶୂନ୍ୟ ହୋଇଗଲେ । ୩୦ ତାରିଖ ସନ୍ଧ୍ୟାସୁଦ୍ଧା ବର୍ଷା ବନ୍ଦ ହୋଇଗଲା । ପବନରବେଗ ଟିକିଏ କମିଆସିଥାଏ । ହେଲେ କଟକ, ଭୁବନେଶ୍ୱର, ଖୋର୍ଦ୍ଧା, ପୁରୀ ଓ ଉପରୋକ୍ତ ସମସ୍ତ ଜିଲ୍ଲାରେ ବଡ଼ବଡ଼ ଗଛ ସବୁ ଉପୁଡ଼ି ପଡ଼ି ରାସ୍ତାଘାଟ ବନ୍ଦ ହୋଇଯାଇଥାଏ । ଟେଲିଫୋନ୍ ବା ଟେଲିଗ୍ରାଫ୍ ଆଦି ସବୁ ବିଚ୍ଛିନ୍ନ ହୋଇ ଯାଇଥାଏ । ପ୍ରାୟ ପନ୍ଦର ଦିନ ଧରି ବିଦ୍ୟୁତ୍ ସରବରାହ ପୂରା ବନ୍ଦରହିଲା । ଫୋନ୍ ସଂଯୋଗ ପାଇବା ମାତ୍ରେ ବୁଝିଲି ଯେ, ରବୀନ୍ଦ୍ର ଷଡ଼ଙ୍ଗୀ ପର୍ଶୁରାମ ବାବୁଙ୍କ ଘରେ ୪/୫ ଦିନ ରହିବା ପରେ ବସ୍‌ରେ ରାଉରକେଲା ବାଟଦେଇ ଚକ୍ରଧରପୁର ଗଲେ । ଗୋବିନ୍ଦବାବୁଙ୍କ ଘରେ ରବିମିଶ୍ର ଓ ସରୋଜ ପ୍ରଧାନ ଦୁଇଦିନବିତାଇ ଟ୍ରେନ୍ ଚାଲିବା ଆରମ୍ଭ ହେବା ଶୁଣି ଷ୍ଟେସନ୍ ଯାଇ ଖଡ଼ଗପୁର ଅଭିମୁଖେ ରେଳଗାଡ଼ି ଧରିଲେ । ମାତ୍ର ବାଲେଶ୍ୱରଠାରୁ ପ୍ରାୟ ପଚାଶ କିଲୋମିଟର ଯିବା ପରେ ରେଳଧାରଣା ପାଣିରେ ଧୋଇ ଯାଇଥିବା ଯୋଗୁଁ ରେଳଗାଡ଼ି ସେହିଠାରେ ଅଟକିରହିଲା । ଏମାନେ ଗାଡ଼ିରୁ ଓହ୍ଲାଇ ଚାଲିଚାଲି ୨୭ କିଲୋମିଟର ଯିବାପରେ ବାରିପଦା ଅଭିମୁଖେ ବସ୍‌ରେ ଯାଇ ସେଠାରୁ ଜାମସେଦ୍‌ପୁର ଗଲେ । ଏହି ବାତ୍ୟା ଥିଲା ବିଂଶ ଶତାବ୍ଦୀର ସର୍ବାଧିକ କ୍ଷତିକାରୀ ମହାପ୍ରଳୟ । ଏଥିଲାଗି ଦେଶର ବିଭିନ୍ନ ଅଞ୍ଚଳରୁ ସାହାଯ୍ୟ ଆସିଲା ।

ଜାମସେଦପୁରଠାରୁ ବାତ୍ୟାବିପନ୍ନ ଲୋକମାନଙ୍କ ପାଇଁ ସାହାଯ୍ୟ ସଂଗ୍ରହ କରି ପନ୍ଦରଜଣ ସ୍ୱେଚ୍ଛାସେବକ ରେଳଗାଡ଼ିରେ କଟକଆସି ପହଞ୍ଚି ମୋତେ ଖବର ଦେଲେ । ରେଳଷ୍ଟେସନରେ ପହଞ୍ଚି ଦେଖିଲି ଦୁଇଟ୍ରକ ଜିନିଷ ବଣ୍ଟା ହେବାକୁ ଗଦାହୋଇ ରହିଛି । ଦୁଇଟି ଟ୍ରକ୍ ଭଡ଼ା କରିବାକୁ ହେବ । ବୁଝିଲି ଟ୍ରକ୍‌ଭଡ଼ା ଅତି କମ୍‌ରେ ଦୁଇହଜାର ଟଙ୍କା ପଡ଼ିବ । ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ଓ ଉତ୍କଳ ସମ୍ମିଳନୀର ଜଣେ ଆଜୀବନ ସଦସ୍ୟ ଶେଖ୍ ମୁସ୍ତାଫିଜ୍ ଅହମ୍ମଦଙ୍କୁ କହିଲି । ସେ ଏକହଜାର ଟଙ୍କା ଦେବାକୁ ରାଜିହେଲେ । ଆଉ ହଜାରେଟଙ୍କା ମୁଁ ଓ ଉତ୍କଳ ସମ୍ମିଳନୀର ଉପଦେଷ୍ଟା ଅଧିବକ୍ତା ବିପିନବିହାରୀ ରଥ ବାଣ୍ଟିକରି ଦେଲୁ । ସେଦିନ ରାତିରେ ମୋରଜଣେ ସମ୍ପର୍କୀୟଙ୍କର କଟକ ଆକ୍‌ବରୀ ହୋଟେଲରେ ଏକ ବିବାହ ଭୋଜିଥାଏ । ଜାମସେଦପୁରରୁ ଆସିଥିବା ସମସ୍ତ ସ୍ୱେଚ୍ଛାସେବକଙ୍କୁ ଡାକିଆଣି ସେହି ଭୋଜିରେ ଖୁଆଇଦେଲି । ବାତ୍ୟାବିପନ୍ନ ସହରରେ ଏପରି ଭୋଜି ଖାଇ ସେମାନେ ବହୁତ ଖୁସି ହେଲେ । ତା ପରଦିନ ଗୋଟିଏ ଟ୍ରକ୍ ରିଲିଫ୍ ଜିନିଷ ଲଦି ଏରସମା ଗଲା ଓ ଅନ୍ୟଟି ଜଗତସିଂହପୁର ପଠାଇଦେଲି । ଦୁର୍ଗତ ଲୋକଙ୍କୁ ସବୁ ଜିନିଷ ବାଣ୍ଟିଦେଇ ସନ୍ଧ୍ୟାସୁଦ୍ଧା ଦୁଇଟିଯାକ ଟ୍ରକ କଟକ ଫେରି ଆସିଲେ । ସ୍ୱେଚ୍ଛାସେବକମାନେ ଉତ୍କଳଏକ୍ସପ୍ରେସ୍‌ରେ ଜାମସେଦପୁର ଫେରିଗଲେ ।

ଦୁଇମାସ ପରେ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ ସଭାରେ ବିଛିନ୍ନାଞ୍ଚଳ ବିଷୟରେ ଆଲୋଚନା ହେଲା । ଅପ୍ରେଲମାସ ଶେଷ ସୁଦ୍ଧା ସ୍ଥାୟୀଜମା ଟଙ୍କାରୁ ସୁଧ ମିଳିବା ପରେ ଅଧିକ ଚାଟଶାଳୀ ଖୋଲିବାକୁ ନିଷ୍ପତ୍ତି ହେଲା । ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ନ୍ୟାସୀମଣ୍ଡଳର ଶାଖା କରିବା ପାଇଁ ବିଭିନ୍ନ ଲୋକଙ୍କୁ ଦାୟିତ୍ୱ ଦିଆଗଲା । ମୁଁ ଜଗତସିଂହପୁର ଜିଲ୍ଲାର ଦାୟୀତ୍ୱ ନେଲି । ମାତ୍ର ପ୍ରାୟ ବର୍ଷକ ପୂର୍ବରୁ ସେଠାରେ ଉତ୍କଳ ସମ୍ମିଳନୀଶାଖା ଖୋଲାଇଥିଲି । ତେଣୁ  ବହୁ ଲୋକ କହିଲେ ଏ ଦୁଇଟିଯାକ ସମଧର୍ମୀ ଅନୁଷ୍ଠାନ । ଦୁଇ ସଂସ୍ଥାର କାର୍ଯ୍ୟ ମଧ୍ୟ ଏକା ଭଳି । ତେଣୁ ଆମେ ଯେଉଁ ସଙ୍ଗଠନରେ ରହିଛୁ ତାହା ଏଠାରେ ଠିକ୍ ଭାବେ କାର୍ଯ୍ୟକାରୀ ହେବାପରେ ନ୍ୟାଶୀମଣ୍ଡଳ ଗଠନର ଆବଶ୍ୟକତା ବିଚାରକରିବା ।

ପ୍ରତି ଦୁଇମାସରେ ପର୍ଶୁରାମବାବୁଙ୍କ ସାଙ୍ଗରେ ମୁଁ ସିଂହଭୂମ୍ ଯାଉଥିଲି ଏବଂ ଚକ୍ରଧରପୁର, ଜାମସେଦପୁର, ଷଢ଼େଇକଳା ଓ ଖରସୁଆଁ ବୁଲି ବର୍ଣ୍ଣବୋଧବହି, ସୁଦୁଶାବ୍ରତ, ଖୁଦୁରୁକୁଣି, ପଞ୍ଚାନନମେଳା, ତ୍ରିନାଥମେଳା ଆଦି ବହିମାନ କିଣି ନେଇ ସେଠାରେ ଆମେ ବାଣ୍ଟୁଥିଲୁ । କଟକର କେତେକଲୋକ ଏସବୁ ବହି କିଣିବାପାଇଁ ସାହାଯ୍ୟ କରୁଥିଲେ । ସେଥର ଡିସେମ୍ବର ମାସରେ ଆମେ ଚକ୍ରଧରପୁର ପହଞ୍ଚି ରବିଷଡ଼ଙ୍ଗୀ, ପ୍ରବୋଧ ମିଶ୍ର ଓ ସରୋଜ ପ୍ରଧାନଙ୍କ ସହିତ ଆଲୋଚନା କରି କେତେକ ବିଦ୍ୟାଳୟରେ ବର୍ଣ୍ଣବୋଧ ବାଣ୍ଟିସାରି ମଧ୍ୟାହ୍ନ ଭୋଜନ ପରେ ଗୋଟିଏ ବସ୍‌ରେ ଖରସୁଆଁ ଗଲୁ । ଭାବିଥିଲୁ ସେଠାରେ ବିଶ୍ୱନାଥ କର ଓ ସୁମନ୍ତ ମହାନ୍ତିଙ୍କ ସହିତ ଆଲୋଚନା କରି କୌଣସି ବସ୍‌ରେ ଷଢ଼େଇକଳା ଯାଇ ସେଠାରେ ରାତି ବିତାଇବୁ । ମାତ୍ର ଆମେ ଖରସୁଆଁ ପହଞ୍ଚିଲା ବେଳକୁ ପ୍ରାୟ ତିନିଟା ବାଜିଗଲା । ଡାକ୍ତର ବିଶ୍ୱନାଥ କରଙ୍କ ସହିତ ଆଲୋଚନା ସାରିଲା ବେଳକୁ ସନ୍ଧ୍ୟା ପାଞ୍ଚଟା ହୋଇଗଲା । ସୂର୍ଯ୍ୟାସ୍ତ ଆଉ ଅଳ୍ପସମୟ ବାକୀଥାଏ । କରବାବୁ କହିଲେ ଏବେ ଆପଣ କୁଆଡ଼େ ଯିବାକୁ ବସ୍ ପାଇବେ ନାହିଁ । ଆଜି ରାତିରେ ମୋ ଘରେ ରହିଯାଆନ୍ତୁ । ଆମେଜାଣୁ ସେ ଜଣେ ଅଭାବୀ ଲୋକ । ବଜାରକୁ ଯାଇ ତାଙ୍କ ଘରପାଇଁ କିଛି କିଣି ଆଣିବାକୁ ବାହାରିଲୁ । କରବାବୁ କହିଲେ, ଏବେ ଖରସୁଆଁ ବଜାର ବନ୍ଦହୋଇ ସାରିଥିବ । କାରଣ ଏଠି ପ୍ରବଳ ଶୀତ ପଡ଼ିଛି । ଆମ ଗରିବଘରେ ଯାହା ଶାଗଭାତ ଥିବ ଆଜି ରାତିରେ ଚଳାଇ ଦିଅନ୍ତୁ । ତାଙ୍କ ସ୍ୱାଭିମାନରେ ଆଘାତ ଆସିବା ଭୟରେ କିଛି କହିପାରୁ ନଥାଉ ।

ଡାକ୍ତର ବିଶ୍ୱନାଥ କର ଜଣେ ବହୁକୁଟୁମ୍ବୀ ଲୋକ । ତାଙ୍କର ଛଅଟି ସନ୍ତାନ । ଆଠଜଣ ଚଳିବା ପାଇଁ ତାଙ୍କର ରୋଜଗାର ନାହିଁ । କେବଳ ବଡ଼ପୁଅ ଖରସୁଆଁରେ ସୀମିତ ଦରମାରେ ଚାକିରୀ କରେ । ସେଇ ଟଙ୍କାରେ ବହୁ ଅଭାବ ଅସୁବିଧାରେ ସେମାନେ

ଚଳନ୍ତି । ତଥାପି ବିଶ୍ୱନାଥବାବୁ ବିହାର ସରକାରଙ୍କ ଓଡ଼ିଆବିରୋଧି ପଦକ୍ଷେପକୁ ଖୋଲାଖୋଲି ବିରୋଧ କରନ୍ତି । ପୋଲିସ୍ ତାଙ୍କୁ ଥାନାକୁନେଇ ଥରକୁଥର ବସାଇ ରଖନ୍ତି, ଗାଳିଗୁଲଜ କରନ୍ତି ଓ ତାଙ୍କ ନାମରେ ମକଦ୍ଦମା କରିବାର ପ୍ରଚେଷ୍ଟା ଜାରୀ ରଖନ୍ତି । ଷଢ଼େଇକଳା-ଖରସୁଆଁକୁ ଓଡ଼ିଶା ସହିତ ମିଶାଇବା ସପକ୍ଷରେ କରବାବୁ ଅନେକ ଦରଖାସ୍ତ ଭାରତ ସରକାରଙ୍କୁ ଦେଇଛନ୍ତି । ସୀମା କମିଶନ ଏହି ଅଞ୍ଚଳ ପ୍ରତି ଯେଉଁ ଅନ୍ୟାୟ କରିଛନ୍ତି ତାହା ବିରୁଦ୍ଧରେ ସେ ହିନ୍ଦୀ ଖବରକାଗଜମାନଙ୍କରେ ଲେଖା ପ୍ରକାଶକରି ସିଂହଭୂମିର ଓଡ଼ିଆମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟିକରିବାକୁ ଚେଷ୍ଟା କରନ୍ତି । ତେଣୁ ଓଡ଼ିଆ ଶିକ୍ଷା ପ୍ରସାର ଦିଗରେ ଆମେ ତାଙ୍କର ପ୍ରସ୍ତାବକୁ ଅଧିକ ସମ୍ମାନଦେଉ ।

ସେଦିନ ତାଙ୍କଘରକୁ କିଛି ନନେଇ ଆମେ ଦୁହେଁ ବଡ଼ ଅଡୁଆରେ ପଡ଼ିଲୁ । ସେତେବେଳକୁ ଖରସୁଆଁ ବଜାର ବନ୍ଦ ହୋଇ ସାରିଥିଲା । କରବାବୁ କହିଲେ, ଚାଲନ୍ତୁ ଖରସୁଆଁର ରାଜା ସାହେବଙ୍କ ପାଖକୁ ଯିବା । ଖରସୁଆଁ ସହର ଠାରୁ ପ୍ରାୟ ପାଞ୍ଚ କିଲୋମିଟର ଦୂରସ୍ଥ ଏକ ପାହାଡ଼ଉପରେ ରାଜା ନୂଆ ଘରକରି ସେଇଠି ରହୁଛନ୍ତି । ତାଙ୍କ ପୁରୁଣା ନଅରକୁ ସେ କ୍ୱଚିତ୍ ଆସନ୍ତି । ଚାଲି ଚାଲି ଖରସୁଆଁ ହାଟ ପାଖକୁ ଯାଇ ଗୋଟିଏ ଅଟୋରିକ୍ସା ପାଇଲୁ । ସନ୍ଧ୍ୟା ଛଅଟା ବେଳେ ତାର ମଧ୍ୟ କେହି ଆଉ ସବାରୀ ନାହାନ୍ତି । ପାହାଡ଼ ଉପରେ ରାଜାଙ୍କ ନୂଆ ଉଆସ୍ । ଅଟୋରିକ୍ସା ଅଟକାଇ ପାହାଡ଼ରେ ତାଙ୍କ ଘରକୁ ଉଠିଲାବେଳେ କରବାବୁ ଉଚ୍ଚସ୍ୱରରେ ସ୍ତୋତ୍ର ପାଠକଲେ । ରାଜା ପଦାକୁ ବାହାରିଆସି ତାଙ୍କୁ ପ୍ରଣାମ କରି ପାଛୋଟି ନେଲେ । ଆମ ଦୁହିଁଙ୍କ ସହିତ ରାଜାଙ୍କର ପରିଚୟ ହେବାପରେ ରାଜା କହିଲେ ଦୁଇଦିନ ହେବ କାଶୀରାଜା ଆସି ମୋ ଘରେ ଅଛନ୍ତି । ସେ ବେଦାନ୍ତ ଆଲୋଚନା କରିବାକୁ ଆପଣଙ୍କୁ ଖୋଜୁଥିଲେ । କରବାବୁ ଆମ ଦୁହିଁଙ୍କୁ ରାଜାଙ୍କ ପାଖେ ବସାଇଦେଇ କାଶୀରାଜାଙ୍କ ପାଖକୁ ଯାଇ ବେଦାନ୍ତ ଆଲୋଚନାରେ ବ୍ୟସ୍ତ ରହିଲେ । ରାଜା ଆମ ଦୁହିଁଙ୍କୁ ଓଡ଼ିଶା ଖବର ପଚାରି ଏଠାରେ ଆମର କାର୍ଯ୍ୟକ୍ରମ ବିଷୟରେ ପ୍ରାୟ ଅଧଘଣ୍ଟାଏ ଆଲୋଚନା କରିବା ପରେ ବିଶ୍ରାମ ନେବାକୁ ଚାଲିଗଲେ । ଆମେ ଦୁହେଁ କରବାବୁଙ୍କୁ ଅପେକ୍ଷା କରି ବସି ରହିଲୁ । ମଝିରେ ମଝିରେ ଘର ଭିତରୁ ତାଙ୍କର ଶ୍ଳୋକସବୁ ଶୁଣାଯାଉଥାଏ । ସେ ଏତେବଡ଼ ପଣ୍ଡିତଲୋକ ବୋଲି ମୋର ଧାରଣା ନଥିଲା । ହେଲେ ସରସ୍ୱତୀଙ୍କ ପୁତ୍ରମାନଙ୍କ ପ୍ରତି ମହାଲକ୍ଷ୍ମୀଙ୍କର କୃପାଦୃଷ୍ଟି ନଥାଏ । ତେଣୁ କରବାବୁ ବହୁକଷ୍ଟରେ ଚଳୁଛନ୍ତି । ପ୍ରାୟ ସାଢ଼େଆଠଟା ବେଳକୁ ସେ ଉଠିଲେ । ସାଥିରେ ଆମେଦୁହେଁ ନଥିଲେ ହୁଏତ ରାତିଦଶଟା ପର୍ଯ୍ୟନ୍ତ ବେଦାନ୍ତ ଆଲୋଚନା ଜାରୀ ରହିଥାନ୍ତା । କାଶୀରାଜା ଓ ଖରସୁଆଁ ରାଜା ଦୁହେଁ ତାଙ୍କୁ ବଳାଇଦେଇ ଗଲେ । କରବାବୁ ସେମାନଙ୍କଠାରୁ ପ୍ରାୟ ତିନିଶହ ଟଙ୍କା ଦକ୍ଷିଣା ପାଇଲେ । ଏକଥାଶୁଣି

ମୋତେ ବହୁତ ଖୁସିଲାଗିଲା । ତାଙ୍କ ଘରେ ପହଞ୍ଚି ଆମେ ଯିବା ଆସିବା ଅଟୋଭଡ଼ା ଦେଲା ବେଳକୁ ସେ ଆମକୁ ବିରୋଧ କରୁଥିଲେ ମାତ୍ର ତାଙ୍କ କଥା ଆମ ଦ୍ୱାରା ଗୃହୀତ ହେଲା ନାହିଁ ।

ସାଙ୍ଗେ ସାଙ୍ଗେ ଖାଇବା ବଢ଼ା ହୋଇଗଲା । ଭାତ ସହିତ ଡାଲି । ସେହି ଡାଲିରେ କିଛି ସଜନା ପତ୍ର ପଡ଼ିଥାଏ । ଅତିଥିଙ୍କ ପାଇଁ ଆମିଷ ତରକାରୀ ଭାବରେ ଗୋଟିଏ ଅଣ୍ଡାକୁ ଭାଜି ଛୋଟଛୋଟ କରି ଆଳୁ ପକାଇ ଝୋଳ କରାହୋଇଥାଏ । ଯେନତେନ ପ୍ରକାରେଣ ସେଥିରୁ ସାମାନ୍ୟ କିଛି ଉଦରସ୍ଥ କରିବାକୁ ପଡ଼ିଲା । କରବାବୁ ହାତଯୋଡ଼ି କହିଲେ ଆପଣମାନଙ୍କୁ ଚର୍ଚ୍ଚା କରିବାକୁ ମୋ ଘରେ କିଛି ନାହିଁ । ପର୍ଶୁରାମବାବୁ କହିଲେ ଏଇ ଆମ ପାଇଁ ଯଥେଷ୍ଟ । କହିଲି, ଆପଣଙ୍କ ସ୍ନେହଶ୍ରଦ୍ଧା ମିଶ୍ରିତ ଏ ଭୋଜନ ଠାରୁ ଆଉ ଅଧିକସ୍ୱାଦିଷ୍ଟ କ'ଣ ବା ମିଳିପାରିବ ? ଆଜି ଆପଣଙ୍କ ଘରେ ରହି ଆମେ ବେଶ୍ ଆନନ୍ଦିତ । ହାତଧୋଇ ସାରି ଶୋଇବାକୁ ଗଲୁ । ଦୁଇଟି ଦଉଡ଼ିଆ ଖଟରେ ସତରଞ୍ଜି ବିଛା ହୋଇଥାଏ । ଘୋଡ଼େଇ ହେବାକୁ ରେଜେଇ ଦୁଇଟି ମଧ୍ୟ ମିଳିଗଲା । ଆମେ ଦୁହେଁ ଶୋଇଲୁ । ଆଖି ଟିକେ ଲାଗିଗଲା ବେଳକୁ ଖଟର ତଳପଟୁ ଥଣ୍ଡା ପଶି ଆସୁଥାଏ । ଏଣେ ଅଧାପେଟ ଭୋଜନ ଯୋଗୁଁ ପେଟ ଖାଲିଖାଲି ଲାଗୁଥାଏ । ଛୋଟ ରେଜେଇକୁ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଟାଣିଲା ବେଳକୁ ଗୋଡ଼ଉପରୁ ଖସି ଆସୁଥାଏ । ଗୋଡ଼ଦୁଇଟା ଘୋଡେଇଲା ବେଳକୁ ମୁଣ୍ଡ ଉପରୁ ଖସି ଯାଉଥାଏ ।  ଥଣ୍ଡାରେ ନିଦ ହେଲା ନାହିଁ । ଶୋଇବାକୁ ଚେଷ୍ଟାକରି ଆଉ ପାରିଲିନାହିଁ । ହୁଏତ ରେଜେଇଟା ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଭାବିଲି ଗୋଡ଼ହାତ ଜାକି ଦଉଡ଼ିଆ ଖଟ ଉପରେ ବସିଗଲେ ଠିକ୍ ଭାବେ ଦେହଟା ଢାଙ୍କି ହୋଇପାରିବ । ଶାଲ୍‌ଟାକୁ ଚକ୍ରଧରପୁରରେ ଛାଡ଼ି ଦେଇ ଆସିଲି । ଆଜି ରାତିରେ ଏଠୁ ଫେରିଯିବାର ଥିଲା  । ଆଉ ଉପାୟ ନ ପାଇ ବାଧ୍ୟ ହୋଇ ଉଠି ବସିପଡ଼ିଲି । ଦ୍ୱିବେଦୀ ବାବୁ ପଚାରିଲେ, କ'ଣ ନିଦ ହେଉ ନାହିଁ କି ? ପଚାରିଲି, ଭାଇନା ତମେବି ତ ଶୋଇନା ! ସେ କହିଲେ ଏଠି ବହୁତ ଶୀତ ହେଉଛି । ଆମ କଟକ-ଭୁବନେଶ୍ୱରରେ ଏତେ ଶୀତନାହିଁ । ସେ ମଧ୍ୟ ଉଠିପଡ଼ି ବସିଲେ ।

ବାହାରପଟୁ ବିଶ୍ୱନାଥ କର ଡାକି ପଚାରିଲେ, କ'ଣ ଆପଣମାନେ ଶୋଇ ନାହାନ୍ତି କି ? ଦ୍ୱିବେଦୀ ଭାଇନା ପଚାରିଲେ ଆପଣ କାହିଁକି ଅନିଦ୍ରା ଅଛନ୍ତି ? ଆମେଟିକେ ଗପସପ ହେଉଛୁ । କରବାବୁ ଘର ଭିତରକୁ ପଶିଆସି କହିଲେ ଆଜ୍ଞା ଆପଣମାନେ ମୋ ଘରେ ବହୁତକଷ୍ଟ ପାଇଲେ । ଗରିବ ବ୍ରାହ୍ମଣ ମୁଁ; ଆପଣଙ୍କୁ ଠିକ୍ ଭାବେ ଚର୍ଚ୍ଚା କରି ପାରିଲିନାହିଁ । ପର୍ଶୁରାମବାବୁ କହିଲେ ଆହେ; ମୁଁ ମଧ୍ୟ ବ୍ରାହ୍ମଣ । ହେଲେ ଆମେ ଓଡ଼ିଶା ବ୍ରାହ୍ମଣ, ଆପଣ ସିଂହଭୂମିଆ ବ୍ରାହ୍ମଣ । ମାତ୍ର ଆମେ ଦୁହେଁଯାକ ଓଡ଼ିଆ ବ୍ରାହ୍ମଣ । ମୁଁ

କହିଲି, କରବାବୁ ଆପଣ ଆମକୁ ଚର୍ଚ୍ଚା କରି ନାହାନ୍ତି ବୋଲି ଭାବନ୍ତୁ ନାହିଁ, ଏ ଶୀତ ଆମକୁ ଅଧିକ ଲାଗୁଛି । ସେଥିରେ ଆପଣଙ୍କର ଦୋଷ କ'ଣ ? ସେହିପରି ସେଦିନ ସିଂହଭୂମିରୁ ଆମର ଚାରିଜଣ ଅତିଥି ଓଡ଼ିଶା ଯାଇ ପ୍ରବଳ ବାତ୍ୟାରେ କଷ୍ଟ ପାଇଲେ । ଆମେ ତାଙ୍କର କଷ୍ଟ ଲାଘବ କରିପାରିଲୁ ନାହିଁ । ତାପରେ ଆମର ବାତ୍ୟା ବିଷୟରେ ଆଲୋଚନା ହେଲା । ପ୍ରାୟ ଦୁଇଘଣ୍ଟା ଧରି ଆମେ ଗପକଲୁ । କରବାବୁ କହିଲେ, ଭୋର ସାଢ଼େ ଛଅଟାରେ ରାଜଖରସୁଆଁ ଷ୍ଟେସନରୁ ଚକ୍ରଧରପୁରକୁ ଆପଣମାନେ ଟ୍ରେନ୍ ଧରିବେ । ତେଣୁ ମୁଁ ଯାଉଛି ପାଣି ଗରମ କରିବେ ; ଆପଣମାନେ ଗାଧୋଇସାରି ବାହାରି ପଡ଼ିବେ । ରାଜଖରସୁଆଁ ଏଠିକି ପନ୍ଦର କିଲୋମିଟର ବାଟ । ଗାଡ଼ି ଆସିବା ପୂର୍ବରୁ ପହଞ୍ଚିବାକୁ ହେବ । ସେ ଯାଇ ପାଣି ଗରମ କଲେ । ଆଖି ଟିକେ ମାଡ଼ି ହୋଇ ପଡୁଥାଏ । ପ୍ରାୟ ଦେଢ଼ଘଣ୍ଟା ଧରି ଦଉଡ଼ିଆ ଖଟରେ ମୁଁ ଜାକିଯୁକି ହୋଇ ଶୋଇଗଲି । ଦ୍ୱିବେଦୀ ବାବୁ ଗାଧୋଇସାରି ମୋତେ ଡାକିଲେ । ମୁଁ ଦାନ୍ତ ଘଷିସାରି ଗାଧୋଇ ପଡ଼ିଲି । ରାତି ସାଢ଼େଚାରିଟା ସୁଦ୍ଧା ଆମେ ବାହାରିଗଲୁ । କାଲିରାତିରେ ଅଟୋରିକ୍ସାକୁ ଆମର ରାଜଖରସୁଆଁ ଯିବା କଥା କୁହାଯାଇଥିଲା । ହାଟପର୍ଯ୍ୟନ୍ତ ଚାଲି ଯିବାପରେ ଅଟୋରିକ୍ସା ବସି ରାଜଖରସୁଆଁ ଷ୍ଟେସନ୍‌ରେ ପହଞ୍ଚିଲୁ ।

ଆମେ ଓଡ଼ିଶା ଫେରିବା ପରେ ବିଶ୍ୱନାଥ କର କଟକଆସି ଆମଘରେ ତିନିଦିନ ରହିଲେ । ଝାଡ଼ଖଣ୍ଡ ରାଜ୍ୟ ଗଠନ ହେବାକୁ ଯାଉଛି । ଏହି ମୌକାରେ ଷଢ଼େଇକଳା-ଖରସୁଆଁ ଅଞ୍ଚଳକୁ ଓଡ଼ିଶାରେ ମିଶାଇବା ସପକ୍ଷରେ ସେ ଅନେକ କାଗଜପତ୍ର ଆଣିଥିଲେ । କଟକରେ ସମାଜ ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର ଓ ଅଧିବକ୍ତା ବିପିନବିହାରୀ ରଥଙ୍କ ସହିତ ଅଲୋଚନା କରି ସେମାନଙ୍କୁ କାଗଜପତ୍ରର ଜେରକ୍ସକପି ସବୁ ଦେଲେ । ଭୁବନେଶ୍ୱରରେ ଗଣଶିକ୍ଷାମନ୍ତ୍ରୀ, ବିଧାନସଭାର ବାଚସ୍ପତି, ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓ ନ୍ୟାସୀ ମଣ୍ଡଳର ସଭ୍ୟମାନଙ୍କ ସହିତ ଆଲୋଚନା କରି ସେ ଫେରିଗଲେ । ଷଢ଼େଇକଳା-ଖରସୁଆଁକୁ ଓଡ଼ିଶା ସହିତ ମିଶାଇ ଦେବାକୁ ନ୍ୟାସୀମଣ୍ଡଳ ପକ୍ଷରୁ ଦ୍ୱିବେଦୀବାବୁ ଓ ଉତ୍କଳ ସମ୍ମିଳନୀ ପକ୍ଷରୁ ମୁଁ ଦସ୍ତଖତ ସଂଗ୍ରହ ଅଭିଯାନରେ ଲାଗିପଡ଼ିଲୁ । ହେଲେ, ଆମ ଦସ୍ତଖତ ଅଭିଯାନର କୌଣସି ପ୍ରଭାବ କେନ୍ଦ୍ର ସରକାରଙ୍କ ଉପରେ ପଡ଼ିଲା ନାହିଁ ।

ଇତିମଧ୍ୟରେ ଝାଡ଼ଖଣ୍ଡ ରାଜ୍ୟ ସୃଷ୍ଟି ହୋଇଗଲା । ନିର୍ବାଚନରେ ଜୟଯୁକ୍ତ ହୋଇ ଭାରତୀୟ ଜନତାପାର୍ଟି ସେ ରାଜ୍ୟରେ ସରକାର ଗଠନକଲେ । ଜାମସେଦପୁରଠାରେ ଗୋଲମୁରୀ ଉତ୍କଳ ସମାଜ ପକ୍ଷରୁ ଡାକ୍ତର ଦୀନେଶକୁମାର ଷଡ଼ଙ୍ଗୀ, ଶ୍ରୀ ଅର୍ଜୁନ ମୁଣ୍ଡା ଓ ଶ୍ରୀ ରଘୁବର ଦାସଙ୍କୁ ସମ୍ମାନିତ କରାଯିବା ପାଇଁ ମୋତେ ଓ ଦ୍ୱିବେଦୀ ବାବୁଙ୍କୁ ନିମନ୍ତ୍ରଣ ମିଳିଲା । ଜାମସେଦପୁର ଓଡ଼ିଆ ସମାଜ ସେମାନଙ୍କୁ ସମ୍ବର୍ଦ୍ଧନା ଦେବାପରେ ଉତ୍କଳସମ୍ମିଳନୀ

ପକ୍ଷରୁ ମୁଁ ଓ ନ୍ୟାସୀମଣ୍ଡଳ ପକ୍ଷରୁ ପର୍ଶୁରାମ ଦ୍ୱିବେଦୀ ସମ୍ବର୍ଦ୍ଧନା ଜଣାଇଲୁ । ସେଥର ଜାମସେଦପୁର, ଚକ୍ରଧରପୁର ଓ ଷଢେଇକଳା-ଖରସୁଆଁରେ ନ୍ୟାସୀମଣ୍ଡଳର ଶାଖାମାନ ଗଢ଼ା ହେଲା । ଆସନ୍ତାବର୍ଷ ଜନଗଣନା ପାଇଁ ସଚେତନ ରହିବା ବିଷୟରେ ଆମେ ସେଠାକାର ନେତାମାନଙ୍କୁ ଅନୁରୋଧ କଲୁ । ପ୍ରବୋଧ ମିଶ୍ର କହିଲେ, ପଶ୍ଚିମବଙ୍ଗର ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ପକ୍ଷରୁ ରାଞ୍ଚିଠାରେ ଏକ କାର୍ଯ୍ୟାଳୟ ସ୍ଥାପନ କରାଯାଇଛି । ଦୁଇଟିଗାଡ଼ିରେ ସ୍ୱେଚ୍ଛାସେବୀ ମାନେ ସଂଖ୍ୟାଧିକ ବଙ୍ଗାଳିଥିବା ଗ୍ରାମାଞ୍ଚଳକୁ ଯାଇ ଜନଗଣନାରେ ସେମାନଙ୍କର ସଂଖ୍ୟା ଠିକ୍‌ଭାବେ ଉପସ୍ଥାପିତ କରିବାଲାଗି ପ୍ରଚାର ଚଳାଇଛନ୍ତି । ମାତ୍ର ଓଡ଼ିଆଲୋକଙ୍କ ପାଇଁ ଏପରିକୌଣସି ପ୍ରଚାର ସୁବିଧାନାହିଁ । ଆମେ କହିଲୁ ଏଠି ଗାଡ଼ିଟାଏ ରଖି ସେଭଳି କାର୍ଯ୍ୟ କରିବା ଆମପକ୍ଷରେ ଆଦୌ ସମ୍ଭବନୁହେଁ । କାରଣ ଆମର ଅର୍ଥନୈତିକ ସ୍ଥିତି ଅତ୍ୟନ୍ତ ଦୁର୍ବଳ । ତଥାପି ଦ୍ୱିବେଦୀବାବୁ ଓ ମୁଁ ପାଞ୍ଚଶହ ଟଙ୍କା ଲେଖାଏଁ ଚକ୍ରଧରପୁର ଓ ଜାମସେଦପୁରରେ ଦେଇ କେତେକ ଯୁବକଙ୍କୁ ସାଇକେଲରେ ଓଡ଼ିଆ ଗ୍ରାମମାନଙ୍କୁ ପଠାଇ ଜନଗଣନା ପାଇଁ ସଜାଗ ରହିବାକୁ ଓଡ଼ିଆ ଲୋକଙ୍କୁ ପ୍ରବର୍ତ୍ତାଇବାକୁ ଅନୁରୋଧ କଲୁ । ଭୁବନେଶ୍ୱରରେ ପହଞ୍ଚି ନ୍ୟାସୀମଣ୍ଡଳ ପକ୍ଷରୁ ଆଉ କିଛି ଟଙ୍କା ପଠାଇବେ ବୋଲି ଦ୍ୱିବେଦୀବାବୁ କଥା ଦେଲେ ।

ଏବେ ଦ୍ୱିବେଦୀ ବାବୁଙ୍କ କଥା ବିଚାର କଲେ ସେ ନ୍ୟାସୀମଣ୍ଡଳର ସାଧାରଣ ସମ୍ପାଦକ ଭାବେ ଯାହା ଉଚିତ ଭାବିଲେ ତାହା କରିବାକୁ ନିଷ୍ପତ୍ତି ନେଇ ପାରିଲେ । କାରଣ ତାଙ୍କୁ ଏ କାର୍ଯ୍ୟରେ ବିରୋଧ କରିବାଲୋକ ନ୍ୟାସୀମଣ୍ଡଳରେ ନାହାନ୍ତି । ହେଲେ ଉତ୍କଳ ସମ୍ମିଳନୀ କଥା ଅଲଗା । ଏହି ସଂସ୍ଥାର ଆଜୀବନ ସଦସ୍ୟ ହେବାକୁ ଅଧିକାଂଶଲୋକ ଲାଳାୟୀତ । ତାପରେ ସଭାସମିତିକୁ ଆସି ଆପଣାର ମତ ବ୍ୟକ୍ତ କରନ୍ତି । କାହାରମତ ଗୃହୀତ ହୁଏ, କାହାର ବା ହୁଏନାହିଁ । ଆଲୋଚନା ବେଳେ ତର୍କ ବିତର୍କ ହୁଏ । ପରସ୍ପର ପ୍ରତି ସନ୍ଦେହ ସୃଷ୍ଟି ହେବାର ମଧ୍ୟ ଦେଖାଯାଏ । ସେଇ ଭିତରେ ଗୋଷ୍ଠିଗତ ବିଭେଦ ମୁଣ୍ଡ ଟେକିବାର ଦେଖାଯାଏ । ବିଚ୍ଛିନ୍ନାଞ୍ଚଳରେ କାର୍ଯ୍ୟ କରିବାର ଅନୁଭୂତିକୁ ନେଇ ତର୍କବିତର୍କ ଆରମ୍ଭହେଲେ ପ୍ରକୃତ ଲକ୍ଷ୍ୟଠାରୁ ଗୃହୀତ ନିଷ୍ପତ୍ତି ଅଲଗା ବାଟ ଧରେ । ସେଥିଲାଗି ବିଚ୍ଛିନ୍ନାଞ୍ଚଳମାନଙ୍କରେ ଥିବା ଓଡ଼ିଆମାନଙ୍କର ସଂଖ୍ୟା ଏ ପର୍ଯ୍ୟନ୍ତ ଆକଳନ କରାଯାଇପାରିନାହିଁ ।

ବଙ୍ଗୀୟମାନେ ସାରା ଭାରତବର୍ଷରେ ବିଭିନ୍ନରାଜ୍ୟରେ ବହୁସଂଖ୍ୟାରେ ବସବାସ କରୁଛନ୍ତି । ସେମାନେ ନିଜର ମାତୃଭାଷା ପ୍ରତି ଅତ୍ୟନ୍ତ ଅନୁରକ୍ତ । ତେଣୁ ପୃଥିବୀର ଯେକୌଣସି ସ୍ଥାନରେ ଥିଲେ ମଧ୍ୟ ସେମାନେ ନିଜ ଭାଷାର ପରିଚୟ ସ୍ପଷ୍ଟ କରିଦିଅନ୍ତି । ତଥାପି ଝାଡ଼ଖଣ୍ଡରେ ବଙ୍ଗଳା ଭାଷାକୁ ଦ୍ୱିତୀୟ ରାଜଭାଷାର ମାନ୍ୟତା ଦେବା ଲାଗି

କେତେକ ବଙ୍ଗୀୟ ଅନୁଷ୍ଠାନ ପକ୍ଷରୁ ଗାଆଁ ଗାଆଁ ଯାଇ ଜନଗଣନାରେ ସେମାନଙ୍କ ସଂଖ୍ୟା ଠିକ୍ ଭାବେ ପ୍ରତିଫଳିତ କରିବାକୁ ସେତେବେଳେ ଜିପ୍‌ଗାଡ଼ିରେ ବୁଲିବୁଲି ଯେଭଳି ପ୍ରଚେଷ୍ଟା ଜାରିରହିଥାଏ, ତାହାଦେଖି ସେ ବିଷୟରେ ଉତ୍କଳ ସମ୍ମିଳନୀ କାର୍ଯ୍ୟନିର୍ବାହୀ ସଭାରେ ଆଲୋଚନା କରି କୌଣସି ଫଳ ମିଳି ପାରିଲାନାହିଁ । କାରଣ, ନେତୃତ୍ୱ ନେଉଥିବା ଲୋକ ଠିକ୍ ନିଷ୍ପତ୍ତିନେଇ ତାହା କାର୍ଯ୍ୟକାରୀ କରାଇବା ଏଠାରେ ସମ୍ଭବ ନୁହେଁ ।

ସେଦିନ ଦ୍ୱିବେଦୀବାବୁ କହିଲେ, ଆପଣ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳର ଜଣେ ଆଜୀବନ ସଦସ୍ୟ ଓ ଆମ ଟ୍ରଷ୍ଟର ଆପଣ ଜଣେ ନ୍ୟାସୀ । ଆମେ ଆଶା କରୁଛୁ ଯେ ଆପଣ ନ୍ୟାସୀମଣ୍ଡଳ ପାଇଁ ପୂରା ସମୟଦେବେ ଓ ନ୍ୟାସୀମଣ୍ଡଳ ପକ୍ଷରୁ କାର୍ଯ୍ୟ କରିବେ । ମାତ୍ର ଆପଣ ଆମ ସହିତ ଆସି ଉତ୍କଳସମ୍ମିଳନୀ ନାମରେ କାର୍ଯ୍ୟ କରିବାଟା ଠିକ୍ ହେଉ ନାହିଁ । କହିଲି, ଏ ଦୁଇଟି ଯାକ ସଂସ୍ଥାର ଲକ୍ଷ୍ୟ ଗୋଟିଏ । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ସୃଷ୍ଟି ହୋଇ ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ରରାଜ୍ୟ ଦାବୀକରିବା ଫଳରେ ଓଡ଼ିଶା ରାଜ୍ୟ ସୃଷ୍ଟିହେଲା । ସିଂହଭୂମି ପରି ଓଡ଼ିଶାର ଚାରିଦିଗରେ ଯେଉଁ ବିଚ୍ଛିନ୍ନାଞ୍ଚଳ ସବୁ ରହିଗଲା ସେଥିପାଇଁ କିଛି କରିବା ସମଗ୍ର ଓଡ଼ିଆ ଜାତିର କର୍ତ୍ତବ୍ୟ । ଉତ୍କଳମଣି ଗୋପବନ୍ଧୁ ଦାଶ ୧୯୨୦ ମସିହାରେ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀ ଅଧିବେଶନ କରି ସିଂହଭୂମିରେ ଓଡ଼ିଆଶିକ୍ଷା ପ୍ରସାର ଆରମ୍ଭ କରିଥିଲେ । ସେ ମଧ୍ୟ ସିଂହଭୂମ୍ ଉତ୍କଳ କଂଗ୍ରେସ ଗଠନ କରିଥିଲେ । ଆଜି ଯେତେ ଓଡ଼ିଆବିଦ୍ୟାଳୟ ଝାଡ଼ଖଣ୍ଡରେ ରହିଛି, ସେଥିପାଇଁ ଉତ୍କଳସମ୍ମିଳନୀ ପକ୍ଷରୁ ଦାସଆପଣେ ଓ ଶ୍ରୀ ଅନନ୍ତ ମିଶ୍ର ବହୁ ପରିଶ୍ରମ କରିଛନ୍ତି । ସେମାନଙ୍କ ପରେ ଉତ୍କଳସମ୍ମିଳନୀ ସ୍ଥାଣୁ ହୋଇଗଲା । ପରବର୍ତ୍ତୀ ସମୟରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏବଂ ସମାଜ ସମ୍ପାଦକ ଶ୍ରୀ ରାଧାନାଥ ରଥ ଉତ୍କଳ ସମ୍ମିଳନୀର ସଭାପତି ହେଲେ ଓ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ମହାସଚିବ ରହି ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟକୁ ବ୍ରହ୍ମପୁରକୁ ଉଠାଇନେଲେ । ସେଠାରେ ଥାଇ ସେ ଆନ୍ଧ୍ର ପ୍ରଦେଶସ୍ଥ ଦକ୍ଷିଣ ବିଚ୍ଛିନ୍ନାଞ୍ଚଳରେ କାର୍ଯ୍ୟକରି ଆନ୍ଧ୍ର ରାଜ୍ୟରେ ଓଡ଼ିଆ ଶିକ୍ଷା କାର୍ଯ୍ୟକ୍ରମ ଚଳାଇରଖିଥିଲେ । ମାତ୍ର ଝାଡ଼ଖଣ୍ଡ ବା ସିଂହଭୂମିର ବିସ୍ତୃତ ଓଡ଼ିଆ ଅଞ୍ଚଳ ଯେପରି ଅବହେଳିତ ହୋଇ ରହିଛି ସେଥିପ୍ରତି ଏ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀ ସଜାଗ ହୋଇପାରିନାହିଁ । ମୁଁ ଅବସର ଗ୍ରହଣ କରିବା ପରେ ଉତ୍କଳସମ୍ମିଳନୀ ପାଇଁ କାର୍ଯ୍ୟ କରିବାକୁ ନିଷ୍ପତ୍ତି ନେଇଛି । ତେଣୁ ଯୁକ୍ତରାଷ୍ଟ୍ର ଆମେରିକା ଯାଇ ସେଠାରେ ସାତଟି ଉତ୍କଳ ସମ୍ମିଳନୀ ଶାଖା ଗଠନକରି ସଭ୍ୟଚାନ୍ଦା ଭାବେ ଦୁଇ ଲକ୍ଷ ଟଙ୍କା ଆଣି ଉତ୍କଳ ସମ୍ମିଳନୀକୁ ଦେବାରୁ ବ୍ରହ୍ମପୁରରୁ ଭୁବନେଶ୍ୱରକୁ ଉଠାଇ ଆଣିଥିବା ସମ୍ମିଳନୀର ମୁଖ୍ୟ କାର୍ଯ୍ୟାଳୟ ଏବେ ଅଣ୍ଡାସଳଖି ଠିଆହୋଇଛି ।

ଏସବୁ ଜାଣିବା ପରେ ଆପଣ ମୋତେ ନ୍ୟାସୀମଣ୍ଡଳର ଜଣେ ସଭ୍ୟ ଭାବେ ଗ୍ରହଣ କରିଛନ୍ତି ଓ ଟ୍ରଷ୍ଟବୋର୍ଡ଼ ମୋତେ ଜଣେ ନ୍ୟାସୀ ଭାବେ ନେଇଥିବାରୁ ମୁଁ କୃତଜ୍ଞ । ଆପଣମାନେ ମୋତେ ବିହାରର ସିଂହଭୂମି ତଥା ଆଜିର ଝାଡ଼ଖଣ୍ଡ ଦେଖାଇଥିଲେ । ପ୍ରତିକାର୍ଯ୍ୟରେ ମୁଁ ଆପଣଙ୍କ ସହିତ ସହଯୋଗ କରୁଛି । ସେହି ରାଜ୍ୟରେ ଓଡ଼ିଆ ଶିକ୍ଷା ପ୍ରସାର ଲାଗି ଯଥେଷ୍ଟ ଅର୍ଥ ଆବଶ୍ୟକ । ଓଡ଼ିଆ ଜନଗଣନା ଲାଗି ମଧ୍ୟ ସାହାଯ୍ୟ କରିବାକୁ ଆମହାତରେ ପଇସା ନାହିଁ । ମୋର ଆଶା, ଏଥିପାଇଁ ମୁଁ ଯୁକ୍ତରାଷ୍ଟ୍ର ଆମେରିକା ଯାଇ କଛି ଅର୍ଥ ସଂଗ୍ରହ କରିବି । ମାତ୍ର ଗତଥର ଉତ୍କଳ ସମ୍ମିଳନୀର ଶାଖାସବୁ ଗଢ଼ିସାରି ଏଥର ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ ନାମରେ ସାହାଯ୍ୟ ମାଗିଲେ ଲୋକେ ମୋତେ ଥଟ୍ଟା କରିବେ । ମୋତେ ଜଣେ ବହୁରୂପୀ ଭାବେ ଚିତ୍ରିତ କରିବେ । ବହୁ ବର୍ଷ ଧରି କଟକ ଉତ୍କଳସମ୍ମିଳନୀ ଶାଖାର ସଭାପତିଭାବେ ମୁଁ କାର୍ଯ୍ୟ କରୁଛି । ତେଣୁ ଏଠାରେ ମୋର ପରିଚୟ ସହ କଟକ ଶାଖାର ସଭାପତି ଭାବେ ଲୋକେ ମୋତେ ଜାଣିଛନ୍ତି । ଆପଣମଧ୍ୟ ଉତ୍କଳସମ୍ମିଳନୀର ଜଣେ ସଦସ୍ୟ । ନ୍ୟାସୀ ମଣ୍ଡଳର ଅଧିକାଂଶ ସଦସ୍ୟ ଓ କର୍ମକର୍ତ୍ତା ଉତ୍କଳ ସମ୍ମିଳନୀର ଆଜୀବନସଭ୍ୟ । ଯେଉଁଥିଲାଗି ଉତ୍କଳ ସମ୍ମିଳନୀ ସୃଷ୍ଟି ହୋଇଥିଲା ସେ କାର୍ଯ୍ୟ ଠିକ୍‌ଭାବେ ହୋଇପାରୁ ନଥିବାରୁ ଆପଣମାନେ ଅତିଷ୍ଠ ହୋଇ ନ୍ୟାସୀମଣ୍ଡଳ ଗଠନକଲେ । ତଦନୁଯାୟୀ ମୁଁ ଆପଣଙ୍କ ସହିତ ମିଶି କାର୍ଯ୍ୟ କରୁଛି । ତେଣୁ ମୁଁ କିଛି ଭୁଲ କରୁନାହିଁ ବୋଲି ଭାବୁଛି । ପର୍ଶୁରାମବାବୁ ଆଉ କିଛି କହିଲେ ନାହିଁ । ନ୍ୟାସୀମଣ୍ଡଳର ପ୍ରତି ସଭାସମିତିକୁ ସେ ମୋତେ ନିମନ୍ତ୍ରଣ ଦିଅନ୍ତି । ମୋର ସୁବିଧାହେଲେ ଯାଇ ସେସବୁରେ ମୁଁ ଯୋଗଦିଏ ।

ପରବର୍ତ୍ତୀ କାଳରେ ଉତ୍କଳ ସମ୍ମିଳନୀର କେତେଜଣ କର୍ମକର୍ତ୍ତା ମଧ୍ୟ ମୋତେ ନ୍ୟାସୀମଣ୍ଡଳ ଛାଡ଼ିଦେବା ପାଇଁ ପ୍ରସ୍ତାବ ଦେଉଥିଲେ । ମୁଁ ସେମାନଙ୍କୁ କହିଲି ଅବସର ଗ୍ରହଣ କରିବାପରେ ଓଡ଼ିଆଜାତିର ସେବା କରିବାପାଇଁ ମୁଁ ନିଷ୍ପତ୍ତି ନେଇଛି । ତେଣୁ ଉତ୍କଳ ସମ୍ମିଳନୀ ପରି ଏକ ଅନୁଷ୍ଠାନ ଲାଗି କାର୍ଯ୍ୟକରି ତାକୁ ସୁଦୃଢ଼ କରିବାକୁ ମୁଁ ଯଥାସମ୍ଭବ ଚେଷ୍ଟାକରିଛି । ଓଡ଼ିଆ ଜାତି ପାଇଁ କାର୍ଯ୍ୟରତ ନ୍ୟାସୀମଣ୍ଡଳ ପରି ଏକ ସମଧର୍ମୀ ଅନୁଷ୍ଠାନର ସଭ୍ୟ ଭାବରେ ମୁଁ ମଧ୍ୟ ଗର୍ବ କରେ । ମୁଁ ତାକୁ ଛାଡ଼ିଦେବାର ପ୍ରଶ୍ନ ଉଠୁନାହିଁ । ଉତ୍କଳ ସମ୍ମିଳନୀ ଏକ ରାଜନୈତିକ ସଂସ୍ଥା ନୁହେଁ । ତେଣୁ ମୁଁ କେଉଁ ସଂସ୍ଥାର ସଭ୍ୟ ରହିବି ନ ରହିବି ସେ ବିଷୟରେ ଅନ୍ୟମାନଙ୍କର ମତ ନେବାର କୌଣସି ଆବଶ୍ୟକତା ନାହିଁ ।

ଇତି ମଧ୍ୟରେ ଲୋକସଭାର ମିଆଦ ପୂରି ଆସିଲା । କ୍ଷମତାରେ ଥିବା ଭରତୀୟ ଜନତାପାର୍ଟି ପକ୍ଷରୁ ଦେଶରେ ତିନିଗୋଟି ନୂତନ ରାଜ୍ୟ ସୃଷ୍ଟି କରିବାର ଘୋଷଣାନାମା

ପ୍ରକାଶ ପାଇବାପୂର୍ବରୁ ବିହାର କବ୍‌ଜାରୁ ଷଢେଇକଳା-ଖରସୁଆଁ ରାଜ୍ୟ ମୁକୁଳାଇ ଓଡ଼ିଶାସହିତ ମିଶାଇଦେବାର ଶେଷ ପ୍ରଚେଷ୍ଟା ଜାରୀ ରଖିବାକୁ ହେଲା ।

ଭାରତୀୟ ପାର୍ଲାମେଣ୍ଟରେ ଝାଡ଼ଖଣ୍ଡ, ଛତିଶଗଡ଼ ଓ ଉତ୍ତରାଖଣ୍ଡ ରାଜ୍ୟ ସୃଷ୍ଟି ହେବା ପାଇଁ ବିଲ୍ ଆଗତ ହେବା ମାତ୍ରେ ଉତ୍କଳସମ୍ମିଳନୀ ପକ୍ଷରୁ ଷଢେଇକଳା ଓ ଖରସୁଆଁକୁ ଓଡ଼ିଶା ସହିତ ମିଶାଇବାପାଇଁ ରାଜ୍ୟ ଓ କେନ୍ଦ୍ର ସରକାରଙ୍କୁ ନିବେଦନ କରାଗଲା । କଟକ ଶାଖା ପକ୍ଷରୁ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ସମ୍ମୁଖରେ ଆମେ ଧାରଣା ଦେଲୁ । ବହୁସଂଖ୍ୟକ ସାଧାରଣ ଲୋକ ମଧ୍ୟ ଆମ ସହିତ ଯୋଗ ଦେଲେ । ଷ୍ଟେଟବ୍ୟାଙ୍କ କର୍ମଚାରୀ ସଂଘ ପକ୍ଷରୁ ଧାରଣାରେ ବସିଥିବା ଲୋକମାନଙ୍କୁ ଚା' ଓ କଟକ ବାର୍ ଆସୋସିଏସନ୍ ପକ୍ଷରୁ ସର୍ବତ ଓ ଲସି ବଣ୍ଟନ କରାଗଲା । ପ୍ରାୟ ଏକହଜାର ଲୋକଙ୍କର ଦସ୍ତଖତ ସମ୍ବଳିତ ଏକ ଦାବୀପତ୍ର ଆମେ ଜିଲ୍ଲାପାଳଙ୍କ ଜରିଆରେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ଦେଲୁ । ଗ୍ରୀଷ୍ମକାଳୀନ ଓଡ଼ିଶା ବିଧାନସଭା ଅଧିବେଶନରେ ଓଡ଼ିଶା ସହିତ ଷଢେଇକଳା-ଖରସୁଆଁ ମିଶ୍ରଣ ଲାଗି ଆଲୋଚନା ହେଲା । ଦର୍ଶକ ଗ୍ୟାଲେରୀରେ ସଭାପତି ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସମେତ ଆମେ ବହୁ ସଭ୍ୟସଭ୍ୟା ବସିଥାଉ । ବିଧାନସଭାରେ ସର୍ବସମ୍ମତିକ୍ରମେ ଏହି ଦାବୀ ଗୃହୀତ ହୋଇଗଲା । ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ଓ ଗୃହମନ୍ତ୍ରୀ ଶ୍ରୀ ଲାଲକୃଷ୍ଣ ଆଡ଼୍‌ଭାନୀଙ୍କୁ ଭେଟି ଓଡ଼ିଶାର ଦାବୀ ଜଣାଇବାପାଇଁ ବାଚସ୍ପତି ଶ୍ରୀ ଶରତକୁମାର କର, ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଶ୍ରୀ ବସନ୍ତକୁମାର ପାଣିଗ୍ରାହୀ ଓ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଯିବା କଥା ଠିକ୍ ହେଲା । ତଦନୁଯାୟୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ବସନ୍ତ କୁମାର ପାଣିଗ୍ରାହୀ, ପୂର୍ବତନ ବାଚସ୍ପତି ଯୁଧିଷ୍ଠିର ଦାଶ ଓ ପୂର୍ବତନ ଉପବାଚସ୍ପତି ହରିହର ବାହିନୀପତି ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଲାଲ୍‌କୃଷ୍ଣ ଆଡଭାନୀଙ୍କୁ ଭେଟି ଓଡ଼ିଶା ସହିତ ଷଢେଇକଳା-ଖରସୁଆଁ ମିଶିବା ସମ୍ପର୍କରେ ଦୃଢ଼ ଦାବୀ ଉପସ୍ଥାପନ କଲେ । ଦିଲ୍ଲୀ ଯିବା ପୂର୍ବରୁ ଓଡ଼ିଶାରେ ବନ୍ଦ ପାଳନ କରିବାକୁ ବିଭିନ୍ନ ଜିଲ୍ଲାରେ ଉତ୍କଳ ସମ୍ମିଳନୀ ଶାଖା ମାନଙ୍କୁ ସଜାଗ କରିବା ଲାଗି ଆମର ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା । ଖୋର୍ଦ୍ଧା, ବ୍ରହ୍ମପୁର, ବାଲେଶ୍ୱର ଓ ବାରିପଦାରେ ସଭା କରିବାପାଇଁ ଭୁବନେଶ୍ୱରରୁ ବକ୍ସିପାତ୍ର ବାବୁଙ୍କ ସହିତ ଆମେସବୁ ଯାଉଥିଲୁ ।

ସେଦିନ ବାରିପଦାରେ ଆୟୋଜିତ ଉତ୍କଳ ସମ୍ମିଳନୀ ସଭାରେ ମୟୂରଭଞ୍ଜ ଶାଖାର ସଭାପତି ଶ୍ରୀ ଦୀପକକୁମାର ଷଡ଼ଙ୍ଗୀ କହିଲେ, ଜଣେ ଶାଖା ସଭାପତି ଭାବେ ନୀତିଗତ ଭାବେ ଷଢେଇକଳା-ଖରସୁଆଁ ମିଶ୍ରଣ ଦାବୀ ମାନିନେଇ ଏଥିଲାଗି ଆନ୍ଦୋଳନ କରିବାକୁ ମୁଁ ବାଧ୍ୟ ଥିଲେ ମଧ୍ୟ ଏହି ଦାବୀ ଫଳରେ ଆମେ ଅବିଭକ୍ତ ସିଂହଭୂମିର ଓଡ଼ିଆମାନଙ୍କୁ ପର କରିଦେଲା ପରି ଲାଗୁଛି । ସୃଷ୍ଟି ହେବାକୁ ଯାଉଥିବା ନୂତନ ରାଜ୍ୟ ଝାଡ଼ଖଣ୍ଡର

ଷଢେଇକଳା-ଖରସୁଆଁ ଏକ ଛୋଟ ଓଡ଼ିଆ ଅଞ୍ଚଳ । ଏହି ଅଞ୍ଚଳରେ ଯେତେ ଓଡ଼ିଆ ଲୋକ ରହିଛନ୍ତି ତାହାର ବହୁ ଅଧିକ ଗୁଣ ଓଡ଼ିଆ ଲୋକ ପୂର୍ବ ସିଂହଭୂମ୍ ଓ ପଶ୍ଚିମ ସିଂହଭୂମ ଦୁଇ ନବଗଠିତ ଜିଲ୍ଲାରେ ରହିଛନ୍ତି । ଓଡ଼ିଶା ଲୋକଙ୍କର ଷଢେଇକଳା-ଖରସୁଆଁ ପ୍ରତି ଯେଭଳି ମୋହ ଅଛି, ସମଗ୍ର ସଂହଭୂମ୍ ଅଞ୍ଚଳ ପ୍ରତି ସେପରି ନାହିଁ । ତେଣୁ ସିଂହଭୂମ୍‌ର ଓଡ଼ିଆମାନଙ୍କ ମନରେ ଉତ୍କଳ ସମ୍ମିଳନୀ ତଥା ମୂଳଭୂଖଣ୍ଡରେ ଥିବା ଓଡ଼ିଆ ଭାଇମାନଙ୍କ ପ୍ରତି ଅଭିମାନ ରହୁଛି । ଯଦି ଆମ୍ଭେମାନେ ଦାବୀ କରୁଛେ ତେବେ ପ୍ରସ୍ତାବିତ ଝାଡ଼ଖଣ୍ଡ ରାଜ୍ୟରୁ ସମଗ୍ର ସିଂହଭୂମି ଅଞ୍ଚଳକୁ ବାଦ ଦେଇ ସେହି ରାଜ୍ୟ ଗଠନ କରିବାକୁ ଦାବୀକରାଯାଉ । ଦୀପକବାବୁଙ୍କ କଥାକୁ ମନେ ମନେ ମୁଁ ସମର୍ଥନ କରୁଥିଲି । କାରଣ ପୂର୍ବ ସିଂହଭୂମ୍ ଓ ପଶ୍ଚିମ ସିଂହଭୂମ୍ ବୁଲି ଯାହା ମୁଁ ଦେଖିଲି, ସେସବୁ ଅଞ୍ଚଳରେ ଓଡ଼ିଆମାନେ ନିଜର ଭାଷା ଓ ସଂସ୍କୃତି ବଜାୟ ରଖିବାକୁ ଦୀର୍ଘ ଦିନ ଧରି ସଂଗ୍ରାମ ଚଳାଇ ଆସିଛନ୍ତି । ହିନ୍ଦୀ ଭାଷା ସେମାନଙ୍କୁ ପ୍ରଭାବିତ କରିନାହିଁ । ମୟୂରଭଞ୍ଜର ଓଡ଼ିଆମାନଙ୍କ ପରି ସେମାନଙ୍କର ଭାଷା ବେଶ୍ ଶୁଦ୍ଧ । ଓଡ଼ିଆ ଘରମାନଙ୍କରେ ଚଳଣି ମଧ୍ୟ ଏକାଭଳି । ସିଂହଭୂମ୍ ଦେଇ ହାଓଡ଼ାରୁ ଯେଉଁ ରେଳପଥ ରାଉରକେଲା ବା ରାଜଗାଙ୍ଗପୁରକୁ ସଂଯୋଗ କରୁଛି, ସେହି ପଥରେ ମେଦିନୀପୁର ଛାଡ଼ିବା ପରେ ଓଡ଼ିଶାପରି ପ୍ରତି ଷ୍ଟେସନ୍‌ରେ ହିନ୍ଦୀ, ଇଂରାଜୀ ଏବଂ ଓଡ଼ିଆ ଭାଷାର ନାମଫଳକ ଲେଖାଯାଇଛି । ଘାଟଶିଳାଠାରୁ ଜାମସେଦପୁର, ସିନ୍ନୀ, ରାଜଖରସୁଆଁ, ବଡ଼ବୋମ୍ବା, ଚକ୍ରଧରପୁର ଓ ମନୋହରପୁର ଆଦି ସବୁ ଷ୍ଟେସନର ନାମଫଳକ ଓଡ଼ିଆଭାଷାରେ ଦେଖିବାକୁ ମିଳେ । ଶତାଧିକ ବର୍ଷ ଧରି ବିହାର ସରକାର ସେସବୁ ଉଠାଇ ପାରିନାହାନ୍ତି । ଏଥିଲାଗି ସେ ଅଞ୍ଚଳର ଓଡ଼ିଆ ମାନଙ୍କର ପ୍ରବଳ ଜାତିଗତ ସ୍ୱାଭିମାନ ରହିଥିବାର ସ୍ପଷ୍ଟ ଜଣାପଡ଼େ ।

ବାରିପଦାରେ ଷଢେଇକଳା-ଖରସୁଆଁ ଦାବୀପାଇଁ ଉତ୍କଳସମ୍ମିଳନୀ ପକ୍ଷରୁ ଆହୂତ ସଭାରେ ଅଧ୍ୟାପକ ଦୀପକକୁମାର ଷଡ଼ଙ୍ଗୀ ଯେଉଁ ମନ୍ତବ୍ୟ ଦେଲେ ସେ କଥା ମୋତେ ଯଥେଷ୍ଟ ପ୍ରଭାବିତ କଲା । ଦୀପକବାବୁ କହିଲେ, ଆପଣମାନେ ଷଢେଇକଳା ଖରସୁଆଁକୁ ଓଡ଼ିଶାରେ ମିଶାଇବାକୁ ଦାବୀକରିବା ପଛରେ ସ୍ୱାଧୀନୋତ୍ତର "ଗଡ଼ଜାତମିଶ୍ରଣ ରାଜିନାମା" ମୂଳଭିତ୍ତି ହୋଇ ରହିଛି । ଷଢେଇକଳା ଓ ଖରସୁଆଁର ରାଜାମାନେ ଭାରତ ସରକାରଙ୍କୁ ଚୁକ୍ତିପତ୍ର ଲେଖି ନିଜ ନିଜର ରାଜ୍ୟକୁ ଓଡ଼ିଶା ସହିତ ମିଶାଇ ଦେବା ପାଇଁ ଯେଉଁ ରାଜିନାମା କରିଥିଲେ ସେଥିପ୍ରତି ଭାରତ ସରକାର ଏ ପର୍ଯ୍ୟନ୍ତ ଗୁରୁତ୍ୱ ଦେଇନାହାନ୍ତି । ମାତ୍ର ପୂର୍ବ ସିଂହଭୂମି ଓ ପଶ୍ଚିମ ସଂହଭୂମି ଦୁଇଜିଲ୍ଲାରେ ଯେତେ ସଂଖ୍ୟକ ଓଡ଼ିଆଗ୍ରାମ ରହିଛି ଓ ସେଠାକାର ଓଡ଼ିଆମାନେ ଓଡ଼ିଶାରେ ମିଶିବା ପାଇଁ ଯେଭଳି ଲାଳାୟିତ ତାହା ସ୍ୱଚକ୍ଷୁରେ ନ ଦେଖିଲେ କେହି ବିଶ୍ୱାସ ଯିବେ ନାହିଁ । ତେଣୁ ଓଡ଼ିଶା ସହିତ କେବଳ ଷଢେଇକଳା ଓ ଖରସୁଆଁ ମିଶିବା ଉପରେ ଗୁରୁତ୍ୱ ଦେବା ସହିତ ସମଗ୍ର ଅବିଭକ୍ତ ସିଂହଭୂମି ଜିଲ୍ଲାକୁ

ଓଡ଼ିଶାରେ ମିଶାଇବାକୁ ଦାବୀ ହେଉ । ସେ ସମୟରେ ଏପରି ଦାବୀ କରିବାକୁ ଉତ୍କଳ ସମ୍ମିଳନୀ ପକ୍ଷରୁ ନିଷ୍ପତ୍ତି ହୋଇ ପାରି ନ ଥିଲା । କାରଣ ପୂର୍ବରୁ କେବଳ ଷଢେଇକଳା-ଖରସୁଆଁ ଦାବୀ ହୋଇ ଆସୁଥିଲା ଓ ନୂତନ ଝାଡ଼ଖଣ୍ଡ ରାଜ୍ୟ ଗଠନବେଳେ ଭାରତ-ସରକାରଙ୍କ ଉପରେ ଚାପ ସୃଷ୍ଟି କରି ଏହି ଦାବୀ ହାସଲ କରିବାକୁ ଚେଷ୍ଟା ଚାଲିଥିଲା ।

ଆମର ସମସ୍ତ ବିରୋଧସତ୍ତ୍ୱେ ଷଢେଇକଳା-ଖରସୁଆଁକୁ ନେଇ ନୂତନ ଝାଡ଼ଖଣ୍ଡ ରାଜ୍ୟ ସୃଷ୍ଟିହେଲା । ଆମେ ସେଦିନ ଓଡ଼ିଶାବନ୍ଦ ଡାକରା ଦେଲୁ । କଟକରେ ଉତ୍କଳ ସମ୍ମିଳନୀର ସଭ୍ୟମାନେ ସାହିବସ୍ତି ବୁଲି ଲୋକମାନଙ୍କୁ ପ୍ରଭାବିତ କଲେ । ଦୋକାନବଜାର ବନ୍ଦ ହେଲା । ବସଷ୍ଟାଣ୍ଡରୁ କୌଣସି ବସ୍ ବାହାରିଲା ନାହିଁ । ମାତ୍ର କଟକ ଷ୍ଟେସନ୍‌ରେ ରେଳ ବନ୍ଦକରିବାକୁ ଆମର ଲୋକବଳ ନ ଥିଲା । କମ୍ୟୁନିଷ୍ଟ ଦଳର ନେତା ଶ୍ରୀ ସୁଭାଷ ସିଂହଙ୍କୁ ଏହି ଦାୟିତ୍ୱ ନେବାକୁ ଅନୁରୋଧ କଲି । ପ୍ରାୟ ତିନିଶହ କର୍ମୀଙ୍କୁ ନେଇ ସେ ରେଳଷ୍ଟେସନରେ ଜଗିରହିଲେ । ତାଙ୍କ ନେତୃତ୍ୱରେ ଦଳଦଳ କର୍ମୀ ରେଳଧାରଣାରେ ବସିରହି ସକାଳ ଆଠଟାରୁ ଦିନ ପ୍ରାୟ ଦୁଇଟା ପର୍ଯ୍ୟନ୍ତ ରେଳଗାଡ଼ି ସବୁ ଅଟକାଇଲେ । ଶେଷରେ ଦୁଇଟାବେଳକୁ ତାଙ୍କ ସହିତ ସବୁ କର୍ମୀଙ୍କୁ ପୋଲିସ ଧରି ନେଇଯିବାରୁ ଗାଡ଼ି ଚାଲିବା ଆରମ୍ଭ ହେଲା । କଟକ ସାରା ବୁଲି ବୁଲି ମୁଁ ଓ ବନ୍ଧୁ ଅଭୟ ସାମନ୍ତରାୟ ବନ୍ଦ ଆନ୍ଦୋଳନ ଠିକ୍ ଭାବରେ ଚାଲୁଥିବାର ତଦାରଖ କରୁଥାଉ। ସମ୍ପାଦକ ନୃସିଂହ ମଲ୍ଲ, ଅଧିବକ୍ତା ଜଗଦୀଶ ମହାନ୍ତି, ଚକ୍ରଧର ବେହେରା, ଅକ୍ଷୟ କୁମାର ଦାସ, ବିଜୟ ଚକ୍ରବର୍ତ୍ତୀ, ମୁସ୍ତାଫିଜ ଅହମ୍ମଦ, ହୁସେନ ରବିଗାନ୍ଧି ଆଦି ସମ୍ମିଳନୀର କର୍ମକର୍ତ୍ତାମାନେ କଟକର ବିଭିନ୍ନ ଅଞ୍ଚଳରେ ବନ୍ଦ କରାଇବାର ଦାୟିତ୍ୱ ନେଇଥାନ୍ତି । କଟକ ବନ୍ଦ କାର୍ଯ୍ୟକ୍ରମ ପୂରା ସଫଳହେଲା । ସେହିପରି ଭୁବନେଶ୍ୱର, ବ୍ରହ୍ମପୁର, ବାଲେଶ୍ୱର ଓ ବାରିପଦା ଆଦି ସ୍ଥାନରେ ଓଡ଼ିଶା ବନ୍ଦ ସମ୍ପୂର୍ଣ୍ଣ ସଫଳ ହୋଇଥିଲା । ମାତ୍ର ଏସବୁ ସତ୍ତ୍ୱେ ଷଢେଇକଳା-ଖରସୁଆ ଝାଡ଼ଖଣ୍ଡରୁ ଆଉ ଓଡ଼ିଶାକୁ ଫେରିଲା ନାହିଁ ।

## ଉତ୍କଳ ବନ୍ଦନା

ଉତ୍କଳ ସମ୍ମିଳନୀ କେନ୍ଦ୍ର କାର୍ଯ୍ୟାଳୟରେ ପରିଚାଳନା କମିଟି ବୈଠକ ବସିଥାଏ । ସଭାପତି ହରିଶ୍ଚନ୍ଦ୍ର ବକ୍ସିପାତ୍ର, ମହାସଚିବ ବସନ୍ତ ପାଣିଗ୍ରାହୀ, ସଚିବ ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ଆଚାର୍ଯ୍ୟ ଭାବାନନ୍ଦ, ଶ୍ରୀଚରଣ ସ୍ୱାଇଁ, ଅନ୍ନପୂର୍ଣ୍ଣା ମିଶ୍ର, କାନନବାଳା ମହାନ୍ତି ଆଦି ବହୁ ସଭ୍ୟସଭ୍ୟା ଉପସ୍ଥିତ ଥାଆନ୍ତି । ମୋ ସାମନାରେ ବସିଥାନ୍ତି ପୂର୍ବତନମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର । ମୋ ବଡ଼ବୋହୂର ସେ ଜେଜେବାପା ହୁଅନ୍ତି । କହିଲି, ଓଡ଼ିଆ ଜାତିର ସର୍ବପୁରାତନ ସଂଗଠନ ଉତ୍କଳ ସମ୍ମିଳନୀ ଏବେ ଜାଗ୍ରତ ହୋଇଛି । ଆମକୁ

ଓଡ଼ିଆ ଜାତି ଲାଗି ବହୁ କାର୍ଯ୍ୟ କରିବାର ଅଛି । ତେବେ ସବୁଠାରୁ ଅଭାବନୀୟ ଘଟଣା ହେଉଛି, ଏ ପର୍ଯ୍ୟନ୍ତ ଏ ଜାତିର ଏକ ଜାତୀୟ ସଙ୍ଗୀତ ନାହିଁ । ଏ ଜାତିକୁ ଏକତାବଦ୍ଧ କରି ସଂଗଠିତ କରିବାପାଇଁ ଆମର ଏକ ଜାତୀୟସଙ୍ଗୀତ ଆବଶ୍ୟକ । ତେଲୁଗୁ, ତାମିଲ ଓ ବଙ୍ଗାଳିମାନଙ୍କର ଜାତୀୟ ସଙ୍ଗୀତ ଥିଲାବେଳେ ଆମର ଏ ପର୍ଯ୍ୟନ୍ତ କିଛି ଧାର୍ଯ୍ୟ ହୋଇପାରିଲା ନାହିଁ । ୧୯୬୪ ମସିହାରେ ଯେତେବେଳେ ମୁଁ ଯୁକ୍ତରାଷ୍ଟ୍ର ଆମେରିକାର ଓହିଓ ବିଶ୍ୱବିଦ୍ୟାଳୟରେ ପଢୁଥିଲି, ସେତେବେଳେ ସେଠାକାର ବଙ୍ଗୀୟ ଲୋକମାନେ ମୋତେ ତାଙ୍କର ସବୁ ସଭାସମିତିକୁ ଡାକୁଥିଲେ । ସେମାନଙ୍କର ସଭା ଆରମ୍ଭମାତ୍ରେ "ଆମାର ସୋନାର୍ ବାଙ୍ଗ୍‌ଲା" ସଙ୍ଗୀତ ଗାନ କରାଯାଉଥିଲା । ବୁଝିଲି ତାହା ସେମାନଙ୍କର ଜାତୀୟ ସଙ୍ଗୀତ । ଆମ ଓଡ଼ିଆଙ୍କର ସେପରି କିଛି ନ ଥିବାର ଅନୁଭବ କରି ମୋତେ ଦୁଃଖ ଲାଗୁଥିଲା । ବସନ୍ତବାବୁ କହିଲେ, ଆମର ଜାତୀୟ ସଙ୍ଗୀତ ଅଛି ଓ ପ୍ରତିବର୍ଷ ଉତ୍କଳ ସମ୍ମିଳନୀ ଅଧିବେଶନରେ ଏହା ଗାନ କରାଯାଏ । ପଚାରିଲି କେଉଁ ସଙ୍ଗୀତ ? ସେ କହିଲେ- "ସର୍ବେଷାଂ ନୋ ଜନନୀ" ସଙ୍ଗୀତଟି କଟକର ଇଦ୍‌ଗାପଡ଼ିଆରେ ପ୍ରଥମ କରି ଗାନ କରାଯାଇଥିଲା । ସେହିଦିନଠାରୁ ଆମେ ତାକୁ ସମ୍ମିଳନୀର ଉଦ୍‌ଘାଟନୀ ସଙ୍ଗୀତ ଭାବେ ସମ୍ମାନ ଦେଇଆସିଛୁ ।

ପଚାରିଲି, ଏ ଗୀତଟି କେଉଁଭାଷାରେ ଲେଖାଯାଇଛି ? ସେ କହିଲେ ସଂସ୍କୃତଭାଷା । କହିଲି, ମାଆକୁ ତାର ସନ୍ତାନ ମାତୃଭାଷାରେ ହିଁ ସମ୍ବୋଧନ କରେ । ତାଛଡ଼ା ସର୍ବେଷାଂ ନୋ ଜନନୀ ଆମ ମାତୃଭୂମି ଉତ୍କଳର ବନ୍ଦନା ନୁହେଁ । ଏହା ଆମ ଜେଜେମାଙ୍କର ବନ୍ଦନା । ଏଥିରେ ଉତ୍କଳ ଜନନୀଙ୍କୁ ଭାରତରୂପୀ ପଦ୍ମଫୁଲର ଗୋଟିଏ ପାଖୁଡ଼ା ସହିତ ତୁଳନା କରାଯାଇଛି । ସଭାପତି ବକ୍ସିପାତ୍ରଙ୍କୁ ସମ୍ବୋଧନ କରି କହିଲି, ୧୯୫୬ ମସିହା ସୀମା ଆନ୍ଦୋଳନ ବେଳେ ଯେତେବେଳେ କଟକ ବେତାର କେନ୍ଦ୍ର ନିକଟରେ ସୁନୀଲ ଦେ ପୋଲିସ ଗୁଳିରେ ପ୍ରାଣ ହରାଇଲେ; ସେତେବେଳେ ରେଭେନ୍ସାରେ ମୁଁ ଆଇ.ଏସ୍.ସି. ପଢୁଥିଲି । ଶବ ଶୋଭାଯାତ୍ରା ବେଳେ ଆଗେ ଆଗେ ଛାତ୍ରୀମାନେ "ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତ ଗାଇ ଗାଇ ଏକ ଘୋଡ଼ାଗାଡ଼ିରେ ଯାଉଥାନ୍ତି । ଛାତ୍ରସମାଜର ଏକ ବିଶାଳ ଶୋଭାଯାତ୍ରା ମଙ୍ଗଳାବାଗଠାରୁ ଖାନ୍‌ନଗର ପର୍ଯ୍ୟନ୍ତ ଲମ୍ବି ଯାଇଥାଏ । ଏହି ସଙ୍ଗୀତ ସବୁରି ହୃଦୟରେ ଓଡ଼ିଆ ଜାତୀୟତା ଭାବର ଉଦ୍ରେକ କରୁଥାଏ । ସେହି ସଙ୍ଗୀତ ଛଡ଼ା ଏ ପର୍ଯ୍ୟନ୍ତ ମୁଁ ଏପରି କୌଣସି ଭାବବିହ୍ୱଳକାରୀ ମାତୃବନ୍ଦନା ଶୁଣିନାହିଁ । ଯଦି ଆପଣମାନେ କେହି ସେପରି ଅନ୍ୟ ଏକ ଓଡ଼ିଆ ସଙ୍ଗୀତ ଶୁଣିଥିବେ, ତାହାହେଲେ କୁହନ୍ତୁ । କାହାର ଆଉ କିଛି କହିବାର ନଥିଲା ।

ହରିଶ୍ଚନ୍ଦ୍ର ବାବୁ କହିଲେ, ତାହେଲେ ଆମେ ଏହି ସଙ୍ଗୀତକୁ ଓଡ଼ିଆ ଜାତିର ଜାତୀୟସଙ୍ଗୀତ ଭାବେ ମାନ୍ୟତା ଦେବାପାଇଁ ଏବେ ନିଷ୍ପତ୍ତି ନେଇପାରିବା । ଉପସ୍ଥିତ

ସଭ୍ୟସଭ୍ୟାମାନେ ତାଙ୍କ ସହିତ ଏକମତହେଲେ । ଶ୍ରୀ ପଦ୍ମଚରଣ ନାୟକ କହିଲେ, ବନ୍ଦେ ଉତ୍କଳ ଜନନୀକୁ ନେଇ ଗୋଟିଏ କ୍ୟାସେଟ୍ ପ୍ରସ୍ତୁତ କରାଯାଉ ଓ ସେ ଦାୟିତ୍ୱ ଗୁରୁବାବୁ ନିଅନ୍ତୁ । କହିଲି, ଏଇ ଗୋଟିଏ ସଙ୍ଗୀତକୁ ନେଇ କ୍ୟାସେଟ ପ୍ରସ୍ତୁତ କରିବା ଅସମ୍ଭବ । ସେ କହିଲେ, ମୁଁ ଆଠଟି ଉପାଦେୟ ଓଡ଼ିଆ ସ୍ୱାଭିମାନବର୍ଦ୍ଧକ ସଙ୍ଗୀତ ଦେବି । ଆପଣ କ୍ୟାସେଟ କରିବାର ଯୋଗାଡ଼ କରନ୍ତୁ । କହିଲି, ଏଥିପାଇଁ ଅର୍ଥର ଆବଶ୍ୟକତା ରହିଛି । ଅତିକମ୍‌ରେ ଦଶ ପନ୍ଦର ହଜାର ଟଙ୍କା ଦରକାର । ହରିଶ୍‌ବାବୁ କହିଲେ, ମୁଁ ପାଞ୍ଚହଜାର ଟଙ୍କା ଦେବି, ବାକୀତକ ଆପଣ ଯୋଗାଡ଼କରନ୍ତୁ । ସଭା ଭଙ୍ଗହେଲା । ଆମେସବୁ ଉଠିଲୁ । ମୋ ସାମନାରେ ବସିଥିବା ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ମୋ ମୁଣ୍ଡରେ ହାତ ବୁଲାଇ ଦେଇ କହିଲେ ଆଜି ତୁମେ ଗୋଟିଏ ବଡ଼ କାମ କଲ । ଏହି କାର୍ଯ୍ୟ ଉତ୍କଳ ସମ୍ମିଳନୀର ସମ୍ମାନ ବୃଦ୍ଧିକରିବ ।

କ୍ୟାସେଟ୍‌ଟିଏ କରିବା ପାଇଁ କଅଣ ସବୁଦରକାର, କେତେ ଖର୍ଚ୍ଚ ପଡ଼ିବ ବୁଝିବା ପାଇଁ ବହୁ ସଙ୍ଗୀତଜ୍ଞଙ୍କର ଦ୍ୱାରସ୍ଥ ହେଲି । ବାଦାମବାଡ଼ିସ୍ଥ ଆମଘର ପଛପାଖ ଧାଡ଼ିରେ ସଙ୍ଗୀତଜ୍ଞ ଶ୍ରୀ ରାଖାଲଚନ୍ଦ୍ର ମହାନ୍ତି ରହନ୍ତି । ସେ କହିଲେ, ମୁଁ ନିର୍ଦ୍ଦେଶନା ଦେଇଥିବା ଗୋଟିଏ ସଙ୍ଗୀତ କ୍ୟାସେଟ ଏବେ ବଜାରକୁ ଛଡ଼ାଯାଇଛି । ଆପଣ ସେଇଟିଆଣି ଦେଖନ୍ତୁ, ସେଥିରେ ବନ୍ଦେଉତ୍କଳ ଜନନୀ ସଙ୍ଗୀତ ଅଛି । ସେ କ୍ୟାସେଟ୍ ଆଣି ଦେଖିଲି ସଙ୍ଗୀତ ସୁଧାକର ବାଳକୃଷ୍ଣଦାସ ଗାଇଥିବା ତାଙ୍କଠାରୁ ଟିକେ ଅଲଗା ଜଣାଗଲା । ମୋ ବୋହୂ (ସେବାରାଣୀ)କୁ ଖେୟାଲ ଶିଖାଉଥିବା ସଙ୍ଗୀତଜ୍ଞ ଜେ.ଭି.ଏସ୍. ରାଓଙ୍କ ସହିତ ପରାମର୍ଶ କଲି । ଜାତୀୟ ସଙ୍ଗୀତ ଗାଇବାର ସମୟ ଏକ ବା ଦେଢ଼ ମିନିଟ୍ ଭିତରେ ହେବା କଥା । ଆରମ୍ଭରୁ ବା ମଝିରେ କୌଣସି ଅନ୍ତରା ରହିବାର ନୁହେଁ । ତେଣୁ ମାତ୍ର ଗୋଟିଏ ବା ଦୁଇଟି ପଦ ଗୀତ ଗାଇବାକୁ ହେବ । କ୍ୟାସେଟ୍ ପ୍ରସ୍ତୁତ କରିବା ପୂର୍ବରୁ ସେହି ସଙ୍ଗୀତର ରଚୟିତା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସୁପୁତ୍ର ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସହିତ ଦୂରଭାଷରେ କଥାହେଲି । ସେ କହିଲେ ଯଦି କ୍ୟାସେଟ୍ କରୁଛନ୍ତି ସମୁଦାୟ ଗୀତଟିକୁ ରେକର୍ଡ଼ କରନ୍ତୁ । କହିଲି କୌଣସି ଜାତୀୟ ସଙ୍ଗୀତ ଏକ ମିନିଟ୍‌ରୁ ବେଶୀ ଗାନ କରାଯିବା ଅନୁଚିତ । ତେଣୁ ଛଅପଦ ଗାଇବା ତୁଳନାରେ ପଦେ ବା ଦୁଇପଦ ଗାନ କରାଯିବ । ତାପରେ ତାଙ୍କର ବଡ଼ ପୁତୁରା ଗୁରୁକଲ୍ୟାଣ ବାବୁ ମଧ୍ୟ ମୋତେ ଦୂରଭାଷରେ ସେୟା କହିଲେ । ତାଙ୍କୁ ମଧ୍ୟ ମୋତେ ବୁଝାଇବାକୁ ପଡ଼ିଲା ।

କ୍ୟାସେଟ କରିବା ପାଇଁ ଦୁଇ ତିନିଟି ଷ୍ଟୁଡ଼ିଓକୁ ଯାଇ ବୁଝିଲି ଯେ, ବାଦ୍ୟ ଯନ୍ତ୍ରରେ ସାହାଯ୍ୟ କରୁଥିବା ଲୋକଙ୍କଖର୍ଚ୍ଚ ଅତିକମ୍‌ରେ ଛଅହଜାର ଟଙ୍କା ପଡ଼ିବ ଓ ଷ୍ଟୁଡ଼ିଓ ଭଡ଼ା ଅତିକମ୍‌ରେ ଘଣ୍ଟାକୁ ତିନିଚାରିଶହ ଟଙ୍କା ପଡ଼ିବ । ଦେଖିଲି ହାତରେ ଟଙ୍କା ନ ଥାଇ ଏସବୁ ଭାବି ବସିବା କେବଳ ମୂର୍ଖାମି ହେବ ।

ଆମର ସଭାପତି ହରିଶ୍ଚନ୍ଦ୍ର ବକ୍ସିପାତ୍ର କହିଥିଲେ ପାଞ୍ଚହଜାର ଟଙ୍କା ଦେବେ ବୋଲି । ଅନ୍ତତଃ ସେତକଟଙ୍କା ହାତରେ ଧରିଲେ ଆଉ କିଛି ଯୋଗାଡ଼ କରିବା ସହଜ ହେବ । ଦୂରଭାଷରେ ତାଙ୍କୁ ଡାକିଲି । ସେ କହିଲେ ଆପଣ ଆସି ଟଙ୍କା ନେଇ ଯାଆନ୍ତୁ । ତା ପରଦିନ ଉପରବେଳା ଭୁବନେଶ୍ୱର ଗଲି । ତାଙ୍କ ଘରେ ପହଞ୍ଚି ବୁଝିଲି ଯେ, ଆଜି ସକାଳୁ ସେ ସପରିବାର ଦିଲ୍ଲୀ ଚାଲିଯାଇଛନ୍ତି । ଲଣ୍ଡନରେ ଥିବା ତାଙ୍କର ଜଣେ ଡାକ୍ତରବନ୍ଧୁ ଦିଲ୍ଲୀ ଆସିଛନ୍ତି । ସେଠାରେ ତାଙ୍କର ସ୍ୱାସ୍ଥ୍ୟ ପରୀକ୍ଷା ହେବ । ନିରାଶ ହୋଇ ମୋତେ ଫେରିବାକୁ ପଡ଼ିଲା ।

କଥାରେ ଅଛି "ହାତରେ ନଥାଇ ଧନ, ପୁଅ ବାହାକରି ମନ ।" ଆଉ ଏ ବିଷୟରେ ମୁଣ୍ଡ ନଖେଳାଇ ହରିଶବାବୁ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ।

ଦୁଇମାସ ପରେ ଅକସ୍ମାତ୍ ଗୋପାଳକୃଷ୍ଣ ଶ୍ରୀଚନ୍ଦନ ମୋତେ ଦୂରଭାଷରେ ଡାକି କହିଲେ ଆପଣ ଶୀଘ୍ର ଭୁବନେଶ୍ୱର ଆସନ୍ତୁ । ପଚାରିଲି କ'ଣ ହେଲା ? ସେ କହିଲେ ଗୋଟିଏ ଦୁଃଖଦ ଖବର ମିଳିଛି । ଆମର ସଭାପତି ହରିଶବାବୁ ଆଉ ଇହଜଗତରେ ନାହାନ୍ତି । ଦିଲ୍ଲୀରୁ ତାଙ୍କର ଶବ ଆସୁଛି । ଏ ଖବର କଟକର ଅଧିକାଂଶ ଉତ୍କଳସମ୍ମିଳନୀ ସଦସ୍ୟମାନଙ୍କୁ ଜଣାଇଦେଲି । ବନ୍ଧୁ ଅଭୟ ସାମନ୍ତରାୟଙ୍କ ସହିତ ବାଦାମବାଡ଼ିରୁ ଦୁଇଟି ଫୁଲତୋଡ଼ା ଧରି ମୁଁ ଭୁବନେଶ୍ୱର ବାହାରିଗଲି । ଆମେ ସିଧା ତାଙ୍କଘରକୁ ଗଲୁ । ତାଙ୍କର ଶବ ଆସି ପହଞ୍ଚିଲା । ଶବାଧାରରେ ଫୁଲ ଦେଲାବେଳେ ମନରେ ବହୁତ ଦୁଃଖହେଲା । ଉତ୍କଳ ସମ୍ମିଳନୀକୁ ବଳିଷ୍ଠ କରି ଏକ ରାଜନୈତିକ ଦଳ ସୃଷ୍ଟିକରିବା ପାଇଁ ତାଙ୍କର ବହୁତ ଇଚ୍ଛାଥିଲା । ହେଲେ ମୁଁ ଏହାର ନୀତିଗତ ବିରୋଧ କରୁଥିଲି । ବାଷ୍ପରୁଦ୍ଧକଣ୍ଠରେ ବନ୍ଧୁ ଅଭୟକୁ କହିଲି, ହରିଶବାବୁଙ୍କର ବହୁତ ଉଚ୍ଚଆକାଂକ୍ଷା ଥିଲା । ମାତ୍ର ଈଶ୍ୱର ତାହା କରାଇ ଦେଲେନାହିଁ । ଏପରିକି ତାଙ୍କ ଜୀବିତଅବସ୍ଥାରେ ସେ "ବନ୍ଦେ ଉତ୍କଳ ଜନନୀ" କ୍ୟାସେଟ୍ ତିଆରିହେବା ଦେଖି ପାରିଲେନାହିଁ । ଯାହା ବି ହଉ, ସେ କ୍ୟାସେଟ୍ ମୁଁ ଅଳ୍ପଦିନ ଭିତରେ ନିଶ୍ଚୟ କରିଦେବି ।

ମୋ ବୋହୂ ଗୀତ ଶିଖିଲାବେଳେ ସଙ୍ଗୀତଜ୍ଞ କେ.ଭି.ଏସ୍. ରାଓ ଏବଂ ତବଲାବାଦକ ବୃନ୍ଦାବନ ସେଠିଙ୍କ ସହିତ ପରାମର୍ଶ କଲି । ସେମାନେ କହିଲେ ଭଲ କ୍ୟାସେଟ୍‌ଟିଏ କରିବାକୁ ସେବାରାଣୀ ସହିତ ଜଣେ ଭଲ ଗାୟକ ରହିବା ଉଚିତ । ତାଛଡ଼ା ଦଳରେ ଗାଇବା ପାଇଁ ତିନି ଚାରିଜଣ ପାର୍ଶ୍ୱଗାୟକ ଗାୟିକାଙ୍କୁ ମଧ୍ୟ ଡାକିବାକୁ ହେବ । ସେମାନଙ୍କୁ ଟଙ୍କା ଦେବାକୁପଡ଼ିବ । ଯିଏ ନିର୍ଦ୍ଦେଶନା ଦେବେ ସେ ମଧ୍ୟ ଜଣେ ଉଚ୍ଚକୋଟୀର ସଙ୍ଗୀତଜ୍ଞ ହୋଇଥିବେ । ଏହାବାଦ ଏଥିରେ ଭାଗନେବାକୁ ପାଞ୍ଚଛଅଜଣ ବାଦ୍ୟଯନ୍ତ୍ରଧାରୀ ଅତିକମ୍‌ରେ ସାତ ଆଠ ହଜାର ଟଙ୍କା ନେବେ । ଏକହଜାର କ୍ୟାସେଟ୍

କରିବାକୁ ପଚିଶ ତିରିଶ ହଜାର ଟଙ୍କା ଖର୍ଚ୍ଚ ହେବ । ଏତେଗୁଡ଼ାଏ ଟଙ୍କା ଯୋଗାଡ଼ କରିବା ଅସମ୍ଭବ କଥା । ତେବେ ଅସମ୍ଭବକୁ ସମ୍ଭବ କରିବାକୁ ସାହସ ଦରକାର । ଯିଏ ବି ଏ କାର୍ଯ୍ୟ କରିବ, ସେ ନିଜ ପକେଟରୁ ଖର୍ଚ୍ଚ କରିବାକୁ ରାଜିଥିବା ଦରକାର । ପଚାରିଲି, ମୁଖ୍ୟ କ୍ୟାସେଟଟି ପ୍ରସ୍ତୁତ କରିବାକୁ କେତେ ଟଙ୍କା ପଡ଼ିବ ? ସେଠିବାବୁ କହିଲେ, ଅତି କମ୍‌ରେ ୧୪/୧୫ ହଜାର ଟଙ୍କା ଦରକାର । ମୋ ବୋହୂ ସଙ୍ଗେ ଗାଇବାପାଇଁ ଜଣେ ଗାୟକ ବାଛିବାକୁ ସେମାନେ ତିନିଚାରିଜଣଙ୍କ ନାଆଁ ଦେଲେ । ତନ୍ମଧ୍ୟରୁ ଶ୍ରୀ ଅମରେନ୍ଦ୍ର ମହାନ୍ତି ଖୁବ୍ ଭଲଲୋକ ବୋଲି ବୁଝିଲି । ସେମଧ୍ୟ ଆମର ଜଣେ ଦୂରସମ୍ପର୍କୀୟ ବନ୍ଧୁ । ତାଙ୍କର ନିଜର ଗୋଟିଏ ଷ୍ଟୁଡ଼ିଓଅଛି । କାଳବିଳମ୍ବ ନ କରି ତାଙ୍କପାଖକୁ ଗଲି । ସେ ମୋତେ ଆଗରୁ ଜାଣିଥିଲେ । ବଂଶୀବାଦକ ମୋହିନୀ ପଟ୍ଟନାୟକଙ୍କ ନିର୍ଦ୍ଦେଶନାରେ ମୋ ବୋହୂ ପାଞ୍ଚଟି ଗୀତଗୋବିନ୍ଦ କ୍ୟାସେଟ କରିଥିବା ଖବର ମଧ୍ୟ ତାଙ୍କ ପାଖରେ ଥିଲା । ଉତ୍କଳ ସମ୍ମିଳନୀ ପାଇଁ ଏପରି ଏକ କ୍ୟାସେଟ କରିବାରେ ମୋତେ ସେ ସାହାଯ୍ୟ କରିବେ ବୋଲି କଥା ଦେଲେ । ସେ ମୁଖ୍ୟ ଗାୟକ ଭାବେ କିଛି ପାରିଶ୍ରମିକ ନେବେ ନାହିଁ । ମାତ୍ର ପାର୍ଶ୍ୱଗାୟକ, ବାଦ୍ୟଯନ୍ତ୍ରଧାରୀ ଓ ଷ୍ଟୁଡ଼ିଓଭଡ଼ା ପାଇଁ ଟଙ୍କା ଯୋଗାଡ଼ କରିବାକୁ ସେ ପରାମର୍ଶ ଦେଲେ । ହାତରେ ଅତି କମ୍‌ରେ ବାରହଜାର ଟଙ୍କା ଧରିଲେ ମୁଖ୍ୟ କ୍ୟାସେଟଟି ପ୍ରସ୍ତୁତ କରାଯିବ । ପରେ ଷ୍ଟୁଡ଼ିଓ ଭଡ଼ା ହିସାବ କରି ଚୁକ୍ତି କରାଯାଇପାରିବ । ସେହି କ୍ୟାସେଟ୍‌ରୁ ପରେ ଆବଶ୍ୟକୀୟ କ୍ୟାସେଟ୍‌ଗୁଡ଼ିକ ପ୍ରସ୍ତୁତ କରାଯାଇପାରିବ । ସେଥିପାଇଁ ଡେରିରେ ଅର୍ଥ ଯୋଗାଡ଼ କଲେ ଚଳିବ ।

ଆଉ କାଳବିଳମ୍ବ ନକରି ମୋ ପାଶ୍‌ବହିରୁ ପନ୍ଦରହଜାର ଟଙ୍କା କାଢ଼ି ଆଣି ଷ୍ଟୁଡ଼ିଓ ସଂରକ୍ଷିତ ରଖିବାକୁ ପାଞ୍ଚହଜାର ଟଙ୍କା ଅଗ୍ରୀମଦେଇ ଗୀତ ରେକର୍ଡ଼ିଂ କରିବାର ଦିନ ଧାର୍ଯ୍ୟ କରିଦେଲି । ଦିନ ଦଶଟା ସୁଦ୍ଧା ରେକର୍ଡ଼ିଂ ହେବାର ଥିଲା । ନଅଟା ସୁଦ୍ଧା ମୋ ବୋହୂ ସେବାରାଣୀକୁ ନେଇ ଷ୍ଟୁଡ଼ିଓରେ ପହଞ୍ଚିଲି । ବାଦ୍ୟଯନ୍ତ୍ର ସାହାଯ୍ୟକାରୀମାନେ ସାଢ଼େ ନଅଟା ସୁଦ୍ଧା ପହଞ୍ଚିଗଲେ । ମାତ୍ର ଅମରେନ୍ଦ୍ର ବାବୁଙ୍କର ଆସିବା ଡେରି ହେଉଥାଏ । ସେ ଆସିଲେ ସୁରଦେଇ ଗାଇବାର ନିର୍ଦ୍ଦେଶନା ଦେବେ । ତଦନୁଯାୟୀ ଟ୍ରାକ୍ ତିଆରି ହେବ । ଟ୍ରାକ୍‌ରେ ବାଦ୍ୟଯନ୍ତ୍ର ସବୁ ରେକର୍ଡ଼ିଂ ହୋଇ ସାରିବା ପରେ ଗୀତ ରେକର୍ଡ଼ିଂ କରାଯିବ । ସାଢ଼େ ଦଶଟା ବେଳକୁ ଷ୍ଟୁଡ଼ିଓ ଦାୟିତ୍ୱରେ ଥିବା ପରିଚାଳକ କହିଲେ ଆମେ ଦଶଟାଠାରୁ ଷ୍ଟୁଡ଼ିଓ ଭଡ଼ା ନେବୁ । ତେଣୁ ଆଉ ଅପେକ୍ଷା ନକରି ଟ୍ରାକ୍ କରିବାକୁ ଆରମ୍ଭ କରିଦିଅନ୍ତୁ । ବାଦ୍ୟଯନ୍ତୀମାନେ ମଧ୍ୟ ଦଶଟାଠାରୁ ସେମାନଙ୍କ ପ୍ରାପ୍ୟ ନେବେ । ହେଲେ ଅମରେନ୍ଦ୍ରବାବୁଙ୍କ ଆସିବା ଉପରେ ସବୁ ନିର୍ଭର କରୁଛି । ଦୂରଭାଷରେ ବୁଝିଲି

କାଲି ରାତିରେ ଅମରେନ୍ଦ୍ରବାବୁ ଗୋଟିଏ ବଡ଼ ଅପେରାଦଳକୁ ସଙ୍ଗୀତ ନିର୍ଦ୍ଦେଶନା ଦେବାକୁ ଯାଇ ବହୁତ ଡେରିରେ ଫେରିଛନ୍ତି । ବାରଟା ପୂର୍ବରୁ ସେ ଆସିବା ସମ୍ଭବ ନୁହେଁ । ମୋତେ ଅଯଥାରେ ଭଡ଼ା ଗଣିବାକୁ ପଡ଼ିବ । ତେଣୁ ଆଠଟି ଗୀତରୁ ଚାରିଟିରେ ଟ୍ରାକ୍ କରିବାକୁ ମୁଁ ନିଜେ ନିର୍ଦ୍ଦେଶନା ଦେବାକୁ ମନସ୍ଥ କଲି । ବନ୍ଦେ ଉତ୍କଳ ଜନନୀ, ତୁପରା ବୋଲାଉ ଉତ୍କଳ ସନ୍ତାନ, ମାଆ ମାଆ ବୋଲି ଯେତେ ମୁଁ ଡାକିଲି ଓ ତୁହିମା ଜନମଭୂମି ଏହି ଚାରିଟି ଗୀତ ଗାଇବାକୁ ବୋହୂକୁ କହିଲି । ଏସବୁର ସ୍ୱର କିପରି ହେବାକୁ ମୁଁ ଚାହୁଁଛି ସେ କଥା ବାଦ୍ୟକାରମାନଙ୍କୁ ମଧ୍ୟ କହିଦେଲି । ତଦନୁଯାୟୀ ସେମାନେ ସେବାରାଣୀର ସଙ୍ଗୀତ ସହିତ ବାଦ୍ୟଯନ୍ତ୍ର ବଜାଇବା ଆରମ୍ଭ କରିଦେଲେ । ମଝିରେ ମଝିରେ ସେମାନଙ୍କ ଭିତରୁ ଗୀତଗାଇବାର ଢାଞ୍ଚା ବଦଳାଇବାକୁ ମଧ୍ୟ ଇଙ୍ଗିତ ମିଳୁଥାଏ । ତଦନୁଯାୟୀ ସେବାରାଣୀ ଗାଇ ଚାଲିଥାଏ । ଗୋଟିକ ପରେ ଗୋଟିଏକରି ତିନିଟି ଗୀତ ଟ୍ରାକ୍ ହୋଇ ସାରିବା ପରେ ଅମରେନ୍ଦ୍ର ବାବୁ ପହଞ୍ଚିଗଲେ । ଏସବୁ ଠିକ୍ ଭାବେ ହୋଇଛି ଦେଖି ସେ ଖୁସିହେଲେ ଓ ଅପରାହ୍ନ ୫ଟା ଭିତରେ ଆଉ ମାତ୍ର ଦୁଇଟି ଗୀତର ଟ୍ରାକ୍ ପ୍ରସ୍ତୁତ ହେଲା । ତାପରଦିନ ନଅଟାଠାରୁ ସନ୍ଧ୍ୟା ଛଅଟା ଭିତରେ ସବୁଗୁଡ଼ିକ ଗୀତର ଟ୍ରାକିଂ ହୋଇ ସାରିବା ପରେ ସେବାରାଣୀ, ଅମରେନ୍ଦ୍ର ବାବୁ ଓ କେତେଜଣ ଗାୟକ ଗାୟିକା ଆସି ଗୀତଗୁଡ଼ିକ ଗାଇବା ଶେଷ କରିଦେଲେ । ସମସ୍ତ ଦେୟ ଦେଇସାରି କେବଳ ଷ୍ଟୁଡ଼ିଓ ଭଡ଼ାରୁ କିଛି ବାକୀ ରହିଲା । ପରଦିନ ବାକୀ ଟଙ୍କା ପଇଠ କରି ମୁଖ୍ୟ କ୍ୟାସେଟ ଦୁଇଟି ମୁଁ ନେଇଆସିଲି । ସେଥିରୁ ଏକହଜାର କ୍ୟାସେଟ ପ୍ରସ୍ତୁତ କରିବାକୁ ଆହୁରି ବାରହଜାର ଟଙ୍କା ଲାଗିବ । ତେଣୁ ମୁଖ୍ୟ କ୍ୟାସେଟ୍ ପାଖରେ ରଖି ଟଙ୍କା ଯୋଗାଡ଼ କରିବାକୁ ଚେଷ୍ଟାକଲି । ବନ୍ଧୁ ଅଭୟ ସାମନ୍ତରାୟ ଝାଞ୍ଜିରୀମଙ୍ଗଳାର କଣ୍ଟ୍ରାକ୍ଟର ଶ୍ରୀ ତପନ ମହାନ୍ତିଙ୍କୁ ଆମ କ୍ୟାସେଟ ପାଇଁ ସାହାଯ୍ୟ ମାଗିବାରୁ ସେ ଟ.୨୦,୦୦୦ ଦେବା ପାଇଁ ରାଜି ହେଲେ । ଏଥି ପୂର୍ବରୁ କେହି ଆମକୁ ଏତେ ଟଙ୍କା ଦାନ କରି ନ ଥିଲେ । ଦୁହେଁଯାଇ ତାଙ୍କଠାରୁ ଏହି ଅର୍ଥ ଗ୍ରହଣ କରି ତାଙ୍କୁ ଅଶେଷ ଧନ୍ୟବାଦ ଜ୍ଞାପନ କଲୁ । ଟଙ୍କା ପାଇବାପରେ ମୂଳ କ୍ୟାସେଟ୍‌ରୁ ଏକହଜାର କ୍ୟାସେଟ୍ ତିଆରି ହେଲା । କଟକର ବିଭିନ୍ନ ଅନୁଷ୍ଠାନକୁ ଏହି କ୍ୟାସେଟ୍ ଦେଇ ସଭାଆରମ୍ଭରେ "ବନ୍ଦେ ଉତ୍କଳ ଜନନୀ" ଗାନ କରିବାକୁ ଅନୁରୋଧ କଲୁ ।

ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଶ୍ରୀରାମଚନ୍ଦ୍ର ଭବନରେ ପ୍ରାୟ ପ୍ରତି ସପ୍ତାହରେ ସଭାସମିତି ହୁଏ । ମୁଁ ଓ ଅଭୟବାବୁ ଏସବୁ ସଭାକୁ ଯାଉ । ସଭାଆରମ୍ଭରେ "ବନ୍ଦେ ଉତ୍କଳ ଜନନୀ" କ୍ୟାସେଟ ଲଗାଇ ଉତ୍କଳ ଜନନୀଙ୍କୁ ସମ୍ମାନ ଜଣାଇବାକୁ ସାହିତ୍ୟ ସମାଜର ତତ୍କାଳୀନ ସାଧାରଣ ସମ୍ପାଦକ ଅଧ୍ୟାପକ ବିଜୟାନନ୍ଦ ସିଂହଙ୍କୁ ଅନୁରୋଧ କଲୁ । ସେ ମୋତେ ବଡ଼ଭାଇ ପରି ମାନନ୍ତି ଓ ଏହି ଗୀତଟି ଓଡ଼ିଆ ଜାତିର ଜାତୀୟ

ସଙ୍ଗୀତ ବୋଲି ପୂର୍ବରୁ ସୂଚନାଦେଇ ଉପସ୍ଥିତ ବ୍ୟକ୍ତିମାନଙ୍କୁ ଠିଆ ହୋଇ ଉତ୍କଳ ଜନନୀଙ୍କ ସମ୍ମାନ ଜଣାଇବାକୁ ଅନୁରୋଧ କରନ୍ତି ।

ଥରେ ଉତ୍କଳ ସାହିତ୍ୟସମାଜ ସଭାରେ ଅଧ୍ୟାପକ ପଠାଣି ପଟ୍ଟାନୟକ ସଭାପତିତ୍ୱ କରୁଥାନ୍ତି । ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀବାବୁ ଏହି ସଭାରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥାନ୍ତି । ଅଧ୍ୟାପକ ବିଜୟାନନ୍ଦ ସିଂହ ସଭା ବିଷୟରେ ପ୍ରାରମ୍ଭିକ ସୂଚନା ଦେବାପରେ ଉତ୍କଳ ବନ୍ଦନା ବାଜିଉଠିଲା । ଆମେ ସମସ୍ତେ ଠିଆ ହୋଇଗଲୁ । ମୁଖ୍ୟ ଅତିଥି ଜାନକୀବାବୁ ମଧ୍ୟ ଠିଆ ହେଲେ । ମାତ୍ର ସଭାପତି ପଠାଣିବାବୁ ବସିରହିଲେ ଓ ଜାନକୀବାବୁଙ୍କ ହାତଧରି ଟାଣି ବସାଇଦେଲେ । ତାଙ୍କ ଦେଖାଦେଖି ସଭାରେ ଉପସ୍ଥିତ ପ୍ରାୟ ଅଧାଲୋକ ବସିପଡ଼ିଲେ । ପଠାଣିବାବୁ କହିଲେ ଏହି ସଙ୍ଗୀତ ସରକାରୀ ମାନ୍ୟତା ପାଇନାହିଁ । ତେଣୁ ଆମେ ଠିଆ ହେବାକୁ ବାଧ ନୋହୁ । ମୁଁ ଓ ଅଭୟବାବୁ ସଭାପତିଙ୍କର ଉତ୍କଳ ଜନନୀଙ୍କ ପ୍ରତି ଅସମ୍ମାନ କରିବାର ବିରୋଧ କରି ସଭା କକ୍ଷ ତ୍ୟାଗକଲୁ । ଏହାପରେ ମୁଁ ଉତ୍କଳ ସମ୍ମିଳନୀ କଟକଶାଖା ପକ୍ଷରୁ ଉତ୍କଳ ସାହିତ୍ୟସମାଜକୁ ଏକ ପ୍ରତିବାଦପତ୍ର ଲେଖି ଜଣାଇଦେଲି । ସେହି ପତ୍ରକୁ ସାଧାରଣ ସମ୍ପାଦକ ବିଜୟାନନ୍ଦ ସିଂହ ତାଙ୍କ ପରିଚାଳନା ସଭାରେ ପାଠକରି ଏକ ସର୍ବସମ୍ମତ ନିଷ୍ପତ୍ତି ନେଲେଯେ; ଏଣିକି ଉତ୍କଳ ସାହିତ୍ୟ ସମାଜର ପ୍ରତିସଭାରେ ଉତ୍କଳ ବନ୍ଦନା ଗାନକରାଯିବ ଓ ସମସ୍ତେ ଠିଆ ହୋଇ ମାତୃଭୂମି ଏବଂ ଓଡ଼ିଆ ଜାତିକୁ ସମ୍ମାନ ଜଣାଇବେ ।

କ୍ୟାସେଟ ପ୍ରସ୍ତୁତ ହେବାପରେ ଅଭୟବାବୁ ଓ ମୁଁ ଯାଇ ବିଧାନସଭାର ତତ୍କାଳୀନ ବାଚସ୍ପତି ଶ୍ରୀ ଶରତ କୁମାର କରଙ୍କୁ ଭେଟି ଦୁଇଟି କ୍ୟାସେଟ ଉପହାର ଦେଲୁ । ସେ କହିଲେ ଜାତୀୟ ସଙ୍ଗୀତ କେବେ ତିନିପଦ ହୋଇପାରେନା । ମାତ୍ର ଗୋଟିଏ ପଦରେ ଏହାକୁ ସୀମିତ କରିବାକୁ ହେବ । ଏପରି ଏକ କ୍ୟାସେଟ ପ୍ରସ୍ତୁତ କରିବାକୁ ସେ ଗୋଟିଏ କମିଟି ଗଠନ କଲେ ।

ଅଭୟ ବାବୁ ଓ ମୁଁ କଟକର ଅଧିକାଂଶ ସଭାକୁ ଯାଉଥିଲୁ ଓ ସେଠାରେ ଉତ୍କଳବନ୍ଦନା ଗାନ କରାଯିବା ଉପରେ ଗୁରୁତ୍ୱଦେଉଥିଲୁ । ତେଣୁ ଅଧିକାଂଶ ସଭାରେ ଏହା ଗାନ କରାଯାଉଥିଲା ଓ ଲୋକମାନେ ଠିଆହୋଇ ମାତୃଭୂମିକୁ ସମ୍ମାନ ଜଣାଇବାକୁ ଅଭ୍ୟସ୍ତ ହେଉଥିଲେ । ଆଉଗୋଟିଏ ସଭା କଥା ଏଠାରେ ଉଲ୍ଲେଖ କରିବାକୁ ମନ ହେଉଛି । ଓଡ଼ିଶା ଖାଉଟିମହାସଂଘ ପକ୍ଷରୁ ଶହୀଦ ଭବନରେ ଏକ ବଡ଼ସଭା ହେଉଥାଏ । ଏହାର ଆବାହକ ଶ୍ରୀସୁଭାଷ ଚନ୍ଦ୍ର ମହତାବ ମୋତେ ନିମନ୍ତ୍ରଣ ଜଣାଇଲେ । ତାଙ୍କୁ ସଭା ପ୍ରାରମ୍ଭରେ ଉତ୍କଳ ବନ୍ଦନା ଗାନ କରିବାକୁ ଅନୁରୋଧ କଲି । ସୁପ୍ରିମକୋର୍ଟର ତତ୍କାଳୀନ ପ୍ରଧାନ ବିଚାରପତି ମାନ୍ୟବର ଗୋପାଳବଲ୍ଲଭ ପଟ୍ଟନାୟକ ଏହିସଭାରେ ମୁଖ୍ୟ ଅତିଥିଭାବେ

ଯୋଗଦେଲେ । ତାଙ୍କସହିତ ଓଡ଼ିଶା ହାଇକୋର୍ଟର ଜଣେ ପୂର୍ବତନ ବିଚାରପତି ମଧ୍ୟ ସମ୍ମାନିତ ଅତିଥିଭାବେ ଯୋଗ ଦେଇଥାଆନ୍ତି । ଅଭୟବାବୁ ଓ ମୁଁ ଏହି ସଭାରେ ଯୋଗଦେଲୁ । ଦର୍ଶକ ଗ୍ୟାଲେରୀର ପ୍ରଥମ ଧାଡ଼ିଟି ଓଡ଼ିଶା ହାଇକୋର୍ଟର ବିଚାରପତି ମାନଙ୍କ ଲାଗି ସଂରକ୍ଷିତ ହୋଇଥାଏ । ମୁଁ ଯାଇ ଦ୍ୱିତୀୟ ଧାଡ଼ିରେ ବସିଲି । ଅଭୟବାବୁ ଚତୁର୍ଥ ଧାଡ଼ିରେ ବସିଲେ । ସଭା ପ୍ରାରମ୍ଭରେ "ବନ୍ଦେ ଉତ୍କଳ ଜନନୀ" ଗାନ କରାଗଲା । ଯୋଗକୁ ମୋ ସାମନାରେ ମୋର ଶାଳକ ତଥା ଓଡ଼ିଶା ହାଇକୋର୍ଟର ମାନ୍ୟବର ବିଚାରପତି ଶ୍ରୀ ବିମଳପ୍ରସାଦ ଦାସ ବସିଥାନ୍ତି । ଉତ୍କଳ ବନ୍ଦନା ଗାନ କରାଯିବା ମାତ୍ରେ ମୁଁ ତାଙ୍କୁ ଠିଆ ହେବାକୁ କହିଲି । ମୋ କଥା ମାନି ସେ ଠିଆ ହେବାମାତ୍ରେ ସାମନା ଧାଡ଼ିରେ ବସିଥିବା ହାଇକୋର୍ଟର ସବୁ ବିଚାରପତିମାନେ ଠିଆ ହୋଇଗଲେ । ତାପରେ ଗୃହରେଥିବା ସବୁଲୋକ ଠିଆହେଲେ । ମାତ୍ର ମଞ୍ଚ ଉପରେ ବସିଥିବା ପୂର୍ବତନ ବିଚାରପତି ଆଦୌ ଠିଆ ହେଲେନାହିଁ । ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି ଗୋପାଳବାବୁ ଠିଆ ହେବା ମାତ୍ରେ ସେ ତାଙ୍କୁ ବସିବାକୁ ଅନୁରୋଧ କଲେ । ମାତ୍ର ଗୋପାଳବାବୁ ବସିବାକୁ ଯାଉଥିବା ବେଳେ ମୁଁ ତାଙ୍କୁ ହାତହଲାଇ ଠିଆ ହେବାକୁ ଇଙ୍ଗିତ ଦେବାରୁ ସେ ମଧ୍ୟ ଠିଆ ହୋଇଗଲେ । କାରଣ ଗୋପାଳବାବୁ ମୋର ସଢୁ ଭାଇ ହୁଅନ୍ତି ଓ ମୋତେ ବଡ଼ସଢୁର ସମ୍ମାନ ଦିଅନ୍ତି । ତେଣୁ ସେ ମୋ ଇଙ୍ଗିତରେ ଠିଆ ହୋଇ ଯିବାଟା ସମସ୍ତଙ୍କ ପାଇଁ ଏକ ଉଦାହରଣ ପରି ଲାଗିଲା । ପରେ ମଞ୍ଚ ଉପରେ ବସିଥିବା ପୂର୍ବତନ ବିଚାରପତିଜଣକ ତାଙ୍କର ଭୁଲ୍ ବୁଝିପାରି ଓଡ଼ିଆରେ ଭାଷଣ ଦେବାକୁ ଆରମ୍ଭ କଲେ । ଗୋପାଳବାବୁ ଭାଷଣ ଆରମ୍ଭ କରିବା ପୂର୍ବରୁ ଉତ୍କଳଜନନୀଙ୍କୁ ସର୍ବପ୍ରଥମେ ସମ୍ମାନ ଜଣାଇ କହିଲେ, ଓଡ଼ିଆ ମୋର ମାତୃଭାଷା । ମାତ୍ର ଦୀର୍ଘ ଦିନ ଧରି ବିଚାରପତି ଭାବେ କାର୍ଯ୍ୟ କରି ଏହି ଭାଷାରେ ଲେଖିବା ଓ କହିବାର ଅଭ୍ୟାସ ମୋର ନାହିଁ । ତେଣୁ ମୋର ଭାଷଣ ଇଂରାଜୀରେ ଲେଖିଆଣିଛି । ଆଶା କରୁଛି ଇଂରାଜୀରେ ଏହା ପାଠ କଲେ ମାତୃଭୂମି ଉତ୍କଳ ଜନନୀଙ୍କ ପ୍ରତି କୌଣସି ଅସମ୍ମାନ ହେବ ନାହିଁ । ଏହାକହି ସେ ଇଂରାଜୀରେ ତାଙ୍କର ଭାଷଣ ରଖିଲେ । ସଭା ଶେଷରେ ଜଣେ ଦୁଇଜଣ ଲୋକ ନ୍ୟାୟମୂର୍ତ୍ତିମାନଙ୍କୁ ଜବରଦସ୍ତ ଠିଆ କରାଇବାରେ ମୋତେ ଦାୟୀ କରି ସେମାନଙ୍କର ବିରକ୍ତି ଭାବ ପ୍ରକାଶ କଲେ । କହିଲି, ଯିଏ ମାଆକୁ ସମ୍ମାନ କରେ ନାହିଁ, ସେ ମନୁଷ୍ୟ ପଦବାଚ୍ୟ ନୁହେଁ । ମାଆ, ମାତୃଭୂମି ଓ ମାତୃଭାଷା ସବୁ ପଦପଦବୀର ଉର୍ଦ୍ଧ୍ୱରେ । ସ୍ୱୟଂ ଈଶ୍ୱର ମଧ୍ୟ ମାନବ ଦେହ ଧରି ଜନ୍ମ ଗ୍ରହଣ କଲେ ନିଜର ମାଆ ଓ ମାତୃଭୂମିକୁ ସମ୍ମାନ କରନ୍ତି । ଆପଣମାନେ ଏହା ଶିକ୍ଷା କରନ୍ତୁ ।

ଇତି ମଧ୍ୟରେ କ୍ରମଶଃ ଓଡ଼ିଆ ଲୋକେ ଉତ୍କଳ ବନ୍ଦନା ଗାନ କରି ମାତୃଭୂମି ତଥା ଓଡ଼ିଆ ଜାତିକୁ ସମ୍ମାନ ଜଣାଇବାରେ ଅଭ୍ୟସ୍ତ ହେଇଗଲେଣି । ଏପରିକି, ଓଡ଼ିଶାର

ମୁଖ୍ୟମନ୍ତ୍ରୀ ଏହି ସଙ୍ଗୀତକୁ ବିଦ୍ୟାଳୟମାନଙ୍କରେ ପ୍ରାର୍ଥନା ଭାବେ ଗାଇବା ପାଇଁ ନିର୍ଦ୍ଦେଶ ଜାରୀ କରିଛନ୍ତି । ବିଭିନ୍ନ ସ୍ଥାନରେ ସଭାସମିତି ହେଲେ ସଭା ପୂର୍ବରୁ ଲୋକେ ଏହି କ୍ୟାସେଟ ପାଇଁ ଭୁଲୁ ନାହାନ୍ତି । ଏହି କ୍ୟାସେଟରୁ ପ୍ରାୟ ଅଢ଼େଇ ଶହ କ୍ୟାସେଟ ଯୁକ୍ତରାଷ୍ଟ୍ର ଆମେରିକାରେ ଥିବା ଓଡ଼ିଆ ଲୋକଙ୍କୁ ବଣ୍ଟାଯାଇଛି ।

ସରକାରଙ୍କ ପକ୍ଷରୁ ଦାୟିତ୍ୱ ନେଇଥିବା ସାନ୍ତନୁ ମହାପାତ୍ର ଯଥା ସମୟରେ କ୍ୟାସେଟ ପ୍ରସ୍ତୁତ କରି ନପାରିବାଯୋଗୁଁ ସଂସ୍କୃତି ବିଭାଗ ପକ୍ଷରୁ ଏହି ଦାୟିତ୍ୱ ଓଡ଼ିଶା ସଂସ୍କୃତି ବିଶ୍ୱବିଦ୍ୟାଳୟକୁ ଦିଆଗଲା । ସଂସ୍କୃତି ମନ୍ତ୍ରୀ ଶ୍ରୀ ମହେଶ୍ୱର ମହାନ୍ତିଙ୍କ ବିଧାନସଭା ପ୍ରକୋଷ୍ଠରେ ସଂସ୍କୃତି ବିଭାଗ ପକ୍ଷରୁ କ୍ୟାସେଟ୍ ପ୍ରସ୍ତୁତ କରିବାକୁ ଏକ ସଭା ହେଲା । ଏଥିରେ କାନ୍ତକବିଙ୍କ ନାତି ମହାଭାବ ପ୍ରକାଶଙ୍କ ସହିତ ଗୁରୁକଲ୍ୟାଣ ଓ ପ୍ରଭୁକଲ୍ୟାଣବାବୁ ଯୋଗ ଦେଇଥିଲେ । ଉତ୍କଳ ସମ୍ମିଳନୀ ପକ୍ଷରୁ ମୁଁ ଓ ସାଧାରଣ ସମ୍ପାଦକ ଡଃ ଅଦ୍ୱୈତ ପାତ୍ର ମଧ୍ୟ ଯୋଗ ଦେଇ ସେମାନଙ୍କ ପ୍ରସ୍ତାବରେ ସହମତ ହେଲୁ । କାରଣ ବିରୋଧାଭାଷ ହେଲେ ସରକାରୀ ଉଦ୍ୟମରେ କ୍ୟାସେଟ ତିଆରି ଆହୁରି ବିଳମ୍ବ ହେବାର ଭୟ ଥିଲା ।

## ବାଲିଯାତ୍ରାରେ ଉତ୍କଳ ସମ୍ମିଳନୀ ମଞ୍ଚ

୧୯୯୭ ମସିହା ଶେଷ ଭାଗରେ ଉତ୍କଳ ସମ୍ମିଳନୀର କଟକ ଜିଲ୍ଲା ଶାଖା ସୃଷ୍ଟି ହେବା ପରେ କଟକରେ ଉତ୍କଳ ଦିବସ, ମଧୁଜୟନ୍ତୀ, ପାରଳା ମହାରାଜାଙ୍କ ଜୟନ୍ତୀ ଓ ଶ୍ରାଦ୍ଧ ଆଦି ପାଳିତ ହେଲା । ଆମ ସହିତ ଗୋରାକବର ହାଇସ୍କୁଲ, ଓ.ଏମ୍.ପି. ହାଇସ୍କୁଲ, ରେଲୱେ ହାଇସ୍କୁଲର ଶିକ୍ଷକ ଓ ଛାତ୍ରଛାତ୍ରୀମାନେ ଏସବୁ କାର୍ଯ୍ୟରେ ସାମିଲ ହେଲେ । ଆହୁରି ଅନେକ ହାଇସ୍କୁଲ ଓ କଲେଜରେ ସଭା କରି ଆମେ ଉତ୍କଳ ସମ୍ମିଳନୀ ବିଷୟରେ ଛାତ୍ରଛାତ୍ରୀ ଓ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଅବହିତ କରାଇଲୁ । ତଥାପି କଟକରେ ସାଧାରଣ ଲୋକଙ୍କର ଉତ୍କଳ ସମ୍ମିଳନୀ ବା ଓଡ଼ିଆ ଜାତିର ଐତିହ୍ୟ ବିଷୟରେ ଆଦୌ ଧାରଣା ଥିଲାପରି ମନେ ହେଉନଥାଏ । ତେଣୁ ମୁଁ ଭାବିଲି, ବାଲିଯାତ୍ରା ପରି ଏକ ମେଳାରେ ଏସବୁ ବିଷୟରେ ଅବତାରଣା କରାଯାଇ ପାରିଲେ ସର୍ବସାଧାରଣ ତଥା କଟକର ଯୁବଗୋଷ୍ଠୀଙ୍କୁ ଉତ୍କଳ ସମ୍ମିଳନୀ ସମ୍ପର୍କରେ କିଛି ଜଣାଇହେବ । ସରକାରଙ୍କ ବିଭିନ୍ନ ବିଭାଗ ପକ୍ଷରୁ ମଧ୍ୟ ବାଲିଯାତ୍ରାରେ ଷ୍ଟଲ୍‌ମାନ ଦିଆଯାଏ । ମୁଁ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଥିଲାବେଳେ ଆମବିଭାଗ ପକ୍ଷରୁ ବାଲିଯାତ୍ରରେ ଷ୍ଟଲ୍ ଦେବା ଆରମ୍ଭ କରିଥିଲି । ଡାକ୍ତର ଅଶ୍ୱିନୀ କୁମାର ମହାନ୍ତି ନିର୍ଦ୍ଦେଶାଳୟର ସୂଚନା ଅଧିକାରୀ ଥାଇ ଏ ଦିଗରେ ଯଥେଷ୍ଟ ପରିଶ୍ରମ କରୁଥିଲେ ଓ ବାଲିଯାତ୍ରାରେ ଆମ ଷ୍ଟଲ୍ ବେଶ୍ ଦର୍ଶନୀୟ ହେଉଥିଲା । ମୋର ଅବସର ଗ୍ରହଣ କରିବାପରେ ପରବର୍ତ୍ତୀ ନିର୍ଦ୍ଦେଶକମାନେ ଏ ଦିଗରେ ସେଭଳି

ଉତ୍ସାହ ନ ଦେଖାଇବାରୁ ବାଲିଯାତ୍ରାରେ ପଶୁପାଳନ ବିଭାଗ ପକ୍ଷରୁ ଷ୍ଟଲ୍‌ଦେବା ବନ୍ଦହୋଇଗଲା ।

ଭାବିଲି, ଉତ୍କଳ ସମ୍ମିଳନୀ ପକ୍ଷରୁ ଗୋଟିଏ ବକ୍ତୃତାମଞ୍ଚ ବାଲିଯାତ୍ରାରେ ସ୍ଥାପନ କରି ସେହିମଞ୍ଚରୁ ଓଡ଼ିଆଭାଷା, ସାହିତ୍ୟ ସୀମାସମସ୍ୟା ଓ ଆମର ସ୍ୱାଭିମାନ ସମ୍ପର୍କରେ ବିଭିନ୍ନ ବକ୍ତା ଭାଷଣ ଦେଲେ ତାହା ସର୍ବସାଧାରଣଙ୍କ ଉପରେ କିଛି ପ୍ରଭାବ ପକାଇବ । ଆମ ଉତ୍କଳ ସମ୍ମିଳନୀ ଶାଖାର ଏକ ସଭା ଡକାଇ ଏ ବିଷୟରେ ଆଲୋଚନା କଲି । ବହୁ ଲୋକ ବିରୁଦ୍ଧ ମତ ଦେଲେ । କହିଲେ, ବାଲିଯାତ୍ରା କେବଳ ଖାଇବାପିଇବା ଓ ଜିନିଷ କିଣିବାର ଯାତ୍ରା । ଲୋକମାନେ ଏସବୁରେ ବ୍ୟସ୍ତ ଥିଲାବେଳେ ଆମ ବକ୍ତୃତାମଞ୍ଚକୁ ଆସିବ କିଏ ? ତାହା ଛଡ଼ା ବାଲିଯାତ୍ରାରେ ଗୋଟିଏ ମଞ୍ଚ ଦେବାକୁ ଜାଗାଭଡ଼ା, ବିଦ୍ୟୁତ୍‌ଦେୟ ଓ ମଞ୍ଚ ତିଆରି ଖର୍ଚ୍ଚ ବାବଦ ଅତି କମ୍‌ରେ ତିରିଶ ହଜାର ଟଙ୍କା ଆବଶ୍ୟକ । ଆମ ପାଖରେ ପଇସାଟିଏ ନାହିଁ । କେଉଁଠୁ ଏତେଟଙ୍କା ଆସିବ ? କହିଲି, ଆମେ କଟକର ବଦାନ୍ୟ ଲୋକମାନଙ୍କ ପାଖକୁଯିବା । ଯାହା ନିଅଣ୍ଟପଡ଼ିବ ଆମେ କିଛିକିଛି ହାତରୁ ଦେବା ।

ଏ କଥାରେ କେହି ଜଣେହେଲେ ରାଜି ହେଲେନାହିଁ । ଆମ ସଭ୍ୟ ମାନଙ୍କ ପଛରେ ଲାଗି ଏ ବିଷୟରେ କିଛି କରାଯାଇପାରିବ ଏ ବିଶ୍ୱାସ ଆଉ ମୋର ନ ଥିଲା । ଭାବିଲି ଯେନତେନ ପ୍ରକାରେଣ ବାଲିଯାତ୍ରାରେ ଷ୍ଟଲ୍‌ଟିଏ ଗଠନ କରିପାରିଲେ ଆମ ସଭ୍ୟସଭ୍ୟାଙ୍କର ଏ ବିଷୟରେ କିଛି ଧାରଣା ହେବ ଓ ପରବର୍ତ୍ତୀ ବର୍ଷମାନଙ୍କରେ ମଞ୍ଚଗଠନ କରିବା ପାଇଁ ହୁଏତ ସେମାନେ ଉତ୍ସାହିତ ହେବେ । ତେବେ ଅତିକମ୍‌ରେ ୩୦ହଜାର ଟଙ୍କା ହାତରେ ନ ଧରିଲେ ଏ ବିଷୟରେ ଚିନ୍ତା କରାଯାଇପାରେନା । ରାଜାବଗିଚା ଲେବରକଲୋନୀରେ ରହୁଥିବା ଶ୍ରୀ ସୀତାନାଥ ମହତାବଙ୍କ ସହିତ ମୋର ସମ୍ପର୍କଥିଲା । ତାଙ୍କୁ ଏକଥା କହିଲି । ଉତ୍କଳ ସମ୍ମିଳନୀକୁ ସେ ଭଲ ପାଉଥିଲେ ଓ ମୁଁ ସେଥିପାଇଁ କିଛି କରୁଛି ବୋଲି ତାଙ୍କର ମୋ ପ୍ରତି ଶ୍ରଦ୍ଧାଥିଲା । ତେଣୁ ମୋତେ ରୋଟାରୀ କ୍ଲବକୁ ନିମନ୍ତ୍ରଣ କରି ଓଡ଼ିଆଭାଷା ଆନ୍ଦୋଳନ ବିଷୟରେ ମୋଠାରୁ କିଛି ଶୁଣିବାଲାଗି ସେ ମଝିରେ ମଝିରେ ବ୍ୟବସ୍ଥା କରୁଥିଲେ । ବାଲିଯାତ୍ରା କଥାଶୁଣି ସେ କହିଲେ, ଆପଣଙ୍କ ପାଇଁ ମୁଁ ଗୋଟିଏ ସପ୍ତାହ ସମୟ ଦେଇପାରିବି । ପ୍ରତିଦିନ ଉପରବେଳା ମୋ ସହିତ ଆପଣ ରୋଟାରୀ କ୍ଲବର ସଭ୍ୟସଭ୍ୟାମାନଙ୍କ ଘରକୁ ଯିବେ । ତାହାହିଁ ହେଲା । ସୀତାନାଥବାବୁଙ୍କ ସାଙ୍ଗରେ ପ୍ରତିଦିନ ବିଭିନ୍ନ ଲୋକଙ୍କ ପାଖକୁଗଲି । ସାତଦିନ ଭିତରେ ପ୍ରାୟ ଛଅହଜାର ଟଙ୍କା ମିଳିଗଲା । ମାତ୍ର ପ୍ରତି ଲୋକଠାରୁ ଦୁଇତିନିଶହ ଟଙ୍କା ଭିତରେ ମିଳୁଥିଲା । ସପ୍ତାହକ ପରେ ଆଉ ସୀତାନାଥବାବୁ ସମୟ ଦେଇ ପାରିଲେ ନାହିଁ । ଏକଥା ବନ୍ଧୁ ଅଭୟବାବୁଙ୍କୁ କହିଲି । ଆମେ ଦୁହେଁମିଶି ଜଣାଶୁଣା ଲୋକଙ୍କ ପାଖକୁ ଯିବା ପାଇଁ

ବିଚାର କଲୁ । ତାଙ୍କର ଜଣେ ଅତି ଘନିଷ୍ଠ ବ୍ୟବସାୟୀ ବନ୍ଧୁଙ୍କ ପାଖକୁ ପ୍ରଥମେ ଯାଇ ପହଞ୍ଚିଲୁ । ସେ ତାଙ୍କ ଦୋକାନରେ ବସିଥାନ୍ତି । ବିକାକିଣା ଚାଲିଥାଏ । ଆମକୁ ଦେଖି ସେ ଖୁସି ହୋଇଗଲେ । ଚା ମଗାଇ ପଠାଇଲେ । ଅଭୟବାବୁଙ୍କୁ ନାନାଦି କୁଶଳ ପ୍ରଶ୍ନ ପଚାରିଗଲେ । ପ୍ରାୟ ପନ୍ଦର ମିନିଟ ବସିବା ପରେ ମୁଁ ଆମ ଆସିବାର ଉଦ୍ଦେଶ୍ୟ ତାଙ୍କୁ ଜଣାଇଲି । ସେ କହିଲେ ଯେଉଁମାନେ ଚାନ୍ଦା ମାଗିବାକୁ ଆସନ୍ତି ସେମାନଙ୍କଠାରୁ ଚାଲାଖ ଲୋକ କେହିନାହିଁ । ଆଉ ମଧ୍ୟ ଯେଉଁମାନେ ଚାନ୍ଦାଦିଅନ୍ତି ତାଙ୍କଠାରୁ ବୋକା କେହି ନାହିଁ । ଏତିକି ଶୁଣିବା ପରେ ମୁଁ ଉଠି ଠିଆହେଲି ।' ଡାକିଲି, ଚାଲ ଅଭୟବାବୁ । ଭଦ୍ରଲୋକ ଆମକୁ ବସିବାକୁ କହୁଥିଲେ । ମୁଁ ତାଙ୍କ କଥା ନଶୁଣି ବାହାରକୁ ଚାଲିଆସିଲି । ମୋ ପଛେ ପଛେ ଅଭୟ ବାବୁ ମଧ୍ୟ ଚାଲି ଆସିଲେ । ଏକଥା ମୋତେ ନିରୁତ୍ସାହିତ କଲା । ସେଦିନ ଆଉ କୁଆଡ଼େ ନ ଯାଇ ଘରକୁ ଫେରିଲୁ ।

ପ୍ରାୟ ତିନି ଚାରିଦିନ ଛାଡ଼ି ସୀତାନାଥ ବାବୁ ଦୂରଭାଷରେ ଡାକି କହିଲେ ଆପଣ ଜଣେ ବଡ଼ ଡାକ୍ତର ସନାତନ ରଥଙ୍କ ପାଖକୁ ଯାଆନ୍ତୁ । ସେ କହିଛନ୍ତି କିଛି ଉତ୍କଳ ସମ୍ମିଳନୀ ପାଇଁ ଦାନକରିବେ । ତାପରଦିନ ଭୋର ସାତଟା ସୁଦ୍ଧା ଅଭୟବାବୁ ଓ ମୁଁ ଡାକ୍ତର ରଥଙ୍କ ଘରକୁ ଗଲୁ । ମୋ ପରିଚୟପତ୍ର ଦେଖି ସେ ଆମକୁ ଭିତରକୁ ଡାକି ବସାଇଲେ । କହିଲେ, ଉତ୍କଳ ସମ୍ମିଳନୀ ଆମ ଓଡ଼ିଆ ଜାତିର ସର୍ବ ପୁରାତନ ଅନୁଷ୍ଠାନ । ସେଥିପାଇଁ ମୁଁ ଦଶ ହଜାର ଟଙ୍କା ଦେବାକୁ ଚାହୁଁଛି । ଆଜି ଆପଣ ପାଞ୍ଚ ହଜାର ନେଇ ଯାଆନ୍ତୁ । ପରେ ଆଉ ପାଞ୍ଚ ହଜାର ଟଙ୍କା ଆସି ନେଇଯିବେ । ତାଙ୍କୁ ଧନ୍ୟବାଦ ଦେଇ ଆମେ ପାଞ୍ଚ ହଜାର ଟଙ୍କା ନେଇ ଫେରିଲୁ ।

ଅଭୟବାବୁ କହିଲେ, ମୋର ଆଉ ଜଣେ ବଡ଼ଡାକ୍ତର ଚିହ୍ନାଅଛନ୍ତି । ଚାଲ ତାଙ୍କପାଖକୁ ଯିବା । ସେଦିନ ସନ୍ଧ୍ୟା ସୁଦ୍ଧା ତାଙ୍କଠାରୁ ଖବର ଆସିଲା ଏବେ ବାହାରିବା ପାଇଁ । ସେତେବେଳକୁ ମୋ ସ୍ତ୍ରୀ ଓ ବୋହୂ ଆମର ଜଣେ ବନ୍ଧୁ ଘରକୁ ଯିବା ପାଇଁ ସଜ ହେଉଥାନ୍ତି । କହିଲି ମୁଁ ଗାଡ଼ିଟା ନେଇ ଅଳ୍ପ ସମୟ ଭିତରେ ଫେରି ଆସୁଛି । ମୋ ଡ୍ରାଇଭର ଗାଡ଼ି ବାହାର କରି ବାହାରେ ଅପେକ୍ଷା କରିଥାଏ । ତାକୁ କହିଲି, ଚାଲ ଏଇଠୁ ଆସିବା । ଗାଡ଼ିରେ ଅଭୟବାବୁଙ୍କୁ ନେଇ ଡାକ୍ତରବାବୁଙ୍କ କ୍ଲିନିକ୍‌ରେ ପହଞ୍ଚିଲି । ଡାକ୍ତରବାବୁ ଭିତରେ ଥାଆନ୍ତି । ଆମେ ଅପେକ୍ଷା କଲୁ । ପ୍ରାୟ ଅଧଘଣ୍ଟାକପରେ ସେ ଆମକୁ ଡାକିଲେ । ଅଭୟ ବାବୁ ତାଙ୍କୁ ମୋ ସହିତ ପରିଚିତ କରାଇଦେଲେ । ତାପରେ ଅନେକ ସାମାଜିକ କଥା ଆଲୋଚନା ହେଲା । ଘଣ୍ଟାକୁ ଚାହିଁ ଦେଖିଲି ଛଅଟା ବାଜିଗଲାଣି । ଯିବାପାଇଁ ଉଠି ଠିଆହେଲି । ଡାକ୍ତରବାବୁ କହିଲେ ଆପଣ କେଉଁଥିଲାଗି ଆସିଥିଲେ କହନ୍ତୁ । ଅଗତ୍ୟା ପୁଣି ବସିବାକୁ ପଡ଼ିଲା । ଘରେ ମୋ ଉପରେ ସମସ୍ତେ ବିରକ୍ତ ହେଉଥିବେ । ସ୍ତ୍ରୀ ଲୋକମାନେ ବେଶ ପୋଷାକ ହୋଇ ଅପେକ୍ଷା କରିବାକୁ ଆଦୌ ଭଲ ପାଆନ୍ତି

ନାହିଁ । ହେଲେ ଅଭୟବାବୁଙ୍କୁ ସେଠାରେ ଛାଡ଼ିଦେଇ ଆସି ହେଉନଥାଏ । ସେ ଡାକ୍ତରବାବୁଙ୍କୁ ଉତ୍କଳସମ୍ମିଳନୀ କଥା ବୁଝାଇ ଚାଲିଲେ । ଡାକ୍ତରବାବୁ କହିଲେ ଓଡ଼ିଶାର ସବୁ ଲୋକଙ୍କଠାରୁ ଆପଣ ଯଦି ଟଙ୍କାଏ କରି ଆଦାୟ କରନ୍ତି ତାହା ହେଲେ ଅତି କମ୍‌ରେ ତିନି କୋଟି ଟଙ୍କା ହୋଇପାରନ୍ତା । କହିଲି ଜଣେ ଭିକ୍ଷୁକ ଦ୍ୱାରଦ୍ୱାର ବୁଲି ଭିକ ମାଗିଲାବେଳେ ପ୍ରତି ଘରୁ ଆଠଣା ବା ଟଙ୍କାଏ କରି ପାଉଛି । ସାରାଜୀବନ ଭିକମାଗି ସେ ମଧ୍ୟ କୋଟିପତି ହୋଇ ପାରୁ ନାହିଁ । ଆମେ ଉତ୍କଳ ସମ୍ମିଳନୀ ପାଇଁ ଘରଘର ବୁଲି ଭିକ ମାଗିପାରିବୁନାହିଁ । ଏହି ସମ୍ମିଳନୀର ବହୁ କାର୍ଯ୍ୟ ବାକୀ ପଡ଼ିଛି । ସେସବୁକାର୍ଯ୍ୟ ଆମକୁ କରିବାକୁ ହେବ । ସେ କହିଲେ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟଚାନ୍ଦା ଏକଶହ ଟଙ୍କା ରଖାଯାଇଛି । ଅତିକମ୍‌ରେ ଏକ ହଜାର ସଭ୍ୟ ସଂଗ୍ରହ କରିବା ଆପଣଙ୍କ ପକ୍ଷରେ କଷ୍ଟସାଧ୍ୟ ନୁହେଁ । ଏକହଜାର ଲୋକଙ୍କଠାରୁ ଲକ୍ଷେ ଟଙ୍କା ମିଳିପାରିବ । କହିଲି ଆପଣଙ୍କ ପାଖକୁ ଆସିବା ପାଇଁ ମୋ ଗାଡ଼ିରେ ପେଟ୍ରୋଲ ପୋଡ଼ି ଏଠାରେ ଦେଢ଼ ଘଣ୍ଟା ସମୟ ଦେଇ ସାରିଲୁଣି । ଏକ ହଜାର ଲୋକଙ୍କ ପାଖରୁ ଲକ୍ଷେ ଟଙ୍କା ପାଇବାକୁ ଆମେ ଦେଢ ହଜାର ଘଣ୍ଟା ସମୟ ସାଙ୍ଗକୁ ଏତେ ପେଟ୍ରୋଲ ଖର୍ଚ୍ଚ କେଉଁଠୁ ଆଣିବୁ? ସେ କହିଲେ ମୋତେ ଗୋଟିଏ ଚାନ୍ଦାବହି ଦେଇଯାନ୍ତୁ । ମୁଁ ଆପଣଙ୍କୁ ଏକହଜାର ଟଙ୍କା ଆଦାୟକରି ଦେବି । ଆଉ କାଳବିଳମ୍ବ ନକରି ତାଙ୍କୁ ବହିଟିଏ ଦେଇ ବାହାରିଆସିଲୁ । ଅଭୟବାବୁଙ୍କୁ ଘରେଛାଡ଼ି ମୁଁ ଲେଉଟିଲା ବେଳକୁ ସନ୍ଧ୍ୟା ସାତଟା ହେବାକୁ ଅଳ୍ପ କେତେ ମିନିଟ୍ ବାକି ଥାଏ । ମୋ ସ୍ତ୍ରୀ ଓ ବୋହୂ ସେମାନଙ୍କ ଶାଢ଼ୀ ବଦଳାଇ ବସିଥିଲେ । ଆଉ ଯିବା କଥା ହେଲା ନାହିଁ । ବରଂ ମୋ ସ୍ତ୍ରୀ ଏଥି ଲାଗି ବିରକ୍ତ ହୋଇ ମୋ ସହିତ ଝଗଡ଼ା ଆରମ୍ଭ କରିଦେଲେ ।

ବାଲିଯାତ୍ରା ପାଖେଇ ଆସୁଥାଏ । ଦେଖିଲି, ଚାନ୍ଦା ମାଗିବାକୁ ଆଉ ବେଳନାହିଁ । ମୁଁ ଓ ଅଭୟବାବୁ ଯାଇ କଟକ ତହସିଲଦାରଙ୍କୁ ଭେଟିଲୁ । ସେ କହିଲେ ଏ ପର୍ଯ୍ୟନ୍ତ ଆମେ କୌଣସି ଅନୁଷ୍ଠାନକୁ ମାଗଣାରେ ଜାଗା ଦେଇନାହୁଁ । ଜାଗାଭଡ଼ା ସହିତ ଆପଣଙ୍କୁ ବିଦ୍ୟୁତ୍‌ଦେୟ ଦେବାପାଇଁ ପଡ଼ିବ । ଯଦି କଟକର ଜିଲ୍ଲାପାଳ ଆପଣଙ୍କୁ ଏସବୁ ଛାଡ଼ କରିବାକୁ ଆଦେଶ ଦେବେ, ତାହେଲେ ଆମର କୌଣସି ଆପତ୍ତି ନାହିଁ । ଦୁହେଁ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟକୁ ଗଲୁ । ସେ କଟକ ବାହାରକୁ ଯାଇଥାନ୍ତି । ଆମେ ତାଙ୍କ ବ୍ୟକ୍ତିଗତ ସହକାରୀଙ୍କୁ ଦରଖାସ୍ତଟା ବଢ଼ାଇ ଦେଇ ଆସିଲୁ । ପରଦିନ ଦୂରଭାଷରେ ପଚାରି ବୁଝିଲି ତାଙ୍କ ସହିତ ଆଜି ଦେଖା ହୋଇ ପାରିବନାହିଁ । ତାପରଦିନ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟକୁ ଗଲି । ସେ ଏକ ମିଟିଂରେ ଥାଆନ୍ତି ଆଉ ଡେରି ନକରି ବାଲିଯାତ୍ରା ପଡ଼ିଆକୁ ଗଲି । ତହସିଲଦାରଙ୍କ ଲୋକମାନେ କହିଲେ, ଆଉ କୌଣସି ଜାଗା ଖାଲି ନାହିଁ ।

ଲୋକମାନେ ସବୁ ନେଇଗଲେଣି । ପୂରା ହତାଶହୋଇ ପଡ଼ିଲି । ଧାଇଁଲି ତହସିଲଦାରଙ୍କ କାର୍ଯ୍ୟାଳୟକୁ । ତାଙ୍କ ସହିତ ଦେଖାହେଲା । ସେ କହିଲେ ଆପଣ ସନ୍ଧ୍ୟା ୫ଟା ବେଳକୁ ବାଲିଯାତ୍ରା ପଡ଼ିଆକୁ ଆସନ୍ତୁ, ଦେଖିବା । ଯଦି ଜାଗାଥାଏ, ସାଙ୍ଗେ ସାଙ୍ଗେ ଟଙ୍କା ଦାଖଲକରିବାକୁ ହେବ । ଆମର ଆଜି ଜାଗାବଣ୍ଟନର ଶେଷ ଦିନ ।

ସାଙ୍ଗେ ସାଙ୍ଗେ ଘରକୁ ଯାଇ ବ୍ୟାଙ୍କରୁ ଟଙ୍କା ବାହାର କରି ରଖିଲି । ସାଢ଼େ ଚାରିଟା ସୁଦ୍ଧା ବାଲିଯାତ୍ରା ପଡ଼ିଆକୁ ଗଲି । ଘଣ୍ଟାଏ ଅପେକ୍ଷା କରିବାପରେ ତହସିଲଦାର ଆସିଲେ । କାଗଜପତ୍ର ଦେଖି ସେ କହିଲେ ବାରବାଟୀ କିଲ୍ଲା ଗଡ଼ଖାଇ ପଟୁ ଚାରିଧାଡ଼ି ଛାଡ଼ି ପଞ୍ଚମ ଧାଡ଼ିରେ ଗୋଟିଏ ଜାଗା ଏକ ଦୋକାନୀ ନାଁରେ ଅଛି । ମାତ୍ର ସେ ଏପର୍ଯ୍ୟନ୍ତ ଟଙ୍କା ଦେଇନାହାନ୍ତି । ଆପଣ ଏବେ ସେଇ ଜାଗାଟା ନେଇଯାନ୍ତୁ । ମୁଁ ଟଙ୍କା ଦାଖଲକରି ଗୋଟିଏ ୧୫' × ୧୦' ଜାଗା ଉତ୍କଳ ସମ୍ମିଳନୀ ନାମରେ ନେଇଗଲି । ବିଦ୍ୟୁତ୍ ବିଭାଗରେ ଟଙ୍କା ଦେଇ ରସିଦ ଆଣି ସାରି ମଞ୍ଚ ତିଆରି ପାଇଁ ବ୍ୟବସ୍ଥା କରିବାକୁ ବହୁ ଲୋକଙ୍କୁ ପଚାରି ବସିଲି । ପୂର୍ବରୁ ଯେତେ ସଭା ଉତ୍କଳ ସମ୍ମିଳନୀ ପକ୍ଷରୁ ହୁଏ ସେଥିପାଇଁ କାଜିବଜାରର ଶ୍ରୀ ଗୋପୀନାଥ ଶତପଥୀ ମାଇକ୍ ଭଡ଼ା ଦିଅନ୍ତି । ତାଙ୍କୁ ନେଇ ଜଣେ କଣ୍ଟ୍ରାକ୍ଟର ପାଖକୁ ଗଲି । ସେ ଯଥା ଶୀଘ୍ର ମଞ୍ଚ ପ୍ରସ୍ତୁତ କରିବାକୁ ରାଜି ହେଲେ । ମାତ୍ର ବାର ହଜାର ଟଙ୍କା ନେବେ ବୋଲି କହିଲେ । ତା ଛଡ଼ା ମାଇକ୍ ଓ ବିଦ୍ୟୁତ ଆଲୋକ ସଜ୍ଜା ପାଇଁ ଅଲଗା ବ୍ୟବସ୍ଥା କରିବାକୁ ହେବ । ଗୋପିନାଥବାବୁ ସେ ଦାୟିତ୍ୱ ନେଲେ ଓ ସେଥିପାଇଁ ଛଅହଜାର ଟଙ୍କା ଦେବା ପାଇଁ କଥାହେଲା ।

ଏଥିପାଇଁ ବ୍ୟାନର୍ ତିଆରି କରିବାକୁ ହେବ । ଫୁଲସଜ୍ଜା, ବକ୍ତାମାନଙ୍କପାଇଁ ଚା' ଜଳଖିଆ ଓ ପ୍ରତିଦିନ ମଞ୍ଚକୁ ଯିବା ପାଇଁ ଗାଡ଼ି ଓ ପେଟ୍ରୋଲ ଯୋଗାଡ଼ କରିବାକୁ ହେବ । ମୋ ପାଶବହିରୁ ଟଙ୍କା ଉଠାଇ ମଞ୍ଚ ତିଆରି, ଲାଇଟ ଓ ମାଇକ ପାଇଁ ଅଗ୍ରୀମ ଟଙ୍କା ଦେବାରୁ କାମ ଆରମ୍ଭ ହେଲା । ଅଭୟବାବୁଙ୍କୁ ଡାକି ସାତଦିନ ପାଇଁ ବକ୍ତାମାନଙ୍କର ଏକ ତାଲିକା ପ୍ରସ୍ତୁତ କରି ସମସ୍ତଙ୍କ ପାଖକୁ ନିମନ୍ତ୍ରଣ ପତ୍ର ପଠାଇବାର ବ୍ୟବସ୍ଥା ହେଲା ।

ବକ୍ସିବଜାର ବଢ଼େଇ ସାହିର ଶ୍ରୀ କାଳିପ୍ରସନ୍ନ ବାରିକ ଓଡ଼ିଶାର ବରପୁତ୍ର ମାନଙ୍କର ତୈଳଚିତ୍ର ଆଙ୍କି ରଖନ୍ତି । ତାଙ୍କ ପାଖକୁ ଯାଇ ଦେଖିଲି, ସେ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଜୟଦେବ ଆଦି ଖ୍ୟାତନାମା କବି ଏବଂ ଓଡ଼ିଶାର ବହୁ ସ୍ୱନାମଧନ୍ୟ ରାଜା ମହାରାଜାମାନଙ୍କର ଚିତ୍ର ସହିତ ବିଭିନ୍ନ ମନ୍ଦିର ମାନଙ୍କର ଚିତ୍ର ଆଙ୍କି ରଖିଛନ୍ତି । ଏହା ଛଡ଼ା ପୁରୁଣା ଖବରକାଗଜରେ ବାହାରିଥିବା ବହୁ ବିଶିଷ୍ଟ ଘଟଣାବଳିର ଶୀର୍ଷକ ସବୁ ପ୍ରଦର୍ଶିତ କରିବାର ବ୍ୟବସ୍ଥା ସେ କରିଛନ୍ତି । ବାଲିଯାତ୍ରାରେ ଆମ ମଞ୍ଚ ତଳେ ଏକ ଚିତ୍ର

ପ୍ରଦର୍ଶନୀ କରିବାକୁ ତାଙ୍କୁ ଅନୁରୋଧ କଲି । ପ୍ରତିଦିନ ଏହି ମଞ୍ଚରୁ ବକ୍ତୃତା ଦେବା ପାଇଁ କଟକ ତଥା ଓଡ଼ିଶାର ବିଭିନ୍ନ ସ୍ଥାନରୁ ବକ୍ତାମାନଙ୍କୁ ଆମନ୍ତ୍ରିତ କରାଗଲା । ଏଥି ସହିତ ଉତ୍କଳ ସମ୍ମିଳନୀ କଟକ ଶାଖାର ସବୁ ସଭ୍ୟ ସଭ୍ୟାଙ୍କୁ ପ୍ରତିଦିନ ଏହି ମଞ୍ଚକୁ ଆସିବା ପାଇଁ ଅନୁରୋଧ କରାଗଲା । ସମସ୍ତଙ୍କୁ ଦୁଇଥର ଚା' ଓ ଥରେ ଜଳଖିଆ ଦେବାକୁ ଅତିକମ୍‌ରେ ସାତ ହଜାର ଟଙ୍କାର ଆବଶ୍ୟକତା ଦେଖି ପୂର୍ବରୁ ଯେତିକି ଅର୍ଥ ଯୋଗାଡ଼ କରିଥିଲି, ତା ଛଡ଼ା ମୋ ପାସ ବହିରୁ ସମୁଦାୟ ବାଇଶି ହଜାର ଟଙ୍କା ଉଠାଇବାକୁ ପଡ଼ିଲା । ଏ ବିଷୟରେ ଆମ ଘରେ ଲୋକେ ଯେପରି କିଛି ନ ଜାଣିବେ ସେଥିପାଇଁ ସାବଧାନ ରହିବାକୁ ଅଭୟବାବୁଙ୍କୁ ଅନୁରୋଧ କଲି ।

ଠିକ୍ କାର୍ତ୍ତିକ ପୂର୍ଣ୍ଣିମା ଦିନ ସନ୍ଧ୍ୟା ୬ଟା ବେଳେ ଉତ୍କଳ ସମ୍ମିଳନୀର ତତ୍‌କାଳୀନ ସଭାପତି ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ଏହି ମଞ୍ଚକୁ ଉଦ୍‌ଘାଟନ କଲେ । ଏହାପରେ ଅଧିବକ୍ତା ବିପିନି ବିହାରୀ ରଥ, ହୃଦାନନ୍ଦ ରାୟ, କିଶୋର ଚନ୍ଦ୍ର ତ୍ରିପାଠୀ, ମନୋରମା ମହାପାତ୍ର ଓ ଅଧ୍ୟାପକ ବିଚିତ୍ରାନନ୍ଦ ମହାନ୍ତି ପ୍ରମୁଖ ଅନ୍ୟ ଦିନମାନଙ୍କରେ ମୁଖ୍ୟ ଅତିଥି ଭାବେ ରହି କାର୍ଯ୍ୟକ୍ରମ ପରିଚାଳନା କଲେ । ସନ୍ଧ୍ୟା ୫ଟାରୁ ରାତି ୧୧ଟା ପର୍ଯ୍ୟନ୍ତ ବକ୍ତୃତା କାର୍ଯ୍ୟ ପ୍ରତିଦିନ ଚାଲୁ ରହେ । ବାଲିଯାତ୍ରାରେ ବୁଲୁଥିବା ଲୋକମାନେ ଆମ କଥା ଶୁଣୁଥିବାର ଅନୁଭବ କରୁଥାଉ । କଟକର ବହୁ ନେତା, ସାହିତ୍ୟିକ, ସମାଜସେବୀ ଓ ଉତ୍କଳ ସମ୍ମିଳନୀର ସଭ୍ୟସଭ୍ୟାମାନେ ମଞ୍ଚ ଉପରୁ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ବିଷୟ ସାଙ୍ଗକୁ ଓଡ଼ିଶାର ଇତିହାସ ତଥା ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆମାନଙ୍କ ଅବସ୍ଥା ବିଷୟରେ କହିଲାବେଳେ ଚାଲି ଯାଉଥିବା ଲୋକେ ଠିଆ ହୋଇଯାଇ ଆଗ୍ରହର ସହିତ ଏହି ଆଲୋଚନା ଶୁଣିବାର ଦେଖି ଉତ୍କଳ ସମ୍ମିଳନୀ ମଞ୍ଚର ଗୁରୁତ୍ୱ ଅନୁଭୂତ ହେଲା । ବକ୍ତାମାନଙ୍କ ମଧ୍ୟରେ ଶ୍ରୀ ଅନ୍ନଦା ପ୍ରସାଦ ରାୟ, ଶ୍ରୀ ବିକ୍ରମ କେଶରୀ ବର୍ମା, ମୁସ୍ତାଫିଜ୍ ଅହମ୍ମଦ, ଅଧ୍ୟାପକ ଖଗେନ୍ଦ୍ରନାଥ ମଲ୍ଲିକ, ରତ୍ନାକର ଚଇନି, ଅଧ୍ୟାପିକା ରେଖା ମହାନ୍ତି, ହୁସେନରବି ଗାନ୍ଧି, ସାହିତ୍ୟିକ ପଠାଣି ପଟ୍ଟନାୟକ, ବୃନ୍ଦାବନ ଚନ୍ଦ୍ର ରଥ, ଚକ୍ରଧର ବେହେରା, ଅଧିବକ୍ତା ଜଗଦୀଶ ମହାନ୍ତି, ଅକ୍ଷୟ କୁମାର ଦାସ, ବୀଣାପାଣି ମହାନ୍ତି, ସନ୍ଧ୍ୟାରାଣୀ ସିଂହ, ବୀଣା ସିଂହ, ନୃସିଂହ ଚରଣ ମଲ୍ଲ, ସାମ୍ବାଦିକ ଅରୁଣ କୁମାର ପଣ୍ଡା ଓ ବିଜୟ କୁମାର ଚକ୍ରବର୍ତ୍ତୀ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ବକ୍ତୃତା କାର୍ଯ୍ୟ ଚାଲିଥିବା ସମୟରେ ମଞ୍ଚତଳେ "ଓଡ଼ିଶାର ଐତିହ୍ୟ" ବିଷୟକ ଏକ ଛୋଟକାଟର ଚିତ୍ର ପ୍ରଦର୍ଶନୀ କାଳିପ୍ରସନ୍ନ ବାରିକ ଆୟୋଜିତ କରି ସର୍ବସାଧାରଣଙ୍କୁ ଦେଖାଇବାର ବ୍ୟବସ୍ଥା କରିଥାନ୍ତି ।

ପ୍ରତିଦିନ ସନ୍ଧ୍ୟା ୫ଟାରେ ମୁଁ ଓ ଅଭୟବାବୁ ଆସି ବନ୍ଦେ ଉତ୍କଳ ଜନନୀ କ୍ୟାସେଟ ଲଗାଇ ଆମର କାର୍ଯ୍ୟକ୍ରମ ଆରମ୍ଭ କରୁ । ଅନ୍ୟ ସବୁ ବକ୍ତା ଆସିବା ପୂର୍ବରୁ ଆମେ ଦୁହେଁ

ଭାଷଣ ଆରମ୍ଭ କରଦେଇ ଘଣ୍ଟାଏ ଦେଢ଼ଘଣ୍ଟା ସଭାକାର୍ଯ୍ୟ ଚଳାଉ । ତାପରେ ଅନ୍ୟମାନେ କହିବାକୁ ଆସନ୍ତି । ମଝିରେ ମଝିରେ ବକ୍ତାମାନଙ୍କର ଆସିବାରେ ବିଳମ୍ବ ହେଲେ ଆମେ ବକ୍ତୃତା କାର୍ଯ୍ୟକ୍ରମ ଚଳାଇ ରଖୁ । ଉତ୍କଳ ଜନନୀ, ବା ଓଡ଼ିଆ ଜାତି ଉପରେ କବିତା ଲେଖି ଆମ ସଭ୍ୟ/ସଭ୍ୟାମାନଙ୍କ ମଧ୍ୟରୁ ଅନେକ ଲୋକ ଏହି ମଞ୍ଚରୁ କବିତା ପାଠ କରନ୍ତି । ଦୀର୍ଘ ସାତ ଦିନ କାଳ ଆମର କାର୍ଯ୍ୟକ୍ରମ ଖୁବ୍ ସୁନ୍ଦର ଭାବେ ଚାଲିଲା । ସମସ୍ତେ ଏହାର ଗୁରୁତ୍ୱ ଅନୁଭବ କଲେ । କଟକର ହଜାର ହଜାର ଯୁବକ ଯୁବତୀ ଆମର ମଞ୍ଚ ବାଟ ଦେଇ ଚାଲିଯାଉଥିବା ବେଳେ ଠିଆ ହୋଇ ଆମ ବକ୍ତୃତା ଶୁଣୁଥିଲେ ଓ ବୟୋଜ୍ୟେଷ୍ଠ ଲୋକମାନେ ମେଳାରେ ବୁଲିବା ସମୟରେ ଅଧଘଣ୍ଟାଏ ବା ଘଣ୍ଟାଏ ଆମ ମଞ୍ଚ ସାମନାରେ ପଡ଼ିଥିବା ଚୌକିରେ ବସି ଓଡ଼ିଆ ଭାଷା, ସାହିତ୍ୟ ବା ସଂସ୍କୃତି ସମ୍ବନ୍ଧରେ ଭାଷଣ ଶୁଣି ସନ୍ତୁଷ୍ଟ ହୋଇ ଫେରୁଥିଲେ ।

ଉତ୍କଳ ସମ୍ମିଳନୀ କେନ୍ଦ୍ର ପରିଚାଳନା ସଭାର ସମ୍ପାଦକ, ଉପସଭାପତି ଓ ସଭ୍ୟମାନଙ୍କୁ ମଧ୍ୟ ଏହି ମଞ୍ଚ ଉପରୁ ଭାଷଣ ଦେବା ପାଇଁ ନିମନ୍ତ୍ରଣ କରାଯାଉଥିଲା । ତନ୍ମଧ୍ୟରୁ ଡକ୍ଟର ଗୋପାଳ କୃଷ୍ଣ ଶ୍ରୀଚନ୍ଦନ, ଶ୍ରୀଚରଣ ସ୍ୱାଇଁ ଓ ଶ୍ରୀ ପର୍ଶୁରାମ ଦ୍ୱିବେଦୀ ପ୍ରମୁଖ କେତେଜଣ ବ୍ୟକ୍ତି ଏହି ମଞ୍ଚକୁ ଆସି ଏହାର ଗୁରୁତ୍ୱ ଉପଲବ୍ଧି କଲେ । କେବଳ କଟକ କାହିଁକି ଓଡ଼ିଶାର ଅଧିକାଂଶ ଜିଲ୍ଲାରେ ହେଉଥିବା ମେଳା ମହୋତ୍ସବରେ ଉତ୍କଳ ସମ୍ମିଳନୀ ପକ୍ଷରୁ ଏପରି ମଞ୍ଚମାନ ଗଠନ କରାଯାଇ ପାରିଲେ ଓଡ଼ିଆ ଜାତୀୟତା ଭାବର ଅଧିକ ପ୍ରସାର ହେବାର ସମ୍ଭାବନା କଥା ଆମର ସଭ୍ୟସଭ୍ୟମାନେ ହୃଦୟଙ୍ଗମ କରୁଥିଲେ ।

ମୋ ଠାରୁ ନିମନ୍ତ୍ରଣ ପାଇ ଝାଡ଼ଖଣ୍ଡରୁ ଶ୍ରୀ ସରୋଜ କୁମାର ପ୍ରଧାନ ଆସି ପହଞ୍ଚିବା ପରେ ତାଙ୍କୁ ବିଚ୍ଛିନ୍ନାଞ୍ଚଳର ଜଣେ ଓଡ଼ିଆ ନେତା ଭାବେ ଏହି ମଞ୍ଚ ଉପରେ ଫୁଲତୋଡ଼ା ଦେଇ ସମ୍ବର୍ଦ୍ଧନା ଦିଆଗଲା । ସେଠାକାର ଓଡ଼ିଆମାନଙ୍କ ବିଷୟରେ ସେ ଅନେକ ତଥ୍ୟ ଦେଇ ଏହି ମଞ୍ଚରୁ ତାଙ୍କ ଭାଷଣ ପ୍ରଦାନ କଲେ । ସେହିପରି କାନାଡ଼ାରେ ଥାଇ ସେଠାରେ ଉତ୍କଳ ସମ୍ମିଳନୀର ଏକ ଶାଖା କରାଇଥିବାରୁ ମଣ୍ଟ୍ରିଆଲ୍‌ର ଶ୍ରୀମତୀ ସ୍ମୃତିରେଖା କାନୁନ୍‌ଗୋ ବାଲିଯାତ୍ରାକୁ ଆସିଥିବା ବେଳେ ଏହି ମଞ୍ଚରେ ତାଙ୍କୁ ମଧ୍ୟ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧିତ କରାଗଲା । ଏତେ ବଡ଼ ମେଳାରେ ଉତ୍କଳ ସମ୍ମିଳନୀ ପରି ଏକ ଜାତୀୟ ଅନୁଷ୍ଠାନ ପକ୍ଷରୁ ଯେ ମଞ୍ଚଟିଏ କରାଗଲେ ତାର ପ୍ରଭାବ କିପରି ସକାରାତ୍ମକ ହୋଇପାରେ ତାହା କଟକ ସହରବାସୀ ବିଶ୍ୱାସ କରିବା ପରି ମୋର ହୃଦୟଙ୍ଗମ ହେଲା । ସମ୍ମିଳନୀର କାର୍ଯ୍ୟକାରୀ କମିଟିରେ ଏଭଳି କାର୍ଯ୍ୟକ୍ରମର ଆବଶ୍ୟକତା ଅନୁଭବ କରି ଭବିଷ୍ୟତରେ ପ୍ରତିବର୍ଷ ବାଲିଯାତ୍ରା ମଞ୍ଚ କରିବା ଲାଗି ନିଷ୍ପତ୍ତି ନିଆଗଲା ।

# ଦ୍ୱିତୀୟ ଥର ଆମେରିକା ଯାତ୍ରା

ମୋ ସାନପୁଅ ଗୋପାଳପ୍ରସାଦ ଜଣେ ଇଞ୍ଜିନିୟର । ସେ କୁରୁକ୍ଷେତ୍ର ଆଞ୍ଚଳିକ ଇଂଜିନିୟରିଂ ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇସାରି ଓଡ଼ିଶା ଇଞ୍ଜିନିୟରିଂ କଲେଜରେ ଅଧ୍ୟାପନା ଆରମ୍ଭ କରିବାର ଛଅ ମାସ ପରେ ଯୁକ୍ତରାଷ୍ଟ୍ର ଆମେରିକାରେ ପଢ଼ିବାକୁ ଯାଇ ସେଠାରେ ଏମ୍.ଏସ୍. ଓ ପି.ଏଚ୍.ଡ଼ି. ଡ଼ିଗ୍ରୀ ହାସଲ କରିସାରି ଫୋର୍ଡ଼ କମ୍ପାନୀରେ ଚାକିରୀ ପାଇଲା । କଟକ ବାଦାମବାଡ଼ିରେ ରହୁଥିବା ଶ୍ରୀଜୟକୃଷ୍ଣ ଦାସଙ୍କର ସାନଝିଅ ସ୍ମିତା ସହିତ ତାର ବିବାହ ହୋଇଗଲା । ୨୦୦୨ ମସିହା ଡିସେମ୍ବର ପ୍ରଥମ ସପ୍ତାହରେ ମୁଁ ବୋହୂକୁ ନେଇ ଲଣ୍ଡନ ବାଟ ଦେଇ ଆମେରିକା ଗଲି । ସେତେବେଳକୁ ଫୋର୍ଡ଼ କମ୍ପାନୀ ପକ୍ଷରୁ ଲଣ୍ଡନରେ ରହି ଗୋପାଳ କାମ କରୁଥାଏ । ବୋହୂକୁ ଲଣ୍ଡନରେ ଛାଡ଼ି ଦେଇ ମିନେସୋଟାରେ ରହୁଥିବା ମୋ ଝିଅ ଦେବଶ୍ରୀ ପାଖକୁ ଗଲି । ସେଇଠି ମୋର ବନ୍ଧୁ ଶୀତକଣ୍ଠ ଦାଶ ରହନ୍ତି । ଶନିବାର ସନ୍ଧ୍ୟାରେ ତାଙ୍କ ଘରେ ଏକ ଭୋଜିର ଆୟୋଜନ କରି ମୋ ସହିତ ମିନିଆପଲିସ୍‌ର ବହୁ ଓଡ଼ିଆ ପରିବାରଙ୍କୁ ସେ ନିମନ୍ତ୍ରଣ କଲେ । ୧୯୯୮ ମସିହାରେ ଏଇ ସହରରେ ମୁଁ ଉତ୍କଳ ସମ୍ମିଳନୀର ଏକ ଶାଖା ପ୍ରତିଷ୍ଠା କରିଥିଲି । ସେହି ଶାଖାର ଅଧିକାଂଶ ସଭ୍ୟସଭ୍ୟା ତାଙ୍କ ଘରକୁ ଆସିଥାନ୍ତି । ସେମାନେ ମୋତେ ଦେଖି ବେଶ୍ ଆନନ୍ଦିତ ହେଲେ ଓ ଉତ୍କଳ ସମ୍ମିଳନୀ ବିଷୟରେ ନାନାଦି ପ୍ରଶ୍ନ କଲେ । ସେମାନଙ୍କର ଆଜୀବନ ସଭ୍ୟଚାନ୍ଦା ଉତ୍କଳ ସମ୍ମିଳନୀର ବହୁତ କାମରେ ଆସିଥିବା କଥା କହି ସେମାନଙ୍କୁ ଅଶେଷ ଧନ୍ୟବାଦ ଜଣାଇଲି ଓ ସମସ୍ତଙ୍କୁ ଗୋଟିଏ ଗୋଟିଏ "ବନ୍ଦେ ଉତ୍କଳ ଜନନୀ" କ୍ୟାସେଟ ଉପହାର ଦେଲି । ଶ୍ରୀ ଶରତଚନ୍ଦ୍ର ମହାପାତ୍ର, ଦୁର୍ଗାପ୍ରସାଦ ପଣ୍ଡା ଓ ଟନୀ ମିଶ୍ର ଆଦି ବିଚ୍ଛିନ୍ନାଞ୍ଚଳରେ କ'ଣ ସବୁ କାମ ଚାଲିଛି ବୋଲି ପଚାରିଲେ ।

ଯେଉଁ ଓଡ଼ିଆ ଲୋକେ ଆମେରିକାରେ ରହନ୍ତି ସେମାନେ ମାତୃଭୂମି ଓଡ଼ିଶା ବିଷୟରେ ଜାଣିବାକୁ ଉଦ୍‌ଗ୍ରୀବ ହୋଇ ବସିଥାନ୍ତି । ମାତୃଭୂମିର ଚିତ୍ର ସେମାନଙ୍କ ମନରେ ସଜଳ ହୋଇ ରହିଥାଏ । ଶ୍ରୀ ସୁଧାଂଶୁ ମିଶ୍ରଙ୍କ ପତ୍ନୀ ଷଢେଇକଳା-ଖରସୁଆଁର ଲୋକ । ସେ କହିଲେ କେବଳ ଷଢେଇକଳା-ଖରସୁଆଁ କାହିଁକି ସମସ୍ତ ସିଂହଭୂମ ଜିଲ୍ଲା ପାଇଁ ଉତ୍କଳ ସମ୍ମିଳନୀର କିଛି କର୍ତ୍ତବ୍ୟ ଅଛି । ଆପଣମାନେ କିଛି କରନ୍ତୁ । କହିଲି, ଆମ ହାତରେ ଅର୍ଥ ନାହିଁ । ମୁଁ ଓ ଶ୍ରୀ ପର୍ଶୁରାମ ଦ୍ୱିବେଦୀ ଦୁହେଁ ମାସକୁ ପାଞ୍ଚ ଶହ ଟଙ୍କା କରି ଚାନ୍ଦା ଦେଇ ତିନିଟି ଚାଟଶାଳୀ ଖୋଲାଇଛୁ । ଶହେଟି ଚାଟଶାଳୀ କରିବସିଲେ ବର୍ଷକୁ ଅତି କମ୍‌ରେ ପାଞ୍ଚ ଲକ୍ଷ ଟଙ୍କା ଖର୍ଚ୍ଚହେବ । ଦୁର୍ଗାବାବୁ କହିଲେ ମିନିଆପଲିସ୍‌ରେ ଥିବା

ଉତ୍କଳ ସମ୍ମିଳନୀର ସଭ୍ୟସଭ୍ୟାମାନେ ଚାନ୍ଦାକରି ଏଥିପାଇଁ କିଛି ଟଙ୍କା ଦେଇ ପାରନ୍ତୁ । ଶରତବାବୁ କହିଲେ, ସେ ଦାୟୀତ୍ୱ ମୁଁ ନେବି । ସୁଧାଂଶୁ ମିଶ୍ର କହିଲେ ଫ୍ଲୋରିଡାରେ ଥିବା ଡକ୍ଟର ଉଦୟନାଥ ଦାଶଙ୍କ ସହିତ ମୁଁ କଥା ହେବି । ସେ ଜଣେ ବଦାନ୍ୟ ଲୋକ । ସେ ମଧ୍ୟ ସାହାଯ୍ୟ କରିବେ । ୧୯୯୮ରେ ମୁଁ ଏଠିକି ଆସିଲା ବେଳେ ଏମାନେ ସମସ୍ତେ ସପରିବାର ଉତ୍କଳ ସମ୍ମିଳନୀର ଆଜୀବନ ସଦସ୍ୟ ହୋଇଥିଲେ । ସେମାନଙ୍କ ସଭ୍ୟଚାନ୍ଦା ବ୍ୟାଙ୍କରେ ଜମାରଖି ତା'ର ସୁଧରେ ସମ୍ମିଳନୀର ପ୍ରତିମାସର ଘରଭଡ଼ା ଦିଆଯାଇ ସରକାରୀ ଘର ନିଆ ହୋଇଥିଲା ଓ ଜଣେ ପିଅନର ଦରମା ମଧ୍ୟ ଦିଆଗଲା । ଏସବୁ କଥା ଶୁଣି ସମସ୍ତେ ଖୁସିହୋଇ ଆଉ ସାହାଯ୍ୟ ଦେବାକୁ ଆଗ୍ରହ ପ୍ରକାଶ କଲେ । ଭାବିଲି, ନିଷ୍ଠାପର ଭାବେ କାର୍ଯ୍ୟ କରିବାର ଏହାହିଁ ସୁଫଳ ।

ସେଦିନ ଏମାନଙ୍କ ସହିତ ଆଲୋଚନା କରି ମୋ ମନରେ ଅନେକ ଆଶା ଓ ବିଶ୍ୱାସ ଭରିଗଲା । ୧୯୯୮ ମସିହାରେ ଏଇ ମିନିଆପଲିସ୍‌ରୁ ଉତ୍କଳ ସମ୍ମିଳନୀ ଶାଖା ଗଠନ ଆରମ୍ଭ କରି ଆମେରିକା ଓ କାନାଡ଼ାରେ ସାତଟି ଶାଖା କରିଥିଲି । ଏବେ ମିନିଆପଲିସ୍‌ର ସଭ୍ୟ ସଭ୍ୟାମାନେ ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ପ୍ରସାର ଦିଗରେ ସାହାଯ୍ୟ କରିବାକୁ ମନ ବଳାଇଥିବା ଦେଖି ମୋତେ ଖୁବ୍ ଖୁସି ଲାଗିଲା । ଏଥରକ ଆଉ କିଛି ଅଧିକ ଆର୍ଥିକ ସାହାଯ୍ୟ ଉତ୍କଳ ସମ୍ମିଳନୀ କାର୍ଯ୍ୟ ପାଇଁ ଯୋଗାଡ଼ କରିବାର ଆଶା ମୋର ହେଲା । ତାହା ଛଡ଼ା ଆମେରିକାର ଅନ୍ୟ ସହର ମାନଙ୍କରେ ଆଉ କିଛି ଅଧିକ ଉତ୍କଳ ସମ୍ମିଳନୀ ଶାଖା କରିବା ପାଇଁ ମଧ୍ୟ ଭାବିଲି । ଶରତ ବାବୁଙ୍କୁ ମୋ ମନର କଥା କହିବାରୁ ସେ କହିଲେ, କାଲିଫର୍ଣ୍ଣିଆର ସାନ୍‌ଫ୍ରାନସିସ୍କୋ ଓ ଲସ୍‌ଏଞ୍ଜେଲେସ୍‌ରେ ବହୁତ ଓଡ଼ିଆ ରହନ୍ତି । ସେଠାରେ ଦୁଇଟି ଶାଖା ହୋଇ ପାରିବ । ମାତ୍ର ସିଆଡ଼େ ଯିବା ପାଇଁ ପ୍ଲେନ୍ ଭଡ଼ା ଟିକେ ଅଧିକ ପଡ଼ିବ ।

ଭାବିଲି ମୋ ଝିଅ ଦେବଶ୍ରୀକୁ କହିବି । ହେଲେ ମୋର ଆଉ ସାହସ ହେଲା ନାହିଁ । କାରଣ ଗତଥର ମୁଁ ଆମେରିକାର ବିଭିନ୍ନ ସହରକୁ ଯାଇ ଉତ୍କଳ ସମ୍ମିଳନୀ ଶାଖାମାନ ଗଠନ କରିବାପାଇଁ ତାର ପାଖାପାଖି ଦୁଇ ହଜାର ଡଲାର ଖର୍ଚ୍ଚ ହୋଇଗଲା । ତାକୁ ଆଉ କ'ଣ ବା କହିବି ? ତଥାପି ଉଦୟନାଥ ଦାଶଙ୍କ ପାଖକୁ ଯାଇ ବୁଲି ଆସିବି ବୋଲି କହିଲି । ସେ କହିଲା ହଉ, ଆପଣ କାନାଡ଼ା ଯାଇ ଡଲିଅପାଙ୍କ ଘରୁ ଫେରି ଆସନ୍ତୁ, ତାପରେ ଫ୍ଲୋରିଡ଼ା ଯିବା କଥା ଭାବିବେ । ଇତି ମଧ୍ୟରେ ମୋ ପୁଅ ଗୋପାଳ ଫୋର୍ଡ଼ କମ୍ପାନୀ ଛାଡ଼ି ବାକ୍ସ୍‌ଟର କମ୍ପାନୀରେ ଯୋଗ ଦେଲା । ଚିକାଗୋରେ ତାଙ୍କର ମୁଖ୍ୟ କାର୍ଯ୍ୟାଳୟ । ଡେଟ୍ରୟେଟରୁ ଯାଇ ଏଣିକି ତାକୁ ଚିକାଗୋରେ ରହିବାକୁ ହେବ । ଏ ଘରଟାକୁ ବିକ୍ରୀକରି ସେଠି ଗୋଟିଏ ଘର କିଣିବାକୁ ହେବ । କାନାଡ଼ାର ମଣ୍ଟ୍ରିୟାଲ୍‌ରେ

ରହୁଥିବା ମୋ ବୋହୂର ବଡ଼ଭଉଣୀ ଡଲି ମୋତେ ତାଙ୍କ ଘରକୁ ନିମନ୍ତ୍ରଣ କଲେ । ପୁଅ ମୋତେ ତା ଗାଡ଼ିରେ ନେଇ ଡେଟ୍ରୟେଟ ନଦୀ ଆରପାଖେ ଥିବା କାନାଡ଼ାର ଉଇଣ୍ଡସର୍ ସହରରେ ମଣ୍ଟ୍ରିଆଲ ଯିବାକୁ ରେଳଗାଡ଼ିରେ ବସାଇ ଦେଲା । ସେଠାରୁ ମଣ୍ଟ୍ରିଆଲ ଯିବାକୁ କାର୍‌ରେ ଦଶ ଘଣ୍ଟା ଲାଗେ । ମାତ୍ର ରେଳଗାଡ଼ିରେ ଆଠ ଘଣ୍ଟାର ବାଟ । ସେଥିରେ ପୁଣି ଏଇ ରେଳଗାଡ଼ି ପ୍ରତି ଷ୍ଟେସନରେ ରହିରହି ଯିବ ଓ ଟରଣ୍ଟୋରେ ଅଧଘଣ୍ଟାଏ ରହିବ ।

ଏହି ରେଳଗାଡ଼ିରେ ପ୍ରାୟ ୧୪/୧୫ଟି ବଗି । ଏଠାକାର ମାଲବାହୀ ରେଳଗାଡ଼ିରେ ପ୍ରାୟ ଶହେରୁ ଦେଢ଼ଶହ ୱାଗନ ଲାଗିଥାଏ । ଗୋଟିଏ ଗୋଟିଏ ମାଲଗାଡ଼ି ପ୍ରାୟ ଦେଢ଼ କିଲୋମିଟର ଲମ୍ବା ହେବ । ସେଥିରେ ଦୁଇଟି ଡିଜେଲ ଇଞ୍ଜିନ୍ ଲାଗିଥାଏ । ଯାତ୍ରୀ ଗାଡ଼ିରେ ମାତ୍ର ଗୋଟିଏ ଇଞ୍ଜିନ୍ । ହେଲେ ରେଳଗାଡ଼ିର ବେଗ ଦେଢ଼ ଶହ କିଲୋମିଟରରୁ କମ୍ ନୁହେଁ । ମାତ୍ର ଆମ ଦେଶରେ ବେଶ୍ ଶକ୍ତିଶାଳୀ ରେଳଇଂଜିନ ସବୁ ଥାଇ ମଧ୍ୟ ସେ ସମୟରେ ଆମ ଦେଶରେ ଯାତ୍ରୀବାହୀ ରେଳଗାଡ଼ିରେ ମାତ୍ର ଦଶ-ପନ୍ଦରଟି ବଗି ଏବଂ ମାଲଗାଡ଼ିରେ ୫୦/୬୦ଟି ୱାଗନ୍ ଯୋଡ଼ା ହେଉଥିଲା । ଭାବିଲି ଯଦି ଏହାର ଦୁଇଗୁଣ ବଗି ବା ମାଲ୍ ଡବା ଯୋଡ଼ା ଯାଇ ପାରନ୍ତା ତା ହେଲେ ଅଧିକ ମାଲ ପରିବହନ ସମ୍ଭବ ହୁଅନ୍ତା ଓ ଲକ୍ଷ ଲକ୍ଷ ଲୋକ ଉପକୃତ ହୋଇ ପାରନ୍ତେ । ତେବେ ମୁଁ ଦେଶକୁ ଫେରିବା ପରେ ଶ୍ରୀ ଲାଲୁ ପ୍ରସାଦ ଯାଦବ ଆମର ରେଳବାଇ ମନ୍ତ୍ରୀ ଥିଲା ସମୟରୁ ଅଧିକ ସଂଖ୍ୟକ ଯାତ୍ରୀବାହି ବଗି ଓ ମାଲଡବା ସଂଯୋଗ ହେଉଛି । ତଥାପି ଆମ ରେଳବାଇରେ ବିଦ୍ୟୁତ୍ ଇଞ୍ଜିନ୍ ବ୍ୟବହାର ଫଳରେ ଡିଜେଲ ଇଞ୍ଜିନ ତୁଳନାରେ ଆହୁରି ଅଧିକ ଓଜନର ବଗି ବା ୱାଗନ୍ ଟାଣିବା ଶକ୍ତି ବଢ଼ିଯାଇଛି । ତଦନୁଯାୟୀ ପ୍ରତି ଯାତ୍ରୀବାହି ରେଳଗାଡ଼ିରେ ଯଦି ବଗିସଂଖ୍ୟା ପଚିଶ ବା ତରିଶି ପର୍ଯ୍ୟନ୍ତ ବଢ଼ାଇ ହୁଅନ୍ତା ତେବେ ଯାତ୍ରୀମାନଙ୍କର ଯିବା ଆସିବାରେ ଆହୁରି ସୁବିଧା ହୋଇପାରନ୍ତା । କାନାଡ଼ା ଓ ଆମେରିକାରେ ରେଳଯାତ୍ରା ବେଶ୍ ଆରାମଦାୟକ । ଯାତ୍ରୀ ଭିଡ଼ ନାହିଁ । ବସିବା ପାଇଁ ଭଲ ଚଉଡ଼ା ସିଟ୍ । ବିମାନରେ ଥିବା ବାଥରୁମ୍ ପରି ଅତି ପରିଷ୍କାର ପରିଚ୍ଛନ୍ନ ଓ ସୁବାସିତ ପାଇଖାନା ।

ମଣ୍ଟ୍ରିଆଲ୍‌ରେ ପହଞ୍ଚି ବୋହୂର ବଡ଼ଭଉଣୀ ଡଲି ଘରେ ରହିଲି । ୧୯୯୮ ମସିହାରେ ଡଲି ଜରିଆରେ ଟରଣ୍ଟୋ ସହରରେ ଉତ୍କଳ ସମ୍ମିଳନୀର ଏକ ଶାଖା ଗଠିତ ହୋଇଥିଲା । ଏଠାରେ ପ୍ରାୟ ୨୨ ଜଣ ସଭ୍ୟ ସଭ୍ୟା ଅଛନ୍ତି । ସେମାନଙ୍କ ପାଇଁ "ବନ୍ଦେ ଉତ୍କଳଜନନୀ" କ୍ୟାସେଟ୍ ଆଣି ଡଲିଙ୍କୁ ଦେଲି । ସେ ସମସ୍ତଙ୍କୁ ବାଣ୍ଟିଦେବେ । ସାନ୍‌ଫ୍ରାନ୍‌ସିସ୍କୋ ଓ ଲସ୍ ଏଞ୍ଜେଲେସରେ ଦୁଇଟି ଉତ୍କଳ ସମ୍ମିଳନୀ ଶାଖା କରିବାପାଇଁ ଡଲି ପାଖରେ ମୋର ଇଚ୍ଛା ବ୍ୟକ୍ତ କଲି । ସାନ୍‌ଫ୍ରାନ୍‌ସିସ୍କୋରେ ଡଲିଙ୍କ ସାଙ୍ଗ ଅନ୍ନପୂର୍ଣ୍ଣା ରହନ୍ତି । ସେ ତାଙ୍କୁ ଡାକି କଥା ହେଲେ । ଅନ୍ନପୂର୍ଣ୍ଣା କହିଲେ ଏଠି ସ୍ୱନାମଧନ୍ୟ ଓଡ଼ିଆ

ଲେଖକ ଗୋପିନାଥ ମହାନ୍ତିଙ୍କ ଝିଅ ଅଞ୍ଜଳିକା ରହନ୍ତି । ସେ ଏଠକାର ଜଣେ ନେତୃସ୍ଥାନୀୟା ମହିଳା । ତାଙ୍କୁ କହିଲେ ସେ ସ୍ଥାନୀୟ ଓଡ଼ିଆ ମାନଙ୍କୁ ଡକାଇ ଏକତ୍ରିତ କରିପାରିବେ । ଡଲି ଦୂରଭାଷରେ ଅଞ୍ଜଳିକାଙ୍କ ସହିତ କଥା ହେଲେ । ମୁଁ ମଧ୍ୟ ତାଙ୍କ ସହିତ କଥାହେଲି । ସେ କହିଲେ, ଆପଣ ଆସନ୍ତୁ । ମୁଁ ସବୁ ବ୍ୟବସ୍ଥା କରିବି । କହିଲି, ମୋର ଯେବେ ଯିବାର ହେବ, ଆଗରୁ ଜଣାଇବି ।

କାନାଡ଼ାର ରାଜଧାନୀ ଅଟାଓ୍ୱାଠାରେ କୁମାର ଉତ୍ସବ ପାଳିତ ହେଉଥିବାର ଶୁଣି ଡଲି ସେଠାକାର ପ୍ରକାଶ ପଟ୍ଟନାୟକଙ୍କୁ ଫୋନ୍‌ରେ ଡାକି ମୋର ଉପସ୍ଥିତି କଥା ଜଣାଇ ଦେଲେ । କୁମାର ଉତ୍ସବରେ ଉପସ୍ଥିତ ଓଡ଼ିଆ ମାନଙ୍କୁ ମୁଁ କିଛି ଉଦ୍‌ବୋଧନ ଦେବାକୁ ଚାହୁଁଛି ବୋଲି ମଧ୍ୟ ଡଲି ତାଙ୍କୁ କହିଲେ । ସେ କହିଲେ ଆପଣମାନେ ଆସନ୍ତୁ ସେସବୁର ବ୍ୟବସ୍ଥା ହେବ । କୁମାରଉତ୍ସବ ପାଳନଦିନ ଆମେ ସକାଳୁ ଆଟାଓ୍ୱା ବାହାରିଗଲୁ । ଅଟାଓ୍ୱାର ଏକ ପ୍ରେକ୍ଷାଳୟ ଭଡ଼ାନେଇ ଏହି ଉତ୍ସବ ପାଳିତ ହେଉଥାଏ । ମୁଁ ଗୋଟିଏ ଉତ୍କଳବନ୍ଦନା କ୍ୟାସେଟ ନେଇ ଉଦ୍ୟୋକ୍ତାମାନଙ୍କୁ ଦେଇ ଉତ୍ସବ ପ୍ରାରମ୍ଭରେ ବଜାଇବାକୁ କହିଲି । କ୍ୟାସେଟ୍ ଦାୟୀତ୍ୱରେ ଥିବା ଦୁଇଜଣ ଯୁବକ ମୋ ଠାରୁ କ୍ୟାସେଟ୍ ନେଇ ଲଗାଇବାକୁ ରଖିଲେ । ମାତ୍ର ଏଠାରେ ରହୁଥିବା ସମ୍ବଲପୁରର ଜଣେ ଲୋକ ମୋ ପାଖକୁ ଆସି ବନ୍ଦେ ଉତ୍କଳଜନନୀ କ୍ୟାସେଟ ବଜାଇବାର ବିରୋଧ କଲେ । ଏହା ଓଡ଼ିଆ ମାନଙ୍କର ଜାତୀୟ ସଙ୍ଗୀତ କହି ତାଙ୍କୁ ବୁଝାଇବାକୁ ଚେଷ୍ଟାକଲି । ସେ କହିଲେ ମୁଁ ଜଣେ କୋଶଳିଲୋକ । ଆମେ ଉତ୍କଳୀୟ ନୋହୁଁ । କହିଲି, କୋଶଳ, କଳିଙ୍ଗ, ଉତ୍କଳ ବା ଉଡ୍ର ସବୁ ହେଉଛି ଓଡ଼ିଆ ଜାତିର । ଆପଣଙ୍କର ମାତୃଭାଷା ଓଡ଼ିଆ । ଆମେ ଏଠାରେ ଯେତେ ଓଡ଼ିଆ ଏକତ୍ରିତ ହୋଇଛେ ସମସ୍ତେ ଓଡ଼ିଆ ବୋଲି କୁମାର ଉତ୍ସବ ପାଳନ କରୁଛନ୍ତି  କୁମାରପୂର୍ଣ୍ଣିମା, ଓଡ଼ିଆଜାତିର ଏକ ପର୍ବ । ତେଣୁ ସେହି ପର୍ବ ପାଳନ ବେଳେ ଓଡ଼ିଶାର ଜାତୀୟ ସଙ୍ଗୀତ ଗାନ କରିବା ଆମର କର୍ତ୍ତବ୍ୟ । ସେ କହିଲେ, ଯାହା ବି ହେଉ, ମୁଁ ଏହାକୁ ବିରୋଧ କରିବି । ମୁଁ ଯାଇ ଉତ୍କଳବନ୍ଦନା କ୍ୟାସେଟ୍‌ଟି ଫେରାଇ ଆଣିଲି । ମନଟା ମୋର ଭାଙ୍ଗିଗଲା । ମାତ୍ର ଚାଳିଶି ପଚାଶ ଜଣ ଓଡ଼ିଆଙ୍କ ଭିତରେ ଏତେ ବାଦବିବାଦ ଏତେ ବିଭେଦ! ମାତୃଭୂମି ଓଡ଼ିଶାଠାରୁ ବିଚ୍ଛିନ୍ନ ହୋଇ ପୃଥିବୀର ଅପର ପାର୍ଶ୍ୱରେ ରହିଲେ ମଧ୍ୟ ଆମ ଭିତରେ ଏକତା ନାହିଁ, ଭ୍ରାତୃଭାବ ନାହିଁ । ଏସବୁ ଭାବି ବହୁତ ଦୁଃଖ ଲାଗୁଥାଏ ।

କୁମାରଉତ୍ସବ ଆରମ୍ଭ ହେଲା । ସେହି ପ୍ରେକ୍ଷାଳୟରେ ପ୍ରାୟ ଏକ ହଜାର ଦର୍ଶକ ବସିଥାନ୍ତି । ଡଲିଙ୍କୁ ପଚାରିଲି ଏମାନେ ସମସ୍ତେ କ'ଣ ଓଡ଼ିଆ ? ଜଣେ କର୍ମକର୍ତ୍ତା କହିଲେ ଏଠାରେ ପିଲାଛୁଆ ମିଶାଇ ପ୍ରାୟ ଆମେ ଦୁଇଶହ ଓଡ଼ିଆ ଅଛୁ । ବାକି ସମସ୍ତେ

କାନାଡ଼ାର ଧଳାଲୋକ, ଚୀନାଲୋକ, ବଙ୍ଗାଳୀ, ହିନ୍ଦୀଭାଷୀ ପଞ୍ଜାବୀ ଓ ଦକ୍ଷିଣ ଭାରତୀୟ ପରିବାରମାନେ ଅଛନ୍ତି । ପ୍ରେକ୍ଷାଳୟଟି ଭରପୂର ହୋଇଥାଏ । ସବୁତକ ଆଲୁଅ ଲିଭାଇ ଦେଇ ଅନ୍ଧାର ଭିତରେ ମଞ୍ଚର ପରଦା ଉଠିଗଲା । ଭିତରୁ ଏକ ଥାଳିରେ ସାତଟି ଦୀପ ଧରି ସାତଜଣ ଝିଅ ବାହାରି ଆସିଲେ । ଶଙ୍ଖ ଓ ହୁଳହୁଳିରେ ପ୍ରେକ୍ଷାଳୟଟି ଫାଟି ପଡୁଥାଏ । ମନେ ପଡ଼ିଗଲା କୁଆଁର ପୁନେଇଁରେ ଅଭିଆଡ଼ି ଝିଅଙ୍କର ଚନ୍ଦ୍ର ବନ୍ଦାପନା । କାହିଁ କେତେ ଦୂରରେ ରହିଲାଣି ଭାରତବର୍ଷ । ତାର ପୂର୍ବ ଭାଗରେ ମୋର ପବିତ୍ର ଜନ୍ମଭୂମି ଉତ୍କଳ । ମହୋଦଧି ଯାହାର ଚରଣ ଧୋଇଦିଏ । ସେଇ ମହୋଦଧିର ତୀରେ ତୀରେ ଆମ୍ର, ପଣସ, ନାରିକେଳ, ଗୁବାକ, ବର, ଅଶ୍ୱତ୍ଥ, ପୁନ୍ନାଗ ଆଦି ବିଭିନ୍ନ ବୃକ୍ଷରାଜି ଶୋଭା ପାଉଥାନ୍ତି । ଅସଂଖ୍ୟ ସ୍ୱଚ୍ଛସଲିଳା ତଟିନୀମାଳାରେ ବିଭୂଷିତ ଯାହାର ଅଙ୍ଗ, ଯାହାର ବକ୍ଷଦେଶ ଅଗଣିତ ନୀଳ ପର୍ବତମାଳାରେ ତରାଙ୍ଗାୟିତ, ନାନା ଜାତିର କୋଟି କୋଟି ବିହଙ୍ଗମ ଲଳିତ ସ୍ୱରରେ ରାବକରି ଯାହାଙ୍କୁ ମାଆ ମାଆ ବୋଲି ସମ୍ବୋଧନ କରୁଥାନ୍ତି, ସେଇ ମୋର ଉତ୍କଳ ଜନନୀ । ଆଜି ପୃଥିବୀର ଅପରପାର୍ଶ୍ୱରେ ସେଇ ମାଆର ସ୍ମୃତି ବହନକରି ତାର ବିଦେଶାଗତ ସନ୍ତାନସନ୍ତତିମାନେ କୁମାର ଉତ୍ସବ ପାଳନ କରୁଛନ୍ତି । ଲଙ୍କାରେ ହରିଶବ୍ଦ ହେବାପରି ଅଟାଓ୍ୱା ମହାନଗରୀର ଏଇ ପ୍ରେକ୍ଷାଳୟଟା ଶଙ୍ଖ ହୁଳହୁଳି ଶବ୍ଦରେ ଫାଟି ପଡୁଛି । ଅଜାଣତରେ ମୋ ଆଖିରେ ଭରିଗଲା ଆଖିଏ ଲୁହ । ଜନ୍ମମାଟିର ପବିତ୍ର ସ୍ମୃତିରେ ମୋ ବକ୍ଷରୁ କୋହ ଉଠି ଆସୁଥିଲା । କୌଣସିମତେ ନିଜକୁ ସମ୍ଭାଳି ନେଇ ସ୍ଥାନୀୟ ଓଡ଼ିଆ ମାନଙ୍କର ଏ ଆୟୋଜନ ଦେଖିବାକୁ ମୁଁ ବସିପଡ଼ିଲି । ନବ ପରିଣିତା କେତେଜଣ ଓଡ଼ିଆ ବୋହୂ ମିଶି "କୁଆଁର ପୁନେଇ ଜହ୍ନଲୋ ଫୁଲ ବଉଳବେଣୀ" ଗୀତ ଗାଇଲେ । ତାପରେ ପୁଚିଖେଳ, ତାପରେ ହାତଧରାଧରି ହୋଇ ପୁବାଇ ଗୀତ ଗାଇ ମଞ୍ଚ ଉପରେ ଝିଅମାନେ ନାଚିଲେ । ଓଡ଼ିଶୀ ନୃତ୍ୟ, ସମ୍ବଲପୁରୀ ନୃତ୍ୟ । ତାପରେ ଅଭିନୟ । ଦର୍ଶକମାନେ ତାଳି ବୃଷ୍ଟି କରୁଥାନ୍ତି । ମୋତେ ଜଣେ କର୍ମକର୍ତ୍ତା ଆସି ମଞ୍ଚ ଉପରକୁ ଯିବାକୁ ଡାକିଲେ । କହିଲି, ଏତେ ବଡ଼ ଆୟୋଜନରେ ଆମର ମାତୃବନ୍ଦନା ଗାନ କରାଗଲା ନାହିଁ । ତେଣୁ ମୁଁ ମଞ୍ଚରୁ କିଛି କହିବାକୁ ଚାହୁଁ ନାହିଁ । ସେ କହିଲେ ଆପଣ କ୍ୟାସେଟ ଦିଅନ୍ତୁ । ଏବେ ବନ୍ଦେ ଉତ୍କଳ ଜନନୀ ସଙ୍ଗୀତ ଗାନ କରାଯିବ । କହିଲି ସେ ସମ୍ବଲପୁରୀ ଭଦ୍ରଲୋକ ଏହାର ବିରୋଧ କରିବେ । ଆମ୍ଭମାନଙ୍କୁ ଏହା ଅପମାନ ପରି ଲାଗିବ । ସେ ଯାଇ ସେହି ସମ୍ବଲପୁରୀ ଭଦ୍ରଲୋକଙ୍କୁ ଡାକି ଆଣିଲେ; ଯିଏକି ନିଜେ ମୋ ହାତରୁ କ୍ୟାସେଟ ନେଇ ବଜାଇବେ ବୋଲି ବାହାରି ପଡ଼ିଲେ । ଆୟୋଜକ ବନ୍ଧୁଜଣକ ମୋତେ ଦର୍ଶକ ମାନଙ୍କ ସହିତ ପରିଚିତ କରାଇ ଓଡ଼ିଆ ଭାଷାରେ ଦିପଦ କହିବାକୁ ଅନୁରୋଧ କରିବାରୁ ମୁଁ ଉପସ୍ଥିତ ଓଡ଼ିଆ ମାନଙ୍କୁ ଏହି ଉତ୍ସବ କରାଇଥିବାର ସାଧୁବାଦ ଜଣାଇଲି । କାନାଡ଼ା ରାଜ୍ୟରେ ରହି ନିଜର ଭାଷା ଓ ସଂସ୍କୃତି ବଜାୟ ରଖିବାକୁ

ଅନୁରାଧ କରି ପାଞ୍ଚ ସାତ ମିନିଟ କହିବା ପରେ "ବନ୍ଦେ ଉତ୍କଳ ଜନନୀ" କ୍ୟାସେଟ୍ ବାଜିଉଠିଲା । ସମସ୍ତ ଦର୍ଶକ ଠିଆ ହୋଇ ଉତ୍କଳ ଜନନୀଙ୍କୁ ସମ୍ମାନ ଜଣାଇଲେ । କାନାଡ଼ା ଆସିବାର ସୁଫଳ ମୋତେ ମିଳିଯିବା ପରି ବୋଧହେଲା । ସେହି ପ୍ରେକ୍ଷାଳୟରେ ଉପସ୍ଥିତ ଅନ୍ୟ ଦେଶ, ଅନ୍ୟ ଜାତିର ସହସ୍ରାଧିକ ଲୋକ ମୋ ମାତୃଭୂମିକୁ ଠିଆ ହୋଇ ସମ୍ମାନ ଜଣାଇବା ମୋ ମନରେ ଗର୍ବ ଆଣି ଦେଉଥିଲା । ସେମାନେ ହୁଏତ ଓଡ଼ିଶା କଅଣ ଜାଣି ନଥିବେ । ଆନନ୍ଦରେ ମୋ ଛାତି କୁଣ୍ଢେମୋଟ ହୋଇଗଲା ।

ସେଦିନ ରାତିରେ ଆମେ ଅଟାଓ୍ୱାର ପ୍ରକାଶ ଓ ଏଲି ପଟ୍ଟାନୟକଙ୍କ ଘରେ ରହିଲୁ । ପରଦିନ ସକାଳୁ ଜଳଖିଆ ଖାଇ କାନାଡ଼ା ପାର୍ଲାମେଣ୍ଟ ହାଉସ୍ ଓ କେନ୍ଦ୍ର କାର୍ଯ୍ୟାଳୟ ଦେଖିସାରି ମଣ୍ଟ୍ରିଆଲ ଫେରିଲୁ । ସେଦିନ ମୋର ଏକାଦଶୀ ଥାଏ । ମଣ୍ଟ୍ରିଆଲ୍‌ରେ ପହଞ୍ଚି ଫଳାହାର କରିବାକୁ ମୁଁ ମନସ୍ଥ କରିଥାଏ ।

ପ୍ରାୟ ଶହେମାଇଲ ଆସିବା ପରେ ଗାଡ଼ି ଚଳାଇବାରେ ଅସୁବିଧା ହେଲା । ଇଞ୍ଜିନ୍‌ରେ କିଛି ଗଣ୍ଡଗୋଳ ହୋଇଛି । ଡଲିଙ୍କ ସ୍ୱାମୀ ଜିତେନ୍ଦ୍ର କାନୁନ୍‌ଗୋ ଦୂରଭାଷରେ ନିକଟବର୍ତ୍ତୀ ସହରରେ ଥିବା ତାଙ୍କର ଜଣେ ବଙ୍ଗୀୟ ବନ୍ଧୁଙ୍କୁ ଏ ଖବର ଜଣାଇଲେ । ସେ କହିଲେ ଆପଣମାନେ ସେଇଠି ଥାଆନ୍ତୁ । ମୁଁ ଗାଡ଼ି ସଜାଡ଼ିବାର ଗ୍ୟାରେଜ୍‌କୁ ଖବର ଦେଉଛି । ସେ ଗାଡ଼ିକୁ ଟାଣି ନେଇ ସଜାଡ଼ି ସାରିଲେ ଆପଣମାନେ ଯିବେ । ଏତେକ ସମୟ ଆପଣ ଆମଘରେ କଟାଇବେ ।

ପନ୍ଦର ମିନିଟ୍ ପରେ ସେହି ବଙ୍ଗୀୟ ଭଦ୍ରଲୋକ ଆସି ଆମ ତିନିଜଣଙ୍କୁ ତାଙ୍କ ଘରକୁ ନେଇଗଲେ । ଡଲି କହିଲେ, ମଉସାଙ୍କର ଆଜି ଏକାଦଶୀ । ଆମେ ମଣ୍ଟ୍ରିଆଲ୍ ପହଞ୍ଚି ତାଙ୍କ ପାଇଁ ଫଳାହାର ବ୍ୟବସ୍ଥା କରିଥାନ୍ତୁ । ସେ କହିଲେ ଆଜି ଏଇଠି ଏକାଦଶୀ ପାରଣା ହେଉ । ଆମକୁ ଖୁସି ଲାଗିବ । ଡଲି ଓ ଜିତେନ୍ଦ୍ର ବାବୁଙ୍କ ପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହେଲା । ସେହି ଭଦ୍ରଲୋକ ଆମର ଆସିବା ଖବର ତାଙ୍କର ପଡ଼ୋଶୀମାନଙ୍କୁ ମଧ୍ୟ ଜଣାଇ ଦେଇଥିଲେ । ଅପରାହ୍ନ ଚାରିଟା ସୁଦ୍ଧା ପାଞ୍ଚ ସାତଟି ବଙ୍ଗୀୟ ପରିବାର ସେଠାରେ ଏକତ୍ରିତ ହୋଇଗଲେ । ସମସ୍ତେ ବଙ୍ଗଳାଭାଷାରେ ଆମକୁ କୁଶଳ ପ୍ରଶ୍ନମାନ ପଚାରୁଥାନ୍ତି । ଡଲି ଓ ଜିତେନ୍ଦ୍ରବାବୁ ସେମାନଙ୍କ ସହିତ ବଙ୍ଗଳାରେ କଥା ହେଉଥାନ୍ତି । ମୁଁ କହିଲି ମୋତେ ବଙ୍ଗଳା କହି ଆସେନା । ସେମାନେ କହିଲେ ଆପଣ ମାତୃଭାଷା ଓଡ଼ିଆରେ କହନ୍ତୁ । ଆମେ ବୁଝି ନ ପାରିଲେ ଇଂରାଜିରେ ବୁଝାଇ ଦେବେ । ଦେଖିଲି ମାତୃଭାଷା ପ୍ରତି ସେମାନଙ୍କର ସର୍ବୋଚ୍ଚ ସମ୍ମାନ ରହିଛି । ସେମାନଙ୍କର ଛୋଟ ଛୋଟ ପିଲାମାନେ ଶୁଦ୍ଧ ବଙ୍ଗଳାରେ କଥା କହୁଥାନ୍ତି । ମଝିରେ କେଉଁଠି ପଦଟାଏ ମଧ୍ୟ ଇଂରାଜୀ ଶବ୍ଦ ନଥାଏ ।

ପଚାରିଲି ଆପଣମାନେ କେବେ କାନାଡ଼ା ଆସିଲେ ? ସେମାନେ କହିଲେ ଆମେ ସମସ୍ତେ ଏଇଠି ଜନ୍ମ ହୋଇଛୁ । ଆମର ବାପା ଓ ଜେଜେବାପାମାନେ ମଧ୍ୟ ଏ ଦେଶର ନାଗରିକ । ତେବେ ଆମ ଜେଜେବାପାମାନଙ୍କର ଜନ୍ମ ଇଂଲଣ୍ଡରେ । ସେମାନେ ଇଂଲଣ୍ଡରୁ ଏ ଦେଶକୁ ଚାଲିଆସିଥିଲେ । ସେମାନଙ୍କର ପିତାମାତା ସବୁ ବ୍ରିଟିଶ ନାଗରିକତ୍ୱ ଗ୍ରହଣ କରିଥିଲେ । ଉନବିଂଶ ଶତାବ୍ଦୀର ଶେଷଭାଗରେ କାନାଡ଼ା ସରକାର ଏ ଦେଶରେ କାର୍ଯ୍ୟ କରିବାକୁ ବ୍ରିଟିଶ ନାଗରିକମାନଙ୍କୁ ଆହ୍ୱାନ କରିବାରୁ ଆମର ଜେଜେବାପାମାନେ ଏଠିକୁ ଚାଲି ଆସିଥିଲେ । ପାଞ୍ଚପୁରୁଷ ଧରି ଆମେ ଭାରତ ଛାଡ଼ିଛୁ । ପଚାରିଲି ଆପଣମାନେ କେବେ କେମିତି ଭାରତ ଯାଆନ୍ତି କି ? ସେମାନେ କହିଲେ ଭାରତରେ କାହାସହିତ ଆଉ ଆମର ପାରିବାରିକ ସମ୍ପର୍କ ନାହିଁ । ମାତ୍ର ପର୍ଯ୍ୟଟକ ଭାବରେ ଥରେ ଦୁଇଥର ଭାରତ ଯାଇଛୁ । ପଚାରିଲି ଦୁଇଶହ ବର୍ଷ ଧରି ଆପଣମାନେ ଭାରତ ବାହାରେ ଥାଇ ମଧ୍ୟ କିପରି ଶୁଦ୍ଧବଙ୍ଗଳା ଭାଷା କହୁଛନ୍ତି ? ଆପଣଙ୍କର ସାନ ସାନ ପିଲାମାନେ କାନାଡ଼ାର ପ୍ରାଥମିକ ବା ମାଧ୍ୟମିକ ବିଦ୍ୟାଳୟରେ ଇଂରାଜୀ ଓ ଫ୍ରେଞ୍ଚ୍ ଭାଷାରେ ପାଠପଢ଼ି ମଧ୍ୟ ଶୁଦ୍ଧ ବଙ୍ଗଳାରେ କଥାଭାଷା କରିପାରୁଛନ୍ତି, ତାହା ମୋ ପାଇଁ ଏକ ଅଭିନବ ଅଭିଜ୍ଞତା । ପାଞ୍ଚ ପୁରୁଷ ଧରି କେମିତି ଆପଣ ପିଲାମାନଙ୍କୁ ବଙ୍ଗାଳି କରି ରଖିପାରିଛନ୍ତି ?

ସେମାନେ କହିଲେ, ମାତୃଭାଷା ଆମର ନିଜସ୍ୱ । ବଙ୍ଗ ପ୍ରଦେଶ, ବା ଭାରତବର୍ଷ ଆମଠାରୁ ବହୁ ଦୂରରେ ଥିଲେମଧ୍ୟ ଆମ ପୂର୍ବପୁରୁଷଙ୍କର ମାତୃଭୂମି ବା ଉତ୍ପତ୍ତିସ୍ଥଳ ଭାବେ ଆମପାଇଁ ସେ ଭୂମି ପବିତ୍ର । ମାତୃଭାଷା ବଙ୍ଗଳା ଆମର ହୃଦୟରେ ଅଛି । ଆମ ମୁହଁରୁ ସେ ଭାଷା କେହି ଛଡ଼ାଇ ନେଇ ପାରିବ ନାହିଁ । ଆମ ପିଲା, ଘରୁ ଗୋଡ଼ କାଢ଼ିଲେ ଇଂରାଜୀ ବା ଫ୍ରେଞ୍ଚ ଭାଷାରେ କଥା କହୁଛନ୍ତି । ମାତ୍ର ଘରେ ପଶିବା ମାତ୍ରେ ସେମାନେ ବଙ୍ଗଳା କହିବାକୁ ବାଧ୍ୟ । ବଙ୍ଗାଳି ପରିବାର ମାନେ ଏକତ୍ରିତ ହେଲେ ପିଲାମାନଙ୍କୁ ସମସ୍ତଙ୍କ ସାଙ୍ଗରେ ବଙ୍ଗଳାରେ କଥା କହିବାକୁ ପଡ଼େ । ତା ନ ହେଲେ, ସେମାନେ ଅସାମାଜିକ ବିବେଚିତ ହେବେ । ଅଣବଙ୍ଗାଳୀ ଭାରତୀୟମାନଙ୍କୁ ଦେଖିଲେ ଆମେ ବଙ୍ଗଳାରେ କଥା କହୁ । କାରଣ ଆପଣମାନେ ନିଶ୍ଚୟ ବଙ୍ଗଳା ବୁଝି ପାରିବେ । ମାତୃଭାଷା ବଙ୍ଗଳାକୁ ବଞ୍ଚାଇ ରଖିବା ଆମର ଧର୍ମ । ମାତୃଭାଷାକୁ ପାଶୋରି ଦେଲେ ଆମର ନିଜତ୍ୱ ରହିବ ନାହିଁ । ଏସବୁ କଥାଶୁଣି ସେମାନଙ୍କ ନିକଟରେ ସତେ ଯେପରି ମୁଁ ଅତି ଛୋଟ ହୋଇଯିବା ପରି ଲାଗୁଥାଏ । ସେମାନଙ୍କର ମାତୃଭାଷା ପ୍ରତି ଏକାନ୍ତ ନିଷ୍ଠା ଦେଖି ମଧ୍ୟ କୌଣସି ଓଡ଼ିଆ ପ୍ରଭାବିତ ହେବାର ମୁଁ କଳ୍ପନା କରିପାରୁ ନ ଥିଲି । ମୁଁ ଭାବୁଥିଲି, ଓଡ଼ିଆମାନଙ୍କ କଥା । ଆମ ମାତୃଭାଷା ଓଡ଼ିଆ ପ୍ରତି କାହାର ହେଲେ ମମତା ନାହିଁ । ଅନ୍ୟ ଭାଷାରେ କଥା କହିବାକୁ ଆମେ ଗର୍ବ କରୁ । ଗାଆଁ ଗଣ୍ଡାରେ ଲୋକମାନେ

ଆସୁନଥାନ୍ତି ହିନ୍ଦି ବା ବଙ୍ଗଳା କହିବାକୁ ଭଲ ପାଆନ୍ତି । ଶିକ୍ଷିତ ଓଡ଼ିଆମାନେ ଇଂରେଜୀ କହିବା ପ୍ରିୟ । ପିଲାମାନେ ଇଂରାଜି କହିଲେ ଓଡ଼ିଆ ଲୋକେ ଗର୍ବ କରନ୍ତି । ଓଡ଼ିଶାରେ ଥିବା ବା ଓଡ଼ିଶାକୁ ଯାଉଥିବା ବଙ୍ଗୀୟମାନଙ୍କର ମାତୃଭାଷା ପ୍ରୀତିରୁ ଆମେ କିଛି ମାତ୍ର ପ୍ରଭାବିତ ହେବାକୁ ଇଚ୍ଛା କରୁନା । ଏହା ଦେଖି ଅନ୍ୟ ଭାରତୀୟ ମାନେ ଆମକୁ ଯେ କେତେ ହୀନ ଭାବୁଥିବେ ସେଇକଥା ମୁଁ ଭାବୁଥିଲି ।

ସନ୍ଧ୍ୟା ଛଅଟା ସୁଦ୍ଧା ଆମ ଗାଡ଼ିଟା ମରାମତ ହୋଇ ଆସିଗଲା । ବଙ୍ଗୀୟ ବନ୍ଧୁମାନଙ୍କଠାରୁ ବିଦାୟ ନେଇ ଆମେ ମଣ୍ଟ୍ରିଆଲ୍ ଫେରି ଆସିଲୁ । ମାତ୍ର ଆମ ଓଡ଼ିଆମାନଙ୍କର ମାତୃଭାଷା ଓଡ଼ିଆ ପ୍ରତି ବିଦ୍ୱେଷ ଭାବ କଥା ମନେକରି ମୋତେ ବହୁତ ରାତି ପର୍ଯ୍ୟନ୍ତ ନିଦ ହେଲାନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରେ ଓଡ଼ିଆ ପିଲାଏ ଓଡ଼ିଆ କହି ପାରୁ ନାହାନ୍ତି । ଏପରିକି ଓଡ଼ିଶାରେ ମଧ୍ୟ ଲୋକମାନେ ଓଡ଼ିଆ କହିବାକୁ ଘୃଣା କଲେଣି । ସେମାନଙ୍କ ତୁଣ୍ଡରେ ଆଉ ଓଡ଼ିଆ ଶବ୍ଦ ପଶୁ ନାହିଁ । ଇଂରାଜି ଶବ୍ଦ ବ୍ୟବହାର କରି କଥାଭାଷା କରିବା ଆମ ଲୋକମାନଙ୍କ ପାଇଁ ଉଚ୍ଚ ସାମାଜିକ ବ୍ୟକ୍ତିତ୍ୱର ପରିଚୟ ହୋଇଛି । ଓଡ଼ିଆ ଲୋକେ ଆଉ ମାତୃଭାଷାରେ ଲୋଖାପଢ଼ା ମଧ୍ୟ କରିପାରୁ ନାହାନ୍ତି । କୌଣସି ସଭାସମିତି ବା ଆନୁଷ୍ଠାନିକ କାର୍ଯ୍ୟାଳୟ ମାନଙ୍କରେ ନିଜର ନାମ ଦସ୍ତଖତ କରିବାକୁ ହେଲେ ଓଡ଼ିଆମାନେ ଇଂରାଜୀରେ ନାମ ଲେଖୁଛନ୍ତି । ବିବାହ, ବ୍ରତ ବା ସାଂସ୍କୃତିକ ପର୍ବପର୍ବାଣିରେ ନିମନ୍ତ୍ରଣପତ୍ର ସବୁ ଇଂରାଜୀରେ ଛପାଯାଉଛି । ଏହି ରୋଗ ଏବେ ଗାଆଁ ଗହଳିକୁ ବ୍ୟାପିଗଲାଣି । ଏଥିପାଇଁ ପ୍ରତିକାର ଯେ କିଛି କରିହେବ, ସେ ଆଶା ଆଉ ନାହିଁ । ଏଭଳି ସବୁ ଚିନ୍ତା ମୋ ମନକୁ ଆନ୍ଦୋଳିତ କରିବାକୁ ଲାଗିଲା । ଓଡ଼ିଆ ଜାତିର ଆରାଧ ଦେବତା ପ୍ରଭୁ ଶ୍ରୀଜଗନ୍ନାଥ ହିଁ ଏ ଜାତିକୁ ରକ୍ଷା କରିବେ, ସେଇଆ ଭାବି ତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ଶୋଇଗଲି ।

କାନାଡ଼ାରୁ ପୁଣି ମୋ ଝିଅ ପାଖକୁ ମିନିଆପଲିସ୍ ଫେରି ଆସିଲି । ଏଥି ମଧ୍ୟରେ ସେ ମୋ ପାଇଁ ସାନଫ୍ରାନ୍‌ସିସ୍କୋ ଓ ସେଠାରୁ ଫ୍ଲୋରିଡ଼ାର ମାୟାମିକୁ ପ୍ଲେନ ଟିକେଟ କରି ରଖିଥିଲା । ମାୟାମିରେ ମୋର ଜଣେ ଅତି ପୁରାତନ ବନ୍ଧୁ ଡକ୍ଟର ପଲ୍‌ପ୍ରାସର ରହୁଥିଲେ । ମୁଁ ୧୯୬୫ ମସିହାରେ ସାଉଥ୍ ଡାକୋଟାର ବୃକିଂସ୍‌ରେ ପଢୁଥିଲା ବେଳେ ପଲ୍ ସେଠାରେ ଅଧ୍ୟାପନା କରୁଥିଲେ । ସେ ଜଣେ ପଞ୍ଜାବୀ ବ୍ରାହ୍ମଣ । ତାଙ୍କର ନାମ ଶ୍ରୀ ପ୍ରେମ୍ ପାଲ୍ ପ୍ରାସର୍ ଥିଲା । ମାତ୍ର ବୃକିଂସ୍‌ରେ ତାଙ୍କୁ କେବଳ ପଲ୍ ପ୍ରାସର ବୋଲି ସମସ୍ତେ ଜାଣୁଥିଲେ । ସେ ଜଣେ ଆମେରିକାନ୍ ଝିଅ ଡାର୍ଲିନ୍‌କୁ ଭଲ ପାଉଥିଲେ । ପ୍ରାୟ ଅଧିକାଂଶ ଶନିବାର ତାଙ୍କ ଘରକୁ ମୁଁ ରାତ୍ରିଭୋଜନ ପାଇଁ ଯାଉଥିଲି । ପଲ୍ ଓ ଡାର୍ଲିନ୍ ମୋତେ ବହୁତ ସ୍ନେହ କରୁଥିଲେ । ୧୯୬୮ ମସିହା ଶେଷ ଭାଗରେ ମୁଁ

ଆମେରିକା ଛାଡ଼ିଲି । ପଲ୍ ମୋତେ ଆଣି ବିମାନଘାଟୀରେ ଛାଡ଼ିଦେଇଗଲେ । ମାତ୍ର ୧୯୭୧ ମସିହାରେ ମୁଁ ଏକ ଦୁଃସମ୍ବାଦ ପାଇଲି ଯେ ପଲ୍ ପ୍ରାସର୍‌ଙ୍କର ଏକ କାର୍ ଦୁର୍ଘଟଣାରେ କେବଳ ମୁଣ୍ଡଟି ଛଡ଼ା ସାରାଦେହଟା ପାରାଲିସିସ୍ ହୋଇଯାଇଛି । ଡାର୍ଲିନ୍ ଆମେରିକାନ୍ ଝିଅ ହୋଇ ମଧ୍ୟ ତାଙ୍କୁ ଛାଡ଼ିଦେଇ ଚାଲି ଯିବାକୁ ଚାହିଁଲା ନାହିଁ । ସାରା ଜୀବନ ତାଙ୍କୁ ହ୍ୱିଲ ଚେୟାର୍‌ରେ ବସାଇ କଲେଜକୁ ନେବା ଆଣିବା କରିବା ଓ ତାଙ୍କର ସେବା କରିବାକୁ ସେ ଜୀବନର ବ୍ରତ ଭାବେ ଗ୍ରହଣକଲା । ପଲ୍ ପାଇଁ ସାରା ଜୀବନ ଉତ୍ସର୍ଗ କରିଦେବା ଏକ ଆମେରିକାନ୍ ଝିଅ ପକ୍ଷରେ ସମ୍ଭବ ବୋଲି ମୁଁ ଭାବି ପାରୁନଥିଲି । ତେଣୁ ମଝିରେ ମଝିରେ ସେମାନଙ୍କୁ ଚିଠି ଲେଖି ଏଥିଲାଗି ଡାର୍ଲିନ୍‌କୁ ଧନ୍ୟବାଦ ଜଣାଏ ଓ ତାର ମଙ୍ଗଳ କାମନା କରେ । ସେମାନେ ଚାକିରୀରୁ ଅବସର ନେଇ ଫ୍ଲୋରିଡ଼ା ଚାଲିଗଲେ ଓ ମାୟାମିରେ ରହିଲେ । ମୁଁ ଆମେରିକା ଗଲେ ତାଙ୍କ ପାଖକୁ ଯିବା ପାଇଁ ମୋତେ ନିମନ୍ତ୍ରଣ ଜଣାଇଥିଲେ । ମାୟାମିରୁ ୪୦୦ ମାଇଲ ଉତ୍ତରକୁ ଆଟ୍‌ଲାଣ୍ଟିକ୍ ମହାସାଗର ତୀର ଦେଶରେ ବନିତା ସ୍ପିଂ ସହରରେ ରହୁଥିଲେ ଡକ୍ଟର ଉଦୟନାଥ ଦାଶ । ତାଙ୍କ ପାଖକୁ ଯିବା ପାଁଇ ମଧ୍ୟ ସେ ମୋତେ ନିମନ୍ତ୍ରଣ କରିଥିଲେ । ନ୍ୟୁୟର୍କ ମହାନଗରୀରେ ଉତ୍କଳ ସମ୍ମିଳନୀ ଶାଖା ଗଢ଼ିବା ପାଇଁ ଆନୀ ଓ ପ୍ରଭାତ ମୋତେ ସାହାଯ୍ୟ କରିଥିଲେ । ସେମାନେ ମଧ୍ୟ ମେତେ ନିମନ୍ତ୍ରଣ ଜଣାଇଥିଲେ ।

ମୋ ଝିଅ ଦେବଶ୍ରୀ ମିନିଆପଲିସ୍‌ରୁ ସାନ୍‌ଫ୍ରାନ୍‌ସିସ୍କୋକୁ ଓ ସେଠାରୁ ଫ୍ଲୋରିଡ଼ାର ମାୟାମି ଏବଂ ମାୟାମିରୁ ବନିତା ସ୍ପିଙ୍ଗସ ଓ ବନିତାସ୍ପିଙ୍ଗସ୍‌ରୁ ନ୍ୟୁୟର୍କ ଦେଇ ମନିନିଆପଲିସ୍ ଫେରିବାକୁ ଏକ ଲମ୍ବାରାସ୍ତାର ବିମାନଯାତ୍ରା ପାଇଁ ଟିକେଟ୍ କରି ରଖିଥିଲା । ଟିକେଟଟି ମୋ ହାତକୁ ବଢ଼ାଇ ଦେଇ ସେ କହିଲା, "ବାପା ! ଆରଥରକୁ ଆମେରିକା ଆସିଲେ ଉତ୍କଳ ସମ୍ମିଳନୀ ପାଇଁ କୁଆଡ଼େ ଯିବା କଥା ମୋତେ ଆଉ କହିବେ ନାହିଁ । ମୁଁ ବୁଝିଗଲି ଯେ ଗତ ଥର ଏଥିପାଇଁ ପ୍ରାୟ ୨୦୦୦ ଡଲାର ଖର୍ଚ୍ଚ ଓ ଏଥର ପୁଣି ମୋର ଉତ୍କଳ ସମ୍ମିଳନୀ କାର୍ଯ୍ୟ ଲାଗି ସେ ପାଖାପାଖି ଦେଢ଼ ହଜାର ଡଲାର୍ ଖର୍ଚ୍ଚ କରୁଛି । କହିଲି ମା ! ଓଡ଼ିଆ ଜାତି ପାଇଁ ଉତ୍କଳ ଗୌରବ ମଧୁସୂଦନ ଦାସ ତାଙ୍କ ଜୀବନର ସମସ୍ତ ଅର୍ଜିତ ଧନ ସମ୍ପତ୍ତି ଖର୍ଚ୍ଚ କରିଦେଇ ଶେଷ ଜୀବନରେ ଦେବାଳିଆ ହୋଇଗଲେ । ତୋର ଏ ଖର୍ଚ୍ଚ କିଛି ପାଣିରେ ପଡ଼ିବ ନାହିଁ । ଓଡ଼ିଆ ଜାତି ପାଇଁ ତୋର ଏ ଖର୍ଚ୍ଚ ସତ୍‌ମାର୍ଗରେ ହେଉଛି । ଲୋକମାନେ ଧର୍ମ ମାର୍ଗରେ କୋଟି କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି । ଉତ୍କଳ ସମ୍ମିଳନୀ ବା ଓଡ଼ିଆ ଜାତି ଗଠନ କାର୍ଯ୍ୟରେ ଖର୍ଚ୍ଚ କରିବା ମଧ୍ୟ ଏକ ଧର୍ମକାର୍ଯ୍ୟ । ମା ଉତ୍କଳ ଜନନୀ ତୋତେ ଆଶୀର୍ବାଦ କରିବେ ।

ମିନିଆପଲିସ୍‌ରେ ଶରତ ମହାପାତ୍ର ମୋତେ ତାଙ୍କଘରକୁ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । କହିଲେ, ଆପଣ ଆସିବା ଦିନଠାରୁ ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ବିସ୍ତାର

ପାଇଁ ଏଠାକାର ଲୋକଙ୍କଠାରୁ ମୁଁ ଚାନ୍ଦା ସଂଗ୍ରହ କରୁଛି । ଏବେ ସୁଦ୍ଧା ମୋତେ ଦୁଇ ହଜାର ଡଲାର ଦାନର ପ୍ରତିଶ୍ରୁତି ମିଳିଛି । ଭାବୁଛି ଆହୁରି କିଛି ଦାନ ମିଳିବ । ଶୁଣିଲି ଆପଣ ସାନ୍‌ଫ୍ରାନ୍‌ସିସ୍କୋ ଓ ଫ୍ଲୋରିଡ଼ା ଯାଉଛନ୍ତି । ସେ ସବୁ ଜାଗାରୁ ନିଶ୍ଚୟ ଆପଣଙ୍କୁ ଏଥିଲାଗି କିଛି ସାହାଯ୍ୟ ମିଳିବ । ସୁଧାଂଶୁ ମିଶ୍ର କହୁଥିଲେ ଡକ୍ଟର ଉଦାୟନାଥ ଦାଶ ଉତ୍କଳ ସମ୍ମିଳନୀ ପାଇଁ କିଛି ଦେବେ ବୋଲି ମଧ ମନସ୍ଥ କରିଛନ୍ତି । ଏସବୁ କଥା ଶୁଣି ତାଙ୍କୁ ମୁଁ ଧନ୍ୟବାଦ ଜଣାଇଲି । କହିଲି, ଆପଣ ବିଚ୍ଛିନ୍ନାଞ୍ଚଳ ଶିକ୍ଷାପ୍ରସାର ପାଇଁ ଏଠାକାର ଓଡ଼ିଆ ଲୋକଙ୍କଠାରୁ ଯାହା ପାଉଛନ୍ତି ସେସବୁ ପାଖରେ ରଖନ୍ତୁ । ୪/୬ ମାସ ପରେ ଆପଣ ଓଡ଼ିଶା ଗଲାବେଳେ ସବୁତକ ଏକାଠି କରି ସାଙ୍ଗରେ ନେଇଯିବେ । ଏସବୁ ଟଙ୍କା ଏକାସଙ୍ଗେ ପାଇଲେ ଆମେ ବ୍ୟାଙ୍କ୍‌ରେ ସ୍ଥାୟୀଜମା ଭାବେ ରଖି ବିଚ୍ଛିନ୍ନାଞ୍ଚଳରେ ଚାଟଶାଳୀ ଖୋଲାଇ ପାରିବୁ । ତା'ଛଡ଼ା ସେ ଟଙ୍କାର ସୁଧକୁ କେଉଁ ବାଟରେ ଖର୍ଚ୍ଚ କରାଯିବ ଓ ତାହା କିପରି ପରିଚାଳିତ ହେବ, ସେ ବିଷୟରେ ଉତ୍କଳ ସମ୍ମିଳନୀକୁ ଆପଣ ଲିଖିତ ଭାବେ ଜଣାଇ ଦେବେ । ଶରତବାବୁ ମୋ ପ୍ରସ୍ତାବରେ ସମ୍ମତ ହେଲେ ।

ମୁଁ ସାନ୍‌ଫ୍ରାନ୍‌ସିସ୍କୋରେ ପହଞ୍ଚିଲା ବେଳକୁ ଅଞ୍ଜଳିକାଙ୍କ ସ୍ୱାମୀ ସୂର୍ଯ୍ୟ ପଟ୍ଟନାୟକ ମୋତେ ବିମାନଘାଟୀରୁ ଆସି ପାଛୋଟି ନେଲେ । ସାନ୍‌ହୋଜେର ଏକ ଡାକ୍ତରଖାନାରେ ଅଞ୍ଜଳିକା ମୁଖ୍ୟ ଡାକ୍ତର ଭାବେ କାମକରନ୍ତି । ତାଙ୍କ ସାନଭଉଣୀ ଟିଟା ଓ ତାର ସ୍ୱାମୀ ରାମବାବୁ ମଧ ଅଞ୍ଜଳିକା ପାଖରେ ଥାଆନ୍ତି । ତାଙ୍କର ପୁଅଟିଏ । ସାହିତ୍ୟ କ୍ଷେତ୍ରରେ ଭାରତର ସର୍ବଶ୍ରେଷ୍ଠ ସମ୍ମାନପ୍ରାପ୍ତ ଓଡ଼ିଆ ଔପନ୍ୟାସିକ ଗୋପିନାଥ ମହାନ୍ତି କର୍କଟ ରୋଗରେ ଆକ୍ରାନ୍ତହୋଇ ଝିଅ ଅଞ୍ଜଳିକା ପାଖରେ ଆସି ଏଇଠି ଚିକିତ୍ସିତ ହେଉଥିଲେ । ତାଙ୍କର ଦେହାନ୍ତ ହେଲା ଓ ପ୍ରଶାନ୍ତ ମହାସାଗର ତୀରରେ ତାଙ୍କ ମର ଶରୀରକୁ ଦାହ କରାଯାଇଥିଲା । କହିଲି, ଓଡ଼ିଆ ଜାତିର ଏଇ ସହର ଏକ ପୁଣ୍ୟକ୍ଷେତ୍ର । ସାହିତ୍ୟିକ ଗୋପିନାଥ ମହାନ୍ତିଙ୍କର ଏଠାରେ ମହାପ୍ରୟାଣ ଘଟିଥିଲା । ଉତ୍କଳ ସମ୍ମିଳନୀର ଜଣେ କର୍ମକର୍ତ୍ତା ଭାବେ ମୁଁ ଏଠାରେ ଉପସ୍ଥିତ ହୋଇପାରିବା ମୋର ସୌଭାଗ୍ୟ । ସେଦିନ ରାତିରେ ମୁଁ ବିଶ୍ରାମ ନେଲି । ମାତ୍ର ଅଞ୍ଜଳିକା, ଟିଟା, ସୂର୍ଯ୍ୟବାବୁ ଓ ରାମବାବୁ ଏକ ଶହ ଲୋକଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରିବାରେ ଲାଗିପଡ଼ିଲେ । ତାପରଦିନ ପୂର୍ବାହ୍ନ ୧୧ଟା ସୁଦ୍ଧା ସାନ୍‌ହୋଜେ ସହରର ବହୁ ଓଡ଼ିଆ ପରିବାର ସେଠାରେ ପହଞ୍ଚିଗଲେ । ମଧ୍ୟାହ୍ନ ସୁଦ୍ଧା ଖାଇବା ପିଇବା ଆରମ୍ଭ ହୋଇଗଲା । ପ୍ରାୟ ଗୋଟାଏ ବେଳକୁ ଉପସ୍ଥିତ ଲୋକମାନଙ୍କୁ ଉତ୍କଳ ସମ୍ମିଳନୀ ବିଷୟରେ କିଛି କହିବାପାଇଁ ମୋତେ ଅଞ୍ଜଳିକା ଅନୁରୋଧ କଲେ । ପ୍ରାୟ ଦେଢ଼ଘଣ୍ଟା ଧରି ଓଡ଼ିଆ ଜାତି, ଭାଷା, ସାହିତ୍ୟ ଓ ସଂସ୍କୃତିର ସ୍ଥିତି ବିଷୟରେ ମୁଁ କହିଲି । ଉତ୍କଳ ସମ୍ମିଳନୀ ପକ୍ଷରୁ ଏ ଦିଗରେ ଯାହା ସବୁ କରାଯାଇଛି ଓ ଏବେ ଯେଉଁସବୁ ପଦକ୍ଷେପ

ନିଆଯାଉଛି ସେ ବିଷୟରେ କହିଲି । ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷା ଆମର ଗୁରୁ ଦାୟିତ୍ୱ । ଏସବୁ କଥା ଶୁଣିବା ପରେ ବହୁଲୋକ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟସଭ୍ୟା ହେବା ପାଇଁ ଆଗ୍ରହ ପ୍ରକାଶ କଲେ । ସେଦିନ ପ୍ରାୟ ୪୦ ଜଣ ଲୋକ ସମ୍ମିଳନୀର ସ୍ଥାୟୀ ସଦସ୍ୟ ହୋଇଗଲେ । ଯୁକ୍ତରାଷ୍ଟ୍ର ଆମେରିକାରେ ଏହି ଶାଖା ସବୁଠାରୁ ବଡ଼ଶାଖା ଭାବେ ସ୍ୱୀକୃତ ହେଲା । ସେମାନଙ୍କଠାରୁ ସଭ୍ୟଚାନ୍ଦା ବାବଦ ୮୦୦ ଡଲାର ସଂଗୃହୀତ ହେଲା । ଉତ୍କଳ ସମ୍ମିଳନୀ ନାମରେ ସମସ୍ତେ ଚେକ୍ ଦେଇଦେଲେ । ଓଡ଼ିଶା ଫେରିବା ପରେ ଏଥିରୁ ପ୍ରାୟ ଟ୭୦,୦୦୦ ଉତ୍କଳ ସମ୍ମିଳନୀ ନାମରେ ସ୍ଥାୟୀଜମା ଭାବେ ରଖାଗଲା ।

ସାନ୍‌ଫ୍ରାନ୍‌ସିସ୍କୋରୁ ମୁଁ ଫ୍ଲୋରିଡ଼ାର ମାୟାମିକୁ ବିମାନଯାତ୍ରା କଲି । ବନ୍ଧୁ ପଲ୍ ପ୍ରାସର୍‌ଙ୍କ ଘରେ ଅତିଥିଭାବେ ସାତଦିନ ରହିବା ଭିତରେ ମୋର ଦେହ ଖରାପ ହେଲା । ସେଠାରେ କୌଣସି ଡାକ୍ତରଙ୍କୁ ପରାମର୍ଶ ନ କରି ମୁଁ ଡାକ୍ତର ଉଦୟ ନାଥ ଦାଶଙ୍କ ପାଖକୁ ବନିତାସ୍ପ୍ରିଙ୍ଗସ ଚାଲିଗଲି । ତାଙ୍କର ସ୍ତ୍ରୀ ଇରା ଦାଶ ମଧ୍ୟ ଜଣେ ଡାକ୍ତର । ଦୁହେଁ ମୋର ଚିକିତ୍ସାରେ ଲାଗିପଡ଼ିଲେ । ମୋ ପାକସ୍ଥଳିରୁ ରକ୍ତସ୍ରାବ (ମେଲିନା) ଆରମ୍ଭ ହୋଇଯାଇଥିଲା । ସେମାନେ ମୋତେ ଦୁଇ ଜଣ ଭାରତୀୟ ଡାକ୍ତରଙ୍କ ପାଖକୁ ନେଇ ଚିକିତ୍ସା କରାଇଲେ । ମୋ ପାକସ୍ଥଳିରେ ରକ୍ତସ୍ରାବ ହେଉଥବାରୁ ମୁଁ ଦୁର୍ବଳ ହୋଇପଡୁଥିଲି । ଡକ୍ଟର ଦାଶ ଓ ତାଙ୍କ ସ୍ତ୍ରୀ ରାତିସାରା ମୋତେ ରକ୍ତବର୍ଦ୍ଧକ ଔଷଧ ପିଆଇ ସକାଳକୁ ଜଣେ ଦକ୍ଷିଣ ଭାରତୀୟ ପାଥୋଲୋଜିଷ୍ଟଙ୍କ ପାଖକୁ ନେଇ ପରୀକ୍ଷା କରାଇଲେ ଓ ତାପରେ ଜଣେ ଉତ୍ତର ଭାରତୀୟ ସର୍ଜିକାଲ୍ ଡାକ୍ତରଙ୍କ ପାଖକୁ ନେଇ ମୋର ରକ୍ତକ୍ଷରଣ ବନ୍ଦ କରିବାର ଅପରେସନ୍ କରାଇଲେ । ଏ ଦୁଇ ଡାକ୍ତର ତାଙ୍କର ଫିସ୍ ବାବଦ ଏଗାର ହଜାର ଡଲାର (ପ୍ରାୟ ଛଅ ଲକ୍ଷ ଟଙ୍କା) ବିଲ୍ ଦେଇସାରି ଯେତେବେଳେ ଜାଣିଲେ ଯେ, ମୁଁ ଜଣେ ଓଡ଼ିଆ ନେତା ଭାବରେ ଆମେରିକା ଗସ୍ତକରୁଛି । ସେମାନେ ତାଙ୍କର ସମସ୍ତ ଫିସ୍ ଛାଡ଼ିଦେଲେ । ଏଥିଲାଗି ଉଦୟନାଥ ବାବୁ ସେମାନଙ୍କୁ ଧନ୍ୟବାଦ ଜଣାଇଲେ । ମୁଁ ମଧ୍ୟ ଦେଶକୁ ଫେରି ସେମାନଙ୍କ ପାଇଁ କିଛି ମୂଲ୍ୟବାନ ଉପହାର ପଠାଇଥିଲି । ଏଠାରେ ଉଲ୍ଲେଖ କରିବା କଥା ଯେ, ଯଦି କେହି ଆମେରିକାନ୍ ଡାକ୍ତର ମୋ ଚିକିତ୍ସା କରିଥାନ୍ତେ, ତା'ହେଲେ ସେମାନେ କେବେ ତାଙ୍କ ପ୍ରାପ୍ୟ ଛାଡ଼ି ନଥାନ୍ତେ । ମାତ୍ର ମୋତେ ଚିକିତ୍ସା କରିଥିବା ଦୁଇଜଣ ଡାକ୍ତର ଭାରତୀୟ ହୋଇଥିବାରୁ ଓଡ଼ିଆ ଜାତି ପ୍ରତି ସେମାନଙ୍କର ସମ୍ମାନ ଦେଖାଇ ମୋ ଲାଗି ଚିକିତ୍ସା ଖର୍ଚ୍ଚ ଛାଡ଼ିଦେଇଥିଲେ ।

ଇରା ଦାସଙ୍କ ଘରେ ଚାରିଦିନ କଟାଇବା ପରେ ମୁଁ ଝିଅ ପାଖକୁ ନ ଯାଇ ମୋ ପୁଅ ଗୋପାଳ ପାଖକୁ ଆର୍କାନ୍‌ସା ରାଜ୍ୟର ମାଉଣ୍ଟେନ୍‌ହୋମ୍ ସହରକୁ ଗଲି । ବାଟରେ

ନ୍ୟୁୟର୍କରେ ଅଟକିବାର ପ୍ରୋଗ୍ରାମ ବାତିଲ ହେଲା । ପୁଅ ପାଖରେ ରହି ମୋ ଦେହ ସମ୍ପୂର୍ଣ୍ଣ ସୁସ୍ଥ ହେଲା ପରେ ପୁଣି ଝିଅ ପାଖକୁ ମିନିଆପଲିସ୍ ଯାଇ ସେଇଠାରୁ ଓଡ଼ିଶା ଫେରିଲି । ଫ୍ଲୋରିଡ଼ାରେ ଡାକ୍ତର ଉଦୟନାଥ ଦାଶ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର ଲାଗି ଦୁଇଲକ୍ଷ ଟଙ୍କା ପଠାଇବେ ବୋଲି କହିଲେ । ମିନିଆପଲିସ୍‌ରେ ଶରତବାବୁ କହିଲେ ମିନେସୋଟା ଓଡ଼ିଆ ସମାଜ ପକ୍ଷରୁ ଆମେ ପାଖାପାଖି ତିନି ଲକ୍ଷ ଟଙ୍କା ସଂଗ୍ରହ କରିବୁ । ତେବେ ଉତ୍କଳ ସମ୍ମିଳନୀ କାମରେ ଆମେରିକା ସାରା ବୁଲି ବୁଲି ମୋର ଦେହ ଖରାପ ହେଲା ବୋଲି ମୋ ଝିଅ ଦେବଶ୍ରୀ ଓ ପୁଅ ଗୋପାଳ ମୋ ପ୍ରତି ସେମାନଙ୍କର ଅସନ୍ତୋଷ ବ୍ୟକ୍ତ କଲେ । ଝିଅ କହିଲା, ଆଉ ଆପଣଙ୍କୁ ଆମେରିକା ଆଣିବା ପାଇଁ ଆମର ସାହସ ହେଉନାହିଁ । ସେମାନଙ୍କ କଥାରେ ମୋର ଆଉ କିଛି ପ୍ରତ୍ୟୁତ୍ତର ଦେବାର ନ ଥିଲା । ଉତ୍କଳ ସମ୍ମିଳନୀ ପାଇଁ ପ୍ରାୟ ସତୁରୀ ହଜାର ଟଙ୍କାର ଆଜୀବନ ସଭ୍ୟଚାନ୍ଦା ଧରି ମୁଁ ଓଡ଼ିଶା ଫେରିଆସିଲି ।

## ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର

ଘରେ ପହଞ୍ଚି ଉତ୍କଳ ସମ୍ମିଳନୀର ସମ୍ପାଦକ ଶ୍ରୀ ଗୋପାଳକୃଷ୍ଣ ଶ୍ରୀଚନ୍ଦନଙ୍କୁ ଡକାଇ ଆଜୀବନ ସଭ୍ୟ ଚାନ୍ଦା ଚେକ୍‌ଟି ଧରାଇ ଦେଲି । ୧୯୯୮ ମସିହାରେ ଗୋପାଳବାବୁ ମୋଠାରୁ ଦୁଇଲକ୍ଷ ଟଙ୍କା ପାଇଥିଲେ । ଏଥର ପ୍ରାୟ ସତୁରୀ ହଜାର ଟଙ୍କାପାଇ ବେଶ୍ ଖୁସି ହୋଇଗଲେ । ଟଙ୍କାତକ ସମ୍ମିଳନୀ ନାମରେ ସ୍ଥାୟୀ ଜମା ଭାବେ ରଖାଗଲା । ସେହିଟଙ୍କାରୁ ସମ୍ମିଳନୀର କାର୍ଯ୍ୟାଳୟ ଖର୍ଚ୍ଚଚଳିବ । କହିଲି, ବିଚ୍ଛିନ୍ନାଞ୍ଚଳରେ ଶିକ୍ଷାବିସ୍ତାର ଲାଗି ଆମେରିକାରୁ ଆଉ ପାଞ୍ଚଲକ୍ଷ ଟଙ୍କା ଆସିବ । ଏକଥା ଶୁଣି ସମସ୍ତେ ଖୁସି ହେଲେ । ମାତ୍ର କଟକର ସଭ୍ୟସଭ୍ୟାମାନେ ଏ ଟଙ୍କାକୁ କେନ୍ଦ୍ର କାର୍ଯ୍ୟାଳୟରେ ଦାଖଲ କରିବା କଥାଶୁଣି ମୋର ଏପରି ନିଷ୍ପତ୍ତି ଲାଗି ସେମାନଙ୍କର ଅସନ୍ତୋଷ ପ୍ରକାଶକଲେ । କହିଲେ ଆପଣ ଆମଶାଖାର ସଭାପତି ଅଛନ୍ତି । ତେଣୁ ଉତ୍କଳ ସମ୍ମିଳନୀ ନାମରେ ଯେତେଟଙ୍କା ଆଣୁଛନ୍ତି ତାହା କଟକ ଶାଖାର ପ୍ରାପ୍ୟ । କେନ୍ଦ୍ର ସଭାପତି ଯଦି କେଉଁଠୁ ଉତ୍କଳ ସମ୍ମିଳନୀ ପାଇଁ ଟଙ୍କା ଆଣିଥାନ୍ତେ ତାହା କେନ୍ଦ୍ର କାର୍ଯ୍ୟାଳୟରେ ରଖାଯାଇଥାନ୍ତା । ଗତଥର ଆପଣ ଦୁଇଲକ୍ଷ ଟଙ୍କା ଆଣିଲେ । ସେ ସବୁ କେନ୍ଦ୍ର କାର୍ଯ୍ୟାଳୟରେ ଦାଖଲ କଲେ । ଏଥରକ ଟଙ୍କାଟା ଆମ ଶାଖାରେ ଜମା ଦେବା କଥା । ବିନା ପଇସାରେ କଟକଶାଖା ଚଳିବ କେମିତି ? ମୁଁ ସମସ୍ତଙ୍କୁ ବୁଝାଇ କହିଲି; ଆମେରିକାରୁ-ଯେଉଁ ଟଙ୍କା ମୁଁ ଆଣିଛି; ସେ ସବୁ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟଚାନ୍ଦା । ଉତ୍କଳ ସମ୍ମିଳନୀ କେନ୍ଦ୍ର କାର୍ଯ୍ୟାଳୟର ରସିଦ ଦେଇ ଟଙ୍କା ଅଣାଯାଇଛି । ତେଣୁ ଯାହାର ରସିଦ ତା'ର ଟଙ୍କା । ସେ କାର୍ଯ୍ୟାଳୟର ମୁଁ ରସିଦ ନେଇଛି । ତେଣୁ ସେଠାରେ ମୋତେ ତା'ର ହିସାବ ଦେବାକୁ ପଡ଼ିବ ।

ଅନେକ କହିଲେ, ଏ ଟଙ୍କା ପାଇ କେନ୍ଦ୍ର କାର୍ଯ୍ୟାଳୟ ତାର ଖର୍ଚ୍ଚ ତୁଲାଉଛି । ଆମ ଶାଖାର ଖର୍ଚ୍ଚ ଚଳିବ କେମିତି ? ସେହି ଟଙ୍କାର ଅଧା ବା ଏକ ଚତୁର୍ଥାଂଶ ଆମ ଶାଖା ପାଇଁ ଆପଣ ଦାବୀ କରନ୍ତୁ । କହିଲି, ଏପରି କରିବାକୁ ମୋତେ ଭଲ ଲାଗିବ ନାହିଁ । ଶାଖାମାନଙ୍କର ପ୍ରାପ୍ୟବାବଦ କେନ୍ଦ୍ରଠାରୁ କିଛି ପାଇବା କଥା ଏ ପର୍ଯ୍ୟନ୍ତ ମୁଁ ଶୁଣିନାହିଁ । ତା'ଛଡ଼ା ସମ୍ବିଧାନରେ ଆଜୀବନ ସଭ୍ୟ ଚାନ୍ଦାର କିଛି ଅଂଶ ଶାଖାରେ ରହିବାକଥା ମଧ୍ୟ ଲେଖାନାହିଁ । ତେଣୁ ମୁଁ କିଛି କହିପାରୁ ନାହିଁ । ଭବିଷ୍ୟତରେ ସଂବିଧାନ ସଂଶୋଧନ ବେଳେ ଏକଥା ଉଲ୍ଲେଖ କରିବାକୁ ହେବ । ଆମ ଶାଖା ଠିକ୍ ଚାଲିଛି ଓ ଚାଲିବ ବୋଲି ବିଶ୍ୱାସ ।

କେହି କେହି କହିଲେ, ଆମେରିକା ଟଙ୍କା କେନ୍ଦ୍ରରେ ଦେଇ ଆମ ଶାଖାପାଇଁ ଆପଣ ଯେପରି ନିଜ ପକେଟରୁ ଖର୍ଚ୍ଚ କରୁଛନ୍ତି; ସେମିତି କେତେ ଦିନ ଚାଲିବ ? କହିଲି, ସେ ବିଷୟରେ ଚିନ୍ତା କରନ୍ତୁ ନାହିଁ । ଆମ ପାଇଁ ଅର୍ଥାଗମର ବ୍ୟବସ୍ଥା କରିବା । କେବଳ ଆପଣମାନଙ୍କର ସହଯୋଗ ଆବଶ୍ୟକ । ହେଲେ ଅନେକ ସଭ୍ୟ ଜିଦଧରି ପ୍ରତି ପରିଚାଳନା ସଭାରେ କେହି ନା କେହି ସବୁ ଟଙ୍କା କେନ୍ଦ୍ରକୁ ମୁଁ ଦେଇଥିବାର ସମାଲୋଚନା କରିବା ଲାଗି ରହିଥିଲା ।

ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ବିୟୋଗ ପରେ ଉତ୍କଳ ସମ୍ମିଳନୀର ନିର୍ବାଚନ ହୋଇନଥିଲା । ବସନ୍ତ କୁମାର ପାଣିଗ୍ରାହୀ ମହାସଚିବ; କୋଷାଧ୍ୟକ୍ଷ ଓ ସଭାପତି ତିନି ଦାୟୀତ୍ୱ ତୁଲାଉଥିଲେ । ଇତି ମଧ୍ୟରେ ଜୟପୁର ଠାରେ ଉତ୍କଳ ସମ୍ମିଳନୀର ନିର୍ବାଚନ ହେବାକଥା ସ୍ଥିର ହେଲା । କଟକରୁ ମୁଁ ଓ ଅଭୟବାବୁ ଦୁହେଁ ଜୟପୁର ଗଲୁ । ସାଧାରଣ ସଭାରେ ସର୍ବସମ୍ମତି କ୍ରମେ ବସନ୍ତବାବୁ ସଭାପତି ହେଲେ । ସମ୍ବିଧାନରେ ଜଣେ ମହାସଚିବ, ତିନିଜଣ ସଚିବ ଓ ତିନିଜଣ ଉପସଭାପତି ରହିବାର ଉଲ୍ଲେଖ ଥିଲା । ମାତ୍ର ଏ ସଭାରେ ସାତଜଣ ଉପସଭାପତି, ଜଣେ ସାଧାରଣ ସମ୍ପାଦକ ଓ ସାତଜଣ ସମ୍ପାଦକ ରହିବା ପାଇଁ ସ୍ଥିର ହେଲା । ମୁଁ ଏଥର ଉପସଭାପତି ଭାବେ ନିର୍ବାଚିତ ହେଲି । ଅଭୟ ବାବୁ କଟକ ଜିଲ୍ଲା ପକ୍ଷରୁ କେନ୍ଦ୍ର ପରିଚାଳନା ସଭାର ପ୍ରତିନିଧି ରହିଲେ । ସୋରୋ ଶାଖାର ସଭାପତି ଶ୍ରୀ ଅମରେନ୍ଦ୍ର ଦାସ ସାଧାରଣ ସମ୍ପାଦକ ଭାବେ ନିର୍ବାଚିତ ହେଲେ । ଜୟପୁରରୁ ଫେରି ଭୁବନେଶ୍ୱରରେ କେନ୍ଦ୍ରୀୟ କାର୍ଯ୍ୟକାରୀ କମିଟିର ରୂପରେଖ ଓ କର୍ମକର୍ତ୍ତାମାନଙ୍କ ମଧ୍ୟରେ ଦାୟୀତ୍ୱ ବଣ୍ଟନ ହେଲା ।

ଚକ୍ରଧରପୁରରୁ ପୁରୁଣାବସ୍ତି ଓଡ଼ିଆ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରବୀନ୍ଦ୍ର କୁମାର ଷଡ଼ଙ୍ଗୀ ମୋତେ ଫୋନ୍‌ରେ ଡାକି କହିଲେ, ତାଙ୍କ ବିଦ୍ୟାଳୟର ୮୬ ତମ ପ୍ରତିଷ୍ଠା ଦିବସ ପାଳିତ ହେବ । ଉତ୍କଳମଣି ଗୋପବନ୍ଧୁ ଏହି ବିଦ୍ୟାଳୟକୁ ୮୫ ବର୍ଷ ତଳେ

ପ୍ରତିଷ୍ଠା କରିଥିଲେ । ତେଣୁ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଏହି ଉତ୍ସବରେ ମୁଖ୍ୟଅତିଥି ଭାବେ ଯୋଗ ଦେଇପାରିଲେ ଭଲହୁଅନ୍ତା । ଏକଥା ଶୁଣି ମୁଁ ତତ୍‌କାଳୀନ ଓଡ଼ିଶାର ଗଣଶିକ୍ଷାମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକଙ୍କୁ ଦେଖାକଲି । ଝାଡ଼ଖଣ୍ଡ ଯିବାକଥା ଶୁଣି ସେ ଖୁସି ହେଲେ । କହିଲେ, ନିଶ୍ଚୟ ଯିବି । ସାଙ୍ଗେ ସାଙ୍ଗେ ରବି ବାବୁଙ୍କୁ ଫୋନ କରି ମନ୍ତ୍ରୀଙ୍କ ସମ୍ମତି ଜଣାଇ ଦେଲି । ଡାକଯୋଗେ ସେ ମନ୍ତ୍ରୀଙ୍କ ପାଖକୁ ଆନୁଷ୍ଠାନିକ ନିମନ୍ତ୍ରଣ ପଠାଇଦେଲେ । ମୋ ସହିତ ଅଭୟ ସାମନ୍ତରାୟ ଯିବେ ବୋଲି ମନ୍ତ୍ରୀଙ୍କୁ କହିଲି ।

ସୁରବାବୁ କହିଲେ ଆପଣ ଦୁହିଁଙ୍କ ଲାଗି ମୁଁ ରେଳଗାଡ଼ିରେ ଆମ ସହିତ ସ୍ଥାନ ସଂରକ୍ଷଣ କରିଦେବି । କହିଲି; ଆମପାଇଁ କେବଳ ଦ୍ୱିତୀୟଶ୍ରେଣୀ ଟିକେଟ କରିବେ । ଶୀତତାପନିୟନ୍ତ୍ରିତ ବଗିରେ ଆମେ ଉତ୍କଳସମ୍ମିଳନୀ କାର୍ଯ୍ୟରେ ଯାଉ ନାହୁଁ । ବିଚ୍ଛିନ୍ନାଞ୍ଚଳରେ କାମ କରିବାକୁ ପ୍ରାୟ ପ୍ରତି ମାସରେ ଥରେ ଝାଡ଼ଖଣ୍ଡ ଯିବାକୁ ପଡୁଥିଲା । ହାତରୁ ପଇସା ଖର୍ଚ୍ଚ କରି ଦ୍ୱିତୀୟ ଶ୍ରେଣୀରେ ରେଳଯାତ୍ରା କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ତେଣୁ ମୁଁ ମନ୍ତ୍ରୀଙ୍କ ସାଙ୍ଗରେ ଶୀତତାପ ନିୟନ୍ତ୍ରିତ ବଗିରେ ଯିବା ସପକ୍ଷରେ ନଥିଲି । ମନ୍ତ୍ରୀ କହିଲେ, ଆମେ ସମସ୍ତେ ମିଶି ସାଧାରଣ ଦ୍ୱିତୀୟ ଶ୍ରେଣୀରେ ଯିବା । ତାହାହିଁ ହେଲା । ମୁଁ ଓ ଅଭୟ ବାବୁ ଗଣଶିକ୍ଷା ମନ୍ତ୍ରୀ ଏବଂ ତାଙ୍କର ସହକର୍ମୀମାନଙ୍କ ସହିତ ଭୁବନେଶ୍ୱର ରେଳଷ୍ଟେସନରୁ ଉଠିଲୁ । ଭୋର ସାଢ଼େସାତଟା ବେଳକୁ ଆମେ ଚକ୍ରଧରପୁର ରେଳଷ୍ଟେସନରେ ପହଞ୍ଚିଲୁ । ପ୍ରାୟ ୫୦ ଜଣ ଲୋକଙ୍କୁ ଧରି ଷଡ଼ଙ୍ଗୀ ବାବୁ ଓ ଝାଡ଼ଖଣ୍ଡ ସରକାରଙ୍କ ପକ୍ଷରୁ କେତେଜଣ ଅଫିସର ମନ୍ତ୍ରୀଙ୍କୁ ଫୁଲମାଳ ଦେଇ ସ୍ୱାଗତ ଜଣାଇଲେ । ଝାଡ଼ଖଣ୍ଡ ସରକାରଙ୍କ ନାଲିବତୀ ଗାଡ଼ିରେ ମନ୍ତ୍ରୀଙ୍କୁ ନେଇ ସ୍ଥାନୀୟ ଜଙ୍ଗଲବିଭାଗ ଡାକବଙ୍ଗଳାରେ ରଖାଗଲା । ଆମେ ସବୁ ପୁରୁଣାବସ୍ତି ଯାଇ ଗାଧୁଆ ପାଧୁଆ ସାରି ପୁଣି ଡାକବଙ୍ଗଳାକୁ ଆସିଲୁ । ମନ୍ତ୍ରୀ କହିଲେ ସ୍ଥାନୀୟ କୌଣସି ଓଡ଼ିଆଗାଆଁ ଦେଖିପାରିଲେ ଭଲହୁଅନ୍ତା । ଉପରବେଳା ତିନିଟା ବେଳକୁ ସଭା କାର୍ଯ୍ୟକ୍ରମ ଅଛି ।

ସରୋଜ କୁମାର ପ୍ରଧାନ ଏ ଅଞ୍ଚଳର ଜଣେ ଉଦୀୟମାନ ଯୁବକ । ସେ ମାଟ୍ରିକ ପାଶ୍‌କରିବା ପରେ ଉତ୍କଳ ସମ୍ମିଳନୀ ସହିତ ସଂପୃକ୍ତ ହେଲେ । ୧୯୮୫ ମସିହା ଠାରୁ ଏପର୍ଯ୍ୟନ୍ତ ବିଭିନ୍ନସ୍ଥାନରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନମାନଙ୍କରେ ସେ ଯାଇ ଯୋଗଦିଅନ୍ତି । ତାଙ୍କର ପିତା ଶ୍ରୀ ଅଲେଖ ଚରଣ ପ୍ରଧାନ ଥିଲେ ଜଣେ ରେଳକର୍ମଚାରୀ । ଚକ୍ରଧରପୁର ଡିଭିଜନାଲ ଅଫିସରେ ସେ କାର୍ଯ୍ୟ କରୁଥିଲେ । ସେ ଅବସର ଗ୍ରହଣ କରି ଘରେରହନ୍ତି । ମାତ୍ର ଝାଡ଼ଖଣ୍ଡରେ ଓଡ଼ିଆଭାଷାର ସୁରକ୍ଷାଲାଗି ସେ ଯଥାସାଧ୍ୟ ଉଦ୍ୟମରତ ଥାଆନ୍ତି । ତେଣୁ ଏକମାତ୍ର ପୁତ୍ର ସରୋଜଙ୍କୁ ଓଡ଼ିଆ ଭାଷା, ସାହିତ୍ୟ ବା ସଂସ୍କୃତି ସମ୍ବନ୍ଧୀୟ କାର୍ଯ୍ୟରେ ଅଂଶ ଗ୍ରହଣ କରିବାକୁ ସେ ଉତ୍ସାହିତ କରନ୍ତି । ଯେବେଠାରୁ ମୁଁ ଓଡ଼ିଆ ଶିକ୍ଷା

ପ୍ରସାର କାର୍ଯ୍ୟରେ ଚକ୍ରଧରପୁର ଆସିଲି, ସରୋଜବାବୁ ମୋତେ ସବୁପ୍ରକାର ସାହାଯ୍ୟ କରିବାକୁ ଆଗେଇ ଆସିଲେ । ଏପରିକି, ଚକ୍ରଧରପୁରରେ ମୁଁ ପହଞ୍ଚିଗଲେ ସେ ମୋତେ ଅନ୍ୟ କେଉଁଠି ରଖାଇ ନଦେଇ ତାଙ୍କ ଘରକୁ ନେଇ ଯାଆନ୍ତି । ତାଙ୍କୁ ସାଙ୍ଗରେ ନେଇ ମୁଁ ଚକ୍ରଧରପୁର ପାଖାପାଖି ଗ୍ରାମାଞ୍ଚଳକୁ ଯାଏ । ତେଣୁ ଏଥରକ ଓଡ଼ିଶାର ଗଣଶିକ୍ଷାମନ୍ତ୍ରୀ ଚକ୍ରଧରପୁର ଯିବା କଥା ତାଙ୍କୁ ଆଗରୁ ଜଣାଇ ମନ୍ତ୍ରୀ ଚାହିଁଲେ ସ୍ଥାନୀୟ ଗ୍ରାମାଞ୍ଚଳ ବୁଲାଇ ଦେଖାଇବାକୁ ପୂର୍ବରୁ ବ୍ୟବସ୍ଥା କରିବାକୁ କହିଥିଲି । ତଦନୁଯାୟୀ ଆମେ ସବୁ ପ୍ରଥମେ ଦେଓଗାଁ ଗଲୁ । ସେ ଗ୍ରାମର ଆରମ୍ଭରେ ଗ୍ରାମବାସୀମାନେ ପୁଷ୍ପମାଲ୍ୟ ଦେଇ ମନ୍ତ୍ରୀଙ୍କୁ ପାଛୋଟି ନେଲେ । ରାସ୍ତା ଦୁଇ ପାଖରେ ଦାଣ୍ଡିଘର ସବୁ । ସ୍ତ୍ରୀ ଲୋକମାନେ ପିଣ୍ଡାରେ ଠିଆ ହୋଇ ଶଙ୍ଖ ହୁଳହୁଳି ଧ୍ୱନୀ ଦେଇ କୁସୁମ ଫୁଲ ଥାଳିରେ ଧରି ମନ୍ତ୍ରୀଙ୍କ ଉପରକୁ ପୁଷ୍ପବୃଷ୍ଟି କରୁଥାନ୍ତି । ଗ୍ରାମର ଓଡ଼ିଆ ବିଦ୍ୟାଳୟ ପାଖରେ ଲୋକମାନେ ମନ୍ତ୍ରୀଙ୍କୁ ଏ ରାଜ୍ୟରେ ଓଡ଼ିଆ ଶିକ୍ଷାଦାନ ଉପରେ ଗୁରୁତ୍ୱ ଦେବାକୁ ଅନୁରୋଧ କଲେ । ସେଠାରେ ଓଡ଼ିଆ ଚାଟଶାଳି ଚଳାଇବାକୁ ଉତ୍କଳସମ୍ମିଳନୀ ଓ ନ୍ୟାଶୀମଣ୍ଡଳ ପକ୍ଷରୁ ଆର୍ଥିକ ସାହାଯ୍ୟ ଦିଆଯାଉଛି ବୋଲି ମଧ୍ୟ କହିଲେ । ତାପରେ କେରା ଗ୍ରାମରେ ଓଡ଼ିଆ ମଧ୍ୟବିଦ୍ୟାଳୟ ଦେଖାଇବାକୁ ମନ୍ତ୍ରୀଙ୍କୁ ନିଆଗଲା । କେରା ରାଜ୍ୟର ରାଜା ଶ୍ରୀ ଲକ୍ଷ୍ମୀନାରାୟଣ ସିଂହଦେଓ ୧୯୨୦ ମସିହାରେ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳସମ୍ମିଳନୀ ଅଧିବେଶନରେ ପୌରୋହିତ୍ୟ କରିଥିଲେ । ୮୪ ଟି ଓଡ଼ିଆ ଗ୍ରାମକୁ ନେଇ କେରାରାଜ୍ୟ ଗଠିତ ହୋଇଥିଲା । ବିହାର ସରକାର ଏଠାକାର ଓଡ଼ିଆ ମଧ୍ୟବିଦ୍ୟାଳୟକୁ ହିନ୍ଦିବିଦ୍ୟାଳୟରେ ପରିଣତ କରିବାପାଇଁ ଏଠାରୁ ଓଡ଼ିଆଶିକ୍ଷକଙ୍କୁ ଅନ୍ୟତ୍ର ବଦଳି କରିଦେଇଛନ୍ତି ବୋଲି ଲୋକମାନେ ଅଭିଯୋଗ କଲେ । ମନ୍ତ୍ରୀ ସୁରବାବୁ ମୋତେ କହିଲେ, ଗୁରୁବାବୁ, ଆମେ କେବଳ ଓଡ଼ିଶା କଥା ଭାବିଭାବି କାଳକାଟୁଛୁ । ଓଡ଼ିଶା ବାହାରେ ଓଡ଼ିଆମାନେ ସେମାନଙ୍କର ମାତୃଭାଷାର ସୁରକ୍ଷା ଲାଗି କେତେ ଯେ ଲାଳାୟୀତ ଅଛନ୍ତି ତାହା ଏପର୍ଯ୍ୟନ୍ତ ଆମେ ବୁଝିନାହୁଁ କିମ୍ବା ଚିନ୍ତା କରିପାରୁନୁ । ଏ ପର୍ଯ୍ୟନ୍ତ ଆମେ ଭାବୁଥିଲୁ କେବଳ ଷଢ଼େଇକଳା ଖରସୁଆଁ କଥା । ମାତ୍ର ପଶ୍ଚିମ ଓ ପୂର୍ବ ସିଂହଭୂମ ଜିଲ୍ଲାରେ ଏତେ ଓଡ଼ିଆ ରହନ୍ତି ବୋଲି ଆଜି ମୁଁ ପ୍ରତ୍ୟକ୍ଷ କରୁଛି ।

ଡାକବଙ୍ଗଳାରେ ପହଞ୍ଚିଲା ବେଳକୁ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାର ଶିକ୍ଷା ମଣ୍ଡଳାଧୀଶମାନେ ଆସି ମନ୍ତ୍ରୀଙ୍କୁ ଅପେକ୍ଷାକରି ରହିଥିଲେ । ଝାଡ଼ଖଣ୍ଡ ରାଜ୍ୟ ଶିକ୍ଷା ବିଭାଗର ଯୁଗ୍ମ ସଚିବ ମଧ୍ୟ ଆସି ପହଞ୍ଚିଲେ । ଆମ ଉପସ୍ଥିତିରେ ସେମାନଙ୍କ ସହିତ ମନ୍ତ୍ରୀ ଏ ଅଞ୍ଚଳରେ ଓଡ଼ିଆଶିକ୍ଷା ପ୍ରସାରଣ କଥା ଆଲୋଚନା କଲେ । ପ୍ରାୟ ଅପରାହ୍ଣ ସାଢ଼େ ଗୋଟାଏ ସୁଦ୍ଧା ଡାକବଙ୍ଗଳାରୁ ଏକ ପଟୁଆରରେ ମନ୍ତ୍ରୀ ଓ ଚକ୍ରଧରପୁରର ପୂର୍ବତନ

ସାଂସଦ ଶ୍ରୀ ରୁଦ୍ରପ୍ରସାଦ ଷଡ଼ଙ୍ଗୀ ଯାଇ ପୋହାହାଟ ରାଜ୍ୟର ବୀର ସେନାପତି ସହୀଦ ଜଗୁଦେବାନଙ୍କ ପ୍ରତିମୂର୍ତ୍ତିରେ ପୁଷ୍ପମାଲ୍ୟ ଦେଇସାରି ପୁରୁଣାବସ୍ତି ଉତ୍କଳମଣି ଓଡ଼ିଆ ମଧ୍ୟ ବିଦ୍ୟାଳୟର ସଭା ମଣ୍ଡପକୁ ଗଲେ । ସ୍ଥାନୀୟ ବକ୍ତାମାନେ ଝାଡ଼ଖଣ୍ଡ ରାଜ୍ୟର ଓଡ଼ିଆପିଲାଙ୍କ ଲାଗି ମାତୃଭାଷା ଓଡ଼ିଆ ଶିକ୍ଷାର ବ୍ୟବସ୍ଥା କରିବାକୁ ଦାବୀ ଜଣାଇଲେ । ସଭା ସରିବା ପରେ ଆମେସବୁ ସିଧା ରେଳଷ୍ଟେସନକୁ ଯାଇ ଉତ୍କଳଏକ୍ସପ୍ରେସରେ ବସି ଓଡ଼ିଶା ଫେରିଲୁ । ଗାଡ଼ିରେ ବସିବା ପରେ ମନ୍ତ୍ରୀ କହିଲେ, ଦୁଇଦିନ ପରେ ଆପଣମାନେ ମୋ ପାଖକୁ ଆସନ୍ତୁ । ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆଶିକ୍ଷା ପ୍ରସାରଣ ଲାଗି ଆମପାଖରେ ଯାହାଅଛି ସେ ଟଙ୍କା ଶୀଘ୍ର ଉତ୍କଳସମ୍ମିଳନୀ ଜରିଆରେ ଉପଯୋଗ କରାଯିବ ।

ଦୁଇଦିନ ପରେ ମୁଁ ଓ ଅଭୟବାବୁ ସଚିବାଳୟ ଯାଇ ଗଣଶିକ୍ଷାମନ୍ତ୍ରୀଙ୍କୁ ଭେଟିଲୁ । ସେ ତାଙ୍କ ସଚିବ, ଯୁଗ୍ମ ସଚିବ, ଶିକ୍ଷାବିଭାଗ ନିର୍ଦ୍ଦେଶକ ଆଦି ସବୁ ଅଫିସରମାନଙ୍କୁ ଡକାଇ ଦେଇଥିଲେ । ଗୁଡ଼ାଏ ଟଙ୍କା ଓଡ଼ିଆ ସାହିତ୍ୟ ଆଲୋଚନା ପାଇଁ ମାନ୍ଦ୍ରାଜ ଓ କଲିକତାରେ ଖର୍ଚ୍ଚ ହୋଇଗଲା ବୋଲି କହି ବଳକା ଯାହା ଏବର୍ଷ ପାଇଁ ହାତରେ ଅଛି; ବିଚ୍ଛିନ୍ନାଞ୍ଚଳରେ ଶିକ୍ଷାପ୍ରସାରଣ ଲାଗି ଉତ୍କଳ ସମ୍ମିଳନୀକୁ ଦେବାଲାଗି ମନ୍ତ୍ରୀ ମହୋଦୟ ଅଫିସରମାନଙ୍କୁ କହିଲେ । ଝାଡ଼ଖଣ୍ଡରେ ଯେଉଁ ସବୁ ଓଡ଼ିଆ ବିଦ୍ୟାଳୟ ସରକାରୀ ସ୍ୱୀକୃତି ଲାଭକରିଛି ମାତ୍ର ସେଠାକାର ଶିକ୍ଷକମାନେ ସରକାରୀ ଦରମା ପାଉ ନାହାନ୍ତି, ସେପରି କେତେକ ବିଦ୍ୟାଳୟର ତାଲିକା ଦେବା ପାଇଁ ଆମକୁ କୁହାଗଲା । ଏଭଳି ସ୍ୱୀକୃତିପ୍ରାପ୍ତ ଉଚ୍ଚଓଡ଼ିଆ ବିଦ୍ୟାଳୟକୁ ଏକକାଳୀନ ଦୁଇଲକ୍ଷ ଟଙ୍କା ଓ ମଧ୍ୟ ବିଦ୍ୟାଳୟକୁ ଷାଠିଏ ହଜାର ଟଙ୍କା ଦେବାପାଇଁ ପ୍ରସ୍ତାବ ହେଲା । ବିଭାଗୀୟ ସଚିବ କହିଲେ, ବିଚ୍ଛିନ୍ନାଞ୍ଚଳରେ ଶିକ୍ଷାପ୍ରସାର ଲାଗି ଉତ୍କଳସମ୍ମିଳନୀ ପକ୍ଷରୁ ଏକ ଯୋଜନା କରାଯାଇ କେଉଁ ରାଜ୍ୟରେ କେତେ ଟଙ୍କା ଖର୍ଚ୍ଚ ହେବ ତାର ଏକ ବିବରଣୀ ଦେଲେ ତଦନୁଯାୟୀ ଟଙ୍କା ଦିଆଯିବ । ମୁଁ ଫେରିଆସି ସମ୍ମିଳନୀର ସଭାପତି ଶ୍ରୀବସନ୍ତକୁମାର ପାଣିଗ୍ରାହୀଙ୍କୁ ଦୂରଭାଷରେ ସବୁ କଥା ଜଣାଇଲି ଓ ଆଜି ସନ୍ଧ୍ୟାସୁଦ୍ଧା ଭୁବନେଶ୍ୱର ଆସିବାକୁ କହିଲି । ପରଦିନ ସକାଳେ ସେ ମୋତେ ସମ୍ମିଳନୀର କାର୍ଯ୍ୟାଳୟକୁ ଆସିବାକୁ କହିଲେ । ମୁଁ ଗଲାବେଳକୁ ଶ୍ରୀଚରଣ ସ୍ୱାଇଁ, ପଦ୍ମ ଚରଣ ନାୟକ, ଗୋପାଳକୃଷ୍ଣ ଶ୍ରୀଚନ୍ଦନ ଓ ଆଚାର୍ଯ୍ୟ ଭାବାନନ୍ଦ ଆସି ପହଞ୍ଚି ଯାଇଥିଲେ । ଏ ଖବର ପାଇ ସମସ୍ତେ ଖୁସି ହେଲେ ।

ଉତ୍କଳ ସମ୍ମିଳନୀ ୧୯୦୩ ମସିହାରୁ ରହିଛି । ବହୁ ସ୍ୱନାମଧନ୍ୟ ବ୍ୟକ୍ତି ଏହାର ସଭାପତି ରହିଥିଲେ । ମାତ୍ର ବିଚ୍ଛିନ୍ନାଞ୍ଚଳ ବିଷୟରେ କେହି କେବେ ସକାରାତ୍ମକ ଚିନ୍ତା କରିବା ମନେହୁଏନା। କେବଳ ଷଢେଇକଳା ଖରସୁଆଁ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଇବା ଛଡ଼ା ଅନ୍ୟ କିଛି ଚିନ୍ତା ସମ୍ମିଳନୀର କର୍ମକର୍ତ୍ତାମାନଙ୍କ ମୁଣ୍ଡରେ ନ ଥିଲା । ପୂର୍ବତନ

କଂଗ୍ରେସ ସରକାର ଉତ୍କଳ ସମ୍ମିଳନୀକୁ କୌଣସି ସାହାଯ୍ୟ ଦେଉନଥିଲେ । ଆର୍ଥିକ ଅନଟନ ଯୋଗୁଁ ଏହି ସମ୍ମିଳନୀ ପକ୍ଷରୁ ବିଚ୍ଛିନ୍ନାଞ୍ଚଳ ଯାଇ ସେଠାକାର ଓଡ଼ିଆମାନଙ୍କର ବିଷୟରେ କେହି ଚିନ୍ତା ବ୍ୟକ୍ତ କରୁନଥିଲେ । ବରଂ ଉତ୍କଳ ସମ୍ମିଳନୀ ତୁଳନାରେ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳର ଉଦ୍ୟୋକ୍ତାମାନେ ଝାଡ଼ଖଣ୍ଡ ବିଷୟରେ ଚିନ୍ତା ପ୍ରକଟ କରୁଥିଲେ । ଅବଶ୍ୟ ଏହି ସଂଗଠନ ଗତ ଶତାବ୍ଦୀର ନବେ ଦଶକରେ ଗଠିତ ହେଲା । ଏହାର ମୁଖ୍ୟ ଉଦ୍ୟୋକ୍ତା ଥିଲେ ସ୍ୱର୍ଗତ ସଚ୍ଚିଦାନନ୍ଦ ମିଶ୍ର ଓ ଭଗବାନ ରଥ । ଏ ଦୁଇ ସଂଗ୍ରାମୀ ବ୍ୟକ୍ତି ଝାଡ଼ଖଣ୍ଡରେ ଓଡ଼ିଆ ଶିକ୍ଷା ଦେବାକୁ ପ୍ରାଣପାତ ଉଦ୍ୟମ କରିଥିଲେ । ମଧୁବାବୁଙ୍କ ଦ୍ୱାରା ଗଠିତ ଉତ୍କଳ ସଭାକୁ ସ୍ୱର୍ଗତ ସାଂସଦ ଚିନ୍ତାମଣି ପାଣିଗ୍ରାହୀ ପୁନର୍ଗଠିତ କରି ଝାଡ଼ଖଣ୍ଡରେ କାର୍ଯ୍ୟ କରିଥିବା ପୁରୁଣା କର୍ମୀମାନଙ୍କୁ ଏହାର ସଭ୍ୟ କରିବା ପରେ ଏହି ସଂଗଠନ ନ୍ୟାଶୀମଣ୍ଡଳ ନାମରେ ନାମିତ ହେଲା ଓ ମୁଁ ଏହି ସଂଗଠନରେ ଯୋଗ ଦେବା ପରେ ଝାଡ଼ଖଣ୍ଡ ଯାଇ କାର୍ଯ୍ୟ ଆରମ୍ଭ କଲି । ଏବେ ମନ୍ତ୍ରୀଙ୍କ ବଦାନ୍ୟତା ଦେଖି ମୁଁ ଓ ବସନ୍ତବାବୁ ଦୁହେଁ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର ଲାଗି ଗୋଟିଏ ଖସଡ଼ା (ସ୍କିମ୍) ତିଆରି କରି ବସିଲୁ । ଦୁଇବର୍ଷ ପାଇଁ ଏହି ଖସଡ଼ା ପ୍ରସ୍ତୁତ ହେଲା । ପୂର୍ବରୁ ନ୍ୟାସୀମଣ୍ଡଳ ପକ୍ଷରୁ ଶିକ୍ଷୟିତ୍ରୀମାନଙ୍କୁ ମାସକୁ ମାତ୍ର ଟ.୩୦୦ ଦରମା ଦିଆଯାଉଥିଲା । ଆମ ଯୋଜନାରେ ମାସିକ ୫୦୦ ଦେବାର ବ୍ୟବସ୍ଥା ହେଲା । ଆନ୍ଧ୍ର ପାଇଁ ୧୨ ଲକ୍ଷ, ଝାଡ଼ଖଣ୍ଡ ପାଇଁ ୧୧ ଲକ୍ଷ ୫୦ ହଜାର, ପଶ୍ଚିମ ବଙ୍ଗ ପାଇଁ ଛଅଲକ୍ଷ ଓ ଛତିଶଗଡ଼ ପାଇଁ ମଧ୍ୟ ୬ ଲକ୍ଷ ଟଙ୍କାର ବ୍ୟୟ ବରାଦ ହେଲା । ପରଦିନ ସକାଳେ ଏସବୁ ପ୍ରସ୍ତାବ ନେଇ ଗଣଶିକ୍ଷା ମନ୍ତ୍ରୀଙ୍କୁ ଦେଲୁ । ସେ କହିଲେ, ଅର୍ଥ ବିଭାଗରୁ ସ୍ୱୀକୃତି ମିଳିବା ପରେ ଆପଣଙ୍କୁ ଚେକ୍ ଆକାରରେ ଟଙ୍କା ଦିଆଯିବ । ଇତି ମଧ୍ୟରେ ଆପଣ ଏଥିଲାଗି ବିଚ୍ଛିନ୍ନାଞ୍ଚଳରେ କ୍ଷେତ୍ର ପ୍ରସ୍ତୁତ କରନ୍ତୁ ।

ସମ୍ମିଳନୀ କାର୍ଯ୍ୟାଳୟରେ ପରିଚାଳନା ସଭା ଆହୂତ ହେଲା । ବସନ୍ତ ବାବୁ ଆନ୍ଧ୍ର ବିଚ୍ଛିନ୍ନାଞ୍ଚଳ, ମୁଁ ଝାଡ଼ଖଣ୍ଡ, ପଦ୍ମଚରଣନାୟକ ଛତିଶଗଡ଼ ଏବଂ ବିଚିତ୍ର ବଡ଼ଜେନା ଓ ବସନ୍ତବାବୁ ମିଶି ପଶ୍ଚିମବଙ୍ଗ ଦାୟିତ୍ୱ ନେଲେ ।

ମୁଁ ଝାଡ଼ଖଣ୍ଡ ଯାଇ ଜାମସେଦପୁର ଠାରେ ପହଞ୍ଚି ପ୍ରଥମେ ବିଦ୍ୟାଳୟମାନଙ୍କ [illegible] ଖବର ନେଲି । ସେଠାକାର ଗୋଲମୁରୀ ଉତ୍କଳସମାଜ ହାଇସ୍କୁଲ, ସିଦକାହ୍ନୁ ଓଡ଼ିଆ ମଧ୍ୟବିଦ୍ୟାଳୟ, ଟେଲ୍‌କୋ ଓଡ଼ିଆ ଉଚ୍ଚବିଦ୍ୟାଳୟ, ମୂଷାବଣିର ଉଚ୍ଚବିଦ୍ୟାଳ[illegible] ମଧ୍ୟବିଦ୍ୟାଳୟ, ଖଣ୍ଡାମୌଦା ଉଚ୍ଚ ଓଡ଼ିଆ ବିଦ୍ୟାଳୟ ଆଦି ବିଷୟରେ ତଥ୍ୟ ସଂଗ୍ରହ କଲି । ତନ୍ମଧ୍ୟରୁ ସିଦକାହ୍ନୁ ମଧ୍ୟ ବିଦ୍ୟାଳୟ ଓ ଟେଲ୍‌କୋ ଉଚ୍ଚ ବିଦ୍ୟାଳୟ ସରକାରୀ ସ୍ୱୀକୃତି [illegible] । ସରକାରୀ ସ୍ୱୀକୃତି ସମ୍ପର୍କୀୟ କାଗଜପତ୍ରମାନ ସଂଗ୍ରହ କଲି ।

ତାଛଡ଼ା ପୂର୍ବ ସିଂହଭୂମ ଜିଲ୍ଲାର କେଉଁ ସବୁ ସ୍ଥାନରେ ଓଡ଼ିଆ ଚାଟଶାଳି ବସାଇବାକୁ ପଡ଼ିବ ସେ ବିଷୟରେ ବୁଝି ମୋତେ ଗୋଲମୁରୀ ଉତ୍କଳ ସମାଜର ରବି ମିଶ୍ରଙ୍କ ଜରିଆରେ ଜଣାଇବାକୁ କହି ଚକ୍ରଧର ପୁର ଗଲି । ସେଠାରେ ଉତ୍କଳମଣି ଓଡ଼ିଆ ହାଇସ୍କୁଲ, ହାମଣଦା ହାଇସ୍କୁଲ୍, ଗୁଆଓଡ଼ିଆ ହାଇସ୍କୁଲ, ନିଶ୍ଚିନ୍ତପୁର ଓଡ଼ିଆ ମଧ୍ୟବିଦ୍ୟାଳୟ, ଜୟନ୍ତୀଗଡ଼ ଓଡ଼ିଆ ମଧ୍ୟବିଦ୍ୟାଳୟ ଆଦି ବିଷୟରେ ତଥ୍ୟ ସଂଗ୍ରହ କରିସାରି କଟକ ଫେରି ସେସବୁର ଏକ ତାଲିକା ପ୍ରସ୍ତୁତ କରି ଗଣଶିକ୍ଷାମନ୍ତ୍ରୀଙ୍କୁ ଦେଇ ଆସିଲି ।

ପ୍ରାୟ ଆଠଦିନ ପରେ ଗଣଶିକ୍ଷାବିଭାଗର ଯୁଗ୍ମ ସଚିବ ମୋତେ ଡକାଇ ମୁଁ ଦେଇଥିବା ବିଦ୍ୟାଳୟ ତାଲିକା ଅନୁଯାୟୀ ଝାଡ଼ଖଣ୍ଡସରକାରଙ୍କ ସ୍ୱୀକୃତି ପ୍ରାପ୍ତ ଓଡ଼ିଆ ବିଦ୍ୟାଳୟମାନଙ୍କୁ ଏକକାଳୀନ ଆର୍ଥିକ ଅନୁଦାନ ଦେବାପାଇଁ ନିୟମ ନିର୍ଦ୍ଧାରଣ କରିବା ବିଷୟରେ ଆଲୋଚନା କଲେ । କଥା ହେଲା ଯେ, ଯେଉଁ ବିଦ୍ୟାଳୟର ଶିକ୍ଷକମାନେ ସରକାରୀ ଦରମା ପାଉ ନାହାନ୍ତି ସେପରି ବିଦ୍ୟାଳୟମାନଙ୍କୁ ଏକକାଳୀନ ସରକାରୀ ଅନୁଦାନ ଦିଆଯିବା ପାଇଁ ଓଡ଼ିଆ ଉଚ୍ଚବିଦ୍ୟାଳୟମାନଙ୍କୁ ଏକ କାଳୀନ ଦୁଇ ଲକ୍ଷ ଟଙ୍କା ଓ ମଧ୍ୟ ବିଦ୍ୟାଳୟମାନଙ୍କୁ ଷାଠିଏ ହଜାର ଟଙ୍କା ଦିଆଯିବ । ତାଛଡ଼ା, ସମସ୍ତ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଚାଟଶାଳୀ ଖୋଲିବା ପାଇଁ ଉତ୍କଳ ସମ୍ମିଳନୀକୁ ୩୬ ଲକ୍ଷ ୪୦ ହଜାର ଟଙ୍କା ଦିଆଯିବ । ସେହି ଟଙ୍କାର ଶତକଡ଼ା ୫୨ଭାଗ ଶିକ୍ଷକ ଦରମା, ଭିତ୍ତିଭୂମି ଉନ୍ନୟନ ବାବଦ ୪୦ ଭାଗ, ଛାତ୍ରବୃତ୍ତି ୨ ଭାଗ ଓ ୩ ଭାଗ ଗସ୍ତ ଖର୍ଚ୍ଚ ବାବଦକୁ ଦେବାର କଥା ମଧ୍ୟ ଠିକ୍ ହେଲା । ସରକାରୀ ନିର୍ଦ୍ଦେଶ ପାଇ ଗଣଶିକ୍ଷା ବିଭାଗର ନିର୍ଦ୍ଦେଶକ ଏସବୁ ଅର୍ଥ ଡ୍ରାଫ୍ଟ କରି ଉତ୍କଳ ସମ୍ମିଳନୀକୁ ଦେବା ପାଇଁ ମୋତେ ଖବର ଦେଲେ ।

ଏ ଖବର ପାଇ ମୁଁ ସଭାପତି ବସନ୍ତବାବୁଙ୍କୁ ଡକାଇଲି । ଅଭୟ ସାମନ୍ତରାୟଙ୍କୁ ନେଇ ମୁଁ ଭୁବନେଶ୍ୱର ଗଲି । ବସନ୍ତବାବୁ ଓ ଆମେଦୁହେଁ ଗଣଶିକ୍ଷା ବିଭାଗ ନିର୍ଦ୍ଦେଶାଳୟକୁ ଗଲୁ । ନିର୍ଦ୍ଦେଶକ ଶ୍ରୀ ବସନ୍ତ କୁମାର ସ୍ୱାଇଁ ଜଗତସିଂହପୁର ଲୋକ । ସେ ମଧ୍ୟ ଶ୍ରୀକୃଷ୍ଣ ଏକାଡେମୀରେ ପଢୁଥିଲେ । ମୁଁ ତାଙ୍କର ଆଠ ବର୍ଷ ପୂର୍ବେ ସେହି ସ୍କୁଲରେ ପଢୁଥିଲି । ତେଣୁ ମୋତେ ସେ ବଡ଼ଭାଇର ସମ୍ମାନ ଦିଅନ୍ତି । ଆମକୁ ଦେଖି ସେ ତାଙ୍କର ଉପନିର୍ଦ୍ଦେଶକ ଓ ଅର୍ଥ ଅଧିକାରୀଙ୍କୁ ଡକାଇଲେ । ଅର୍ଥ ଅଧିକାରୀ କହିଲେ ସେ ଆମକୁ ଡ୍ରାଫ୍ଟ ଦେବେ । ବସନ୍ତ ବାବୁ ବ୍ରହ୍ମପୁର ଫେରିଗଲେ । ପରଦିନ ମୁଁ ଓ ଅଭୟବାବୁ ଯାଇ ଉପନିର୍ଦ୍ଦେଶକ ଶ୍ରୀ ଶରତ କୁମାର ବିଶ୍ୱାଳଙ୍କଠାରୁ ଡ୍ରାଫ୍ଟ ଆଣି ଆସିଲୁ । ପରବର୍ତ୍ତୀ ସମୟରେ ଶରତବାବୁ ଗଣଶିକ୍ଷା ବିଭାଗର ନିର୍ଦ୍ଦେଶକ ହୋଇ ଅବସର ନେଲେ । ସାଧାରଣ [illegible] ଅମରେନ୍ଦ୍ର ଦାସଙ୍କ ହାତରେ ଡ୍ରାଫ୍ଟ ଦେଇ ତହିଁରୁ ପ୍ରତି ରାଜ୍ୟଲାଗି ପଚାଶହଜାର [illegible] ରଖି ବାକୀ ସବୁ ଟଙ୍କା ସ୍ଥାୟୀଜମା ଭାବେ ଉତ୍କଳସମ୍ମିଳନୀ ନାମରେ ରଖିବା କଥା ହେଲା । କାରଣ

ସ୍ଥାୟୀ ଜମାରୁ ଯେଉଁ ସୁଧ ଆସିବ, ତହିଁରେ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟ ଖର୍ଚ୍ଚ ଚଳିଯିବ । ବିଭିନ୍ନ ରାଜ୍ୟରେ ଓଡ଼ିଆ ଶିକ୍ଷାପ୍ରସାର କାର୍ଯ୍ୟ ଚାଲୁହେଲେ, ତେଣିକି ପ୍ରତି ଦୁଇମାସରେ ସ୍ଥାୟୀ ଜମାରୁ ଟଙ୍କା ଉଠାଇ ଶିକ୍ଷକଦରମା ଦିଆଯିବାର କଥାହେଲା ।

**ଝାଡ଼ଖଣ୍ଡର ପୂର୍ବସିଂହଭୂମ ଜିଲ୍ଲାରେ :**

ଝାଡ଼ଖଣ୍ଡ ପାଇଁ ଏଗାରଲକ୍ଷ ଟଙ୍କା ସରକାରୀ ଅନୁଦାନ ଥିବାର ଦେଖି ତଦନୁଯାୟୀ ସେ ଅଞ୍ଚଳରେ ଓଡ଼ିଆ ଚାଟଶାଳୀ ଖୋଲିବାକୁ ମୁଁ ଝାଡ଼ଖଣ୍ଡ ଗଲି । ଜାମସେଦପୁରଠାରେ ଗୋଲମୁରୀ ଉତ୍କଳ ସମାଜ ଓଡ଼ିଆ ଉଚ୍ଚବିଦ୍ୟାଳୟରେ ଏକ ଆଲୋଚନା ସଭା ହେଲା । ଏହି ସଭାର ବ୍ୟବସ୍ଥା କରିଥିଲେ ଶ୍ରୀ ରବୀନ୍ଦ୍ର କୁମାର ମିଶ୍ର । ପୂର୍ଣ୍ଣାଙ୍ଗ ଉତ୍କଳ ନ୍ୟାଶୀ ମଣ୍ଡଳର ବରିଷ୍ଠ ସଦସ୍ୟମାନଙ୍କ ସହିତ ପ୍ରଥମ କରି ଯେତେବେଳେ ମୁଁ ଜାମସେଦପୁର ଆସିଥିଲି, ସେତେବେଳେ ଆମେ ସମସ୍ତେ ରବିବାବୁଙ୍କ ଘରେ ରହି ଝାଡ଼ଖଣ୍ଡରେ ଓଡ଼ିଆଶିକ୍ଷା କାର୍ଯ୍ୟ କିପରି ହୋଇ ପାରିବ ତାହା ଅନୁଧ୍ୟାନ କରିଥିଲୁ । ସେହି ଦିନଠାରୁ ମୁଁ ଯେତେବେଳେ ଜାମସେଦପୁର ଯାଏ ସେତେବେଳେ ରବିବାବୁଙ୍କ ଘରେ ରହି ତାଙ୍କ ସାହାଯ୍ୟ ନେଇ କାମ କରେ । ଗୋଲମୁରୀ ଉତ୍କଳ ସମାଜର ସଭ୍ୟ ଓ ସଭ୍ୟାମାନେ ରବିବାବୁଙ୍କ ସହିତ ସାମିଲ ହୁଅନ୍ତି । ଏହା ଛଡ଼ା ଟେଲ୍‌କୋ ଓଡ଼ିଆ ବିଦ୍ୟାଳୟର କର୍ମକର୍ତ୍ତାମାନେ ମଧ୍ୟ ସହଯୋଗ କରନ୍ତି । ସମସ୍ତଙ୍କ ସହିତ ଆଲୋଚନା ପରେ ଜାମସେଦପୁର ଠାରେ ଥିବା ଓଡ଼ିଆ ବିଦ୍ୟାଳୟମାନଙ୍କୁ ଛାତ୍ରଛାତ୍ରୀ ଯୋଗାଇବା ପାଇଁ ସେ ସବୁ ବିଦ୍ୟାଳୟର ଏକ କିଲୋମିଟର ବ୍ୟାସାର୍ଦ୍ଧ ମଧ୍ୟରେ ଓଡ଼ିଆ ଚାଟଶାଳି ଖୋଲିବାକୁ ସ୍ଥାନ ନିରୁପଣ କରିବା ପାଇଁ ଉପସ୍ଥିତ ଲୋକମାନେ ଦାୟୀତ୍ୱ ନେଲେ । କାରଣ ଓଡ଼ିଆଶିକ୍ଷା ପାଇଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି ନହେଲେ ଓଡ଼ିଆ ହାଇସ୍କୁଲଗୁଡ଼ିକ ତିଷ୍ଠି ରହିବା ଅସମ୍ଭବ ।

ଜାମସେଦପୁର ମହାନଗରୀରେ ଗୋଲମୁରୀ ଉତ୍କଳ ସମାଜ ଉଚ୍ଚବିଦ୍ୟାଳୟ ବହୁ ପୁରାତନ ଓ ଏଠାରେ ଓଡ଼ିଆ ମାଧ୍ୟମରେହିଁ ଶିକ୍ଷାଦିଆଯାଏ । ଏହା ପରେ ଗୋପବନ୍ଧୁ ଓଡ଼ିଆ ଉଚ୍ଚବିଦ୍ୟାଳୟ ଟେଲ୍‌କୋ କଲୋନୀରେ ଆରମ୍ଭ ହୋଇ ଏପର୍ଯ୍ୟନ୍ତ ହାଇସ୍କୁଲର ମାନ୍ୟତା ପାଇ ନାହିଁ । ଏହା କେବଳ ମଧ୍ୟବିଦ୍ୟାଳୟର ମାନ୍ୟତା ପାଇଥିଲା । ବହୁ ଅଣଓଡ଼ିଆ ଛାତ୍ରଛାତ୍ରୀ ମଧ୍ୟ ଏହି ବିଦ୍ୟାଳୟରେ ପଢ଼ନ୍ତି ।

ଟୁଇଲା ଡୁଙ୍ଗୁରୀ ଠାରେ ବି ଏକ ମଧ୍ୟବିଦ୍ୟାଳୟ ଖୋଲା ଯାଇଛି । ମାତ୍ର ବହୁ କମ୍ ସଂଖ୍ୟକ ଛାତ୍ରଛାତ୍ରୀ ସେଠାରେ ପଢୁଥିଲେ । ମୁଁ ଯାଇ ଦେଖିଲା ବେଳକୁ ସେଠାରେ ଛଅ ଜଣ ସ୍ୱେଚ୍ଛାସେବୀ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଉପସ୍ଥିତିରେ ମାତ୍ର ୩୭ ଜଣ ଛାତ୍ରଛାତ୍ରୀ ବିଦ୍ୟାଳୟରେ ଥିଲେ । ଆଦିତ୍ୟପୁର ଅଞ୍ଚଳର ଆସିଙ୍ଗି ଗ୍ରାମରେ ମଧ୍ୟ ଗୋଟିଏ ଓଡ଼ିଆ

ମଧ୍ୟବିଦ୍ୟାଳୟ ଦେଖିଲି । ସେହି ବିଦ୍ୟାଳୟରୁ ଓଡ଼ିଆ ମାଧ୍ୟମରେ ପାଠପଢ଼ି ପାଖରେ କୌଣସି ଓଡ଼ିଆ ହାଇସ୍କୁଲ ନଥିବାରୁ ଛାତ୍ରଛାତ୍ରୀମାନେ ହିନ୍ଦି ହାଇସ୍କୁଲରେ ପଢ଼ିବାକୁ ବାଧ ହେଉଥିଲେ । ତେଣୁ ସେ ଅଞ୍ଚଳରେ ଓଡ଼ିଆ ଚାଟଶାଳି ଖୋଲିବାକୁ ସ୍ଥାନୀୟ ଲୋକେ ରାଜି ନଥିଲେ ।

ପର୍ଶୁଡିହି ଥାନାର ହଲଦ୍‌ବନି ଅଞ୍ଚଳରେ ବହୁ ସଂଖ୍ୟକ ଓଡ଼ିଆ ଆଦିବାସୀ ପରିବାର ବାସକରନ୍ତି । ସେମାନେ ସମସ୍ତେ ମୟୂରଭଞ୍ଜ ଜିଲ୍ଲାର ଲୋକ । ସେଠାରେ ପ୍ରାୟ ଦଶହଜାର ଆଦିବାସୀ ପରିବାର ଥିବାରୁ ସେମାନେ ତାଙ୍କ ପିଲାମାନଙ୍କୁ ହିନ୍ଦି ନପଢ଼ାଇ ଓଡ଼ିଆ ଭାଷାରେ ପଢ଼ାଇବାକୁ ଇଚ୍ଛା କରନ୍ତି । ପ୍ରାୟ ୩୫ ବର୍ଷ ତଳେ ସେମାନଙ୍କ ମଧ୍ୟରୁ କେତେକ ବୟସ୍କ ବ୍ୟକ୍ତି ଗୋଟିଏ ଓଡ଼ିଆ ବିଦ୍ୟାଳୟ ଆରମ୍ଭ କରିଥିଲେ । ସିଂହଭୂମିର ସଂଗ୍ରାମୀ ଆଦିବାସୀ ବୀର ସିଦ ଓ କାହ୍ନୁଙ୍କ ନାମରେ ହଲଦ୍‌ବନୀ ଗ୍ରାମର ଏକ ଆମ୍ବଗଛ ମୂଳେ ସିଦ୍‌କାହ୍ନୁ ଓଡ଼ିଆ ବିଦ୍ୟାଳୟ ଆରମ୍ଭ ହୋଇଥିଲା । ସେ ଜାଗାଟା ଅଛି ଟାଟା କମ୍ପାନୀ ଅଧୀନରେ । ଆଦିବାସୀ ଲୋକେ ସେଠାରେ ଚାରିବଖରା ଘର କରି ସେହି ଘରେ ଓଡ଼ିଆ ବିଦ୍ୟାଳୟ ଆରମ୍ଭ କରିଦେଲେ । ଓଡ଼ିଶାର ଆଦିବାସୀ ଭାଇମାନଙ୍କ ଓଡ଼ିଆଭାଷା ପ୍ରୀତିର ଏହା ଏକ ଉଜ୍ଜ୍ୱଳ ସ୍ମାରକୀ । ମୁଁ ଯାଇ ସେହି ବିଦ୍ୟାଳୟ ପରିଦର୍ଶନ କଲା ବେଳକୁ ଶିଶୁଶ୍ରେଣୀ ଠାରୁ ଆରମ୍ଭ କରି ପଞ୍ଚମ ପର୍ଯ୍ୟନ୍ତ ଛଅଟି ଶ୍ରେଣୀରେ ପ୍ରାୟ ସାଢ଼େ ଚାରିଶହ ଛାତ୍ରଛାତ୍ରୀ ପଢୁଥିଲେ । ଚାରିବଖରା ଘର ସାମନାରେ ଥିବା ବାରଣ୍ଡାରେ ପ୍ରଥମ ଓ ଶିଶୁ ଶ୍ରେଣୀର ପ୍ରାୟ ଦେଢ଼ଶହ କୁନି କୁନି ଆଦିବାସୀ ପିଲା ବସି ପଢ଼ିବାଦେଖି ମୋତେ ବହୁତ ଦୁଃଖ ଲାଗିଲା । ପ୍ରତିଘରେ ପ୍ରାୟ ଷାଠିଏ ସତୁରୀ ପିଲା ଖୁନ୍ଦାଖୁନ୍ଦି ହୋଇ ବସିଥାନ୍ତି । ସାତ ଆଠ ଜଣ ଶିକ୍ଷକ ମାସକୁ ଚାରିଶହରୁ ଏକ ହଜାର ଟଙ୍କା ପର୍ଯ୍ୟନ୍ତ ଦରମା ନେଇ ସେମାନଙ୍କୁ ପଢ଼ାଉଥିଲେ । ଛାତ୍ରମାନଙ୍କ ଠାରୁ ମାସକୁ ସ୍କୁଲ୍ ଫି ବାବଦ ୪/୫ ଟଙ୍କା କରି ଆଦାୟ ହୁଏ । ସେତିକିରେ ଯାହା ବିଦ୍ୟାଳୟ ଖର୍ଚ୍ଚ ଚଳେ । ଝାଡ଼ଖଣ୍ଡ ଏକ ଆଦିବାସୀ ରାଜ୍ୟ ହୋଇଥିଲେ ମଧ୍ୟ ମୟୂରଭଞ୍ଜର ଆଦିବାସୀମାନଙ୍କ ପିଲାଙ୍କୁ ଓଡ଼ିଆ ଶିକ୍ଷା ଦେବାପାଇଁ ବିହାର ସରକାର ଅଥବା ଟାଟା କମ୍ପାନୀ ପକ୍ଷରୁ ଦୀର୍ଘ ଚାଳିଶବର୍ଷ ମଧ୍ୟରେ କୌଣସି ସାହାଯ୍ୟ ମିଳିନଥିଲା, ଏବେ ମଧ୍ୟ ମିଳୁନାହିଁ । ଯେତେବେଳେ ବିହାର ସରକାର ଏଠାକାର ଓଡ଼ିଆ ସ୍କୁଲସବୁ ବଳ ପ୍ରୟୋଗ କରି ଉଠାଇ ଦେଲେ ମୟୂରଭଞ୍ଜର ଆଦିବାସୀମାନେ ସେତେବେଳେ ସାହସର ସହିତ ଏଠାରେ ହିନ୍ଦୀ ନ ପଢ଼ାଇ ଓଡ଼ିଆ ପଢ଼ାଇବାକୁ ପ୍ରୟାସ କରିବା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା ।

ସେହି ବିଦ୍ୟାଳୟର ସମସ୍ତ ପରିଚାଳନା କମିଟିର ସଦସ୍ୟ ତଥା ଶିକ୍ଷକମାନେ ଆଦିବାସୀ । ସେମାନଙ୍କୁ କହିଲି ବିହାର ହେଉ ବା ଝାଡ଼ଖଣ୍ଡ ହେଉ ଏ ରାଜ୍ୟର ମୁଖ୍ୟ

ଭାଷା ହେଉଛି ହିନ୍ଦି । ତାଛଡ଼ା ଜାମସେଦପୁର ମହାନଗରୀରେ ଚାକିରୀ ପାଇବାକୁ ହେଲେ ହିନ୍ଦି ଭାଷା ଜାଣିଥିବା ଉଚିତ୍ । ମାତ୍ର ଏଥିପ୍ରତି ଧ୍ୟାନ ନ ଦେଇ ଆଦିବାସୀ ଭାଇମାନେ ସେମାନଙ୍କ ପିଲାମାନଙ୍କୁ ଓଡ଼ିଆ ପଢ଼ାଇବା ଅଜବ କଥା । ମୁଁ ପଚାରିଲି, ଏ ସହରରେ ଥିବା ଅଧିକାଂଶ ଓଡ଼ିଆ ଲୋକ ସେମାନଙ୍କ ପିଲାଙ୍କୁ ହିନ୍ଦି ବା ଇଂରାଜି ବିଦ୍ୟାଳୟ ମାନଙ୍କରେ ପଢ଼ାଉଥିବା ବେଳେ ଆପଣମାନେ କିପରି ଦୀର୍ଘ ଦିନ ଧରି ଆପଣଙ୍କ ପିଲାମାନଙ୍କୁ ଓଡ଼ିଆ ପଢ଼ାଉଛନ୍ତି ? ସେମାନେ କହିଲେ, ଆମଘର ଓଡ଼ିଶାରେ । ସାନ୍ତାଳି ଭାଷା ସହିତ ଓଡ଼ିଆ ମଧ୍ୟ ହେଉଛି ଆମର ମାତୃଭାଷା । ଏ ରାଜ୍ୟର ମୁଖ୍ୟଭାଷା ହିନ୍ଦି ହେଲେମଧ୍ୟ ଓଡ଼ିଆମାନେ ଏ ରାଜ୍ୟରେ ମୂଳ ଅଧିବାସୀ । ହିନ୍ଦି ପାଇଁ ମାତୃଭାଷା ଓଡ଼ିଆକୁ ଆମେ ଭୂଲି ପାରିବୁ ନାହିଁ । ଦୀର୍ଘ ଚାଳିଶି ବର୍ଷ ଧରି ଆମେ ଏହି ବିଦ୍ୟାଳୟରେ ଆମ ପିଲାଙ୍କୁ ଓଡ଼ିଆ ପଢ଼ାଇ ଆସୁଛୁ । ବର୍ଷକୁ ବର୍ଷ ଆମର ଛାତ୍ର ସଂଖ୍ୟା ବଢ଼ି ଚାଲିଛି । ଆମେ ଯେତେ ଲେଖିଲେ ମଧ୍ୟ ଏ ଜାଗାକୁ ଟାଟା କମ୍ପାନୀ ଆମ ସ୍କୁଲ ନାମରେ କରି ଦେଉନାହିଁ । କିମ୍ବା ଏ ରାଜ୍ୟ ସରକାର ଆମ ବିଦ୍ୟାଳୟକୁ ସ୍ୱୀକୃତି ଦେଉ ନାହିଁ । ହିନ୍ଦି ବିଦ୍ୟାଳୟମାନଙ୍କୁ ସ୍ୱୀକୃତି ମିଳୁଛି ଓ ସେ ସବୁ ବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ସରକାର ଦରମା ଦେଉଛନ୍ତି । ମାତ୍ର ଆମର ସେଥିଲାଗି ଲୋଭ ନାହିଁ । ଆମେ ସବୁ ଗରିବ ଆଦିବାସୀ ମିଳିମିଶି ଏ ବିଦ୍ୟାଳୟକୁ ଚଳାଇ ରଖିଛୁ ଓ ରଖିବୁ । ଏହି ସ୍କୁଲରେ ଏତେ ଛାତ୍ରଛାତ୍ରୀ ପଢ଼ିବାକୁ ଚାହୁଛନ୍ତି ଯେ, ସେମାନଙ୍କ ପାଇଁ ଆମର ଜାଗା ନାହିଁ । ଏବେ ବାରଣ୍ଡାରେ ବସିବାକୁ ମଧ୍ୟ ସ୍ଥାନାଭାବ ହେଉଛି । ଦରିଦ୍ର ଆଦିବାସୀମାନଙ୍କୁ ଛାତ୍ରବୃତ୍ତି ପୋଷାକ, ଖାଦ୍ୟ ଆଦି ଯୋଗାଇବାର ସରକାରୀ ବ୍ୟବସ୍ଥା ଥିଲେ ମଧ୍ୟ ବିହାର ସରକାର ଏ ବିଦ୍ୟାଳୟ ପାଇଁ କିଛି ନ ଦେଇ ଏଠାରେ ଓଡ଼ିଆ ବଦଳରେ ହିନ୍ଦି ପଢ଼ାଇବାକୁ ବାଧ୍ୟ କରୁଥିଲେ । ଏବେ ମଧ୍ୟ ସେ ବିଦ୍ୟାଳୟକୁ ଝାଡ଼ଖଣ୍ଡ ସରକାରଙ୍କ ପକ୍ଷରୁ ସାହାଯ୍ୟ ମିଳୁନାହିଁ । ତଥାପି ଆଦିବାସୀ ଭାଇମାନଙ୍କ ଦୃଢ଼ ଇଚ୍ଛାଶକ୍ତି ବଳରେ ଏହି ବିଦ୍ୟାଳୟ ତିଷ୍ଠି ରହିଛି । ତେଣୁ ଉତ୍କଳ ସମ୍ମିଳନୀ ପକ୍ଷରୁ ଅକୁଣ୍ଠ ସାହାଯ୍ୟ ଯୋଗାଇବାକୁ ମୁଁ ନିଷ୍ପତ୍ତି ନେଲି ।

ମୁଁ କହିଲି, ଓଡ଼ିଶା ସରକାର ଏ ରାଜ୍ୟରେ ଥିବା ବେସରକାରୀ ଓଡ଼ିଆ ବିଦ୍ୟାଳୟଗୁଡ଼ିକୁ ସାହାଯ୍ୟ କରିବା ପାଇଁ ଟଙ୍କା ଦେଇଛନ୍ତି । ସେହି ଟଙ୍କାରୁ ଏ ସ୍କୁଲର ଉପରମହଲାରେ ଘର କରିବାପାଇଁ ସାହାଯ୍ୟ ମିଳିବ । ଆପଣମାନେ ଶୀଘ୍ର ଏହାର ବ୍ୟବସ୍ଥା କରନ୍ତୁ । ସେମାନେ ଅତି ଖୁସି ହୋଇଗଲେ । ମୁଁ ତାଙ୍କୁ ପ୍ରଥମେ ପଚାଶ ହଜାର ଟଙ୍କା ଦେଇ ସେ ଘରର ଛାତ ଉପରକୁ ଏକ ଚଉଡ଼ା ପାହାଚ ଗଢ଼ାଯିବା ପରେ ଉପର ମହଲାରେ କାନ୍ଥ ଗଢ଼ିବା ପାଇଁ ପ୍ରସ୍ତାବ ଦେଲି । ସେମାନେ ଖୁସି ହୋଇ ଶୀଘ୍ର କାର୍ଯ୍ୟ ଆରମ୍ଭ କରିବାକୁ କଥା ଦେଲେ ।

ଜାମସେଦପୁର ସହରଟା ସୁବର୍ଣ୍ଣରେଖା ନଦୀତୀରରେ ଅବସ୍ଥିତ । ଝାଡ଼ଖଣ୍ଡ ରାଜ୍ୟର ପୂର୍ବ ସିଂହଭୂମି ଜିଲ୍ଲାରେ ଏହି ସହର ଥିବା ସ୍ଥଳେ ନଦୀର ଅପର ପାର୍ଶ୍ୱରେ ଷଢ଼େଇକଳା ଖରସୁଆଁ ଜିଲାର ଆଦିତ୍ୟପୁର ଓ ଆସିଙ୍ଗି ଅଞ୍ଚଳ ଅଛି । ଏବେ ସେ ସବୁ ଅଞ୍ଚଳ ଜାମସେଦପୁର ମହାନଗରୀର ଅନ୍ତର୍ଭୁକ୍ତ । ଷଢ଼େଇକଳା-ଖରସୁଆଁ ଜିଲ୍ଲା ଝାଡ଼ଖଣ୍ଡ ରାଜ୍ୟର ସମ୍ପୂର୍ଣ୍ଣ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ । ଆଦିତ୍ୟପୁର ଓ ଆସିଙ୍ଗି ଅଞ୍ଚଳରେ ଶହ ଶହ ଓଡ଼ିଆ ପରିବାର ବାସକରନ୍ତି । ଆସିଙ୍ଗିରେ ଗୋଟିଏ ସରକାରୀ ଓଡ଼ିଆ ମଧ୍ୟବିଦ୍ୟାଳୟ ଥିଲା । ମାତ୍ର ବିହାରସରକାର ସେହି ବିଦ୍ୟାଳୟରୁ ଓଡ଼ିଆ ଶିକ୍ଷକମାନଙ୍କୁ ଅନ୍ୟତ୍ର ସ୍ଥାନାନ୍ତରିତ କରି ସେମାନଙ୍କ ସ୍ଥାନରେ ହିନ୍ଦି ଶିକ୍ଷକଙ୍କୁ ରଖାଇଦେଲେ । ସ୍ଥାନୀୟ ଓଡ଼ିଆମାନେ ସେଠାରେ କେତେଜଣ ଓଡ଼ିଆ ଶିକ୍ଷକ ରଖାଇବା ପାଇଁ ଦାବୀ କଲେ । କଥାହେଲା, ଏବେ ସେଠାରେ ଉତ୍କଳ ସମ୍ମିଳନୀ ପକ୍ଷରୁ ଓଡ଼ିଆଶିକ୍ଷକ ରହି ପିଲାମାନଙ୍କୁ ଓଡ଼ିଆ ପଢ଼ାଇବେ ଓ ତିନିବର୍ଷ ପରେ ଏଠାରେ ଏକ ହାଇସ୍କୁଲ ଆରମ୍ଭ କରାଯିବ ।

ଆସିଙ୍ଗିରୁ ଫେରି ଆଦିତ୍ୟପୁର ଓଡ଼ିଆ ମଧ୍ୟବିଦ୍ୟାଳୟ ଦେଖିଲି । ତା'ର ମଧ୍ୟ ସେଇ ଅବସ୍ଥା । କେବଳ ମାତ୍ର ଜଣେ ଓଡ଼ିଆ ଶିକ୍ଷୟିତ୍ରୀ ସେଠାରେ ପଢ଼ାଉଥିଲେ । ବାକୀ ସବୁ ହିନ୍ଦି ଶିକ୍ଷକ ଶିକ୍ଷୟିତ୍ରୀ । ସେଠାରେ ମଧ୍ୟ ଜଣେ ଓଡ଼ିଆ ଶିକ୍ଷକ ଦେବା ପାଇଁ ପ୍ରଧାନ ଶିକ୍ଷୟିତ୍ରୀଙ୍କ ସମେତ ଅନ୍ୟ ସବୁ ଶିକ୍ଷକ ଶିକ୍ଷୟିତ୍ରୀ ମୋତେ ଅନୁରୋଧ କଲେ । ବିଦ୍ୟାଳୟର ଶିଶୁ ବା ପ୍ରଥମ ଶ୍ରେଣୀରୁ ଓଡ଼ିଆ ପଢ଼ାଯିବା ଫଳରେ ଏଠାରେ ଓଡ଼ିଆ ମାଧ୍ୟମରେ ଶିକ୍ଷା ଦିଆଯାଇ ପାରିବ ।

## ପଶ୍ଚିମ ସିଂହଭୂମ ଜିଲ୍ଲାରେ :

ଜାମସେଦପୁରରୁ ଚକ୍ରଧରପୁର ଯାଇ ସେଠାରେ ଓଡ଼ିଆ ଚାଟଶାଳି ଖୋଲାଇବାକୁ ପୁରୁଣାବସ୍ତିର ଶ୍ରୀ ରବୀନ୍ଦ୍ର କୁମାର ଷଡ଼ଙ୍ଗୀ, ପ୍ରବୋଧ କୁମାର ମିଶ୍ର ଓ ଦେଓଗାଁର ସରୋଜ କୁମାର ପ୍ରଧାନଙ୍କ ସହିତ ଆଲୋଚନା କଲି । ଏ ଅଞ୍ଚଳର ବିଭିନ୍ନ ଗ୍ରାମକୁ ସେମାନଙ୍କ ସହିତ ଯାଇ ଗ୍ରାମବାସୀମାନଙ୍କ ସହିତ ଓଡ଼ିଆ ପଢ଼ାଇବା ବିଷୟରେ ମଧ୍ୟ ଆଲୋଚନା ହେଲା । ପ୍ରାୟ ଅଧିକାଂଶ ଲୋକ ସେମାନଙ୍କ ମାତୃଭାଷାର ସୁରକ୍ଷା ଲାଗି ଲାଳାୟୀତ । ଚକ୍ରଧରପୁର ଅଞ୍ଚଳଟା ଥିଲା ପୋଡ଼ାହାଟ ରାଜ୍ୟ । ଏହାର ପ୍ରଶାସକ ଥିଲେ ଓଡ଼ିଆରାଜା । ତାଙ୍କର ସେନାପତି ଜଗୁଦେବାନ ଇଂରେଜମାନଙ୍କର ଆଧିପତ୍ୟ ସ୍ୱୀକାର ନକରି ସେମାନଙ୍କ ସହିତ ଯୁଦ୍ଧ କରି ସହୀଦ୍ ହେଲେ । ଇଂରେଜମାନେ ରାଜ୍ୟଟାକୁ ଅଧିକାର କରି ପୋଡ଼ାହାଟ ରାଜାଙ୍କୁ ବନ୍ଦୀ କରିନେଲେ । ଓଡ଼ିଆ ଥିଲା ଏ ରାଜ୍ୟ ଲୋକଙ୍କର ମାତୃଭାଷା । ସମଗ୍ର ସିଂହଭୂମି ଅଞ୍ଚଳର ପ୍ରଶାସନିକ ସୁବିଧା ପାଇଁ ଇଂରେଜ ସରକାର ଛୋଟନାଗପୁର ସହିତ

ଏହାକୁ ଯୋଡ଼ି ଦେଲେ । ଫଳରେ ହିନ୍ଦିଭାଷୀ ଲୋକେ ସିଂହଭୂମିର ପ୍ରଶାସନିକ ଦାୟୀତ୍ୱରେ ରହିଲେ ଓ ଧୀରେ ଧୀରେ ସେମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ଏଠାକାର ଆଦିବାସୀମାନେ ସାନ୍ତାଳିଭାଷା କହୁଥିଲେ ମଧ୍ୟ "ଓଡ଼ିଆ" ସେମାନଙ୍କ ମାତୃଭାଷା ବୋଲି ଲେଖୁଥିଲେ । ବହୁ ଆଦିବାସୀ ପରିବାର ଓଡ଼ିଆ ବୁଝନ୍ତି ଓ କହିବାକୁ ଚେଷ୍ଟା କରନ୍ତି । ତେଣୁ ଅଧିକାଂଶ ଗ୍ରାମରେ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ଥିଲା । ବିହାର ସରକାର ସେ ସବୁ ବିଦ୍ୟାଳୟରୁ ଓଡ଼ିଆ ପଢ଼ାଇବା ବନ୍ଦ କରିଦେଲେ । ଗ୍ରାମବାସୀମାନେ ସେମାନଙ୍କ ପିଲାମାନଙ୍କୁ ଓଡ଼ିଆ ପଢ଼ାଇବାକୁ ଆଗ୍ରହ ପ୍ରକାଶ କରିବା ଦେଖି ପ୍ରଥମେ ଚକ୍ରଧର ପୁର ଅଞ୍ଚଳରେ କୋଡ଼ିଏଟି ଓଡ଼ିଆ ଚାଟଶାଳି ଖୋଲିବାର ବ୍ୟବସ୍ଥା ହେଲା ।

କେରା ଗ୍ରାମରେ ଗୋଟିଏ ଓଡ଼ିଆ ହାଇସ୍କୁଲ ଖୋଲିବାକୁ ସେଠାକାର ଯୁବକମାନେ ଲାଗିଥିଲେ । ଯୁବକସଂଘ ପକ୍ଷରୁ ଗୋଟିଏ ଘରେ ଅଷ୍ଟମଶ୍ରେଣୀ ଖୋଲାଯାଇଥିଲା । ପୂର୍ବରୁ ସେଠାରେ ଥିବା ଗୋଟିଏ ଖପରଲି ଘରେ ଗ୍ରାମର ପ୍ରାଥମିକ ବିଦ୍ୟାଳୟ ଚାଲୁଥିଲା । ସେହି ବିଦ୍ୟାଳୟକୁ ଅନ୍ୟଏକ ସ୍ଥାନକୁ ଉଠାଇ ନେବାପରେ ପୁରୁଣା ଘରଟା ସମ୍ପୂର୍ଣ୍ଣ ଭାଙ୍ଗି ଯାଇଥିଲା । ସେହି ସ୍ଥାନରେ ଚାରିବଖରା ଘର ତିଆରିକରି ଓଡ଼ିଆ ହାଇସ୍କୁଲ କରିବା ପାଇଁ ଯୁବକମାନେ ପ୍ରସ୍ତାବ ଦେଲେ । ତଦନୁଯାୟୀ ଇଟା କିଣି ଘର ତିଆରି କରିବାକୁ ଟ.୩୦,୦୦୦ଙ୍କା ପ୍ରଥମ କିସ୍ତିରେ ଉତ୍କଳସମ୍ମିଳନୀ ପକ୍ଷରୁ ଦିଆଗଲା । ପରେ କାଠ ଓ ଆଜ୍‌ବେଷ୍ଟସ୍ ପାଇଁ ବ୍ୟବସ୍ଥା କରାଯିବ ।

କେରାପାଖରୁ ତିନିମାଇଲ ଦୂରରେ ନିଶ୍ଚିନ୍ତପୁର ଗ୍ରାମ । ସତୁରୀ ଦଶକରେ ସେହି ଗ୍ରାମରେ ଗୋଟିଏ ବେସିକ୍‌ସ୍କୁଲ୍ ପ୍ରତିଷ୍ଠା କରାଯାଇ ସ୍ଥାନୀୟ ଛାତ୍ରଛାତ୍ରୀଙ୍କୁ ପାଠପଢ଼ାଇବା ସଙ୍ଗେସଙ୍ଗେ ସୂତା କାଟିବା, ଲୁଗା ବୁଣିବା, ଟୋକେଇ ବୁଣିବା, ସିଲେଇ କରିବା ଆଦି ବିଭିନ୍ନ ଶିକ୍ଷା ଦିଆଯାଉଥିଲା । ମାତ୍ର ସେ ସବୁ ଯୋଜନା ବନ୍ଦ ହୋଇଯିବା ପରେ ସେଥିଲାଗି ତିଆରି ହୋଇଥିବା ଘରଦ୍ୱାର ନଷ୍ଟ ହୋଇଗଲା । ନିକଟସ୍ଥ ବାଇପିଡ଼ି ଗ୍ରାମର ଗିରି ପରିବାରର ଚାରିଭାଇ ମିଶି ସେ ସବୁ ଘରର ସଦୁପଯୋଗ କରିବା ଲାଗି ଏକ ଓଡ଼ିଆ ବିଦ୍ୟାଳୟ କରିବାକୁ ଯୋଜନା କଲେ । ପୂର୍ବରୁ ଥିବା ଗୋଟିଏ ଦାଣ୍ଡି କୋଠାଘର ଓ ଚାରିବଖରା ବିଶିଷ୍ଟ ଏକ ରହିବା ଘରର (କ୍ୱାଟରର) କବାଟ ଝରକା ସବୁ ସ୍ଥାନୀୟ ଲୋକେ ତାଡ଼ି ନେଇଥିଲେ । ସେହି ଦାଣ୍ଡି ଘରେ ସେମାନେ ଗୋଟିଏ ଓଡ଼ିଆ ମଧ୍ୟ ବିଦ୍ୟାଳୟ ଆରମ୍ଭ କଲେ । ସେହି ପରିବାରର ସବା ସାନଭାଇ ରାମରୁଦ୍ର ଗିରି ଭାରତୀୟ ସେନାବାହିନୀରେ ଚାକିରୀ କରି ତାଙ୍କର ଦରମାରୁ ପ୍ରତିମାସରେ ଚାରିଜଣ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପ୍ରାପ୍ୟ ବାବଦ ଟ.୪୦୦୦ଙ୍କା କରି ପଠାଉଥିଲେ । ଚତୁର୍ଥ ଶ୍ରେଣୀରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ସେଠାରେ ପାଠପଢ଼ା ହେଉଥିଲା । ସେଠାକୁ ଯାଇ ଯାହାଦେଖିଲି, ଏହି ବିଦ୍ୟାଳୟ ଭବିଷ୍ୟତରେ ଗୋଟିଏ ହାଇସ୍କୁଲରେ ପରିଣତ ହୋଇ ପାରିବ । ଭାଙ୍ଗି ପଡ଼ିଥିବା

ଖପରଘର ଗୁଡ଼ିକର ପୁର୍ନନିର୍ମାଣ କରାଯାଇପାରିଲେ ସେଠାରେ ଗୋଟିଏ କଲେଜ ବା ଶିକ୍ଷତାଲିମ ସଂସ୍ଥା ମଧ ଖୋଲାଯାଇପାରିବ । ତେବେ, ଯେଉଁ ଜରାଜୀର୍ଣ୍ଣ କୋଠାଘରେ ଓଡ଼ିଆ ମାଧମିକ ବିଦ୍ୟାଳୟ ଚାଲୁଛି, ତାର ଛାତ ଅବସ୍ଥା ଶୋଚନୀୟ ଥିବାର ଦେଖିଲି । ତେଣୁ ଉତ୍କଳ ସମ୍ମିଳନୀ ପକ୍ଷରୁ ସେ ଘରର ଛାତ ମରାମତି ପାଇଁ ସରକାରୀ ଅନୁଦାନରୁ ସାହାଯ୍ୟ ଦେବା ପାଇଁ ସେମାନେ ଅନୁରୋଧ କଲେ । ଉତ୍କଳ ସମ୍ମିଳନୀ ପକ୍ଷରୁ ଶିକ୍ଷକ ଦିଆଗଲେ ସେଠାରେ ନବମ ଶ୍ରେଣୀ ଖୋଲାଯାଇ ପାରିବ ଓ ପ୍ରତି ଶ୍ରେଣୀରେ ବର୍ଣ୍ଣବୋଧ ପଢ଼ାଯାଇ ଛାତ୍ରଛାତ୍ରୀମାନଙ୍କର ଓଡ଼ିଆ ଜ୍ଞାନ ବଢ଼ାଯାଇପାରିବ ।

ଉତ୍କଳମଣି ଗୋପବନ୍ଧୁଙ୍କ ଦ୍ୱାରା ସେ ଅଞ୍ଚଳରେ ଯେଉଁ ସବୁ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ଖୋଲାଯାଇଥିଲା, ପରବର୍ତ୍ତୀ କାଳରେ ତନ୍ମମଧରୁ କେତେକ ବିଦ୍ୟାଳୟ ତାଙ୍କ ନାମରେ ନାମିତ ହୋଇଥିଲା । ଚକ୍ରଧର ପୁର ରେଳଷ୍ଟେସନ ନିକଟବର୍ତ୍ତୀ ସେହିଭଳି ଏକ ବିଦ୍ୟାଳୟ ଥିଲା ଉତ୍କଳମଣି ହାଇସ୍କୁଲ୍ । ଏଠାରେ ବହୁ ହିନ୍ଦିଭାଷୀ ଛାତ୍ରଛାତ୍ରୀ ପଢୁଥିଲେ । ସେମାନଙ୍କ ଲାଗି ସମସ୍ତ ପାଠ୍ୟକ୍ରମ ହିନ୍ଦିରେ ଚଳୁଥିଲା । ସ୍ଥାନୀୟ କେତେଜଣ ଓଡ଼ିଆ ନେତୃସ୍ଥାନୀୟ ଲୋକଙ୍କୁ ଏହା ନ କରିବା ପାଇଁ ଅନୁରୋଧ କଲି । କାରଣ ଉତ୍କଳମଣିଙ୍କ ନାମରେ ପ୍ରତିଷ୍ଠିତ ବିଦ୍ୟାଳୟରେ କେବଳ ଓଡ଼ିଆ ଭାଷାକୁ ପ୍ରାଧାନ୍ୟ ଦିଆଯିବା ଉଚିତ । ଦେଓଗାଁର ଶ୍ରୀ ଅଲେଖ ଚରଣ ପ୍ରଧାନ ମୋ କଥାରେ ଗୁରୁତ୍ୱ ଦେଇ ବିଦ୍ୟାଳୟର ପରିଚାଳନା କମିଟି ସଭ୍ୟମାନଙ୍କୁ ଡକାଇ ଏ ବିଷୟରେ ପ୍ରଭାବିତ କରିବାରେ ଲାଗି ପଡ଼ିଲେ । ତାଙ୍କରି କଥା ଅନୁସାରେ ଓଡ଼ିଶା ସରକାରଙ୍କ ପକ୍ଷରୁ ବିଦ୍ୟାଳୟକୁ ଏକକାଳୀନ ଅନୁଦାନ ମିଳିଥିଲା । ଜଣାଗଲା ଯେ, ବର୍ତ୍ତମାନର ସଭାପତି ଏଥିପ୍ରତି ଗୁରୁତ୍ୱ ଦେଉ ନାହାନ୍ତି । ତେବେ ବର୍ଷକପରେ ପରିଚାଳନା ସଭାର ନିର୍ବାଚନ ହୋଇ ଅଲେଖ ବାବୁ ସଭାପତି ଭାବେ ନିର୍ବାଚିତ ହେଲେ । ସେ ଓଡ଼ିଆ ପାଠ୍ୟକ୍ରମ ଚଳାଇବା ଉପରେ ସମ୍ପୂର୍ଣ୍ଣ ଗୁରୁତ୍ୱ ଦେଲେ ।

ଚକ୍ରଧରପୁରଠାରୁ ଦଶ କିଲୋମିଟର ବ୍ୟାସାର୍ଦ୍ଧ ଭିତରେ ଥିବା ଓଡ଼ିଆ ଗ୍ରାମାଞ୍ଚଳରେ ଗାଆଁ ଗାଆଁ ବୁଲିବାକୁ ପଡ଼ିଲା । ରାସ୍ତା କଡ଼ରେ ଥିବା ଗାଆଁମାନଙ୍କୁ ଯିବାରେ ଅସୁବିଧା ନାହିଁ । ମାତ୍ର ଯେଉଁ ସବୁ ଗାଆଁକୁ ରାସ୍ତାନାହିଁ, ସେସବୁ ଗାଆଁରେ ପହଞ୍ଚିବା କଷ୍ଟସାଧ କଥା । ଏ ଦିଗରେ ଶ୍ରୀ ସରୋଜ ପ୍ରଧାନ ମୋତେ ପ୍ରତିଥର ସାହାଯ୍ୟ କରୁଥିଲେ ।

ଚକ୍ରଧରପୁରରେ ଶ୍ରୀ ଅଲେଖ ଚନ୍ଦ୍ର ପ୍ରଧାନଙ୍କ ଘରଟା ସତେଯେପରି ମୋ ନିଜର ହୋଇ ଯାଇଥିଲା । ଦେଓଗାଁରେ ସେ ରହନ୍ତି । ମୁଁ ଚକ୍ରଧର ପୁର ପହଞ୍ଚିବା ମାତ୍ରେ ତାଙ୍କ ପୁଅ ସରୋଜ ଆସି ମୋତେ ଷ୍ଟେସନରୁ ନେଇଯାଆନ୍ତି । ତାଙ୍କ ଘରେ ଗାଧୁଆ ପାଧୁଆ ଖିଆପିଆ ସାରି ଆମେ ଓଡ଼ିଆଶିକ୍ଷା ପ୍ରସାର କାର୍ଯ୍ୟରେ ଯାଉ । ସରୋଜ ଜଣେ ଉଦ୍ଦୀୟମାନ ଯୁବକ । ସମାଜସେବା କାର୍ଯ୍ୟରେ ସେ ପିଲାଦିନୁ ନିଜକୁ ନିୟୋଜିତ କରି ଏ ଅଞ୍ଚଳରେ

ଯୁବଗୋଷ୍ଠି ମଧ୍ୟରେ ବେଶ ଲୋକପ୍ରିୟ ହୋଇ ପାରିଛନ୍ତି । ତାଙ୍କର ପିତା ଅଲେଖବାବୁ ମଧ୍ୟ ଜଣେ ସମାଜସେବୀ । ସରୋଜଙ୍କ ମଟର ସାଇକେଲ ପଛରେ ବସି ମୁଁ ବିଭିନ୍ନ ଗାଆଁକୁ ଯାଏ । ସେଥିଲାଗି ତାଙ୍କର ବିରୋଧ ସତ୍ତ୍ୱେ ମୁଁ ପେଟ୍ରୋଲ୍ ପକାଇଦିଏ । ବିଭିନ୍ନ ଗ୍ରାମର ଲୋକଙ୍କ ସହିତ ସାକ୍ଷାତକରି ଓଡ଼ିଆ ଶିକ୍ଷାଦାନ ବିଷୟରେ ଆଲୋଚନା କରିବାକୁ ଆଉ ଜଣେ ବା ଦୁଇଜଣ ଯୁବକ ଆମ ସାଙ୍ଗରେ ଯାଆନ୍ତି । ସେମାନଙ୍କ ମଟର ସାଇକେଲରେ ମଧ୍ୟ ପେଟ୍ରୋଲ ଭରିଦିଆଯାଏ । ପ୍ରତିଦିନ ଅତିକମ୍‌ରେ ୪/୫ଟି ଗାଆଁକୁ ଯିବାକୁ ପଡ଼େ । ଗ୍ରାମର ଲୋକମାନଙ୍କ ସହିତ ଆଲୋଚନା କରିବା ପରେ ଚାଟଶାଳିରେ ପଢ଼ାଇବା ପାଇଁ ଶିକ୍ଷକ ବା ଶିକ୍ଷୟିତ୍ରୀ ବଛାଯାଏ । ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଏସବୁ କଥାରେ ତରତର ହେବାର ପ୍ରଶ୍ନ ନାହିଁ । ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷାପ୍ରସାର କରିବା ପାଇଁ ସେସବୁ ଅଞ୍ଚଳରେ ରହି କାମ କରିବାକୁ ହେବ । ମାତ୍ର ରହିବାପାଇଁ ହୋଟେଲ୍ କିମ୍ବା ଗ୍ରାମାଞ୍ଚଳକୁ ଗସ୍ତ କରିବାକୁ ଟାକ୍ସି ଖୋଜି ବସିଲେ ସେଥିପାଇଁ ଯଥେଷ୍ଟ ଅର୍ଥ ଆବଶ୍ୟକ । ସରକାର ଯେତେ ଟଙ୍କା ଓଡ଼ିଆ ଶିକ୍ଷା ପ୍ରସାର ଲାଗି ଦେଇଛନ୍ତି; ସେ ଟଙ୍କାରୁ ମାତ୍ର ଏଥିଲାଗି ତିନିଶତାଂଶ ବାଟଖର୍ଚ୍ଚ ଲାଗି ଉଦ୍ଦିଷ୍ଟ । ଏହି ଅର୍ଥରୁ ହୋଟେଲ୍‌ରେ ଖାଇବା ମଧ୍ୟ ମୋର ନୀତିବିରୁଦ୍ଧ କଥା । ମୁଁ ସେଠାକାର କେତେଜଣ ଓଡ଼ିଆ ପ୍ରେମୀ ବନ୍ଧୁଙ୍କର ସାହାଯ୍ୟ ନେଉଥିଲି । ଜାମସେଦପୁରରେ ଶ୍ରୀ ରବୀନ୍ଦ୍ର କୁମାର ମିଶ୍ର ଓ କାଶୀନାଥ ଗୌଡ଼ଙ୍କ ଘରେ ମୁଁ ରହେ ଓ ସେମାନଙ୍କ ଘରେ ଖିଆପିଆ କରେ । ଜଣେ ବନ୍ଧୁ ଭାବରେ ସେମାନଙ୍କ ଘରକୁ ନିଜ ତରଫରୁ ପରିବାପତ୍ର, ଫଳ ଓ ମିଠା ଆଦି ନେବାକୁ ଭଲଲାଗେ ।

ଏପରି କରିବାଦ୍ୱାରା ଉତ୍କଳ ସମ୍ମିଳନୀ ପକ୍ଷରୁ କେବଳ ବାଟଖର୍ଚ୍ଚ ପାଇଁ ଯାହା ଖର୍ଚ୍ଚ ହୁଏ । ତେଣୁ ସରକାରୀ ଅନୁଦାନର ମାତ୍ର ଶତକଡ଼ା ତିନିଭାଗ ଭିତରେ ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ପ୍ରସାର କାର୍ଯ୍ୟ ଝାଡ଼ଖଣ୍ଡର କର୍ମୀମାନଙ୍କ ଜରିଆରେ କରାଇବା ଯୋଗୁଁ ଏବାବଦ ଖର୍ଚ୍ଚ ସୀମିତ ରହେ ।

ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ କୌଣସି ହାଇସ୍କୁଲ ବା ମାଧ୍ୟମିକ ବିଦ୍ୟାଳୟକୁ ଡକାଇ ଓଡ଼ିଆ ପଢ଼ାଇବା ବିଷୟରେ ତାଲିମ ଦେବାକୁ ହେଲେ ସେମାନଙ୍କ ପାଇଁ ଜଳଖିଆ ଓ ଚା' ଖର୍ଚ୍ଚ ମଧ୍ୟ ଏହି ଅର୍ଥରୁ ବହନ କରାଯାଏ । ମାତ୍ର ଅନ୍ୟସବୁ ରାଜ୍ୟରେ ଓଡ଼ିଆ ଶିକ୍ଷା ପ୍ରସାରଲାଗି ଯାଉଥିବା କର୍ମୀମାନଙ୍କ ରହିବା ଓ ଖାଇବା ଖର୍ଚ୍ଚ ସାଙ୍ଗକୁ ଯାନବାହାନ ଖର୍ଚ୍ଚ ମଧ୍ୟ ସେମାନେ ଏଥିରୁ ଦାବୀ କରୁଥିଲେ। କାରଣ, କଟକ ବା ଭୁବନେଶ୍ୱରରୁ ଅନେକ ବନ୍ଧୁ ଝାଡ଼ଖଣ୍ଡ ବା ଅନ୍ୟ ବିଚ୍ଛିନ୍ନଅଞ୍ଚଳକୁ ଯିବା ପାଇଁ ଚାହିଁଲେ ମଧ୍ୟ ସେମାନଙ୍କର ବାଟଖର୍ଚ୍ଚ ସାଙ୍ଗକୁ ହୋଟେଲରେ ରହିବା ଓ ଖାଇବାଖର୍ଚ୍ଚ ସରକାରୀ ଅନୁଦାନରୁ ଖର୍ଚ୍ଚ କରାଯିବା ବହୁ ବ୍ୟୟସାପେକ୍ଷ ହୋଇପଡୁଥିଲା ।

## ଷଢେଇକଳା ଖରସୁଆଁ ଜିଲ୍ଲାରେ :

ଓଡ଼ିଶାର ଲୋକମାନଙ୍କ ମନରେ ଷଢେଇକଳା-ଖରସୁଆଁ ଏକ ସ୍ମୃତି ଭଳି ସର୍ବଦା ରହିଛି । ସ୍ୱାଧୀନତା ପରେ ଏହି ଦୁଇ ରାଜ୍ୟର ରାଜାମାନେ ସେମାନଙ୍କ ରାଜ୍ୟକୁ ଓଡ଼ିଶା ସହିତ ମିଶାଇ ଦେବାକୁ ଲେଖି ଦେଇଥିଲେ ମଧ୍ୟ ବିହାରୀ ନେତା ରାଜେନ୍ଦ୍ର ପ୍ରସାଦ ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ଥାଇ ସମସ୍ତ ନିତୀନିୟମ ବିରୁଦ୍ଧରେ ଯାଇ ଏସବୁ ଅଞ୍ଚଳକୁ ବିହାରସହିତ ମିଶାଇ ଦେଲେ । ରାଜେନ୍ଦ୍ର ବାବୁ ଓ ଜବାହାରଲାଲ୍ ନେହେରୁଙ୍କ ନାଲିଆଖି ଦେଖି ଓଡ଼ିଶା ଶାସନ ଦାୟିତ୍ୱରେ ଥିବା କଂଗ୍ରେସୀ ନେତା ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ତଥା ଅନ୍ୟମାନେ ଭୟ କରୁଥିଲେ । ତତ୍‌କାଳୀନ ଓଡ଼ିଶା ସରକାର ଷଢ଼େଇକଳା ଓ ଖରସୁଆଁ ରାଜ୍ୟ ଦୁଇଟିକୁ ବିହାର ହାତରେ ଟେକିଦେଇ ନିସ୍ତାର ପାଇଗଲେ । ତେଣୁ ଏବେ ମଧ୍ୟ କେତେକ ବୟୋଜ୍ୟେଷ୍ଠ ବ୍ୟକ୍ତି ଉତ୍କଳ ସମ୍ମିଳନୀର ସଭ୍ୟସଭ୍ୟାମାନଙ୍କୁ ପଚାରନ୍ତି- "ଷଢ଼େଇକଳା-ଖରସୁଆଁ ଅଞ୍ଚଳକୁ ତୁମେ ଓଡ଼ିଶାରେ ମିଶାଇ ପାରିବ କି ?" ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଓଡ଼ିଆ ଜାତୀୟତା ବିଷୟରେ ଚିନ୍ତା କରନ୍ତି ନାହିଁ । ଓଡ଼ିଶା ଇତିହାସ ସମ୍ପର୍କରେ ଜାଣିବାକୁ ମଧ୍ୟ କାହାର ହେଲେ ସାମାନ୍ୟତମ ଆଗ୍ରହ ନଥାଏ ।

ଓଡ଼ିଶା ସରକାରଙ୍କ ଅପାରଗତା ହେତୁ ବିହାର ସରକାର ସିଂହଭୂମିର ଅନ୍ୟସବୁ ଓଡ଼ିଆଅଞ୍ଚଳ ତୁଳନାରେ ଷଢ଼େଇକଳା ଓ ଖରସୁଆଁ ରାଜ୍ୟରେ ସବୁତକ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟକୁ ହିନ୍ଦି ବିଦ୍ୟାଳୟରେ ପରିଣତ କରିବାକୁ ଯଥାସାଧ୍ୟ ଚେଷ୍ଟା କରିଥିଲେ । ଷଢେଇକଳା ବଜାରରେ ଥିବା ଓଡ଼ିଆ ମଧ୍ୟ ବିଦ୍ୟାଳୟଟା ହିନ୍ଦି ବିଦ୍ୟାଳୟରେ ପରିଣତ ହୋଇଗଲା । ୧୯୭୪ ମସିହାରେ ନୀଳଚକ୍ର ଅନୁଷ୍ଠାନ ପକ୍ଷରୁ ତାହାର ପ୍ରତିଷ୍ଠାତା ଅଧିବକ୍ତା ବ୍ରହ୍ମାନନ୍ଦ ପଣ୍ଡା ଷଢ଼େଇକଳା ଯାଇ ସେଠାରେ ଏକ ଓଡ଼ିଆ ହାଇସ୍କୁଲ ଆରମ୍ଭ କଲେ । ଷଢେଇକଳାର ବହୁ ଛାତ୍ରଛାତ୍ରୀ ଏହି ବିଦ୍ୟାଳୟରେ ନାମ ଲେଖାଇଲେ । ତିନି ବର୍ଷ ଭିତରେ ଅଷ୍ଟମ ଶ୍ରେଣୀରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ତିନିଟି ଶ୍ରେଣୀ ସେଠାରେ ଖୋଲା ହେଲା । ସେତେବେଳେ ଏକାଦଶ ଶ୍ରେଣୀ ଶେଷରେ ମାଟ୍ରିକ୍ ପରୀକ୍ଷା ହେଉଥିଲା । ପ୍ରତିମାସରେ ଶିକ୍ଷକ ଦରମା ଦେଇ ବିଦ୍ୟାଳୟ ଚଳାଇବା ନୀଳଚକ୍ର ଅନୁଷ୍ଠାନ ପକ୍ଷରେ ସମ୍ଭବପର ହୋଇ ପାରିଲା ନାହିଁ । ତେଣୁ ଦଶମଶ୍ରେଣୀ ଖୋଲିବା ପରେ ଶିକ୍ଷକମାନେ ଦରମା ନପାଇ ଅସୁବିଧା ଭୋଗକଲେ । ସେହିବର୍ଷ ବିଦ୍ୟାଳୟଟି ବନ୍ଦ ହୋଇଗଲା । ଫଳରେ ବହୁ ଛାତ୍ରଛାତ୍ରୀ ମାଟ୍ରିକ ପରୀକ୍ଷା ଦେଇ ନପାରି ମଝିରୁ ପଢ଼ା ଛାଡ଼ି ଦେଲେ । ଷଢେଇକଳାରେ ଓଡ଼ିଆ ଚାଟଶାଳି ଖୋଲିବା ପାଇଁ ସ୍ଥାନୀୟ ଲୋକମାନଙ୍କ ସହିତ ଆଲୋଚନା କଲାବେଳେ ବହୁଲୋକ ପଚାରିଲେ, ଆପଣଙ୍କର ଚାଟଶାଳି କେତେବର୍ଷ

ଚାଲିବ ? କିଛି ଦିନପରେ ପୁଣି ବନ୍ଦ ହୋଇଯିବ ନାହିଁ ତ ? ସେମାନଙ୍କୁ ବୁଝାଇ କହିଲି, ଏଠାରେ ଓଡ଼ିଆଶିକ୍ଷା କାର୍ଯ୍ୟକ୍ରମ କିପରି ଚିରସ୍ଥାୟୀ ହେବ ସେଚିନ୍ତା ଆମମୁଣ୍ଡରେ ଘାରୁଛି । ଓଡ଼ିଶାର ଗଣଶିକ୍ଷା ମନ୍ତ୍ରୀ ଚକ୍ରଧରପୁର ଆସି ଯାହା ଦେଖିଗଲେ, ସେଥିରୁ ସେ ସମଗ୍ର ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଏଣିକି ସରକାରୀ ଅନୁଦାନ ଦେବା ବିଷୟରେ ଦୃଢ଼ନିଶ୍ଚିତ ବୋଲି ଜଣାଯାଉଛି । ଏବେ ଏଠାକାର ପିଲାମାନେ ହିନ୍ଦିପଢ଼ି ଓଡ଼ିଆ ଭାଷାକୁ ଭୁଲି ଯାଉଛନ୍ତି । ତେଣୁ ସେମାନଙ୍କୁ ଚାଟଶାଳିରେ ବର୍ଣ୍ଣବୋଧ ପଢ଼ାଇ ପ୍ରଥମେ ସେମାନଙ୍କର ମୂଳଦୁଆ ଦୃଢ଼ କରିବାକୁ ଚେଷ୍ଟା କରାଯାଉଛି । ସେମାନେ ପ୍ରାଥମିକ ବିଦ୍ୟାଳୟରେ ପଢ଼ିଲେ ମଧ୍ୟ ଚାଟଶାଳିରେ ଏଠାକାର ବିଦ୍ୟାଳୟ ପାଠ୍ୟକ୍ରମ ସବୁ ଓଡ଼ିଆରେ ହେବ ଓ ଏହାପରେ ଝାଡ଼ଖଣ୍ଡ ରାଜ୍ୟସରକାରଙ୍କ ସହିତ ଆଲୋଚନା କରି ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷକ ରଖାଇବାର ବ୍ୟବସ୍ଥା କରାଯିବ । ତେଣୁ ଆପଣମାନେ ଛାତ୍ରଛାତ୍ରୀମାନଙ୍କର ଧାରାବାହିକ ପାଠପଢ଼ାରେ କୌଣସି ଆଘାତ ଆସିବା ବିଷୟରେ ଚିନ୍ତା କରନ୍ତୁ ନାହିଁ । ଝାଡ଼ଖଣ୍ଡର ସମସ୍ତ ଓଡ଼ିଆ ଗ୍ରାମରେ ଥିବା ପ୍ରାଥମିକ ବିଦ୍ୟାଳୟରେ ଓଡ଼ିଆ ଶିକ୍ଷାଦେବା ଏବେ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ।

ଖରସୁଆଁର ଓଡ଼ିଆ ନେତା ବିଶ୍ୱନାଥ କରଙ୍କର ୨୦୦୨ ମସିହାରେ ଦେହାନ୍ତ ହୋଇଗଲା । ତାଙ୍କ ସ୍ମୃତିରେ କଟକ ଜିଲା ଉତ୍କଳସମ୍ମିଳନୀ ଶାଖା ପକ୍ଷରୁ ୨୦୦୩ ମସିହାର ବିଶେଷାଙ୍କ "ଉତ୍କଳ ନିଦାନ" ପ୍ରକାଶିତ ହୋଇଥିଲା । ଏହା ଛଡ଼ା, ତାଙ୍କର ବିଧବାପତ୍ନୀଙ୍କୁ ସମ୍ମାନିତ କରାଯାଇ କଟକର ସହୀଦ ଭବନରେ ଆୟୋଜିତ ବାର୍ଷିକ ଉତ୍ସବରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଉତ୍କଳ ସମ୍ମିଳନୀ ପକ୍ଷରୁ ଦଶହଜାର ଟଙ୍କା ଦେଇଥିଲେ । ସେହି ବିଶ୍ୱନାଥ କରଙ୍କର ଜଣେ ବିଶ୍ୱସ୍ତ ସହକର୍ମୀ ଶ୍ରୀ ସୁମନ୍ତ ଚନ୍ଦ୍ର ମହାନ୍ତିଙ୍କୁ ଖରସୁଆଁରେ ଓଡ଼ିଆ ଚାଟଶାଳି ଖୋଲିବାକୁ ଅନୁରୋଧ କଲି ।

ଷଢେଇକଳା ବଜାରରେ ଯାଜପୁର ଜିଲାର ଶ୍ରୀ ବନମାଳି ସାହୁ ଗୋଟିଏ ଖାଇବା ହୋଟେଲ ଖୋଲିଥିଲେ । ତାଙ୍କର ମୃତ୍ୟୁ ପରେ ତାଙ୍କ ପୁଅ ହଳଧର ସାହୁ ସେହି ହୋଟେଲର ଦାୟିତ୍ୱ ନେଇ ଚଳାଉଥିଲେ । ଷଢେଇକଳା ଗଲେ ତାଙ୍କରି ହୋଟେଲରେ ଖାଇବାକୁ ପଡ଼େ । ଆମର କାର୍ଯ୍ୟକ୍ରମ ବିଷୟରେ ଜାଣି ସେ ମଧ୍ୟ ସାହାଯ୍ୟ କରିବାକୁ ଇଚ୍ଛା କଲେ । ଚକ୍ରଧରପୁରର ସରୋଜ ପ୍ରଧାନଙ୍କୁ ତାଙ୍କସହିତ ମିଶି ଏ ଅଞ୍ଚଳରେ କାମ କରିବାକୁ ଅନୁରୋଧ କଲି । ଷଢେଇକଳା ସହରରେ ପ୍ରାୟ ପନ୍ଦରଟି ଚାଟଶାଳି ଖୋଲାଗଲା । ଖରସୁଆଁରେ ସୁମନ୍ତବାବୁ ପ୍ରାୟ ଦଶଟି ଚାଟଶାଳି ଖୋଲାଇବାର ବ୍ୟବସ୍ଥା କଲେ । ତାଙ୍କ ସହିତ ସେସବୁ ସ୍ଥାନ ବୁଲି ବୁଲି ମୋତେ ନିଷ୍ପତ୍ତି ନେବାକୁ ପଡ଼ିଲା ।

## ଛତିଶଗଡ଼ ଓ ପଶ୍ଚିମବଙ୍ଗରେ :

ଛତିଶଗଡ଼ ରାଜ୍ୟରେ ଓଡ଼ିଆ ଚାଟଶାଳି ଖୋଲିବାର ଦାୟୀତ୍ୱ ନେଇଥିଲେ ଶ୍ରୀ ପଦ୍ମଚରଣ ନାୟକ । ଏ କାର୍ଯ୍ୟରେ ତାଙ୍କୁ ଉତ୍କଳସମ୍ମିଳନୀ କେନ୍ଦ୍ର କାର୍ଯ୍ୟକାରୀ କମିଟିର ଅନ୍ୟତମ ସମ୍ପାଦକ ଶ୍ରୀ ରାଧାନାଥ ପ୍ରହରାଜ ସାହାଯ୍ୟ କଲେ । ଏଥିଲାଗି ସେମାନେ ଝାରସୁଗୁଡ଼ା ଜିଲାର ଝାରୁପଡ଼ା ନିବାସୀ କ୍ଷମାସାଗର ଭୁଇଁଙ୍କର ସହଯୋଗ ଲୋଡ଼ିଲେ । ଆନ୍ଧ୍ର ପ୍ରଦେଶସ୍ଥ ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ଦାୟିତ୍ୱ ନେଇଥିଲେ ଶ୍ରୀବସନ୍ତ କୁମାର ପାଣିଗ୍ରାହୀ । ତାଙ୍କ ସହିତ ବ୍ରହ୍ମପୁରର ଶ୍ରୀ ମନ୍ମଥ ପାତ୍ରୀ ଓ ମଞ୍ଜୁଷାର ଅଶୋକକୁମାର ସାହୁ ସହଯୋଗ କରୁଥିଲେ । ସେହିଭଳି, ପଶ୍ଚିମବଙ୍ଗ ପାଇଁ ଶ୍ରୀ ବିଚିତ୍ର କୁମାର ବଡ଼ଜେନାଙ୍କୁ ଦାୟୀତ୍ୱ ଦିଆଯାଇଥିଲେ ମଧ୍ୟ ସଭାପତି ବସନ୍ତକୁମାର ପାଣିଗ୍ରାହୀଙ୍କ ସହିତ ମିଶି ସେ କଲିକତା ଯାଇ ପ୍ରବାସୀ ଓଡ଼ିଆମାନଙ୍କ ଦ୍ୱାରା ସ୍ଥାପିତ ଓଡ଼ିଆ ବିଦ୍ୟାଳୟଗୁଡ଼ିକରେ ଓଡ଼ିଆ ଶିକ୍ଷକ ରଖାଇବା ଓ ବିଦ୍ୟାଳୟମାନଙ୍କୁ ଚୌକୀ, ଟେବୁଲ୍, ବେଞ୍ଚ୍ ଡେସ୍କ ବା ବହିପତ୍ର ଯୋଗାଇବା କାର୍ଯ୍ୟ କରୁଥିଲେ । ମାତ୍ର ଏହି କାର୍ଯ୍ୟରେ ମୋର ମନମାନିଲା ନାହିଁ । କଲିକତା ସହରରେ ପ୍ରାୟ ସତୁରୀ ବର୍ଷ ପୂର୍ବେ ଲକ୍ଷ ଲକ୍ଷ ଓଡ଼ିଆ କାମ କରୁଥିଲେ । ସେମାନଙ୍କ ମଧ୍ୟରୁ ବହୁଲୋକ ନିଜ ପରିବାର ସହିତ ସେଠାରେ ରହୁଥିଲେ । ସେମାନଙ୍କ ପିଲାମାନେ ଓଡ଼ିଆ ପଢ଼ିବା ପାଇଁ କଲିକତା ମହାନଗରୀରେ ପାଖାପାଖି ୫୦ ପର୍ଯ୍ୟନ୍ତ ଓଡ଼ିଆ ବିଦ୍ୟାଳୟ ଥିଲା । ମାତ୍ର ଦେଶ ବିଭାଜନ ସମୟରେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ଯୋଗୁଁ ବହୁ ଓଡ଼ିଆ ପରିବାର କଲିକତା ଛାଡ଼ିଦେଲେ । ତା ପରେ କ୍ରମଶଃ ପୁରୁଣା କଳକାରଖାନାଗୁଡ଼ିକ ବନ୍ଦ ହୋଇଯିବା ଫଳରେ ଅଧିକାଂଶ ଓଡ଼ିଆ ପରିବାର ଓଡ଼ିଶା ଫେରି ଆସିଲେ । ଏବେ ଖୁବ୍ କମ୍ ଓଡ଼ିଆଲୋକ ସେଠାରେ ରହୁଛନ୍ତି । ସେମାନଙ୍କ ସହିତ ରହୁଥିବା ପିଲାମାନଙ୍କ ସଂଖ୍ୟା ଏତେ କମିଗଲାଣି ଯେ ସେଠାରେ ଓଡ଼ିଆ ବିଦ୍ୟାଳୟଗୁଡ଼ିକ ଆଉ ଚାଲିପାରୁ ନାହିଁ । କଲିକତାର ବିଭିନ୍ନ ସ୍ଥାନରେ ଏବେ ଯେତିକି ଓଡ଼ିଆ ବିଦ୍ୟାଳୟ ଅଛି; ଛାତ୍ରଛାତ୍ରୀ ନ ଥାଇ ସେଗୁଡ଼ିକ ସବୁ ରୁଗଣ୍ ଅବସ୍ଥାରେ ଅଛନ୍ତି । ତେବେ, ବସନ୍ତବାବୁ ସେ ସବୁ ବିଦ୍ୟାଳୟକୁ ସାହାଯ୍ୟ କରିବା ପାଇଁ ମଝିରେ ମଝିରେ କଲିକତା ଯାଉଥିଲେ । ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରେ ବିଚ୍ଛିନ୍ନାଞ୍ଚଳ ବିଷୟରେ ଆଲୋଚନା ହେଲାବେଳେ ମୁଁ କହିଲି, ଓଡ଼ିଶା ସରକାର ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର ଲାଗି ଯେଉଁ ଅନୁଦାନ ଦେଇଛନ୍ତି, ସେ ଅର୍ଥକୁ ପଶ୍ଚିମବଙ୍ଗର ବିଚ୍ଛିନ୍ନାଞ୍ଚଳରେ ଖର୍ଚ୍ଚ କରିବା ଉଚିତ । ସେଥିଲାଗି ବସନ୍ତବାବୁ ପଚାରିଲେ କଲିକତାରେ ଯେଉଁସବୁ ଓଡ଼ିଆ ବିଦ୍ୟାଳୟ ଅଛି ସେଠାରେ ଖର୍ଚ୍ଚ କରିବା କ'ଣ ଭୁଲ୍‌କଥା ? କହିଲି, ସେଠାରେ ଥିବା ଓଡ଼ିଆମାନେ ପ୍ରବାସୀ ଓଡ଼ିଆ । ମାତ୍ର ମେଦିନୀପୁର ହେଉଛି ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ । ପ୍ରବାସୀ ଓଡ଼ିଆଙ୍କ ପିଲାମାନେ ପଢୁଥିବା ସ୍କୁଲଗୁଡ଼ିକୁ ସାହାଯ୍ୟ କରିବା ସହିତ ପଶ୍ଚିମବଙ୍ଗ ରାଜ୍ୟର ଓଡ଼ିଆ ବିଚ୍ଛିନ୍ନାଞ୍ଚଳ ମେଦିନୀପୁର

ଅଞ୍ଚଳରେ ଥିବା ଓଡ଼ିଆ ଗ୍ରାମମାନଙ୍କରେ ଓଡ଼ିଆ ଶିକ୍ଷା ବିସ୍ତାର କରିବା ମଧ୍ୟ ଆମର କର୍ତ୍ତବ୍ୟ । କଲିକତା ସହରରେ ରହୁଥିବା ଅଧିକାଂଶ ଓଡ଼ିଆଲୋକ ଏବେ ସେମାନଙ୍କ ପିଲାଙ୍କୁ ସେଠାକାର ଇଂରାଜି ମାଧ୍ୟମ ବିଦ୍ୟାଳୟରେ ପଢ଼ାଇଲେଣି । ତେଣୁ ଓଡ଼ିଆ ବିଦ୍ୟାଳୟଗୁଡ଼ିକ ଧୀରେ ଧୀରେ ବନ୍ଦ ହୋଇଆସୁଛି । ମାତ୍ର ମେଦିନୀପୁରରେ ଥିବା ଓଡ଼ିଆମାନେ ସେମାନଙ୍କ ପିଲାଙ୍କୁ କେବଳ ବଙ୍ଗଳା ବିଦ୍ୟାଳୟରେ ପଢ଼ାଇବାକୁ ବାଧ୍ୟ । ସେଠାରେ ଓଡ଼ିଆ ପଢ଼ାଇବା ଫଳରେ ମେଦିନୀପୁରରେ ଓଡ଼ିଆମାନେ ଭୁଲିଯାଇଥିବା ମାତୃଭାଷା ଓଡ଼ିଆ ସହିତ ପରିଚିତ ହୋଇପାରିବେ । ତେଣୁ ମେଦିନୀପୁର ଯାଇ ସେଠାରେ କିପରି କାର୍ଯ୍ୟ କରାଯାଇ ପାରିବ ତାହା ଅନୁଧ୍ୟାନ କରାଯାଉ । ସେ କହିଲେ, ଦୁଇଶହ ବର୍ଷ ହେଲା ଯେଉଁମାନେ ବଙ୍ଗଳାକୁ ନିଜର ମାତୃଭାଷା ଭାବେ ଗ୍ରହଣ କରି ସାରିଛନ୍ତି, ସେମାନେ କ'ଣ ଆଉ ଓଡ଼ିଆଭାବେ ଗଣ୍ୟ ହୋଇପାରିବେ ? କହିଲି, ଏବେ ମଧ୍ୟ ଲକ୍ଷଲକ୍ଷ ଓଡ଼ିଆ ମେଦିନୀପୁରରେ ନିଜ ମାତୃଭାଷାକୁ ବଜାୟ ରଖିଛନ୍ତି; ମାତ୍ର ସେମାନେ ଓଡ଼ିଆ ଲେଖିବା ଓ ପଢ଼ିବାର ସୁଯୋଗ ପାଉନାହାନ୍ତି । ଉତ୍କଳ ସମ୍ମିଳନୀ ସେମାନଙ୍କ ବିଷୟରେ ଚିନ୍ତା କରିବା ଉଚିତ । ସେ କହିଲେ, ଆପଣଙ୍କର ସମୟ ଅଛି ତ ମେଦିନୀପୁର ଯାଆନ୍ତୁ । ଯେଉଁ କାର୍ଯ୍ୟ ନ ହୋଇ ପାରିବ ସେଥିରେ ମୁଣ୍ଡ ପୂରାଇବାକୁ ମୋର ଇଚ୍ଛା ନାହିଁ । କହିଲି, ଯେତେବେଳେ ବଙ୍ଗୀୟମାନେ ଚକ୍ରାନ୍ତ କରି ମେଦିନୀପୁରର ଓଡ଼ିଆ ଅବଧାନମାନଙ୍କୁ ଡରାଇ ଥରାଇ ଘଉଡ଼ାଇ ଓଡ଼ିଆ ପିଲାଙ୍କୁ ବଙ୍ଗଳା ବିଦ୍ୟାଳୟମାନଙ୍କରେ ପଢ଼ାଇବାକୁ ବାଧ୍ୟ କଲେ, ସେତେବେଳେ ଉତ୍କଳ ସମ୍ମିଳନୀ ନ ଥିଲା । ୧୯୦୩ ମସିହାଠାରୁ ଏ ପର୍ଯ୍ୟନ୍ତ ଏହି ସମ୍ମିଳନୀ ପକ୍ଷରୁ ସେ ଅଞ୍ଚଳରେ ଓଡ଼ିଆ ଭାଷାର ପୁନରୁଦ୍ଧାର ଲାଗି କିଛି କାର୍ଯ୍ୟ ହୋଇନାହିଁ । ଏବେ ଆମେ ଚେଷ୍ଟା କରିବା ଆବଶ୍ୟକ । 'ନାହିଁ ମାମୁଁଠାରୁ କଣା ମାମୁଁ ଭଲ' ନୀତିରେ ଆମର ଉଦ୍ୟମ ଆବଶ୍ୟକ ।

## ମେଦିନୀପୁରରେ ଓଡ଼ିଆ ଶିକ୍ଷା ବିସ୍ତାର

ଓଡ଼ିଶାର ବିଦ୍ୟାଳୟମାନଙ୍କରେ ପାଠପଢ଼ା ହେଉଛି । ହେଲେ ଆମ ମାତୃଭୂମି ଓଡ଼ିଶା ବିଷୟରେ ଆମ ପିଲାମାନେ ଖୁବ୍ କମ୍ କଥା ଜାଣୁଛନ୍ତି । ଯେତେସବୁ ଇତିହାସ ବା ଭୂଗୋଳ ବିଷୟ ପଢ଼ା ହେଉଛି, ସେଥିରେ ଓଡ଼ିଶା ବିଷୟରେ ପ୍ରାୟତଃ କିଛି ନାହିଁ । ମାଟ୍ରିକ୍ ପଢ଼ିବା ପିଲାଟିଏ ଓଡ଼ିଶା ବିଷୟରେ କିଛି ହେଲେ ଜାଣେନା । ଏପରିକି ଓଡ଼ିଶା ପ୍ରଦେଶ କେବେ ସୃଷ୍ଟିହେଲା, କିପରି ସୃଷ୍ଟି ହେଲା; ବିରଜା ମନ୍ଦିର, କୋଣାର୍କ ମନ୍ଦିର ବା ଲିଙ୍ଗରାଜ ମନ୍ଦିର କେବେ ହେଲା, ଏସବୁ ବିଷୟରେ ଓଡ଼ିଆ ପିଲାଏ ସମ୍ପୂର୍ଣ୍ଣ ଅଜ୍ଞ । ଓଡ଼ିଶାକୁ ଲାଗିରହିଥିବା ପଡ଼ୋଶୀ ରାଜ୍ୟମାନଙ୍କରେ କେଉଁସବୁ ଓଡ଼ିଆଭାଷୀ ଜିଲା ରହିଛି;

ସେଠାକାର ଓଡ଼ିଆଲୋକେ କେଉଁ ପରିସ୍ଥିତିର ସମ୍ମୁଖୀନ ହେଉଛନ୍ତି ସେସବୁ ବିଷୟରେ ଆମେକେହି ଚିନ୍ତା କରୁ ନାହୁଁ । ଆମ ପଡ଼ୋଶୀ ରାଜ୍ୟମାନଙ୍କ ପରି ଆମ୍ଭମାନଙ୍କର କୌଣସି ଜାତିଆଣ ସ୍ୱାଭିମାନ ନାହିଁ । ତେଣୁ ଭାରତବର୍ଷରେ ଥିବା ତାମିଲ, ତେଲୁଗୁ, ବଙ୍ଗାଳି, କେରଳି, କର୍ଣ୍ଣାଟକୀ, ଗୁଜୁରାଟି ବା ହିନ୍ଦିଭାଷୀମାନଙ୍କ ତୁଳନାରେ "ଓଡ଼ିଆ" ଏକ ଦୁର୍ବଳ ଜାତି ଭାବେ ଗଣ୍ୟ ହୁଏ ।

କେଉଁ ଯୁଗରେ ଓଡ଼ିଆମାନେ ସାହସୀ ବା ବୀର ଥିଲେ; ପାଲବନ୍ଧା ବୋଇତରେ ସମୁଦ୍ର ପାରହୋଇ ସେମାନେ ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ମାଳୟ ବା ସିଂହଳ ଆଦି ଦେଶମାନଙ୍କରେ ବାଣିଜ୍ୟ କରୁଥିଲେ; ସେ ବିଷୟରେ ଆମ ପାଠ ବହିରେ କିଛି ନାହିଁ । କେବଳ ଖୁଦୁରୁକୁଣି ଓଷା କିମ୍ବା କାର୍ତ୍ତିକ ପୂର୍ଣ୍ଣିମାରେ ଡଙ୍ଗା ଭସାଣରୁ ଆମକୁ ସେ ବିଷୟରେ କିଛି ସୂଚନା ମିଳେ । ତଥାପି ଆମ ଶିକ୍ଷାବିଭାଗ ବା ଶିକ୍ଷା ବିଶେଷଜ୍ଞମାନେ ଏ ବିଷୟରେ ପାଠ୍ୟପୁସ୍ତକ ମାଧ୍ୟମରେ ଓଡ଼ିଆ ପିଲାଙ୍କ ଜାଣିବା ପାଇଁ କିଛି ପାଠ୍ୟକ୍ରମ ରଖିବାର ଆବଶ୍ୟକତା ଅନୁଭବ କରନ୍ତିନାହିଁ । ଏପରି ସ୍ଥଳେ ଦୁଇ ମେଦିନୀପୁର ଜିଲା (ପୂର୍ବ ମେଦିନୀପୁର ଓ ପଶ୍ଚିମ ମେଦିନୀପୁର) ଓଡ଼ିଆ ଜିଲା ଥିଲା କି ନାହିଁ; କାହିଁକି ସେଠାକାର ଓଡ଼ିଆମାନେ ବଙ୍ଗାଳି ପାଲଟିଗଲେ, କେବେ ଏ ଘଟଣା ଘଟିଲା, ଏ ବିଷୟରେ କାହାର କିଛି ଜାଣିବାର ସମ୍ଭାବନା ନାହିଁ ।

ଦେଢ଼ଶହ ବର୍ଷ ପୂର୍ବେ ଏହା ଘଟିଯାଇଥିଲେ ମଧ୍ୟ ଏବେ ସେ ଜିଲାରେ ମାଇତି, ଜାନା, ମିଶ୍ରା, ତଲପାତ୍ର, ବେରା, ସାସ୍‌ମଲ୍ ଆଦି ଓଡ଼ିଆ ପାରିବାରିକ ନାମଧେୟ ଲୋକମାନେ ଲକ୍ଷାଧିକ ସଂଖ୍ୟାରେ ଅଛନ୍ତି । ଗୋପିବଲ୍ଲଭପୁର, ବେଲିଆବେଡ଼ା, ଜାମବନି, ଝାଡ଼ଗ୍ରାମ, ନୟାଗ୍ରାମ ଓ ଦାନ୍ତୁଣ, ଆଦି ଥାନାର ଲୋକେ ମୟୂରଭଞ୍ଜ, ବାଲେଶ୍ୱର ବା ଭଦ୍ରଖ ଜିଲାର ଓଡ଼ିଆ ପରିବାରମାନଙ୍କ ସହିତ ବୈବାହିକ ସମ୍ପର୍କ ରଖିଆସୁଛନ୍ତି ।

ଓଡ଼ିଆ ଝିଅଟିଏ ମେଦିନୀପୁରରେ ବିବାହ କରି ତାର ମାତୃଭାଷା ଓଡ଼ିଆକୁ ଜଳାଞ୍ଜଳି ଦିଏ । ତାର ପୁଅ ଝିଅ ବା ନାତି ନାତୁଣୀମାନେ ଓଡ଼ିଆଭାଷା ବିଷୟରେ ଜାଣିବାକୁ ଚାହିଁଲେ ମଧ୍ୟ କୌଣସି ସୁବିଧା ପାଆନ୍ତି ନାହିଁ । ସେଠାକାର ବହୁ ଓଡ଼ିଆ ପରିବାର ଖୁଦୁରୁକୁଣି, ସୁଦଶାବ୍ରତ, ତ୍ରିନାଥମେଳା ବା ବାଟଓଷା କରିବାକୁ ଚାହିଁଲେ ମଧ୍ୟ ସେସବୁ ପୌରାଣିକ ବହି ପାଇପାରନ୍ତି ନାହିଁ । ପାଇଲେ ବି ସେସବୁ ପଢ଼ି ପାରନ୍ତି ନାହିଁ । ଏପରିକି ବହୁଲୋକ ଜଗନ୍ନାଥ ଦାସଙ୍କ ରଚିତ ଓଡ଼ିଆ ଭାଗବତ ପଢ଼ିବାକୁ ବା ଶୁଣିବାକୁ ଇଚ୍ଛା କରି ଭାଷା ଜ୍ଞାନ ନଥିବାରୁ ସେଠାକାର ଓଡ଼ିଆମାନେ ନିରାଶ ହୁଅନ୍ତି । ମୋ ପିଲାଦିନେ ଆମ ଗାଆଁ ପାଖାପାଖି ବ୍ରାହ୍ମଣଶାସନ ମାନଙ୍କରୁ କେତେକ ଲୋକ ମେଦିନୀପୁର ଯାଇ

ପୁରାଣପଣ୍ଡା ଭାବେ ଓଡ଼ିଆ ଭାଗବତ, ରାମାୟଣ ଓ ମହାଭାରତ ଆଦି ଶୁଣାଉଥିଲେ, ସେମାନଙ୍କୁ ପୁରାଣପଣ୍ଡା କୁହାଯାଉଥିଲା । ରଥଯାତ୍ରା ବେଳକୁ ଘରକୁ ଫେରିଆସି ପୁଣି ଦଶହରା ପରେ ମେଦିନୀପୁର ଯାଇ ଆଠମାସ କାଳ ବିଭିନ୍ନ ଓଡ଼ିଆ ପୂଜା ପାର୍ବଣ କରି ରୋଜଗାର କରୁଥିଲେ । ସେମାନେ ଓଡ଼ିଆ ସଂସ୍କୃତିକୁ ମେଦିନୀପୁର ଜିଲାରେ ବଞ୍ଚାଇ ରଖିଥିଲେ । ପ୍ରାୟ ପଚାଶ ବର୍ଷ ହେବ ଏହି ପ୍ରଥାର ପରିସମାପ୍ତି ଘଟିଯାଇଛି କହିଲେ ଚଳିବ । ସେ ସମୟର ଯେଉଁ ଲୋକମାନେ ଏବେ ସେଠାରେ ବୟୋବୃଦ୍ଧ ଅବସ୍ଥାରେ ଅଛନ୍ତି, ସେମାନେ ଏବେ ମଧ୍ୟ ଜଗନ୍ନାଥ ଦାସଙ୍କ ଭାଗବତ ଶୁଣିବାକୁ ବିକଳ ହୁଅନ୍ତି ।

ଐତିହାସିକମାନେ ଏସବୁ ବିଷୟରେ ଉଲ୍ଲେଖ କରିବାର ପ୍ରୟାସ କରିନଥିଲେ ମଧ୍ୟ ଖ୍ୟାତନାମା ଓଡ଼ିଆ କଥାସମ୍ରାଟ ଫକୀରମୋହନ ସେନାପତିଙ୍କ ଜୀବନୀରେ ଏ ସମ୍ପର୍କରେ ସାମାନ୍ୟ କିଛି ଉଲ୍ଲେଖ ଅଛି । ଫକୀର ମୋହନଙ୍କ ବାଲ୍ୟକାଳରେ ମେଦିନୀପୁରର ଲୋକମାନେ ଖାଣ୍ଟି ଓଡ଼ିଆ ଥିଲେ । ସେ କାଳରେ ଆଜିଭଳି ପ୍ରାଥମିକ ବିଦ୍ୟାଳୟମାନ ନଥିଲା । ଗାଆଁ ଗାଆଁରେ ଚାହାଳି ବା ଚାଟଶାଳୀ କରି ମାଟିବଂଶ ଅବଧାନମାନେ ପିଲାମାନଙ୍କୁ ପଢ଼ାଉଥିଲେ । ବହୁ କରଣ ବଂଶଜ ଲୋକେ ମଧ୍ୟ ଚାହାଳି କରି ସେଠାରେ ପାଠ ପଢ଼ାଉଥିଲେ । କେବଳ ପୁରୀ ଓ କଟକ ଜିଲାରୁ ଅବଧାନମାନେ ମେଦିନୀପୁର ଯାଇ ଗାଆଁ ଗାଆଁରେ ଚାଟଶାଳି ଖୋଲି ପିଲାମାନଙ୍କୁ ପଢ଼ାଉଥିଲେ । ବର୍ଷାଋତୁ ପରେ ସେମାନେ ମେଦିନୀପୁର ଯାଇ ଗ୍ରୀଷ୍ମଋତୁ ଶେଷ ପର୍ଯ୍ୟନ୍ତ ରହୁଥିଲେ । ବର୍ଷା ଆରମ୍ଭ ହେବା ପୂର୍ବରୁ ନିଜନିଜ ଗାଆଁକୁ ଫେରିଆସି ଚାଷବାସ ଆରମ୍ଭ କରିଦେଇ କାର୍ତ୍ତିକ ଆରମ୍ଭରେ ମେଦିନୀପୁରକୁ ଲେଉଟାଣି ପଡୁଥିଲେ । ସାରା ଦେଶରେ ହୁଏତ ଏହିପରି ବର୍ଷକୁ ଛଅ/ସାତ ମାସ ଚାଟଶାଳି ଜରିଆରେ ପାଠପଢ଼ା ହେଉଥିଲା ।

ଇଂରେଜମାନେ ଓଡ଼ିଶା ଦଖଲ କରିବା ଆଗରୁ ପୂର୍ବ ମେଦିନୀପୁର ଓ ପଶ୍ଚିମ ମେଦିନୀପୁର ଜିଲା ଦୁଇଟି ମିଶି ଗୋଟିଏ ବଡ଼ ଜିଲା ଥିଲା; ଯାହା କି ଥିଲା ଉତ୍କଳ ଖଣ୍ଡର ଅଂଶ ବିଶେଷ । ଉତ୍କଳର ରାଜା ଗଜପତି ଶ୍ରୀପ୍ରତାପରୁଦ୍ର ଦେବଙ୍କର ରାଜ୍ୟ ଗଙ୍ଗା ଠାରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପୀ ରହିଥିଲା । ଗୋଦାବରୀ ନଦୀ ତୀରରେ ଥିଲା ପ୍ରଶାସକ ରାୟରାମାନନ୍ଦଙ୍କ ବାସସ୍ଥାନ । ସେଠାରେ ରହି ସେ ଉତ୍କଳର ଦକ୍ଷିଣ ସୀମାନ୍ତବର୍ତ୍ତୀ ଅଞ୍ଚଳର ଶାସନକାର୍ଯ୍ୟ ବୁଝୁଥିଲେ । ସେହିଭଳି ଗଙ୍ଗା ତୀରରେ ଅନ୍ୟ ଜଣେ ପ୍ରଶାସକ ମଧ୍ୟ ତମଲୁକ ଠାରେ ରହି ଉତ୍ତର ସୀମାନ୍ତବର୍ତ୍ତୀ ଅଞ୍ଚଳ ଗୁଡ଼ିକର ଶାସନ କାର୍ଯ୍ୟ ବୁଝୁଥିଲେ । ବଙ୍ଗଳାର ନବାବ ଉତ୍କଳ ରାଜ୍ୟକୁ ଆକ୍ରମଣ କରିବାକୁ ସାହସ କରୁ ନଥିଲେ । ମାତ୍ର ଶ୍ରୀ ଚୈତନ୍ୟ ଦେବଙ୍କ ସମୟରେ ରାଜା ପ୍ରତାପରୁଦ୍ର ଦେବ ବୈଷ୍ଣବଧର୍ମ ଗ୍ରହଣକରି ଶାସନକାର୍ଯ୍ୟ ପ୍ରତି ଯଥାର୍ଥ ଦୃଷ୍ଟି ନ ଦେଇ ପାରିବା ହେତୁ ମୁସଲମାନ ଓ ମୋଗଲମାନଙ୍କ

ଆକ୍ରମଣ ଆରମ୍ଭ ହୋଇଗଲା । ପରବର୍ତ୍ତୀ କାଳରେ ଇଂରେଜମାନେ ବଙ୍ଗଳାର ନବାବଙ୍କୁ ପରାସ୍ତକରି ତାଙ୍କର ରାଜ୍ୟ ଦଖଲକଲେ ଓ ଖୋରଧାର୍ ରାଜାଙ୍କୁ ପରାସ୍ତ କରି ଓଡ଼ିଶା ଡିଭିଜନ୍‌କୁ ମଧ୍ୟ ଦଖଲ କଲେ । ବଙ୍ଗଳାର ନବାବଙ୍କ ଅଧିକୃତ ମେଦିନୀପୁର ଜିଲା ସହିତ ବାଲେଶ୍ୱର, କଟକ ଓ ପୁରୀ ଜିଲା ଆଦି ବ୍ରିଟିଶ ସାମ୍ରାଜ୍ୟର ବଙ୍ଗ ପ୍ରଦେଶ ସହିତ ମିଶି ରହିଗଲା ।

ଇଂରେଜ ପ୍ରଶାସକମାନେ ବିଭିନ୍ନ ରାଜ୍ୟରେ ଇଂରାଜି ଶିକ୍ଷା ଆରମ୍ଭ କରିବା ପାଇଁ ସ୍ଥାନେ ସ୍ଥାନେ ମଧ୍ୟବିଦ୍ୟାଳୟ ଓ ଉଚ୍ଚଇଂରାଜି ବିଦ୍ୟାଳୟ ବସାଇବା ଆରମ୍ଭ କଲେ । ଗ୍ରାମାଞ୍ଚଳରେ ପ୍ରାଦେଶିକ ଭାଷାର ଭର୍ଣ୍ଣାକୁଲର ସ୍କୁଲ ଓ ନିମ୍ନ ପ୍ରାଥମିକ ବିଦ୍ୟାଳୟସବୁ ଖୋଲିବା ଆରମ୍ଭ ହେଲା । ତତ୍‌କାଳୀନ ଶିକ୍ଷା ବିଭାଗ ଅଧୀନରେ ପ୍ରାଥମିକ ଶିକ୍ଷା ଦାୟୀତ୍ୱରେ ପ୍ରତି ଜିଲ୍ଲାପାଇଁ ଜଣେଜଣେ ଶିକ୍ଷା ପରିଦର୍ଶକ ରହି ଗ୍ରାମାଞ୍ଚଳରେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ବସାଇବାକୁ କାର୍ଯ୍ୟ କଲେ ।

ସେଠାରେ ଇଂରେଜ ପ୍ରଶାସନିକ ଦପ୍ତରମାନଙ୍କରେ କାର୍ଯ୍ୟରତ ବଙ୍ଗାଳି ଲୋକମାନେ ସାନ୍ଧ୍ୟଆଇନ ବଳରେ ମେଦିନୀପୁର ଜିଲାର ବିଭିନ୍ନ ଅଞ୍ଚଳରେ ଜମିଦାରୀ ନିଲାମନେଇ ଜମିଦାର ଭାବେ ରହିବାକୁ ଆରମ୍ଭ କଲେ ଓ କ୍ରମଶଃ ବାଲେଶ୍ୱର, କଟକ ଓ ପୁରୀ ଜିଲାରେ ଜମିଦାରୀ ଦଖଲ କରି ଏସବୁ ସ୍ଥାନରେ ଜମିଦାର ବୋଲାଇଲେ । ମାତ୍ର ଓଡ଼ିଶାର ଛତିଶଟି ଗଡ଼ଜାତ ରାଜ୍ୟ ମଧ୍ୟକୁ ସେମାନଙ୍କର ପ୍ରବେଶ ନଥିଲା ।

ତେବେ, ଇଂରେଜମାନେ କଲିକତାରେ ରାଜଧାନୀ କରି ସମଗ୍ର ଦେଶକୁ ଶାସନ କରିବା ଫଳରେ ବଙ୍ଗୀୟମାନେ ସେମାନଙ୍କ ଅଧୀନରେ କାର୍ଯ୍ୟ କରିବା ପାଇଁ ଇଂରାଜି ପଢ଼ି ଶିଖିଲେ । ତେଣୁ କଲିକତାରେ ଇଂରାଜି ବିଦ୍ୟାଳୟ ଓ କଲେଜ ସ୍ଥାପିତ ହେଲା ।

ମେଦିନୀପୁର ଜିଲାର ଓଡ଼ିଆମାନେ ବଙ୍ଗାଳି ଜମିଦାରଙ୍କ ପ୍ରଜାଭାବେ ଥିବାରୁ ଜମିଦାରଙ୍କ ପାଖଲୋକମାନେ ବଙ୍ଗଳା କହିବା, ପଢ଼ିବା କିମ୍ବା ଲେଖିବା ପାଇଁ ପ୍ରୟାସ କରିବା ସ୍ୱାଭାବିକ । ତାଛଡ଼ା ସମଗ୍ର ଜିଲାଟି ବଙ୍ଗପ୍ରଦେଶର ଅଂଶ ବିଶେଷ ହୋଇଥିବାରୁ ପ୍ରତି ଥାନାରେ ବଙ୍ଗାଳିମାନେ ଥାନା ଅଧିକାରୀ, କନେଷ୍ଟବଳ ବା ସିପାହୀ ଭାବେ କାମ କରୁଥିଲେ ଓ ଜମିଦାରମାନଙ୍କ ଅଧୀନରେ ଖଜଣା ଆଦାୟକାରୀ ଗୁମାସ୍ତା, ଶିରସ୍ତାଦାର ବା ପିଆଦାମାନେ ମଧ୍ୟ ବଙ୍ଗାଳି ଥିଲେ ।

ପ୍ରଶାସନିକ ସ୍ତରରେ ବଙ୍ଗାଳିମାନଙ୍କର ପ୍ରଭାବ ସତ୍ତ୍ୱେ ମେଦିନୀପୁରର ଓଡ଼ିଆମାନେ ନିଜର ଭାଷା ଓ ସଂସ୍କୃତି ବଜାୟ ରଖିବାକୁ ଯଥାସମ୍ଭବ ପ୍ରୟାସ କରୁଥିଲେ । କଟକ ବା ପୁରୀ ଜିଲାର ଅବଧାନମାନେ ଓ ପୁରାଣ ପଣ୍ଡାମାନେ ସେଠାକାର ଗାଆଁ ଗାଆଁରେ

ରହି ଓଡ଼ିଆ ଭାଷାରେ ଶିକ୍ଷାଦେବା ଓ ପୁରାଣଶାସ୍ତ୍ର ଶୁଣାଇ ଓଡ଼ିଆ ପର୍ବପର୍ବାଣି ସବୁ ଘରେ ଘରେ ବଜାୟ ରଖିଥିଲେ । ହେଲେ, ପ୍ରଶାସନିକ ବଳ ସହିତ ନିରୀହ ଓଡ଼ିଆମାନେ କେତେ ବା ସଂଗ୍ରାମ କରିପାରିବେ ?

ଶିକ୍ଷା ବିଭାଗର ଜିଲା ପରିଦର୍ଶକ ମେଦିନୀପୁର ଗ୍ରାମାଞ୍ଚଳରେ ପ୍ରାଥମିକ ବିଦ୍ୟାଳୟ ଖୋଲି ବଙ୍ଗଳା ପଢ଼ାଇବାକୁ ଯେତେ ଉଦ୍ୟମ କଲେମଧ ଓଡ଼ିଆ ଲୋକେ ସେମାନଙ୍କ ପିଲାମାନଙ୍କୁ ମାଟିବଂଶ ଅବଧାନଙ୍କ ଚାହାଳିରେ ପଢ଼ାଇବାକୁ ଆଗ୍ରହୀ ଥିଲେ । ତେଣୁ ବଙ୍ଗଳା ପ୍ରାଥମିକ ବିଦ୍ୟାଳୟମାନଙ୍କର ଛାତ୍ରସଂଖ୍ୟା ଖୁବ୍ କମ୍ଥିଲା । ଫଳରେ ବିଦ୍ୟାଳୟ ଚଳାଇବା କଷ୍ଟକର ହୋଇ ପଡ଼ିଲା । ଯେଉଁ ସବୁ ବିଦ୍ୟାଳୟରେ ଓଡ଼ିଆଭାଷା ପଢ଼ା ହେଉଥିଲା, ସେଠାରେ ଛାତ୍ରସଂଖ୍ୟା ଯଥେଷ୍ଟ ବେଶୀ ଥିଲା । ମାତ୍ର ବଙ୍ଗାଳି ଶିକ୍ଷକମାନେ ଓଡ଼ିଆ ପଢ଼ାଇପାରୁନଥିଲେ । ବ୍ୟାସକବି ଫକୀର ମୋହନ ଲେଖିଛନ୍ତି; ସେତେବେଳେ ବାଲେଶ୍ୱରରେ କାନ୍ତିଚନ୍ଦ୍ର ଭଟାଚାର୍ଯ୍ୟ ନାମକ ଜଣେ ଶିକ୍ଷକ ଓଡ଼ିଆ ପଢ଼ାଇ ନ ପାରି "ଉଡ଼ିୟା ଏକ୍‌ଟା ସ୍ୱତନ୍ତ୍ର ଭାଷା ନୟ" ଶୀର୍ଷକ ଏକ ବହି ଲେଖି ସବୁଆଡ଼େ ବାଣ୍ଟିଲେ । ତାଙ୍କର ଜଣେ ସମ୍ପର୍କୀୟ ଭାଇ ମେଦିନୀପୁର ଜିଲାର ଶିକ୍ଷା ପରିଦର୍ଶକ ଭାବେ ଆସି ଯେପରିଭାବେ ମେଦିନୀପୁର ଜିଲାରୁ ଓଡ଼ିଆ ଶିକ୍ଷାର ମୂଳୋତ୍ପାଟନ କରିପାରିଲେ ସେ କଥା ବ୍ୟାସକବି ଫକୀର ମୋହନଙ୍କ ଜୀବନୀ ପାଠକଲେ ଜାଣିହୁଏ । ଉକ୍ତ ଭଦ୍ରଲୋକ ଚିନ୍ତାକଲେ ଯେ, ବଙ୍ଗଳା ପ୍ରାଥମିକ ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ପିଲାଙ୍କୁ ପଢ଼ାଇବା ଦିଗରେ କେବଳ ଗ୍ରାମ୍ୟ ଚାଟଶାଳି ଗୁଡ଼ିକ ପ୍ରତିବନ୍ଧକ ସୃଷ୍ଟି କରୁଛନ୍ତି । ପ୍ରତି ଗ୍ରାମରେ ଓଡ଼ିଆ ଚାଟଶାଳି ବନ୍ଦ ହୋଇଗଲେ ଲୋକମାନେ ବାଧ୍ୟହୋଇ ତାଙ୍କ ପିଲାଙ୍କୁ ବଙ୍ଗଳା ପ୍ରାଥମିକ ବିଦ୍ୟାଳୟକୁ ପଠାଇବେ । ତେଣୁ ସେ ଥାନା ଅଧିକାରୀମାନଙ୍କୁ ହାତକରି ଅବଧାନମାନଙ୍କୁ ଥାନାକୁ ଡକାଇ ସାତଦିନ ଭିତରେ ମେଦିନୀପୁର ଛାଡ଼ି ଚାଲିଯିବା ପାଇଁ ଏକ ମିଥ୍ୟା ସରକାରୀ ନିର୍ଦ୍ଦେଶନାମା ଦେଖାଇବା ଦ୍ୱାରା ନିରୀହ ଅବଧାନମାନେ ପୋଲିସ ଭୟରେ ଚାହାଳି ବନ୍ଦ କରି ଦେଇ ଓଡ଼ିଶାକୁ ପଳାଇ ଆସିଲେ । ଫଳରେ କ୍ରମଶଃ ସମଗ୍ର ମେଦିନୀପୁର ଜିଲାରୁ ଓଡ଼ିଆ ଶିକ୍ଷା ଉଠିଗଲା ଏବଂ ଓଡ଼ିଆ ପିଲାମାନେ ବଙ୍ଗଳା ପ୍ରାଥମିକ ବିଦ୍ୟାଳୟରେ ପଢ଼ିବାକୁ ବାଧ୍ୟ ହେଲେ ।

ଏବେ ମେଦିନୀପୁରୀ ଓଡ଼ିଆ ମାନଙ୍କର ମାତୃଭାଷା ହୋଇଛି ବଙ୍ଗଳା । ତଥାପି ଓଡ଼ିଶା ସୀମାକୁ ଲାଗିଥିବା ଅଞ୍ଚଳମାନଙ୍କରେ ଥିବା ଓଡ଼ିଆମାନେ ନିଜର ମାତୃଭାଷା ଛାଡ଼ିନାହାନ୍ତି । ସେମାନେ ଓଡ଼ିଆ ପଢ଼ିବାକୁ ଚାହାନ୍ତି । କେତେକ ଗ୍ରାମବାସୀ ନିଜଗ୍ରାମରେ ଓଡ଼ିଆ ବିଦ୍ୟାଳୟ ଖୋଲିବାକୁ ମଧ୍ୟ ଇଚ୍ଛା କରନ୍ତି । କାରଣ ସେମାନଙ୍କ ପିଲାମାନେ ଓଡ଼ିଆ ମାଧ୍ୟମରେ ପଢ଼ି ନିକଟବର୍ତ୍ତୀ ଓଡ଼ିଆ ହାଇସ୍କୁଲ ବା କଲେଜମାନଙ୍କରେ ପାଠପଢ଼ି

ପାରିବେ । ହେଲେ, ଏସବୁ କଥା ଓଡ଼ିଶାର କୌଣସି ନେତୃସ୍ଥାନୀୟ ଲୋକ ଜାଣିବାକୁ କେବେହେଲେ ଚେଷ୍ଟା କରି ନାହାନ୍ତି ।

ସେଦିନ ମୁଁ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରେ ଏ ବିଷୟ ଉଠାଇଲି । ଭାରତବର୍ଷରେ ଥିବା ସବୁତକ ଓଡ଼ିଆ ଅଞ୍ଚଳକୁ ଏକତ୍ରିତ କରି ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ଗଢ଼ିବାକୁ ଉତ୍କଳ ସମ୍ମିଳନୀର ସୃଷ୍ଟି ହୋଇଥିଲା । ଉତ୍କଳ ଗୌରବ ମଧୁସୂଦନ ଦାସ ନିଜର ପରିବାର, ଧନ, ସୁଖ, ସମ୍ଭୋଗ ଆଦି ଜଳାଞ୍ଜଳି ଦେଇ ଓଡ଼ିଆଜାତିକୁ ଏକ ସ୍ୱାଭିମାନୀ ଜାତି ଭାବେ ଗଢ଼ିବାକୁ ବହୁଚେଷ୍ଟା କରିଥିଲେ । ଉତ୍କଳସମ୍ମିଳନୀ ଜରିଆରେ ଇଂରେଜ ସରକାରଙ୍କ ଠାରେ ଭାଷାଭିତ୍ତିରେ ପ୍ରଦେଶ ଗଠନ ଦାବୀକରିବା ଫଳରେ ଦେଶର ନବମ ପ୍ରଦେଶ ଭାବେ ୧୯୩୬ ମସିହାରେ ଓଡ଼ିଶାପ୍ରଦେଶ ଗଠିତ ହୋଇଥିଲା । ଅବଶ୍ୟ ଏହା ଦେଖିବା ପାଇଁ ସେ ବଞ୍ଚିନଥିଲେ । ମାତ୍ର ବିଚ୍ଛିନ୍ନାଞ୍ଚଳରେ ଯେଉଁସବୁ ଓଡ଼ିଆ ଅଞ୍ଚଳ ରହିଗଲା । ସେଠାରେ ଓଡ଼ିଆଭାଷା ବଞ୍ଚାଇ ରଖିବାକୁ ୨୦୦୩ ମସିହା ପର୍ଯ୍ୟନ୍ତ କେହି ଉଦ୍ୟମ କରିନାହାନ୍ତି । ୨୦୦୩-୦୪ ଆର୍ଥିକ ବର୍ଷଠାରୁ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାର ପ୍ରସାର ଲାଗି ରାଜ୍ୟ ସରକାର ସାହାଯ୍ୟ କରିବାକୁ ଆଗେଇଆସିବା ବେଳେ ମେଦିନୀପୁରର ଓଡ଼ିଆମାନଙ୍କ କଥା ଭୁଲିଯିବା ଆମ ପକ୍ଷରେ ଏକ ଅପରାଧ ବୋଲି ପରିଚାଳନା ସଭାରେ ମୁଁ କହିଲି । ଉପସ୍ଥିତ ବନ୍ଧୁମାନେ କହିଲେ ପଶ୍ଚିମବଙ୍ଗ ପାଇଁ ଯେଉଁ ସରକାରୀ ଅନୁଦାନ ମିଳିଛି ତାହା କେବଳ କଲିକତାରେ ଖର୍ଚ୍ଚ ହେବାକୁ ନିଷ୍ପତ୍ତି ହୋଇଛି, ତେଣୁ ମେଦିନୀପୁର ପାଇଁ ଆପଣ ଯଦି କିଛି କରିବାକୁ ଚାହାନ୍ତି ଆପଣଙ୍କୁ ଦିଆଯାଇଥିବା ଝାଡ଼ଖଣ୍ଡ ଟଙ୍କାରୁ ଖର୍ଚ୍ଚ କରିପାରନ୍ତି ।

ମୁଁ ଉତ୍କଳ ସମ୍ମିଳନୀ ମୟୂରଭଞ୍ଜ ଶାଖାର ସଭାପତି ଅଧ୍ୟାପକ ଦୀପକ କୁମାର ଷଡ଼ଙ୍ଗୀଙ୍କୁ ଫୋନ୍‌ରେ ଡାକି ମୋର ମନକଥା କହିଲି । ସେ କହିଲେ, ଏ ପର୍ଯ୍ୟନ୍ତ ବିଚ୍ଛିନ୍ନାଞ୍ଚଳ ବିଷୟରେ କେହି ଭାବୁନଥିଲେ । ଆପଣ ପ୍ରଥମେ ଝାଡ଼ଖଣ୍ଡ ଯାଇ ଯାହା କରିଛନ୍ତି ତାହା ମୋ ମନରେ ବିଶ୍ୱାସ ଆଣୁଛି ଯେ, ମେଦିନୀପୁର ପାଇଁ କିଛି ହୋଇପାରିବ । ମୋ ଯିବା ପୂର୍ବରୁ ମୟୂରଭଞ୍ଜ ସୀମାନ୍ତକୁ ଲାଗୁଥିବା ପାଖ ଥାନାମାନଙ୍କରେ ଲୋକମାନଙ୍କ ମତ ବୁଝିବାପାଇଁ ସେ ବାରିପଦାରେ ରହୁଥିବା ଶ୍ରୀ ସରୋଜ କୁମାର ମହାନ୍ତିଙ୍କୁ ଅନୁରୋଧ କଲେ । ବାରିପଦା ଠାରୁ ୪୦ କିଲୋମିଟର ଦୂରରେ ଥିବା ଗୋପିବଲ୍ଲଭପୁର ଥାନାର ପଣ୍ଡାଛେଞ୍ଚା ଗ୍ରାମରେ ସରୋଜ ବାବୁଙ୍କ ଘର । ଗାଆଁରେ ତାଙ୍କର ଏକଶହ ଏକରରୁ ଉର୍ଦ୍ଧ୍ୱ ଜମିବାଡ଼ି ଥିଲା । ମାତ୍ର ପଶ୍ଚିମବଙ୍ଗର କମ୍ୟୁନିଷ୍ଟ ସରକାର ତାଙ୍କଠାରୁ ଷାଠିଏ ଏକର ଜମି ଦଖଲ କରିନେଲେ । ବାକୀ ଚାଳିଶ ଏକର ଜମି ତାଙ୍କ ପରିବାର ହାତରେ ରହିଲା । ତାଙ୍କର ସାନଭାଇ ଶିଶିର ମହାନ୍ତି ଗାଆଁରେ ରହି ଚାଷବାସ ବୁଝିବା ସହିତ ପ୍ରାକୃତିକ

ଚିକିତ୍ସା କରନ୍ତି । ପ୍ରତିଦିନ ବହୁ ଲୋକ ତାଙ୍କଠାରୁ ଔଷଧ ନେବାକୁ ଆସନ୍ତି । ତେଣୁ ସ୍ଥାନୀୟ ଲୋକଙ୍କ ସହିତ ତାଙ୍କର ସମ୍ପର୍କ ଖୁବ୍‌ଭଲ । ବାରିପଦାରୁ ସରୋଜବାବୁ ଯାଇ ମୋ ଯିବାଦିନ ସ୍ଥାନୀୟ ଲୋକଙ୍କୁ ଡକାଇ ଦେବାକୁ କହିଲେ । ଶିଶିର ବାବୁ ଏଥିଲାଗି କିଛି ସମୟ ମାଗିନେଇ ଲୋକମାନଙ୍କ ସହିତ ଓଡ଼ିଆ ଶିକ୍ଷା ବିଷୟରେ ଆଲୋଚନା କଲେ ।

ଅଧ୍ୟାପକ ଷଡ଼ଙ୍ଗୀଙ୍କ ସହିତ ପରାମର୍ଶ କରି ମୁଁ ଯାଇ ବାରିପଦାସ୍ଥ ତାଙ୍କ ଘରେ ପହଞ୍ଚିଲି । ମୟୂରଭଞ୍ଜ ଉତ୍କଳସମ୍ମିଳନୀ ଶାଖାର ସଭ୍ୟମାନେ ଏକତ୍ରିତ ହୋଇ ଏ ବିଷୟରେ ଆଲୋଚନା କଲେ । ମେଦିନୀପୁର ଲୋକେ ଓଡ଼ିଆ ପଢ଼ାଇବାକୁ ସେମାନଙ୍କ ପିଲାଙ୍କୁ ପଠାଇବେ କି ନାହିଁ ସେ ବିଷୟରେ ସବୁରି ମନରେ ସନ୍ଦେହ । ମୁଁ ସେମାନଙ୍କୁ ଝାଡ଼ଖଣ୍ଡର ଲୋକଙ୍କ କଥା କହି ବୁଝାଇଲି । ମୟୂରଭଞ୍ଜର ଆଦିବାସୀ ଲୋକେ ଭଲଭାବେ ଓଡ଼ିଆ କହିପାରୁ ନଥିବା ସ୍ଥଳେ ଜାମସେଦପୁର ମହାନଗରୀରେ ନିଜ ନିଜର ପିଲାମାନଙ୍କୁ ଯେପରି ଓଡ଼ିଆ ପଢ଼ାଉଛନ୍ତି ସେଥିରୁ ସେମାନଙ୍କର ଓଡ଼ିଆ ଭାଷାପ୍ରିତୀ ସ୍ପଷ୍ଟଭାବେ ଅନୁଭବ କରିହୁଏ । ଏ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାମାନେ ଯାହା କରିପାରି ନାହାନ୍ତି ମୟୂରଭଞ୍ଜର ଆଦିବାସୀ ଭାଇମାନେ ତାହା କାର୍ଯ୍ୟରେ କରି ଦେଖାଇଦେଇଛନ୍ତି । ଅତଏବ ମେଦିନୀ ପୁରରେ ରହୁଥିବା ଓଡ଼ିଆମାନେ ଯେ ସେମାନଙ୍କ ପୂର୍ବପୁରୁଷଙ୍କ ଭାଷାପ୍ରତି ଅବଜ୍ଞା ପ୍ରଦର୍ଶନ କରିବେ ସେ ବିଶ୍ୱାସ ମୋ ମନରେ ନାହିଁ । ଡକ୍ଟର ଷଡ଼ଙ୍ଗୀ ଏଦିଗରେ ଉଦ୍ୟମ ଆରମ୍ଭ କରିବାକୁ ଉପସ୍ଥିତ ସଭ୍ୟମାନଙ୍କୁ ଅନୁରୋଧ କଲେ । ଶ୍ରୀ ସରୋଜ କୁମାର ମହାନ୍ତି, ଜଗନ୍ନାଥ ପାତ୍ର, ସୁବ୍ରତ ମହାନ୍ତି, ପ୍ରମୁଖ ଏହି କାର୍ଯ୍ୟରେ ସହଯୋଗ କରିବା ପାଇଁ ସ୍ୱୀକୃତି ଦେଲେ ।

ପରଦିନ ଅଧ୍ୟାପକ ଦୀପକକୁମାର ଷଡ଼ଙ୍ଗୀଙ୍କ ସହିତ ସରୋଜ ବାବୁ, ଜଗନ୍ନାଥ ବାବୁ ଓ ମୁଁ ଗୋପିବଲ୍ଲଭ ପୁରର ପଣ୍ଡାଛେଞ୍ଚା ଗ୍ରାମକୁ ଗଲୁ । ଶିଶିରବାବୁ ପ୍ରାୟ ଆଠଦଶଜଣ ସ୍ଥାନୀୟ ଲୋକଙ୍କୁ ଡକାଇଥିଲେ । ସେମାନଙ୍କ ସହିତ ଆଲୋଚନା ହେଲା । ଅଧିକାଂଶ ଲୋକ କହିଲେ ଓଡ଼ିଆ ପଢ଼ାଇବାକୁ ଗାଆଁ ଲୋକଙ୍କର କୌଣସି ଆପତ୍ତି ହେବାର ସମ୍ଭାବନା ନାହିଁ । ମାତ୍ର ସ୍ଥାନୀୟ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀମାନେ ଏହାର ବିରୋଧ କରିବେ । ସେମାନେ ଯଦି ସ୍ଥାନୀୟ ସରପଞ୍ଚମାନଙ୍କୁ ପ୍ରଭାବିତ କରନ୍ତି, ତାହେଲେ ଅସୁବିଧା ହୋଇପାରେ । ଶିଶିର ବାବୁଙ୍କର ଘନିଷ୍ଠ ବନ୍ଧୁ ଶ୍ରୀ ପ୍ରଭାସ ମହନ୍ତ କହିଲେ, ପ୍ରଥମେ ଗାଆଁମାନଙ୍କୁ ଯାଇ ଲୋକଙ୍କ ସହିତ ଆଲୋଚନା କରିବା । ଯେଉଁଠି ବିରୋଧ ହେବ ସେ ଗାଆଁକୁ ଛାଡ଼ିଦେଇ ଅନ୍ୟ ଗାଆଁକୁ ଯାଇ ଚେଷ୍ଟାକରିବା ଉଚିତହେବ । କଥା ହେଲା, ଦଶଟି ଚାଟଶାଳି ଖୋଲିବାକୁ ବର୍ଣ୍ଣବୋଧ ବହି, ଶିଲଟ, ଖଡ଼ି, ବିବିକ୍ଲଥ୍, ଚକ୍

ଓ ଡଷ୍ଟର ଆଦି ନେଇ ମୁଁ ଆସିବି । ସେସବୁ ନେଇ ଗାଆଁକୁ ଗାଆଁ ଯିବାକୁ ପଡ଼ିବ । କହିଲି, ପ୍ରଥମେ ଗାଆଁମାନଙ୍କରେ ଚାହାଳି ହେଲେ କିଏ ଓଡ଼ିଆ ପଢ଼ାଇବ ତାହା ଠିକ୍ କଲେ ଉକ୍ତ ଗ୍ରାମକୁ ଯିବା ଉଚିତ୍ ହେବ । ଯେଉଁ ଶିକ୍ଷକ ବା ଶିକ୍ଷୟିତ୍ରୀ ବଛାଯିବେ ସେ ଓଡ଼ିଶାର କୌଣସି ଏକ ଉଚ୍ଚବିଦ୍ୟାଳୟରୁ ଓଡ଼ିଆ ଭାଷା ନେଇ ସେ ମାଟ୍ରିକ୍ ପାଶ୍ କରିଥିବେ । ଏସବୁ କଥା ଠିକ୍ ଭାବେ କରିବା ପାଇଁ ମୁଁ ପଣ୍ଡାଛେଞ୍ଚାରେ ରହି ଶିଶିରବାବୁ ଓ ମହନ୍ତ ବାବୁଙ୍କ ସହିତ ଗାଆଁମାନଙ୍କୁ ଯାଇ ଯେଉଁ ଗ୍ରାମରେ ଓଡ଼ିଆ ଚାଟଶାଳି ଖୋଲାଯିବ, ସେଠାକାର ପାଞ୍ଚଜଣ ମୁଖିଆ ଲୋକଙ୍କ ଉପସ୍ଥିତିରେ ଚାଟଶାଳିର ଶିକ୍ଷକ ବା ଶିକ୍ଷୟିତ୍ରୀଙ୍କୁ ବାଛି ସେମାନଙ୍କୁ ବହି, ଶିଲଟ ଓ ବି.ବି. କ୍ଲଥ୍ ଆଦି ଦେଇ ଆସିଲି । ଫଳରେ ଦଶଟି ଚାଟଶାଳୀ ଖୋଲା ହେଲା ।

ଏହାପରେ ମାସେ ଛାଡ଼ି ଏଠାକାର ଅନ୍ୟ ଏକ ଥାନାରେ ପୁଣି ଦଶଟି ଚାଟଶାଳି ଖୋଲାଇବାର କଥାହେଲା । ମୁଁ ପୁଣି ବହିପତ୍ର ସବୁ ଧରି ପଣ୍ଡାଛେଞ୍ଚା ଗଲି । ସେ ଦିନ ମହନ୍ତ ବାବୁଙ୍କୁ ନେଇ ଗୋଟିଏ ଗାଆଁକୁ ଯାଇ ଗାଆଁମୁଣ୍ଡରେ ଥିବା ଏକ ପ୍ରାଥମିକ ବିଦ୍ୟାଳୟ ପାଖରେ ମୁଁ ଠିଆ ହୋଇଥାଏ । ମହନ୍ତବାବୁ ଗାଆଁ ମୁଖିଆଙ୍କୁ ଡାକି ଆଣିବାକୁ ଗାଆଁ ଭିତରକୁ ଚାଲିଗଲେ । ପ୍ରାୟ ଘଣ୍ଟାଏ ସମୟ ବିତିଗଲା । ମୁଁ ଅପେକ୍ଷା କରିଥାଏ । ବିଦ୍ୟାଳୟର ଖେଳଛୁଟି ହେଲା । ପିଲାମାନେ ବାହାରକୁ ଆସି ବୁଲିଲେ । ଦୁଇତିନି ଜଣ ପିଲା ମୋ ଆଡ଼କୁ ଆସି ପାଖରେ ଠିଆ ହେଲେ । ସେମାନଙ୍କୁ ଦେଖି କେଉଁ ଶ୍ରେଣୀରେ ପଢୁଛ ବୋଲି ପଚାରିଲି । ମୋ ପାଟିରୁ ଓଡ଼ିଆ କଥାଶୁଣି ହେଁ ହେଁ କରି ପିଲାମାନେ ହସିବାକୁ ଲାଗିଲେ । ପଚାରିଲି, କାହିଁକି ହସୁଛ ? ଜଣେ ପିଲା ପଚାରିଲା - ଆପ୍‌ନି କି ଉଡ୍ରେ ? ପିଲାଟିର ନାଆଁ ପଚାରିଲି । କହିଲା, ଆମି ସପନ୍ ବେରା । ମୁଁ ହସିଦେଇ ପଚାରିଲି, ତୁମେ କି ଜାତି ? କହିଲା ଆମ୍‌ରା ବାଙ୍ଗାଲି । କହିଲି, ତୁମେ ମିଛ କହୁଛ, ତୁମେ ହେଉଛ ଧେଡ଼୍‌ବଙ୍ଗାଳି ।" ମୋ ଠାରୁ ଏକଥା ଶୁଣି ପିଲା ତିନିଜଣ ହସିହସି ସ୍କୁଲ୍ ଭିତରକୁ ଚାଲିଗଲେ । ତାପରେ ଜଣେ ଶିକ୍ଷକ ସ୍କୁଲ୍ ବାରଣ୍ଡାରେ ଠିଆ ହୋଇ ମୋ'ଆଡ଼େ ଚାହିଁବାର ଦେଖିଲି । ଜଣେ ଓଡ଼ିଆ ଲୋକ ଏ ଗାଆଁକୁ ଆସି ପିଲାଙ୍କ ସହିତ ଓଡ଼ିଆରେ କଥା ହେଉଛି, ଏହା ସେଠାକାର ଶିକ୍ଷକମାନଙ୍କ ବିଚାରରେ ଏକ ଦୋଷାବହ କଥା । କାରଣ ସେଠାକାର ଓଡ଼ିଆମାନେ ବଙ୍ଗାଳୀ ଗାଆଁମାନଙ୍କରେ କେବଳ ବଙ୍ଗଳାରେ ହିଁ କଥା ହୁଅନ୍ତି । ମାତ୍ର ମୋ ପରି ଜଣେ ଲୋକ ଏହାର ଏକ ବ୍ୟତିକ୍ରମ ଦେଖି ଶିକ୍ଷକ ମହାଶୟ ରାଗିଯାଇ ମୋ ଆଡ଼େ ଚାହିଁଥିଲେ ବୋଲି ମୋର ଧାରଣା ହେଲା । ଇତି ମଧ୍ୟରେ ମହନ୍ତବାବୁ ଓ ଗାଆଁ ମୁଖିଆ ଆସି ପହଞ୍ଚିବାରୁ ମୁଁ ସେମାନଙ୍କ ସହିତ ଓଡ଼ିଆ ଚାଟଶାଳି ଖୋଲିବା ବିଷୟରେ କଥା ହେବାକୁ ଗାଆଁ ଭିତରକୁ

ଚାଲିଗଲି । ତେବେ ଓଡ଼ିଆଜାତି ପ୍ରତି ଛୋଟ ଛୋଟ ପିଲାଙ୍କ ମନରେ ସେଠାକାର ଶିକ୍ଷକମାନେ ଏକ ହେୟ ଭାବ ସୃଷ୍ଟି କରିଥିବାର ଅନୁଭବ କଲି । ମାତ୍ର ଆମ ଓଡ଼ିଶାର ଶିକ୍ଷକ / ଶିକ୍ଷୟିତ୍ରୀମାନେ କେବେ ଛାତ୍ରଛାତ୍ରୀଙ୍କ ମନରେ ଓଡ଼ିଆ ଭାଷା ପ୍ରତି ମମତା ସୃଷ୍ଟି କରିପାରିନାହାନ୍ତି । ସେଇକଥା ଭାବି ଭାରି ଖରାପ ଲାଗିଲା ।

ପୁଣି ମାସେ ଛାଡ଼ି ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଦରମା ସହିତ ଆଉ ଦଶଟି ବିଦ୍ୟାଳୟ ଖୋଲିବାକୁ ବହିପତ୍ର ଧରି ମେଦିନିପୁର ଆସିଲି । ପଣ୍ଡାଛେଆରୁ ଗୋଟିଏ ଜିପ୍ ଭଡ଼ାକରି ଶିଶିର ବାବୁଙ୍କ ସହିତ ଗୋପିବଲ୍ଲଭପୁର ଯିବା ବାଟରେ ଜଣେ ମହିଳା ରାସ୍ତା କଡ଼ରେ ଠିଆ ହୋଇ ଜିପ୍ ଅଟକାଇବାକୁ ଇସାରା ଦେଲେ । ଡ୍ରାଇଭର୍ ସେ ମହିଳାଙ୍କୁ ଆଗରୁ ଜାଣେ । କହିଲା ଯେ ଜଣେ ଶିକ୍ଷୟିତ୍ରୀ । ପାଞ୍ଚ କିଲୋମିଟର ବାଟ ଆମ ସହିତ ଯିବେ । ମହିଳା ଜଣକ ଗାଡ଼ିରେ ଉଠି ଆମକୁ ସବୁ ଚାହିଁଲେ । ବଙ୍ଗଳାରେ ପଚାରିଲେ, କୁଆଡ଼େ ଯାଉଛନ୍ତି ? ଶିଶିରବାବୁ କହିଲେ ଗୋପବଲ୍ଲଭପୁର । ମୋର ପରିଚୟ ଦେଇ କହିଲେ, ଏ ବାବୁ କଟକରୁ ଆସିଛନ୍ତି । ସେ ହେଉଛନ୍ତି ଉତ୍କଳ ସମ୍ମିଳନୀର ଉପସଭାପତି । ମହିଳା ଜଣକ ପଚାରିଲେ, ଏ ବାବୁ ଏଠାରେ ଓଡ଼ିଆ ସ୍କୁଲ ଖୋଲୁଛନ୍ତି କି ? କହିଲି, ନାଇଁ ସ୍କୁଲ ନୁହେଁ ଚାଟଶାଳି । ସେ ପଚାରିଲେ ଏସବୁ କାହିଁକି କରୁଛନ୍ତି ? କହିଲି, ପିଲାମାନଙ୍କୁ ଓଡ଼ିଆ ଶିଖାଇବାକୁ ଆମର ଏ ପ୍ରଚେଷ୍ଟା ।

ସେ କହିଲେ, ଏହାଦ୍ୱାରା ଆମ ପିଲାଙ୍କର ଯେପରି କ୍ଷତିହେବ, ଆପଣ ବୁଝିଛନ୍ତି କି ? ପଚାରିଲି, କି କ୍ଷତି ହେବ ? ସେ କହିଲେ, ପିଲାଙ୍କର ବଙ୍ଗଳାଜ୍ଞାନ କମିଯିବ । କହିଲି, ଆପଣମାନେ ପିଲାମାନଙ୍କୁ ଇଂରାଜି ବା ହିନ୍ଦି ପଢ଼ାଉଛନ୍ତି । ତାଦ୍ୱାରା କ'ଣ ସେମାନଙ୍କର ବଙ୍ଗଳା ଜ୍ଞାନ କମୁଛି ? ସେ କହିଲେ ସାନ ସାନ ପିଲାଙ୍କୁ ଆମେ କେବଳ ବଙ୍ଗଳା ପଢ଼ାଉ । ପରେ ଇଂରାଜି ବା ହିନ୍ଦି ପଢ଼ା ହୁଏ । କହିଲି, ଆପଣ ଯଦି ଡି.ଏ.ଭି. ସ୍କୁଲ ନାଆଁ ଶୁଣିଥିବେ, ସେଠାରେ ପିଲାମାନେ ତ୍ରିଭାଷୀ ପଢୁଛନ୍ତି । ସେମାନେ ଖୁବ୍ ଭଲ ପାଠପଢ଼ି ବାହାରୁଛନ୍ତି । ବଙ୍ଗଳା ଏବଂ ଓଡ଼ିଆ ଭିତରେ ସେତେ ପ୍ରଭେଦ ନାହିଁ । ଆପଣଙ୍କ କଥା ମୁଁ ବୁଝୁଛି ଓ ମୋ କଥା ମଧ୍ୟ ଆପଣ ବୁଝୁଛନ୍ତି । ଏପରିସ୍ଥଳେ ପିଲାଙ୍କ ଉପରେ ଓଡ଼ିଆ ଭାଷା ଶିକ୍ଷାର ଖୁବ୍ ଭଲ ପ୍ରଭାବପଡ଼ିବ ବୋଲି ମୁଁ ନିଶ୍ଚିତ । ସେ କହିଲେ, ଆପଣଙ୍କ ସହିତ ଯୁକ୍ତିତର୍କ କରିବାକୁ ମୁଁ ଚାହେଁନା । ତେବେ ଦୟାକରି ଏ କାର୍ଯ୍ୟ ନକରିବାକୁ ମୁଁ ଅନୁରୋଧ କରୁଛି । ମହିଳା ଜଣକ ଗାଡ଼ିରୁ ଓହ୍ଲାଇଗଲେ । ସେ ଗଲାବେଳେ ତାଙ୍କୁ ଧନ୍ୟବାଦ ଦେବାକୁ ମୋର ଇଚ୍ଛା ହେଉଥିଲା । କାରଣ ନିଜ ମାତୃଭାଷା ପ୍ରତି ତାଙ୍କ ଏତେ ମମତା ଯୋଗୁଁ ଆମ ଗାଡ଼ିରେ ଯାଇ ଆମକୁ ଚେତାବନୀ ଦେବାରେ ତାଙ୍କର ଦୃଢ଼ତା ଥିଲା । ଶିଶିର ବାବୁ କହିଲେ, ଆମ ଅଞ୍ଚଳରେ ଓଡ଼ିଆ ଶିକ୍ଷାକାର୍ଯ୍ୟ

ହେବାକଥା ଚାରିଆଡ଼େ ପ୍ରଘଟ ହୋଇଗଗଲାଣି । ଫଳରେ ଶିକ୍ଷକ ମହଲରେ ଏହା ବିରୁଦ୍ଧରେ ପ୍ରତିକ୍ରିୟା ଆରମ୍ଭ ହୋଇଗଲାଣି । କହିଲି, ସେମାନେ ଓଡ଼ିଆ ଅବଧାନମାନଙ୍କୁ ଯେପରି ମେଦିନୀପୁର ଛାଡ଼ି ଚାଲିଯିବା ପାଇଁ ଭୟ ଦେଖାଇଲେ, ଏବେ ଏଠାକାର ଝିଅବୋହୂମାନଙ୍କୁ ସେଇ ଭୟ ଦେଖାଇବାକୁ ଚିନ୍ତା କରନ୍ତୁ । ତାପରେ ଯାହା ହେବ ସେମାନେ ବୁଝିପାରିବେ । ମୋର ମନେପଡୁଥିଲା ଆମ ଓଡ଼ିଆ ଶିକ୍ଷକ ଶିକ୍ଷୟିତ୍ରୀଙ୍କ କଥା । ବଙ୍ଗଳା ଶିକ୍ଷୟିତ୍ରୀ ଜଣକ ଓଡ଼ଆ ପଢ଼ାଇବା କଥା ଶୁଣି ଯେପରି ବ୍ୟତିବ୍ୟସ୍ତ ହୋଇ ମୋତେ ଏପରି ନ କରିବାକୁ ଯେଭଳି ଚେତାବନୀ ଦେଲେ, ଆମ ଓଡ଼ିଶାର ଶିକ୍ଷକ/ ଶିକ୍ଷୟିତ୍ରୀଙ୍କର ସେପରି ଭାଷା ପ୍ରୀତି ଯେ କେତେ ଜନ୍ମରେ ହୋଇପାରିବ ତାହାହିଁ ମୁଁ ଭାବୁଥିଲି ।

ଚନ୍ଦ୍ରି ଗାଆଁରେ ବାରିପଦାର ଶ୍ରୀ ଜଗନ୍ନାଥ ପାତ୍ରଙ୍କ ଶ୍ୱଶୁରଘର । ସେ ଅଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାରଲାଗି ତାଙ୍କୁ ଦାୟିତ୍ୱ ଦିଆଗଲା । ତାଙ୍କର ଦାଦାଶ୍ୱଶୁର ଜଣେ କମ୍ୟୁନିଷ୍ଟ ନେତା । ତାଙ୍କ ଝିଆରୀ ଅଞ୍ଜନାପାତ୍ର ଗୋଟିଏ ଓଡ଼ିଆ ଚାଟଶାଳୀ ଖୋଲିଥାଏ । ଏତେ ପିଲା ପଢ଼ିବାକୁ ଆସିଲେ ଯେ, ତାଙ୍କ ପିଣ୍ଡାରେ ବସିବାକୁ ଜାଗା ନଥାଏ । ମୁଁ ଯାଇ ସେଠାରେ ପହଞ୍ଚିବା ମାତ୍ରେ କେତେ ଖଣ୍ଡ ବହି ବାଣ୍ଟିବା ପାଇଁ ଅଞ୍ଜନାକୁ ଦେଲି । ଅତି ସାନ ପିଲାଟିଏ ମୋ ପାଖକୁ ଧାଇଁ ଆସି କହିଲା "ଆମାକେ ଏକଟୁ ବୋଇ ଦିନ୍" । ପଚାରିଲି, ତୁ କ'ଣ ଓଡ଼ିଆ ପଢ଼ି ପାରିବୁ ? ସେ କହିଲା, "ଆମି ଉଡ଼ିୟା ଜାନି" । ଓଡ଼ିଆ ଅକ୍ଷର ସବୁ ଲେଖି ଦେଖାଇବାକୁ କହିବାରୁ ସେ ସାଙ୍ଗେ ସାଙ୍ଗେ ଅ ଠାରୁ କ୍ଷ ପର୍ଯ୍ୟନ୍ତ ସବୁ ଅକ୍ଷର ପଢ଼ିଦେଲା । ଖୁସିହୋଇ ତାକୁ ବର୍ଣ୍ଣବୋଧ ବହି ଖଣ୍ଡେ ଦେଇ କହିଲି, ମୁଁ ଆରଥରକୁ ଆସିଲା ବେଳକୁ ଏ ବହିଟା ପଢ଼ି ସାରିଥିବୁ । ତା ହେଲେ ତୋତେ ଆଉ ଅନ୍ୟ ଓଡ଼ିଆ ବହି ଆଣି ଦେବି । ପିଲାଟା ଖୁସି ହୋଇ କହିଲା, ଆମି ପଢ଼୍‌ବୋ ଆମି ପଢ଼୍‌ବୋ ।"

ଚନ୍ଦ୍ରିର ପାଖ ଗାଆଁ ଚାଟଶାଳୀକୁ ଯାଇ ପିଲାମାନଙ୍କୁ ମୁଁ ପରୀକ୍ଷା କଲା ବେଳେ ଗ୍ରାମର କେତେକ ବୟସ୍କ ବ୍ୟକ୍ତି ଆସି ବସିଲେ । ସୋମନେ କହିଲେ ଆମର ବାପା ମାଆ ଭଲ ଓଡ଼ିଆ କହୁଥିଲେ । ସେମାନେ ଓଡ଼ିଆ ପଢ଼ି ପାରୁଥିଲେ । ମାତ୍ର ଆମେ ଓଡ଼ିଆ ପଢ଼ିବାର ସୁବିଧା ପାଇଲୁ ନାହିଁ । ଆପଣମାନେ ଆମ ପିଲାଙ୍କୁ ଓଡ଼ିଆ ପଢ଼ାଇ ଭଲ କାର୍ଯ୍ୟ କରୁଛନ୍ତି । ବାପା ମାଆଙ୍କ ଠାରୁ ଓଡ଼ିଆ କଥା ଶୁଣିଥିଲୁ । ଏବେ ଆମ ପିଲାଏ ଓଡ଼ିଆ କହିପାରିବେ । ସେମାନଙ୍କ ମଧ୍ୟରୁ ଜଣେ ଲୋକ ଓଡ଼ିଆ ବର୍ଣ୍ଣବୋଧଟାଏ ଉଠାଇ ନେଇ ଅକ୍ଷରଗୁଡ଼ିକ ପଢ଼ିବସିଲେ । ପଚାରିଲି, ଆପଣ କ'ଣ ଏସବୁ ଅକ୍ଷର ପଢ଼ିପାରିବେ ? ସେ କହିଲେ, ନିଶ୍ଚୟ ପଢ଼ିଦେବି । ଏହା କହି ଅ, ଆ, ଇ, ଈ ସବୁ

ପଢ଼ିବାକୁ ଲାଗିଲେ । ମୋତେ ଲାଗୁଥିଲା ବଙ୍ଗଳା ଅକ୍ଷର ମନେ ପକାଇ ସେ ଓଡ଼ିଆ ଅକ୍ଷର ସବୁ ପଢ଼ି ଯାଉଥିଲେ । ଏଠାକାର ଗାଆଁ ମାନଙ୍କରେ ଥିବା ମୁରବୀ ଲୋକଙ୍କର ଓଡ଼ିଆ ପଢ଼ିବାର ଆଗ୍ରହ ଦେଖି ମୋତେ ଆହୁରି ଖୁସି ଲାଗିଲା ।

ଚନ୍ଦ୍ରି ନିକଟସ୍ଥ ଅନ୍ୟ ଏକ ଗାଆଁରେ ଗୋଟିଏ ବ୍ରାହ୍ମଣ ପରିବାର ମୋତେ ଓ ଶିଶିରବାବୁଙ୍କୁ ତାଙ୍କଘରକୁ ଡାକିନେଲେ । ତାଙ୍କ ଦାଣ୍ଡ ଘରେ ପ୍ରାୟ ପାଞ୍ଚ ଛଅଟି କାଠ ଆଲମିରାରେ ଓଡ଼ିଆ ବହି ଭରି ରହିଥାଏ । ସେ କହିଲେ ଶହେ ବର୍ଷରୁ ଉର୍ଦ୍ଧ୍ୱ ସମୟର ଏହି ଓଡ଼ିଆ ପାଠାଗାର । ଏ ପାଠାଗାରରେ ଦଶ ହଜାରରୁ ଅଧିକ ଓଡ଼ିଆ ବହି ଅଛି  ମାତ୍ର ପଢ଼ିବା ଲୋକ ନାହାନ୍ତି । ତଥାପି ବହିଗୁଡ଼ିକ ମଝିରେ ମଝିରେ ମୁଁ ଖରାଦେଇ ଝାଡ଼ି ରଖିବାକୁ ଚେଷ୍ଟା ଚଳାଇଛି । ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇଲି । ଲଙ୍କାରେ ହରିଶଦ୍ଧ ପରି ଆପଣ ମେଦିନୀପୁରରେ ଓଡ଼ିଆ ପାଠାଗାର ରଖିଛନ୍ତି । ଆପଣଙ୍କୁ ଯେକୌଣସି ବାଟରେ ସାହାଯ୍ୟ କରିବାକୁ ମୋର ଇଚ୍ଛା । ସେ କହିଲେ, କାଠ ଆଲମିରାଗୁଡ଼ିକରେ ବହି ସାଇତିବାକୁ ଭୟ ହେଉଛି, କିଛି ଲୁହା ଆଲମୀରା ଯଦି ମିଳନ୍ତା, ତେବେ ସୁବିଧା ହୁଅନ୍ତା । ପାଠାଗାର ପାଇଁ ସ୍ୱତନ୍ତ୍ର ଘରଟିଏ ମଧ୍ୟ ଆବଶ୍ୟକ । ଏବେ ସେଇଘରେ ପଲଙ୍କ ପଡ଼ିଛି । ଘର ଲୋକେ କାରବାର ହେଉଛନ୍ତି। ପାଠଗାାର ପରି ଜଣାଯାଉନାହିଁ । ହେଲେ ସେ ସବୁ ଆଲମୀରାରେ ଓଡ଼ିଶାର ଅଧିକାଂଶ ଖ୍ୟାତାନାମା କବି ଓ ଲେଖକମାନଙ୍କର ବହି ସବୁ ଭରି ରହିଛି । ମେଦିନୀପୁରଟା ଯେ ଓଡ଼ିଆମାନଙ୍କର ଜିଲା, ତାହା ଏପରି ଗୋଟିଏ ପାଠାଗାର ଦେଖିଲେ ବିଶ୍ୱାସ କରିହେବ ।

ନୟାଗ୍ରାମ ଥାନାର ଅଧାରୁ ଅଧିକ ଗ୍ରାମରେ ଲୋଧା ମାନେ ବାସକରନ୍ତି । ସେମାନଙ୍କର ବୃତ୍ତି ଥିଲା ଡକାୟତି କରିବା । ଏବେ ମଧ୍ୟ ସେମାନଙ୍କ ମଧ୍ୟରୁ ଅନେକଲୋକ ଡକାୟତି କରି ଚଳନ୍ତି । ସେଥିଲାଗି ଗୋପିବଲ୍ଲଭପୁରଠାରୁ ନୟାଗ୍ରାମକୁ ଯେଉଁ ବସ୍ ଯାଏ, ସେହି ବସ୍‌ରେ ଜଣେ ସଶସ୍ତ୍ର (ବନ୍ଧୁକଧାରୀ) ପୋଲିସ କନେଷ୍ଟବଳ ଯାଇ ନୟାଗ୍ରାମରେ ଓହ୍ଲାଇ ଯାଆନ୍ତି । ନୟାଗ୍ରାମ ଆଡୁ ଆସୁଥିବା ବସ୍‌ରେ ମଧ୍ୟ ଜଣେ ବନ୍ଧୁକଧାରୀ ପୋଲିସ୍ ଗୋପିବଲ୍ଲଭପୁର ପର୍ଯ୍ୟନ୍ତ ଆସନ୍ତି । କାରଣ ଏହି ଦୁଇ ସ୍ଥାନ ମଝିରେ ପ୍ରାୟ ଦଶ ମାଇଲ ଧରି ଜଙ୍ଗଲିଆ ରାସ୍ତା । ବୁଦିବୁଦିକିଆ ଓ ଗହଳିଆ ଜଙ୍ଗଲ ବାଟସାରା ଭରି ରହିଛି । କାର୍, ଜିପ୍, ଟ୍ରକ୍ ବା ମଟରସାଇକେଲ ଆରୋହୀମାନଙ୍କୁ ଡକାୟତମାନେ ଅଟକାଇ ସେମାନଙ୍କଠାରୁ ଟଙ୍କା ପଇସା ଓ ମୂଲ୍ୟବାନ ଜିନିଷପତ୍ର ଲୁଟି ନିଅନ୍ତି । ଶିଶିରବାବୁ ସେ ଅଞ୍ଚଳରେ ଓଡ଼ିଆ ଚାଟଶାଳି ବସାଇବାକୁ ମୋର ମତାମତ ପଚାରିଲେ । ସେ କହିଲେ ଏ ଜାତିର ଲୋକମାନେ ମୟୂରଭଞ୍ଜ ମହାରାଜାଙ୍କ ସୈନିକ ଥିଲେ  । ସେମାନ ଖୁବ୍ ସାହସୀ, ଲଢୁଆ ଓ କଷ୍ଟସହିଷ୍ଣୁ । ଅଧିକାଂଶ ଲୋକ ଦେଖିବାକୁ ବେଶ୍ ବଳିଷ୍ଠ । ମୟୂରଭଞ୍ଜ ରାଜବଂଶ ପ୍ରତି ଏବେମଧ୍ୟ ସେମାନଙ୍କର କୃତଜ୍ଞତା ରହିଛି ।

ଶିଶିରବାବୁ ଓ ମହନ୍ତବାବୁଙ୍କୁ ନେଇ ମୁଁ ସେ ଅଞ୍ଚଳକୁ ଗଲି । ସେମାନଙ୍କ ବସ୍ତିରେ ମଧ୍ୟ ମୟୂରଭଞ୍ଜ ଅଞ୍ଚଳର ବହୁ ଓଡ଼ିଆଝିଅ ତାଙ୍କର ବୋହୂ ହୋଇଥିବାର ଦେଖିଲି । ପିଲାଙ୍କୁ ଓଡ଼ିଆ ପଢ଼ାଇବାକୁ ଲୋକଙ୍କର ଆଗ୍ରହ ଥିବାଦେଖି ସେ ଅଞ୍ଚଳରେ ଦଶଟି ଚାଟଶାଳୀ ମଧ୍ୟ ଆରମ୍ଭ ହୋଇଗଲା । ମହନ୍ତବାବୁ କହିଲେ, ଏଣିକି ଏ ଅଞ୍ଚଳକୁ ଯିବା ଆସିବା କରିବାରେ ଅସୁବିଧା ହେବ ନାହିଁ । କାରଣ ଯଦି କୌଣସି ଡକାୟତ ଆକ୍ରମଣ କରେ, ତେବେ ଉତ୍କଳ ସମ୍ମିଳନୀ ଓଡ଼ିଆ ଚାଟଶାଳୀ ନାମ କହିଦେଲେ ଆଉ ବିପଦ ରହିବ ନାହିଁ । ବରଂ ସେମାନେ ତୁମକୁ ସାଙ୍ଗରେ ନେଇ ଜଙ୍ଗଲ ପାର କରାଇ ଦେଇ ଆସିବେ ।

ବର୍ଷକ ଭିତରେ ଛଅଟି ଥାନାରେ ୫୪ଟି ଚାଟଶାଳୀ ଗଢ଼ିଉଠିଲା । ପ୍ରତି ଚାଟଶାଳୀରେ ୩୦ରୁ ୪୦ ପର୍ଯ୍ୟନ୍ତ ପ୍ରାଥମିକ ବିଦ୍ୟାଳୟରେ ପଢୁଥିବା ପିଲାମାନେ ଓଡ଼ିଆ ଶିଖିଲେ । ଆଉ ଅଧିକ ଚାଟଶାଳି ଖୋଲିବାକୁ ମୋ ପାଖରେ ଟଙ୍କା ନ ଥିଲା । କାରଣ ଝାଡ଼ଖଣ୍ଡ ରାଜ୍ୟ ପାଇଁ ମୋତେ ମିଳିଥିବା ୧୧ ଲକ୍ଷ ୩୦ ହଜାର ଟଙ୍କାରୁ ମେଦିନୀପୁର ପାଇଁ ପ୍ରାୟ ଅଢ଼େଇଲକ୍ଷ ଟଙ୍କା ଖର୍ଚ୍ଚ କରିଦେଲି । ଚାରିମାସ ପଢ଼ାଇ ସାରିଥିବା ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଦରମା ଦେଇସାରି ଚାଟଶାଳି ବନ୍ଦ କରିଦେବାକୁ ନିଷ୍ପତ୍ତି ନେବାକୁ ବାଧ୍ୟ ହେଲି । କାରଣ ଓଡ଼ିଶା ସରକାରଙ୍କଠାରୁ ୨୦୦୩-୦୪ ଓ ୨୦୦୪-୦୫ ଆର୍ଥିକବର୍ଷ ପାଇଁ ମିଳିଥିବା ୩୬ ଲକ୍ଷ ୪୦ ହଜାର ଟଙ୍କାର ହିସାବ ଉତ୍କଳ ସମ୍ମିଳନୀ ପକ୍ଷରୁ ପଇଠ କରାଯାଇ ନଥିଲା । ତେଣୁ ୨୦୦୫-୦୬ ଆର୍ଥିକ ବର୍ଷରେ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର ଲାଗି କୌଣସି ଅନୁଦାନ ମିଳି ନ ଥିଲା । ହାତରେ ଅର୍ଥ ନଥାଇ ୫୪ଟି ଚାଟଶାଳିରେ ପାଠ ପଢ଼ାଉଥିବା ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଦରମା ପାଇବା ଆଶାରେ କାମ କରାଇବାକୁ ମୋର ଆଉ ସାହସ ହେଲାନାହିଁ । ଶିଶିରବାବୁ ଓ ତାଙ୍କର ସହଯୋଗୀମାନଙ୍କୁ ସରକାରୀ ଅନୁଦାନ ମିଳିବା ପର୍ଯ୍ୟନ୍ତ ଦରମା ଦେବାକୁ ଅପେକ୍ଷା କରିବାକୁ କହିଲି ।

ଏଇ ବର୍ଷକ ଭିତରେ ଏ ଅଞ୍ଚଳର କେତେକ ସ୍ଥାନରେ ପିଲାମାନଙ୍କର ଓଡ଼ିଆ ପଢ଼ିବା ପାଇଁ ଆଗ୍ରହଦେଖି ସେସବୁ ଗ୍ରାମରେ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ଖୋଲିବା ପାଇଁ ମୁରବୀ ସ୍ଥାନୀୟ ଲୋକମାନେ ମୋତେ ଅନୁରୋଧ କଲେ । ଦୁଇଟି ସ୍ଥାନରେ ଏଥିଲାଗି ଜମି ଦେବାକୁ ମଧ୍ୟ ଦାତାମାନେ ଆଗେଇ ଆସିଲେ । ସେମାନେ ଥିଲେ ପଣ୍ଡାଛେଞ୍ଚାର ଶିଶିର ମହାନ୍ତି ଓ ନୟାବସାଣ ଗ୍ରାମର ପ୍ରବୋଧ କୁମାର ପଟ୍ଟନାୟକ । ପଣ୍ଡାଛେଞ୍ଚାର ହାଟ ପାଖରେ ଶିଶିର ବାବୁଙ୍କର ପ୍ରାୟ ପାଞ୍ଚଏକର ଜାଗା ଅଛି । ସେଥିରୁ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ପାଇଁ ଚାରିଗୁଣ୍ଠ ଜାଗା ଦେବାକୁ ସେ ରାଜି ହେଲେ ।

ସେହିପରି ନୟାବସାଣରେ ପଟ୍ଟନାୟକବାବୁ ରାସ୍ତା କଡ଼କୁ ଲାଗିଥିବା ତାଙ୍କ ବାଡ଼ିପଟେ ଦୁଇଗୁଣ୍ଠ ଜାଗା ଦେବାକୁ କହିଲେ ।

ମେଦିନୀପୁର ପରି ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ବିଦ୍ୟାଳୟ ଖୋଲିବା ଅତ୍ୟନ୍ତ ଭାଗ୍ୟର କଥା । ଯେଉଁ ଅଞ୍ଚଳରୁ ଦେଢ଼ଶହ ବର୍ଷ ତଳେ ଓଡ଼ିଆ ଭାଷା ଉଠାଇ ଦିଆଯାଇଥିଲା, ସେଠାକାର ଲୋକେ ପୁନର୍ବାର ଓଡ଼ିଆ ବିଦ୍ୟାଳୟ ଖୋଲିବାକୁ ଯେ ଆଗ୍ରହ କରିବେ ତାହା ଓଡ଼ିଆଜାତି ପକ୍ଷରେ ଅତ୍ୟନ୍ତ ସୁଖର କଥା ବୋଲି ମୁଁ ଭାବୁଥିଲି । ତେଣୁ ସରକାରଙ୍କଠାରୁ ମିଳିଥିବା ଭିତ୍ତି ଉନ୍ନୟନ ଲାଗି ଉଦ୍ଦିଷ୍ଟ ଟଙ୍କାରୁ ପ୍ରତି ବିଦ୍ୟାଳୟ ପାଇଁ ଟ.୫୦,୦୦୦/- ଦେବା ପାଇଁ ମୁଁ ସମ୍ମତି ଦେଲି । ସେ ସବୁ ସ୍ଥାନରେ ଯେଉଁ ବିଦ୍ୟାଳୟ ଘର ତିଆରି ହେବ ତା'ର ନକ୍ସା ସହିତ ଜାଗା ଦାନ କରୁଥିବା ଲୋକମାନଙ୍କର ଶପଥପତ୍ର ଆଣି ଉତ୍କଳ ସମ୍ମିଳନୀ କେନ୍ଦ୍ର କାର୍ଯ୍ୟାଳୟରେ ଦାଖଲ କରିଦେଲି । ଏଥିସହିତ ବିଭିନ୍ନ ବିଚ୍ଛିନ୍ନାଞ୍ଚଳ ଦାୟୀତ୍ୱରେ ଥିବା ଲୋକମାନଙ୍କୁ ସେମାନଙ୍କର ସମସ୍ତ ଭାଉଚର ସହିତ ଯେଉଁ ସବୁ କାର୍ଯ୍ୟ କରାଯାଇଛି ସେ ସବୁର ତାଲିକା ଦେବା ପାଇଁ ନିଷ୍ପତ୍ତି ହେଲା ।

ସେସବୁ ତାଲିକା ମିଳିବା ପରେ ମଧ୍ୟ ମେଦିନୀପୁରରେ ଚାଟଶାଳୀ ଖୋଲିବା ବିଷୟରେ ସଭାପତି ବସନ୍ତ ପାଣିଗ୍ରାହୀ ମୋ ଭୂମିକାକୁ ସମାଲୋଚନା କଲେ । ସେ କହିଲେ ନିଷ୍ପତ୍ତି ହୋଇଥିଲା ଯେ, ପଶ୍ଚିମବଙ୍ଗରେ କେବଳ କଲିକତାରେ ଥିବା ଓଡ଼ିଆ ବିଦ୍ୟାଳୟଗୁଡ଼ିକୁ ସାହାଯ୍ୟ କରାଯିବ । ମାତ୍ର ଆପଣ ମେଦିନୀପୁରରେ ମଧ୍ୟ କାର୍ଯ୍ୟ ଆରମ୍ଭ କରିଦେଲେ । ତହିଁରେ ପୁଣି ଝାଡ଼ଖଣ୍ଡ ପାଇଁ ଦିଆଯାଇଥିବା ଅର୍ଥରୁ ମେଦିନୀପୁରରେ ପ୍ରାୟ ଅଢ଼େଇ ଲକ୍ଷ ଟଙ୍କା ଖର୍ଚ୍ଚ କଲେ । ଝାଡ଼ଖଣ୍ଡ ଲୋକ ଓଡ଼ିଆ ଭାଷାକୁ ରକ୍ଷା କରିଛନ୍ତି । ମାତ୍ର ମେଦିନୀପୁରରେ ଓଡ଼ିଆ ଭାଷା କହିବାକୁ ଲୋକେ ଘୃଣା କରନ୍ତି । ଏପରି ସ୍ଥିତିରେ ମେଦିନୀପୁରରେ ଯେତେ ଚାଟଶାଳୀ ଖୋଲାଗଲା ସେଠାରେ ଓଡ଼ିଆ ପଢ଼ିଥିବା ପିଲାମାନେ କ'ଣ ଓଡ଼ିଆ ହୋଇଯିବେ ?

କହିଲି, ମେଦିନୀପୁରୀ ଓଡ଼ିଆମାନେ ବଙ୍ଗାଳି ହୋଇଯିବା କିଛି ରାତାରାତି ଘଟି ଯାଇନାହିଁ । ଗତ ଦେଢ଼ଶହ ବର୍ଷ ଭିତରେ ମୂଳଭୂଖଣ୍ଡର ଓଡ଼ିଆମାନେ ସେଠା ଲୋକଙ୍କ ପାଇଁ କିଛି କରିନାହାନ୍ତି । ଏକଶହ ବର୍ଷ ତଳେ କଟକ, ପୁରୀ, କିମ୍ବା ବାଲେଶ୍ୱରରେ ଇଂରେଜ ସରକାରଙ୍କ ଦପ୍ତର ମାନଙ୍କରେ କେବଳ ବଙ୍ଗାଳିମାନେ ରହି ଆମକୁ ଶାସନ କରୁଥିଲେ । ସେସବୁ ଦପ୍ତରକୁ ଯାଉଥିବା ଓଡ଼ିଆ ଲୋକେ ବଙ୍ଗଳା କହିପାରିଲେ ସେମାନଙ୍କ କାର୍ଯ୍ୟ ହେଉଥିଲା । ଏପରିକି ବଙ୍ଗୀୟ ମାନେ ଇଂରେଜ ପ୍ରଶାସକମାନଙ୍କୁ ପ୍ରଭାବିତ କରି ଓଡ଼ିଶା ଡିଭିଜନରୁ ଓଡ଼ିଆ ଉଠାଇ ଦେଇ ବଙ୍ଗଳା ଭାଷାକୁ ସରକାରୀ ଭାଷା ଭାବେ ସ୍ୱୀକୃତି ଦେବାର ଆଦେଶ ମଧ୍ୟ ଜାରି କରାଇ ପାରିଥିଲେ । ମାତ୍ର ବ୍ୟାସକବି

ଫକୀରମୋହନ ସେନାପତିଙ୍କ ପ୍ରଚେଷ୍ଟାରେ ଜନ୍‌ବୀମସ୍‌ଙ୍କ ପରି କେତେକ ଇଂରେଜ ପ୍ରଶାସକ ଏପରି ଆଦେଶ ଉଠାଇ ଦେବାରେ ସାହାଯ୍ୟ କଲେ । ତାହା ନ ହୋଇଥିଲେ, ମେଦିନୀପୁରବାସୀଙ୍କ ପରି ଆମେ ମଧ ବଙ୍ଗଳା କହୁଥାନ୍ତୁ । ଅବିଭକ୍ତ ମେଦିନୀପୁର ଜିଲା ଚିରକାଳ ପାଇଁ ବଙ୍ଗ ପ୍ରଦେଶରେ ରହିଗଲା । ଓଡ଼ିଶାଗଠନ ବେଳେ ସେଥିରୁ କିଛି ଅଂଶ ମଧ ଏ ରାଜ୍ୟ ସହିତ ମିଶି ପାରିଲା ନାହିଁ ।

ଏଥିପାଇଁ କେବଳ ମେଦିନୀପୁର ବାସୀଙ୍କ ଉପରେ ଦୋଷ ଲଦିଦେଇ ଖସି ଯାଇ ହେବନାହିଁ । ଗୋଟିଏ ବର୍ଷ ମଧରେ ସେ ଜିଲାର ଛଅଟି ଥାନାରେ ୫୪ଟି ଚାଟଶାଳୀ ଖୋଲାଯାଇଛି । ଲୋକମାନେ ସ୍ୱତଃପ୍ରବୃତ୍ତ ହୋଇ ସେମାନଙ୍କ ପିଲାଙ୍କୁ ଓଡ଼ିଆ ପଢ଼ାଇବାକୁ ପଠାଉଛନ୍ତି । ଏହା ବ୍ୟତୀତ ଓଡ଼ିଶାରୁ କୌଣସି ଅବଧାନ ଯାଇ ସେସବୁ ଚାହାଳିରେ ପଢ଼ାଉ ନାହାଁନ୍ତି । ସେହି ମେଦିନୀପୁର ଲୋକେ ତାଙ୍କ ପିଲାଙ୍କୁ ଓଡ଼ିଆ ପଢ଼ାଉଛନ୍ତି । ଆମେ କେବଳ ଶିକ୍ଷକଦରମା, ବହିପତ୍ର ଓ ଶିଲଟ ଆଦି ଦେଇ ଆସୁଛୁ । ଏହି ବର୍ଷକ ମଧରେ  ଲୋକେ ସେଠାରେ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ଖୋଲିବାକୁ ଆଗ୍ରହ କଲେଣି । ଏତେଗୁଡ଼ାଏ କଥା ହେବାକୁ ମାତ୍ର ଅଢ଼େଇ ଲକ୍ଷ ଟଙ୍କା ଖର୍ଚ୍ଚହୋଇଛି ।

କଲିକତାରେ ଛଅଲକ୍ଷ ଟଙ୍କା ଖର୍ଚ୍ଚକରି କେତେ ପିଲା ଓଡ଼ିଆ ପଢ଼ିଛନ୍ତି ଓ ମେଦିନୀପୁରରେ ଅଢ଼େଇ ଲକ୍ଷ ଟଙ୍କା ବ୍ୟୟ କରି କେତେ ପିଲା ବର୍ଣ୍ଣବୋଧ ଶିଖିଲେ ତାର ଏକ ତୁଳନାକଲେ ମେଦିନୀପୁର କାର୍ଯ୍ୟ ଅଧିକ ହୋଇପାରିବ । ଏପରି ସ୍ଥଳେ ମୋତେ ସମାଲୋଚନା କରିବା ପୂର୍ବରୁ ପ୍ରଥମେ ଆତ୍ମଚିନ୍ତନ କରନ୍ତୁ । ଉତ୍କଳ ସମ୍ମିଳନୀ ସୃଷ୍ଟି ହେବାଦିନୁ ମେଦିନୀପୁରରେ ଓଡ଼ିଆ ଭାଷା ବଞ୍ଚାଇ ରଖିବାକୁ କାହିଁକି କିଛି କରାଯାଇନାହିଁ? ସେଥିଲାଗି ଦାୟୀ କିଏ ? ସେ ବିଷୟରେ ଅନୁଧାନ କରାଯାଉ ।

# ଝାଡ଼ଖଣ୍ଡରେ ଅନ୍ୟାନ୍ୟ କାର୍ଯ୍ୟ

ଝାଡ଼ଖଣ୍ଡରେ ଥିବା ପୂର୍ବତନ ଅବିଭକ୍ତ ସିଂହଭୂମି ଅଞ୍ଚଳରେ ଓଡ଼ିଆ ଲୋକେ ଅତ୍ୟନ୍ତ ମାତୃଭାଷା ପ୍ରେମୀ । ଗଡ଼ଜାତ ମିଶ୍ରଣ ସମୟରେ ଷଢେକଳା ଓ ଖରସୁଆଁର ରାଜାମାନେ ସେମାନଙ୍କ ରାଜ୍ୟକୁ ଓଡ଼ିଶାସହିତ ମିଶାଇଦେବାକୁ ଲେଖି ଦେଇଥିଲେ । ସେ ଦୁଇ ରାଜ୍ୟ ଓଡ଼ିଶା ସହିତ ନ ମିଶିବାରୁ ଓଡ଼ିଶାରେ ଛାତ୍ର ଆନ୍ଦୋଳନ ହେଲା । ସେ ସମୟର ଛାତ୍ରଛାତ୍ରୀମାନେ ଏବେ ବୃଦ୍ଧବୟସରେ ଉପନୀତ ହେଲେଣି । ମାତ୍ର ଷଢ଼େଇକଳା ଓ ଖରସୁଆଁକୁ କେହି ଭୂଲି ନାହାନ୍ତି । ମାତ୍ର ଏ ଦୁଇରାଜ୍ୟ ଠାରୁ ଆୟତନରେ ଯଥେଷ୍ଟ ବଡ଼ ପୂର୍ବ ସିଂହଭୂମି ଓ ପଶ୍ଚିମସିଂହଭୂମି ଜିଲା ଦୁଇଟି । ଏ ଦୁଇଟି ଓଡ଼ିଆ ଅଧ୍ୟୁଷିତ ଜିଲା ।

ସେଠାକାର ଓଡ଼ିଆମାନେ ମାତୃଭାଷା, ସାହିତ୍ୟ ଓ ସଂସ୍କୃତିକୁ ବଞ୍ଚାଇ ରଖିବାକୁ ସର୍ବଦା ଚେଷ୍ଟାରତ । ଏପରିକି, ଏ ଦୁଇଜିଲାର ଆଦିବାସୀମାନେ ମଧ୍ୟ ଓଡ଼ିଆରେ କଥା ହୁଅନ୍ତି । ଉତ୍କଳ ଏକ୍ସପ୍ରେସ୍‌ରେ ଗଲେ ଖଡ଼ଗପୁର ଠାରୁ ଜାମସେଦପୁର ବାଟରେ ମେଦିନୀପୁର ଜିଲାପରେ ଝାଡ଼ଖଣ୍ଡର ପୂର୍ବ ସିଂହଭୂମି ଜିଲା ପଡ଼େ । ପୂର୍ବ ସିଂହଭୂମି ପରେ ପଶ୍ଚିମ ସିଂହଭୂମି ଜିଲା ଦେଇ ରେଳଗାଡ଼ିରେ ପାଞ୍ଚଛଅ ଘଣ୍ଟା ଝାଡ଼ଖଣ୍ଡ ରାଜ୍ୟରେ ଗତି କଲାପରେ ପଡ଼େ ରାଉରକେଲା ଷ୍ଟେସନ । ଝାଡ଼ଖଣ୍ଡ ମୁଖ୍ୟତଃ ଏକ ଆଦିବାସୀ ଅଧ୍ୟୁଷିତ ରାଜ୍ୟ ଓ ଏହାର ମୁଖ୍ୟଭାଷା ହିନ୍ଦି ହୋଇଥିଲେ ମଧ୍ୟ ପୂର୍ବସିଂହଭୂମି ଜିଲା ସୀମାସ୍ଥ ଘାଟଶିଲା ଷ୍ଟେସନଠାରୁ ଆରମ୍ଭ କରି ଜାମସେଦପୁର, ଚକ୍ରଧରପୁର, ମନୋହରପୁର ଦେଇ ଓଡ଼ିଶାସୀମାରେ ଥିବା ବିଶ୍ରା ଷ୍ଟେସନ ପର୍ଯ୍ୟନ୍ତ ସବୁ ଷ୍ଟେସନର ନାମ ଓଡ଼ିଆରେ ଲେଖାହୋଇଥାଏ । ଯେଉଁ ଲୋକମାନେ ଗାଡ଼ିରେ ଉଠନ୍ତି, ପ୍ରାୟ ଅଧିକାଂଶ ଲୋକ ଓଡ଼ିଆରେ କଥା ହେବାର ଶୁଣାଯାଏ । ସେମାନଙ୍କ ମଧ୍ୟରୁ ବହୁ ଲୋକ ଆଦିବାସୀ ବର୍ଗର ଦେଖି ଯେ କୌଣସି ମାତୃଭାଷାପ୍ରେମୀ ଓଡ଼ିଆଲୋକକୁ ଖୁସି ଲାଗିବ ।

ଓଡ଼ିଶା ଗଠିତହେବା ଦିନଠାରୁ ଆଜିପର୍ଯ୍ୟନ୍ତ ଏସବୁ ଜିଲାରେ ଓଡ଼ିଆ ଶିକ୍ଷାର ପ୍ରସାରଣ ଦିଗରେ ଆଦୌ ଦୃଷ୍ଟି ଦିଆଯାଇ ନଥିଲା । ମାତ୍ର ୨୦୦୨-୦୩ ମସିହା ଠାରୁ ଏହି ବାବଦ ଆବଶ୍ୟକୀୟ ଅନୁଦାନ ଦିଆଯାଇ ଝାଡ଼ଖଣ୍ଡର ଲୋକମାନଙ୍କୁ ଏଦିଗରେ ଉତ୍ସାହିତ କରାଯିବା ଅତ୍ୟନ୍ତ ଆନନ୍ଦର ବିଷୟ । ଓଡ଼ିଶା ସରକାରଙ୍କ ଗଣଶିକ୍ଷା ବିଭାଗ ପକ୍ଷରୁ ଏଥିଲାଗି ଅର୍ଥ ପ୍ରଦାନ କରାଯିବା ପରେ ସଂସ୍କୃତି ବିଭାଗ ପକ୍ଷରୁ ମଧ୍ୟ ଉତ୍କଳ ସମ୍ମିଳନୀ ଜରିଆରେ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ପାଠାଗାର ଆରମ୍ଭ କରିବା କିମ୍ବା ପୁରାତନ ପାଠାଗାର ଗୁଡ଼ିକୁ ସାହାଯ୍ୟ କରିବା ପାଇଁ ଅର୍ଥ ମିଳିଥିଲା । ସେହି ଅର୍ଥରୁ ପୂର୍ବସିଂହଭୂମି ଜିଲାର ଖଣ୍ଡାମୌଦା ଓଡ଼ିଆ ଉଚ୍ଚବିଦ୍ୟାଳୟ ଗୋଲମୁରୀ ଉତ୍କଳ ସମାଜ ଓଡ଼ିଆ ଉଚ୍ଚବିଦ୍ୟାଳୟ, ଗୁହ୍ୟାପାଳ ଓଡ଼ିଆ ଉଚ୍ଚବିଦ୍ୟାଳୟ ଓ ପଶ୍ଚିମ ସିଂହଭୂମିର ପୁରୁଣାବସ୍ତି ଓଡ଼ିଆ ମଧ୍ୟ ବିଦ୍ୟାଳୟମାନଙ୍କରେ ଓଡ଼ିଆ ପାଠାଗାର ଆରମ୍ଭ କରାଗଲା । ଏଥି ସହିତ ଷଢ଼େଇକଳା ଠାରେ ଥିବା ଓଡ଼ିଆ ପାଠାଗାରକୁ ବହି ଓ ଆଲମୀରା ଯୋଗାଇ ଦିଆଗଲା ।

କଟକରୁ ଏସବୁ ବହି କିଣି ଟାକ୍ସିରେ ଯାଇ ମୁଁ ଏ ସମସ୍ତ ବିଦ୍ୟାଳୟମାନଙ୍କରେ ଦେଇ ଆସିଲି । ସ୍ଥାନୀୟ ଦୋକାନୀଙ୍କ ଠାରୁ ଷ୍ଟିଲ୍ ଆଲ୍‌ମୀରା କିଣି ସେଥିରେ ବହି ଗୁଡ଼ିକ ରଖାଗଲା ଓ ପାଠାଗାରରେ ବସି ପଢ଼ିବାପାଇଁ ଆବଶ୍ୟକୀୟ ଚୌକୀ ଟେବୁଲ ମଧ୍ୟ ଦିଆଗଲା । ଏସବୁପରେ ପାଠାଗାରଗୁଡ଼ିକର ଉନ୍ମୋଚନ ଲାଗି ଦିନ ଠିକ୍ ହେଲା । ଭୁବନେଶ୍ୱରରୁ ଉତ୍କଳ ସମ୍ମିଳନୀର ସଭାପତି ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ଓ ମୁଁ ଝାଡ଼ଖଣ୍ଡ ଜିଲା ଜାମସେଦପୁରଠାରେ ପହଞ୍ଚିଲୁ । ଝାଡ଼ଖଣ୍ଡର ତତ୍‌କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ତଥା

ଖ୍ୟାତନାମା ଓଡ଼ିଆନେତା ଡାକ୍ତର ଦିନେଶ କୁମାର ଷଡ଼ଙ୍ଗୀଙ୍କ ନିର୍ବାଚନ ମଣ୍ଡଳିସ୍ଥ ଖଣ୍ଡାମୌଦା ଓ ଗୁହ୍ୟାପାଳ ଦୁଇ ବିଦ୍ୟାଳୟରେ ସେଦିନ ସକାଳବେଳା ଓ ଉପରବେଳା ସଭା କରାଯାଇ ପାଠାଗାର ଗୁଡ଼ିକର ଉନ୍ମୋଚନ କରାଗଲା । ଶିକ୍ଷକ, ଶିକ୍ଷୟତ୍ରୀ ଓ ଛାତ୍ରଛାତ୍ରୀଙ୍କ ବ୍ୟତୀତ ବହୁ ସଂଖ୍ୟକ ସ୍ଥାନୀୟ ଲୋକ ଉଭୟ ସଭାରେ ଯୋଗଦେଇ ଉତ୍କଳ ସମ୍ମିଳନୀ ଜରିଆରେ ଓଡ଼ିଶା ସରକାର ଏପରି ମହତ୍ କାର୍ଯ୍ୟ କରାଉଛନ୍ତି ବୋଲି ସନ୍ତୋଷ ବ୍ୟକ୍ତ କରି କୃତଜ୍ଞତା ଜ୍ଞାପନ କଲେ । ସେଦିନ ସନ୍ଧ୍ୟା ସୁଦ୍ଧା ଆମେ ଜାମସେଦପୁର ଫେରିଆସିଲୁ । ପରଦିନ ସକାଳେ ଗୋଲମୁରୀ ଉତ୍କଳ ସମାଜ ହାଇସ୍କୁଲରେ "ରାଧାନାଥ ରଥ ଓଡ଼ିଆ ପାଠାଗାର" ଉନ୍ମୋଚିତ ହେଲା । ଗୋଲମୁରୀ ଉତ୍କଳ ସମାଜର ସମସ୍ତ ସଭ୍ୟମାନଙ୍କ ସମେତ ଶିକ୍ଷକ ଶିକ୍ଷୟିତ୍ରୀ, ଛାତ୍ରଛାତ୍ରୀ ତଥା ସ୍ଥାନୀୟ ବହୁ ଓଡ଼ିଆଲୋକ ଏହି ଉନ୍ମୋଚନ ଉତ୍ସବରେ ଯୋଗଦାନ କଲେ । ଏହି ଓଡ଼ିଆ ସମାଜର ପ୍ରମୁଖନେତା ଶ୍ରୀ ରବିନ୍ଦ୍ର କୁମାର ମିଶ୍ର ସମସ୍ତ ଆୟୋଜନ କରିଥିଲେ । ଜାମସେଦପୁରର ଅବକାରୀ କମିଶନର ଶ୍ରୀ ବି.କେ. ମାରାଣ୍ଡି ଏହି ସଭାରେ ସଭାପତିତ୍ୱ କରି ଏ ଅଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷା ଲାଗି ଉତ୍କଳ ସମ୍ମିଳନୀ ଜରିଆରେ ଯାହା କରାଯାଉଛି, ସେ ବିଷୟରେ ସନ୍ତୋଷ ବ୍ୟକ୍ତ କରିଥିଲେ । ଶ୍ରୀ ବି.କେ. ମାରାଣ୍ଡି ମୟୂରଭଞ୍ଜର ଜଣେ ଅଦିବାସୀ ଲୋକ । ବିହାର କ୍ୟାଡ଼ରରେ ଅବକାରୀ ବିଭାଗରେ ଯୋଗଦେଇ ଜାମସେଦପୁର ଠାରେ କିମିଶନର୍ ଭାବେ କାର୍ଯ୍ୟ କରୁଥିଲେ । ଏହି ମହାନଗରୀର ପର୍ଶୁଡିହିଥାନାରେ ଥିବା ଆଦିବାସୀ ଓଡ଼ିଆ ବିଦ୍ୟାଳୟ ସିଦୋକାହ୍ନୁ ହାଇସ୍କୁଲକୁ ସେ ଯଥାସାଧ ସାହାଯ୍ୟ କରିବେ ବୋଲି ସେହି ସଭାରେ ଘୋଷଣା କଲେ । ଏ ଅଞ୍ଚଳରେ ବୁଲି ନୂତନ ଚାଟଶାଳିମାନ ଖୋଲିବା ପାଇଁ ଖଇରପାଳ ଯିବାକୁ ତାଙ୍କ ଗାଡ଼ି ଆମକୁ ଦୁଇଦିନ ପାଇଁ ଦେବାକୁ ସେ ରାଜି ହେଲେ ।

ପରଦିନ ଆମେ ଜାମସେଦପୁର ଠାରୁ ତିରିଶ କିଲୋମିଟର ଦୂରସ୍ଥ ଖଇରପାଳ ବାହାରିଗଲୁ । ଏ ଅଞ୍ଚଳଟା ଷଢେଇକଳା-ଖରସୁଆଁ ଜିଲାର ଏକ ଅଂଶ । ରାଇରଙ୍ଗପୁର ଉପଖଣ୍ଡକୁ ଲାଗିଛି ଷଢ଼େଇକଳା ଜିଲା । ଷଢେଇକଳା-ଖରସୁଆଁକୁ ମାଡ଼ିବସିବାପରେ ବିହାର ସରକାର ଏ ଅଞ୍ଚଳର ସବୁତକ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟକୁ ହିନ୍ଦି ବିଦ୍ୟାଳୟରେ ପରିଣତ କରିଦେଇଛନ୍ତି । ହେଲେ ଏଠାକାର ଅଧିକାଂଶ ଗାଆଁ ପୂରା ଖାଣ୍ଟି ଓଡ଼ିଆ ଗ୍ରାମ । ଲୋକେ ନିଜନିଜ ଘରେ ଶୁଦ୍ଧ ଓଡ଼ିଆରେ କଥା ହେଉଥିଲେ ମଧ ନିଜ ପିଲାଙ୍କୁ ହିନ୍ଦି ପ୍ରାଥମିକ ବିଦ୍ୟାଳୟରେ ପଢ଼ାଇବାକୁ ବାଧ ହୁଅନ୍ତି । ତେଣୁ ଏ ଅଞ୍ଚଳରେ ଓଡ଼ିଆ ଚାଟଶାଳି ବସାଇ ଛୋଟ ଛୋଟ ପିଲାଙ୍କୁ ଓଡ଼ିଆ ପଢ଼ାଇବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କଥା । ଆମେ ଖଇରପାଳ ହାଇସ୍କୁଲରେ ପହଞ୍ଚି ସ୍ଥାନୀୟ ଲୋକଙ୍କୁ ଡକାଇଲୁ । ହାଇସ୍କୁଲ ପରିଚାଳନା କମିଟିର

ସଭାପତି ଶ୍ରୀଜଗଦୀଶ ମହାପାତ୍ରଙ୍କ ସହିତ ବହୁ ମୁରବୀଲୋକ ଏକତ୍ରିତ ହେଲେ । ଜଗଦୀଶବାବୁ କହିଲେ ଖଇରପାଳ ହାଇସ୍କୁଲରେ ଓଡ଼ିଆ ପଢ଼ାହେଉଛି । ବିଦ୍ୟାଳୟର ଘରଦ୍ୱାର ସବୁ ପୁରୁଣା ହୋଇ ଭାଙ୍ଗିଯିବା ଅବସ୍ଥାରେ । ପିଲାମାନଙ୍କ ବସିବା ପାଇଁ ବେଞ୍ଚ ଡେସ୍କ ନାହିଁ । ଏ ବିଦ୍ୟାଳୟର ପାଖାପାଖି କୌଣସି ପ୍ରାଥମିକ ବିଦ୍ୟାଳୟରେ ଓଡ଼ିଆ ପଢ଼ା ହେଉ ନାହିଁ । ଲୋକମାନେ ମଧ୍ୟ ୧୯୪୮ ମସିହା ଠାରୁ ବିହାର ସରକାରଙ୍କ ଦୌରାତ୍ମ୍ୟ ସହି ଓଡ଼ିଆ ଭାଷା ହରାଇଦେବାର ଆଶଙ୍କାରେ ରହିଥିଲେ । ୨୦୦୦ ମସିହାରେ ଝାଡ଼ଖଣ୍ଡ ସୃଷ୍ଟି ହେବାପରେ ପୂର୍ବସ୍ଥିତି ବଦଳିବାର ଆଶା ଏବେ ଉଜ୍ଜ୍ୱଳ ହୋଇଛି । ସେମାନଙ୍କୁ କଥାଦେଲି ଯେ, ଏବେଠାରୁ ମୁଁ ଏଠାକୁ ପ୍ରତିମାସରେ ଆସି ଓଡ଼ିଆ ଚାଟଶାଳି ଖୋଲାଇବି ଓ ଖଇରପାଳ ହାଇସ୍କୁଲ ପାଇଁ ଆବଶ୍ୟକୀୟ ଜିନିଷ ବ୍ୟବସ୍ଥା କରାଯିବ ।

ଓଡ଼ିଶା ଫେରିବା ପରେ ସଚିବାଳୟକୁ ଗଲି । ଗଣଶିକ୍ଷା ବିଭାଗର ଉପଶାସନ ସଚିବ କହିଲେ, ଝାଡ଼ଖଣ୍ଡ ପାଇଁ ଓଡ଼ିଆ ସାହିତ୍ୟବହି ପାଇଁ ସରକାରୀ ମଞ୍ଜୁରୀ ମିଳିଗଲା । ଆପଣ ଶୀଘ୍ର ବହି ନେବାର ବ୍ୟବସ୍ଥା କରନ୍ତୁ । ଓଡ଼ିଶା ସରକାରଙ୍କ ପାଠ୍ୟପୁସ୍ତକ ଛାପାଖାନାକୁ ଯାଇ ବୁଝିଲି ଯେ, ସେମାନେ ଏ ବାବଦ ସରକାରୀ ନିର୍ଦ୍ଦେଶ ପାଇଛନ୍ତି । ତେଣୁ ବହିସବୁ ନେଇ ସେଠାରେ ବାଣ୍ଟିବା ଦରକାର । ଗୋଟିଏ ମିନିଟ୍ରକ ଭଡ଼ାକରି ପାଠ୍ୟପୁସ୍ତକ ଛାପାଖାନାକୁ ଗଲି । ୨୮୦୦୦ ବହି ଗାଡ଼ିରେ ଲଦିବାକୁ ଦିନ ଦୁଇଟା ବାଜିଗଲା । ଡ୍ରାଇଭର କହିଲା କାଲି ରାତ୍ରିସୁଦ୍ଧା ମୋତେ ଫେରିବାକୁ ହେବ । କାରଣ ପରଦିନ ମୋର ଭଡ଼ା ଅଛି । କହିଲି, ଜାମସେଦପୁର, ଷଢ଼େଇକଳା ଓ ଖରସୁଆଁରେ ବହି ଦେଇ ସାରି ଚକ୍ରଧରପୁର ଯାଇ ବହି ଦେବାକୁ ହେବ । ତା ପରେ ଆମେ ଫେରିବା । କହିଲି, କାଲିରାତି ସୁଦ୍ଧା ଯଦି ଏସବୁ କାମ ସାରିଦେବା ସମ୍ଭବ ହୁଏ, ତାହେଲେ ତୁମେ ଫେରି ଆସି ପାରିବ । ସେ କହିଲା କଲୋମିଟର ଅନୁସାରେ ଦୂରତା ହିସାବ କରି ମୁଁ ଭାବୁଛି ଏହା ହୋଇପାରିବ । ଭୁବନେଶ୍ୱରରେ ଖିଆପିଆ ସାରିଆମେ ବାହାରିବା ବେଳକୁ ଦିନ ପ୍ରାୟ ଅପରାହ୍ଣ ୪ଟା । ଡ୍ରାଇଭର ସହିତ ମୁଁ ଟ୍ରକରେ ବସି ପଡ଼ିଲି । ଆମେ ବାରିପଦା ପହଞ୍ଚିଲା ବେଳକୁ ରାତି ୧୧ଟା ବାଜିଲା ସେଠି ଗୋଟିଏ ହୋଟେଲରେ ଖାଇ ସାରିଲା ବେଳକୁ ବାରଟା ବାଜିଥାଏ । ଏତେ ରାତିରେ ଜଙ୍ଗଲିଆ ରାସ୍ତାରେ ଟ୍ରକ୍ ଚଳାଇ ଜାମସେଦପୁର ଯିବାକୁ ମୁଁ ମନାକଲି । ଯିବା ପାଇଁ ଡ୍ରାଇଭର ମୋତେ ବାଧ କରୁଥାଏ । କହିଲି, ରାତିସାରା ଟ୍ରକ୍‌ରେ ଘୁମେଇ ଘୁମେଇ ଯିବା ପାଇଁ ମୁଁ ରାଜି ଅଛି । ମାତ୍ର ବାଟରେ କ'ଣ ଅସୁବିଧା ହେଲେ ତୁମେ ଦାୟୀ ରହିବ । ସେ କହିଲା କିଛି ଅସୁବିଧା ହେବ ନାହିଁ । ଆପଣ ଆସନ୍ତୁ ।

ପ୍ରାୟ ରାତି ସାଢ଼େ ଗୋଟାଏ ବେଳକୁ ଆମେ ଯାଇ ଜାମଶୋଲା ଚେକ୍ ଗେଟରେ ପହଞ୍ଚିଲୁ । ଟ୍ରକ୍‌ସବୁ ଲମ୍ବା ଲାଇନ୍‌ରେ ଥାଆନ୍ତି । କହିଲି, ଏ ଲାଇନ୍‌ରେ ଯାଇ ଚେକ୍‌ଗେଟ୍ ପାଖରେ ପହଞ୍ଚିବା ବେଳକୁ ରାତି ପାହିଯିବ । ଏତେ ସମୟ ଅନିଦ୍ରା ନ ରହି ରାସ୍ତା କଡ଼ରେ ଟ୍ରକ୍ ଅଟକାଇ ଶୋଇଯିବା ଭଲ ହେବ । ୨/୩ ଘଣ୍ଟା ଶୋଇଯିବା ପରେ ଭୋର ୪ଟା ବେଳକୁ ଲାଇନ୍‌ରେ ଗାଡ଼ି ଲଗାଇବ । ନୋହିଲେ କାଲି ସକାଳୁ ଗାଡ଼ି ଚଳାଇବା ଅସମ୍ଭବ ହୋଇପଡ଼ିବ । ସେତେବେଳକୁ ସେ ଲୋକ ପୂରା ହାଲିଆ ହୋଇ ପଡ଼ିଥାଏ । ତେଣୁ ମୋ କଥା ମାନି ରାସ୍ତା କଡ଼ରେ ସେ ଗାଡ଼ି ରଖିଲା । ମୁଁ ସେଇ ସିଟ୍‌ରେ ଘୁମେଇ ପଡ଼ିଲି । ଡ୍ରାଇଭର ଓ ତାର ସହାୟକ ରାସ୍ତା କଡ଼ରେ ଗାମୁଛା ପକାଇ ଗଡ଼ିପଡ଼ିଲେ ।

ମୋତେ ନିଦମାଡ଼ି ଆସୁଥାଏ । ସାମନା ସିଟ୍‌ରେ ମୁଁ ଶୋଇଗଲି । ମାତ୍ର ମଝିରେ ମଝିରେ ମଶା କାମୁଡ଼ିବାରୁ ନିଦ ଭାଙ୍ଗି ଯାଉଥାଏ । ଭୋର ୫ଟା ବେଳକୁ ଡ୍ରାଇଭର ଗାଡ଼ି ନେଇ ଲାଇନ୍‌ରେ ଲଗାଇଲା । ସାମନାରେ ପ୍ରାୟ ଶହେ ପର୍ଯ୍ୟନ୍ତ ଟ୍ରକ ଥାଆନ୍ତି । ମୁଁ ଚେକ୍‌ଗେଟ ଅଫିସ୍‌କୁ ଯାଇ ମୋର ପରିଚୟ ଦେଲି । ସହକାରୀ ବାଣିଜ୍ୟକର ଅଧିକାରୀ କହିଲେ, ଆପଣଙ୍କ କାଗଜପତ୍ର ଆଣନ୍ତୁ ମୁଁ ପାଶ୍ କରିଦେଉଚି ।

ଡ୍ରାଇଭର ତା କାଗଜପତ୍ର ଦେଖାଇ ଦେଇ ନେଇଗଲା । ଆମେ ଜେମସେଦପୁର ବାହାରିଗଲୁ ।

ଗୋଲମୁରୀ ଉତ୍କଳ ସମାଜ ହାଇସ୍କୁଲ୍‌ରେ ପହଞ୍ଚଲା ବେଳକୁ ମଧ୍ୟାହ୍ନ ସମୟ । ପ୍ରଧାନ ଶିକ୍ଷକ ତାଙ୍କର ଛାତ୍ରମାନଙ୍କୁ ଲଗାଇ ପୂର୍ବ ସିଂହଭୂମ ଜିଲା ପାଇଁ ଉଦ୍ଦିଷ୍ଟ ବହିପତ୍ର ଉଠାଇନେଲେ । ଆମେ ସେଠାରେ ଗାଧୁଆ ପାଧୁଆ ଖିଆପିଆ ସାରି ଷଢେ଼ଇକଳା ବାହାରି ପଡ଼ିଲୁ । ସନ୍ଧ୍ୟା ପରେ ଷଢେ଼ଇକଳାରେ ପହଞ୍ଚିଲୁ । ସେଠାକାର ଲୋକଙ୍କୁ ଡାକି ବହିପତ୍ର ରଖାରଖି କରିବାକୁ ରାତି ପ୍ରାୟ ଆଠଟା ହୋଇଗଲା । ରାତିରେ ସେଠି ରହିଯିବା ପାଇଁ ସମସ୍ତେ ବାଧ କରୁଥାନ୍ତି । ମାତ୍ର ଟ୍ରକ୍ ଡ୍ରାଇଭର ପୂରା ନାରାଜ । କହୁଥାଏ ମୋତେ କାଲି ସୁଦ୍ଧା କଟକରେ ପହଞ୍ଚିବାକୁ ହେବ । ଚକ୍ରଧରପୁରକୁ ଖରସୁଆଁ ଦେଇ ପ୍ରାୟ ଷାଠିଏ କିଲୋମିଟରା ରାସ୍ତା । ହେଲେ ସେବାଟେ ଯିବାକୁ ଲୋକେ ମନା କଲେ । କହିଲେ, ବାଟରେ ମହୁଆ ଓ ହାତୀଙ୍କ ଭୟ । ଏବେ ଭଲରାସ୍ତା ଦେଇ ଯିବାକୁ ହେଲେ ଷଢେ଼ଇକଳାରୁ ଚାଇଁବାସା ଦେଇ ଚକ୍ରଧରପୁର ଯିବା ଠିକ୍ ହେବ । ଆମେ ସାଙ୍ଗେସାଙ୍ଗେ ବାହାରିଗଲୁ । ଦୁଇ ଦିନ ଧରି ଟ୍ରକ୍‌ରେ ବସି ବସି ପିଚା ପୋଡୁଥାଏ । ଦେହହାତ ପୁରା ଦରଜ ହୋଇଗଲାଣି ।

ଜୀବନରେ ଏପରି କାର୍ଯ୍ୟ କରିବାର ଆଦୌ ଅଭ୍ୟାସ ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରେ ପାଞ୍ଚବର୍ଷ ରହି ପାଠପଢ଼ା ସାରିବା ପରେ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟରେ ଗବେଷଣା ଓ ଅଧ୍ୟାପନା କରିବା ବେଶ୍ ଆରାମଦାୟକ କାର୍ଯ୍ୟ ଥିଲା । ତାପରେ ଓଡ଼ିଶା ପଶୁପାଳନ ବିଭାଗର ଜଣେ ପ୍ରଶାସକ ଭାବେ ଉପନିର୍ଦ୍ଦେଶକ, ଯୁଗ୍ମ ନିର୍ଦ୍ଦେଶକ, ଅତିରିକ୍ତ ନିର୍ଦ୍ଦେଶକ ଓ ଶେଷରେ ନିର୍ଦ୍ଦେଶକ ଭାବେ ବିଭାଗୀୟ ଶୀତତାପ ନିୟନ୍ତ୍ରିତ ଗାଡ଼ିରେ ବୁଲିବା ପରେ ଅବସର ନେବା ପରେ ଉତ୍କଳ ସମ୍ମିଳନୀ ପାଇଁ, ପରିଣତ ବୟସରେ ଟ୍ରକ୍‌ରେ ବସି ଡ୍ରାଇଭର, ହେଲ୍‌ପରଙ୍କ ସାଙ୍ଗରେ ରାତି ରାତି ବୁଲି ଟ୍ରକର ଆଗ ସିଟ୍‌ରେ ଆଉଜି ରାତି ବିତାଇବାକୁ ମୁଁ ନିଜେ ବ୍ୟବସ୍ଥା କରିଛି । କେହି ମୋତେ ଏ କାର୍ଯ୍ୟ କରିବାକୁ ବାଧ କରିନି, କିମ୍ବା ଏହା ନ କରିଥିଲେ ମୋର କିଛି କ୍ଷତି ହୋଇ ନଥାନ୍ତା । କେବଳ ବିଚ୍ଛିନ୍ନାଞ୍ଚଳର ପିଲାମାନେ ଯଥା ସମୟରେ ବହି ପଢ଼ିବାକୁ ପାଇ ନଥାନ୍ତେ । ସରକାରୀ ଲୋକଙ୍କ ଜରିଆରେ ଠିକ୍‌ଭାବେ ବହି ବାଣ୍ଟିବା କାର୍ଯ୍ୟ ଆଦୌ ହୋଇପାରନା । ଯଦି ହୁଏ, ତେବେ "ଘୋଡ଼ା ଛ ଟଙ୍କାକୁ ଦାନା ନ ଟଙ୍କା" ନ୍ୟାୟରେ ସରକାରୀ ଅନୁଦାନତକ କେବଳ ବିଭିନ୍ନ ଖର୍ଚ୍ଚରେ ନିଃଶେଷ ହୋଇଯିବାର ଆଶଙ୍କା । ଟ୍ରକ୍‌ରେ ବସି ବିଭିନ୍ନ ସ୍ଥାନମାନଙ୍କୁ ଯାଇ ଯେଉଁ ଲୋକମାନଙ୍କ ଜରିଆରେ ମୁଁ ଓଡ଼ିଆ ଶିକ୍ଷା ବିସ୍ତାର କାର୍ଯ୍ୟ କରୁଛି, ସେହିମାନଙ୍କୁ ବହି ବାଣ୍ଟିବାର ଦାୟିତ୍ୱ ଦେଇ ଆସିବି ବୋଲି ମୁଁ ଟ୍ରକ୍‌ରେ ବସି ଆସିଛି । ଏହାପରେ ଘରେ ବସି ଦୂରଭାଷ ଯୋଗେ ସେମାନେ କିପରି ବଣ୍ଟାବଣ୍ଟିକଲେ ସେକଥା ବୁଝିହେବ । ତା'ଛଡ଼ା ଏ ବାବଦ କେବଳ ଟ୍ରକ୍ ଭଡ଼ା ଖର୍ଚ୍ଚ ଛାଡ଼ିଦେଲେ ଜଣେ ବା ଦୁଇଜଣ ଲୋକଙ୍କର ଗସ୍ତଖର୍ଚ୍ଚ ବଞ୍ଚି ଯାଇପାରିବ । ଓଡ଼ିଆରେ କଥା ଅଛି "ଶସ୍ତାରୁ ଅବସ୍ଥା" । ଏବେ ମୋ ଅବସ୍ଥା କ'ଣ ହେଉଛି ଭବିଷ୍ୟତ କହିବ ।

ଷଢେଇକଳାରୁ ବାହାରି ଚାଇଁବସାରେ ପହଞ୍ଚିଲା ବେଳକୁ ରାତି ସାଢ଼େ ନଅଟା । ଗୋଟିଏ ହୋଟେଲରେ ଦିଖଣ୍ଡ ରୁଟି ଓ ତରକାରୀ ଟିକେ ଖାଇ ବାହାରିଲା ବେଳକୁ ଡ୍ରାଇଭର କହିଲା ସାର୍, ଚା'ଟିକେ ପିଇ ଦେଇ ଯିବାକୁ ପଡ଼ିବ । ବାଟରେ ଆଉ ଚା' ଦୋକାନ ନ ଥିବ । ତା ଛଡ଼ା ବିଡ଼ି କଠାଏ, ମଧ ନେଇଯିବି । ପଚାରିଲି, କିରେ ବିଡ଼ି କ'ଣ ନେବୁ ? ସେ କହିଲା, ସାର ମୋତେ ଆଜି ଟିକେ ମାଫ୍ କରିବେ । ଖାଇସାରି ଗାଡ଼ି ଚଳାଇଲା ବେଳେ ନିଦ ଲାଗିବାର ଭୟ ଅଛି । ମୋର ଆଉ କିଛି କହିବାର ନ ଥିଲା । ଚୁପ୍‌ଚାପ୍ ଟ୍ରକରେ ଯାଇ ବସି ପଡ଼ିଲି । ପ୍ରାୟ ଅଧଘଣ୍ଟାଏ ଯିବା ପରେ ଟ୍ରକର ପଛଟାୟାରଟା ଫାଟିଗଲା । ଡ୍ରାଇଭର ଗାଡ଼ି ରଖି ପଛକୁ ଧାଇଁଲା । ପଚାରିଲା ସାର୍ ଆଲୁଅ ଅଛି ? କିରେ ବାବୁ ଗାଡ଼ି ଚଳାଉଛ ସେଥିରେ ଟର୍ଚ୍ଚଲାଇଟ୍ ରଖିନା ? କହିଲା ଟର୍ଚ୍ଚଟା ଥିଲା ଘରେ ଛାଡ଼ିଆସିଛି । ମୋ ସୁଟ୍‌କେଶ ଖୋଲି ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି

ଟର୍ଚ୍ଚଟା ପାଇଲି । ଠିଆ ହୋଇ ଟର୍ଚ୍ଚ ଦେଖାଇଲି ଡ୍ରାଇଭର ହେଲ୍‌ପର୍ ମିଶି ଚକାଖୋଲି ଷ୍ଟେପିନ୍‌ଟା ନେଇ ଲଗାଇଲେ । ଜଗ୍‌ଟୋ ବାହାର କରିସାରି ଡ୍ରାଇଭର ଦେଖିଲା ଷ୍ଟେପିନ୍‌ରେ ମଧ୍ୟ ପବନ କମ୍ ଅଛି । କହିଲା, ସାର୍ ଗାଡ଼ି ଗଡ଼ାଇବା ଏବେ ବିପଦଜନକ । ଏଇଟା ବି ବାଟରେ ଫାଟିଯାଇ ପାରେ ।

ମୁଁ ମୋବାଇଲରେ ଚକ୍ରଧରପୁର ସରୋଜ କୁମାର ପ୍ରଧାନଙ୍କୁ ଫୋନ୍ କଲି । ସେତେବେଳକୁ ରାତି ଏଗାରଟା । ସରୋଜ କହିଲେ, ଆମେ ଆପଣଙ୍କୁ ଏଠି ଅପେକ୍ଷା କରି ବସିଛୁ । ଆପଣଙ୍କ ପାଇଁ ଖାଇବା ରଖାଯାଇଛି । ମୋର ଦୂରାବସ୍ଥା କଥା ଜଣାଇ ଦେଲି ।ସରୋଜ କହିଲେ ସେ ରାସ୍ତାଟାରେ ହାତୀ ବାହାରନ୍ତି । ଆପଣ ଚେଷ୍ଟା କରି ଚାଇଁବସା ଫେରି ଯାଆନ୍ତୁ । ରାତିରେ ହୋଟେଲରେ ରହିଯିବେ । ଭୋର୍ ସକାଳୁ ମୁଁ ଲୋକ ନେଇ ଟ୍ରକ ପାଖକୁ ଯାଉଛି । ଠିକ୍ ଭାବେ ଚକା ମରାମତ କରି ଏଠି ବହିପତ୍ର କାଢ଼ିନେଲେ ଟ୍ରକ୍‌ଟା ଫେରି ଯାଇ ପରିବ । ଆପଣ ଆମ ଘରେ ରହିଯିବେ । ଡ୍ରାଇଭରକୁ କହିଲି ଚାଇଁବସା ଆସୁଥିବା କୌଣସି କାର୍ ଅଟକାଇ ଦେଲେ ମୁଁ ଚାଇଁବସା ଯାଇ ରାତିରେ ରହିଯିବି । ତୁମେ ରାତି ସାରା ଟ୍ରକ୍ ଭିତରେ ରହ । ଘଞ୍ଜଙ୍ଗଲ ଜାଗା, ଜନ୍ତୁଜାନ୍ତାଙ୍କ ଭୟଅଛି । ଖୁବ୍ କମ୍‌ଗାଡ଼ି ସେ ରାସ୍ତାରେ ଆସୁଥାଏ । ତେବେ ଅଧଘଣ୍ଟାକ ଭିତରେ ଚାଇଁବସା ଯାଉଥିବା କାର୍‌ଟିଏ ଅଟକିଲା । ସେହି ଗାଡ଼ିର ଡ୍ରାଇଭର ମୋତେ ନେଇ ଚାଇଁବସାର ଏକ ହୋଟେଲ୍‌ରେ ଛାଡ଼ିଦେଲା । ହୋଟେଲ୍‌ର ଅବସ୍ଥା କେମିତି, ଦେଖିବାକୁ ଆଉ ଚାରା ନ ଥିଲା । ଗୋଟିଏ କୋଠରୀରେ ଥିବା ଖଟଉପରେ ମୋ ବିଛଣା ଚଦର ବିଛାଇ ପଡ଼ି ଯାଉଁ ଯାଉଁ ମୋ ଆଖିରେ ନିଦ ଘୋଟିଗଲା ।

ପରଦିନ ସକାଳ ସାଢ଼େ ନଅଟା ସୁଦ୍ଧା ସରୋଜବାବୁ ଆଉ ଦୁଇ ଜଣ ଯୁବକଙ୍କୁ ଆଣି ପହଞ୍ଚିଲେ । ସେମାନେ ଟାୟାର ଆଣି ମରାମତି ପାଇଁ ଦେଇ ଆସିଥିଲେ । ଡ୍ରାଇଭର ଓ ହେଲ୍‌ପର୍‌ଙ୍କ ପାଇଁ ଜଳଖିଆ ନେଇ ଦେଇଆସିଲେ । ଟାୟାର ଲଗାଇବା ପରେ ଦିନ ପ୍ରାୟ ସାଢ଼େ ଏଗାରଟା ସୁଦ୍ଧା ଟ୍ରକ ସେଠାରୁ ବାହାରି ସାଢ଼େ ଗୋଟାଏ ବେଳକୁ ଚକ୍ରଧରପୁର ଠାରେ ପହଞ୍ଚିଲା । ବହିପତ୍ର ରଖିସାରି ଆମେ ବାହାରିଲା ବେଳକୁ ସରୋଜବାବୁ ଓ ଅନ୍ୟମାନେ ମୋତେ ଅଟକାଇଲେ । କହିଲେ ଏବେ ଆପଣ ବିଶ୍ରାମ କରନ୍ତୁ । ଟ୍ରାକ୍‌ରେ ବସି ବହି ବାଣ୍ଟିବା କାର୍ଯ୍ୟ ଆପଣଙ୍କର ସରିଯାଇଛି । ଟ୍ରକ୍ ଫେରାଇଦେଇ ଆଜିରାତିଟା ରହିଗଲେ କାଲି ଆମର କେତେକ ଚାଟଶାଳି ଆପଣ ଦେଖାଦେଖି କରି ସନ୍ଧ୍ୟା ଟ୍ରେନ୍‌ରେ କଟକ ଫେରିଯିବେ । ଟ୍ରକ୍ ଡ୍ରାଇଭରକୁ ତାର ଭଡ଼ା ଦେଇ ଫେରାଇ ଦେଲି । ପୁଣି ଗୋଟିଏ ଦିନ ସେ ଟ୍ରକ୍‌ରେ ବସି ପାଞ୍ଚ ଶହ କିଲୋମିଟର ବାଟ ଯିବା କଷ୍ଟରୁ ମୋତେ ତ୍ରାହି ମିଳିଗଲା ।

ପ୍ରାୟ ପନ୍ଦରଦିନ ଛାଡ଼ି ପୁନରାୟ ବହିପତ୍ର ନେଇ ଖଇରପାଳ ଯାତ୍ରାକଲି । ଭୋର ସକାଳୁ ଜାମସେଦପୁର ଷ୍ଟେସନରେ ଓହ୍ଲାଇ ଗୋଟଏ ଅଟୋ ଭଡ଼ାକରି ପର୍ଶୁଡିହିରୁ ହାତା ଓ ସେଠାରୁ ଖାଇରପାଳ ଗଲି । ପର୍ଶୁଡିହି ଠାରୁ ହାତା ପର୍ଯ୍ୟନ୍ତ ପ୍ରତି ଅଧାକିଲୋମିଟର ଛାଡ଼ି ରାସ୍ତାସାରା ହିଡ଼ ତିଆରି ହୋଇ ଗାଡ଼ିମାନଙ୍କର ଗତିରୋଧ କରୁଥାଏ । କାର୍ ବା ବସ୍‌ରେ ଗଲେ ସେତେ ବାଧେନାହିଁ । ମାତ୍ର ଅଟୋରେ ବସି ସେ ପର୍ଯ୍ୟନ୍ତ ଗଲା ବେଳକୁ ପିଚା ଦରଜ ହୋଇଯାଏ । ବହୁତ କଲବଲ ହୋଇ ବସିବାକୁ ପଡ଼େ। ଖଇରପାଳରେ ଶ୍ରୀ ଜଗଦୀଶ ମହାପାତ୍ରଙ୍କ ଘର । ତାଙ୍କ ଘରେ ବହିପତ୍ର ରଖି ଯେଉଁସବୁ ସ୍ଥାନରେ ଚାଟଶାଳୀ ଖୋଲାଯିବ ସେଠାକୁ ଯିବା କଥା । ହାତାଠାରୁ ଖଇରପାଳକୁ ପିଚୁ ରାସ୍ତା ନାହିଁ । କେବଳ ନାଲି ମୋରମ୍ ରାସ୍ତା । ସାତକିଲୋମିଟର ଅଟୋରେ ଗଲେ ଦେହମୁଣ୍ଡ ନାଲି ଧୂଳିରେ ବୋଳି ହୋଇଯାଏ । ରାତିରେ ଜଗଦୀଶ ବାବୁଙ୍କ ଘରେ ରହିବାକୁ ହୁଏ । ଆଉ କେଉଁଠି ରହିବାର ସୁବିଧା ନାହିଁ । ତାଙ୍କ ସ୍ତ୍ରୀ ସାବିତ୍ରୀ ଦେବୀ ଅତି ଭଲ ମଣିଷ । ତାଙ୍କର ଦୁଇପୁଅ ତାଙ୍କ ସାନ ଭାଇଙ୍କ ପାଖରେ ରହି ରାଉରକେଲାରେ ପଢୁଥାନ୍ତି । ଜଗଦୀଶ ବାବୁ ଜଣେ ନେତୃସ୍ଥାନୀୟ ଲୋକ । ତାଙ୍କର ଚାକିରୀବାକିରୀ ନାହିଁ । ଅତ୍ୟନ୍ତ ଶାନ୍ତ, ଶିଷ୍ଟ, ମିଷ୍ଟଭାଷୀ ଓ ସରଳ ଲୋକ । ସେଥିଲାଗି ସେ ଅଞ୍ଚଳରେ ଲୋକେ ତାଙ୍କୁ ଖୁବ୍ ଭଲ ପାଆନ୍ତି ଓ ମାନନ୍ତି । ତାଙ୍କ ଜରିଆରେ ସେ ଅଞ୍ଚଳରେ ଓଡ଼ିଆ ଶିକ୍ଷା ବସ୍ତାର କରିବାକୁ ସ୍ଥିରକଲି ।

ଯେଉଁସବୁ ଗାଆଁରେ ଚାଟଶାଳି ବସାଇବାକୁ ସେ ପ୍ରସ୍ତାବ ଦେଲେ ସେ ସବୁ ଗ୍ରାମକୁ ରାସ୍ତାଘାଟ ନାହିଁ । କେବଳ ବାଟଚଲା ଗାଡ଼ଁଲି ରାସ୍ତା । ତାଙ୍କ ସ୍କୁଟରରେ ତେଲ ପକାଇ ସେ ମୋତେନେଇ ଗାଆଁକୁ ଗାଆଁ ଯାଆନ୍ତି । ବାଟରେ ଚାଷ ଜମି, ହିଡ଼ ଉପରେ ସ୍କୁଟର ଚଳାଇ ଯିବାକୁ ପଡ଼େ । ମୋର ଖୁବ୍ ଭୟ ହୁଏ । ପଡ଼ିଗଲେ ଯଦି ହାଡ଼ଗୋଡ଼ ଭାଙ୍ଗିଗଲା ତାହେଲେ ଏଠୁ ଟାଟା ପର୍ଯ୍ୟନ୍ତ ନଗଲେ ଚିକିତ୍ସାର ସୁବିଧା ନାହିଁ । ସ୍କୁଟରରେ ବସି ହିଡ଼ଉପରେ ଗଲାବେଳେ ଠାକୁରଙ୍କୁ ପ୍ରାର୍ଥନାକରେ ଶୁଭ କାମରେ କୌଣସି ଅଘଟଣ ନଘଟୁ । ଗାଆଁ ଲୋକଙ୍କୁ ଏକାଠି କରି ଓଡ଼ିଆ ଚାଟଶାଳୀ ଖୋଲିବାରେ ସମସ୍ତଙ୍କ ସହଯୋଗ ଲୋଡ଼ାଯାଏ ଓ ବର୍ଣ୍ଣବୋଧ ପଢ଼ାଇବାକୁ ଜଣେ ଯୋଗ୍ୟ ଶିକ୍ଷକ ବା ଶିକ୍ଷୟିତ୍ରୀ ବାଛିବାକୁ ପଡ଼େ । ଦିନରେ ଦୁଇ ଚାରିଟା ଜାଗାକୁ ଯାଇ ହୁଏ । ଦୁଇଟି ଗାଆଁକୁ ଯାଇ ଫେରିଆସି ମଧ୍ୟାହ୍ନ ଭୋଜନ ପରେ ପୁଣି ଉପରବେଳା ଆଉ ଦୁଇଟି ଗାଆଁକୁ ଯିବା ସମ୍ଭବପର ହୁଏ । ରାତିରେ ଫେରି ଜଗଦୀଶବାବୁଙ୍କ ଘରେ ମୁଁ ରହେ । ତାଙ୍କ ଦାଣ୍ଡ ଘରେ ଗୋଟିଏ ଶିଲିଂ ଫ୍ୟାନ୍ ଅଛି । ମାତ୍ର ଏ ଅଞ୍ଚଳରେ ଭୋଲ୍ଟେଜ ଖୁବ୍ କମ୍ । ତେଣୁ ପୁରା ଦମ୍‌ରେ ପଙ୍ଖା ଲଗାଇଲେ ମଧ୍ୟ ଦେହରେ ପବନ ବାଜେନାହିଁ । ଶହେ ପାୱାର ବଲ ମିଞ୍ଜିମିଞ୍ଜି ହୋଇ ଏମିତି ଜଳେ ଯେ ବହି ବା ଖାତାର ଅକ୍ଷର ଦିଶେନା । ଖରାଦିନେ

ସେ "ଅଂଚଳଟା" ପୂରା ତାତିଯାଏ । ତେଣୁ ରାତିରେ ତାଙ୍କଘରେ ରହିବା ଅସମ୍ଭବ ହୋଇପଡ଼େ ।

ସେଥର ଖରାଦିନେ ଭୀଷଣ ଗରମ ହେଉଥାଏ । ବିଛଣାରେ ପଡ଼ି ମୁଁ ଛଟପଟ ହେଉଥିବାର ଦେଖି ଜଗଦୀଶ ବାବୁ ଆସି କହିଲେ, ସାର୍ ଆମ ବାରିପଟେ ପବନ ଦେଉଛି । ଖଟ ପକାଇ ସେଠି ଶୋଇବେ କି ? ସେ ଯାଇ ବାରିଆଡ଼େ ଦୁଇଟା ଦଉଡ଼ିଆ ଖଟ ପକାଇ ଦେଲେ । ଉପରେ ଗୋଟିଏ ଗୋଟିଏ ସପ ପଡ଼ିଥାଏ । ମୁଁ ଯାଇ ଗଡ଼ିପଡ଼ିଲି । ଘର ଭିତରେ ପଙ୍ଖା ପବନ ତୁଳନାରେ ସେଠି ଟିକେ ଅଧିକ ପବନ ଦେଉଥାଏ । ଆଖିକୁ ମୋର ଦିନ ଆସିଗଲା । ପ୍ରାୟ ପନ୍ଦର ମିନିଟ୍ ଛାଡ଼ି ମଶା ବେଢ଼ିଗଲେ । ପବନ ମଧ ଥମି ଯାଇଥାଏ । ଦେଖିଲି ମୋ ପାଖ ଖଟିଆରେ ଜଗଦୀଶ ବାବୁ ଶୋଇ ଯାଇଛନ୍ତି । ମୁଁ ବସିପଡ଼ି ବିଞ୍ଚଣାରେ ବିଞ୍ଚି ହେଲି । ପାଖ ବୁଦା ମୂଳେ ଖସ୍ ଖସ୍ ଶବ୍ଦ ହେଲା । ମୁଁ ଟର୍ଚ୍ଚ ପକାଇ ଦେଖିଲି ଗୋଟାଏ ଷଣ୍ଢ ଠିଆ ହୋଇଛି । ତା ଉପରେ ଟର୍ଚ୍ଚ ଆଲୁଅ ପଡ଼ିବାରୁ ସେ ଟିକେ ପଛକୁ ଘୁଞ୍ଚିଗଲା । ଖଟିଆ ଉପରେ ମୁଁ ବସି ରହିଲି । ପ୍ରାୟ ଘଣ୍ଟାଏ ପରେ ଜଗଦୀଶ ବାବୁଙ୍କ ନିଦ ଭାଙ୍ଗିଲା । ସେ ପଚାରିଲେ ଆପଣ କ'ଣ ଶୋଇ ନାହାନ୍ତି ? କହିଲି ମଶା ଯୋଗୁଁ ନିଦ ହେଉନାହିଁ । ସେ ବଡ଼ ଦୁଃଖିତ ହେଲେ । କହିଲେ ମୋ ଘରେ ଆପଣ ବହୁତ କଷ୍ଟ ପାଉଚନ୍ତି । କହିଲି ଆପଣ ମୋତେ ରହିବାକୁ ଆଶ୍ରୟ ଦେଇଛନ୍ତି, ତାହା ମୋର ସୌଭାଗ୍ୟ । ପୁଣି ମୋ ପାଇଁ ଆପଣ ଘର ଭିତରେ ନ ଶୋଇ ବାରିଆଡ଼େ ଏ ବଣୁଆ ଜାଗାରେ ଶୋଇବାକୁ ବାଧ ହେଉଛନ୍ତି, ଏହା ମୋ ପକ୍ଷରେ ବଡ଼କଥା । ରାତି ଅଧ ବେଳକୁ ଟିକେ ଥଣ୍ଡା ପଡ଼ି ଆସିବା ପରେ ତାଙ୍କ ଘର ଭିତରକୁ ଆସି ମଶାରୀ ପକାଇ ଶୋଇଲି । ପରଦିନ ବୁଝିଲି ଯେ ଜଗଦୀଶ ବାବୁ ତାଙ୍କ ଖଟର ମଶରୀଟି ମୋତେ ଦେଇ ସେ ନିଜେ ରାତିସାରା ମଶା ହୁରୁଡ଼ାଇଲେ । ଏଣିକି ଖଇରପାଳ ଆସିଲା ବେଳେ ଘରୁ ମଶାରୀ ଆଣି ଆସିବାକୁ ହେଲା ।

ପରଦିନ ସକାଳୁ ତାଙ୍କ ସ୍କୁଟରରେ ବସି ପାଖ ଗାଆଁ ମାନଙ୍କୁ ଯାଇ ଓଡ଼ିଆ ଚାଟଶଳୀ ଖୋଲିବାକୁ ବୁଲିଲୁ । ପ୍ରାୟ ତିନିଚାରିଟା ଗାଆଁକୁ ଯାଇ ଲୋକମାନଙ୍କ ସହ କଥା ହେଲାପରେ ଶିକ୍ଷକ ବା ଶିକ୍ଷୟିତ୍ରୀ ଠିକ୍‌କରି କେଉଁଠି ଚାଟଶାଳୀ ହେବ ସେଥିପାଇଁ ସ୍ଥାନ ଠିକ୍‌କରି ଦିନ ପ୍ରାୟ ଦୁଇଟାସୁଦ୍ଧା ତାଙ୍କ ଘରକୁ ଫେରି ମଧ୍ୟାହ୍ନ ଭୋଜନ ସାରି ବିଶ୍ରାମ ନେଲା ପରେ ସନ୍ଧ୍ୟା ବେଳକୁ ଶିକ୍ଷକ ଶିକ୍ଷୟିତ୍ରୀମାନେ ଆସି ପହଞ୍ଚି ଯାଆନ୍ତି । ସେମାନଙ୍କୁ ବର୍ଣ୍ଣବୋଧ ବହି, ସିଲଟ, ବି.ବି.କ୍ଲଥ୍, ଚକ୍, ଡଷ୍ଟର ଓ ଅକ୍ଷରଚାର୍ଟ ଆଦି ଦେଇ କେମିତି ସେମାନେ ପଢ଼ାଇବେ ସେ ବିଷୟରେ ଆଲୋଚନା କରିବାକୁ ହୁଏ । ପରଦିନ ଜଗଦୀଶ ବାବୁ ତାଙ୍କ ସ୍କୁଟରରେ ଆଣି ମୋତେ ଟାଟା ଯିବାକୁ ବସ୍‌ରେ ବସାଇ ଦେଇ ଯାଆନ୍ତି ।

ଖଇରପାଳ ଅଞ୍ଚଳରେ ଓଡ଼ିଆ ଚାଟଶଳୀ ଖୋଲିବାକୁ ଜଗଦୀଶ ବାବୁଙ୍କର ସାହାଯ୍ୟ ଭୁଲିବାର ନୁହେଁ । ସେ ଅତ୍ୟନ୍ତ ସରଳ ଓ ଆଦର୍ଶବାଦୀ ମଣିଷ । ସେ ମଧ୍ୟ ଥିଲେ ଜଣେ କବି । ଉଭୟ ଓଡ଼ିଆ ଓ ଇଂରାଜିରେ ଅନେକ କବିତା ସେ ଲେଖିଛନ୍ତି । ମାତ୍ର ସେସବୁ ଛପାଇବାକୁ ତାଙ୍କର ସମ୍ବଳ ନ ଥିଲା । ଖଇରପାଳରେ ରହି ସେ ତାଙ୍କର ସୀମିତ ଜମିବାଡ଼ି ଭାଗବଖରା ଦେଇ ଚଳନ୍ତି । ମାତ୍ର ତାଙ୍କ ସାନଭାଇ ରାଉରକେଲାରେ ଚାକିରୀ କରୁଥିବାରୁ ଜଗଦୀଶ ବାବୁଙ୍କ ପୁଅ ଦୁହେଁ ସେଠାରେ ରହି ପାଠ ପଢ଼ନ୍ତି । ଜଗଦୀଶ ବାବୁଙ୍କ ଅମାୟିକ ବ୍ୟବହାର ଯୋଗୁଁ ସେ ଅଞ୍ଚଳରେ ସମସ୍ତେ ତାଙ୍କୁ ଭଲ ପାଆନ୍ତି । ସେ ଯେଉଁ ଗାଆଁକୁ ଯାଆନ୍ତି, ସେଠାରେ ଲୋକେ ତାଙ୍କୁ ସମ୍ମାନ ଦିଅନ୍ତି ଓ ଏ ଅଞ୍ଚଳର ଜଣେ ମୁଖିଆବ୍ୟକ୍ତି ଭାବେ ତାଙ୍କ କଥାର ଗୁରୁତ୍ୱ ରକ୍ଷାକରନ୍ତି । ତେଣୁ ଖଇରପାଳ ହାଇସ୍କୁଲ ପରିଚାଳନା ସଭାରେ ସେ ଥିଲେ ସଭାପତି । ଗୋଟିଏ ବର୍ଷ ଭିତରେ ତାଙ୍କ ସହଯୋଗରେ ସେ ଅଞ୍ଚଳରେ ପଚିଶଟି ଓଡ଼ିଆ ଚାଟଶାଳି ଖୋଲାଯାଇଥିଲା । ଅନୁଧ୍ୟାନ କରାଯାଇ ତନ୍ମଧ୍ୟରୁ ଚାରି ଛଅଟି ଚାଟଶାଳିକୁ ବନ୍ଦ କରି ଦେବାକୁ ମୁଁ ଓ ଜଗଦୀଶ ବାବୁ ନିଷ୍ପତ୍ତି ନେଲୁ । ଶିକ୍ଷକ ଶିକ୍ଷୟିତ୍ରୀମାନେ ଯେଉଁଠି ପ୍ରତିଦିନ ଯଥା ସମୟରେ ପାଠ ପଢ଼ାଉଥିଲେ ସେଠାରେ ଛାତ୍ରଛାତ୍ରୀମାନଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇଲା । ସେପରି ଚାଟଶଳୀଗୁଡ଼ିକ ଚାଲୁ ରଖାଗଲା । ଏହିପରି ତିନିବର୍ଷ ଧରି ଜଗଦୀଶବାବୁଙ୍କ ସାହାଯ୍ୟରେ ଖଇରପାଳ ଅଞ୍ଚଳରେ ଓଡ଼ିଶା ଶିକ୍ଷା କାର୍ଯ୍ୟ ଚଳାଇବା ପରେ ଅକସ୍ମାତ୍ ଖବର ମିଳିଲା ଯେ ହୃଦ୍‌ଘାତରେ ତାଙ୍କର ଅକାଳ ମୃତ୍ୟୁ ହୋଇଛି । ଅନେକ ଦୁଃଖରେ ତାଙ୍କ ଏକାଦଶାହରେ ମୁଁ ଯାଇ ଯୋଗ ଦେଇ ପରିବାରକୁ ସାନ୍ତ୍ୱନା ଦେଇ ଆସିଲି ।

ଇତି ମଧ୍ୟରେ ଜାମସେଦପୁରସ୍ଥ ସିଦକାହ୍ନୁ ଆଦିବାସୀ ଓଡ଼ିଆ ବିଦ୍ୟାଳୟରେ ଅଧିକ ଶ୍ରେଣୀଗୃହ ତିଆରି କରିବାକୁ ସରକାରୀ ଅନୁଦାନରୁ ଏକ ଲକ୍ଷ ଟଙ୍କା ଦିଆଯାଇଥିଲା । ପୂର୍ବରୁ ଥିବା ଦାଣ୍ଡିଘର ଛାତ ଉପରକୁ ଶିଡ଼ି ତିଆରି ହୋଇଯିବା ପରେ ଏ ଟଙ୍କାରେ ଇଟା କିଣା ହୋଇ କାନ୍ଥ ତିଆରି କରାଗଲା ଓ ଛାତ ପକାଇବାକୁ ବିଦ୍ୟାଳୟର ପରିଚାଳନା କମିଟି ସଭ୍ୟମାନେ ମୋତେ ବାରମ୍ବାର ଆନୁରୋଧ କଲେ । ସେଠିକି ଯାଇ ସେମାନଙ୍କ ସହିତ ଆଲୋଚନା କଲି । ଉତ୍କଳ ସମ୍ମିଳନୀ ଜରିଆରେ ଆଉ ଟଙ୍କା ଦେଇ ହେବନାହିଁ ବୋଲି ଜଣାଇଦେଇ କହିଲି, ଆପଣମାନେ ସ୍ଥାନୀୟ ଲୋକଙ୍କଠାରୁ ଚାନ୍ଦା ସଂଗ୍ରହ କରନ୍ତୁ । ଚାରିବଖରା ଶ୍ରେଣୀ ଗୃହ ଉପରେ ଛାତ ପକାଇବା ସହଜସାଧ୍ୟ ହେବ ନାହିଁ । ବରଂ ଏଠାକାର ଟାଟା କମ୍ପାନୀ ପାଇପ ତିଆରି କାରଖାନାର ମୁଖ୍ୟଙ୍କୁ ଭେଟି ରିହାତି ଦାମ୍‌ରେ କିଛି ପାଇପ୍ ଯୋଗାଡ଼ କଲେ ଆଜବେଷ୍ଟସ ଛାତ କରିବାକୁ ଟ୍ରସ୍ ତିଆରି ହୋଇପାରିବ । ବୁଝିଲି ଟ୍ରସ୍ ତିଆରି କରି ଶୀଘ୍ର ଲଗାଇ ଦେଇହେବ । ସେଥିଲାଗି

ଲୋକମାନଙ୍କଠାରୁ ଆଜବେଷ୍ଟସ୍ କିଣିବାପାଇଁ ସାହାଯ୍ୟ ଆଣିପାରିଲେ ଖୁବ୍‌ଶୀଘ୍ର ଉପରମହଲାରେ ଆମକୁ ଚାରିବଖରା ଘର ମିଳିପାରିବ । ସଂହଭୂମି ଅଞ୍ଚଳଟା ଝଡ଼ବାତ୍ୟା ଦିଗରୁ ନିରାପଦ । ତେଣୁ ଆଜବେଷ୍ଟସ୍ ଘର କରିବା ସହଜ ଓ ଶୀଘ୍ର ହୋଇ ଏହା ଆମର ଆବଶ୍ୟକତା ମେଣ୍ଟାଇ ପାରିବ । ବିଦ୍ୟାଳୟ ପରିଚାଳନା କମିଟି ସଭ୍ୟମାନେ ମୋ କଥାରେ ରାଜିହେଲେ ଓ ବିଦ୍ୟାଳୟରେ ପଢ଼ୁଥିବା ଆଦିବାସୀ ଛାତ୍ରଛାତ୍ରୀଙ୍କ ଅଭିଭାବକମାନଙ୍କୁ ଡକାଇ ଏକସଭାରେ ସେମାନଙ୍କଠାରୁ ଏ ଦିଗରେ ସମ୍ମତି ହାସଲ କରାଗଲା । ଇସ୍ପାତ୍ ମହାନଗରୀରେ ଲୁହା ପାଇପ୍ ଓ ଟ୍ରସ୍ କରିବା ପାଇଁ ଆବଶ୍ୟକ ସରଞ୍ଜାମର ଅଭାବ ନ ଥିଲା । କେବଳ ଆଦିବାସୀ ଭାଇମାନଙ୍କ ଭିତରେ ଏକ ଜାଗରଣ ସୃଷ୍ଟି କରିବାର ଆବଶ୍ୟକତା ଥିଲା । ତାହା କରାଯିବା ଫଳରେ ସେମାନେ ଲାଗିପଡ଼ି ଦୁଇ ତିନିମାସ ଭିତରେ ଟ୍ରସ୍ ଲଗାଇସାରି ଚାନ୍ଦା କରି ଆଜବେଷ୍ଟସ ଲଗାଇ ଦେଲେ । ଗୋଲମୁରୀ ଉତ୍କଳ ସମାଜର ରବିନ୍ଦ୍ର କୁମାର ମିଶ୍ରଙ୍କୁ ନେଇ ସିଦକାହ୍ନୁ ବିଦ୍ୟାଳୟକୁ ଗଲି । କଥାହେଲା ଯେ ଏବେ ଏଠାରେ ହାଇସ୍କୁଲ ଖୋଲାଯିବ । ବିଦ୍ୟାଳୟ କର୍ତ୍ତୃପକ୍ଷ ଏଥିଲାଗି ଉତ୍କଳ ସମ୍ମିଳନୀ ପକ୍ଷରୁ ତିନିଜଣ ଶିକ୍ଷକ ଦେବାକୁ ଅନୁରୋଧ କଲେ ପର୍ବରୁ ସେଠାରେ ମିନେସୋଟା ଓଡ଼ିଆ ସମାଜ ପକ୍ଷରୁ ଦୁଇଜଣ ଶିକ୍ଷକ ଦିଆଯାଇଥିଲା । ଏବେ ଆଉ ତିନିଜଣ ଶିକ୍ଷକଙ୍କୁ ଦେଇ ଝାଡ଼ଖଣ୍ଡରେ ଏକ ଆଦିବାସୀ ଓଡ଼ିଆ ଉଚ୍ଚବିଦ୍ୟାଳୟ ଖୋଲିବା ସମ୍ଭବ ହୋଇ ପାରିଲା ।

ଓଡ଼ିଶାର ଭଞ୍ଜନଗରରୁ ଷାଠିଏ ବର୍ଷ ତଳେ କାଶୀନାଥ ଗୌଡ଼ ଆସିଥିଲେ ଜାମସେଦପୁର । ସେତେବେଳକୁ ତାଙ୍କୁ ମାତ୍ର ପନ୍ଦର ବର୍ଷ ବୟସ । ଟାଟା କମ୍ପାନୀ ଅଧୀନରେ ସେ ଚାକିରୀ କଲେ । ସାକ୍‌ଚିରେ ଥିବା ଉତ୍କଳ ଆସୋସିଏସନ୍‌ର ସେ ଜଣେ ବହୁ ପୁରାତନ ସଭ୍ୟ । ରବିବାବୁ ତାଙ୍କୁ ମୋ ସହିତ ପରିଚିତ କରାଇ ଦେଲେ । ଝାଡ଼ଖଣ୍ଡରେ ଓଡ଼ିଆ ଭାଷାର ପ୍ରସାର ଲାଗି ମୁଁ ତାଙ୍କର ସହଯୋଗ କାମନା କଲି । ସେ କହିଲେ ମୋତେ ଆପଣ ଯେଉଁ କାମ ଦେବେ ମୁଁ ନିଷ୍ଠାର ସହିତ କରିବି । କହିଲି, ଆପଣ ତ ଜାମସେଦପୁର ଓ ତାର ପାରିପାର୍ଶ୍ୱିକ ଅଞ୍ଚଳ ବିଷୟରେ ଭଲଭାବେ ଜାଣନ୍ତି । ତେଣୁ ମୋ ସହିତ ସବୁ ଆଡ଼େ ବୁଲି ଆବଶ୍ୟକ ଅନୁଯାୟୀ ବିଭିନ୍ନ ସ୍ଥାନରେ ଓଡ଼ିଆ ବିଦ୍ୟାଳୟ ସ୍ଥାପନ କରିବାରେ ସାହାଯ୍ୟ କରନ୍ତୁ । ୭୫ ବର୍ଷ ବୟସରେ କାଶୀବାବୁ ନିଜ ମୋଟର ସାଇକେଲରେ ସବୁ ଆଡ଼େ ବୁଲନ୍ତି । ଏଣିକି ତାଙ୍କର ମଟର ସାଇକେଲରେ ବସି ମୁଁ ବିଭିନ୍ନ ଆଡ଼େ ବୁଲି ଓଡ଼ିଆ ଶିକ୍ଷା ପ୍ରସାର ଦିଗରେ କାର୍ଯ୍ୟ କଲି । ଫଳରେ ମୋତେ ଟାକ୍‌ସି ବା ଅଟୋଭଡ଼ାରୁ କ୍ଷାନ୍ତି ମିଳିଲା । ତାଙ୍କ ସହିତ ଆସିଙ୍ଗି ଯାଇ ସେଠାକାର ବାସିନ୍ଦାଙ୍କ ସହିତ ଆଲୋଚନା କରି ଆସିଙ୍ଗି ଓଡ଼ିଆ ମଧ୍ୟ ବିଦ୍ୟାଳୟରେ ହାଇସ୍କୁଲ କରିବାକୁ

ଚେଷ୍ଟା କରାଗଲା । ସେହି ବିଦ୍ୟାଳୟ ପରିସରସ୍ଥ ପୁରୁଣା ଘରକୁ ଉତ୍କଳ ସମ୍ମଳନୀ ଆର୍ଥିକ ସାହାଯ୍ୟରେ ମରାମତ କରି ହାଇସ୍କୁଲ ଆରମ୍ଭ କରାଗଲା । ଅଷ୍ଟମ ଓ ନବମ ଶ୍ରେଣୀ ଛାତ୍ରଛାତ୍ରୀଙ୍କ ପାଇଁ ଉତ୍କଳ ସମ୍ମିଳନୀ ପକ୍ଷରୁ ବେଞ୍ଚ ଡେସ୍କ ଓ ଶିକ୍ଷକମାନଙ୍କ ପାଇଁ ଚୌକୀ ଟେବୁଲ୍‌, ଯୋଗାଇ ଦିଆଗଲା ।

ଇତି ମଧ୍ୟରେ ଚକ୍ରଧରପୁର ନିକଟସ୍ଥ ନିଶ୍ଚିନ୍ତପୁର ଓଡ଼ିଆ ମଧ୍ୟ ବିଦ୍ୟାଳୟର ଛାତସବୁ ମରାମତ ହୋଇଗଲା । ଏ ଖବର ପାଇ ମୁଁ ଚକ୍ରଧରପୁର ଯାଇ ସରୋଜବାବୁଙ୍କୁ ସାଙ୍ଗରେ ଧରି ନିଶ୍ଚିନ୍ତପୁର ଗଲି । ଗିରି ପରିବାରର ସାନଭାଇ ରାମରୁଦ୍ର ଭାରତୀୟ ସୈନ୍ୟ ବାହିନୀରୁ ଛୁଟିନେଇ ଆସିଥାଏ । ମୁଁ ଯାଇ ବିଦ୍ୟାଳୟର ଘର ଗୁଡ଼ିକ ବୁଲି ଦେଖିଲି । ସେ ଘରର ନଷ୍ଟ ପ୍ରାୟ ଛାତକୁ ଠିକ୍ ଭାବେ ମରାମତ କରାଯାଇଥାଏ । ସମସ୍ତ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ସହିତ ରାମରୁଦ୍ର ଓ ତା'ର ଦୁଇ ଭାଇ ଏହି କାର୍ଯ୍ୟ ଲାଗି ମୋର ଭୂୟସୀ ପ୍ରଶଂସା କଲେ । କହିଲି, ଏଥିରେ ମୋର କିଛି ଭୂମିକା ନାହିଁ । ଯାହାକିଛି ହେଲା, ସେସବୁ ଉତ୍କଳ ସମ୍ମିଳନୀ ଏବଂ ଓଡ଼ିଶା ସରକାରଙ୍କ ପାଇଁ । ରାମରୁଦ୍ର କହିଲା ସାର୍ ଦୂରରେ ଥାଇ ମୁଁ ଆପଣଙ୍କ କଥା ଶୁଣିଥିଲି । ଆଜି ଆପଣଙ୍କ ଦର୍ଶନ ପାଇଲି । ଆପଣ ଏଠି ପହଞ୍ଚି ଏ ବିଦ୍ୟାଳୟକୁ ଧ୍ୱଂସ ମୁଖରୁ ଉଦ୍ଧାର କଲେ । କହିଲି, ଯାହାକିଛି ମୁଁ କରିଛି ଉତ୍କଳ ସମ୍ମିଳନୀ ପକ୍ଷରୁ କରିଛି । ରାମରୁଦ୍ର କହିଲା, ସାର ମୁଁ ତ ଉତ୍କଳ ସମ୍ମିଳନୀକୁ ଦେଖିନାହିଁ । ଆପଣଙ୍କୁ ଦେଖୁଛି । ତେଣୁ ଆପଣଙ୍କ ଜରିଆରେ ଆମେ ଉତ୍କଳ ସମ୍ମିଳନୀ ପ୍ରତି ଆମର କୃତଜ୍ଞତା ଜଣାଉଛୁ ।

କହିଲି, ଛାତ ମରାମତି ପରେ ଏଠାରେ ନବମ ଓ ଦଶମ ଶ୍ରେଣୀ ଖୋଲି ଏହି ବିଦ୍ୟାଳୟକୁ ଏକ ଓଡ଼ିଆ ଉଚ୍ଚ ବିଦ୍ୟାଳୟରେ ପରିଣତ କରିବାକୁ ମୁଁ ପ୍ରସ୍ତାବ ଦେଇଥିଲି । ଏବେ ସେ ବିଷୟରେ ନିଷ୍ପତ୍ତି ନେବାକୁ ହେବ । ସେହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିବା ରାମରୁଦ୍ରର ବଡ଼ ଭାଇ କହିଲେ, ଆଉ ଦୁଇଟି ଶ୍ରେଣୀ ଖୋଲିଲେ ଆମର ଆଉ ତିନିଜଣ ଶିକ୍ଷକ ଦରକାର ହେବେ । ସେଥିପାଇଁ ଆମର ସମ୍ବଳ ନାହିଁ । କହିଲି, ଉତ୍କଳ ସମ୍ମିଳନୀ ପକ୍ଷରୁ ତିନିଜଣ ଶିକ୍ଷକଙ୍କ ଦରମା ଦିଆଯିବ। ଆସନ୍ତା ଜୁଲାଇ ମାସରେ ନବମ ଓ ଦଶମ ଶ୍ରେଣୀ ଖୋଲିବାର ବ୍ୟବସ୍ଥା କରନ୍ତୁ । ରାମରୁଦ୍ର ଓ ତାର ଅନ୍ୟ ଦୁଇ ଭାଇ ଅତ୍ୟନ୍ତ ଖୁସିରେ କାନ୍ଦି ପକାଇଲେ । ବାଷ୍ପରୁଦ୍ଧ କଣ୍ଠରେ ରାମରୁଦ୍ର କହିଲା, ସାର୍ ଆମର ସ୍ୱପ୍ନ ସାର୍ଥକ ହେଲା । ଏଣିକି ଏହି ବିଦ୍ୟାଳୟ ଏକ ଉଚ୍ଚକୋଟୀର ବିଦ୍ୟାଳୟ ଭାବେ ଗଢ଼ିଉଠିବ । ଆମର ପାର୍ଶ୍ୱବର୍ତ୍ତୀ ଆଦିବାସୀ ଗ୍ରାମମାନଙ୍କରୁ ବହୁ ଛାତ୍ରଛାତ୍ରୀ ଓଡ଼ିଆ ପଢ଼ିବାକୁ ଇଚ୍ଛୁକ ଅଛନ୍ତି । ତେଣୁ ଏ ବିଦ୍ୟାଳୟରେ ଛାତ୍ରଛାତ୍ରୀ ସଂଖ୍ୟା ବଢ଼ିଯିବ । ଆଉ ଅଧିକ ଘର ଦରକାର ହୋଇପାରେ । କହିଲି, ଏଇ ହତା ଭିତରେ ବହୁ ପୁରୁଣା ସରକାରୀ ଘର

ନଷ୍ଟ ପ୍ରାୟ ହୋଇ ପଡ଼ିରହିଛି । ଆବଶ୍ୟକ ସ୍ଥଳେ ସେସବୁ ଘର ମରାମତ କରି ଅଳ୍ପ ଖର୍ଚ୍ଚରେ ଏହି ବିଦ୍ୟାଳୟର ଶ୍ରୀ ବୃଦ୍ଧି କରାଯାଇ ପାରିବ ।

ନିଶ୍ଚିନ୍ତପୁରରୁ କେରା ଯାଇ ଦେଖିଲି, ଓଡ଼ିଆ ହାଇସ୍କୁଲ ପାଇଁ ଘର ତିଆରି ହୋଇ ଛାତ କେବଳ ବାକି ଅଛି । ସେଠାକାର ସ୍ଥାନୀୟ ଲୋକଙ୍କ ସହିତ ଆଲୋଚନା କରି ଆଜବେଷ୍ଟସ୍ ଛାତ କରିବାର ସିଦ୍ଧାନ୍ତ ହେଲା । କାଠ ଓ ଆଜବେଷ୍ଟସ ପାଇଁ ଉତ୍କଳ ସମ୍ମିଳନୀ ପକ୍ଷରୁ ଟଙ୍କା ଦିଆଯିବ ବୋଲି କଥାହେଲା । କଟକ ଫେରିବା ପରେ ସରୋଜ ବାବୁଙ୍କ ପାଖକୁ ସେ ବାବଦ ଟଙ୍କା ପଠାଇଦେଲି । ସେ ନିଜେ ଯାଇ କାଠ ଓ ଆଜବେଷ୍ଟସ୍ କିଣି ଏହି ବିଦ୍ୟାଳୟର ଛାତ ପକାଇବାରେ ସାହାଯ୍ୟ କଲେ । ଯଥା ଶୀଘ୍ର ସେଠାରେ ଅଷ୍ଟମ ଓ ନବମ ଦୁଇ ଶ୍ରେଣୀ ଖୋଲାଗଲା ।

୧୯୯୮ ମସିହାରେ ପ୍ରଥମ କରି ମୁଁ ଚକ୍ରଧରପୁର ଆସିବା ସମୟରେ ଦେଖିଥିଲି; ଦେଓଗାଁରେ ଦୁଇ ବଖରା ଚାଳଘର ଭିତରେ ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରଛାତ୍ରୀମାନେ ଖୁନ୍ଦାଖୁନ୍ଦି ହୋଇ ପଢୁଥିଲେ । ଓଡ଼ିଶା ସରକାରଙ୍କ ଅନୁଦାନରୁ ଏହି ଚାଳଘର ଭାଙ୍ଗି ପକ୍କାଘରଟିଏ କରିବା ପାଇଁ ଟ.୫୦,୦୦୦ ଦେବାକୁ ଗ୍ରାମ୍ୟ ସଭାରେ ଘୋଷଣା କରି ଏତିକି ଟଙ୍କାରେ ଘରଟି ସମ୍ପୂର୍ଣ୍ଣ ହେବା ଅସମ୍ଭବ ବୋଲି ଗ୍ରାମବାସୀମାନଙ୍କର ସହଯୋଗରେ ଭଲ ଘରଟିଏ କରିବାକୁ ଅନୁରୋଧ କରିଥିଲି । ଛଅମାସ ମଧ୍ୟରେ ସେହି ଚାଳଘର ଭାଙ୍ଗି ସେଠାରେ ତିନିବଖରା ପକ୍କାଘର ଗଢ଼ା ହୋଇଗଲା । ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପିଲାମାନଙ୍କୁ ପଢ଼ାଇବାକୁ ସାତଜଣ ଶିକ୍ଷକ ଶିକ୍ଷୟିତ୍ରୀ ଆବଶ୍ୟକ । ତେଣୁ ଉତ୍କଳ ସମ୍ମିଳନୀ ପକ୍ଷରୁ ତିନିଜଣ ଶିକ୍ଷକ ଦେବାକୁ ଗ୍ରାମବାସୀ ଅନୁରୋଧ କଲେ । ସେତକ ସାହାଯ୍ୟ ମିଳିଲେ ସେମାନେ ଚାନ୍ଦାଭେଦା କରି ଉପର ମହଲା ତିଆରି କରି ପ୍ରତି ଶ୍ରେଣୀ ପାଇଁ ଗୋଟିଏ କୋଠରୀ ବ୍ୟବସ୍ଥା କରିବେବୋଲି କଥା ଦେଲେ । ତଦନୁଯାୟୀ ତିନିଜଣ ଶିକ୍ଷକଙ୍କୁ ଉତ୍କଳ ସମ୍ମିଳନୀ ପକ୍ଷରୁ ଦରମା ଦିଆଗଲା ।

ଏହି ଗ୍ରାମରେ ଗୋଟିଏ ଓଡ଼ିଆ ପାଠାଗାର କରିବା ପାଇଁ ବହୁ ଲୋକ ପ୍ରସ୍ତାବ ଦେଲେ । କହିଲି, ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ପକ୍ଷରୁ ଝାଡ଼ଖଣ୍ଡରେ ପାଞ୍ଚଟି ପାଠାଗାର ଖୋଲିବା ପାଇଁ ଅନୁଦାନ ମିଳିଥିଲା । ତାହାର ଉପଯୋଗ କରାଯାଇ ପାଞ୍ଚଟି ଓଡ଼ିଆ ବିଦ୍ୟାଳୟ ପରିସରରେ ପାଠାଗାରମାନ ଖୋଲାଯାଇଛି । ଆଉ ଏବେ ଏ ବାବଦ ଅନୁଦାନ ଆଶା କରିବା ନିରର୍ଥକ । ପରେ କେବେ ଅନୁଦାନ ମିଳିଲେ ଏଠାରେ ପାଠାଗାରଟିଏ କରିବା । ମାତ୍ର ଗ୍ରାମର ଯୁବଗୋଷ୍ଠୀ ମଧ୍ୟରେ ଏଥିଲାଗି ଉତ୍ସାହ ଦେଖି ମୁଁ ନିଜ ତରଫରୁ ଗୋଟିଏ ଆଲମୀରା ଓ ପାଞ୍ଚ ଶହ ବହି ଯୋଗାଇ ଦେବି ବୋଲି ସମ୍ମତି ହେଲି । ତଦନୁଯାୟୀ କଟକ ଆସି ବିନୋଦବିହାରୀସ୍ଥ ପୁସ୍ତକ ପ୍ରକାଶନ ସଂସ୍ଥା ମାନଙ୍କରୁ

ବହିପତ୍ର ସଂଗ୍ରହକଲି । ମୋ ନିଜ ପାଖରେ ପ୍ରାୟ ଦେଢଶହ ଓଡ଼ିଆ ବହି ଥିଲା । କଟକରୁ ପାଞ୍ଚଶହରୁ ଉର୍ଦ୍ଧ୍ୱ ବହି ସହିତ ଗୋଟିଏ ଷ୍ଟିଲ ଆଲମିରା ଚକ୍ରଧରପୁରରୁ କିଣି ଦେଇ ସରୋଜବାବୁଙ୍କୁ ଧରାଇଦେଲି । ମଝିରେ ମଝିରେ ଓଡ଼ିଆ ବହି, କିଛି ସଂଗ୍ରହ କରି ସେହି ପାଠାଗାରକୁ ଦିଆ ହୋଇଛି । ପରବର୍ତ୍ତୀ ସମୟରେ ସେହି ପାଠାଗାର ନାମ ସେମାନେ "ଗୁରୁପ୍ରସାଦ ପାଠାଗର" ରଖିଲେ ଏବଂ ଓଡ଼ିଶା ବିଧାନ ସଭାର ମାନ୍ୟବର ବାଚସ୍ପତି ମହେଶ୍ୱର ମହାନ୍ତିଙ୍କ ଝାଡ଼ଖଣ୍ଡ ଗସ୍ତ ସମୟରେ ତାଙ୍କ ହାତରେ ସେହି ପାଠାଗାରକୁ ଉନ୍ମୋଚିତ କରାଗଲା ।

ଝାଡ଼ଖଣ୍ଡରୁ ଫେରି କଟକରେ ପହଞ୍ଚିବା ପରେ ପ୍ରାୟ ଚାରି ପାଞ୍ଚ ଦିନ ଛାଡ଼ି ଷଢେିକଳାରୁ ହଳଧର ଦାସ ଆସି ମୋ ବାଦାମବାଡ଼ି ବାସଗୃହରେ ପହଞ୍ଚିଲେ । ସେ ଷଢେିକଳାର କେତେଗୁଡ଼ିଏ ହିନ୍ଦି ବିଦ୍ୟାଳୟରେ ଓଡ଼ିଆ ଶିକ୍ଷକ ଶିକ୍ଷୟିତ୍ରୀ ମାନଙ୍କର ଆବଶ୍ୟକତା ବିଷୟରେ ଆଲୋଚନା କରିବସିଲେ । ଏସବୁ ବିଦ୍ୟାଳୟ ଓଡ଼ିଆ ବସ୍ତିମାନଙ୍କରେ ରହିଛି । ପୂର୍ବରୁ ସେସବୁ ବସ୍ତିରେ ଥିବା ଓଡ଼ିଆ ବିଦ୍ୟାଳୟଗୁଡ଼ିକୁ ବିହାର ସରକାର କୌଶଳକ୍ରମେ ହିନ୍ଦି ବିଦ୍ୟାଳୟରେ ପରିଣତ କରାଇଥିଲେ । ଏବେ ଉତ୍କଳସମ୍ମିଳନୀ ପକ୍ଷରୁ ସେ ଅଞ୍ଚଳରେ ଓଡ଼ିଆଶିକ୍ଷା ପ୍ରସାରଣ ପାଇଁ କାର୍ଯ୍ୟ ଆରମ୍ଭ ହେବା ଯୋଗୁଁ ଲୋକମାନଙ୍କ ମଧ୍ୟରେ ଏ ଦିଗରେ ସଚେତନତା ସୃଷ୍ଟି ହୋଇଛି । ତେଣୁ କେତେକ ବିଦ୍ୟାଳୟରେ ଉତ୍କଳ ସମ୍ମିଳନୀ ପକ୍ଷରୁ ଶିକ୍ଷକ ବା ଶିକ୍ଷୟିତ୍ରୀ ଓଡ଼ିଆ ପଢ଼ାଇବା ଆରମ୍ଭକଲେ, ପିଲାମାନଙ୍କର ନିଜ ମାତୃଭାଷା ବିଷୟରେ ଧାରଣା ସୃଷ୍ଟି ହୋଇପାରିବ ବୋଲି ସେ କହିଲେ । ସଂପୃକ୍ତ ବିଦ୍ୟାଳୟ ମାନଙ୍କର ଏକ ତାଲିକା ମୋତେ ଦେଇ ସେଠାରେ ପଢ଼ାଇବାକୁ ଇଚ୍ଛୁକ କେତେକ ଓଡ଼ିଆ ଝିଅଙ୍କର ଦରଖାସ୍ତ ମଧ୍ୟ ହଳଧର ମୋତେ ଧରାଇ ଦେଲେ । କହିଲି, ଆସନ୍ତା ସପ୍ତାହରେ ମୁଁ ଷଢେିକଳା ଯାଇ ଏହାର ବ୍ୟବସ୍ଥା କରିବି ।

ହଳଧରବାବୁଙ୍କଠାରୁ ଏ ଖବର ପାଇଁ ମୋତେ ଖୁବ୍ ଖୁସି ଲାଗିଲା । ଯେଉଁ ଷଢେିକଳା-ଖରସୁଆଁ ଲାଗି କଲେଜରେ ପଢୁଥିଲା ବେଳେ ଆମେ ହରତାଳ ଆନ୍ଦୋଳନ କରି ସପ୍ତାହ ସପ୍ତାହ ଧରି ପଢ଼ାବନ୍ଦ କରିଥିଲୁ ସେହି ରାଜ୍ୟ ଦୁଇଟିକୁ ବିହାର ସରକାର ମାଡ଼ି ବସିଲେ । ଓଡ଼ିଶାବାସୀଙ୍କର ଆଶା ଆକାଂକ୍ଷା ସବୁ ବୁଦ୍‌ବୁଦ୍ ପରି ପାଣିରେ ମିଳାଇ ଗଲା । ଲକ୍ଷଲକ୍ଷ ଓଡ଼ିଆ ଛାତ୍ରଙ୍କୁ ଲାଠି ଗୁଳି ଓ ଲୁହବୁହା ଗ୍ୟାସର ଶୀକାର ହେବାକୁ ପଡ଼ିଥିଲା । ମାତ୍ର ପଚାଶବର୍ଷ ନ ପୁରୁଣୁ ବିହାର ସରକାର କେବଳ ଷଢେିକଳା-ଖରସୁଆଁ କାହିଁକି ସେ ରାଜ୍ୟର, ରାଞ୍ଚି, ଧାନବାଦ., ବୋକାରୋ, ହଜାରିବାଗ, ଦେଓଘର, ଗଢୱାଲ, ସାହେବଗଞ୍ଜ ଠାରୁ ଆରମ୍ଭ କରି ପୂର୍ବ ସିଂହଭୂମ, ପଶ୍ଚିମ ସିଂହଭୂମ ଓ ସିମ୍‌ଡେଗା

ପର୍ଯ୍ୟନ୍ତ ବାଇଶିଗୋଟି ଜିଲ୍ଲାକୁ ହାତମୁଠାରେ ରଖି ପାରିଲେ ନାହିଁ । ସେସବୁ ଜିଲାକୁ ନେଇ ସୃଷ୍ଟି ହେଲା ନୂତନ ଝାଡ଼ଖଣ୍ଡ ରାଜ୍ୟ । କୁଆଡ଼େ ଗଲେ ସେ ରାଜେନ୍ଦ୍ର ପ୍ରସାଦ ? କୁଆଡ଼େ ଗଲେ ଅଖଣ୍ଡ କ୍ଷମତାସମ୍ପନ୍ନ ଜବାହାରଲାଲ୍ ନେହେରୁ ? କୁଆଡ଼େ ଗଲେ ଶ୍ରୀକୃଷ୍ଣ ସିହ୍ନା ? ସେଇମାନଙ୍କ ଷଡ଼ଯନ୍ତ୍ର ଯୋଗୁଁ ତତ୍‌କାଳୀନ ସିଂହଭୂମି ଅଞ୍ଚଳର ଦୁଇ ଓଡ଼ିଆ ରାଜ୍ୟକୁ ଉକ୍ତ ରାଜ୍ୟର ରାଜାପ୍ରଜାମାନଙ୍କର ଇଚ୍ଛା ବିରୁଦ୍ଧରେ ଓଡ଼ିଶାରୁ ଛଡ଼ାଇନେଇ ବିହାର ସହିତ ମିଶାଇ ଦିଆଯାଇଥିଲା । ସେ ସମୟରେ କୁଚକ୍ରୀ ନେତାମାନଙ୍କର ନିରୀହ ଓଡ଼ିଆ ମାନଙ୍କ ପ୍ରତି ଏ ପ୍ରକାର ଅନ୍ୟାୟକୁ ଈଶ୍ୱର ଅଧିକଦିନ ସହିଲେନାହିଁ । କାଳର କରାଳ ଚକ୍ରରେ ପଡ଼ି ସବୁକିଛି ଓଲଟପାଲଟ ହୋଇଗଲା । ଓଡ଼ିଆମାନେ ଝାଡ଼ଖଣ୍ଡ ରାଜ୍ୟର ମୂଳ ଅଧିବାସୀ ବୋଲି ସାବ୍ୟସ୍ତ ହେଲେ ।

ଗତ ୨୦୦୫-୦୬ ମସିହାରେ ଏହି ନବଗଠିତ ଝାଡ଼ଖଣ୍ଡ ରାଜ୍ୟରେ ବିହାରୀବିଦ୍ୱେଷନୀତି ପ୍ରବଳ ହୋଇ ଉଠିଥିଲା । ବିହାରୀମାନେ ଝାଡ଼ଖଣ୍ଡ ଛାଡ଼ି ବାହାରି ଯାଅ ବୋଲି ଝାଡ଼ଖଣ୍ଡର ଆଦିବାସୀ ନେତାମାନେ ଧ୍ୱନି ଦେଉଥିଲେ । ସେହି ନୂତନରାଜ୍ୟ ଝାଡ଼ଖଣ୍ଡରେ ଏବେ ଓଡ଼ିଆମାନଙ୍କ ସମ୍ମାନ ଯଥେଷ୍ଟ ବୃଦ୍ଧି ପାଇଛି । ଓଡ଼ିଆମାନେ ସେ ରାଜ୍ୟର ମୂଳଅଧିବାସୀ ଭାବେ ସ୍ୱୀକୃତ ହୋଇଛନ୍ତି । ବିଗତ ଷାଠିଏ ବର୍ଷ ଭିତରେ ସବୁକିଛି ବଦଳିଯାଇଛି । ସେଥିଲାଗି ଏଠାକାର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷାର ପ୍ରଚଳନ ସମୟୋପଯୋଗୀ ମନେହେଲା । ହଳଧର ବାବୁଙ୍କଠାରୁ କାଗଜପତ୍ର ପାଇବା ପରେ ଆଉ ବିଳମ୍ୱ ନକରି ମୁଁ ପୁଣି ଝାଡ଼ଖଣ୍ଡ ବାହାରିଗଲି । ଚକ୍ରଧରପୁରରେ ପହଞ୍ଚି ସରୋଜ ପ୍ରଧାନଙ୍କୁ ସାଙ୍ଗରେ ନେଇ ଖରସୁଆଁ ଦେଇ ଷଢେିକଳା ଗଲି । ଖରସୁଆଁରେ ସୁମନ୍ତ ମହାନ୍ତି ସେଠାକାର ଓଡ଼ିଆ ଚାଟଶାଳୀ କଥା ବୁଝୁଥିଲେ । ଆମ ଯିବାକଥା ଜାଣି ସେ ଅପେକ୍ଷା କରି ରହିଥିଲେ । ଆମେ ପହଞ୍ଚିବା ପରେ କହିଲେ ସାର୍, ଖରସୁଆଁ ବ୍ଲକ୍‌ର ଶିକ୍ଷା ସମ୍ପ୍ରସାରଣ ଅଧିକାରୀ ଆପଣଙ୍କ ସହିତ ଆଲୋଚନା କରବାକୁ ଚାହାଁନ୍ତି । ଆମେ ଯାଇ ତାଙ୍କୁ ଦେଖାକଲୁ । ସେ କହିଲେ, ମୁଖ୍ୟମନ୍ତ୍ରୀ ଅର୍ଜୁନମୁଣ୍ଡା ମୋତେ ଡାକି ଆପଣଙ୍କ ସହିତ ସହଯୋଗ କରିବାକୁ କହିଛନ୍ତି । ମୁଁ ତାଙ୍କୁ ଧନ୍ୟବାଦ ଜଣାଇଲି । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ମଧ୍ୟ ଏଥିଲାଗି ଧନ୍ୟବାଦ ଜଣାଇ ଦେବାକୁ କହିଲି । ସେ କହିଲେ, ମୋ ଜରିଆରେ କାହିଁକି ମୁଖ୍ୟମନ୍ତ୍ରୀଙ୍କୁ ଧନ୍ୟବାଦ ଜଣାଉଛନ୍ତି ? ତାଙ୍କ ଲୋକ ପରା ଆପଣଙ୍କର ଖୋଦ୍ ଲୋକ । ମୁଁ ବୁଝି ପାରିଲି ନାହିଁ । ସୁମନ୍ତ ବାବୁ ମୁରୁକି ମୁରୁକି ହସୁଥାଏ । ସରୋଜ କହିଲେ, ଏଇ ପରା ମୁଖ୍ୟମନ୍ତ୍ରୀଙ୍କ ଲୋକ । ତାଙ୍କ ଜରିଆରେ ମୁଖ୍ୟମନ୍ତ୍ରୀ ଏଠାକାର ଓଡ଼ିଆଶିକ୍ଷା କଥା ଜାଣୁଛନ୍ତି । କହିଲି, ତୁମେ ହୁଅ ବା ସୁମନ୍ତ ହେଉ, ତୁମମାନଙ୍କୁ ମୁଁ ବା କି ଧନ୍ୟବାଦ ଦେବି ? ତୁମେସବୁ ଝାଡ଼ଖଣ୍ଡର ଉଦୀୟମାନ ଓଡ଼ିଆନେତା । ଏଠାକାର ଓଡ଼ିଆମାନଙ୍କ ଭବିଷ୍ୟତ ତୁମ୍ଭମାନଙ୍କ ହାତରେ ।

ସୁମନ୍ତ କହିଲେ, ଏଣିକି ଆମେ ଆଉ ଚାଟଶାଳୀ ରଖିବାନାହିଁ । ଓଡ଼ିଆ ଗ୍ରାମମାନଙ୍କରେ ଥିବା ହିନ୍ଦି ପ୍ରାଥମିକ ବିଦ୍ୟାଳୟମାନଙ୍କରେ ସେଠାକାର ଚାଟଶାଳିରେ ଓଡ଼ିଆ ପଢ଼ାଉଥିବା ଶିକ୍ଷକ ଶିକ୍ଷୟିତ୍ରୀ ଏଣିକି ଓଡ଼ିଆ ପଢ଼ାଇବେ । ଖରସୁଆଁରେ ଥିବା ଓଡ଼ିଆ ଚାଟଶାଳିର ଶିକ୍ଷକ ଶିକ୍ଷୟିତ୍ରୀ ମାନଙ୍କୁ ସେହି ଗ୍ରାମ ବା ପାଖ ଗ୍ରାମରେ ଥିବା ହିନ୍ଦି ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପଢ଼ାଇବାର ଦାୟୀତ୍ୱ ଦେବାକୁ ଏକତାଲିକା ପ୍ରସ୍ତୁତ ହେଲା । ଶିକ୍ଷା ସମ୍ପ୍ରସାରଣ ଅଧିକାରୀ କହିଲେ, ଏଣିକି ସେମାନେ ସରକାରୀ ଶିକ୍ଷକମାନଙ୍କ ପରି ବିଦ୍ୟାଳୟର ପ୍ରଧାନ ଶିକ୍ଷକକଙ୍କ ଅଧୀନରେ ରହି ଓଡ଼ିଆଶିକ୍ଷକ ଭାବେ କାର୍ଯ୍ୟ କରିବେ । ଏ ସମ୍ପର୍କରେ ଏକ ଲିଖିତ ବିବରଣୀ ଉପସ୍ଥିତ ସଦସ୍ୟମାନଙ୍କ ଦ୍ୱାରା ସ୍ୱାକ୍ଷରିତ ହେଲା । ସେହି ବିବରଣୀର ଏକ ନକଲ ଧରି ଆମେ ଷଢେଇକଳା ଗଲୁ ।

ଷଢେଇକଳାରେ ହଳଧରବାବୁଙ୍କ ସହିତ ଅନ୍ୟମାନେ ଆମକୁ ଅପେକ୍ଷା କରିଥିଲେ । ଖରସୁଆଁରୁ ନେଇଥିବା ଆମର ଓଡ଼ିଆ ଶିକ୍ଷା ସମ୍ବନ୍ଧୀୟ ଆଲୋଚନା ବିବରଣୀ ପଢ଼ି ସମସ୍ତେ ଖୁସି ହେଲେ । ସେଠାରେ ଚାଲିଥିବା ଓଡ଼ିଆ ଚାଟଶାଳିଗୁଡ଼ିକର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ କେଉଁସବୁ ପ୍ରାଥମିକ ବିଦ୍ୟାଳୟରେ ନିଯୁକ୍ତ କରାଯିବ ତାର ଏକ ତାଲିକା ପ୍ରସ୍ତୁତହେଲା । ସେସବୁ ତାଲିକାଧରି ଆମେ ଷଢେଇକଳା ବ୍ଲକ୍‌ର ବିଡ଼ିଓ ଏବଂ ଷଢେଇକଳା-ଖରସୁଆଁ ଜିଲ୍ଲାର ଶିକ୍ଷା ଅଧିକାରୀଙ୍କୁ ଭେଟି ଖରସୁଆଁ ପରି ଷଢେଇକଳା ଓ ରାଜନଗର ବ୍ଲକ୍‌ରେ ଥିବା ହିନ୍ଦି ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷକ/ଶିକ୍ଷୟିତ୍ରୀ ରଖାଇବାର ବ୍ୟବସ୍ଥା କରାଇଲୁ । ପଶ୍ଚିମ ସିଂହଭୂମ ଓ ପୂର୍ବ ସିଂହଭୂମ ଜିଲାମାନଙ୍କରେ ଏହି ପ୍ରଣାଳୀରେ ହିନ୍ଦି ପ୍ରାଥମିକ ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଶିକ୍ଷକ ଶିକ୍ଷୟିତ୍ରୀ ରଖାଇବାକୁ ଶ୍ରୀ ସରୋଜ କୁମାର ପ୍ରଧାନ ଓ କାଶୀନାଥ ଗୌଡ଼ଙ୍କୁ ଦାୟିତ୍ୱ ଦିଆଗଲା ।

## ଉତ୍କଳ ସମ୍ମିଳନୀ ଶତବାର୍ଷିକୀ ପାଳନ

୧୯୦୩ ମସିହା ଡିସେମ୍ବର ମାସ ଶେଷ ଦୁଇଦିନ ଧରି ଅନୁଷ୍ଠିତ ଏକ ଅଧିବେଶନରେ କଟକ ସହରର ଇଦ୍‌ଗା ପଡ଼ିଆରେ ଜନ୍ମ ନେଇଥିଲା "ଉତ୍କଳ ସମ୍ମିଳନୀ" । ଏହାର ସୃଷ୍ଟିକର୍ତ୍ତା ଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସ । ନଅଙ୍କ ଦୁର୍ଭିକ୍ଷରେ ମୃତପ୍ରାୟ ଓଡ଼ିଆଜାତିକୁ ପୁନର୍ଜାଗରିତ କରି ଓଡ଼ିଆମାନଙ୍କ ଲାଗି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଲାଗି ସେ ତତ୍‌କାଳୀନ ଭାରତର ବ୍ରିଟିଶ ପ୍ରଶାସନିକ ଅଧିକାରୀଙ୍କୁ ପ୍ରଭାବିତ କରି ସୃଷ୍ଟି କରିଥିଲେ ଓଡ଼ିଶା ପ୍ରଦେଶ । ନିଜ ଜୀବନର ସମସ୍ତ ସୁଖ ସମ୍ଭୋଗକୁ ଜଳାଞ୍ଜଳି ଦେଇ ସେ ଓଡ଼ିଆ ଜାତିକୁ ବିଶ୍ୱ ଦରବାରରେ ପରିଚିତ କରାଇବାକୁ ଆଜୀବନ

ପ୍ରୟାସ କରିଥିଲେ । ତାଙ୍କର ତ୍ୟାଗ ଅଧ୍ୟବସାୟ ଓ ବିଚକ୍ଷଣ ବୁଦ୍ଧି ବଳରେ ୧୯୩୬ ମସିହାରେ ଏ ଦେଶର ଦଶମ ପ୍ରଦେଶ ଭାବେ ସୃଷ୍ଟି ହୋଇଥିଲା "ଓଡ଼ିଶା" । ଅବଶ୍ୟ ଉତ୍କଳ ସମ୍ମିଳନୀ ଗଠନ ଲାଗି ତତ୍‌କାଳୀନ ଶତାଧିକ ଓଡ଼ିଆ ନେତୃବୃନ୍ଦ ସେମାନଙ୍କର ବହୁମୂଲ୍ୟ ସମୟ, ଶାରୀରିକଶ୍ରମ ଅର୍ଥବଳ ଓ ଚିନ୍ତାଶକ୍ତି ଉପଯୋଗ କରି ଦେଶମିଶ୍ରଣ ଆନ୍ଦୋଳନକୁ ସଫଳ କରିଥିଲେ । ଏହି ପ୍ରାତଃ ସ୍ମରଣୀୟ ବ୍ୟକ୍ତିମାନଙ୍କ ମଧ୍ୟରେ ପାରଳାମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି, ଉତ୍କଳମଣି ଗୋପବନ୍ଧୁ, ରାଜା ବାସୁଦେବ ସୁଢ଼ଳଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ଫକୀରମୋହନ ସେନାପତି, ମଦନ ମୋହନ ସିଂହ, ଗୌରୀଶଙ୍କର ରାୟ, ନୀଳମଣି ବିଦ୍ୟାରତ୍ନ, ବାଗ୍ମୀ ବିଶ୍ୱନାଥ କର, ଶ୍ୟାମସୁନ୍ଦର ରାଜଗୁରୁ, ଶ୍ରୀନିବାସ ରାଜାମଣି, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ, ଖଲିକୋଟ ରାଜା ହରିହର ମର୍ଦ୍ଦରାଜ, ଲୋକନାଥ ବିଦ୍ୟାଧର, ଜୟପୁର ରାଜା ବିକ୍ରମ ଦେବ ବର୍ମା, ଚନ୍ଦ୍ରଚୂଡ଼ାମଣି ଜଗଦେବ, ଗୁନ୍ନେୟା ଶାସ୍ତ୍ରୀ, ହରିହର ଦାସ, କୃଷ୍ଣଚନ୍ଦ୍ର ସାହାଣୀ, ବିଶ୍ୱନାଥ କର, କବିଗଙ୍ଗାଧର ମେହେର, ଚନ୍ଦ୍ରଶେଖର ବେହେରା, ଜଗବନ୍ଧୁ ସିଂ, ଗୋକୁଳାନନ୍ଦ ଚୌଧୁରୀ, ବୈକୁଣ୍ଠ ନାଥ ଦେ, ବିଚିତ୍ରାନନ୍ଦ ଦାସ, ଭୁବନାନାନ୍ଦ ଦାସ, ଗଦାଧର ବିଦ୍ୟାଭୂଷଣ, ପର୍ଶୁରାମ ପାତ୍ର, ଶ୍ରୀବତ୍ସ ପଣ୍ଡା, ଯୋଗେଶ ଚନ୍ଦ୍ର ରାୟବିଦ୍ୟାନିଧି ବ୍ରଜସୁନ୍ଦର ଦାସ, ରାଧାନାଥ ବର୍ମା, ଅଭିରାମ ଭଞ୍ଜ, ରାଧାନାଥ ରାୟ, ପଣ୍ଡିତ ଚନ୍ଦ୍ରଶେଖର ସିଂହସାମନ୍ତ, ପଣ୍ଡିତ ନୀଳକଣ୍ଠ ଦାସ ଓ ଜୟକୃଷ୍ଣ ଚ୍ୟାଉ ପଟ୍ଟନାୟକ ଆଦିଙ୍କର ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଶା ପ୍ରଦେଶ ଗଠନ ହେବା ବେଳକୁ ଉପରୋକ୍ତ ନେତୃବୃନ୍ଦଙ୍କ ମଧ୍ୟରୁ ଅଧିକାଂଶ ବ୍ୟକ୍ତି ଇହଧାମ ତ୍ୟାଗ କରି ସାରିଥିଲେ । ଯେତିକି ବା ବଞ୍ଚି ରହିଥିଲେ, ସେମାନେ ସମ୍ମିଳନୀର ଲକ୍ଷ୍ୟ ହାସଲ ହେବାପରେ ବୟସାଧିକ୍ୟ ଯୋଗୁଁ ନୀରବ ରହି ନବଗଠିତ ଓଡ଼ିଶା ପ୍ରଦେଶର ଉନ୍ନତି କାମନା କରୁଥିଲେ । ମାତ୍ର ତତ୍‌କାଳୀନ ଭାରତୀୟ ଜାତୀୟ କଂଗ୍ରେସର ତୁଙ୍ଗ ନେତୃତ୍ୱ ଇଂରେଜ ସରକାରଙ୍କ ଓଡ଼ିଶା ଗଠନ ନିଷ୍ପତ୍ତିକୁ ଭିନ୍ନ ଦୃଷ୍ଟିରେ ଦେଖି ଉତ୍କଳ ସମ୍ମିଳନୀକୁ ଇଂରେଜମାନଙ୍କ ଗୋଡ଼ାଣିଆ ଭାବେ ଚିତ୍ରଣ କରିବାକୁ ପଛେଇ ନଥିଲେ ।

୧୯୬୧ ମସିହାରେ ଉତ୍କଳ ସମ୍ମିଳନୀର ରୌପ୍ୟ ଜୁବୁଲି ପାଳିତ ହେବା କଥା । ମାତ୍ର ସେ ବର୍ଷ ଓଡ଼ିଶାର କୌଣସି ସ୍ଥାନରେ ବାର୍ଷିକ ଅଧିବେଶନ ମଧ୍ୟ ହୋଇ ନ ଥିଲା । ଓଡ଼ିଶା ରାଜ୍ୟର ତତ୍‌କାଳୀନ କଂଗ୍ରେସ ନେତୃବୃନ୍ଦ ଶ୍ରୀ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ଦାଶ, ନିତ୍ୟାନନ୍ଦ କାନୁନ୍‌ଗୋ ବା ଯେଉଁମାନେ ଉତ୍କଳ ସମ୍ମିଳନୀକୁ ଏକ ବ୍ରିଟିଶ ସମର୍ଥକ ଅନୁଷ୍ଠାନ ଭାବେ ଗ୍ରହଣ କରିନେଇଥିଲେ; ସେମାନେ ଭୁଲି

ଯାଇଥିଲେ ଯେ ଉତ୍କଳ ସମ୍ମିଳନୀ ଯେଉଁ ଓଡ଼ିଶା ରାଜ୍ୟ ସୃଷ୍ଟି କରିଛି, ସେହି ରାଜ୍ୟର ରାଜସିଂହାସନରେ ବସି ସେମାନେ ଶାସନ ଚଳାଇଛନ୍ତି । ଉତ୍କଳ ସମ୍ମିଳନୀ ପ୍ରତିଷ୍ଠାଦିବସ କଥା ଦୂରେ ଥାଉ, ସେମାନେ ଓଡ଼ିଶା ପ୍ରଦେଶର ଜନ୍ମ ଦିବସ ଭାବେ ଅପ୍ରେଲ ପହିଲା ତାରିଖକୁ ମଧ୍ୟ ଗୁରୁତ୍ୱ ଦେଉ ନଥିଲେ । ବରଂ ଏହି ଦିନଟି ବୋକା ଦିବସ (ଏପ୍ରିଲଫୁଲ୍ ଡେ) ଭାବେ ପାଳିତ ହେଉଥିଲା । ଏହାର ଅର୍ଥ ହୁଏତ ଏହା ହୋଇପାରେ ଯେ ଉତ୍କଳ ସମ୍ମିଳନୀ ଦ୍ୱାରା ସୃଷ୍ଟ ଓଡ଼ିଶା ପ୍ରଦେଶର ଶାସନଗାଦିକୁ ବିରୋଧି କଂଗ୍ରେସ ଦଳ ଜବର ଦଖଲକରି ଏହି ଅନୁଷ୍ଠାନ ତଥା ସମଗ୍ର ଓଡ଼ିଆ ଜାତିକୁ ବୋକା ବନେଇ ପାରିଛନ୍ତି । ୧୯୩୬ ମସିହାଠାରୁ ୧୯୭୪ ମସିହା ପର୍ଯ୍ୟନ୍ତ ଦୀର୍ଘ ୩୮ ବର୍ଷ କାଳ ଉତ୍କଳ ଦିବସ ବା ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ଦିବସ ପାଳନ ନ ହେବା ଫଳରେ ଓଡ଼ିଆ ମାନଙ୍କର ଜାତିଗତ ସ୍ୱାଭିମାନ କ୍ଷୁର୍ଣ୍ଣ ହେଲା । ଓଡ଼ିଶାର ତତ୍‌କାଳୀନ ନେତୃବୃନ୍ଦ ଦିଲ୍ଲୀ ଦରବାରରେ ଆଧିପତ୍ୟ ବିସ୍ତାର କରିଥିବା କଂଗ୍ରେସ ପ୍ରଶାସକମାନଙ୍କ ପାଖରେ ଅଧସ୍ତନ କର୍ମଚାରୀ ଭଳି ନିଜତ୍ୱ ହରାଇବା ଓଡ଼ିଆ ଜାତି ପକ୍ଷରେ ଅତ୍ୟନ୍ତ ଦୁର୍ବିସହ ଥିଲା । ନିଜର ଜାତୀୟତା, ମାତୃଭାଷା, ସଂସ୍କୃତି ବା ସ୍ୱାଭିମାନ ପ୍ରତି ଧ୍ୟାନ ନ ଦେଇ କେବଳ ଦଳୀୟ ଶୃଙ୍ଖଳାରେ ବାନ୍ଧି ହୋଇ ରହିବା ଓଡ଼ିଆତ୍ୱର ପରିପନ୍ଥୀ ଥିଲା । ଓଡ଼ିଶାର ଶାସନ କ୍ଷମତା ଆକ୍ତିଆର କରିବା ପାଇଁ କେନ୍ଦ୍ରରେ ଅଣଓଡ଼ିଆ କଂଗ୍ରେସ ନେତାମାନଙ୍କ ପ୍ରତି ଆମ ନେତୃବୃନ୍ଦ ଯେତିକି କୃତଜ୍ଞ ଥିଲେ, ଯେଉଁ ଉତ୍କଳ ସମ୍ମିଳନୀ ସେମାନଙ୍କ ଲାଗି ଶାସନଗାଦି ସୃଷ୍ଟି କଲା, ସେହି ଅନୁଷ୍ଠାନ ପ୍ରତି ଅକୃତଜ୍ଞତା ସେମାନଙ୍କର ଅମାନବିକତା ତଥା ପ୍ରବଳ ସ୍ୱାର୍ଥପରତାର ସୂଚନା ଦେଉଥିଲା । ଓଡ଼ିଶା ଗଠନର ବହୁବର୍ଷ ପରେ ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶମାନ ସୃଷ୍ଟି ହେଲା ଏବଂ ସେସବୁ ରାଜ୍ୟର ଲୋକମାନେ ସେମାନଙ୍କ ରାଜ୍ୟ ସୃଷ୍ଟି ଲାଗି ଯେଉଁମାନେ ଦାୟୀ, ସେହି ନେତୃବୃନ୍ଦଙ୍କ ପ୍ରତି ହୃଦୟରେ ଶ୍ରଦ୍ଧା ଓ ଭକ୍ତି ବିଜଡ଼ିତ କୃତଜ୍ଞତାଭାବ ବିଶିଷ୍ଟ ହୋଇଥିବାରୁ ଓଡ଼ିଆ ଲୋକଙ୍କ ତୁଳନାରେ ଯଥେଷ୍ଟ ଅଧିକ ସ୍ୱାଭିମାନୀ ଭାବେ ବାରି ହୋଇପଡ଼ନ୍ତି । ଉଦାହରଣ ସ୍ୱରୂପ, ଆନ୍ଧ୍ର, ହରିୟାଣା, ହିମାଚଳ ପ୍ରଦେଶ, କେରଳ, କର୍ଣ୍ଣାଟକ ଆଦି ରାଜ୍ୟର ଜନସାଧାରଣ ।

୧୯୫୬ ମସିହାରେ ଷଢେଇକଳା-ଖରସୁଆଁ ରାଜ୍ୟ ଦୁଇଟିକୁ ଚଞ୍ଚକତା କରି ଓଡ଼ିଶାଠାରୁ ଛଡ଼ାଇନେବା ଫଳରେ ରାଜ୍ୟରେ ଯେଉଁ ବ୍ୟାପକ ଛାତ୍ର ଆନ୍ଦୋଳନ ହୋଇଥିଲା ସେଥିରେ ନେତୃତ୍ୱ ନେଇଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରେ ଶ୍ରୀମତୀ ନନ୍ଦିନୀ ଶତପଥି ଥିଲେ ଜଣେ ନେତ୍ରୀ । ପରବର୍ତ୍ତୀ କାଳରେ ସେ କଂଗ୍ରେସ ରାଜନୀତିରେ ଅଂଶଗ୍ରହଣ କରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାପରେ ପ୍ରଥମକରି ଉତ୍କଳଦିବସ ପାଳନକରିବା ଆରମ୍ଭ କରିଥିଲେ । ମାତ୍ର ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ଦିବସ ଭାବେ ଡିସେମ୍ବର ୩୦/୩୧

ତାରିଖ ଦୁଇ ଦିନ ପାଳନ କରିବା ଦିଗରେ କାହାର ଭ୍ରୂକ୍ଷେପ ନ ଥିଲା କିମ୍ବା ବର୍ତ୍ତମାନ ସୁଦ୍ଧା ମଧ୍ୟ ନାହିଁ ।

୧୯୨୦ ମସିହାରେ ଉତ୍କଳମଣି ଗୋପବନ୍ଧୁ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନରେ ସ୍ୱାଧୀନତା ଆନ୍ଦୋଳନକୁ ସମ୍ମିଳନୀର ମୁଖ୍ୟ କାର୍ଯ୍ୟକ୍ରମ ଭାବେ ଘୋଷଣା କରିବାପରେ ଉତ୍କଳଗୌରବ ମଧୁସୂଦନ ଏହି ସମ୍ମିଳନୀଠାରୁ ଦୂରେଇ ରହିଥିଲେ । ତାଙ୍କର ଭୟହେଲା ଯେ ଏହାଦ୍ୱାରା ଇଂରେଜ ସରକାର ଏହି ସମ୍ମିଳନୀର ଦାବୀପ୍ରତି ଆଉ ଗୁରୁତ୍ୱ ଦେବେନାହିଁ । ଫଳରେ ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ସୃଷ୍ଟି କରିବାର ଦାବୀ ବ୍ରିଟିଶ ପ୍ରଶାସନର ନାଲିଫିତା ତଳେ ଚାପି ହୋଇ ରହିଯିବା ଓ ମଧୁବାବୁଙ୍କ ସାରା ଜୀବନର ତପସ୍ୟା ପଣ୍ଡ ହୋଇଯିବା ଆଶଙ୍କାରେ ସେ ଚିନ୍ତାଗ୍ରସ୍ତ ହୋଇ ପଡ଼ିଥିଲେ ।

ତେଣୁ ସେ ୧୯୨୯ ମସିହାରେ ଭାରତରେ ଶାସନସଂସ୍କାର ଲାଗି ଆସିଥିବା ସାଇମନ କମିଶନକୁ ସ୍ୱାଗତ ଜଣାଇ ଓଡ଼ିଶା ଗଠନ ଦାବୀ ଜଣାଇବା ପାଇଁ ଓଡ଼ିଶା ଲିବରେସନ୍ ଲିଗ୍ ନାମରେ ଏକ ଦଳ ସୃଷ୍ଟିକରି ତାଙ୍କର କୋଡ଼ିଏ ଜଣ ସହକର୍ମୀଙ୍କୁ ନିଜ ଖର୍ଚ୍ଚରେ ପାଟନା ପଠାଇ ଥିଲେ । ମଧୁବାବୁ ଉତ୍କଳ ସମ୍ମିଳନୀ ଛାଡ଼ିବା ଦିନରୁ ଏହି ସମ୍ମିଳନୀର ସମସ୍ତ ବାର୍ଷିକ ଅଧିବେଶନ ମୁଖ୍ୟତଃ ଦକ୍ଷିଣ ଓଡ଼ିଶାରେ ଅନୁଷ୍ଠିତ ହେଉଥିଲା । ବିଶେଷତଃ ବ୍ରହ୍ମପୁର, ମଞ୍ଜୁଷା, ଜଳନ୍ତର, ଜୟପୁର, ବା ମହେନ୍ଦ୍ରଗିରି ଅଞ୍ଚଳରେ ଅଧିବେଶନ ହେବା ଫଳରେ କଟକ, ପୁରୀ, ବାଲେଶ୍ୱର ବା ସମ୍ବଲପୁର ଅଧିବାସୀ ଏହି ଜାତୀୟ ମିଳନମଞ୍ଚ ବିଷୟରେ ଅବୋଧ ରହୁଥିଲେ । ୧୯୬୯ ମସିହା ଠାରୁ "ସମାଜ" ସମ୍ପାଦକ ବାବୁଜୀ ରାଧାନାଥ ରଥ ଫେବୃୟାରୀ ୧୯୯୮ରେ ତାଙ୍କର ତିରୋଧାନ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର ସଭାପତି ରହିଲେ । ତାଙ୍କ ନିର୍ଦ୍ଦେଶରେ ପ୍ରତିବର୍ଷ ଉତ୍କଳଦିବସ ବିଶେଷାଙ୍କ "ସମାଜ"ରେ ପ୍ରକାଶିତ ହେଉଥିଲା । ଏହି ବିଶେଷାଙ୍କରେ ଓଡ଼ିଶାପ୍ରଦେଶ ସୃଷ୍ଟିଲାଗି ଉତ୍କଳ ସମ୍ମିଳନୀର ଭୂମିକା ବିଷୟରେ ଲେଖାମାନ ପ୍ରକାଶ ପାଇବା ଯୋଗୁଁ ସମାଜପାଠକ ଓଡ଼ିଶାର ସାକ୍ଷର ଜନସାଧାରଣ ଉତ୍କଳସମ୍ମିଳନୀ ବିଷୟରେ ଜାଣିବାକୁ ପାଇଲେ । ଏହି ଦୀର୍ଘ ୨୯ ବର୍ଷ ଭିତରେ ତିନିଥର ଉତ୍କଳ ସମ୍ମିଳନୀ ଅଧିବେଶନ ଜୟପୁର, ପାରଳାଖେମୁଣ୍ଡି ଓ ରମ୍ଭାଠାରେ ଅନୁଷ୍ଠିତ ହୋଇପାରିଥିଲା ।

୧୯୯୮ ମସିହାରେ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଉତ୍କଳସମ୍ମିଳନୀର ଉପସଭାପତି ଦାୟୀତ୍ୱ ନେବାପରେ ଏହି ଅନୁଷ୍ଠାନର ମୁଖ୍ୟ କାର୍ଯ୍ୟାଳୟକୁ ବ୍ରହ୍ମପୁରରୁ ଭୁବନେଶ୍ୱରକୁ ସ୍ଥାନାନ୍ତର କରିବାରେ ସମର୍ଥ ହୋଇଥିଲେ ଓ ବିଭିନ୍ନ ଜିଲାରେ ଏହାର ଶାଖା ସୃଷ୍ଟି କରିବାକୁ ପଦକ୍ଷେପ ନିଆଗଲା । ୧୯୯୨ ମସିହାରେ ରାୟଗଡ଼ାଠାରେ ତାଙ୍କ ଉଦ୍ୟମରେ

ଉତ୍କଳ ସମ୍ମିଳନୀ ଅଧିବେଶନ ଅନୁଷ୍ଠିତ ହେଇଥିଲା । ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏହାକୁ ଉଦ୍‌ଘାଟନ କରିଥିଲେ ।

୧୯୯୭ ମସିହାରେ ଉତ୍କଳସମ୍ମିଳନୀର କଟକ ଜିଲ୍ଲା ଶାଖା ଗଠିତ ହେଲା । ସେହି ବର୍ଷଠାରୁ କଟକଜିଲ୍ଲା ଶାଖା ପକ୍ଷରୁ ଆନୁଷ୍ଠାନିକ ଭାବେ ଉତ୍କଳଦିବସ, ମଧୁବାବୁଙ୍କ ଜୟନ୍ତୀ; ପାରଳାମହାରାଜାଙ୍କ ଜୟନ୍ତୀ ଓ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ଦିବସ ପାଳନ କରାଗଲା । ଏହା ପୂର୍ବରୁ ରାଜ୍ୟ ସରକାର କେବେ ମଧୁବାବୁଙ୍କ ଜୟନ୍ତୀ ପାଳନ କରୁନଥିଲେ । ଶ୍ରୀଯୁକ୍ତ ଗିରିଧାରୀ ଗମାଙ୍ଗ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବା ସମୟରେ ଉତ୍କଳ ସମ୍ମିଳନୀ କର୍ମକର୍ତ୍ତାମାନଙ୍କ ପ୍ରରୋଚନାରେ ୧୯୯୯ ମସିହାରେ ମଧୁବାବୁଙ୍କର ୧୫୦ ତମ ଜୟନ୍ତୀଉତ୍ସବ ପ୍ରଥମକରି ସରକାରୀ ଉଦ୍ୟମରେ ପାଳିତ ହେଲା । ସେହି ବର୍ଷ କଟକ ତଥା ଅନ୍ୟ କେତେକ ଜିଲା ସଦରମହକୁମାରେ ଉତ୍କଳଗୌରବ ମଧୁସୂଦନଙ୍କର ପୂର୍ଣ୍ଣାବୟବ ମୂର୍ତ୍ତି ସ୍ଥାପିତ ହେଲା ଏବଂ ସରକାରଙ୍କ ତରଫରୁ ପ୍ରତି ବିଦ୍ୟାଳୟ ଓ ମହାବିଦ୍ୟାଳୟକୁ ଉତ୍କଳ ଗୌରବ ମଧୁସୂଦନଙ୍କ ତୈଳଚିତ୍ର ବାଣ୍ଟି ଦିଆଯାଇ ସେମାନଙ୍କ କାର୍ଯ୍ୟାଳୟମାନଙ୍କରେ ଟାଙ୍ଗିବାପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ୨୦୦୧ ମସିହାରେ କଟକର ବାଲିଯାତ୍ରାରେ ପ୍ରଥମକରି ଉତ୍କଳସମ୍ମିଳନୀ ମଞ୍ଚ ସ୍ଥାପିତ ହେବାଫଳରେ କଟକ ମହାନଗରୀର ଯୁବଗୋଷ୍ଠୀ ଏହି ଅନୁଷ୍ଠାନ ବିଷୟରେ ଅବଗତ ହେବାର ସୁଯୋଗ ପାଇଲେ । ସେହି ବର୍ଷ ଠାରୁ ଏପର୍ଯ୍ୟନ୍ତ (୨୦୧୫ ମସିହା) ପ୍ରତିବର୍ଷ ବାଲିଯାତ୍ରାରେ ଉତ୍କଳସମ୍ମିଳନୀ ମଞ୍ଚ ସ୍ଥାପନ କରାଯାଇ ଜନସାଧାରଣଙ୍କ ହୃଦୟରେ ଜାତୀୟତା ଭାବ ଉଦ୍ରେକ କରାଇବାର ପ୍ରଚେଷ୍ଟା କରାଯାଉଛି ।

୨୦୦୨ ମସିହାରେ ଓଡ଼ିଶାର ତତ୍‌କାଳୀନ ଗଣଶିକ୍ଷାମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକଙ୍କ ସହିତ ଝାଡ଼ଖଣ୍ଡ ଯାତ୍ରା କଲାବେଳେ ଉତ୍କଳ ଦିବସରେ ବିଦ୍ୟାଳୟମାନଙ୍କରେ ଛୁଟି କରାଯାଇଥିଲେ ମଧ୍ୟ ଠିକ୍ ଭାବେ ଏହି ପବିତ୍ର ଦିବସ ପାଳିତ ହେଉନାହିଁ ବୋଲି ଆଲୋଚନା କରାଯାଇଥିଲା । ସେ କହିଲେ କିପରି କରିବା କଥା ଆପଣ ଲେଖିକରି ଦିଅନ୍ତୁ; ଉଚିତ୍ ବ୍ୟବସ୍ଥା କରାଯିବ । ତେଣୁ ଉତ୍କଳ ଦିବସକୁ ଛୁଟି ଦିବସ ଭାବେ ଘୋଷଣା କରାଗଲେ ମଧ୍ୟ ସେଦିନ ଭୋର ସକାଳୁ ବିଦ୍ୟାଳୟ ମାନଙ୍କର ସବୁ ଛାତ୍ରଛାତ୍ରୀ ଓ ଶିକ୍ଷକ ଶିକ୍ଷୟିତ୍ରୀ ବିଦ୍ୟାଳୟରେ ପହଞ୍ଚି ବରପୁତ୍ରମାନଙ୍କର ଜୟଧ୍ୱନି କରିବା ସହିତ ପ୍ରଭାତ ଫେରି କରିବା ଓ ଉତ୍କଳ ବନ୍ଦନା ଗାନ କରି ବିଦ୍ୟାଳୟରେ ଥିବା ଉତ୍କଳର ନେତୃବୃନ୍ଦଙ୍କ ଫଟୋଚିତ୍ରରେ ଫୁଲମାଳ ଦେବାପାଇଁ କଟକଜିଲା ଶାଖାପକ୍ଷରୁ ଅନୁରୋଧ କରାଗଲା ।

ପରବର୍ତ୍ତୀ ବର୍ଷମାନଙ୍କରେ ଏହିଶାଖା ପକ୍ଷରୁ ଜିଲାପାଳ ଓ ଜିଲାଶିକ୍ଷାମଣ୍ଡଳାଧୀଶ-ମାନଙ୍କୁ ଉପରୋକ୍ତ ମର୍ମରେ ଚିଠି ଲେଖି ସମଗ୍ର ଜିଲ୍ଲାରେ ଥିବା ବିଦ୍ୟାଳୟମାନଙ୍କରେ

ଠିକଭାବେ ଉତ୍କଳ ଦିବସ ପାଳନ କରିବାକୁ ମଧ୍ୟ ପ୍ରତିବର୍ଷ ଅନୁରୋଧ କରାଯାଉଥିଲା । ତେଣୁ ଓଡ଼ିଶାର ଅଧିକାଂଶ ବିଦ୍ୟାଳୟରେ ୨୦୦୨ ମସିହାଠାରୁ ପ୍ରତିବର୍ଷ ଯଥାରୀତି ଉତ୍କଳଦିବସ ପାଳିତ ହୋଇଆସୁଛି ।

୨୦୦୩ ମସିହାରେ ଉତ୍କଳ ସମ୍ମିଳନୀ ସୃଷ୍ଟିର ଶହେବର୍ଷ ପୂରଣ ହେଲା । ଉତ୍କଳ ସମ୍ମିଳନୀ କେନ୍ଦ୍ର କାର୍ଯ୍ୟାଳୟରେ ଅନୁଷ୍ଠିତ ପରିଚାଳନା ସଭାରେ ମୁଁ ଓ ଅଭୟବାବୁ ଦୁହେଁ ଚଳିତବର୍ଷ ଅପ୍ରେଲ ପହିଲାଦିନ କଟକରେ ଶତବାର୍ଷିକୀ ଉତ୍ସବ ପାଳିତ ହେବବୋଲି ଘୋଷଣା କଲୁ। ଓଡ଼ିଶାର ପ୍ରତି ଜିଲ୍ଲାରେ ଥିବା ଉତ୍କଳ ସମ୍ମିଳନୀ ଶାଖା ମାନଙ୍କର ବହୁ ସଂଖ୍ୟାରେ ସଭ୍ୟସଭ୍ୟା କଟକ ଆସି ଏହି ଉତ୍ସବରେ ଯୋଗ ଦେବାକୁ ନିମନ୍ତ୍ରଣ ଜଣାଇଲୁ । ପରିଚାଳନା ସଭାର କେତେକ ସଭ୍ୟ ମତଦେଲେ ଯେ କଟକ ଉତ୍ସବ ପୂର୍ବରୁ ବିଚ୍ଛିନ୍ନାଞ୍ଚଳରେ ଶତବାର୍ଷିକୀ ଉତ୍ସବ ପାଳନ କରିପାରିଲେ ଭଲ ହୁଅନ୍ତା । ଭାବିଲି ଏହି ମୌକାରେ ଓଡ଼ିଶାର ବାଚସ୍ପତି ଓ କେତେଜଣ ମନ୍ତ୍ରୀଙ୍କୁ ଝାଡ଼ଖଣ୍ଡକୁ ନିମନ୍ତ୍ରିତ କରି ସେଠାକାର ଓଡ଼ିଆମାନଙ୍କର ମାତୃଭାଷା ପ୍ରେମ ସେମାନଙ୍କୁ ଦେଖାଇ ଦେଇ ହେବ ଓ କଟକ ବା ଭୁବନେଶ୍ୱରର କେତେକ ସଭ୍ୟସଭ୍ୟା ମଧ୍ୟ ଝାଡ଼ଖଣ୍ଡ ଯାଇ ସେଠାରେ କରାଯାଇଥିବା ଓଡ଼ିଆ ଶିକ୍ଷା ପ୍ରସାରକାର୍ଯ୍ୟ ଦେଖି ପାରିବେ ।

ଜାମସେଦପୁର ଯାଇ ଶ୍ରୀ ରବୀନ୍ଦ୍ର କୁମାର ମିଶ୍ରଙ୍କୁ ଏକଥା କହିଲି । ଗୋଲମୁରୀ ଉତ୍କଳ ସମାଜ ହାଇସ୍କୁଲ ପରିସରରେ ଏହି ଉତ୍ସବ ପାଳିତହେବା ଉଚିତ ବୋଲି ନିଷ୍ପତ୍ତି ହେଲା । ଏଥିଲାଗି ଓଡ଼ିଶାରୁ ବାଚସ୍ପତି ଓ ମନ୍ତ୍ରୀମାନେ ଆସିବେ । ଝାଡ଼ଖଣ୍ଡର ବାଚସ୍ପତି ତଥା ଶିକ୍ଷାମନ୍ତ୍ରୀଙ୍କୁ ନିମନ୍ତ୍ରଣ କରିବା ଦାୟୀତ୍ୱ ରବିବାବୁ ନେଲେ । ଗୋଲମୁରୀ ଉତ୍କଳସମାଜର ପରିଚାଳନା ସଭା ଡକାଯାଇ ଏ ବିଷୟ ଆଲୋଚନା କରାଯାଇ ଉକ୍ତଦିନ ସମସ୍ତ ସଭ୍ୟସଭ୍ୟା ଓ ଅଭିଭାବକମାନଙ୍କୁ ବିଦ୍ୟାଳୟ ପରିସରରେ ରହି ଶତବାର୍ଷିକୀ ଉତ୍ସବକୁ ସଫଳ କରିବାର ନିଷ୍ପତ୍ତି ନିଆଗଲା । ଓଡ଼ିଶା ବିଧାନସଭାର ବାଚସ୍ପତି ଶ୍ରୀ ଶରତକୁମାର କର ଏକଥା ଶୁଣି ଖୁସି ହେଲେ। ତତ୍କାଳୀନ ରାଜସ୍ୱମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାୟକ ଓ ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ସମୀର ଦେଙ୍କୁ ଏହି ଉତ୍ସବରେ ଯୋଗଦେବାକୁ ନିମନ୍ତ୍ରଣ କଲି । ସେମାନେ ସମସ୍ତେ ରାଜି ହେଲେ । ଝାଡ଼ଖଣ୍ଡର ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ଦୀନେଶ କୁମାର ଷଡ଼ଙ୍ଗୀଙ୍କ ସହିତ କଥା ହେଲି । ସେ ମଧ୍ୟ ଉପସ୍ଥିତ ରହିବେ ବୋଲି କଥା ଦେଲେ ।

କଟକ ଜିଲ୍ଲାର କେତେଜଣ ସଭ୍ୟଙ୍କୁ ମଧ୍ୟ ଝାଡ଼ଖଣ୍ଡ ନେଇ ଏହି ଉତ୍ସବରେ ଯୋଗଦେବାକୁ ଅଭୟବାବୁଙ୍କ ସହିତ କଥାହେଲି । ନିଜ ପକେଟରୁ ଖର୍ଚ୍ଚ କରି ଜାମସେଦପୁର ଯିବାକୁ କେହି ରାଜି ହେବେ ନାହିଁ । ତେଣୁ କଟକ ଜିଲ୍ଲା ଶାଖା ପକ୍ଷରୁ

ସମସ୍ତଙ୍କ ବାଟଖର୍ଚ୍ଚ ଦେବା ପାଇଁ ନିଷ୍ପତ୍ତି ହେଲା । କଟକରୁ ଶ୍ରୀ ଅଭୟ ସାମାନ୍ତରାୟ, ଶ୍ରୀ ରଘୁନାଥ ମହାପାତ୍ର, ହୁସେନ ରବିଗାନ୍ଧୀ, ଡଃ ବିଜୟାନନ୍ଦ ସିଂହ, ଶ୍ରୀ ଜଗଦୀଶ ମହାନ୍ତି, ସାମ୍ବାଦିକ ଅରୁଣ ପଣ୍ଡା, ଅକ୍ଷୟ କୁମାର ଦାସ, ବୃନ୍ଦାବନ ଚନ୍ଦ୍ର ରଥ, ଅର୍ଜୁନ ଚରଣ ଦାଶ, ମାଧବ ମିଶ୍ର ପ୍ରମୁଖ ବ୍ୟକ୍ତିମାନଙ୍କ ପାଇଁ ଯିବା ଆସିବା ରେଳ ଟିକେଟ କରାଗଲା । ଉତ୍ସବର ଦୁଇଦିନ ପୂର୍ବରୁ ମୁଁ ଜାମସେଦପୁର ଯାଇ ସେଠାରେ ଉତ୍ସବ ପାଳନର ସମସ୍ତ ବ୍ୟବସ୍ଥା କଲି । ସିଦକାହ୍ନୁ ଆଦିବାସୀ ବିଦ୍ୟାଳୟ ପକ୍ଷରୁ ମଧ୍ୟ ସେଦିନ ଉପରବେଳା ଏକ ସଭାର ବ୍ୟବସ୍ଥା ହେଲା । ଏକକାଳୀନ ଏତେ ଜଣ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ସେହି ବିଦ୍ୟାଳୟରେ ପାଇବାର ସୌଭାଗ୍ୟ ଉପରେ ବିଦ୍ୟାଳୟର ପରିଚାଳନା କମିଟି ଜୋର ଦେଲେ । କଟକ ବା ଭୁବନେଶ୍ୱରରୁ ଯାଇଥିବା ଅତିଥିମାନଙ୍କୁ ଜାମସେଦପୁର ରେଳଷ୍ଟେସନର ଡର୍ମିଟୋରୀରେ ରଖାଇବା ଓ ରେଳବାଇ ଖାଦ୍ୟ ଯଥା ସମୟରେ ଦେବାର ବ୍ୟବସ୍ଥା ହୋଇଗଲା ।

ଉତ୍ସବଦିନ ଭୋର ଛଅଟା ବେଳେ କଟକ ଓ ଭୁବନେଶ୍ୱରରୁ ସମସ୍ତ ଅତିଥି ଯାଇ ଉତ୍କଳ ଏକ୍ସପ୍ରେସ ଯୋଗେ ଜାମସେଦପୁର ରେଳଷ୍ଟେସନରେ ପହଞ୍ଚିଗଲେ । ଉତ୍କଳ ସମ୍ମିଳନୀର ସଭାପତି ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ମଧ୍ୟ ସେମାନଙ୍କ ସହିତ ରେଳବାଇ ଡର୍ମିଟୋରୀରେ ପହଞ୍ଚି ନିତ୍ୟକର୍ମ ସାରି ଗୋଲମୁରୀ ଉତ୍କଳ ସମାଜକୁ ଯିବାକୁ ପ୍ରସ୍ତୁତ ହୋଇଗଲେ । ଇତି ମଧ୍ୟରେ ମୁଁ ସ୍ଥାନୀୟ ଯୁବକମାନଙ୍କ ସହିତ ଜାମସେଦପୁର ବିମାନଘାଟୀକୁ ଯାଇ ଭୁବନେଶ୍ୱରରୁ ରାଜ୍ୟ ସରକାରଙ୍କ ବିମାନରେ ଆସି ସେଠାରେ ପହଞ୍ଚିଥିବା ବାଚସ୍ପତି ଓ ମନ୍ତ୍ରୀମାନଙ୍କୁ ସମ୍ବର୍ଦ୍ଧନା କରି ଟାଟା କମ୍ପାନୀ ଅତିଥି ଭବନରେ ରଖାଇଲି । ସଭାପତି ବସନ୍ତ କୁମାର ପାଣିଗ୍ରାହୀ ଓ ମୁଁ ବାଚସ୍ପତି ଶରତବାବୁଙ୍କ ସହିତ ଆଲୋଚନା କଲୁ । ସାକ୍‌ଚି ବଜାରର ତାପ୍ତି ରୋଡ୍‌ରେ ଥିବା ଉତ୍କଳ ଆସୋସିସନ ହେଉଛି ଜାମସେଦପୁର ମହାନଗରୀର ସର୍ବପୁରାତନ ଓଡ଼ିଆ ସଂଗଠନ । ଟାଟା କମ୍ପାନୀ ପକ୍ଷରୁ ଏହି ଅନୁଷ୍ଠାନ ପାଇଁ ଜମି ଯୋଗାଇ ଦିଆଯାଇଛି ଓ ସେଠାରେ ଉତ୍କଳ ଆସୋସିଏସନ ପକ୍ଷରୁ ସଭାଗୃହ, ଅତିଥି ଭବନ ଓ ଶ୍ରୀ ଜଗନ୍ନାଥ ମନ୍ଦିର ଅଛି । ଅଧିବକ୍ତା ରବୀନ୍ଦ୍ର ଶତପଥି ଏହି ଅନୁଷ୍ଠାନର ସଭାପତି ଓ ତାରାଚାନ୍ଦ ମହାନ୍ତି ଏହାର ସମ୍ପାଦକ ଥିଲେ । ଦୁହେଁ କହିଲେ, ବାଚସ୍ପତି ଓ ମନ୍ତ୍ରୀମାନେ ଗୋଲମୁରୀ ଉତ୍କଳ ସମାଜ ହାଇସ୍କୁଲକୁ ଯିବାବାଟରେ ଉତ୍କଳ ଆସୋସିଏସନସ୍ଥ ଉତ୍କଳମଣି ଗୋପବନ୍ଧୁଙ୍କ ତୈଳଚିତ୍ରରେ ମାଲ୍ୟାର୍ପଣ କରିବା ଉଚିତ ହେବ । ବସନ୍ତବାବୁଙ୍କୁ ନେଇ ମୁଁ ଟାଟା ଅତିଥି ଭବନକୁ ଯାଇ ବାଚସ୍ପତି ଓ ମନ୍ତ୍ରୀମାନଙ୍କ କାର୍ଯ୍ୟକ୍ରମରେ ଏତକ ଯୋଗ କରି ଉତ୍କଳ ଆସୋସିଏସନ୍ ବାଟ ଦେଇ ଗୋଲମୁରୀ ଉତ୍କଳ ସମାଜ ହାଇସ୍କୁଲକୁ ଫେରି ଆସିଲୁ ।

ବିଦ୍ୟାଳୟର ଛାତ୍ରଛାତ୍ରୀ ଓ ଶିକ୍ଷକ ଶିକ୍ଷୟିତ୍ରୀ ମାନେ ଅତିଥିମାନଙ୍କୁ ଶଙ୍ଖଧ୍ୱନି କରି ଫୁଲମାଳ ଦେଇ ସଭାମଣ୍ଡପକୁ ନେଇଗଲେ । ଓଡ଼ିଶା ମନ୍ତ୍ରୀମାନଙ୍କ ସହିତ ଝାଡ଼ଖଣ୍ଡର ଶିକ୍ଷାମନ୍ତ୍ରୀ ଶ୍ରୀପଶୁପତିନାଥ ପାଣ୍ଡେ ଓ ସ୍ୱାସ୍ଥ୍ୟମନ୍ତ୍ରୀ ଡାକ୍ତର ଦିନେଶ ଷଡଙ୍ଗୀ ଆସି ଯୋଗ ଦେଲେ । ମଞ୍ଚ ଉପରେ ଥିବା ଶ୍ରୀଜଗନ୍ନାଥଙ୍କ ପ୍ରତିକୃତିରେ ମାଲ୍ୟାର୍ପଣ କରିସାରି ସମସ୍ତ ଅତିଥି ତଥା ଓଡ଼ିଶାରୁ ଯାଇଥିବା ଉତ୍କଳ ସମ୍ମିଳନୀର ସଭ୍ୟସଭ୍ୟାମାନେ ଶହେ ବର୍ଷ ପୂର୍ତ୍ତିର ସ୍ମାରକୀସ୍ୱରୂପ ଥିବା ଏକ ଶହ ପ୍ରଦୀପ ପ୍ରଜ୍ୱଳିତ କଲେ । ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀଙ୍କ ସଭାପତିତ୍ୱରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଉତ୍କଳ ସମ୍ମିଳନୀ ପକ୍ଷରୁ ଝାଡ଼ଖଣ୍ଡ ତଥା ସିଂହଭୂମ ଅଞ୍ଚଳରେ ୧୯୨୦ ମସିହାରୁ ଓଡ଼ିଆ ଶିକ୍ଷା ପ୍ରସାର କାର୍ଯ୍ୟ ଆରମ୍ଭ ହୋଇ ଶତାଧିକ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ଓ କେତେକ ମାଧ୍ୟମିକ ବିଦ୍ୟାଳୟ ପ୍ରତିଷ୍ଠା ହେବା ପରେ ମଝିରେ ପ୍ରାୟ ୫୦/୬୦ ବର୍ଷକାଳ କୌଣସି କାର୍ଯ୍ୟ ହୋଇପାରି ନଥିଲା । ମାତ୍ର ପୁନରାୟ ୨୦୦୦ ମସିହାଠାରୁ ଏହି କାର୍ଯ୍ୟ ଆରମ୍ଭ ହୋଇଛି ଓ ମାତ୍ର ତିନିବର୍ଷ ମଧ୍ୟରେ ଏଥିରେ ଅନେକ ଉନ୍ନତି ଘଟିଛି ବୋଲି ସମସ୍ତ ବକ୍ତା ସ୍ୱୀକାର କଲେ । ଏହି କାର୍ଯ୍ୟରେ ଝାଡ଼ଖଣ୍ଡ ସରକାର ସମସ୍ତ ସାହାଯ୍ୟ ସହଯୋଗ କରିବେ ବୋଲି ଝାଡ଼ଖଣ୍ଡର ଶିକ୍ଷାମନ୍ତ୍ରୀ ସ୍ୱୀକୃତି ପ୍ରଦାନ କଲେ । ତେବେ ଝାଡ଼ଖଣ୍ଡରେ ପ୍ରଚଳିତ ସମସ୍ତ ହିନ୍ଦି ପାଠ୍ୟପୁସ୍ତକ ଓଡ଼ିଆରେ ଅନୁବାଦ କରାଯାଇ ଏଠାକାର ଓଡ଼ିଆ ପିଲାମାନଙ୍କୁ ମାଗଣାରେ ଦେବା ଲାଗି ସ୍ୱାସ୍ଥ୍ୟମନ୍ତ୍ରୀ ଦିନେଶ ବାବୁ ପ୍ରସ୍ତାବ ଦେଲେ । ତା ଛଡ଼ା ଆଜି ସଭାଶେଷରେ ସମସ୍ତ ମନ୍ତ୍ରୀମାନେ ଟାଟା ଅତିଥି ଭବନକୁ ଫେରି ମଧ୍ୟାହ୍ନ ଭୋଜନ ପରେ ଏକ ବୈଠକରେ ମିଳିତ ହୋଇ ଏ ଦିଗରେ ଓଡ଼ିଶା ଓ ଝାଡ଼ଖଣ୍ଡ ସରକାରଙ୍କର କ'ଣ କ'ଣ ଦାୟୀତ୍ୱ ରହିବ ସେ ବିଷୟରେ ଆଲୋଚନା କରିବା କଥା ହେଲା । ଅପରାହ୍ନ ୪ଟା ବେଳକୁ ପର୍ଶୁଡିହିର ସିଦକାହ୍ନୁ ବିଦ୍ୟାଳୟରେ ପୁଣିଏକ ସଭା ହେବା କଥା ଘୋଷଣା କରାଯାଇ ବାଚସ୍ପତି ଏବଂ ଓଡ଼ିଶା ତଥା ଝାଡ଼ଖଣ୍ଡର ମନ୍ତ୍ରୀମାନେ ଏହି ସଭାରେ ଯୋଗ ଦେବେ ବୋଲି ଜଣାଇ ଦିଆଗଲା ।

ଅପରାହ୍ନ ୪ଟା ବେଳେ ଆମେ ସବୁ ସିଦକାହ୍ନୁ ବିଦ୍ୟାଳୟକୁ ଗଲୁ । ଆଦିବାସୀ ଛାତ୍ରଛାତ୍ରୀମାନେ ବିଦ୍ୟାଳୟଠାରୁ ଏକ କିଲୋମିଟର ପର୍ଯ୍ୟନ୍ତ ରାସ୍ତା ଦୁଇ କଡ଼ରେ ଧାଡ଼ିବାନ୍ଧି ଠିଆ ହୋଇଥାନ୍ତି । ସେମାନଙ୍କର ଅଭିଭାବକ ମାନେ ମଧ ବହୁ ସଂଖ୍ୟାରେ ଅତିଥିମାନଙ୍କୁ ଅପେକ୍ଷା କରି ରହିଥାନ୍ତି । ଦଳେ ଛାତ୍ରୀ ଆଦିବାସୀ ଢାଞ୍ଚାରେ ଲୁଗା ପିନ୍ଧି ପରସ୍ପର ହାତ ଧରାଧରି ହୋଇ ନାଚିବା ପାଇଁ ଅପେକ୍ଷା କରିଥାନ୍ତି ଓ କେତେକ ବାଦ୍ୟକାର ଢୋଲ, ନାଗରା ଓ ମାଦଳ ଧରି ହାତ,ଗୋଡ଼ ଓ ମୁଣ୍ଡରେ ରଙ୍ଗ ବେରଙ୍ଗ ପରସବୁ ଖୋସି ପ୍ରସ୍ତୁତ ରହିଥାନ୍ତି । ଅତିଥିମାନଙ୍କର ନାଲିବତୀ ଗାଡ଼ି ସବୁ ପହଞ୍ଚିବା ମାତ୍ରେ ବାଦ୍ୟ ବଜାଇବା

ଆରମ୍ଭ ହୋଇଗଲା । ଝିଅମାନେ ବାଦ୍ୟର ତାଳେ ତାଳେ ନାଚି ନାଚି ଅତିଥିମାନଙ୍କୁ ପାଛୋଟି ନେଉଥାନ୍ତି । ସ୍ଥାନୀୟ ଲୋକଙ୍କ ଭିଡ଼ ଜମି ଉଠୁଥାଏ । ବିଦ୍ୟାଳୟ ପାଖ ହୋଇ ଯିବା ମାତ୍ରେ ଆଦିବାସୀ ତରୁଣୀମାନେ ବଡ଼ ବଡ଼ ଥାଳି ଓ ଲୋଟାରେ ହଳଦିପାଣି ଧରି ଅତିଥିମାନଙ୍କର ପାଦ ସେହି ଥାଳିରେ ରଖି ଧୋଇବା ଆରମ୍ଭ କରିଦେଲେ । ପାଦ ଧୋଇସାରି କାନିରେ ପୋଛିଦେଇ ପାଦ ଉପରେ ଫୁଲ ଛିଞ୍ଚି ପ୍ରଣାମ କରି ଆମ ସମସ୍ତଙ୍କୁ ଆତିଥେୟତାରେ ସ୍ତମ୍ଭୀଭୂତ କରିଦେଲେ ।

ଅତିଥିମାନେ ମଞ୍ଚ ଉପରକୁ ଯିବା ପରେ ସେହି ବିଦ୍ୟାଳୟ ପରିଚାଳନା ସଭାର ସଭାପତି କହିଲେ, ଆଜି ଏହି ସଭାରେ ଗୁରୁବାବୁ ସଭାପତିତ୍ୱ କରିବେ । ମୁଁ ତାଙ୍କୁ କହିଲି, ଏ ସଭାରେ ଆପଣ ସଭାପତିତ୍ୱ କରିବା କଥା । ନୋହିଲେ ଆମ ସଭାପତି ବସନ୍ତବାବୁ ଏ କାର୍ଯ୍ୟ ତୁଲାଇବା ଉଚିତ ହେବ । ସେ କହିଲେ, ଆପଣଙ୍କ ଛଡ଼ା ଆମେ ଆଉ କାହାକୁ ଜାଣୁନାହୁଁ । ଆପଣଙ୍କୁ ସଭାପତି ଭାବେ ମୁଁ ଆମନ୍ତ୍ରିତ କରୁଛି । ବାଚସ୍ପତି ଶରତକର କହିଲେ, ଆଉ ଡେରି ନ କରି ଗୁରୁବାବୁ ସଭାକାର୍ଯ୍ୟ ଆରମ୍ଭକରନ୍ତୁ । ଉପକ୍ରମଣିକାରେ ମୁଁ କହିଲି ଝାଡ଼ଖଣ୍ଡ ରାଜ୍ୟରେ ଏହି ବିଦ୍ୟାଳୟରେ ହିଁ ସବୁଠାରୁ ଅଧିକ ସଂଖ୍ୟାକ ଛାତ୍ରଛାତ୍ରୀ ଓଡ଼ିଆ ମାଧ୍ୟମରେ ଶିକ୍ଷା ପାଉଛନ୍ତି । ଏ ଅଞ୍ଚଳର ବା ଓଡ଼ିଶାର କୌଣସି ନେତା ଏହି ବିଦ୍ୟାଳୟ ଆରମ୍ଭ କରି ନ ଥିଲେ । ହଳଦ୍‌ବନି ଅଞ୍ଚଳରେ ଥିବା ଆମ ମୟୂରଭଞ୍ଜ ଜିଲ୍ଲାର ଆଦିବାସୀ ଭାଇମାନେ ତିରିଶବର୍ଷ ପୂର୍ବେ ନିଜ ପିଲାଙ୍କୁ ଓଡ଼ିଆ ମାଧ୍ୟମରେ ଶିକ୍ଷା ଦେବାକୁ ହିଁ ଏହି ବିଦ୍ୟାଳୟ ପ୍ରତିଷ୍ଠା କରିଛନ୍ତି । ଏହି ଅନୁଷ୍ଠାନର ଅନେକ ଅଭାବ ରହିଛି । ସବୁଠାରୁ ମୁଖ୍ୟକଥା ହେଲା ସ୍ଥାନାଭାବ । ମାତ୍ର ତିନିଗୁଣ୍ଠ ଜମି ଏହି ବିଦ୍ୟାଳୟ ପାଇଁ ଖୁବ୍ କମ୍ ଓ ଘର କରିବାକୁ ଏମାନଙ୍କର ଅର୍ଥାଭାବ ଯୋଗୁଁ ବହୁ ଛାତ୍ରଛାତ୍ରୀ ଶିକ୍ଷା ସୁଯୋଗରୁ ବଞ୍ଚିତ ହେଉଛନ୍ତି । ଓଡ଼ିଶାର ରାଜସ୍ୱମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଏ ବିଦ୍ୟାଳୟକୁ ଟ.୫୦,୦୦୦ ଦାନ ଦେବାକୁ ସମ୍ମତି ଦେଲେ । ଝାଡ଼ଖଣ୍ଡ ମନ୍ତ୍ରୀ ଦିନେଶ ଷଡଙ୍ଗୀ ମଧ୍ୟ ପଚାଶ ହଜାର ଟଙ୍କା ଦେବାକୁ ଘୋଷଣା କଲେ । ଝାଡ଼ଖଣ୍ଡ ଶିକ୍ଷା ମନ୍ତ୍ରୀ ଏହି ବିଦ୍ୟାଳୟକୁ ମାଗଣାରେ ଜମି ଓ ହାଇସ୍କୁଲକୁ ସ୍ୱୀକୃତି ଦେବାକୁ ସାହାଯ୍ୟ କରିବେ ବୋଲି କହିଲେ । ପୂର୍ବତନ ବିହାର ରାଜ୍ୟରେ ଆମର ଆଦିବାସୀ ଭାଇମାନେ କୌଣସି ସରକାରୀ ପ୍ରୋତ୍ସାହନ ନ ପାଇ ଦଶନ୍ଧି ଦଶନ୍ଧି ଧରି ସେମାନଙ୍କ ପିଲାଙ୍କୁ ଓଡ଼ିଆ ଶିକ୍ଷା ଦେବା ଲାଗି ଯେଉଁଭଳି ତ୍ୟାଗ ସ୍ୱୀକାର କରି ସାମୁହିକ ଉଦ୍ୟମ ଚଳାଇ ରଖିଛନ୍ତି ଓଡ଼ିଶାରୁ ଯାଇଥିବା ପ୍ରତିନିଧିମାନେ ତା'ର ଭୂୟସୀ ପ୍ରଶଂସା କରିଥିଲେ । ଡେରିରେ ହେଲେ ମଧ୍ୟ ସେମାନଙ୍କୁ ସାହାଯ୍ୟ କରିବା ଲାଗି ଯେତିକି ପଦକ୍ଷେପ ନିଆଯାଇଛି ସେଥିଲାଗି ସମସ୍ତେ ସନ୍ତୋଷ ବ୍ୟକ୍ତ କରିଥିଲେ । ବାଚସ୍ପତି ଶ୍ରୀଯୁକ୍ତ କର କହିଲେ,

ଟାଟା କମ୍ପାନୀ ସହିତ ଯୋଗଯୋଗ କରି ଏହି ବିଦ୍ୟାଳୟର ଗୃହ ନିର୍ମାଣ ଦିଗରେ ଝାଡ଼ଖଣ୍ଡ ସରକାରଙ୍କୁ ଚିଠିଲେଖି ବିଦ୍ୟାଳୟର ଜାଗାତକ ମାଗଣାରେ କରାଇ ଦେବାକୁ ମଧ ପ୍ରୟାସ କରାଯିବ । ମାତ୍ର ଦୀର୍ଘ ପନ୍ଦର ବର୍ଷ ବିତିଯାଇଥିଲେ ମଧ ସେହି ବିଦ୍ୟାଳୟକୁ ଜାଗା ମିଳିନାହିଁ ।

ସଭା ଶେଷରେ ଓଡ଼ିଶାରୁ ଯାଇଥିବା ପ୍ରତିନିଧିଦଳ ସେହି ରାତିରେ କଟକ ଫେରି ଆସିଲେ । ଏହା ପରେ କଟକଠାରେ ଏହି ଉତ୍ସବ ପାଳିତ ହେବାର ସ୍ଥିର ହେଲା । ଓଡ଼ିଶାର ଯେଉଁମାନେ ଏହି ଅଧିବେଶନରେ ଯୋଗଦେଲେ,ସେମାନେ ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆମାନେ ନିଜର ଭାଷା, ସଂସ୍କୃତି ବା ଓଡ଼ିଆତ୍ୱକୁ ରକ୍ଷା କରିବା ଦିଗରେ କେତେ କଷ୍ଟ ସ୍ୱୀକାର କରୁଛନ୍ତି ତାହାର ଆଭାସ ଝାଡ଼ଖଣ୍ଡରୁ ପାଇଲେ ।

## ଇଦ୍‌ଗା ପଡ଼ିଆ

କଟକର ଇଦ୍‌ଗା ପଡ଼ିଆରେ ଜନ୍ମ ନେଇଥିଲା ଉତ୍କଳସମ୍ମିଳନୀ । ମାତ୍ର ବିଗତ ଏକଶହ ବର୍ଷ ମଧରେ ଏହି ସ୍ଥାନରେ ଉତ୍କଳ ସମ୍ମିଳନୀର ଏକ ସ୍ମାରକୀ ଗଠନ କରିବା କଥା ଉତ୍କଳ ସମ୍ମଳନୀର କୌଣସି କର୍ମକର୍ତ୍ତାଙ୍କ ମୁଣ୍ଡରେ ନ ଥିଲା । ଇଦ୍‌ଗା ପଡ଼ିଆର ଆୟତନ ଚାଳିଶି ଏକର । ଚାହିଁଥିଲେ ସେଥିରୁ ପାଞ୍ଚ ଏକର ଜମି ଉପରେ ଓଡ଼ିଆ ଜାତିର ଆଦ୍ୟ ମିଳନମଞ୍ଚ ଉତ୍କଳ ସମ୍ମିଳନୀର ଏକ ସୁନ୍ଦର ସ୍ମାରକୀ ନିର୍ମାଣ କରାଯାଇ ପାରିଥାନ୍ତା । ତେବେ ମଧୁବାବୁ ଉତ୍କଳ ସମ୍ମିଳନୀ ଛାଡ଼ିଦେବା ପରେ କଟକର କୌଣସି ନେତା ଏହି ସମ୍ମିଳନୀ ବିଷୟରେ ସେତେଟା ସଚେତନ ନଥିଲେ । ତା'ଛଡ଼ା ରାଜ୍ୟର କଂଗ୍ରେସ ସରକାର ଏହି ସମ୍ମଳିନୀ ପ୍ରତି ବିଦ୍ୱେଷ ଭାବାପନ୍ନ ହୋଇ ପଡ଼ିବାରୁ ଏହି ଅନୁଷ୍ଠାନ କେବଳ କାଗଜ କଲମରେ ଜୀଇଁ ରହିଥିଲା । ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ଷାଠିଏଦଶକ ଠାରୁ ସମ୍ମିଳନୀର ମହାସଚିବ ଭାବେ ଥାଇ ବ୍ରହ୍ମପୁର ଓ ଦକ୍ଷିଣ ବିଚ୍ଛିନ୍ନାଞ୍ଚଳ ମଧରେ ଏହି ଅନୁଷ୍ଠାନର କାର୍ଯ୍ୟ ସୀମିତ ରଖିଥିଲେ । ଏପରିକି ରାଜ୍ୟର ଅନ୍ୟ କୌଣସି ଜିଲ୍ଲାରେ ଉତ୍କଳ ସମ୍ମିଳନୀ କାର୍ଯ୍ୟକ୍ରମ କରାଇବା ଦିଗରେ କୌଣସି ପଦକ୍ଷେପ ନିଆଯାଇନଥିଲା । ତେଣୁ ୧୯୯୭ ମସିହାରେ କଟକ ବା ଭୁବନେଶ୍ୱରରେ ଉତ୍କଳ ସମ୍ମିଳନୀର ଶାଖା ଗଠନହେବା ବେଳକୁ ଏହାର ଆଜୀବନ ସଭ୍ୟ ସଂଖ୍ୟା ମାତ୍ର ୭୫ ଭିତରେ ସୀମିତ ଥିଲା । ସେଥିଲାଗି ଇଦ୍‌ଗାପଡ଼ିଆ କଥା କାହାରି ମନରେ ନ ଥିଲା ।

ମୁଁ ବସନ୍ତ ବାବୁଙ୍କୁ ପଚାରିଲି ଇଦ୍‌ଗା ପଡ଼ିଆ ବିଷୟରେ ଆପଣଙ୍କ ପାଖରେ କୌଣସି ଦଲିଲ ଦସ୍ତାବିଜ୍ ଅଛି କି ? ସେ କହିଲେ କାହିଁକି ? କହିଲି ଯେଉଁ ସମ୍ମିଳନୀ ଓଡ଼ିଆମାନଙ୍କ

ପାଇଁ ସ୍ୱତନ୍ତ୍ର ରାଜ୍ୟ ସୃଷ୍ଟି କଲା ଏବଂ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ରକ୍ଷା ଦିଗରେ କାର୍ଯ୍ୟ ଆରମ୍ଭକଲା ତାହାର ଏକଟୁଡ଼ିଶାଳ ବିଷୟରେ ଖବର ରଖିବା ଉକ୍ତ ଅନୁଷ୍ଠାନର କର୍ତ୍ତବ୍ୟ । ସେ କହିଲେ, ମୋ ଜାଣିବାରେ ସମଗ୍ର ଇଦ୍‌ଗା ପଡ଼ିଆଟା ଉତ୍କଳ ସମ୍ମିଳନୀ ନାମରେ ଅଛି । ଆପଣ ବୁଝି ଦେଖନ୍ତୁ । ଯାହା ବୁଝିଲି ଦୀର୍ଘ ଚାରି ଦଶନ୍ଧି ଧରି ସେ ଉତ୍କଳ ସମ୍ମିଳନୀର ମହାସଚିବ ଥାଇ ସମ୍ମିଳନୀର ଅକଟୁଡ଼ିଶାଳ ଇଦ୍‌ଗା ପଡ଼ିଆ ବିଷୟରେ କିଛି ଖବର ରଖିନାହାନ୍ତି । ମୋ କଥାଟାକୁ ସେ ଗୁରୁତ୍ୱ ନ ଦେଇ ମୋ ଉପରେ ଚାପିଦେବାକୁ ଉଚିତ୍ ମଣିଲେ । ତାଙ୍କ କଥାଶୁଣି ମୁଁ ଜୋବ୍ରାରେ ଥିବା ବନ୍ଦୋବସ୍ତ ନିର୍ଦ୍ଦେଶାଳୟକୁ ଯାଇ ଉପନିର୍ଦ୍ଦେଶକ ଥିବା ବାଦାମବାଡ଼ିର ଜଣେ ଆଇ.ଏ.ଏସ୍. ପାହ୍ୟାର ଅଫିସର (ଶ୍ରୀ ନବୀନ ପରିଜା)ଙ୍କୁ ଭେଟି ପ୍ରକୃତ ତଥ୍ୟ ବୁଝିବାକୁ ଚେଷ୍ଟାକଲି । ସେ ଇଦ୍‌ଗା ପଡ଼ିଆର ରେକର୍ଡ଼ ପତ୍ର ବାହାରକରି ଦେଖିଲେ ଯେ ସମଗ୍ର ପଡ଼ିଆଟା ଚାରିଜଣଙ୍କ ମାଲିକାନାରେ ଅଛି । ସେମାନେ ହେଲେ ଗଣେଶ ପ୍ରସାଦ ଭଗତ (ବକ୍ସି ବଜାର) ନରେଶ ଚନ୍ଦ୍ର ବିଶ୍ୱାସ ଓ ପରିବାର (ଆଲିପୁର, କଲିକତା), ଚନ୍ଦ୍ର କୁମାର ବୋଷ (ବହୁଗ୍ରାମ) ଓ ମୁରଲୀଧର ମହାନ୍ତି (କଟକ) । ବାକି ପ୍ରାୟ କୋଡ଼ିଏ ଏକର ସରକାରୀ ଜମି ମଧ ଥିଲା । ବଂଗଳାଦେଶ ଯୁଦ୍ଧ ସମୟରେ ବହୁ ବଙ୍ଗାଳି ରିଫ୍ୟୁଜି ଓଡ଼ିଶାକୁ ଆସି ବସବାସ କଲେ । ତନ୍ମଧ୍ୟରୁ କେତେକ ରିଫ୍ୟୁଜିଙ୍କୁ ଜାନକୀ ପଟ୍ଟନାୟକ ସରକାର ଇଦ୍‌ଗା ପଡ଼ିଆର ପ୍ରାୟ ଅଧା ଜମି ଦେଇ ଏକ ରିଫ୍ୟୁଜି କଲୋନୀ ବସାଇଛନ୍ତି । ବାକି ଜମିରୁ ମୁରଲିଧର ମହାନ୍ତିଙ୍କ ପରିବାର କିଛି ଲୋକଙ୍କୁ ବିକ୍ରୀ କରିଛନ୍ତି । ଏହି ପଡ଼ିଆର ଯେଉଁ ଅଂଶରେ କଂସେଇଖାନା ଥିଲା, ସେଠାରେ ଏକ ମୁସଲମାନ ବସ୍ତି ଗଢ଼ି ଉଠିଛି । ୧୯୮୫ ମସିହା ବେଳକୁ ସହରାଞ୍ଚଳ ସମ୍ପତ୍ତିରେ ଶିଲିଂଲାଗୁ ହେବାରୁ ଗଣେଶ ପ୍ରସାଦ ଭଗତଙ୍କ ଜମିରୁ କିଛି ଜମି ସରକାରୀ ଶିଲିଂ ଖାତାରେ ଥାଇପାରେ । ଏ ଖବର ପାଇ ମୁଁ ଓ ଅଭୟବାବୁ କଟକ ଜିଲ୍ଲାପାଳଙ୍କ ରେଭିନ୍ୟୁ ସେକ୍ସନ୍‌କୁ ଯାଇ ପ୍ରକୃତ ତଥ୍ୟ ବୁଝିବାକୁ ଚେଷ୍ଟା କଲୁ । ଇଦ୍‌ଗା ପଡ଼ିଆରେ ରହୁଥିବା ରେଭେନ୍ସା ମହାବିଦ୍ୟାଳୟର ପୂର୍ବତନ ଅଧ୍ୟକ୍ଷ ଶ୍ରୀ ଅନନ୍ତ ଚରଣ ସାହୁଙ୍କ ସାହାଯ୍ୟରେ ଇଦ୍‌ଗା ପଡ଼ିଆର ନକ୍ସା ସଂଗ୍ରହ କରି ତହିଁରୁ ମୁରଲୀଧର ମହାନ୍ତିଙ୍କ ଜମିର ସ୍ଥିତି ବିଷୟରେ ବୁଝିଲି । ଏହାର ସୂଚନା ଦେଇ ଇଦ୍‌ଗା ପଡ଼ିଆରେ ଥିବା ଶିଲିଂ ବହିର୍ଭୁତ ଜମି ଉତ୍କଳ ସମ୍ମିଳନୀକୁ ଦେବାପାଇଁ କଟକ ଜିଲ୍ଲାପାଳଙ୍କୁ ଦରଖାସ୍ତ ଦେଲୁ । ଜିଲାପାଳଙ୍କ କାର୍ଯ୍ୟାଳୟରେ ଥିବା ଶିଲିଂ ସେକ୍ସନ୍‌କୁ ଯାଇ ମୁଁ ଓ ଅଭୟବାବୁ ବାରମ୍ବାର ଏହି ଜମିର ପ୍ଲଟ ନମ୍ବର ଓ ରକବା ଜାଣି ଉତ୍କଳ ସମ୍ମିଳନୀ ପକ୍ଷରୁ ଏଥିଲାଗି ଏକ ଆବେଦନ ପତ୍ର ପ୍ରସ୍ତୁତ କରିବା ପାଇଁ ଚେଷ୍ଟା କଲୁ ଏଥିଲାଗି ଉପଜିଲ୍ଲାପାଳ, ରେଭିନ୍ୟୁ ସେକ୍ସନ ଦାୟୀତ୍ୱରେ ଥିବା ଡେପୁଟି କଲେକ୍ଟରଙ୍କ ସାହାଯ୍ୟ ଲୋଡ଼ିବାକୁ ପ୍ରାୟ ବର୍ଷାଧିକ କାଳ ଧାଇଁବା ପରେ ଆମକୁ ଏ ସବୁ ତଥ୍ୟ ମିଳିଗଲା । ୧୯୫ ନମ୍ବର

ତୁଳସୀପୁର ମୌଜାର ୪୭୮ ନମ୍ବର ଓ ୧୪୩୮ ନମ୍ବର ପ୍ଲଟ ଦୁଇଟି ୬୭୭ ଡିସମିଲ ବା ହାରାହାରି ୧୮ ଗୁଣ୍ଠ ଶିଳିଂ ବହିର୍ଭୂତ ଜମି ପାଇଁ ଉତ୍କଳ ସମ୍ମିଳନୀ ପକ୍ଷରୁ ୨୦୦୦ ମସିହାରେ ଦରଖାସ୍ତ କରାଗଲା ।

ବାଦାମବାଡ଼ିରେ ଇଞ୍ଜିନିୟର ରତ୍ନାକର ମିଶ୍ର ରହନ୍ତି । ସେ ରାଉରକେଲା ଇସ୍ପାତ କାରଖାନାର ସିଭିଲ୍‌ଇଂଜିନିୟର ଥିଲେ । ସେ ଜଣେ ଓଡ଼ିଆପ୍ରାଣ ବ୍ୟକ୍ତି । ମୋ ଘର ବାଟଦେଇ ପ୍ରତିଦିନ ପ୍ରଭାତ ଭ୍ରମଣରେ ଗଲାବେଳେ ଦିନେଦିନେ ଘରକୁ ଆସି ମୋ ସହିତ ଆଲୋଚନା କରନ୍ତି । ଉତ୍କଳ ସମ୍ମିଳନୀର ସେ ଜଣେ ସଦସ୍ୟ ହେଲେ । ଭୁବନେଶ୍ୱରରେ ଦଶଜଣ ଅବସରପ୍ରାପ୍ତ ସିଭିଲ୍ ଇଂଜିନିୟର ଧର୍ମପଦ କନ୍‌ସଲ୍‌ଟାନ୍ସି ଗଠନ କରିଥାନ୍ତି । ତାଙ୍କ କାର୍ଯ୍ୟାଳୟରେ ଏକଥା ଆଲୋଚନା କରି ସେମାନେ ନିଷ୍ପତ୍ତି ନେଲେ ଯେ ଇଦ୍‌ଗା ପଡ଼ିଆରେ ଉତ୍କଳ ସମ୍ମିଳନୀ ପାଇଁ ମିଳିବାକୁ ଥିବା ୧୮ ଗୁଣ୍ଠ ଜମିରେ ଏକ ବହୁତଳ ପ୍ରାସାଦ ତିଆରି କରାଯିବ । ସେମାନଙ୍କର ଏକ ପାଞ୍ଚ ଜଣିଆ ପ୍ରତିନିଧି ଦଳ ଆସି ଇଦ୍‌ଗାପଡ଼ିଆ ବୁଲିଗଲେ । ଆମକୁ ଯେଉଁ ଜମି ମିଳବାକଥା ସେ ଜମିକୁ ମାପି ଦେଖାଇ ଦେବାକୁ ଅମୀନ ପାଇଁ ଦୌଡ଼ି ଦୌଡ଼ି ଦିନେ ତହସିଲ ଅଫିସରୁ ଖବର ମିଳିଲା ଯେ କାଲି ଅମୀନ ଯିବେ । ମୁଁ ଯାଇ ଅନନ୍ତ ବାବୁଙ୍କ ଘରେ ଅପେକ୍ଷା କରି ବସିଲି । ଅମୀନ ବାବୁ ଆସି ଦିନ ୧୧ଟା ବେଳକୁ ପହଞ୍ଚିଲେ । ସେତେବେଳକୁ ମୋ ଛଡ଼ା ସେଠାରେ ଆଉ କେହି ନଥାନ୍ତି । ଅମୀନ ବାବୁ ପଚାରିଲେ ଆପଣଙ୍କର କିଏ ଲୋକ ଚେନ୍ ଟାଣିବାକୁ ଅଛନ୍ତି କି ? କହିଲି ଏକଥା ଆପଣ କାଲି କହିଥିଲେ ହୋଇଥାନ୍ତା । ସେ କହିଲେ ଯଦି କେହି ନାହାନ୍ତି ତାହେଲେ ଆଉ ଦିନକୁ ଏ କାର୍ଯ୍ୟ ରଖିବା । ସେଦିନ ଥାଏ ମେ' ମାସ ୧୭ ତାରିଖ । ଏଗାରଟା ବେଳକୁ ସର୍ବତ୍ର ଅଗ୍ନିବୃଷ୍ଟି ଆରମ୍ଭ ହୋଇଯାଇଥାଏ । କହିଲି, ଚକେଗଲେ ବାରହାତ ନ୍ୟାୟରେ ଆଜି ଦିନଟା କେବେ ଆସିବ କହି ହେବ ନାହିଁ । ଏବେ ମୁଁ ନିଜେ ଚେନ୍ ଟାଣିବି । ଏହା କହି ସେ ଖରାରେ ଚେନ୍ ଟାଣିଟାଣି ବୁଲିଲି । ପ୍ରାୟ ଦିନ ଗୋଟାଏ ବେଳକୁ କାମ ସରିଲା । ସେଦିନର ଖରାରେ ଶିଝି ଶିଝି ଘରକୁ ଫେରିବା ପରେ ମୁଁ ଦୁଇ ତିନି ଦିନ ବିଛଣାରେପଡ଼ିଗଲି । ଅମିନ ଉପସ୍ଥିତିରେ ମୁଁ ନିଜେ ଚେନ୍ ଟାଣି ଟାଣି ମାପିଥିବାରୁ ସେଜାଗା ଠିକ୍ ଭାବେ ସବୁ ଦେଖି ପାରିଲି । ଏବେ ସେ ଜାଗାରେ ବହୁଲୋକ ଜବର ଦଖଲ କରି ଘର ତିଆରି କରି ବସବାସ କରୁଛନ୍ତି । ଧର୍ମପଦ କନ୍‌ସଲ୍‌ଟାନ୍ସିର ଇଞ୍ଜିନିୟରମାନେ କହିଲେ ସେମାନଙ୍କୁ ସେ ସ୍ଥାନରୁ ଉଚ୍ଛେଦ କରାଗଲେ ପାଚେରୀ ଘେରାଇ ଉତ୍କଳ ସମ୍ମିଳନୀ ପ୍ରାସାଦ ତିଆରି କରାଯିବ । ତେବେ ଏଥିଲାଗି ସେମାନେ ଗୋଟିଏ ପାଞ୍ଚ ମହଲା ଘରର ନକ୍ସା ପ୍ରସ୍ତୁତ କରିଥିଲେ । ଦୁଇ ହଜାର ବର୍ଗଫୁଟ ତଳମହଲା

ଘର ଉପରେ ଆଉ ଚାରିମହଲା କୋଠା ତୋଳାଯାଇ ଉପରେ ଉତ୍କଳ ଜନନୀଙ୍କ ମନ୍ଦିର ରହିବ । ବାହାରେ ପାର୍କିଂ ଲଟ୍ ରହିବ । ତଳମହଲାରେ ପ୍ରକାଣ୍ଡ ସଭାଗୃହ, ତା ଉପରେ ସମ୍ମିଳନୀର କାର୍ଯ୍ୟାଳୟ ଓ ଅତିଥିଭବନ । ତୃତୀୟ ମହଲାରେ ଉତ୍କଳର ବରପୁତ୍ରମାନଙ୍କ ପ୍ରତିମୂର୍ତ୍ତି । ତା ଉପରେ ଓଡ଼ିଶାର କଳା ଓ ସଂସ୍କୃତି ସମ୍ପର୍କୀୟ ତଥ୍ୟ ଓ ଐତିହାସିକ ତଥ୍ୟାବଳି । ପଞ୍ଚମ ମହଲାରେ ପାଠାଗାର ଓ ଭିଡ଼ିଓ କୋଠରୀ । ବହୁ ପରିଶ୍ରମ କରି ସେମାନେ ଏ ସମ୍ପର୍କୀୟ ତିନିଗୋଟି ସ୍କେଚ୍ ମ୍ୟାପ ବା ନକ୍ସା ଆଣି ଦେଇଗଲେ । ସେସବୁର ଆମୋନିଆ ଛପା ନକଲ ଓଡ଼ିଶା ସଚିବାଳୟର ରାଜସ୍ୱ ବିଭାଗକୁ ପଠାଇ ଶୀଘ୍ର ଉତ୍କଳ ସମ୍ମିଳନୀକୁ ଇଦ୍‌ଗାପଡ଼ିଆ ଜମି ଦେବା ପାଇଁ ଦରଖାସ୍ତ ଦେଇ ଆସିଲି ।

ପ୍ରାୟ ପ୍ରତି ମାସରେ ଜିଲାପାଳ, ଉପଜିଲାପାଳ, ତହସିଲଦାରଙ୍କ କାର୍ଯ୍ୟାଳୟକୁ ଧାଇଁ ଧାଇଁ ହାରାହାରି ଦେଢ଼ବର୍ଷ ପରେ କଟକ ଜିଲାପାଳଙ୍କ ରାଜସ୍ୱ କାର୍ଯ୍ୟାଳୟରୁ ନଗର ଉନ୍ନୟନ ବିଭାଗକୁ ଏ ସମ୍ପର୍କରେ ପ୍ରସ୍ତାବ ଦିଆଗଲା । ସେଥିଲାଗି ସଚିବାଳୟକୁ ବରାବର ଧାଇଁବାକୁ ପଡ଼ିଲା । ନଗର ଉନ୍ନୟନ ବିଭାଗ ରାଜସ୍ୱ ବିଭାଗକୁ ଏହି ପ୍ରସ୍ତାବ ପଠାଇଦେଲେ । ଏଥିମଧ୍ୟରେ ଉତ୍କଳ ସମ୍ମିଳନୀର ଶତବାର୍ଷିକୀ ଉତ୍ସବ କଟକରେ ହେବାକଥା ନିଷ୍ପତ୍ତି ହେବାପରେ ଏହି ଜମିକୁ ଉତ୍କଳ ସମ୍ମିଳନୀ ନାମରେ କରିଦେବା ପାଇଁ କେନ୍ଦ୍ର କମିଟି ପକ୍ଷରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ଦରଖାସ୍ତ ଦିଆଗଲା ।

କଟକରେ ଶତବାର୍ଷିକୀ ଉତ୍ସବ ହେବାର ନିଷ୍ପତ୍ତି ହେଲା । ୨୦୦୩ ଡିସେମ୍ବର ୩୦ ଓ ୩୧ ତାରିଖ ଦୁଇଦିନ ଧରି ଇଦ୍‌ଗା ପଡ଼ିଆରେ ଏହି ଅଧିବେଶନ ବସିବା ପାଇଁଏକ ପ୍ରସ୍ତୁତି ବୈଠକ ଗଡ଼ଗଡ଼ିଆ ମହାଦେବଙ୍କ ମନ୍ଦିର ପ୍ରାଙ୍ଗଣରେ ଡକାଗଲା । ଏହି ବୈଠକରେ ଆବାହକ କମିଟି ଗଠିତ ହେଲା ।

୨୦୦୨ ମସିହା ନଭେମ୍ବର ମାସରେ ଜୟପୁରଠାରେ ଅନୁଷ୍ଠିତ ଅଧିବେଶନରେ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀଙ୍କୁ ବିଧିବଦ୍ଧ ଭାବେ ସମ୍ମିଳନୀର ସଭାପତି କରାଯାଇଥିଲା ଓ ସାତଜଣ ଉପସଭାପତିଙ୍କ ସହିତ ସାତଜଣ ସମ୍ପାଦକ; ଜଣେ ସାଧାରଣ ସମ୍ପାଦକ ଜଣେ କୋଷାଧ୍ୟକ୍ଷ ରହିବା ନିଷ୍ପତ୍ତି ନିଆଗଲା । ମୁଁ ଜଣେ ଉପସଭାପତି ଭାବେ ନିର୍ବାଚିତ ହେଲି । ଗଡ଼ଗଡ଼ିଆ ବୈଠକରେ ଅଧିବକ୍ତା ଶ୍ରୀ ବିପନ ବିହାରୀ ରଥ ପ୍ରସ୍ତାବ ଦେଲେ ଯେ ଗୁରୁବାବୁ କେନ୍ଦ୍ର କମିଟିର ଉପ-ସଭାପତି ଭାବେ ନିର୍ବାଚିତ ହେବା ପରେ କଟକ ଜିଲ୍ଲାର ସଭାପତି ରହିବା ଉଚିତ ହେବ ନାହିଁ । ତେଣୁ ଅନ୍ୟ ଜଣଙ୍କୁ ଏହି ଦାୟିତ୍ୱ ଦିଆଯାଉ । ଅଭୟ ବାବୁ ଅଧାପକ ଶ୍ୟାମସୁନ୍ଦର ମିଶ୍ରଙ୍କ ନାମ ପ୍ରସ୍ତାବ କଲେ । ଏହା ସର୍ବସମ୍ମତି କ୍ରମେ ଗୃହୀତ ହୋଇଗଲା । ମାତ୍ର କଟକଜିଲ୍ଲାର ସଂଗଠନ ସଂପାଦକ ଶ୍ରୀ ବିଜୟ କୁମାର ଚକ୍ରବର୍ତ୍ତୀ କହିଲେ, କଟକର ଶତବାର୍ଷିକୀ ଉତ୍ସବ ନ ସରିବା ପର୍ଯ୍ୟନ୍ତ

ଗୁରୁବାବୁ ସଭାପତି ଦାୟିତ୍ୱରେ ରହନ୍ତୁ । ମୁଁ ତାଙ୍କୁ ବୁଝାଇ କହିଲି ଯେ ଥରେ ଜଣଙ୍କୁ ସଭାପତି ପଦ ପାଇଁ ମନୋନୀତ କରିବାପରେ ଆଉ ତାର ପରିବର୍ତ୍ତନ ନକରି ପ୍ରସ୍ତାବକୁ ମାନି ନିଆଯାଉ । ସେ କହିଲେ, ଆପଣ ସଭାପତି ରହିଥିଲେ ଯେପରି ସମସ୍ତ ଦାୟିତ୍ୱ ନେଇ ଶତବାର୍ଷିକୀ ଉତ୍ସବ ସମ୍ପାଦନ କରନ୍ତେ ଶ୍ୟାମବାବୁ ସେପରି କରିପାରିବେ ନାହିଁ । ତେଣୁ ଶ୍ୟାମବାବୁ ସଭାପତି ଥାଇ ଆପଣ ସେ କାର୍ଯ୍ୟ ତୁଲାଇବାକୁ ସମ୍ମତି ଦେଲେ ମୋର କୌଣସି ଆପତ୍ତି ନାହିଁ । ମୁଁ ତାଙ୍କ କଥାରେ ସମ୍ମତି ଜଣାଇ ସବୁ ଦାୟିତ୍ୱ ଠିକ୍ ଭାବେ ପ୍ରତିପାଦିତ କରିବି ବୋଲି ଜବାବଦେଲି । ସେହି ଦିନରୁ ଶ୍ୟାମବାବୁ ହେଲେ କଟକ ଜିଲ୍ଲା ସଭାପତି । ମାତ୍ର ଜିଲ୍ଲା ଶାଖାର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସବୁ ମୁଁ କରୁଥିଲି ।

ଉତ୍କଳ ସାହିତ୍ୟସମାଜର ସଭାପତି ଶ୍ରୀ ଅନ୍ନଦା ପ୍ରସାଦ ରାୟଙ୍କ ଘରେ ଶତବାର୍ଷିକୀ କମିଟିର ବୈଠକ ବସିଲା । ଗଡ଼ଗଡ଼ିଆ ବୈଠକରେ ସେ ଆବାହକ କମିଟିର ସଭାପତି ନିର୍ବାଚିତ ହୋଇଥିଲେ । କାଠଯୋଡ଼ି ରିଂ ବନ୍ଧ କଡ଼ରେ ତାଙ୍କ କୃଷ୍ଣକାନ୍ତ ଭବନର ଗୋଟିଏ ବଖରା ଘରେ ଶତବାର୍ଷିକୀ କମିଟି କାର୍ଯ୍ୟାଳୟ କରାଗଲା । ସେହି କାର୍ଯ୍ୟାଳୟରେ ପ୍ରତିଦିନ ସନ୍ଧ୍ୟାରେ ସଭ୍ୟମାନେ ବସି ଏହି ଉତ୍ସବର ଆୟୋଜନ ବ୍ୟବସ୍ଥା କରିବେ । ତଦନୁଯାୟୀ ତା ପରଦିନ ସନ୍ଧ୍ୟାରୁ ମୁଁ ସେହି କାର୍ଯ୍ୟାଳୟରେ ଯାଇ ବସିଲି । ମାତ୍ର ଗୋଟିଏ ସପ୍ତାହ ପର୍ଯ୍ୟନ୍ତ କୌଣସି ସଭ୍ୟ ସେଠାକୁ ଆସିଲେ ନାହିଁ । ଏପରିକି ସଭାପତି ଦାୟୀତ୍ୱରେ ଥିବା ଶ୍ୟାମବାବୁ କିମ୍ବା ସମ୍ପାଦକ ଅଭୟବାବୁ ସେଠାକୁ ଆସୁନଥିଲେ । ଯିଏ ବା ଆସିଲେ ସେଠାରେ ବସି କିଛି କରିବାପାଇଁ ସେମାନଙ୍କ ହାତରେ ସମୟ ନଥିଲା । ଦିନେ କଟକ ସୁରକ୍ଷା ସମିତିର ପ୍ରତିଷ୍ଠାତା ସଭାପତି ଶ୍ରୀ ସରୋଜ ସିଂହ ଆସି ପଚାରିଲେ କେମିତି କାମ ଚାଲିଛି ? ଏ ଦିଗରେ ତାଙ୍କୁ ମୋର କୌଣସି ଅଗ୍ରଗତି କଥା କହିବା ପାଇଁ ନ ଥିଲା । ସେ କହିଲେ ଯଦି କେହି ଆପଣଙ୍କ ପାଖରେ ବସୁ ନାହାନ୍ତି ତେବେ ମୁଁ ବସିବି । ମାତ୍ର ଆପଣ ଏଠି ନ ବସି ମୋ ଅଫିସରେ ଯଦି ବସିବେ ତାହେଲେ ହେବ ।

ଭାବିଲି : ଏଠି ଗୋଟିଏ ସପ୍ତାହ ବସିବସି କିଛି କରିହେଲା ନାହିଁ । ସରୋଜ ବାବୁଙ୍କ ପ୍ରସ୍ତାବ ଅନୁଯାୟୀ ତାଙ୍କ ଘରେ ବସି ୪/୫ ଦିନ ଦେଖିବା । ତାପର ଦିନଠାରୁ ତାଙ୍କ କାର୍ଯ୍ୟାଳୟରେ ବସି ଶତବାର୍ଷିକୀ ପାଇଁ ପ୍ରସ୍ତୁତି ଆରମ୍ଭକଲି । ପ୍ରତିଦିନ କିଛି ନାକିଛି କାମ ଆଗେଇ ଚାଲିଲା । ପ୍ରାୟ ଏକ ହଜାର ଲୋକଙ୍କ ପାଇଁ ଦୁଇ ଦିନ ରହଣି, ଖାଦ୍ୟ ଓ ବିଭିନ୍ନ କାର୍ଯ୍ୟକ୍ରମ ଲାଗି ପ୍ରଚୁର ଅର୍ଥ ଆବଶ୍ୟକ । ତତ୍କାଳୀନ ନଗରଉନ୍ନୟନ ମନ୍ତ୍ରୀ ସମୀର ଦେ'ଙ୍କ ଆହ୍ୱାନ କ୍ରମେ କଟକ ଅର୍ବାନ ବ୍ୟାଙ୍କ ମୁଖ୍ୟ କାର୍ଯ୍ୟାଳୟରେ ଏକ ପ୍ରସ୍ତୁତି ବୈଠକ ହେଲା । ସେତେବେଳେ ଶ୍ରୀ ସଜ୍ଜନଶର୍ମା ଅର୍ବାନବ୍ୟାଙ୍କ ସଭାପତି ଥାଆନ୍ତି । ସେଠାରେ ସଭା ଡାକିବାର ସମସ୍ତ ଦାୟୀତ୍ୱ ସେ ନେଲେ । କଟକର ବହୁ ନେତୃସ୍ଥାନୀୟ

ବ୍ୟକ୍ତି ଏହି ସଭାରେ ଯୋଗଦେଲେ । ଏହି ଉତ୍ସବଲାଗି କିଏ କେତେ ଦାନ କରିବେ ତାର ଏକ ତାଲିକା ପ୍ରସ୍ତୁତ ହେଲା । ଏହାର ପରିମାଣ ତେରଲକ୍ଷ ଟଙ୍କାରୁ ସାମାନ୍ୟ ଅଧିକ ଥିଲା । ମାତ୍ର ପ୍ରାରମ୍ଭିକ ଖର୍ଚ୍ଚ ତୁଲାଇବାଲାଗି ହାତରେ କିଛି ନଥିଲା । ତେଣୁ ହାତକୁ ଟଙ୍କା ଆସିବା ପର୍ଯ୍ୟନ୍ତ ମୁଁ ମୋ ନିଜ ଆକାଉଣ୍ଟରୁ ପଚିଶହଜାର ଟଙ୍କାଆଣି କାର୍ଯ୍ୟ ଆରମ୍ଭକଲି । ଇତି ମଧ୍ୟରେ ସମାଜ ଅନୁଷ୍ଠାନ ପକ୍ଷରୁ ୪୫ ହଜାର ଟଙ୍କା ମିଳିଗଲା । ଆଉ କେହି କିଛି ଦବାର ନାଁ ଧରୁନଥାନ୍ତି । ମେୟର୍ ନିବେଦିତା ପ୍ରଧାନଙ୍କୁ ସହୀଦ ଭବନ ଓ କଳିଙ୍ଗ ଜିମ୍ନାସିୟମ ଅତିଥିଭବନ ସହିତ ଗେଷ୍ଟହାଉସ୍ ଦେବାପାଇଁ ଅନୁରୋଧ କଲି । ସେ ସମୀର ବାବୁଙ୍କ ସହିତ ଆଲୋଚନା କରି ସେତକ ସୁବିଧା କରାଇଦେଲେ । ବିଭିନ୍ନ ଜିଲ୍ଲାରୁ ଆସୁଥିବା ଅତିଥିମାନଙ୍କ ପାଇଁ ରହିବାର ସୁବିଧା ହୋଇଗଲା ।

ସହୀଦ ଭବନରେ ସଭା ହେବାର ବ୍ୟବସ୍ଥା ହେଲା । ୩୦ ତାରିଖ ଦିନର ସାଧାରଣ ସଭା କରିବାକୁ ମାରୁତି ମଣ୍ଡପରେ ପ୍ରାୟ ତିନିହଜାର ଲୋକ ବସିବା ଲାଗି ତମ୍ବୁ ବାନ୍ଧିବାର ବ୍ୟବସ୍ଥା ହେଲା । ତେଣେ ଇଦ୍‌ଗାପଡ଼ିଆରେ କଟକ ଉନ୍ନୟନ କର୍ତ୍ତୃପକ୍ଷଙ୍କ ଦ୍ୱାରା ଉତ୍କଳସମ୍ମିଳନୀ ସ୍ମାରକୀ ସ୍ତମ୍ଭର ଶିଳାନ୍ୟାସ ଲାଗି କାମ ଚାଲିଥାଏ । ଉତ୍କଳ ସମ୍ମିଳନୀର ସମସ୍ତ ଜିଲା ଶାଖାମାନଙ୍କୁ ଗୋଟିଏ ଗୋଟିଏ ରଥ ପ୍ରସ୍ତୁତ କରିବା ଲାଗି ନିବେଦନ କରାଗଲା । ୩୦ ତାରିଖ ଭୋର ସାଢ଼େସାତଟାରେ ବାଦାମବାଡ଼ି ଛକରୁ ରଥସବୁ ପଟୁଆରରେ ଆସିବେ । ଏହି ପଟୁଆରରେ କଳାହାଣ୍ଡି ରାମକୃଷ୍ଣ ଆଶ୍ରମର ଛୋଟ ଛୋଟ ପିଲାମାନେ ଘୁମୁରା ନୃତ୍ୟ, ଆଦିବାସୀ ନୃତ୍ୟ ଓ କୀର୍ତ୍ତନ କରିବେ । କଟକର ବହୁ ସଂକୀର୍ତ୍ତନ ଦଳ, ଲଉଡ଼ି ଦଳ, ଛାତ୍ରଛାତ୍ରୀ ଓ ଯୁବଗୋଷ୍ଠି ଶହଶହ ସଂଖ୍ୟାରେ ଏହି ପଟୁଆରରେ ଯୋଗ ଦେବା କଥା ହେଲା । ଏତେଗୁଡ଼ିଏ ଲୋକଙ୍କ ପାଇଁ ଜଳଖିଆ, ମଧ୍ୟାହ୍ନ ଭୋଜନ ଓ ରାତ୍ରିଭୋଜନ ଦେବାପାଇଁ କେତେକ ଅନୁଷ୍ଠାନ ରାଜି ହେଲେ । ତନ୍ମଧ୍ୟରୁ 'ରୁଚି' ମସଲାର ଅଧ୍ୟକ୍ଷ ଶ୍ରୀ ଶରତ ସାହୁଙ୍କର ସହଯୋଗ ଉଲ୍ଲେଖନୀୟ । ସେ ମହାଶୟ ତିନି ଦିନ ପାଇଁ ଅତିଥିମାନଙ୍କୁ ଖାଦ୍ୟ ଯୋଗାଇବା ପାଇଁ ରାଜି ହୋଇଗଲେ । ଡିସେମ୍ବର ୨୯ ତାରିଖ ରାତି, ୩୦ ତାରିଖ ମଧ୍ୟାହ୍ନ ଓ ରାତ୍ରିଭୋଜନ ସହିତ ୩୧ ତାରିଖ ମଧ୍ୟାହ୍ନ ଭୋଜନ ଦାୟିତ୍ୱ ସେ ନେଲେ ।

ଆମର ଶତବାର୍ଷିକୀ ସ୍ମରଣିକା ଛପାଇବା ଲାଗି ଶ୍ରୀ ରଘୁନାଥ ମହାପାତ୍ର; ଡକ୍ଟର ଶ୍ୟାମସୁନ୍ଦର ମିଶ୍ର, ଅଧ୍ୟାପକ ଶ୍ୟାମା ପ୍ରସନ୍ନ ମିଶ୍ର ଓ ଅଭୟ ସାମନ୍ତରାୟ ପ୍ରମୁଖ ଲାଗି ପଡ଼ିଥାନ୍ତି । ସରୋଜ ସିଂ ତାଙ୍କର ଲୋକମାନଙ୍କୁ ଲଗାଇ ମାନପତ୍ର ଛପାଇବା, ନିମନ୍ତ୍ରଣ କାର୍ଡ଼ ଛାପିବା ଓ ବାଣ୍ଟିବା ଆଦି କାର୍ଯ୍ୟରେ ଲାଗି ଥାଆନ୍ତି । ଯଥା ସମୟରେ ଆମର ଶତବାର୍ଷିକୀ ଉତ୍ସବ ପାଳନ କାର୍ଯ୍ୟ ଆରମ୍ଭ ହୋଇଗଲା ।

ବିଭିନ୍ନ ଜିଲ୍ଲାରୁ ଅତିଥିମାନେ ଆସି ଡିସେମ୍ବର ୨୯ ତାରିଖ ସନ୍ଧ୍ୟା ସୁଦ୍ଧା ପହଞ୍ଚିଗଲେ । ସେମାନଙ୍କୁ କଳିଙ୍ଗ ଅତିଥିଭବନ, ମ୍ୟୁନିସିପାଲ୍‌ଟି ଅତିଥିଭବନ ଓ ସହୀଦ ଭବନ ଉପର ମହଲାରେ ରଖାଇ ଦିଆଗଲା । ପରଦିନ ଭୋର ସାଢ଼େ ସାତଟା ବେଳକୁ ବାଦାମବାଡ଼ି ଛକଠାରେ କଟକ; ଖୋର୍ଦ୍ଧା, ଜଗତସିଂହପୁର, ଭୁବନେଶ୍ୱର, କେନ୍ଦ୍ରପଡ଼ା ଶାଖା ପକ୍ଷରୁ ଉତ୍କଳ ଜନନୀଙ୍କ ରଥସବୁ ଘଣ୍ଟବାଦ୍ୟ, ସଂକୀର୍ତ୍ତନ, ଘୁମୁରାନୃତ୍ୟ, ପାଇକଆଖଡ଼ା ସହିତ ପଟୁଆରରେ ବାହାରି ଦୋଳମୁଣ୍ଡେଇ, ମଙ୍ଗଳାବାଗ, ନୂଆପାଟଣା, ବକ୍ସିବଜାର, ତିନିକୋଣିଆ ବଗିଚା, ଦରଘାବଜାର ଓ ଚୌଧୁରୀବଜାର ଦେଇ ପ୍ରାୟ ସାଢ଼େଦଶଟା ସୁଦ୍ଧା ଚୌଧୁରୀବଜାର ମାରୁତି ମଣ୍ଡପରେ ପହଞ୍ଚିଲେ । ସକାଳ ଆଠଟାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନପଟ୍ଟନାୟକ ତାଙ୍କର ସମସ୍ତ କ୍ୟାବିନେଟ ମନ୍ତ୍ରୀଙ୍କ ସହିତ ଇଦ୍‌ଗା ପଡ଼ିଆକୁ ଆସି ଉତ୍କଳ ସମ୍ମିଳନୀ ସ୍ମୃତିସ୍ତମ୍ଭର ଶିଳାନ୍ୟାସ କଲେ । ତାଙ୍କର ଏହି କାର୍ଯ୍ୟକ୍ରମକୁ କଟକ ମହାନଗର ନିଗମ ଓ ଜିଲ୍ଲାପାଳ ଆୟୋଜନ କରିଥିଲେ । ଶିଳାନ୍ୟାସ ପରେ ମୁଖ୍ୟମନ୍ତ୍ରୀ ତାଙ୍କ ମନ୍ତ୍ରୀ ମଣ୍ଡଳର ଅଧିକାଂଶ ସଦସ୍ୟଙ୍କ ସହିତ ମାରୁତି ମଣ୍ଡପକୁ ଆସି ପ୍ରାୟ ତିନିହଜାର ଲୋକ ଜମିଥିବା ଉତ୍କଳ ସମ୍ମିଳନୀର ସାଧାରଣ ସଭାରେ ଯୋଗ ଦେଲେ ।

ସମ୍ମିଳନୀ ପକ୍ଷରୁ ପ୍ରାୟ କୋଡ଼ିଏ ଜଣ ଯୋଗ୍ୟ ବ୍ୟକ୍ତିଙ୍କୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସମ୍ମାନିତ କଲେ । ସମ୍ମାନିତ ବ୍ୟକ୍ତିମାନଙ୍କ ମଧ୍ୟରେ ଯୁକ୍ତରାଷ୍ଟ୍ର ଆମେରିକାର ଡଲାସ୍ ଓ କାନାଡ଼ାର ଟରଣ୍ଟୋରୁ ଆସିଥିବା ଦୁଇଜଣ ସଦସ୍ୟ ସଦସ୍ୟା ମଧ୍ୟ ଥିଲେ । ସମ୍ମିଳନୀର ସଭାପତି ଶ୍ରୀ ବସନ୍ତକୁମାର ପାଣିଗ୍ରାହୀଙ୍କ ହାତରେ ମୁଖ୍ୟମନ୍ତ୍ରୀ ଇଦ୍‌ଗାପଡ଼ିଆରେ ଥିବା ଶିଲିଂ ବହିର୍ଭୂତ ଜମିର ଖତିଆନ୍ ଅର୍ପଣ କଲେ । ପରବର୍ତ୍ତୀ ସମୟରେ ଏହି ଜମିରେ ସ୍ମୃତିସ୍ତମ୍ଭ ତିଆରି କରିବାକୁ ଜବରଦଖଲକାରୀଙ୍କ ଠାରୁ ମୁକ୍ତ କରାଇ ପାଚେରୀ ଘେରାଇ ଦିଆଯିବ ବୋଲି ମଧ୍ୟ ସଭାପତି ସୂଚନା ଦେଲେ । ଷଢ଼େଇକଲା-ଖରସୁଆଁରେ ଶିକ୍ଷକ ଭାବେ ୧୯୪୫ରୁ କାର୍ଯ୍ୟ କରିଥିବା ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ଓ ଭଗବାନ ରଥଙ୍କୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଫୁଲତୋଡ଼ା ଦେଇ ସମ୍ବର୍ଦ୍ଧନା ଜଣାଇଥିଲେ । ବହୁ ବିଶିଷ୍ଟ ସମାଜସେବୀ ମଧ୍ୟ ସମ୍ମାନିତ ହେଲେ । ରାଜସ୍ୱମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ଗଣଶିକ୍ଷାମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ, ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ସମୀର ଦେ, ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ, ଶକ୍ତିମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ପ୍ରମୁଖ ମନ୍ତ୍ରୀମାନେ ଓଡ଼ିଶା ଗଠନରେ ଉତ୍କଳ ସମ୍ମିଳନୀଙ୍କ ଅବଦାନ ଏବଂ ଓଡ଼ିଆଭାଷା, ସାହିତ୍ୟ, ସଂସ୍କୃତି ତଥା ରାଜ୍ୟର ସୀମା ସୁରକ୍ଷା ଦିଗରେ ଉତ୍କଳ ସମ୍ମିଳନୀଙ୍କ ଭୂମିକା ଉପରେ ଆଲୋକପାତ କରି ଏହି ସଙ୍ଗଠନର ଉତ୍ତରୋତ୍ତର ଉନ୍ନତି କାମନା କରିଥିଲେ ।

ଉଦ୍‌ଘାଟନୀ ଉତ୍ସବ ପରେ ଦୁଇ ଦିନ ଧରି ସମ୍ମିଳନୀର କାର୍ଯ୍ୟକ୍ରମ ଚାଲିଲା । ବିଭିନ୍ନ ଜିଲ୍ଲାରୁ ଆସିଥିବା ଅତିଥିମାନେ ଏହି ଆଲୋଚନାରେ ଭାଗ ନେଲେ । କଟକର ଇଦ୍‌ଗାପଡ଼ିଆରେ ଏକଶହ ବର୍ଷତଳେ, ଆରମ୍ଭ ହୋଇଥିବା ଉତ୍କଳ ସମ୍ମିଳନୀର ଶତବାର୍ଷିକୀ ଉତ୍ସବ ମାରୁତିମଣ୍ଡପରେ ଶେଷ ହେଲା ।

ସମ୍ମିଳନୀରେ ନିମ୍ନୋକ୍ତ ପ୍ରସ୍ତାବମାନ ଗୃହୀତ ହେଲା । -

୧. ଓଡ଼ିଆ ଭାଷାକୁ ସରକାରୀ ଭାଷା କରାଯାଉ । ସମସ୍ତ ସରକାରୀ କାର୍ଯ୍ୟାଳୟରେ ଥିବା ନଥି ଓ କାଗଜପତ୍ରରେ କେବଳ ଓଡ଼ିଆ ଭାଷାରେ ଟୀକା ଟିପ୍ପଣୀ ଲେଖାଯାଉ ।

୨. ଓଡ଼ିଶାର ଉପାନ୍ତ ଜିଲାମାନଙ୍କରେ ଜିଲାପାଳ ଏସ୍.ପି. ଏବଂ ଡି.ଏଫ୍.ଓ. ପଦବୀରେ କେବଳ ଓଡ଼ିଆ ଲୋକଙ୍କୁ ରଖାଯାଉ ।

୩. ଭୁବନେଶ୍ୱର ବା ଖୋର୍ଦ୍ଧା ଠାରୁ ଫୁଲବାଣୀ ଦେଇ ବଲାଙ୍ଗିର ପର୍ଯ୍ୟନ୍ତ ରେଳରାସ୍ତା ନିର୍ମାଣ କରାଯାଉ । ଓଡ଼ିଶାର ସମସ୍ତ ଜିଲାକୁ ରେଳଦ୍ୱାରା ସଂଯୋଗ କରାଯାଉ ।

୪. ଓଡ଼ିଶାର ଖଣିଜ ପଦାର୍ଥସବୁ ଅନ୍ୟରାଜ୍ୟକୁ ନ ଦେଇ ଏହି ରାଜ୍ୟରେ କଳକାରଖାନା ସ୍ଥାପନକରି ସେ ସବୁର ବ୍ୟବହାର କରାଯାଉ ।

୫. ରାଜ୍ୟର ପ୍ରତି ପଞ୍ଚାୟତକୁ ଚଉଡ଼ା ପିଚୁରାସ୍ତା ଦ୍ୱାରା ସଂଯୁକ୍ତ କରାଯାଉ ।

୬. ବିଚ୍ଛିନ୍ନାଞ୍ଚଳର ପ୍ରତି ଓଡ଼ିଆ ଗ୍ରାମରେ ଥିବା ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷକ ଦିଆଯାଇ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଛାତ୍ରଛାତ୍ରୀମାନଙ୍କୁ ମାତୃଭାଷା ଶିକ୍ଷାଦିଆଯାଉ ।

୭. ଓଡ଼ିଶାରେ ଥିବା ସମସ୍ତ ସରକାରୀ ଓ ବେସରକାରୀ କାର୍ଯ୍ୟାଳୟ, କଳକାରାଖାନା ବା ପ୍ରତିଷ୍ଠାନମାନଙ୍କରେ କେବଳ ଓଡ଼ିଆମାନଙ୍କୁ ଚାକିରୀ ଦିଆଯାଉ ।

## ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଝାଡ଼ଖଣ୍ଡରେ କବିତା ପାଠୋତ୍ସବ

ଉତ୍କଳ ସାହିତ୍ୟ ସମାଜର ତତ୍‌କାଳୀନ ସାଧାରଣ ସମ୍ପାଦକ ଅଧ୍ୟାପକ ବିଜୟାନନ୍ଦ ସିଂ କହିଲେ ଝାଡ଼ଖଣ୍ଡ ରାଜ୍ୟରେ ଓଡ଼ିଆମାନେ ନିଜ ମାତୃଭାଷା ଓଡ଼ିଆକୁ ଏପର୍ଯ୍ୟନ୍ତ ବଜାୟ ରଖିପାରିଛନ୍ତି । ସେମାନଙ୍କ ଭିତରେ ଓଡ଼ିଆତ୍ୱ ଏବଂ ଓଡ଼ିଆର ସ୍ୱାଭିମାନ ଭରିରହିଛି । ସେମାନଙ୍କ ମଧ୍ୟରେ ଅନେକ ଲେଖକ ଓ କବି ଥାଇପାରନ୍ତି । ଯେଉଁମାନଙ୍କର ଲେଖକୀୟ ପ୍ରତିଭା ରହିଛି ସେହି ପ୍ରତିଭାର ବିକାଶ ଲାଗି ସେଠାରେ କୌଣସି ସୁଯୋଗ

ନାହିଁ । ସେଭଳି କିଛି ଲୋକଙ୍କୁ ଯଦି ଏକ ସାହିତ୍ୟ ଆସରକୁ ଡକାଯାଇ ପାରନ୍ତା ତାହେଲେ ସେମାନେ ଉତ୍ସାହିତ ହୁଅନ୍ତେ । କହିଲି ସେ ରାଜ୍ୟର ଛଅଟି ଜିଲାରେ ଶହଶହ ଓଡ଼ିଆ ଗ୍ରାମ ରହିଛି । ସେ ସବୁ ଗ୍ରାମରେ ଓଡ଼ିଆ ସାହିତ୍ୟ ସୃଷ୍ଟିକାରୀ ବହୁ ପ୍ରତିଭାସମ୍ପନ୍ନ ଲୋକ ଥାଇ ପାରନ୍ତି । ମାତ୍ର ସେ ସମ୍ପର୍କରେ ଏପର୍ଯ୍ୟନ୍ତ କେହି ଚିନ୍ତା ବ୍ୟକ୍ତ କରି ନାହାନ୍ତି । ସେଭଳି ପ୍ରତିଭାମାନଙ୍କୁ ଖୋଜି ବାହାର କରିବା ପାଇଁ ମଧ ଚେଷ୍ଟା ହୋଇନାହିଁ । ଓଡ଼ିଶାର ଛଉନାଚ ସାରା ପୃଥିବୀରେ ଦିନେ ଖ୍ୟାତି ଅର୍ଜନ କରିଥିଲା । ଓଡ଼ିଆ ରାଜାମାନେ ଥିଲେ ଏହାର ମୁଖ୍ୟ ପୃଷ୍ଟପୋଷକ । ମୟୂରଭଞ୍ଜ ଓ ସିଂହଭୂମି ଥିଲା ଛଉନୃତ୍ୟର ଅନ୍ତୁଡ଼ିଶାଳ ।

ଏକଦା ଅବିଭକ୍ତ ସିଂହଭୂମି ଜିଲା ଥିଲା ଉତ୍କଳ ରାଜ୍ୟର ଏକ ଅଂଶ । ଷୋଡ଼ଶ ଶତାବ୍ଦୀରୁ ଏହି ଅଞ୍ଚଳ ଓଡ଼ିଶା ଠାରୁ ବିଚ୍ଛିନ୍ନ ହୋଇ ଛୋଟନାଗପୁର ଅନ୍ତର୍ଗତ କୋହ୍ଲଣ ଇଲାକା ସହିତ ସାମିଲ ହୋଇ ଯାଇଥିଲା । ଷଢ଼େଇକଳା , ଖରସୁଆଁ, କେରା ଓ ପୋଡାହାଟ ରାଜ୍ୟର ଓଡ଼ିଆ ରାଜାମାନଙ୍କ ପାଇଁ ସେସବୁ ରାଜ୍ୟରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସବୁ ବଜାୟ ରହିପାରିଛି । ଏସବୁ ରାଜ୍ୟ ବାହାରେଥିବା ଓଡ଼ିଆ ଅଞ୍ଚଳଗୁଡ଼ିକ ଉପରେ ହିନ୍ଦିଭାଷୀମାନେ ପ୍ରତିପତ୍ତି ବିସ୍ତାର କରି ଓଡ଼ିଆ ମାନଙ୍କର ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଲୋପ କରି ଦେବାକୁ ବହୁଚେଷ୍ଟା କରିଛନ୍ତି । ଏ ଦିଗରେ ସେମାନଙ୍କର ସବୁ ପ୍ରକାର ଷଡ଼ଯନ୍ତ୍ରକୁ ବରଦାସ୍ତ କରି ସିଂହଭୂମି ଅଞ୍ଚଳର ଓଡ଼ିଆମାନେ ନିଜ ମାତୃଭାଷା ଓଡ଼ିଆକୁ ଏ ପର୍ଯ୍ୟନ୍ତ ଦୂରେଇ ଦେଇ ନାହାନ୍ତି । ବରଂ ଏହାର ସୁରକ୍ଷା ଲାଗି ସେମାନେ ସଂଗ୍ରାମ କରି ଆସିଛନ୍ତି ।

ଷଢେଇକଳା ରାଜବଂଶ ପାଇଁ ଛଉ ନୃତ୍ୟ ଏବେ ପୃଥିବୀ ବିଖ୍ୟାତ ହୋଇଛି । ବହୁ ପ୍ରାଚୀନ କାଳରୁ ମୟୂରଭଞ୍ଜ ଓ ଷଢ଼େଇକଳାର ରାଜ ପରିବାର "ଛଉ" ନୃତ୍ୟର ବିକାଶ ଦିଗରେ କାର୍ଯ୍ୟ କରିଆସୁଛନ୍ତି । ମାତ୍ର ମୟୂରଭଞ୍ଜ ରାଜ ପରିବାର ଏବେ ଏହି ପ୍ରଚେଷ୍ଟାରୁ ବିରତ ରହିବା ସ୍ଥଳେ ଷଢ଼େଇକଳା ରାଜପରିବାର ଏବେମଧ "ଛଉ" ନୃତ୍ୟର ପ୍ରଚାର ଓ ପ୍ରସାର ଦିଗରେ କାର୍ଯ୍ୟ କରୁଛନ୍ତି । ଏ ଦେଶର କଳା ବୈଭବକୁ ଅନୁଭବ କରି ସେ ସବୁର ପ୍ରଚାର ପ୍ରସାର କରିବା ହିଁ ଆମର ସାଂସ୍କୃତିକ ଆବେଗ ବୋଲି କୁହାଯାଇପାରେ । ଏ ପ୍ରକାର ଆବେଗ ଷେଢ଼େଇକଳା ରାଜବଂଶର ଅସ୍ଥିମଜ୍ଜାଗତ ହୋଇଥିବାର ଅନୁଭୂତ ହୁଏ ।

ଏହି ରାଜବଂଶର ବିଜୟ ପ୍ରତାପ ସିଂହଦେଓ ବିଂଶ ଶତାବ୍ଦୀର ତୃତୀୟ ଦଶକରୁ "ଛଉନୃତ୍ୟ" ର ପ୍ରସାର ଦିଗରେ ବହୁ କାର୍ଯ୍ୟ କରିଛନ୍ତି । ସେ ନିଜେ ଥିଲେ ଛଉ ବିଶାରଦ । ଏ କ୍ଷେତ୍ରରେ ସେ ଅନେକ ଗବେଷଣା କରି ନୃତ୍ୟକଳାରେ ଅନେକ ପରିବର୍ତ୍ତନ

ଆଣିଥିଲେ । ମହାରାଜା ଆଦିତ୍ୟପ୍ରତାପଙ୍କ ପୁତ୍ର ରାଜକୁମାର ଶୁଭେନ୍ଦ୍ର ନାରାୟଣ ସିଂଦେଓ ଥିଲେ ଜଣେ ଧୂରୀଣ ଛଉନୃତ୍ୟ ଶିଳ୍ପୀ । ସେ ୧୯୧୭ ରୁ ୧୯୩୮ ପର୍ଯ୍ୟନ୍ତ ୟୁରୋପର ବିଭିନ୍ନ ଦେଶ ବୁଲି ଛଉନୃତ୍ୟ ପ୍ରଦାର୍ଶନ କରି ସୁନାମ ଅର୍ଜନ କରିଥିଲେ । ୧୯୩୭ ମସିହାରେ ଗାନ୍ଧିଜୀ ଓ ସୁଭାଷ ଚନ୍ଦ୍ର ବୋଷ ତାଙ୍କର ନୃତ୍ୟଦେଖି ପ୍ରସଂଶା କରିଥିଲେ । ୧୯୪୧ ମସିହାରେ କବିଗୁରୁ ରବୀନ୍ଦ୍ରନାଥ ମଧ୍ୟ ତାଙ୍କର ନୃତ୍ୟଦେଖି ଖୁସି ହୋଇଥିଲେ ।

ସେହି ବର୍ଷ (୧୯୪୧ ମସିହାରେ) ଷଢେିକଳା ମହାରାଜା ଆଦିତ୍ୟ ପ୍ରତାପ ସିଂଦେବ ଛଉ ଶିକ୍ଷାଲାଗି ଷଢେିକଳାରେ "ଶ୍ରୀକଳାପୀଠ" ସ୍ଥାପନ କରିଥିଲେ । ୧୯୪୭ ମସିହାରେ ଭାରତରେ ପ୍ରଥମ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନେହେରୁଙ୍କ ଦିଲ୍ଲୀସ୍ଥ ବାସ ଭବନରେ ଷଢେିକଳାର ଛଉନୃତ୍ୟ ପ୍ରଦର୍ଶିତ ହୋଇଥିଲା । ଏହାପରେ ରାଷ୍ଟ୍ରପତି ଭବନରେ ଓ ଲାଲକିଲା ଠାରେ ୟୁନେସ୍କୋ ପ୍ରତିନିଧିମାନଙ୍କ ସମ୍ମୁଖରେ ମଧ୍ୟ "ଛଉ" ପ୍ରଦର୍ଶିତ ହୋଇଥିଲା ।

୧୯୪୪ ମସିହାରେ ଶୁଭେନ୍ଦ୍ରଙ୍କ ଦେହାନ୍ତ ଘଟିଲା । ଫଳରେ "ଛଉ" କଳାପୀଠର ଦାୟୀତ୍ୱ ତାଙ୍କର ଭାଇ ବ୍ରଜେନ୍ଦ୍ର ଓ ଶିବେନ୍ଦ୍ରଙ୍କ ଉପରେ ନ୍ୟସ୍ତ ହେଲା । ୧୯୬୩ ମସିହାରେ ଏଥିଲାଗି ଶିବେନ୍ଦ୍ର ନାରାୟଣଙ୍କୁ ଭାରତୀୟ ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ମିଳିଲା ଓ ପୁଣି ୧୯୯୧ ମସିହାରେ ତାଙ୍କୁ "ପଦ୍ମଶ୍ରୀ" ଉପାଧିରେ ମଧ୍ୟ ବିଭୂଷିତ କରାଯାଇଥିଲା ।

ଶ୍ରୀ କଳାପୀଠର ଅନ୍ୟତମ ଛଉବିଶାରଦ ମାନଙ୍କମଧ୍ୟରେ ଗୁରୁ କେଦାର ନାଥ ସାହୁ, ଗୁରୁ ମଙ୍ଗଳା ଚରଣ ମହାନ୍ତି ଓ ଗୁରୁ ମକରଧ୍ୱଜ ଦାରୋଗା ଖ୍ୟାତି ଅର୍ଜନ କରିଥିଲେ । ଏମାନେ ସମସ୍ତେ "ପଦ୍ମଶ୍ରୀ" ଉପାଧିରେ ବିଭୂଷିତ ହୋଇଥିଲେ । ଇତି ମଧ୍ୟରେ ଏହି ଗୌରବଦୀପ୍ତ ବ୍ୟକ୍ତିମାନଙ୍କର ଦେହାନ୍ତ ଘଟିସାରିଛି । ତଥାପି ଷଢେିକଳାର ବର୍ତ୍ତମାନର ରାଜାସାହେବ ପ୍ରତାପ ଆଦିତ୍ୟ ସିଂଦେଓ ଶ୍ରୀକଳାପୀଠର ଉନ୍ନତି ଦିଗରେ ସର୍ବଦା ଚେଷ୍ଟିତ । ଏଥି ସହିତ ଝାଡ଼ଖଣ୍ଡରେ ମାତୃଭାଷା ଓଡ଼ିଆର ବିକାଶଲାଗି ମଧ୍ୟ ସେ ଚିନ୍ତିତ । ପ୍ରତି ବର୍ଷ ଚୈତ୍ରମାସରେ ଷଢେିକଳା ଓ ଖରସୁଆଁରେ ଚୈତ୍ରପର୍ବ ଅନୁଷ୍ଠିତ ହୁଏ । ସେହି ଉତ୍ସବରେ "ଛଉ" ନୃତ୍ୟ ପ୍ରତିଯୋଗିତା ହୁଏ । "ଛଉ"ର ଗୀତ ଗୁଡ଼ିକ ଶୁଦ୍ଧ ଓଡ଼ିଆ ଭାଷାରେ ରଚିତ । ଷଢେିକଳା ଓ ଖରସୁଆଁର କବିମାନେ ଓଡ଼ିଆରେ "ଛଉ" ଗୀତିନାଟ୍ୟମାନ ରଚନା କରନ୍ତି । ସେହିମାନେହିଁ ଝାଡ଼ଖଣ୍ଡର ଗୀତିକବି ।

ଚୈତ୍ରପର୍ବ ସମୟରେ ସ୍ଥାନୀୟ ଲୋକମାନେ ଆନନ୍ଦରେ ଛଉନୃତ୍ୟ ଉପଭୋଗ କରନ୍ତି । ଏହି ଲୋକମାନଙ୍କ ମଧ୍ୟରେ ଅଧିକାଂଶ ହେଉଛନ୍ତି ସେଠାକାର ଆଦିବାସୀ । ଛଉନୃତ୍ୟ ଜରିଆରେ ଷଢେିକଳା ଖରସୁଆଁର ଆଦିବାସୀମାନେ ଓଡ଼ିଆଭାଷା ବୁଝିବା ଓ

କହିବାରେ ଅଭ୍ୟସ୍ତ । ଷଢେଇକଳା ବା ଖରସୁଆଁ ସହର ଦୁଇଟି ଓଡ଼ିଶାର ଯେ କୌଣସି ଥାନାର ସଦର ମହକୁମା ପରି । ଏବେ (୨୦୧୫ ମସିହାରେ) ମଧ୍ୟ ସେ ଦୁଇ ସହରରେ ରାତ୍ରିଯାପନ କଲାଭଳି ଭଲ ହୋଟେଲଟିଏ ନାହିଁ । ତେଣୁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଯେଉଁମାନେ ସାହିତ୍ୟସଭା କରିବା ପାଇଁ ଝାଡ଼ଖଣ୍ଡ ଯିବେ, ସେମାନଙ୍କ ପାଇଁ କେବଳ ଜାମସେଦପୁର ମହାନଗରୀ ବ୍ୟତୀତ ଅନ୍ୟ କୌଣସିଠାରେ ଏପରି ସଭା କରିବାର ସୁବିଧା ମୁଁ ଦେଖି ପାରୁନଥିଲି ।

ଡକ୍ଟର ବିଜୟାନନ୍ଦ ସିଂହଙ୍କ ସହିତ କଥା ହୋଇ ଏଥିଲାଗି ବିହିତ ବ୍ୟବସ୍ଥା କରିବା ପାଇଁ ଜାମସେଦପୁର ଯିବାକୁ ସିଦ୍ଧାନ୍ତ କଲି । ସଭାଟିଏ ହେଲେ ଯଥେଷ୍ଟ ସଂଖ୍ୟକ ଶ୍ରୋତାଙ୍କ ଉପସ୍ଥିତି ଆବଶ୍ୟକ । ତେଣୁ ଗୋଲମୁରୀ ଉତ୍କଳ ସମାଜ ହାଇସ୍କୁଲ ପ୍ରେକ୍ଷାଳୟରେ ଏହି ସଭାର ଆୟୋଜନ କରିବା ପାଇଁ ଚିନ୍ତାକଲି । ହାଇସ୍କୁଲ ପରିଚାଳନା କମିଟିର ତତ୍‌କାଳୀନ ସମ୍ପାଦକ ରବୀନ୍ଦ୍ର କୁମାର ମିଶ୍ରଙ୍କୁ ଏ ପ୍ରସ୍ତାବ ଦେବାରୁ ସେ ଖୁସି ହେଲେ । ମାତ୍ର ସେଦିନ ବିଦ୍ୟାଳୟରେ ଛାତ୍ରଛାତ୍ରୀ ଓ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ପାଇଁ ଭୋଜନ ବ୍ୟବସ୍ଥାକରିବା ଉଚିତହେବ ବୋଲି ସେ କହିଲେ । ତାହେଲେ ସେଦିନ ଦଶଟାସୁଦ୍ଧା ସଭା ଆରମ୍ଭକରି ପ୍ରାୟ ଗୋଟାଏ ବେଳକୁ ଶେଷ କରାଯିବ ଓ ତାପରେ ମଧ୍ୟାହ୍ନ ଭୋଜନ ପାଇଁ ସମସ୍ତେ ରହିବେ । ଛାତ୍ରଛାତ୍ରୀମାନଙ୍କ ଅଭିଭାବକମାନଙ୍କୁ ମଧ୍ୟ ଏହି ସାହିତ୍ୟ ସଭାରେ ଯୋଗ ଦେବାକୁ ଆମନ୍ତ୍ରିତ କରାଯାଇପାରିବ । ହେଲେ ଏଥିଲାଗି ଅର୍ଥ ବରାଦ କରିବା ମୁଖ୍ୟ କଥା ।

ଜାମଦେସପୁର ଉତ୍କଳ ଆସୋସିଏସନ୍ ଏଠାକାର ସର୍ବପୁରାତନ ଓଡ଼ିଆ ଅନୁଷ୍ଠାନ । ସେମାନଙ୍କର ଏକ ବଡ଼ ସଭାକକ୍ଷ ଅଛି । ମାତ୍ର ସେଠାରେ ସାହିତ୍ୟ ସଭା କଲେ ଶ୍ରୋତାମାନଙ୍କ ସଂଖ୍ୟା ଅତି ନଗଣ୍ୟ ହୋଇପାରେ । ତେଣୁ ଏହି ଅନୁଷ୍ଠାନର ସଭାପତି ରବୀନ୍ଦ୍ର ଶତପଥିଙ୍କୁ ଗୋଲ୍‌ମୁରୀ ହାଇସ୍କୁଲରେ ଉତ୍କଳ ସାହିତ୍ୟ ସମାଜ ସଭା ଲାଗି ତାଙ୍କର ବଳିଷ୍ଠ ସହଯୋଗ ପାଇଁ ଅନୁରୋଧ କଲି । ପ୍ରଥମ କଥା ହେଲା କଟକରୁ ଆସୁଥିବା ସାହିତ୍ୟିକ ମାନଙ୍କ ପାଇଁ ରହିବା ଖାଇବାର ସୁବିଧା ଓ ଗୋଲମୁରୀ ବିଦ୍ୟାଳୟର ଶିକ୍ଷକ, ଛାତ୍ରଛାତ୍ରୀମାନଙ୍କ ପାଇଁ ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା ।

ଜାମସେଦପୁର ସହରର ଖ୍ୟାତନାମା ଓଡ଼ିଆ ଶିଳ୍ପଦ୍ୟୋଗୀ ଶ୍ରୀ ଶୁଭେନ୍ଦୁ ବେହେରା ଏ ଦିଗରେ ସାହାଯ୍ୟ କରିପାରିବେ ବୋଲି କହିଲେ ରବିନ୍‌ବାବୁ । ତାଙ୍କସହିତ ଯୋଗାଯୋଗ କରି ଆଦିତ୍ୟପୁରରେ ଥିବା ତାଙ୍କ ଅତିଥିଭବନ ଏଥିଲାଗି ରିଜର୍ଭ କରାଗଲା । ଶୁଭେନ୍ଦୁବାବୁଙ୍କ ପୈତୃକ ଘର କଟକ ଜିଲ୍ଲା ଟାଙ୍ଗି ଅଞ୍ଚଳରେ । ତାଙ୍କ ବାପା ଟାଟାକମ୍ପାନୀ ଅଧୀନରେ ଚାକିରୀ କରୁଥିଲେ । ଶୁଭେନ୍ଦୁ ବାବୁ ଇଞ୍ଜିନିୟରିଂ ପଢ଼ିବା ପରେ ଟାଟା

କମ୍ପାନୀ ଅଧିନରେ ଚାକିରୀ ନ କରି ଟେଲ୍‌କୋ କମ୍ପାନୀ ତିଆରି କରୁଥିବା ଟ୍ରକ୍, ବସ୍, କାର୍, ମିନିଟ୍ରକ୍, ଗୁଡ଼ିକର ପାର୍ଟସ୍ ତିଆରି ପାଇଁ କାରଖାନା ବସାଇଲେ । ସେହି କାରଖାନା ଅଭିଜ୍ଞତାରୁ ଏବେ ତାଙ୍କର ଆମ ଦେଶ ଓ ବିଦେଶରେ ସାତଟି ଶିଳ୍ପ ରହିଛି । ଉତ୍କଳ ସମ୍ମିଳନୀ ପ୍ରତି ତାଙ୍କର ସମ୍ମାନ ରହିଛି । ତେଣୁ ଓଡ଼ିଶାରୁ ଉତ୍କଳ ସମ୍ମିଳନୀର ସଭ୍ୟ/ସଭ୍ୟା ସେଠାକୁ ଗଲେ ସେମାନଙ୍କ ରହିବା ପାଇଁ ଓ ସଭା ସମିତି ପାଇଁ ସେ ସାହାଯ୍ୟ କରନ୍ତି । ଅତିଥିମାନଙ୍କ ଲାଗି ସକାଳ ଜଳଖିଆ, ମଧ୍ୟାହ୍ନ ଭୋଜନ ଓ ସାନ୍ଧ୍ୟ ଭୋଜନ ସହିତ ରହିବା ବ୍ୟବସ୍ଥା ଓ ନେବା ଆଣିବା କରିବା ପାଇଁ କମ୍ପାନୀ ଗାଡ଼ି ଦେବାକୁ ସେ ରାଜିହେଲେ । ବିଦ୍ୟାଳୟରେ ପାଞ୍ଚଶହ ଲୋକଙ୍କର ଖାଦ୍ୟବ୍ୟବସ୍ଥା ଲାଗି ଉତ୍କଳ ଆସୋସିଏସନ୍ ଅଧା ଖର୍ଚ୍ଚ ବହନ କରିବା କଥା ହେଲା । ବାକିତକ ଗୋଲମୁରୀ ଉତ୍କଳ ଆସୋସିଏସନ୍ ଦେବେ ବୋଲି ଠିକ୍‌କରି ମୁଁ ଝାଡ଼ଖଣ୍ଡର କେତେକ କବି ଓ ଲେଖକଙ୍କୁ ଦୂରଭାଷରେ ଯୋଗାଯୋଗ କଲି । ବାହାଡ଼ାଗୋଡ଼ା, ଖଇରପାଳ, ଚକ୍ରଧରପୁର, ଷଢେଇକଳା ଓ ଖରସୁଆଁ ଅଞ୍ଚଳରେ ଥିବା ପ୍ରାୟ ସାତଆଠଜଣ କବି ଓ ଲେଖକଙ୍କୁ ଜାମସେଦପୁର ଆସିବା ପାଇଁ ନିମନ୍ତ୍ରଣ କରାଗଲା ।

ଏସବୁ ଖବର ସାହିତ୍ୟ ସମାଜର ସାଧାରଣ ସମ୍ପାଦକ ଡଃ ବିଜୟାନନ୍ଦ ସିଂହଙ୍କୁ ଜଣାଇବା ପରେ ସେ ଏକ ବୈଠକ ଡକାଇ ଅନୁଷ୍ଠାନ ପକ୍ଷରୁ ଯେଉଁମାନେ ଜାମସେଦପୁର ଯିବେ ସେମାନଙ୍କର ଏକ ତାଲିକା ପ୍ରସ୍ତୁତ କଲେ । ସେମାନଙ୍କ ପାଇଁ ରେଳଯାତ୍ରାର ଯିବାଆସିବା ଟିକେଟ ବ୍ୟବସ୍ଥା ହୋଇଗଲା । ସେମାନଙ୍କ ଯିବାର ଦୁଇଦିନ ପୂର୍ବରୁ ମୁଁ ଜାମସେଦପୁର ଚାଲିଯାଇ କାର୍ଯ୍ୟକ୍ରମର ସାଫଲ୍ୟ ଦିଗରେ ସମସ୍ତ ସୁବନ୍ଦୋବସ୍ତ କରାଇବାକୁ ଉଚିତ ମନେ କଲି ।

ଏହି କବିତାପାଠୋତ୍ସବ ପାଇଁ ଖାଇବା ପିଇବା ଦାୟିତ୍ୱ ଉତ୍କଳ ଆସୋସିଏସନ୍ ନେଇ ପାରିଥାନ୍ତେ । ମାତ୍ର ଏହାର ସଭ୍ୟମାନେ ରାଜି ହେଲେ ନାହିଁ । ଜାମସେଦପୁର ମହାନଗରୀରେ ଓଡ଼ିଆ ମାନଙ୍କର ଏହା ସର୍ବବୃହତ୍ ଅନୁଷ୍ଠାନ । ସେଠାକାର ସାଂସଦ ଓ ବିଧାୟକମାନଙ୍କ ପାଣ୍ଠିରୁ ଅନୁଦାନ ଆଣି ଏହି ହତା ମଧ୍ୟରେ ଅନେକ ବଖରା ଘର ତିଆରି ହୋଇଛି । ଏବେ ସେହି ଅନୁଷ୍ଠାନ ପରିସର ମଧ୍ୟରେ ଗୋଟିଏ ଜଗନ୍ନାଥ ମନ୍ଦିର ମଧ୍ୟ ନିର୍ମିତ ହୋଇଛି । ହେଲେ ଜାମସେଦପୁର ବା ଝାଡ଼ଖଣ୍ଡରେ ଓଡ଼ିଆ ଶିକ୍ଷାପ୍ରସାର ଲାଗି ଅନୁଷ୍ଠାନ ପକ୍ଷରୁ ଏ ପର୍ଯ୍ୟନ୍ତ କୌଣସି ଆର୍ଥିକ ସାହାଯ୍ୟ ଦିଆଯାଇ ନାହିଁ । ପ୍ରତିଦିନ ସନ୍ଧ୍ୟାରେ ଅନୁଷ୍ଠାନର ବହୁ ଆଜୀବନ ସଦସ୍ୟ ଏଠାକୁ ଆସି ତାସ୍, ପଶା ବା କ୍ୟାରମ୍ ଆଦି ଖେଳିବା ଏକ ନିତିଦିନିଆ ଅଭ୍ୟାସରେ ପରିଣତ ହୋଇଛି । ପ୍ରତି ସପ୍ତାହରେ ସେଠାରେ ବିବାହ, ବ୍ରତ, ସଭାସମିତି ପାଇଁ ବାହାର ଲୋକଙ୍କୁ ହଲ୍ ଭଡ଼ା ଦିଆଯାଏ ।

ସେ ବାବଦ ଯଥେଷ୍ଟ ଭଡ଼ା ଆଦାୟ ହୋଇ ଅନୁଷ୍ଠାନର ପାଣ୍ଠି ବଢ଼ିବଢ଼ି ଚାଲିଛି । ହେଲେ, ଓଡ଼ିଆଭାଷା, ସାହିତ୍ୟ ବା ସଂସ୍କୃତି ସୁରକ୍ଷା ଦିଗରେ ଉତ୍କଳ ଆସୋସିଏସନ୍ ପକ୍ଷରୁ କିଛି ଆଖିଦୃଶିଆ କାର୍ଯ୍ୟ ହେବାର ଜଣାନାହିଁ । ସଭାପତି ରବୀନ୍ଦ୍ର କୁମାର ଶତପଥି ଜଣେ ଦକ୍ଷ ଅଧିବକ୍ତା ଭାବେ ଜାମସେଦପୁରରେ ଖ୍ୟାତିଲାଭ କରିଛନ୍ତି । ସେ ଅତି ଭଦ୍ର ଓ ମାର୍ଜିତ ବ୍ୟକ୍ତି । ଯାହା କିଛି କହିଲେ ସେ ବିଚାର କରି ଯଥାସାଧ ସାହାଯ୍ୟ କରିବାକୁ ଚେଷ୍ଟା କରନ୍ତି । ସେ ଉତ୍କଳ ଆସୋସିଏସନ୍ ପକ୍ଷରୁ କବି ସମ୍ମିଳନୀଦିନ ଗୋଲମୁରୀ ହାଇସ୍କୁଲର ଛାତ୍ରମାନଙ୍କ ଭୋଜନ ପାଇଁ ଅଧା ଖର୍ଚ୍ଚ ବହନ କଲେ । ଉତ୍କଳ ସାହିତ୍ୟ ସମାଜର ପ୍ରତିନିଧିମାନଙ୍କ ଲାଗି ଦୁଇଟି ଗାଡ଼ି ବନ୍ଦୋବସ୍ତ କରିଦେଲେ ।

ପରଦିନ କଟକରୁ ଉତ୍କଳ ଏକ୍ସପ୍ରେସ୍ ଟ୍ରେନ୍‌ରେ ଆସୁଥିବା ପ୍ରତିନିଧିମାନଙ୍କୁ ରେଳ ଷ୍ଟେସନରେ ସମ୍ବର୍ଦ୍ଧନା ଦେବା ପାଇଁ ଗୋଲମୁରୀ ଉତ୍କଳ ସମାଜର ପ୍ରାୟ ପଚିଶ ଜଣ ସଭ୍ୟ/ସଭ୍ୟା ଜାମସେଦପୁର ରେଳ ଷ୍ଟେସନରେ ଭୋର ଛଅଟା ସୁଦ୍ଧା ପହଞ୍ଚି ସେମାନଙ୍କୁ ସ୍ୱାଗତ କରି ଆଦିତ୍ୟପୁରସ୍ଥ ଅତିଥି ଭବନକୁ ପାଛୋଟି ନେଲେ । ସେଠାରେ ନିତ୍ୟକର୍ମ ସାରି ପ୍ରାତଃ ଭୋଜନ ପରେ ଆମେସବୁ ଗୋଲମୁରୀ ଉତ୍କଳ ସମାଜ ସଭାକକ୍ଷକୁ ଆସିଲୁ । ବିଦ୍ୟାଳୟର ପରିଚାଳନା କମିଟି ପକ୍ଷରୁ ପ୍ରତିନିଧିମାନଙ୍କୁ ସ୍ୱାଗତ ଜଣାଇ ବିଦ୍ୟାଳୟ ସାରା ବୁଲାଇ ଦେଖାଇଦିଆଗଲା । ଏହି ସାହିତ୍ୟ ସଭାକୁ ଉଦ୍‌ଘାଟନ କରିବା ପାଇଁ ତତ୍‌କାଳୀନ ଝାଡ଼ଖଣ୍ଡ ସ୍ୱାସ୍ଥ୍ୟମନ୍ତ୍ରୀ ଡାକ୍ତର ଦିନେଶ କୁମାର ଷଡ଼ଙ୍ଗୀ ଆସି ପହଞ୍ଚିଲେ ।

ସଭାକକ୍ଷରେ ଛାତ୍ରଛାତ୍ରୀ, ସେମାନଙ୍କର ଆଭିଭାବକ, ଶିକ୍ଷକ ଶିକ୍ଷୟିତ୍ରୀ ଓ ଗୋଲମୁରୀ ଉତ୍କଳ ସମାଜର ସଭ୍ୟସଭ୍ୟାମାନେ ଭରିଯାଇଥାନ୍ତି । କେତେଜଣ ଛାତ୍ରୀ ଉତ୍କଳ ବନ୍ଦନା (ବନ୍ଦେ ଉତ୍କଳ ଜନନୀ) ଗାଇ ସାରିବା ପରେ ଅତିଥିମାନେ ମଞ୍ଚାସୀନ ହେଲେ । ସେମାନେଥିଲେ ସ୍ୱାସ୍ଥ୍ୟମନ୍ତ୍ରୀ ଡାକ୍ତର ଦିନେଶ ଷଡ଼ଙ୍ଗୀ, ଶ୍ରୀମତୀ ମନୋରମା ମହାପାତ୍ର, ଡଃ ରତ୍ନାକର ଚଇନି, ଡଃ ବିଜୟାନନ୍ଦ ସିଂହ, ଗୋଲମୁରୀ ଉତ୍କଳ ସମାଜର ସଭାପତି ପ୍ରଭାତ କୁମାର ଦାସ, ସଂପାଦକ ରବୀନ୍ଦ୍ର କୁମାର ମିଶ୍ର । ଝାଡ଼ଖଣ୍ଡରେ ସାତ ଆଠଜଣ କବି ସେମାନଙ୍କ କବିତା ପାଠ କରିବା ପରେ ସାହିତ୍ୟସମାଜ ପକ୍ଷରୁ ତିନିଜଣଙ୍କୁ ମାନପତ୍ର ଉତ୍ତରୀୟ ଓ ଫୁଲତୋଡ଼ା ଦେଇ ସମ୍ବର୍ଦ୍ଧିତ କରାଗଲା । ସେମାନେ ଥିଲେ ବାହାଡାଗୋଡ଼ାର ଡାକ୍ତର ଶ୍ରୀମତୀ ବିନି ଷଡ଼ଙ୍ଗୀ, ଖଇରପାଳର ଶ୍ରୀ ଜଗଦୀଶ ମହାପାତ୍ର ଓ ଷଢ଼େଇକଳାର ଜ୍ୟୋତିଲାଲ୍ ସାହୁ । ମଞ୍ଚାସୀନ ଅତିଥିମାନେ ସେମାନଙ୍କର ବକ୍ତବ୍ୟ ରଖିବା ପରେ ପ୍ରାୟ ଅପରାହ୍ଣ ଗୋଟାଏ ସୁଦ୍ଧା ସଭା ଶେଷହେଲା । ଡାକ୍ତର ଦୀନେଶ କୁମାର ଷଡ଼ଙ୍ଗୀଙ୍କର କାମ ଥିବାରୁ ସେ ତରବର ହୋଇ ମଞ୍ଚରୁ ଓହ୍ଲାଇ ତାଙ୍କ ଗାଡ଼ିପାଖକୁ ଚାଲିଯାଉଥିଲେ । କଟକରୁ ଯାଇଥିବା ଉତ୍କଳ ସାହିତ୍ୟ ସମାଜର ବରିଷ୍ଠ ସଦସ୍ୟ ଶ୍ରୀ ଗୋବିନ୍ଦ ଚରଣ ପାତ୍ର

ତାଙ୍କୁ ଭେଟି କଥା ହେବା ଲାଗି ବସିଥିବା ସ୍ଥାନରୁ ଉଠି ଡାଃ ଷଡ଼ଙ୍ଗୀଙ୍କ ପଛେ ପଛେ ଧାଇଁ ଯାଉଯାଉ ପାହାଚରୁ ଖସି ପଡ଼ି ମୁହଁମାଡ଼ି ତଳେ ପଡ଼ିଗଲେ । ଓଠରେ ତାଙ୍କ ଦାନ୍ତ ପଶିଯାଇ ପ୍ରବଳ ରକ୍ତସ୍ରାବ ହେଉଥାଏ । ଆମେ ସବୁ ଖବର ପାଇ ତାଙ୍କୁ ଡାକ୍ତରଖାନାକୁ ନେଇ ଯିବାର ବ୍ୟବସ୍ଥା କଲୁ । ବିଜୟବାବୁ ତାଙ୍କ ଦାୟୀତ୍ୱରେ ରହିଲେ, ଗୋବିନ୍ଦ ବାବୁ କଟକର ଜଣେ ବରିଷ୍ଠ ପ୍ରକାଶକ । ବିନୋଦବିହାରୀରେ ତାଙ୍କର "ଓଡ଼ିଶା ବୁକ୍ ଷ୍ଟୋର" ବେଶ୍ ନାମୀ ବହି ଦୋକାନ । ଶହ ଶହ ଲେଖକ ଓ କବିଙ୍କର ବହି ସେ ଛାପିଛନ୍ତି । ଏ ପରିଣତ ବୟସରେ ସେ ରାତି ଅନିଦ୍ରା ହୋଇ ରେଳଗାଡ଼ିରେ କଟକରୁ ଆସିଲେ । ପୁଣି ସନ୍ଧ୍ୟାରେ ତାଙ୍କର ଲେଉଟାଣି ରେଳଯାତ୍ରା । ଗୋବିନ୍ଦବାବୁ କେବଳ ସକାଳ ଜଳଖିଆ ଖାଇଛନ୍ତି । ହେଲେ ଓଠର କ୍ଷତସ୍ଥାନରୁ ରକ୍ତ ସ୍ରାବ ଜନିତ କଷ୍ଟ ଯୋଗୁ ଆଉ ସେ ଦିନସାରା କିଛି ଖାଇଲେ ନାହିଁ । ତାଙ୍କ ପାଇଁ ତରଳଖାଦ୍ୟର ବ୍ୟବସ୍ଥା ହେଲା । ଅନ୍ୟମାନେ ଅତିଥି ଭବନକୁ ଫେରି ଖିଆପିଆ ସାରି ବିଶ୍ରାମ ନେଲେ । ସନ୍ଧ୍ୟାରେ ସମସ୍ତଙ୍କୁ ବୁଲାଇ ଜାମସେଦପୁର ମହାନଗରୀର କେତେକାଂଶ ଦେଖାଇ ଦିଆଗଲା । ରେଳଗାଡ଼ିରେ ଖାଇବାପାଇଁ ରାତ୍ରିଭୋଜନ ପ୍ୟାକେଟ୍ ସବୁ ହାତରେଦେଇ ଉତ୍କଳ ଏକ୍ସପ୍ରେସ୍‌ରେ ନେଇ ବସାଇ ଦେଇ ଆସିଲୁ । ତାପର ଦିନ ସନ୍ଧ୍ୟା ଟ୍ରେନ୍‌ରେ ମୁଁ କଟକ ଫେରିଲି । ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ବିଚ୍ଛିନ୍ନାଞ୍ଚଳରେ ଏପରି ଏକ କାର୍ଯ୍ୟକ୍ରମ ବ୍ୟବସ୍ଥା କରିବାର ସୌଭାଗ୍ୟ ମୋ ପକ୍ଷରେ ସୁଖକର ଥିଲା ।

## ଉତ୍କଳ ସମ୍ମିଳନୀରେ ଫାଟ

କଥାରେ ଅଛି - "ଅନେକ ଲୋକ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି" । ଏଇଟା ଭାଗବତର କଥା । ଏକ ଗଣତାନ୍ତ୍ରିକ ଅନୁଷ୍ଠାନ ଉତ୍କଳ ସମ୍ମିଳନୀ କ୍ଷେତ୍ରରେ ମଧ୍ୟ ଏ କଥା ଯେ ସତ ହୋଇପାରେ, ପୂର୍ବତନ ସଭାପତିମାନେ ସେ ଚିନ୍ତା କରିଥିଲେ । ତେଣୁ ସଭ୍ୟ ସଂଖ୍ୟା ବଢ଼ାଇ ଏହି ସଂଗଠନକୁ ବ୍ୟାପକ କରିବା ପାଇଁ କେହି ଚାହିଁ ନ ଥିଲେ । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସୃଷ୍ଟି ହୋଇସାରିବା ପରେ ଏହି ସଙ୍ଗଠନ ଦୁର୍ବଳ ହୋଇପଡ଼ିଲା । କଂଗ୍ରେସ ଦଳ ସେତେବେଳେ ଆନ୍ଦୋଳନ ପାଇଁ ବ୍ୟସ୍ତ ଥାଇ ଇଂରେଜ ସରକାର ଓ ରାଜାରାଜୁଡ଼ାମାନଙ୍କ ବିରୁଦ୍ଧରେ ସଂଗ୍ରାମ ଜାରୀ ରଖିଥିଲେ । ମଧୁବାବୁ ଓ ପାରଳା ମହାରାଜାଙ୍କ ସମେତ ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାମାନେ ଇଂରେଜ ସରକାରଙ୍କୁ ପ୍ରଭାବିତ କରି ଓଡ଼ିଶାଗଠନ କ୍ଷେତ୍ରରେ ସଫଳକାମ ହୋଇଥିବାରୁ ଉତ୍କଳସମ୍ମିଳନୀକୁ ଦେଶଦ୍ରୋହୀ ସଂଗଠନ ଭାବେ କଂଗ୍ରେସଦଳ ଅଭିହିତ କରିଥିଲେ । ତେଣୁ ଓଡ଼ିଶାଗଠନ ପରେ ସରକାର ଗଠନ କରିବାକୁ ତତ୍‌କାଳୀନ କଂଗ୍ରେସଦଳ ଅଣ୍ଟାଭିଡ଼ି

ଓଡ଼ିଶା ସୃଷ୍ଟିକାରୀ ଏହି ସଂଗଠନକୁ ଲୋକଲୋଚନରୁ ଦୂରେଇ ରଖିବାର ଉଦ୍ୟମ କଲେ । ସେତେବେଳେ ଗଡ଼ଜାତ ମିଶ୍ରଣ ହୋଇ ନଥିଲା । କଟକ, ପୁରୀ, ବାଲେଶ୍ୱର ଆଦି ମୋଗଲବନ୍ଦୀ ଜିଲାମାନଙ୍କରେ ଉତ୍କଳ ସମ୍ମିଳନୀ କାର୍ଯ୍ୟକଳାପର ଆଭାଷ ନଥିଲା । କେବଳ ବ୍ରହ୍ମପୁର, ମଞ୍ଜୁଷା, ଜଳନ୍ତର, ଜୟପୁର, ପାରଳାଖେମୁଣ୍ଡି, ମହେନ୍ଦ୍ରଗିରି ଓ ରମ୍ଭା ଆଦି ସ୍ଥାନରେ ଉତ୍କଳ ସମ୍ମିଳନୀ ବାର୍ଷିକ ଅଧିବେଶନ ବସୁଥିଲା ।

ସ୍ୱାଧୀନତା ପରେ ଶାସନ କ୍ଷେତ୍ରରେ ପଦପଦବୀ ପାଇଁ ଓଡ଼ିଶାର ରାଜନୈତିକ ନେତୃବୃନ୍ଦ କେନ୍ଦ୍ରୀୟ ନେତାମାନଙ୍କର ଖୋଷାମତିଆ ହୋଇପଡ଼ିଲେ । ଉତ୍କଳ ସମ୍ମିଳନୀର ସଭାପତିମାନେ ତତ୍‌କାଳୀନ ରାଜନିତୀର ଚାପରେ ଏହି ସଂଗଠନକୁ ବ୍ୟାପକ କରିବାର ଚେଷ୍ଟା କରିନଥିଲେ । ୧୯୪୭ ମସିହାରୁ ୧୯୫୯ ପର୍ଯ୍ୟନ୍ତ ଶ୍ରୀ ବିଶ୍ୱନାଥ ଦାଶ, ରଘୁନାଥ ରାୟ, ରାଜେନ୍ଦ୍ର ନାରାୟଣ ସିଂହ ଦେଓ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏହାର ସଭାପତି ଥିଲେ । ୧୯୬୯ ରୁ ୧୯୯୮ ପର୍ଯ୍ୟନ୍ତ ଦୀର୍ଘ ତିରିଶି ବର୍ଷ ଧରି ଡଃ ରାଧାନାଥ ରଥ ସଭାପତି ଓ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ମହାସଚିବ ଥାଇ ରାଜ୍ୟସାରା ଏହାର ପ୍ରସାରଣଲାଗି ଉଦ୍ୟମ କରି ପାରିଥାନ୍ତେ । ସେତେବେଳେ ୩ ଜଣ ଉପସଭାପତି (ନ୍ୟାୟମୂର୍ତ୍ତି - କୃଷ୍ଣ ପ୍ରସାଦ ମହାପାତ୍ର, ୰ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓ ଝାଡ଼ଖଣ୍ଡର ୰ମୁକୁନ୍ଦରାମତନ୍ତୀ) ଏବଂ ପାଞ୍ଚଜଣ ସମ୍ପାଦକ (ଶ୍ରୀମତୀ ଲୋପାମୁଦ୍ରା ମହାନ୍ତି, ୰କୃଷ୍ଣଚନ୍ଦ୍ର ପଣ୍ଡା, ଡଃ ଦିନେଶ କୁମାର ଷଡ଼ଙ୍ଗୀ, ଅମରେଶ ମିଶ୍ର ଓ ଡଃ ଗୋପାଳକୃଷ୍ଣ ଶ୍ରୀଚନ୍ଦନ)ଙ୍କ ସହିତ ଶ୍ରୀ ଭାବଗ୍ରାହୀ ମିଶ୍ର (ଆଚାର୍ଯ୍ୟ ଭାବାନନ୍ଦ) ଥିଲେ କୋଷାଧକ୍ଷ । ମାତ୍ର ଶ୍ରୀ ମିଶ୍ର କୋଷାଧକ୍ଷ ପଦବୀରୁ ଇସ୍ତଫା ଦେବା ପରେ ଶ୍ରୀଯୁକ୍ତ ବକ୍ସିପାତ୍ର କୋଷାଧକ୍ଷ ଭାବେ ନିଜେ ଦାୟିତ୍ୱ ତୁଲାଇଲେ । ରାଧାନାଥବାବୁଙ୍କ ସମ୍ପାଦିତ ଖବରକାଗଜ "ସମାଜ" ହିଁ ଓଡ଼ିଶାର ମୁଖ୍ୟ ସମ୍ବାଦପତ୍ର ଥିଲା ଓ ଏବେ ମଧ୍ୟ ଅଛି । ମାତ୍ର ଉତ୍କଳ ସମ୍ମିଳନୀକୁ ବ୍ୟାପକ କରିବା ଦିଗରେ କୌଣସି ପ୍ରଚେଷ୍ଟା ଏହି ସମ୍ବାଦପତ୍ର ମାଧ୍ୟମରେ ହୋଇ ପାରିନଥିଲା । ମହାସଚିବ ବସନ୍ତବାବୁ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ମୁଖ୍ୟ କାର୍ଯ୍ୟାଳୟ ରଖିଥିଲେ । ସେ କଟକ ଆସିଲାବେଳେ ସଭାପତିଙ୍କ ସହିତ ଦେଖାସାକ୍ଷାତ କରି ସାଙ୍ଗଠନିକ ଆଲୋଚନା କରୁଥିଲେ । ଗୋପବନ୍ଧୁ ଭବନରେ ମଧ୍ୟ ସମ୍ମିଳନୀର କିଛି କାଗଜପତ୍ର ରହିଥିଲା । ହେଲେ ରାଜ୍ୟର ବିଭିନ୍ନ ଜିଲ୍ଲାରୁ ଅଧିକରୁ ଅଧିକ ସଭ୍ୟ ସଂଗ୍ରହ କରି ସମ୍ମିଳନୀକୁ ବ୍ୟାପକ କରିବାର ଉଦ୍ୟମ ସେ କରି ନଥିଲେ ।

୧୯୯୪ ମସିହା ଅପ୍ରେଲ ମାସ ପରେ ତତ୍‌କାଳୀନ ଉପସଭାପତି ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ସଭାପତି ଦାୟୀତ୍ୱରେ ରହିଲା ବେଳେ ବ୍ରହ୍ମପୁରରୁ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେଲା । ବକ୍ସିପାତ୍ର ମହୋଦୟ ବିଭିନ୍ନ ଜିଲାରେ ଉତ୍କଳ

ସମ୍ମିଳନୀ ଶାଖା ପ୍ରତିଷ୍ଠା କରିବା ଉପରେ ମଧ୍ୟ ଗୁରୁତ୍ୱ ଦେଲେ । ୧୯୯୮ ମସିହାରେ ମୁଁ ଯୁକ୍ତରାଷ୍ଟ୍ର ଆମେରିକା ଯାଇ ଦୁଇଶହରୁ ଅଧିକ ସଭ୍ୟ / ସଭ୍ୟା କରାଇ ଆମେରିକା ଓ କାନାଡ଼ାରେ ଆଠଟି ଶାଖା କରାଇ ପାରିଥିଲି । ସେତେବେଳକୁ ଉତ୍କଳ ସମ୍ମିଳନୀ ସମ୍ବିଧାନରେ ଏହି ସଙ୍ଗଠନ ମୁଖ୍ୟତଃ ଓଡ଼ିଶା ଭିତରେ ସୀମିତ ହେବାର ନିୟମ ଥିଲା । ମାତ୍ର ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ାରେ ଶାଖାମାନ ଗଠିତ ହେବା ପରେ ସମ୍ବିଧାନରେ ଆବଶ୍ୟକ ସଂଶୋଧନ କରାଯାଇ ଉତ୍କଳ ସମ୍ମିଳନୀକୁ ବ୍ୟାପକ କରାଗଲା । ଫଳରେ "ଉତ୍କଳ ସମ୍ମିଳନୀ" ଆନ୍ତର୍ଜାତୀୟ ହୋଇପାରିଲା । ଏହା ପରେ ଝାଡ଼ଖଣ୍ଡ, ଛତିଶଗଡ଼, ଓ ପଶ୍ଚିମବଙ୍ଗରେ ଉତ୍କଳ ସମ୍ମିଳନୀ ଶାଖାମାନ ସୃଷ୍ଟି ହୋଇପାରିଲା । ୨୦୦୦ ମସିହା ଅକ୍ଟୋବର ମାସରେ ବକ୍ସିପାତ୍ରଙ୍କ ଅକାଳ ବିୟୋଗ ଘଟିଲା । ଡଃ ରାଧାନାଥ ରଥଙ୍କ ବିୟୋଗ ପରେ ଏବଂ ବରିଷ୍ଠ ଉପସଭାପତି ନ୍ୟାୟମୂର୍ତ୍ତି କୃଷ୍ଣ ପ୍ରସାଦ ମହାପାତ୍ରଙ୍କ ଲୋକପାଳ ନିଯୁକ୍ତି ପରେ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ମୃତ୍ୟୁ ଯାବତ୍ ଉତ୍କଳ ସମ୍ମିଳନୀର ସଭାପତି ରହିଥିଲେ ।

୨୦୦୧ ମସିହା ଜୁନ୍ ମାସରେ କଟକ ଜିଲା ଉତ୍କଳ ସମ୍ମିଳନୀ ଶାଖା ପକ୍ଷରୁ ପ୍ରକାଶିତ ବାର୍ଷିକପତ୍ରିକା "ଉତ୍କଳ ନିନାଦ"କୁ ତାଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯାଇଥିଲା । ତାଙ୍କ ସ୍ଥାନରେ ଶ୍ରୀ ବସନ୍ତକୁମାର ପାଣିଗ୍ରାହୀ ତା-୧୮-୩-୨୦୦୧ରେ ସଭାପତି ହେଲେ । ସେ ସଭାପତି ହେବା ପରେ ଏକାବେଳକେ ମହାସଚିବ ଓ କୋଷାଧ୍ୟକ୍ଷ ଦାୟିତ୍ୱରେ ମଧ୍ୟ ରହିଲେ । ଉପସଭାପତି ଭାବେ ସମ୍ବଲପୁରର ଶ୍ରୀ ପତିତପାବନ ପ୍ରଧାନ ଓ କଟକର ଅଧିବକ୍ତା ବିପିନ ବିହାରୀ ରଥ ରହିଲେ । ପୂର୍ବତନ ସମସ୍ତ ସମ୍ପାଦକ ମଧ୍ୟ ପୂର୍ବବତ୍ ତାଙ୍କ ସହିତ ଥିଲେ । ମାତ୍ର ସେମାନଙ୍କ ମଧ୍ୟରୁ କେବଳ ଡଃ ଗୋପାଳକୃଷ୍ଣ ଶ୍ରୀଚନ୍ଦନ ସଭାସମିତି ବା କାର୍ଯ୍ୟକାରୀ କମିଟି ବୈଠକରେ ଯୋଗ ଦେଇ ସମ୍ମିଳନୀ କାର୍ଯ୍ୟରେ ସହାୟତା କରୁଥିଲେ । ସେତେବେଳକୁ ଭୁବନେଶ୍ୱରରେ ତିନିଶହରୁ ଅଧିକ ଓ କଟକରେ ଦୁଇଶହରୁ ଅଧିକ ସଭ୍ୟ / ସଭ୍ୟା ହୋଇସାରିଥିଲେ । ୨୦୦୨-୦୩ ଆର୍ଥିକ ବର୍ଷରେ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆଶିକ୍ଷା ପ୍ରସାରଣ ଲାଗି ସରକାରୀ ଅନୁଦାନ ମିଳିଲା । ବସନ୍ତବାବୁଙ୍କ ପକ୍ଷରେ ଏହା ଥିଲା ଏକ ଅମୃତ ଅନୁଭବ । ତାଙ୍କ ଜନ୍ମସ୍ଥାନ ମଞ୍ଜୁଷା ଆନ୍ଧ୍ରପ୍ରଦେଶରେ ଥିବା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ହୋଇଥିଲେ ମଧ୍ୟ ଓଡ଼ିଆ ଶିକ୍ଷା କ୍ଷେତ୍ରରେ ଏପରି ସୁବିଧା ମିଳିବ ବୋଲି ତାଙ୍କ ଧାରଣାରେ ନଥିଲା । ତତ୍କାଳୀନ ଗଣଶିକ୍ଷାମନ୍ତ୍ରୀଙ୍କୁ ଝାଡ଼ଖଣ୍ଡ ନେଇ ସେଠାକାର ଓଡ଼ିଆମାନଙ୍କର ମାତୃଭାଷା ପ୍ରେମ ସେ ଅନୁଭବ କରିବା ଫଳରେ ବିଚ୍ଛିନ୍ନାଞ୍ଚଳ ଓଡ଼ିଆଶିକ୍ଷା ପ୍ରସାର କାର୍ଯ୍ୟ ଆରମ୍ଭ ହୋଇପାରିଲା । ସମ୍ମିଳନୀର ବହୁ ବରିଷ୍ଠ ସଭ୍ୟ / ସଭ୍ୟା ବିଚ୍ଛିନ୍ନାଞ୍ଚଳକୁ ବୁଲିଯିବା ପାଇଁ ଇଚ୍ଛା ପ୍ରକାଶ କଲେ । ବହୁ ସଦସ୍ୟ କର୍ମକର୍ତ୍ତା ହେବାକୁ ମନ ବଳାଇଲେ । ବସନ୍ତ ବାବୁଙ୍କ ପକ୍ଷରେ

ପରବର୍ତ୍ତୀ ନିର୍ବାଚନ ସେତେ ସୁବିଧାଜନକ ହେଲାଭଳି ମନେ ହେଉନଥିଲା । ତେଣୁ ସେ ଓଡ଼ିଶାର ଦକ୍ଷିଣାଞ୍ଚଳରେ ନିର୍ବାଚନ କରିବାର ଆୟୋଜନ କଲେ । ତାଙ୍କ ଉଦ୍ୟମରେ ତା-୩୦-୧୧-୨୦୦୨ ତାରିଖରେ ଜୟପୁରଠାରେ ନିର୍ବାଚନ ହେଲା । ସାଧାରଣ ସଭାରେ ନିଷ୍ପତ୍ତି ହେଲା ଯେ ଏଣିକି ତିନିଜଣ ଉପସଭାପତି ଓ ପାଞ୍ଚଜଣ ସମ୍ପାଦକ ସ୍ଥାନରେ ସାତଜଣ ଉପସଭାପତି ଓ ସାତଜଣ ସମ୍ପାଦକ ରହିବେ । ବସନ୍ତବାବୁ ନିର୍ଦ୍ୱନ୍ଦରେ କେନ୍ଦ୍ର ସଭାପତି ଭାବେ ନିର୍ବାଚିତ ହେଲେ । କଟକ ଜିଲାରୁ ମୁଁ ଓ ଅଭୟ ସାମନ୍ତରାୟ ଦୁହେଁ ଏହି ନିର୍ବାଚନରେ ଯୋଗ ଦେଲୁ ।

ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାରଣ, ଯୁକ୍ତରାଷ୍ଟ୍ର ଆମେରିକାରୁ ଉତ୍କଳ ସମ୍ମିଳନୀ ପାଇଁ ପାଣ୍ଠି ସଂଗ୍ରହ ଓ ଉତ୍ତର ଆମେରିକା ମହାଦେଶରେ ଉତ୍କଳ ସମ୍ମିଳନୀର ଶାଖା ପ୍ରତିଷ୍ଠାକରିବା ସହିତ "ବନ୍ଦେ ଉତ୍କଳ ଜନନୀ" କ୍ୟାସେଟ ପ୍ରସ୍ତୁତ କରିବା ଆଦି କାର୍ଯ୍ୟ କରିବା ଦିଗରେ ମୋର ବ୍ୟକ୍ତିଗତ ଉଦ୍ୟମ ବିଷୟରେ ସେତେବେଳକୁ ସମ୍ମିଳନୀର ବିଭିନ୍ନ ଜିଲ୍ଲାଶାଖା ସଦସ୍ୟ/ସଦସ୍ୟାମାନେ ଜାଣି ସାରିଥିଲେ । ଜୟପୁର ନିର୍ବାଚନରେ ମୋତେ କୌଣସି ଦାୟିତ୍ୱ ଦେବା ପାଇଁ ସଭାପତି ବସନ୍ତ ବାବୁଙ୍କର ଇଚ୍ଛା ନ ଥିଲା । ତେଣୁ ଜୟପୁର ଯିବାପାଇଁ ବ୍ୟକ୍ତିଗତ ଭାବେ ମୋତେ ନିମନ୍ତ୍ରଣ କରିବାକୁ ମଧ୍ୟ ସେ ଭୁଲିଗଲେ । ତାଙ୍କୁ ପୂର୍ଣ୍ଣମାତ୍ରାରେ ସମର୍ଥନ କରିବା ପରି ଭୁବନେଶ୍ୱରରୁ କେତେଜଣ ସଦସ୍ୟଙ୍କ ସହିତ ଦକ୍ଷିଣ ଓଡ଼ିଶାର ଗଞ୍ଜାମ, ଗଜପତି, ରାୟଗଡ଼ା, ନବରଙ୍ଗପୁର ଓ ଫୁଲବାଣୀ ଆଦି ଶାଖାର ସଭ୍ୟସଭ୍ୟାମାନେ ନିର୍ବାଚନରେ ଯୋଗ ଦେବା ପାଇଁ ଯାଇଥିଲେ । ସବୁଠାରୁ ମଜା କଥା ହେଲା ଯେ ମୋତେ ନ କହିବା ପରି ଗୋପାଳକୃଷ୍ଣ ଶ୍ରୀଚନ୍ଦନଙ୍କୁ ମଧ୍ୟ କେହି ଜୟପୁର ଯିବାକୁ କହିଲେ ନାହିଁ । ଏ ପର୍ଯ୍ୟନ୍ତ ଗୋପାଳକୃଷ୍ଣ ବାବୁ ଉତ୍କଳ ସମ୍ମିଳନୀ ସମ୍ପାଦକ ଭାବେ ଦାୟୀତ୍ୱ ତୁଲାଇ ଆସୁଥିଲେ । ତେଣୁ ତାଙ୍କୁ ବ୍ୟକ୍ତିଗତ ଭାବେ ନିମନ୍ତ୍ରଣ କରାନଯିବାରୁ ସେ ଜୟପୁର ଗଲେ ନାହିଁ କିମ୍ବା ନିର୍ବାଚନରେ ଭାଗ ନେଲେ ନାହିଁ । ରାଉରକେଲା, ସୁନ୍ଦରଗଡ଼, ସୋରୋ, ପାରାଦ୍ୱୀପ ଓ ଢେଙ୍କାନାଳ ଶାଖାର କେତେକ ସଦସ୍ୟ ଜୟପୁର ଯାଇଥିଲେ । ମାତ୍ର ମୁଁ ଓ ଅଭୟବାବୁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବ୍ୟକ୍ତିଗତ ନିମନ୍ତ୍ରଣ ଆଶା କରି ଅପେକ୍ଷା କଲୁ । ନିର୍ଭରଯୋଗ୍ୟ ସୂତ୍ରରୁ ଜଣାଗଲା ଯେ, ବସନ୍ତବାବୁ ତାଙ୍କ ପ୍ୟାନେଲ ଗଠନ କରି ସାରିଛନ୍ତି । ସେ ତାଲିକାରେ ମୋର ନାମ ନାହିଁ । ନିବାର୍ଚନ ପୂର୍ବଦିନ ଅଭୟବାବୁ କହିଲେ ଅଭିମାନ କରି ଉତ୍କଳ ସମ୍ମିଳନୀ ନିର୍ବାଚନକୁ ଛାଡ଼ିଦେବା ଉଚିତ ହେବନାହିଁ। ଚାଲ ଆମେଯାଇ କଅଣସବୁ ନିଷ୍ପତ୍ତି ହୋଇଛି ବୁଝିବା । ଆମେ ସେଠି ପହଞ୍ଚିଗଲେ ଅବସ୍ଥା କିଛିଟା ବଦଳି ଯାଇ ପାରେ । ତେଣୁ ଦୁହେଁ ରାୟଗଡ଼ା ବାହାରି ପଡ଼ିଲୁ । ମାତ୍ର ଗୋପାଳକୃଷ୍ଣ ବାବୁ ଅଭିମାନ କରି ରହିଗଲେ ।

ଜୟପୁରରେ ଆମେ ପହଞ୍ଚିବା ପରେ ପ୍ୟାନେଲରେ ଥିବା ଲୋକମାନେ ଜଣା ପଡ଼ିଗଲେ । ନିର୍ବାଚନ ସଭାରେ ପୂର୍ବ ନିର୍ଦ୍ଧାରିତ ତାଲିକା ଅନୁସାରେ ବସନ୍ତବାବୁ ଅପ୍ରତିଦ୍ୱନ୍ଦ୍ୱୀ ଭାବେ ସଭାପତି ହେଲେ । ତାପରେ ସେ ଉପସଭାପତିଙ୍କ ନାମ ପ୍ରସ୍ତାବ କରିବା ମାତ୍ରେ ମୁଁ ମଧ୍ୟ ଜଣେ ପ୍ରାର୍ଥୀ ହେବାକୁ ଘୋଷଣା କଲି । ମୁଁ ଠିଆ ହେବା ମାତ୍ରେ ସାଧାରଣ ସଭାରେ କରତାଳି ବୃଷ୍ଟି ହୋଇଗଲା । ବସନ୍ତ ବାବୁ କହିଲେ, ଆପଣ ଅତୀତରେ ଉତ୍କଳ ସମ୍ମିଳନୀକୁ ବହୁ ସୂତ୍ରରୁ ଅର୍ଥ ଆଣି ଦେଇଥିବାରୁ ଆପଣଙ୍କୁ କୋଷାଧ୍ୟକ୍ଷ କରିବା ପାଇଁ ମୋର ଇଚ୍ଛା । କହିଲି; ମୁଁ ଉପସଭାପତି ପଦ ପାଇଁ ଅଯୋଗ୍ୟ ବୋଲି ଆପଣ ବୋଧହୁଏ ଭାବୁଛନ୍ତି । ଏହା ଶୁଣି ସେ କହିଲେ ଆପଣ ନିଶ୍ଚିତ ଭାବେ ଯୋଗ୍ୟ ବ୍ୟକ୍ତି । ଏବେ ଆପଣଙ୍କ ସହିତ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଆଉ ଛଅଜଣ ଉପସଭାପତି ନେବାକୁ ମୁଁ ସାଧାରଣ ସଭାରେ ପ୍ରସ୍ତାବ ରଖୁଛି । କରତାଳି ଦ୍ୱାରା ପ୍ରସ୍ତାବ ଅନୁମୋଦିତ ହେଲା । ଏବେ ପ୍ରଶ୍ନ ଉଠିଲା ଯେ କେତେଜଣ ସମ୍ପାଦକ ରହିବେ ? ନିଷ୍ପତ୍ତି ହେଲା, ଜଣେ ସାଧାରଣ ସମ୍ପାଦକ ରହିବେ ଓ ପାଞ୍ଚ ଜଣ ସମ୍ପାଦକଙ୍କ ସ୍ଥାନରେ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ସାତଜଣ ସମ୍ପାଦକ ରହିବେ । ତଦନୁଯାୟୀ ସମ୍ବିଧାନ ସଂଶୋଧନ କରାଯିବ ।

ପୂର୍ବ ନିର୍ଦ୍ଧାରିତ ପ୍ୟାନେଲ ଭିତରେ ଆମର ନାମ ନ ଥଲା । ମାତ୍ର ଉପସଭାପତି ପଦ ପାଇଁ ମୋତେ ଅକୁଣ୍ଠ ସମର୍ଥନ ମିଳିବା ଯୋଗୁଁ ମୋର ସମ୍ମାନ ରହିଗଲା । ଅଭୟବାବୁ ହେଲେ କେନ୍ଦ୍ର ସଭାରେ କଟକ ଜିଲ୍ଲାର ପ୍ରତିନିଧି । ବସନ୍ତ ବାବୁଙ୍କ ପ୍ରସ୍ତାବ କ୍ରମେ ଉପସଭାପତି ଭାବେ ଶ୍ରୀ ପତିତପାବନ ପ୍ରଧାନ (ସମ୍ବଲପୁର) ଶ୍ରୀ ରଘୁନାଥ ପଟ୍ଟନାୟକ (ଜୟପୁର), ଶ୍ରୀ ଭାବଗ୍ରାହୀ ମହାପାତ୍ର (ରାଉରକେଲା), ଶ୍ରୀ ଗୟାଧର ବାରିକ (ଭଦ୍ରକ) ଶ୍ରୀ କୃଷ୍ଣଚନ୍ଦ୍ର ଜେନା (ବ୍ରହ୍ମପୁର) ଓ ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର (ଭୁବନେଶ୍ୱର) ଏବଂ ସାଧାରଣ ସମ୍ପାଦକ ଭାବେ ସୋରର ଶ୍ରୀ ଅମରେନ୍ଦ୍ର କୁମାର ଦାସ ରହିଲେ । ସାତଜଣ ସମ୍ପାଦକ ମଧ୍ୟରୁ ଶ୍ରୀ ବିଚିତ୍ରାନନ୍ଦ ସାହୁ (ରାଉରକେଲା) ଶ୍ରୀ ଅମରେଶ ପ୍ରସାଦ ମିଶ୍ର (ଛତ୍ରପୁର) ଶ୍ରୀ ଅନନ୍ତ ରାମ ମହାପାତ୍ର (କୋଳିଙ୍ଗ – ଆନ୍ଧ୍ର) ଶ୍ରୀ ପୂର୍ଣ୍ଣ ଚନ୍ଦ୍ର ମହାପାତ୍ର (ଗଜପତି) ଶ୍ରୀ ମନ୍ମଥ ପାଢ଼ୀ (ବ୍ରହ୍ମପୁର) ଶ୍ରୀ ରାଧାନାଥ ପ୍ରହରାଜ (ଭୁବନେଶ୍ୱର) ଓ ଶ୍ରୀ ବିନୋଦ ମହାପାତ୍ର (ଜୟପୁର) ରହିଲେ । କୋଷାଧ୍ୟକ୍ଷ ଭାବେ ଜୟପୁରର ଶ୍ରୀ ପଦ୍ମଚରଣ ବେହେରାଙ୍କୁ ରଖାଗଲା ।

ନିର୍ବାଚନ ପରେ ଭୁବନେଶ୍ୱରରେ କାର୍ଯ୍ୟକାରୀ କମିଟିର ପ୍ରଥମ ବୈଠକ ଡକାଗଲା । ଏହି ବୈଠକରେ ସ୍ଥିର ହେଲା ଯେ, ଶ୍ରୀ ରାଧାନାଥ ପ୍ରହରାଜ କାର୍ଯ୍ୟାଳୟ ସମ୍ପାଦକ ଭାବେ କାର୍ଯ୍ୟ କରିବେ । ୟୁନିଟ-୨ (ଅଶୋକ ନଗର)ରେ ଥିବା ଭି.ଏ. ୯/୧୧ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟର ଦାୟୀତ୍ୱ ତାଙ୍କ ଉପରେ ରହିବ । କୋଷାଧ୍ୟକ୍ଷ ଭାବେ କାର୍ଯ୍ୟ କରିବାକୁ ପଦ୍ମଚରଣ ବେହେରା ରାଜି ହେଲେ ନାହିଁ । ପ୍ରତି ମାସରେ ଜୟପୁରରୁ

ଭୁବନେଶ୍ୱର ଆସି କ୍ୟାସବୁକ୍ ଲେଖିବା ତାଙ୍କ ପକ୍ଷରେ ସମ୍ଭବ ହେବ ନାହିଁ ବୋଲି ସେ ଇସ୍ତଫା ଦେଇଦେଲେ । ଫଳରେ ଏହି ଦାୟୀତ୍ୱରେ ପାରାଦ୍ୱୀପର ଶ୍ରୀ ଭଗବାନ ମହାପାତ୍ରଙ୍କୁ ରଖାଗଲା ।

ପୂର୍ବପରି ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ପ୍ରସାର କାର୍ଯ୍ୟ ଚାଲିଥାଏ । ଝାଡ଼ଖଣ୍ଡ ରାଜ୍ୟ ଦାୟୀତ୍ୱରେ ମୁଁ ରହିଲି । ଛତିଶଗଡ଼ ଦାୟୀତ୍ୱ ଶ୍ରୀ ପଦ୍ମଚରଣ ନାୟକ ଓ ରାଧାନାଥ ପ୍ରହରାଜଙ୍କୁ ଦିଆଗଲା । ଆନ୍ଧ୍ର ଦାୟୀତ୍ୱ ସ୍ୱୟଂ ବସନ୍ତବାବୁ ଓ ମନ୍ମଥପାଢ଼ୀ ବୁଝିଲେ ଏବଂ ପଶ୍ଚିମବଙ୍ଗର କଲିକତା ମହାନଗରୀରେ ଥିବା ଓଡ଼ିଆ ବିଦ୍ୟାଳୟମାନଙ୍କ ଦାୟୀତ୍ୱରେ ବସନ୍ତ ବାବୁ ଓ ଖୋର୍ଦ୍ଧାର ବିଚିତ୍ର କୁମାର ବଡ଼ଜେନା ରହିଲେ । ଏବେ ଉତ୍କଳ ସମ୍ମିଳନୀର ମୁଖ୍ୟ କାର୍ଯ୍ୟ ହେଲା ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ବିସ୍ତାର କରିବା । ବିଭିନ୍ନ ଜିଲ୍ଲାରେ ସାଂଗଠନିକ କାର୍ଯ୍ୟ ଉପରେ ପ୍ରାଧାନ୍ୟ ଦିଆଯାଇଥିଲେ ଏହି ସମ୍ମିଳନୀ ବ୍ୟାପକ ହୋଇ ପାରିଥାନ୍ତା । ତଥାପି କଟକ, ଗଞ୍ଜାମ, ରାଉରକେଲା ଓ ଭୁବନେଶ୍ୱର ଶାଖା ମାନଙ୍କରେ ବର୍ଷସାରା ସାଙ୍ଗଠନିକ କାର୍ଯ୍ୟ ଚାଲୁ ରହିବାଦ୍ୱାରା ରାଜ୍ୟରେ ଉତ୍କଳ ସମ୍ମିଳନୀର ସ୍ଥିତି ଅନୁଭୂତ ହେଉଥିଲା ।

ସଭାପତି ବସନ୍ତବାବୁ ପ୍ରାୟ ପ୍ରତି ସପ୍ତାହରେ ଥରେ ଦୁଇଥର ଭୁବନେଶ୍ୱର ଆସି କାର୍ଯ୍ୟାଳୟରେ ରହନ୍ତି ଓ ବିଭିନ୍ନ ସଭାସମିତିରେ ଯୋଗ ଦେବା ସହିତ ତାଙ୍କର ଓକିଲାତି ବିଷୟ ମଧ୍ୟ ବୁଝନ୍ତି । କାର୍ଯ୍ୟାଳୟର ଗୋଟିଏ ଛୋଟ କୋଠରୀରେ ତାଙ୍କର ଜିନିଷପତ୍ର ରଖାଯାଇଥାଏ । ଥରେ ରାତିରେ କାର୍ଯ୍ୟାଳୟର ତାଲାଭାଙ୍ଗି ଚୋର ପଶି ଜିନିଷପତ୍ର ନେଇଗଲା । ସେଥି ମଧ୍ୟରେ ସଭାପତି ବସନ୍ତ ବାବୁଙ୍କର ଜିନିଷ ମଧ୍ୟ ଥିଲା । ସେହିଦିନଠାରୁ ବସନ୍ତ ବାବୁ ଆଉ ଭୁବନେଶ୍ୱର କାର୍ଯ୍ୟାଳୟକୁ ଆସିବାକୁ ଇଚ୍ଛା କଲେ ନାହିଁ ।

କଟକ ଜିଲ୍ଲାର କାର୍ଯ୍ୟ ଠିକ୍ ଚାଲିଥାଏ । ପ୍ରତିବର୍ଷ ବାଲିଯାତ୍ରାରେ ଉତ୍କଳ ସମ୍ମିଳନୀ ମଞ୍ଚ ଗଠନ କରାଯାଏ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏହି ମଞ୍ଚକୁ ଉଦ୍‌ଘାଟନ କରନ୍ତି ଏବଂ ପ୍ରତି ସନ୍ଧ୍ୟାରେ ନିମନ୍ତ୍ରିତ ଅତିଥିମାନେ ଓଡ଼ିଆଭାଷା, ସାହିତ୍ୟ, ସଂସ୍କୃତି ଓ ଐତିହ୍ୟ ବିଷୟରେ ମଞ୍ଚରୁ ଭାଷଣ ଦିଅନ୍ତି । ଏତଦ୍‌ବ୍ୟତୀତ ପ୍ରତିବର୍ଷ କଟକଜିଲ୍ଲା ଉତ୍କଳ ସମ୍ମିଳନୀ ଶାଖାର ବାର୍ଷିକ ବିଶେଷାଙ୍କ ପ୍ରକାଶ ପାଏ । ଏଥିଲାଗି ଆବଶ୍ୟକୀୟ ଖର୍ଚ୍ଚ ବ୍ୟବସ୍ଥା କରିବାକୁ ବିଜ୍ଞାପନ ଯୋଗାଡ଼ କରାଯାଏ । ଏହି ବିଜ୍ଞାପନ ପାଇଁ ସାଧାରଣ ସମ୍ପାଦକ ଅଭୟ ସାମନ୍ତରାୟ ବର୍ଷସାରା ଭୁବନେଶ୍ୱର ଯିବାଆସିବା କରି ବିଭିନ୍ନ ଅନୁଷ୍ଠାନ ସହିତ ଯୋଗାଯୋଗ କରନ୍ତି ଓ ଖ୍ୟାତନାମା ଲେଖକମାନଙ୍କଠାରୁ ଲେଖା ଯୋଗାଡ଼ କରନ୍ତି । ପ୍ରକାଶିତ ପୁସ୍ତକ ନେଇ ଲେଖକ / ଲେଖିକା ଓ ବିଜ୍ଞାପନଦାତା ମାନଙ୍କୁ ବାଣ୍ଟନ୍ତି । ସେଥିପାଇଁ ସେ ସମ୍ମିଳନୀ ତହବିଲରୁ ତାଙ୍କ ଖର୍ଚ୍ଚ ନିଅନ୍ତି । ପ୍ରତିବର୍ଷ ଉତ୍କଳ ସମ୍ମିଳନୀ

ଆକାଉଣ୍ଟ ଅଡ଼ିଟ ହୁଏ ଓ ସଭ୍ୟସଭ୍ୟାମାନଙ୍କ ମଧ୍ୟରେ ଅଡ଼ିଟ ରିପୋର୍ଟ ବଣ୍ଟାଯାଏ । ଏଥିରୁ ତାଙ୍କୁ ଦିଆଯାଉଥିବା ଖର୍ଚ୍ଚର ସମୀକ୍ଷା ଦେଖି କେତେଜଣ ଲୋକ ତାଙ୍କ ବିରୁଦ୍ଧରେ ଅଭିଯୋଗ କଲେ ।

ଜଣେ ପ୍ରତିଭାଶାଳୀ ସଭ୍ୟ କହିଲେ ବାଲିଯାତ୍ରା ମଞ୍ଚ ଦାୟୀତ୍ୱ ଅଭୟବାବୁଙ୍କୁ ନ ଦେଇ ମୋତେ ଦିଆଯାଉ । ଏକଥା ମୁଁ ଅଭୟ ବାବୁଙ୍କୁ କହିଲି । ସେ ଅତ୍ୟନ୍ତ ବିରକ୍ତ ହୋଇ କହିଲେ, ତୁମର ଯାହାଇଛା ସେୟାକର । ଏଣିକି ଆଉ ମୁଁ ବିଜ୍ଞାପନ କିମ୍ବା ବାଲିଯାତ୍ରା ମଞ୍ଚ ଦାୟୀତ୍ୱରେ ରହିବି ନାହିଁ । ସେହି ବର୍ଷ ଉକ୍ତ ଭଦ୍ରଲୋକଙ୍କୁ ମଞ୍ଚ ଦାୟୀତ୍ୱ ଦିଆଗଲା, ମାତ୍ର ଅଭୟ ବାବୁଙ୍କ ସାହାଯ୍ୟ ନ ପାଇ କୋଷାଧ୍ୟକ୍ଷ ଶ୍ରୀ ରଘୁନାଥ ମହାପାତ୍ରଙ୍କୁ ସାଙ୍ଗରେ ନେଇ ମୁଁ ବିଜ୍ଞାପନ ସଂଗ୍ରହ କାର୍ଯ୍ୟରେ ଲାଗିପଡ଼ିଲି ।

ଇତିମଧ୍ୟରେ ଭୁବନେଶ୍ୱରକୁ ଆସୁନଥିବା ଅପମାନିତ ବସନ୍ତବାବୁ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ଅଧିବେଶନ ଡକାଇ ସେଠାରେ ନିର୍ବାଚନ କରାଇବାକୁ ଚେଷ୍ଟା କରୁଥାନ୍ତି । ଏଣେ କଟକର ସେହି ସଭ୍ୟ ଏଥିଲାଗି ତାଙ୍କୁ ସାହାଯ୍ୟ କରୁଥାନ୍ତି । ବ୍ରହ୍ମପୁରଠାରେ ଅଧିବେଶନ କରିବାକୁ ବସନ୍ତବାବୁଙ୍କୁ ଗଞ୍ଜାମ, ଗଜପତି, ଜୟପୁର, କଳାହାଣ୍ଡି, ରାୟଗଡ଼ା ଓ ନବରଙ୍ଗପୁର ଆଦି ଦକ୍ଷିଣ ଓଡ଼ିଶାର ସମସ୍ତ ଉତ୍କଳ ସମ୍ମିଳନୀ ଶାଖା ସାହାଯ୍ୟ କରିବେ ବୋଲି ଶୁଣାଯାଉଥାଏ । ମାତ୍ର କଟକ, ପୁରୀ, ବାଲେଶ୍ୱର, ମୟୂରଭଞ୍ଜ, ଢେଙ୍କାନାଳ, ଯାଜପୁର ଓ ଖୋର୍ଦ୍ଧା ଆଦି ଶାଖା ତାଙ୍କ ସପକ୍ଷରେ ରହିବେକି ନାହିଁ ସେ ବିଷୟରେ ସନ୍ଦେହ ଥାଏ । ତାଙ୍କୁ ଏଥିଲାଗି କଟକରୁ ଉପରୋକ୍ତ ପ୍ରତିପତ୍ତିଶାଳି ସଦସ୍ୟ ସାହାଯ୍ୟ କରୁଥାନ୍ତି ।

ଏଥିରେ କଟକ ଜିଲ୍ଲାକୁ ସାମିଲ କରିବାକୁ ଚେଷ୍ଟା ଚାଲିଥାଏ । କଟକ ଜିଲ୍ଲା ସଭାପତି ଭାବେ ମୁଁ କହିଲି ଏଥିଲାଗି ଆମ ଜିଲ୍ଲାର କାର୍ଯ୍ୟକାରୀକମିଟି ସଦସ୍ୟ ମାନଙ୍କର ମତ ନେବାକୁ ହେବ। ଖବର ପାଇଲି ଇତିମଧ୍ୟରେ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ସାଧାରଣ ଅଧିବେଶନ ବସିବ । ସମସ୍ତ ଶାଖା ସେଠାରେ ମିଳିତ ହୋଇ ଉପରୋକ୍ତ ନିଷ୍ପତ୍ତି ନେବେ । ମୁଁ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲି । ବୁଝିଲି ଯେ ଇତି ମଧ୍ୟରେ କଟକରେ ମହାନଗର ଶାଖା ଓ କଟକ ଶିଳ୍ପାଞ୍ଚଳ ଶାଖା ଗଠନ ହୋଇ ସାରିଛି । ଢେଙ୍କାନାଳ, ଯାଜପୁର, ବାଲେଶ୍ୱର ବା ମୟୂରଭଞ୍ଜ ଆଦି ଜିଲ୍ଲାମାନଙ୍କରେ କୋଡ଼ିଏଟି ଶିଳ୍ପାଞ୍ଚଳଶାଖା ମଧ୍ୟ ଗଠନ ହୋଇ ସାରିଛି । ନିୟମତଃ କଟକରେ ନୂଆଶାଖା ଦୁଇଟି ସୃଷ୍ଟି କରିବାପାଇଁ କେନ୍ଦ୍ର କମିଟିର ସ୍ୱୀକୃତି ଆବଶ୍ୟକ । ପ୍ରଥମେ ଆମ ଜିଲ୍ଲାଶାଖା ଏହାର ସପକ୍ଷରେ ମତ ଦେବାକଥା । ସେହିଭଳି ଯେଉଁସବୁ ଜିଲ୍ଲାରେ ଶିଳ୍ପାଞ୍ଚଳ ଶାଖା ସବୁ ଗଠିତ ହୋଇଛି ସେଥିଲାଗି ମୂଳ ଜିଲ୍ଲାଶାଖାମାନଙ୍କର ମଧ୍ୟ ସହମତି ଦରକାର । ଯାହାଙ୍କ

ପ୍ରଚେଷ୍ଟାରେ ଏ ସବୁ ଶାଖା ସୃଷ୍ଟି ହୋଇଥିଲା ସେହି ପ୍ରତିପତ୍ତିଶାଳୀ ସଭ୍ୟ ମୋତେ ପଚାରିଲେ ଏହି ପରିବର୍ତ୍ତିତ ଉତ୍କଳ ସମ୍ମିଳନୀର କାର୍ଯ୍ୟକାରୀ ସଭାପତି ଆପଣ ହେବେ କି ନାହିଁ ?

କହିଲି, ଉତ୍କଳ ସମ୍ମିଳନୀର ସମ୍ବିଧାନରେ ଜଣେ ମାତ୍ର ସଭାପତି ରହିବାର ବ୍ୟବସ୍ଥା ଥିବା ସ୍ଥଳେ ଏବେ ତିନିଜଣ ସଭାପତି ରହିବା କେତେଦୂର ସମିଚୀନ ? ସେ କହିଲେ, ପରିସ୍ଥିତିକୁ ନେଇ ସମ୍ବିଧାନ ବଦଳିବ । ବସନ୍ତବାବୁ ଆଜୀବନ ସଭାପତି ରହିବାକୁ ଚାହାନ୍ତି । ଏଣିକି ତାଙ୍କର ବଳ ହଟିଲାଣି । ପ୍ରତି ତିନିବର୍ଷରେ ବିଭିନ୍ନ ସ୍ଥାନରେ ନିର୍ବାଚନ ପ୍ରକ୍ରିୟା ହୋଇ ସେ ସଭାପତି ଭାବେ ନିର୍ବାଚିତ ହେବାକୁ ତାଙ୍କ ପକ୍ଷରେ କଷ୍ଟସାଧ୍ୟ ହେବ । ତେଣୁ ତାଙ୍କୁ ଆଜୀବନ ସଭାପତି କରିବା ଉଚିତ ହେବ । ବୟସ ଦୃଷ୍ଟିରୁ ସେ ଏଣିକି ଜିଲାକୁ ଜିଲ୍ଲା ଗସ୍ତ କରିବାରେ ସମର୍ଥ ହେବେ ନାହିଁ । ଯାହାଙ୍କୁ ଆମେ ସଭାପତି ଦାୟୀତ୍ୱ ଦେବାକୁ ଚାହୁଁ ଉତ୍କଳ ସମ୍ମିଳନୀ କାର୍ଯ୍ୟ ଲାଗି ସେ ଅଧିକ ସମୟ ଦେଇ ପାରିବା ସମ୍ଭବନୁହେଁ। ତେଣୁ ଆପଣ କାର୍ଯ୍ୟକାରୀ ସଭାପତି ହୋଇ ଉତ୍କଳ ସମ୍ମିଳନୀକୁ ଆଗେଇ ନେବେ । ଯଦି ଏ ପ୍ରସ୍ତାବରେ ଆପଣ ରାଜି ନ ହୁଅନ୍ତି, ତେବେ ଭବିଷ୍ୟତରେ ଯାହାଘଟିବ କାହାକୁ ଆଉ ଦୋଷ ଦେବେ ନାହିଁ ।

ଉଦ୍ୟମକାରୀଙ୍କଠାରୁ ଏପରି କଥା ଶୁଣି ମନଟା ମୋର ଭାଙ୍ଗିଗଲା । ଇତି ମଧ୍ୟରେ କେତେ କଣ ଘଟି ସାରିଛି, ହୁଏତ ମୁଁ ଜାଣି ନାହିଁ । କଟକ ଜିଲ୍ଲା କାର୍ଯ୍ୟକାରୀ କମିଟିର ସଭ୍ୟମାନେ ମଧ୍ୟ କେହି ଜାଣନ୍ତି ନାହିଁ । ତେଣୁ ମୁଁ ଏହି କମିଟିର ବୈଠକ ଡକାଇଲି । ଉପସ୍ଥିତ ସଦସ୍ୟ / ସଦସ୍ୟାମାନେ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । କଟକ ସହରରେ ମହାନଗର ଶାଖା ଓ କଟକ ଶିଳ୍ପାଞ୍ଚଳ ଶାଖା ଗଠନ କରିବାକୁ ଆମ କାର୍ଯ୍ୟକାରୀ କମିଟିରେ ନିଷ୍ପତ୍ତି ହୋଇନାହିଁ । ଯିଏ ଏସବୁ କରିଗଲେ ସେ ଆମର ଜଣେ ପରିଷଦ ସଦସ୍ୟ ହୋଇ ମଧ୍ୟ ଆମ ଅଜାଣତରେ ଏସବୁ କରିବା ଅତ୍ୟନ୍ତ ଦୁଃଖାବହ କଥା । ଆମେ ଭାବୁଥିଲୁ ପରବର୍ତ୍ତୀ ନିର୍ବାଚନ ଆମେ କଟକରେ କରିବୁ । ମାତ୍ର ଏଭଳି ପରିସ୍ଥିତିରେ ସେପରି ଚିନ୍ତା ପରିହାର କରିବାକୁ ସମସ୍ତେ ମତ ଦେଲେ । ଏ ବିଷୟ କେନ୍ଦ୍ରକୁ ଜଣାଇବାକୁ ଉପସ୍ଥିତ ସଦସ୍ୟମାନେ ମତ ଦେଲେ । ମାତ୍ର କଟକରେ ଦୁଇଟି ନୂଆ ଶାଖା ସୃଷ୍ଟି ହେବା କଥା ଲିଖିତ ଆକାରରେ ଏ ପର୍ଯ୍ୟନ୍ତ ଆମକୁ ଜଣାଇ ଦିଆଯାଇ ନାହିଁ । ତେଣୁ ଲିଖିତ ପ୍ରମାଣ ନ ଥାଇ ଏ ଦିଗରେ ଆଗେଇବାର ନୁହେଁ ।

କେନ୍ଦ୍ରୀୟ କାର୍ଯ୍ୟନିର୍ବାହୀ କମିଟି ବୈଠକ ସମ୍ମିଳନୀ କାର୍ଯ୍ୟାଳୟରେ ବସିଲା । ବହୁ ସଦସ୍ୟ ଏସବୁ ବିଷୟରେ ମଧ୍ୟ ଆଭାସ ପାଇ ସାରିଥିଲେ । ସାଧାରଣ ସଂପାଦକ ଅମରେନ୍ଦ୍ର ଦାସ କହିଲେ ପୂର୍ବ ସଭାରେ ବସନ୍ତ ବାବୁଙ୍କ ସଭାପତିତ୍ୱରେ ଜୁଲାଇ ମାସରେ ନିର୍ବାଚନ କରାଯିବାକୁ ପ୍ରସ୍ତାବ ଗୃହୀତ ହୋଇଥିଲା । ତଦନୁଯାୟୀ ସବୁ ଜିଲ୍ଲାକୁ ଲେଖାଯାଇଥିଲା

ଯେ କିଏ ଏଥିପାଇଁ ଆତିଥ୍ୟ ଦେବାକୁ ଆଗ୍ରହୀ ଶୀଘ୍ର ଜଣାନ୍ତୁ । ଏ ପର୍ଯ୍ୟନ୍ତ କାହାଠାରୁ ଚିଠି ଆସିନାହିଁ । ତେଣୁ ଭୁବନେଶ୍ୱରରେ ନିର୍ବାଚନ କରାଯିବାକୁ ସେହି ସଭାରେ ନିଷ୍ପତ୍ତି ନିଆଗଲା ।

ଖବର ମିଳିଲା ଯେ, ବ୍ରହ୍ମପୁରଠାରେ ସାଧାରଣ ଅଧିବେଶନ ଅନୁଷ୍ଠିତ ହୋଇ ଏଥି ମଧ୍ୟରେ କରାଯାଇଥିବା ନୂଆ ଶାଖାଗୁଡ଼ିକ ଅନୁମୋଦନ ଲାଭ କରିଛନ୍ତି । ଦଶବାରଟି ଗାଡ଼ିରେ କଟକ, ଭୁବନେଶ୍ୱର, ନୟାଗଡ଼ ଆଦି ବିଭିନ୍ନ ସ୍ଥାନରୁ ଲୋକମାନେ ଯାଇଥିଲେ । ଅଧିବେଶନରେ ନିର୍ବାଚନ ପାଇଁ ତାରିଖ ମଧ୍ୟ ଧାର୍ଯ୍ୟ ହୋଇଛି । ଏ ଖବର ପାଇ ସାଧାରଣ ସମ୍ପାଦକ ଅମରେନ୍ଦ୍ର ଦାସ କାର୍ଯ୍ୟକାରୀ କମିଟି ଡକାଇଲେ । ସେହି ବୈଠକରେ ଭୁବନେଶ୍ୱରରେ ଉତ୍କଳ ସମ୍ମିଳନୀ ସାଧାରଣ ଅଧିବେଶନ ଓ ନିର୍ବାଚନ ହେବା ପାଇଁ ଦିନ ସ୍ଥିର ହେଲା ।

କଟକର କେତେଜଣ ସଭ୍ୟ କହିଲେ, ଏବେ ଯାହା ହେବାକୁ ଯାଉଛି; ଉତ୍କଳ ସମ୍ମିଳନୀ ଦୁଇ ଭାଗ ହୋଇ ବ୍ରହ୍ମପୁର ଓ ଭୁବନେଶ୍ୱରରେ ରହିବ । ଫଳରେ ବିଚ୍ଛିନ୍ନାଞ୍ଚଳରେ ଯେପରି ଶିକ୍ଷା ପ୍ରସାର କାର୍ଯ୍ୟ ହେଉଛି, ତାହା ବନ୍ଦ ହୋଇଯିବ । ନିଜ ନିଜ ଭିତରେ କାଦୁଅ ଫିଙ୍ଗା ଚାଲିବ । ଯେଉଁ ଅନୁଷ୍ଠାନ ଲାଗି ଓଡ଼ିଶା ରାଜ୍ୟ ସୃଷ୍ଟି ହୋଇଥିଲା, ସେ ଅନୁଷ୍ଠାନର ବିଲୁପ୍ତି ଦିଗରେ ବାଟ ଫିଟିଯିବ । ଉତ୍କଳ ସମ୍ମିଳନୀ ସମ୍ବିଧାନରେ ଆଜୀବନ ସଭାପତି ପଦବୀ ନାହିଁ । ଗଣତାନ୍ତ୍ରିକ ପଦ୍ଧତିରେ ସଭାପତି ନିର୍ବାଚନ ହେବା କଥା । ବ୍ରହ୍ମପୁରଠାରେ ଯଦି ଆଜୀବନ ସଭାପତି, ସଭାପତି ଓ କାର୍ଯ୍ୟକାରୀ ସଭାପତି ରଖାଯିବାର ନିଷ୍ପତ୍ତି ନିଆଯାଏ, ତାହେଲେ ଏହି ଅନୁଷ୍ଠାନର ମହତ୍ତ୍ୱ ରହିବ ନାହିଁ । ଏଥିପାଇଁ ଆଇନ ଅଦାଲତର ଆଶ୍ରୟ ନେବାକୁ ହେବ ।

କାହାକୁ ଏକଥା କହିବି ? ସାଧାରଣ ସମ୍ପାଦକ ଅମରେନ୍ଦ୍ର ଦାସଙ୍କୁ ଦୂରଭାଷରେ ଜଣାଇଲି । ସେ କହିଲେ ମୁଁ ଏବେ ଭୁବନେଶ୍ୱର ଯାଇ ପାରୁନାହିଁ । ଆପଣ କାର୍ଯ୍ୟାଳୟର ସଂପାଦକ ପ୍ରହରାଜଙ୍କ ସହିତ ଆଲୋଚନା କରନ୍ତୁ । କାର୍ଯ୍ୟାଳୟ ସମ୍ପାଦକ ଶ୍ରୀ ପ୍ରହରାଜଙ୍କୁ ଭେଟିଲି । ସେ କହିଲେ, ସଭାପତି ଯେତେବେଳେ ଆମଠାରୁ ଅଲଗା ହୋଇଯିବାକୁ ଚେଷ୍ଟା ଚଳାଇଛନ୍ତି, ସେତେବେଳେ ଉପସଭାପତି ଭାବେ ଆପଣ ଯାହା କରିବା କଥା କରନ୍ତୁ । ମୋ ଦ୍ୱାରା କ'ଣ ହୋଇ ପାରିବ ? ଆଇନ ଅଦାଲତର ଆଶ୍ରୟ ନେବାକୁ ମୋର ଚାରା ନାହିଁ । ତେଣୁ ଭୁବନେଶ୍ୱର ଶାଖା ସଭାପତି ପ୍ରଫେସର ଅଦ୍ୱୈତ କୁମାର ପାତ୍ରଙ୍କୁ ସମ୍ପର୍କ କଲି । ସେ ଦିଲ୍ଲୀରେ ଥିଲେ । ଦିନକପରେ ସେ ଆସି ପହଞ୍ଚିଯାଇ ମୋତେ ଡକାଇଲେ । ତାଙ୍କୁ ସବୁ କଥା କହିଲି । ସେ କହିଲେ ଆପଣ ଚିନ୍ତା କରନ୍ତୁ ନାହିଁ । ଭୁବନେଶ୍ୱର ଶାଖାର ବୈଠକ ଡକାଇ ମୁଁ ବିହିତ ବ୍ୟବସ୍ଥା କରିବି । ତେଣେ ବ୍ରହ୍ମପୁରଠାରେ ନିର୍ବାଚନ ହେବାର ତାରିଖ ଧାର୍ଯ୍ୟ ହୋଇଗଲା ।

ଅଦ୍ୱୈତ ବାବୁ ଭୁବନେଶ୍ୱର ଶାଖାର ବୈଠକ ଡକାଇଲେ । ସେହି ବୈଠକରେ କଥା ହେଲା ବ୍ରହ୍ମପୁରଠାରେ ଅଧିବେଶନ ବସାଇବାକୁ ଯେଉଁ ଚିଠି ବଣ୍ଟା ହୋଇଛି ତାକୁ ନେଇ ଅଦାଲତରେ ଚାଲେଞ୍ଜ୍ କରାଯିବ । ସଭାପତିଭାବେ ଭୁବନେଶ୍ୱରରେ ଥିବା ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରେ ଗୋଟିଏ ନିଷ୍ପତ୍ତି ନେଇସାରି ପୁଣି ବ୍ରହ୍ମପୁରରେ ବସନ୍ତବାବୁ ଅନ୍ୟଏକ ନିଷ୍ପତ୍ତି ନେଇ ପାରିବେନାହିଁ । ତାଛଡ଼ା ବିଭିନ୍ନ ଜିଲ୍ଲାରେ ନୂଆ ଶାଖା ସବୁ ଖୋଲି ପରିଚାଳନା ସଭାରେ ସେସବୁ ଶାଖାକୁ ଅନୁମୋଦନ ନ କରାଇ ନିର୍ବାଚନ କରିବାକୁ ନୋଟିସ ଦେବା ମଧ୍ୟ ବେଆଇନ । ଏସବୁକୁ ନେଇ ଭୁବନେଶ୍ୱର ଶାଖାର ତିନିଜଣ ସଦସ୍ୟ ସିନିୟର ସିଭିଲ ଜଜ୍‌ଙ୍କ ଅଦାଲତରେ ମକଦ୍ଦମା କଲେ । ତେଣେ ବ୍ରହ୍ମପୁରଠାରେ ସାଧାରଣ ସଭା ଓ ନିର୍ବାଚନ ହେବାର ଯୋଗାଡ଼ ଚାଲିଥାଏ ।

ଯାହା ସବୁ ଘଟିଯାଉଛି ତାହା ଶୁଭଙ୍କର ନୁହେଁ । କଟକରେ ଏଥିସହିତ ସଂପୃକ୍ତ ସେହି ପ୍ରତିପତ୍ତିଶାଳୀ ସଭ୍ୟଙ୍କ ସହିତ ଆଲୋଚନା କରିବାପାଇଁ ସେଦିନ ତାଙ୍କ ଘରକୁ ଗଲି । ବର୍ତ୍ତମାନ ପର୍ଯ୍ୟନ୍ତ ଯାହା ସବୁ ଘଟିଯାଇଛି ସେ ବିଷୟରେ ମୋତେ ସେ ସୂଚନା ଦେଇସାରି ପଚାରିଲେ, ଆପଣ ଆମ ସହିତ ରହିବେ, ନା ଭୁବନେଶ୍ୱର ଲୋକମାନଙ୍କ ସହିତ ରହିବେ ? ଯଦି ଆମ ସହିତ ରହନ୍ତି, ତେବେ ଆପଣ କାର୍ଯ୍ୟକାରୀ ସଭାପତି ରହି ଉତ୍କଳ ସମ୍ମିଳନୀର ମୁଖ୍ୟଭାବେ ସମ୍ମାନ ପାଇବେ । ତା ନହେଲେ ଆପଣ ଆମର ବିରୋଧ କରୁଛନ୍ତି ବୋଲି ବୁଝାଯିବ ।

କହିଲି, ବର୍ତ୍ତମାନ ଉତ୍କଳ ସମ୍ମିଳନୀର ସଭାପତି ଅଛନ୍ତି ବସନ୍ତ କୁମାର ପାଣିଗ୍ରାହୀ । ସାତଜଣ ଉପସଭାପତିଙ୍କ ମଧ୍ୟରେ ମୁଁ ଜଣେ ଉପସଭାପତି । ମାତ୍ର ଆମ୍ଭମାନଙ୍କୁ ନଜଣାଇ ବସନ୍ତବାବୁ ଅଲଗା ବାଟରେ ଚାଲିଛନ୍ତି । ଆପଣ ତାଙ୍କୁ କହନ୍ତୁ, ସେ ଭୁବନେଶ୍ୱର କାର୍ଯ୍ୟାଳୟରେ ସମସ୍ତଙ୍କୁ ଏକାଠିକରି ଯାହା ନିଷ୍ପତ୍ତି ନେବାକଥା ବ୍ୟବସ୍ଥାକରନ୍ତୁ । ସେ କହିଲେ, ଏବେ ମକଦ୍ଦମା ଚାଲିଲାଣି । କେଉଁ ପାଣି କୁଆଡ଼େ ବୋହିଯିବ ଭବିଷ୍ୟତ କହିବ । ଯଦି ଆପଣ ଉତ୍କଳ ସମ୍ମିଳନୀର କାର୍ଯ୍ୟକାରୀ ସଭାପତି ହୋଇ ନିଜର ସ୍ଥିତି ବଜାୟ ରଖିବାକୁ ଚାହାନ୍ତି, ତାହେଲେ ବ୍ରହ୍ମପୁର ଆସନ୍ତୁ ।

ଆଉ କିଛି ଆଲୋଚନା ନ କରି ମୁଁ ଫେରି ଆସିଲି । ବ୍ରହ୍ମପୁରଠାରେ ଯାହା ହେଉଛି, ସେ ବିଷୟରେ କେନ୍ଦ୍ରୀୟ ପରିଚାଳନା କମିଟି କିଛି ଜାଣେ ନାହିଁ । ଏହି କମିଟିର ଅନୁମୋଦନ ବିନା ପ୍ରତିଜିଲାରେ ସମାନ୍ତରାଳ ଶିକ୍ଷାଞ୍ଚଳ ଶାଖାମାନ ଗଢ଼ା ହୋଇଗଲାଣି । କଟକ ଜିଲା ଶାଖାକୁ ନଜଣାଇ କଟକ ମହାନଗରଶାଖା ଓ ଶିକ୍ଷାଞ୍ଚଳଶାଖା ଗଢ଼ାହୋଇ ସାରିଛି । ଏପରି କାର୍ଯ୍ୟକୁ ସମର୍ଥନ କରିବା ମୋ ପକ୍ଷରେ ଅନ୍ୟାୟ ହେବ । ନ କଲେ

ବହୁ ଲୋକ ମୋର ବିରୋଧି ହୋଇ ଯିବେ । ଆଉ ମୁଁ କିଛି ଭାବିପାରୁ ନଥିଲି । ନ୍ୟାୟ ବାଟରେ ଚାଲିବାକୁ ଅନେକ ଅସୁବିଧା ହେବ । ଅନ୍ୟାୟ ବାଟରେ ଯାଇ ମୁଁ ଯଦି ଉତ୍କଳ ସମ୍ମିଳନୀର କାର୍ଯ୍ୟକାରୀ ସଭାପତି ହେବି; ସେଥିରେ ମୋର ମାନସିକ ଶାନ୍ତି ରହିବ ନାହିଁ । ଯାହା ବି ହେଉ, ମୋତେ ଠିକ୍ ବାଟରେ ଚାଲିବାକୁ ହେବ ।

ବିଗତ ଦଶବର୍ଷ ଧରି ଉତ୍କଳ ସମ୍ମିଳନୀ ପାଇଁ ଯାହା ମୁଁ କରି ଆସିଛି, ସେତିକି ବଜାୟ ରହୁ । ଏହି ସମ୍ମିଳନୀକୁ ଆର୍ଥିକ ଦୁରବସ୍ଥାରୁ ରକ୍ଷାକରି ଏହାକୁ ନେଇ ଆମେରିକା ଓ କାନାଡ଼ାରେ ରଖି ପ୍ରବାସୀ ଓଡ଼ିଆମାନଙ୍କ ସାହାଯ୍ୟରେ ବିଛିନ୍ନାଞ୍ଚଳରେ ଶିକ୍ଷା ପ୍ରସାର ପାଇଁ ଯାହାସବୁ ମୁଁ କରିପାରିଛି ତାକୁ କେହି ବ୍ୟାହତ କରି ପାରିବେ ନାହିଁ । ବରଂ ଏଣିକି କୌଣସି ପଦପଦବୀରେ ନ ରହି ଜଣେ ସ୍ୱାଭିମାନୀ ଓଡ଼ିଆଭାବେ ବଞ୍ଚିବା ମୋ ପକ୍ଷରେ ଠିକ୍‌ହେବ ।

ବ୍ରହ୍ମପୁର ଠାରେ ସାଧାରଣ ଅଧିବେଶନ ଓ ନିର୍ବାଚନ ସମୟ ପାଖେଇ ଆସିଲା । ଏଣେ ପ୍ରଫେସର ଅଦ୍ୱୈତ କୁମାର ପାତ୍ର, ଲେଳିନ୍ ମହାନ୍ତି ଓ ଶ୍ରୀ ଅର୍ଜୁନ ସାମାନ୍ତରାୟ ଭୁବନେଶ୍ୱର ଅଦାଲତରେ ହାଜର ହୋଇ ବ୍ରହ୍ମପୁର ନିର୍ବାଚନ ସ୍ଥଗିତ ରଖିବାକୁ ପ୍ରାର୍ଥନା କଲେ । ସିନିୟର ସିଭିଲ୍ ଜଜ୍ ଯେଉଁ ଦିନ ସ୍ଥଗିତାଦେଶ ଜାରୀ କଲେ, ଠିକ୍ ତା ପରଦିନ ବ୍ରହ୍ମପୁର ଠାରେ ନିର୍ବାଚନ ହେବାକଥା । କୋର୍ଟ ତରଫରୁ ଜଣେ ପଟାଦାର ପିଅନକୁ ସାଙ୍ଗରେ ନେଇ ଅର୍ଜୁନ ସାମନ୍ତରାୟ ଭୋର୍ ସକାଳୁ ବ୍ରହ୍ମପୁର ଗଲେ । ଉତ୍କଳ ଆଶ୍ରମରେ ସାଧାରଣ ସଭା ହେବାକୁ ଥାଏ । ସଭ୍ୟ ସଭ୍ୟାମାନେ ଆସିବାରେ ଲାଗିଥାନ୍ତି । ବସନ୍ତବାବୁ ଆସି ମଞ୍ଚଉପରେ ବସିଲେ । ଠିକ ସେତିକିବେଳେ କୋର୍ଟପିଅନ ସଭାଗୃହ ଭିତରକୁ ପ୍ରବେଶ କଲା । ତାକୁ ଦେଖିବା ମାତ୍ରେ ବସନ୍ତବାବୁ ମଞ୍ଚଛାଡ଼ି ବାହାରିଗଲେ । ଯେଉଁମାନେ ସାଧାରଣ ସଭାରେ ଯୋଗଦେବାକୁ ଉତ୍କଳ ଆଶ୍ରମରେ ପହଞ୍ଚିଥିଲେ, ସେମାନେ ଏସବୁ ଘଟଣା ଜାଣି ଲେଉଟି ଗଲେ ।

ଏହାର ଦୁଇଦିନ ପରେ ଉତ୍କଳ ପ୍ରସଙ୍ଗରେ ଗୋଟିଏ ଲେଖା ଦେବା ପାଇଁ ମୁଁ ଭୁବନେଶ୍ୱର ଆସି ଲୋକସମ୍ପର୍କ ନିର୍ଦ୍ଦେଶାଳୟରେ ପହଞ୍ଚିବା ପରେ କଟକରୁ ଫୋନ ପାଇ ଅଧିବକ୍ତା ଜଗଦୀଶ ମହାନ୍ତିଙ୍କ ସହିତ କଥା ହେଲି । ସେ କହିଲେ, ଆପଣ ଭୁବନେଶ୍ୱର ଯାଇଛନ୍ତି । ଏଣେ କଟକ ପାଟ୍ଟନିବାସରେ ଉତ୍କଳସମ୍ମିଳନୀ ମିଟିଂ ଡକା ହେଲାଣି । କହିଲି, ଆପଣ ଯାଆନ୍ତୁ । ଯେଉଁଟା ଠିକ୍ ଭାବିବେ ସେଭଳି ମତ ପ୍ରକାଶ କରିବେ । ସେ ପଚାରିଲେ, ଆପଣଙ୍କୁ ଡକା ହୋଇନାହିଁ; ମୁଁ ସେଠିକି ଯିବାଟା କ'ଣ ଠିକ୍ ହେବ ? କହିଲି, ମୋ ବଦଳରେ ଆପଣ ରହନ୍ତୁ । ଆପଣଙ୍କ ବିଚାରରେ ଉଚିତ କଥାଟା କହିବାରେ ଅସୁବିଧା କେଉଁଠି ? ଠିକ୍ ଏହା ପରେ ଅଧିବକ୍ତା ଚକ୍ରଧର

ବେହେରାଙ୍କ ଫୋନ୍ ଆସିଲା । ସେ ମଧ ସେୟା କହିଲେ । କହିଲି କଟକଜିଲ୍ଲାର ଉପସଭାପତି ଭାବେ ମୋ ସ୍ଥାନରେ ଆପଣ ସେଠାରେ ଯୋଗ ଦିଅନ୍ତୁ । ଭାବିଲି, ମିଟିଂ ସରିଯିବା ପରେ ହୁଏତ ଏ ଦୁଇ ବନ୍ଧୁଙ୍କ ଠାରୁ ଘଟଣାଟା ବୁଝିହେବ । କଟକ ଫେରିବା ପରେ ଖବର ପାଇଲି ଯେ ସେହି ସଭାରେ ମୋ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆଣି ମୋତେ ଜଣେ ଅଯୋଗ୍ୟ ବ୍ୟକ୍ତି ଭାବେ ଚିତ୍ରିତ କରି ଅନ୍ୟ ଜଣେ ବ୍ୟକ୍ତିଙ୍କୁ ସଭାପତି ଭାବେ ବାଛିବା ପାଇଁ ପ୍ରସ୍ତାବ ରଖାଗଲା । ଉପସଭାପତି ଚକ୍ରଧର ବେହେରାଙ୍କୁ ସଭାପତି ହେବା ପାଇଁ ମଧ ଅନୁରୋଧ କରାଗଲା । ମାତ୍ର ଚକ୍ରଧର ବାବୁ ଏହି ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲେ । ଏହାପରେ ଅଧିବକ୍ତା ଜଗଦୀଶ ମହାନ୍ତିଙ୍କ ନାମ ମଧ ପ୍ରସ୍ତାବ କରାଗଲା । ମାତ୍ର ସେ ଏଥିରେ ରାଜି ହେଲେ ନାହିଁ । ଏବେ ବିଜୟକୁମାର ଚକ୍ରବର୍ତ୍ତୀଙ୍କୁ କଟକ ଜିଲାର ସଭାପତି ଭାବେ ନିଆଗଲା । ଏସବୁ ଖବର ଜାଣିବା ପରେ ମୁଁ କଟକ ଜିଲା ଉତ୍କଳ ସମ୍ମିଳନୀ ଶାଖାର ପରିଚାଳନା ସଭା ଡକାଇଲି । ପାନ୍ଥନିବାସ ସଭାରେ ନିଆଯାଇଥିବା ପଦକ୍ଷେପକୁ ସମସ୍ତେ ନିନ୍ଦା କଲେ । ଆଉ ମାତ୍ର ଆଠଦିନ ପରେ ଭୁବନେଶ୍ୱରରେ ନିର୍ବାଚନ ହେବ । ସେଥିପାଇଁ ପ୍ରସ୍ତୁତ ହେବାକୁ ପ୍ରସ୍ତାବହେଲା । କଟକଜିଲାର ସବୁ ପରିଷଦ ସଦସ୍ୟ ମୋ ସପକ୍ଷରେ ରହିଲେ ନିର୍ବାଚନରେ ଜୟ ଲାଭ ପାଇଁ ମୋର ମାନସିକ ଦୃଢ଼ତା ଆସିବ । ଉପସ୍ଥିତ ସଦସ୍ୟମାନେ କହିଲେ ସେ ବିଶ୍ୱାସ ଆମର ଅଛି ।

ଭୁବନେଶ୍ୱରରେ ନିର୍ବାଚନ ହେବା ପାଇଁ ଯେଉଁ ପ୍ରସ୍ତୁତି କମିଟି ଗଠିତ ହେଲା, ସେଥିରେ ମୁଁ ଜଣେ ମୁଖ୍ୟ ସଦସ୍ୟ ଭାବେ ରହିଲି । ଦୁଇଶହ ଲୋକଙ୍କ ରହିବା, ଖାଇବା ଓ ଯାତାୟାତ ବ୍ୟବସ୍ଥା ସହିତ କେଉଁଠି ନିର୍ବାଚନ ହେବ ସେ ବିଷୟରେ ଆଲୋଚନା ହେଲା । ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ ଏଥିଲାଗି ଉପଯୁକ୍ତ ସ୍ଥାନ ଭାବେ ସଭିଏଁ ମତଦେଲେ । ସଭାପାଇଁ ପ୍ରେକ୍ଷାଳୟ ଓ ରହିବାପାଇଁ ହଷ୍ଟେଲ ବ୍ୟବସ୍ଥା କରିବାକୁ ମୋତେ ଦାୟୀତ୍ୱ ଦିଆଗଲା । ଦୁଇଦିନର ଖାଇବା ଦାୟୀତ୍ୱ ପ୍ରସ୍ତୁତି କମିଟି ନେଲେ । ମାତ୍ର ପ୍ରେକ୍ଷାଳୟ ଓ ହଷ୍ଟେଲ ରହଣି କଥା ମାଗଣାରେ ବ୍ୟବସ୍ଥା କରିବା ପାଇଁ ମୋତେ ଅନୁରୋଧ କରାଗଲା ।

ଡକ୍ଟର ଦେବୀପ୍ରସାଦ ରାୟ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର କୁଳପତି ଥାଆନ୍ତି । ମୁଁ ତାଙ୍କ ପାଖକୁ ଯାଇ କୃଷି ମହାବିଦ୍ୟାଳୟର ପ୍ରେକ୍ଷାଳୟରେ ଆମ ନିର୍ବାଚନ ପାଇଁ ସୁବିଧା ଦେବାକୁ ଅନୁରୋଧ କଲି । ସେ ଜଣେ ଅତ୍ୟନ୍ତ ଭଦ୍ର ଓ ପରୋପକାରୀ ବ୍ୟକ୍ତି । ମୋ ପ୍ରତି ତାଙ୍କର ବହୁତ ସମ୍ମାନ ରହିଛି । ସେ ହସିଦେଇ ପଚାରିଲେ, ଏ ନିର୍ବାଚନ ସହିତ ଆପଣଙ୍କ ସ୍ୱାର୍ଥ କେତେ ଜଡ଼ିତ ? କହିଲି, ମୁଁ କେନ୍ଦ୍ର ସଭାପତି ପାଇଁ ପ୍ରତିଦ୍ୱନ୍ଦିତା କରିବି । କୁଳପତି ମହାଶୟ ସ୍ମିତହସି କହିଲେ, ଆପଣଙ୍କର ମୁଁ ବିଜୟ କାମନା କରୁଛି । ସାଙ୍ଗେ

ସାଙ୍ଗେ କୃଷି ମହାବିଦ୍ୟାଳୟର ଡିନ୍‌ଙ୍କୁ ଡକାଇ ପଠାଇଲେ । ଡକରାପାଇ ଡ଼ିନ୍ ଆସିବାମାତ୍ରେ କୃଷି କଲେଜ ମୁଖ୍ୟ ପ୍ରେକ୍ଷାଳୟକୁ ଉତ୍କଳ ସମ୍ମିଳନୀ ନିର୍ବାଚନ ପାଇଁ ଦୁଇଦିନ ଛାଡ଼ି ଦେବାକୁ କୁଳପତି ତାଙ୍କୁ କହିଲେ । କହିଲି, ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିର ସର୍ବପୁରାତନ ମିଳନ ମଞ୍ଚ । ହେଲେ ଆମ ହାତରେ ଅର୍ଥ ନାହିଁ । ଏ ହଲ୍ ପାଇଁ ଭଡ଼ା ଦେବା ଆମ ପକ୍ଷରେ ସମ୍ଭବ ହେବ ନାହିଁ । କୁଳପତି ଓ ଡିନ୍ ଦୁହେଁ ହସି ହସି କହିଲେ, ମାଗଣାରେ ଆପଣଙ୍କୁ ଭୁବନେଶ୍ୱରରେ କିଏ ଘର ଦେଇଦବ ? କହିଲି ସେଇଥିଲାଗି ତ ମୁଁ ଆପଣଙ୍କ ଦ୍ୱାରସ୍ଥ ହୋଇଛି, ଯାହା ବିଚାର କରିବେ । କୁଳପତି ଡକ୍ଟର ରାୟ କହିଲେ, ଗୁରୁବାବୁ ଆମ ବିଶ୍ୱବିଦ୍ୟାଳୟର ପୁରୁଣାଲୋକ । ସେ ଯଦି ଏ ନିର୍ବାଚନରେ ଜିଣି ସଭାପତି ହୁଅନ୍ତି, ତାହାହେବ ଆମରଗର୍ବ । ଠିକ୍ ଅଛି ମାଗଣାରେ ହଲ୍‌ଟି ଦିଆଯାଉ । ଡିନ୍ ଚାଲିଗଲେ । ମାତ୍ର ମୁଁ ବସି ରହିଲି । ଡକ୍ଟର ରାୟ ପଚାରିଲେ, ଆଉ କ'ଣ ରହିଲା ? କହିଲି ଦୁଇ ଶହ ଅତିଥି କେଉଁଠି ରହିବେ ? ସେ କହିଲେ, ଏଥିପାଇଁ କୃଷକ ହଷ୍ଟେଲ୍ ଦିଆଯାଇ ପାରିବ । ମାତ୍ର ତାହା ଖାଲି ଅଛି କି ନାହିଁ ଆପଣ ଛାତ୍ରମଙ୍ଗଳ ଡିନ୍ (ଡିନ୍ ଷ୍ଟୁଡେଣ୍ଟ ୱେଲ୍‌ଫେୟାର୍) ଙ୍କୁ ପଚାରି ବୁଝନ୍ତୁ ।

ଛାତ୍ରମଙ୍ଗଳ ଡିନ୍ ଥିଲେ ଡକ୍ଟର ଶରତଚନ୍ଦ୍ର ମିଶ୍ର । ପଶୁଚିକିତ୍ସା ମହାବିଦ୍ୟାଳୟରେ ମୁଁ ଗବେଷକ ଓ ଅଧ୍ୟାପକ ଦାୟିତ୍ୱରେ ଥିଲାବେଳେ ଶରତ୍ ଥିଲା ମୋର ଛାତ୍ର । ତା କଥା ଶୁଣି ମୋର ପତିଆରା ବଢ଼ିଗଲା । ଖୋଜି ଖୋଜି ଶରତକୁ କୃଷି ସମ୍ପ୍ରସାରଣ ବିଭାଗରେ ପାଇ ଦୁଇଦିନ ପାଇଁ କୃଷକ ହଷ୍ଟେଲ ଦେବାପାଇଁ କହିଲି । ସେ ହଷ୍ଟେଲ୍‌ରେ ତିରିଶିଟି ବଡ଼ କୋଠରୀ ଗୋଟିଏ ଡର୍ମିଟୋରୀ, ରୋଷେଇଶାଳ ଓ ଡାଇନିଂହଲ୍ ଅଛି । ଦୁଇ ଦିନର ଭଡ଼ା ଅତିକମ୍‌ରେ ପଚିଶି ହଜାର ଟଙ୍କା ପଡ଼ିବ । କହିଲି ଆମ ପାଖେ ଏତେ ଟଙ୍କା ନାହିଁ । ଶରତ କହିଲା ସାର୍ ! ଆପଣ ନିର୍ବାଚନରେ ସଭାପତି ହେବେ ବୋଲି ଯଦି ବିଶ୍ୱାସ ରଖିଛନ୍ତି, ତାହେଲେ ମୁଁ ମାଗଣାରେ ହଷ୍ଟେଲ ଦେବା ପାଇଁ ଚେଷ୍ଟା କରିବି । ମାତ୍ର ଆପଣଙ୍କୁ ଦୁଇ ଦିନର ବିଦ୍ୟୁତ୍‌ଦେୟ ଦେବାକୁ ପଡ଼ିବ । ମୁଁ ଯାଇ କୁଳପତିଙ୍କ ଠାରୁ ଭଡ଼ା ଛାଡ଼ କରାଇବାକୁ ଆଦେଶ ଆଣିପାରିବି । ତାକୁ ଆଶୀର୍ବାଦ କରି ମୁଁ ଫେରିଲି । ଏତକ ସୁବିଧା ନ ପାଇଥିଲେ ଏତେଗୁଡ଼ିଏ ଟଙ୍କା ଯୋଗାଡ଼ କରିବା କଷ୍ଟକର ବ୍ୟାପାର ଥିଲା । କୁଳପତି ଦେବୀପ୍ରସାଦ ରାୟ ଓ ଡିନ୍ ଶରତମିଶ୍ରଙ୍କ ପାଇଁ ଉତ୍କଳ ସମ୍ମିଳନୀପରି ଏକ ନିଅଣ୍ଟିଆ ସଂଗଠନର ଏତେବଡ଼ କାର୍ଯ୍ୟ ହେବାର ବିଶ୍ୱାସ ହେଲା ।

ନିର୍ବାଚନରେ ମୁଁ ଜୟଯୁକ୍ତ ହେବି ବୋଲି ପୂର୍ଣ୍ଣ ବିଶ୍ୱାସ ଥିଲା । କାରଣ ଅତିକମ୍‌ରେ ଦଶଟି ଜିଲାର ପରିଷଦ ସଭ୍ୟମାନେ ମୋତେ ସଭାପତି କରିବା ପାଇଁ ନିଷ୍ପତ୍ତି ନେଇଥିଲେ । ସେମାନେ ଥିଲେ ଜଗତସିଂହପୁର, କଟକ, ମୟୂରଭଞ୍ଜ, ପୂର୍ବସିଂହଭୂମି, ପଶ୍ଚିମ ସିଂହଭୂମି,

ମେଦିନୀପୁର, ରାଉରକେଲା, ଯାଜପୁର, ଖୋର୍ଦ୍ଧା ଓ କେନ୍ଦ୍ରାପଡ଼ା ଜିଲା । ଅନ୍ୟସବୁ ଜିଲାରୁ ପ୍ରାୟ ଅଧା ସଭ୍ୟସଭ୍ୟା ମୋ ସପକ୍ଷରେ ଅଛନ୍ତି ବୋଲି ମୁଁ ନିଶ୍ଚିତ ଥିଲି । ନିର୍ବାଚନ ଦୁଇଦିନ ପୂର୍ବରୁ କେନ୍ଦ୍ର କାର୍ଯ୍ୟାଳୟରେ ଆମେ ବସିଥିଲାବେଳେ ଜାଣିପାରିଲି ଯେ, ଭୁବନେଶ୍ୱର ଶାଖା ପକ୍ଷରୁ ଶ୍ରୀ ପଦ୍ମଚରଣ ନାୟକଙ୍କୁ ସଭାପତି କରିବାକୁ ନିଷ୍ପତ୍ତି ହୋଇଛି । ମାତ୍ର ମୋ ସହିତ ପ୍ରତିଯୋଗିତା କରିବାକୁ ପଦବାବୁ ଚାହୁଁ ନାହାନ୍ତି । ତେଣୁ ମୋତେ କେତେଜଣ ଅନୁରୋଧ କଲେ ଯେ, ଆପଣ ପ୍ରାର୍ଥିତ୍ୱ ପ୍ରତ୍ୟାହାର କରି ପଦବାବୁଙ୍କୁ ଛାଡ଼ି ଦିଅନ୍ତୁ । କହିଲି, ଯେଉଁ ଶାଖାମାନେ ମୋତେ ନିର୍ବାଚିତ କରିବେ ବୋଲି ଅତି ଉତ୍ସାହରେ ଆସୁଛନ୍ତି; ସେମାନଙ୍କ ସହିତ ଏ ବିଷୟରେ ପୂର୍ବରୁ ଯୋଗାଯୋଗ କରିଥିଲେ ଭଲ ହୋଇଥାନ୍ତା । ଦିନକ ପରେ ସେମାନେ ଆସି ମୋର ପ୍ରାର୍ଥୀତ୍ୱ ପ୍ରତ୍ୟାହାର କଥା ଶୁଣିଲେ ବ୍ୟସ୍ତ ବିବ୍ରତ ହୋଇ ପଡ଼ିବେ । ଆଗରୁ ଏକଥା ସେମାନଙ୍କୁ ନ ଜଣାଇ ମୁଁ ଏପରି ନିଷ୍ପତ୍ତି ନେଇ ପାରିବି ନାହିଁ । ଏପରିକି କୃଷି ବିଶ୍ୱବିଦ୍ୟାଳୟରେ ଥିବା ମୋର ଶୁଭାକାଂକ୍ଷୀମାନେ ଏ କଥା ଶୁଣିଲେ ମୋ ଉପରେ ସେମାନଙ୍କ ଧାରଣା ଭିନ୍ନ ହୋଇଯିବ । ଯାହାବି ହେଉ ମୁଁ ପ୍ରତିଦ୍ୱନ୍ଦିତା କରିବି ।

କହିଲି, କେବଳ ବ୍ରହ୍ମପୁରରୁ ଯଦି ବସନ୍ତ ପାଣିଗ୍ରାହୀ ଏ ନିର୍ବାଚନରେ ଭାଗ ନେବାକୁ ଆସନ୍ତି; ତା ହେଲେ ମୁଁ ପ୍ରାର୍ଥୀତ୍ୱ ପରିହାର କରିବି । ସେ ସଭାପତି ହେଲେ ଉତ୍କଳ ସମ୍ମିଳନୀ ଭାଗ ଭାଗ ହେବାର ଆଶଙ୍କା ଦୂର ହୋଇଯିବ । ଉପସ୍ଥିତ ସଦସ୍ୟମାନେ ଏହା ଶୁଣି ବସନ୍ତବାବୁଙ୍କ ସହିତ ଦୂରଭାଷରେ କଥାହୋଇ ନିଷ୍ପତ୍ତି ଜଣାଇ ଦେଲେ । କଥା ହେଲା, ନିର୍ବାଚନଦିନ ସକାଳ ୯ଟା ସୁଦ୍ଧା ଆସି ସେ ଏଠାରେ ପହଞ୍ଚିବେ । ସେ ଆସିଲେ ଦଶଟା ବେଳକୁ ନିର୍ବାଚନ ହେବ ।

କଟକ ଶାଖାର ପରିଷଦ ସଦସ୍ୟ ଭାବେ ଥିଲେ ଶ୍ରୀ ଅକ୍ଷୟ କୁମାର ଦାସ, ଅନ୍ନଦା ପ୍ରସାଦ ରାୟ, ଶେଖ ମୁସ୍ତାଫିଜ ଅହମ୍ମଦ, ଶ୍ରୀମତୀ ମନୋରମା ମହାପାତ୍ର, କିଶୋର ଚନ୍ଦ୍ର ତ୍ରିପାଠୀ, ଡଃ ବିଜୟାନନ୍ଦ ସିଂହ, ହୁସେନ୍ ରବିଗାନ୍ଧି ଓ ଶ୍ରୀ ସୁଭାଷ ସିଂହ । ସେତେବେଳେ ଅନ୍ନଦାବାବୁ ଥିଲେ ଉତ୍କଳ ସାହିତ୍ୟ ସମାଜର ସଭାପତି ଓ ବିଜୟ ବାବୁ ଥାଆନ୍ତି ଉପସଭାପତି । ହୁସେନ୍ ରବିଗାନ୍ଧି ମଧ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଥାଆନ୍ତି । ସମସ୍ତଙ୍କୁ ବାରମ୍ବାର ଅନୁରୋଧ କଲି, ଭୁବନେଶ୍ୱର ଯାଇ ମୋତେ ଜୟଯୁକ୍ତ କରିବା ପାଇଁ । ଜିଲା କୋଷାଧକ୍ଷ ରଘୁବାବୁଙ୍କୁ ଅନୁରୋଧ କଲି ଯେ ସେ ଗୋଟିଏ ଗାଡ଼ି ଲେଖକ ସହଯୋଗ ସମିତି ପାଖରେ ରଖିବେ ଓ ଯେଉଁମାନେ ସେହି ଗାଡ଼ିରେ ଭୁବନେଶ୍ୱର ଯିବାକୁ ଚାହିଁବେ ସେମାନେ ଯାଇ ସମ୍ମିଳନୀ ଅଧିବେଶନରେ ଯୋଗଦେବେ ।

ବିଚ୍ଛିନ୍ନାଞ୍ଚଳ ଓ ସାରା ଓଡ଼ିଶାର ବିଭିନ୍ନ ଜିଲାରୁ କର୍ମକର୍ତ୍ତାମାନଙ୍କ ସହିତ ପରିଷଦ

ସଦସ୍ୟମାନେ ଆସିବେ । ତେଣୁ ସେମାନଙ୍କ ପାଇଁ ରହିବାର ସୁବନ୍ଦୋବସ୍ତ ମୋର ଦାୟିତ୍ୱ ଅନୁଭବକରି ସାଧାରଣ ଅଧିବେଶନ ଦୁଇଦିନ ପୂର୍ବରୁ କୃଷିବିଶ୍ୱବିଦ୍ୟାଳୟ ଅତିଥି ଭବନରେ ଯାଇ ମୁଁ ରହିଲି । କୃଷକ ହଷ୍ଟେଲ ଛାଡ଼ି ଅନ୍ୟ ଦୁଇ ସ୍ଥାନରେ ମଧ୍ୟ ଅତିଥିମାନଙ୍କୁ ରଖାଇବାର ବ୍ୟବସ୍ଥାକରି ସେମାନଙ୍କ ପାଇଁ ବିଛଣାପତ୍ର ଓ ଅନ୍ୟ ସମସ୍ତ ସୁବିଧାସୁଯୋଗ ବିଷୟରେ ତନ୍ନତନ୍ନ କରି ଦେଖି ବ୍ୟବସ୍ଥା କରାଇବାରେ ମୋର ସମୟ ଯାଉଥିଲା । ଯେଉଁମାନେ ଆସୁଛନ୍ତି କିପରି ଭଲରେ ରହି ଖିଆପିଆ କରି ଉତ୍କଳ ସମ୍ମିଳନୀ ଅଧିବେଶନରେ ଯୋଗ ଦିଅନ୍ତୁ ତାହାହିଁ ମୋର ଲକ୍ଷ୍ୟଥିଲା । ତେଣୁ ନିର୍ବାଚନରେ କିଏ କେଉଁପଦ ପାଇଁ ପ୍ରାର୍ଥୀ ହେବ ବା କେଉଁ ବାଟ ଧରିଲେ ସେ ଜୟଯୁକ୍ତ ହେବ ଏସବୁ ଚିନ୍ତା ମୋମୁଣ୍ଡରେ ନଥିଲା । ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରେ ସଦସ୍ୟମାନେ ବସି ଏ ସବୁ ବିଷୟରେ କଥା ହେବାବେଳେ ମୁଁ ସେଥି ପ୍ରତି ଗୁରୁତ୍ୱ ଦେଇ ନଥିଲି । ଇତି ମଧ୍ୟରେ ଭୁବନେଶ୍ୱର ଶାଖାର ବହୁ ବନ୍ଧୁ ଏବେ ମୋତେ ଅନାବଶ୍ୟକ ବ୍ୟକ୍ତି ଭାବେ ଗ୍ରହଣ କରି ନେଇଥିଲେ । କାରଣ ସେମାନେ ଚାହୁଁଥିଲେ, ପଦ୍ମଚରଣ ନାୟକଙ୍କୁ ସଭାପତି କରିବାପାଇଁ । ମାତ୍ର ମୋତେ ସଭାପତି କରିବା ପାଇଁ ବହୁ ଶାଖାର କର୍ମକର୍ତ୍ତାମାନେ କଷ୍ଟ ସ୍ୱୀକାର କରି ଆସୁଥିବା କଥା ମୁଁ ଜାଣିଥିଲି । ସେଥିପାଇଁ ମୁଁ ସଭାପତି ପ୍ରାର୍ଥୀତ୍ୱକୁ ପରିହାର କରିପାରୁ ନଥିଲି । ମାତ୍ର ସବୁଠାରୁ ମୋ ପାଇଁ ଦୁଃଖଦାୟକ ଥିଲା, କଟକରୁ କୌଣସି ଜଣେହେଲେ ପରିଷଦସଦସ୍ୟ ମୋତେ ଜୟଯୁକ୍ତ କରିବା ପାଇଁ ନ ଆସିବା । କେବଳ ସାଧାରଣ ସଭାରେ କଟକର ପାଞ୍ଚଜଣ ସଦସ୍ୟ ଓ ସଦସ୍ୟା ଯୋଗଦେଇ ମୋତେ ସଭାପତି ଭାବେ ନିର୍ବାଚିତ କରିବାକୁ ଅନୁରୋଧ ଜଣାଇଥିଲେ । ଏବେ ଭୁବନେଶ୍ୱର ଶାଖାରେ ମୋପ୍ରତି ବିଦ୍ୱେଷ ଭାବ ପ୍ରକାଶପାଇବା ଦେଖି ମୋର ମାନସିକ ଦୁଶ୍ଚିନ୍ତା ବଢ଼ି ଯାଇଥିଲା । ମୋପ୍ରତି ସମ୍ମାନ ଜଣାଇ ଯେଉଁମାନେ ମୋତେ ସଭାପତି ଭାବେ ଦେଖିବାକୁ ଚାହୁଁଥିଲେ, ସେମାନଙ୍କ ମଧ୍ୟରେ ଥିଲେ ମୟୂରଭଞ୍ଜ ଶାଖାର ସଭାପତି ଡକ୍ଟର ଦୀପକ କୁମାର ଷଡ଼ଙ୍ଗୀ, ପୂର୍ବ ସିଂହଭୂମି ଶାଖାର ସଭାପତି ଅଧିବକ୍ତା ରବୀନ୍ଦ୍ରନାଥ ଶତପଥି, ମେଦିନୀପୁର ଶାଖା ସଭାପତି ଶ୍ରୀ ସରୋଜ କୁମାର ମହାନ୍ତି, ପଶ୍ଚିମ ସିଂହଭୂମ ଶାଖାର ସଭାପତି ଶ୍ରୀ ସରୋଜ କୁମାର ପ୍ରଧାନ, ଜଗତ୍‌ସିଂହପୁର ଶାଖା ସଭାପତି ଅଧିବକ୍ତା ରାଜକିଶୋର ଖଟୁଆ, ଯାଜପୁର ଶାଖା ସଭାପତି ଅଧ୍ୟାପକ ପ୍ରଫୁଲ୍ଲ କୁମାର ମାହାଲା ଓ କେନ୍ଦ୍ରାପଡ଼ାର ଅଧିବକ୍ତା ଧ୍ରୁବଚରଣ ଜେନା ଇତ୍ୟାଦି ବନ୍ଧୁଗଣ । ମୋ ପାଇଁ ଜାମସେଦପୁରର ତତ୍କାଳୀନ ଗୋଲମୁରୀ ଉତ୍କଳ ସମାଜ ସଭାପତି ଶ୍ରୀ ପ୍ରଭାତ ଦାସ ଦିଲ୍ଲୀରୁ ବିମାନ ଯୋଗେ ଆସୁଥିଲେ । ସେହିପରି ଜାମସେଦପୁରରୁ ଅଧିବକ୍ତା ରବିନ୍ ଶତପଥି ମଧ୍ୟ ତାଙ୍କ କାମରେ ଯାଇଥିବା ବମ୍ବେ ଠାରୁ ବିମାନ ଯୋଗେ ମୋତେ ନିର୍ବାଚିତ କରିବା ପାଇଁ ଭୁବନେଶ୍ୱର ଆସୁଥିଲେ । ଏବେ ମୁଁ ଯେଉଁଭଳି ମାନସିକ ସ୍ଥିତିରେ ଥିଲି, ସଭାପତି ପଦପାଇଁ ପ୍ରାର୍ଥୀ ହେବି ନାହିଁ ବୋଲି

ସେମାନଙ୍କୁ କହିବା ପାଇଁ ମୋତେ ଲଜ୍ୟାବୋଧ ହେଉଥିଲା । ଆଜିକୁ ପନ୍ଦରଦିନ ତଳେ ଏ ଅବସ୍ଥା ନଥିଲା । ଉତ୍କଳ ସମ୍ମିଳନୀ ପାଇଁ ଦୀର୍ଘ ଦଶବର୍ଷ ହେଲା ସମର୍ପିତଭାବେ କାମ କରିବା ପରେ ଅନୁଷ୍ଠାନର ମୁଖ୍ୟ ଭାବେ ଆହୁରି ଅଧିକକିଛି କରିପାରିବାର ଆଶାନେଇ ମୁଁ ସଭାପତି ହେବା ପାଇଁ ଭାବିଥିଲି । ମୋ ପଛରେ ଅଧିକାଂଶ ଜିଲାଶାଖାର କର୍ମକର୍ତ୍ତାମାନଙ୍କର ଅକୁଣ୍ଠ ସମର୍ଥନ ଥିଲା । ଏବେ ଭୁବନେଶ୍ୱର ବନ୍ଧୁମାନଙ୍କ ଆଚରଣ ଦେଖି ଜଣାଗଲା ଯେ ସବୁ କିଛି ବଦଳି ଯାଉଛି । ଭାବିଲି, ଯାହା ଯୋଗଥିବ ତାହା ଘଟିବ । ତେଣୁ ମୋର ସମର୍ଥକମାନେ ଆସି ପହଞ୍ଚିଗଲେ ସେମାନଙ୍କୁ ଏଠାକାର ଅବସ୍ଥା ବିଷୟରେ ସୂଚନା ଦେଇ ସଭାପତି ପ୍ରାର୍ଥୀତ୍ୱରୁ ଓହରି ଯିବା ପାଇଁ ସେମାନଙ୍କର ମତାମତ ବୁଝି କାର୍ଯ୍ୟ କରିବି ବୋଲି ଚିନ୍ତା କଲି ।

ଆଜିପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀ ପାଇଁ ଯାହା ମୁଁ କରି ଆସିଛି, କେବଳ କର୍ତ୍ତବ୍ୟ ବୋଧରେ । ମୁଁ ଜଣେ କର୍ମୀ । ନିଜର ପ୍ରତିଷ୍ଠା ପାଇଁ ରାଜନୀତି କରିବା କିମ୍ୱା ଲୋକସମ୍ପର୍କ ରଖିବାକୁ କେବେ ଚିନ୍ତା କରିନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରୁ ଫେରି ମୋ ଜନ୍ମଭୂମି ପାଇଁ ସରକାରୀ ଚାକିରୀ ଜରିଆରେ କିଛି କରି ପାରିବାର ବିଶ୍ୱାସ ନେଇ କାର୍ଯ୍ୟ କରୁଥିଲି । ଚାକିରୀ କ୍ଷେତ୍ରରେ ନିଷ୍ଠାପର ଭାବେ କର୍ତ୍ତବ୍ୟ ସମ୍ପାଦନ କରିବା ମୋର ମୁଖ୍ୟ ଚିନ୍ତା ଥିଲା । ଆମେରିକାରୁ ଫେରିଲା ବେଳେ ମୋର ବନ୍ଧୁମାନେ କହିଥିଲେ ତୁ ଏବେ ଯେଉଁ ବାତାବରଣରୁ ଯାଉଛୁ; ଖୁବ୍ ଶୀଘ୍ର ସେଠିକି ଫେରି ଆସିବୁ । କାରଣ ଭାରତରେ ଅଭାବ, ଅଶାନ୍ତି ଓ ପାରସ୍ପରିକ ଅସହଣୀୟତା ଭିତରେ ତୁ ରହିପାରିବୁ ନାହିଁ । ମାତ୍ର ସରକାରୀ ଚାକିରୀରେ ବହୁ ଅଭାବ ଅସୁବିଧା ଭିତରେ ମୁଁ ନିଷ୍ଠାପର ଭାବେ କାର୍ଯ୍ୟକଲି । ମୋର ଶିକ୍ଷାଗତ ଯୋଗ୍ୟତାକୁ ନେଇ କାଳେ ମୁଁ ପଦୋନ୍ନତି ପାଇଯିବି ବୋଲି ପଶୁପାଳନ ବିଭାଗର ବହୁ ଉପରିସ୍ଥ କର୍ମଚାରୀ ମୋ ବିରୁଦ୍ଧରେ ମକଦ୍ଦମା କରି ସଫଳକାମ ହେଲେ । ସେଥିପ୍ରତି ଭ୍ରୂକ୍ଷେପ ନ କରି ମୁଁ ନିଷ୍ଠାପର ଭାବେ କର୍ତ୍ତବ୍ୟ ସମ୍ପାଦନ କରିଛି । ଏବେ ଉତ୍କଳ ସମ୍ମିଳନୀରେ ଓଡ଼ିଆଜାତି ଓ ଭାଷାପାଇଁ ଯାହା କରିବା କଥା କରି ଚାଲିଛି । ସଭାପତି ହେବା ନ ହେବା ମୋ ପାଇଁ ବଡ଼ କଥା ନୁହେଁ । ମାତ୍ର ସଭାପତି ରହିଲେ ଅଧିକ କିଛି କରିପାରିବି ବୋଲି ମୋର ବିଶ୍ୱାସ ଥିଲା ଓ ଅଧିକାଂଶ ଜିଲା ଶାଖାର ସଦସ୍ୟମାନେ ତାହା ହିଁ ଚାହିଁଥିଲେ । ତେଣୁ ଭୁବନେଶ୍ୱର ଶାଖା ସଦସ୍ୟମାନେ ମୋ ବିରୁଦ୍ଧରେ ଯାହା ଯୋଜନା କରିଥିଲେ ସେଥିପ୍ରତି ମୁଁ ଧ୍ୟାନ ଦେଉ ନଥିଲି । ନିର୍ବାଚନ ପାଇଁ ମୋତେ ଯେଉଁ ଦାୟିତ୍ୱ ଦିଆଯାଇଥିଲା ସେଥିରେ ଲାଗି ପଡ଼ିଥିଲି ।

ନିର୍ବାଚନ ପୂର୍ବଦିନ ଅଧିକାଂଶ ଶାଖାର ପରିଷଦ ସଦସ୍ୟମାନେ ସକାଳ ବେଳା ଆସି ପହଞ୍ଚିଗଲେ । ବୁଲି ବୁଲି ସେମାନଙ୍କର ରହଣି ବ୍ୟବସ୍ଥା କରାଇଲି । ମଧ୍ୟାହ୍ନ

ଭୋଜନପରେ ସାଧାରଣ ସଭା ହେଲା । ମୁଁ ସେ ସଭାରେ ନ ବସି ବାହାରେ ଥାଇ ନିର୍ବାଚନ ପାଇଁ ଆସୁଥିବା ସଦସ୍ୟ / ସଦସ୍ୟାମାନଙ୍କୁ ସ୍ୱାଗତ କରି ସେମାନଙ୍କ ରହିବା ବ୍ୟବସ୍ଥା ବୁଝୁଥିଲି । ଏତିକିବେଳେ ସମ୍ପାଦକୀୟ ବିବରଣୀ ପଢ଼ା ହେଲା । ସାଧାରଣ ସମ୍ପାଦକ ଅମରେନ୍ଦ୍ର ଦାସ କହିଲେ ଯେ, ଡଃ ଗୁରୁପ୍ରସାଦ ମହାନ୍ତି ଯୁକ୍ତରାଷ୍ଟ୍ର ଆମେରିକାରୁ ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ପ୍ରସାରପାଇଁ ଯେଉଁ ଅର୍ଥ ଆଣିଥିଲେ ତାକୁ ବସନ୍ତ କୁମାର ପାଣିଗ୍ରାହୀଙ୍କ ସହିତମିଶି ସେ ଆତ୍ମସାତ୍ କରିଛନ୍ତି । ଭାବିଲି, ବୋଧହୁଏ ଭୁଲ୍‌ରେ ଏପରି ତଥ୍ୟ ସେ ଉପସ୍ଥାପନ କରୁଛନ୍ତି କିମ୍ବା ମୁଁ କଥାଟା ଠିକ୍ ଭାବେ ଶୁଣି ପାରିଲି ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରୁ ଆଣିଥିବା ଅର୍ଥ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କରେ ଜମାଅଛି ଓ ସେଟଙ୍କା ବଢ଼ିବଢ଼ି ସୁଧ ମୂଳ ହୋଇ ନଅଲକ୍ଷ ଟଙ୍କା ପର୍ଯ୍ୟନ୍ତ ହେଲାଣି । ବ୍ୟାଙ୍କରୁ କାଗଜ ଆଣି କୋଷାଧକ୍ଷଙ୍କୁ ମୁଁ ଦେଇଥିଲି । ମାତ୍ର କାର୍ଯ୍ୟାଳୟ ସମ୍ପାଦକ କହିଲେ ଏ ଅର୍ଥ ସମ୍ପାଦକ ଓ କୋଷାଧକ୍ଷ ମିଶି ବ୍ୟାଙ୍କରୁ ଉଠାଇବାକୁ ଆପଣ ଲେଖିଦିଅନ୍ତୁ । କୋଷାଧକ୍ଷ ଭଗବାନ ମହାପାତ୍ର ମଧ ମୋତେ ସେହି ପ୍ରସ୍ତାବ ଦେଲେ । ମାତ୍ର ଯେଉଁ ଆମେରିକାବାସୀ ଏହି ଅର୍ଥ ଦେଇଥିଲେ ସେମାନେ ଲେଖି ଦେଇଥିଲେ ଯେ "ଏହି ଅର୍ଥ ବ୍ୟାଙ୍କରେ ସ୍ଥାୟୀଜମାଭାବେ ରହିବ ଓ ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ବିସ୍ତାର ପାଇଁ କେବଳ ଏହାର ସୁଧ ଟଙ୍କା ଖର୍ଚ୍ଚ କରାଯାଇପାରିବ । ଦାତାମାନଙ୍କ ପକ୍ଷରୁ ମୋତେ ସେମାନଙ୍କ ପ୍ରତିନିଧି ବା ନମିନି ଭାବେ ରହିବା ପାଇଁ ସେମାନେ ଲେଖି ଦେଇଥିଲେ । "ଉତ୍କଳ ସମ୍ମିଳନୀର ଯେକୌଣସି କର୍ମକର୍ତ୍ତାଙ୍କ ସହିତ ଆମ ନମିନି (ପ୍ରତିନିଧି)ଙ୍କ ଦସ୍ତଖତରେ ଏହି ଅର୍ଥ ବ୍ୟାଙ୍କରୁ ଉଠାଯାଇ ପାରିବ ।" ଏହି ସର୍ତ୍ତ ମାନି ସେମାନଙ୍କ ଦାନ ଅର୍ଥର ବ୍ୟବହାର ପାଇଁ ମୁଁ ଆମେରିକାନ୍ ବନ୍ଧୁମାନଙ୍କ ସହିତ ପ୍ରତିଶ୍ରୁତିବଦ୍ଧ । ସେଥିଲାଗି ଉତ୍କଳ ସମ୍ମିଳନୀର ସଭାପତି ବସନ୍ତ ପାଣିଗ୍ରାହୀଙ୍କ ସହିତ ମୁଁ ଚେକ୍ ଦସ୍ତଖତ କରି ଏହିଅର୍ଥ ଉଠାଇବାର ବ୍ୟବସ୍ଥା ରହିଛି । ତେଣୁ ଆମେରିକାର ଦାତାମାନଙ୍କ ଅନୁମତି ନ ପାଇ କୋଷାଧକ୍ଷ ଓ ସମ୍ପାଦକଙ୍କ ଦସ୍ତଖତରେ ଏହି ଆକାଉଣ୍ଟ ପରିଚାଳନା କରିବାକୁ ମୁଁ ଲେଖି ଦେଇ ପାରିବି ନାହିଁ । ଏକଥା ଶୁଣି ସେମାନେ ମୋ ଉପରେ ରାଗିଗଲେ । କହିଲେ, ତାହେଲେ ଆପଣ ଏ ଟଙ୍କା ନିଜ ପାଇଁ ରଖିଛନ୍ତି । କହିଲି, ଯିଏ ସଭାପତି ହେବ, ତାଙ୍କ ସହିତ ମିଶି ମୁଁ ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ପ୍ରସାର ଲାଗି ଏ ଟଙ୍କା ଉଠାଇବାକୁ ଦାତାମାନେ କହିଛନ୍ତି । ସଭାପତି, ସମ୍ପାଦକ ବା କୋଷାଧକ୍ଷ ଯିଏହେଲେ ଜଣେ ଏହି କାର୍ଯ୍ୟ କରିବାକୁ ଉପଯୁକ୍ତବ୍ୟକ୍ତି । ତେଣୁ ଆପଣ ଯଦି ବସନ୍ତ ବାବୁଙ୍କୁ ହଟାଇ ନିଜେ ରହିବାକୁ ଚାହାଁନ୍ତି ତେବେ ପରିଚାଳନା ସଭାରେ ଏ ପ୍ରଶ୍ନ ଉଠାନ୍ତୁ । ମୋ ପ୍ରସ୍ତାବ ଅନୁଯାୟୀ ପରବର୍ତ୍ତୀ ପରିଚାଳନା ସଭାରେ କୋଷାଧକ୍ଷ ଶ୍ରୀ ଭଗବାନ ମହାପାତ୍ର ଏ ପ୍ରସଙ୍ଗ ଉଠାଇଲେ । ବସନ୍ତବାବୁଙ୍କ ଅନୁପସ୍ଥିତିରେ ସେଦିନ ଡକ୍ଟର ଭାବଗ୍ରାହୀ ମହାପାତ୍ର ସଭାପତିତ୍ୱ କରୁଥାନ୍ତି ।

ଯୁକ୍ତରାଷ୍ଟ୍ର ଆମେରିକାର ଦାତାମାନେ ଯେଉଁ ସର୍ତ୍ତ ରଖିଛନ୍ତି ତାହା ମୁଁ କହିବା ପରେ ଉପସ୍ଥିତ ସଦସ୍ୟମାନେ ମୋ କଥାକୁ ଅନୁମୋଦନ କଲେ । ତଥାପି ସମ୍ପାଦକୀୟ ବିବରଣୀ ପଢ଼ିବା ବେଳେ ଯୁକ୍ତରାଷ୍ଟ୍ର ଆମେରିକାରୁ ଆସିଥିବା ଟଙ୍କା ଗୁରୁପ୍ରସାଦ ମହାନ୍ତି ଆତ୍ମସାତ କରିଛନ୍ତି ବୋଲି ଅମରେନ୍ଦ୍ର ଦାସ ପଢ଼ିଦେଲେ । ମୁଁ କେବେ ଭାବି ପାରିନଥିଲି ଯେ ଏପରି ଡାହା ମିଛକଥା କେହି ଲେଖି ଦେଇ ସାଧାରଣ ସଭାରେ ପଢ଼ି ଶୁଣାଇ ଦେଇପାରିବ । ମାତ୍ର ଏହି ଆକାଉଣ୍ଟକୁ ମୁଁ ସେମାନଙ୍କ ନାମରେ କରିଦେବା ପ୍ରସ୍ତାବକୁ ମାନି ନନେବା ଯୋଗୁଁ ତିନି ତୁଣ୍ଡରେ ଛେଳି କୁକୁର ହେବାପରି ମୋ ବିରୁଦ୍ଧରେ ଏପରି ମିଥ୍ୟା ପ୍ରଚାର କରାଯାଇ ପାରିଲା । ଏତିକି ବେଳେ ସେହି ଦଳର ଜଣେ ଅପରିପକ୍ୱ ଯୁବକ ମୋତେ ଆସି ପଚାରିଲେ ଆପଣ ଟଙ୍କା ଆତ୍ମସାତ୍ କରିଥିବା ଖବର ଶୁଣିଲେ ତ ? କହିଲି, ହଁ ଶୁଣିଲି । ସେ କହିଲେ, ଏବେ ଆପଣ ସଭାପତି ପଦପାଇଁ ଆଉ ଠିଆ ନ ହୋଇ ପଦ୍ମଚରଣ ନାୟକଙ୍କୁ ବାଟ ଛାଡ଼ିଦିଅନ୍ତୁ । ପଚାରିଲି ଏଇକଥା ପାଇଁ ଏପରି ଏକ ମିଥ୍ୟା ଖବର ମୋ ନାମରେ ପଢ଼ି ଦିଆଗଲା ? ଆପଣମାନେ ବେଶ୍ ଭାବିଚିନ୍ତି ମୋତେ ହଟାଇ ଦେବାକୁ ଯୋଜନା କରିଛନ୍ତି । ସେ କହିଲେ, କାହିଁକି ଆପଣ କାଦୁଅରେ ଗୋଡ଼ ପୂରାଇବାକୁ ଯାଉଛନ୍ତି ? ଆପଣ ବଦନାମ ହୋଇ ସାରିଲେଣି, ଏଣିକି ଆଉ ଲୋକହସା ହୁଅନ୍ତୁ ନାହିଁ ।

ପଚାରିଲି, ତୁମେ କିଏ ଆସି ଏଥିରେ ମୁଣ୍ଡ ଖେଳାଉଛ ? ତୁମକୁ ଦିନକ ପାଇଁ ମଧ ମୁଁ ଉତ୍କଳ ସମ୍ମିଳନୀ କାର୍ଯ୍ୟ କରିବାର ଦେଖି ନାହିଁ । ଯିଏ ଉତ୍କଳ ସମ୍ମିଳନୀ ପାଇଁ ଦୀର୍ଘ ଦଶବର୍ଷ ହେବ କାମ କରିଆସୁଛି, ତାକୁ ମିଛଟାରେ ବଦନାମ କରି ତୁମେ କାହିଁକି ଏପରି ନେତାଗିରି କରୁଛ ? ସେ ମୋତେ ଆଉ କିଛି କହିବାକୁ ଯାଉଥିଲେ, ମୁଁ ଯାଇ ମିଟିଂ ହଲ୍‌ରେ ବସିଲି । ଏତେ ପରିଶ୍ରମ କରି ଭୁବନେଶ୍ୱରରେ ନିର୍ବାଚନ କରାଇ କିପରି ଅଳ୍ପ ଖର୍ଚ୍ଚରେ ଏହିକାର୍ଯ୍ୟ ସମାହିତ ହୋଇ ପାରିବ, ସେଥିପାଇଁ ଲାଗିପଡ଼ି ଏ ପର୍ଯ୍ୟନ୍ତ ଯାହା ସବୁ କରିଆସିଲି, ସେସବୁର ପୁରସ୍କାର ମୋତେ ମିଳିଗଲା । ସଭାଗୃହର ପୁରା ପଛଧାଡ଼ିରେ ମୁଁ ବସିଥିଲି ।

ଭାଷଣବାଜି ସରିଗଲା ପରେ ଆସନ୍ତାକାଲି ପାଇଁ କେଉଁମାନେ ପ୍ରାର୍ଥୀ ହେବେ ସେ ବିଷୟରେ ଆଲୋଚନା ଆରମ୍ଭ ହେଲା । ଭୁବନେଶ୍ୱର ଶାଖାର କେତେକ ବ୍ୟକ୍ତି ପଦ୍ମଚରଣ ନାୟକଙ୍କୁ ଅପ୍ରତିଦ୍ୱନ୍ଦୀ ସଭାପତି ଭାବେ ସ୍ୱୀକାର କରିବାକୁ ନିବେଦନ କଲେ । ମୟୂରଭଞ୍ଜ, ଜଗତସିଂହପୁର, ପୂର୍ବ ସିଂହଭୂମ ଆଦି ଶାଖାର ପରିଷଦ ସଦସ୍ୟମାନେ ଏହାର ଘୋର ବିରୋଧ କରି କହିଲେ ଆମ ବିଚାରରେ ଡକ୍ଟର ଗୁରୁପ୍ରସାଦ ମହାନ୍ତି ଏଥିଲାଗି ଯୋଗ୍ୟ ବ୍ୟକ୍ତି । ପଦବାବୁ ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରନ୍ତୁ । ଜିଣିଲେ ସେ ସଭାପତି ହେବେ ।

ମାତ୍ର ପଦବାବୁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ରାଜି ହେଲେ ନାହିଁ । ଏତିକିବେଳେ ବସନ୍ତ କୁମାର ପାଣିଗ୍ରାହୀଙ୍କ କଥା ଉଠିଲା । ସେ ଅବଶ୍ୟ ନିଜେ ଆଜୀବନ ସଭାପତି ହେବା ପାଇଁ ବ୍ରହ୍ମପୁରରେ ନିର୍ବାଚନ କରାଇ ନେବାକୁ ଯୋଜନା କରିଥିଲେ । ଯେଉଁଥିପାଇଁ ଅଦାଲତର ଆଶ୍ରୟ ନେବାକୁ ପଡ଼ିଲା । ଏଠାରେ ଉପସ୍ଥିତ ସମସ୍ତ ଲୋକେ ତାଙ୍କର ଏ ପ୍ରକାର ପଦକ୍ଷେପର ତୀବ୍ର ବିରୋଧୀ । ତେଣୁ ସେ ସଭାପତି ହେବାକୁ ଏଠାକୁ ଆସିବା ପାଇଁ ସାହସ କରିବେ ତ ? ମୁଁ ମଞ୍ଚକୁ ଯାଇ କହିଲି ଯେ ତାଙ୍କ ସହିତ ଆମେ କେତେଜଣ କଥା ହୋଇ ଆସନ୍ତା କାଲି ସକାଳ ୯ଟା ସୁଦ୍ଧା ସେ ଏଠି ପହଞ୍ଚିବାକୁ ନିମନ୍ତ୍ରଣ କରିଛୁ । ସେ ଯଦି ଆସନ୍ତି ତାହେଲେ ମୁଁ ସଭାପତି ପ୍ରାର୍ଥୀତ୍ୱରୁ ଓହରିଯିବି । ତାଙ୍କର ଇଚ୍ଛା ପୂର୍ଣ୍ଣ କରାଯାଉ । ରାତ୍ରି ଭୋଜନ ସମୟ ହୋଇ ଆସୁଥିଲା । ବିଭିନ୍ନ ଜିଲ୍ଲାରୁ ଆସିଥିବା ପ୍ରତିନିଧିମାନେ ସେମାନଙ୍କ ରହଣି ସ୍ଥାନକୁ ଚାଲିଗଲେ ।

ପଦବାବୁଙ୍କ ସପକ୍ଷବାଦୀମାନେ ମୋର ପ୍ରାର୍ଥୀତ୍ୱକୁ ତୀବ୍ର ବିରୋଧ କରିବା ପାଇଁ ଆସନ୍ତା କାଲି ନିର୍ବାଚନରେ ସେମାନଙ୍କର କାର୍ଯ୍ୟ ପନ୍ଥା ସ୍ଥିରକରିବା ଲାଗି ବ୍ୟବସ୍ଥାରେ ରହିଲେ । ହସି ହସି ମୋ ସହିତ ବ୍ୟବହାର କରୁଥିବା ଲୋକେ ଏପରି କୁଚକ୍ରାନ୍ତ କରି ପାରନ୍ତି ସେଇ ଚିନ୍ତାରେ ମୋ ହୃଦୟରେ ଦୁଃଖଭରି ଯାଇଥାଏ । ସେ ସ୍ଥାନରେ ଆଉ ନିମିଷେ ନ ରହି କୃଷି ବିଶ୍ୱବିଦ୍ୟାଳୟ ଅତିଥିଭବନକୁ ଫେରି ଆସିଲି ।

ମୋ ସପକ୍ଷବାଦୀମାନେ ଦୃଢ଼ ନିଶ୍ଚିତ ଥିଲେ ଯେ, ପଦ୍‌ବାବୁ ପ୍ରତିଦ୍ୱନ୍ଦ୍ୱିତା କଲେ ମୁଁ ନିଶ୍ଚୟ ନିର୍ବାଚିତ ହେବି । ଆମେରିକାରୁ ଆଣିଥିବା ଟଙ୍କା ମୁଁ ଆତ୍ମସାତ କରିଛି ବୋଲି ଯେଭଳି କଞ୍ଚାମିଛ ସମ୍ପାଦକୀୟ ବିବରଣୀରେ ଲେଖି ପାଠ କରାଗଲା ତାହା ମୋ ପକ୍ଷରେ ଅତ୍ୟନ୍ତ କଷ୍ଟଦାୟକ ଥିଲା । ରାତିରେ ଖାଇବା ପାଇଁ ମୋର ଆଉ ଇଚ୍ଛା ନ ଥିଲା । ଏ ପର୍ଯ୍ୟନ୍ତ ବହୁ ପରିଶ୍ରମ କରି ଉତ୍କଳ ସମ୍ମିଳନୀ ପାଇଁ ଯାହା ସବୁ ମୁଁ କରିଛି, ମୋର ଭୁବନେଶ୍ୱର ବନ୍ଧୁମାନଙ୍କ ପାଖରେ ତାର କୌଣସି ମୂଲ୍ୟ ନ ଥିଲା । ଯେକୌଣସି ପ୍ରକାର ମୋ ନାମରେ କଳଙ୍କ ରଚନା କରିବା ପାଇଁ ଯେପରି ସେମାନେ ସାରା ଓଡ଼ିଶାର ସମସ୍ତ ପରିଷଦ ସଦସ୍ୟମାନଙ୍କ ସାମନାରେ ମିଥ୍ୟା ଅପବାଦ ପ୍ରଚାର କରିବା ଯୋଜନା କରିପାରିଲେ ସେ କଥା ମୋତେ ଖୁବ୍ ବାଧିଲା । ଓୟୁଏଟି ଅତିଥି ଭବନକୁ ମୁଁ ଫେରି ଆସିଲି । କ୍ୟାଣ୍ଟିନ ଦାୟିତ୍ୱରେ ଥିବା ସାହୁବାବୁ ପଚାରିଲେ ସାର୍ ଏବେ ଖାଇବେ ? ମନା କରିଦେଲି । ସେ ପଚାରିଲେ କ'ଣ ଦେହ ଭଲ ଲାଗୁନାହିଁ ? ତାଙ୍କୁ କିଛି ନକହି ସାର୍ଟ ଖୋଲି ଦେଇ ବିଛଣାରେ ଗଡ଼ିପଡ଼ିଲି । ଆଖିକୁ ନିଦ ଆସୁ ନଥାଏ । ପାଣି ଗ୍ଲାସଟାଏ ପିଇ ରାତିଟା କଟାଇ ଦେଲି ।

ସକାଳେ ଗାଧୋଇ ସାରି ନିର୍ବାଚନ ସ୍ଥଳକୁ ବାହାରିଲା ବେଳକୁ ସମ୍ପ୍ରସାରଣ ବିଭାଗ ଡିନ୍ ଡକ୍ଟର ଶରତଚନ୍ଦ୍ର ମିଶ୍ର ଆସି ପହଞ୍ଚିଲେ । ସେ ମୋର ଛାତ୍ର । ତେଣୁ ମୋ

ଅନୁରୋଧରେ ଏହି ନିର୍ବାଚନ ପାଇଁ କୃଷକ ହଷ୍ଟେଲ୍‌କୁ ଦେଇଛନ୍ତି । ପଚାରିଲେ ସାର ଆପଣଙ୍କ ଅତିଥିମାନଙ୍କର ସବୁ ସୁବିଧା ହେଉଛି ତ ? ସେ କରିଥିବା ସାହାଯ୍ୟ ପାଇଁ ଅନେକ ଧନ୍ୟବାଦ ଜଣାଇଲି । ଏତିକି ବେଳେ କ୍ୟାଣ୍ଟିନ୍‌ର ସାହୁ ବାବୁ ଆସି କହିଲେ କାଲି ରାତିରେ ସାର କିଛି ଖାଇନାହାନ୍ତି । ଏକଥାଶୁଣି ଶରତ କହିଲା ସାର୍ ଆପଣ ମୋତେ କିଛି ଲୁଚାଉଛନ୍ତି । ଆସନ୍ତୁ ଜଳଖିଆ ଖାଇବା । ମୁଁ ତାକୁ କିଛି କହି ପାରିଲି ନାହିଁ । ବାଧ ହୋଇ ତା ସାଙ୍ଗେ ଯାଇ କ୍ୟାଣ୍ଟିନ୍‌ରେ ଖାଇସାରି ତା ମଟର ସାଇକେଲରେ କୃଷି ମହାବିଦ୍ୟାଳୟ ହଲ୍‌ରେ ପହଞ୍ଚିଲି ।

ମୋର ସମର୍ଥକ ବହୁ ଲୋକ ଆସି କହିଲେ ଆଜି ଆପଣଙ୍କ ବିରୋଧୀ ପକ୍ଷର ଦୁଇ ତିନି ଜଣ ସମର୍ଥକ ଅତିଥିମାନେ ରହୁଥିବା ପ୍ରତି କୋଠରୀକୁ ଯାଇ ଆପଣଙ୍କୁ କିମ୍ବା ବସନ୍ତ ପାଣିଗ୍ରାହୀ କାହାକୁ ଭୋଟ ନ ଦେଇ ପଶ୍ଚିମାଞ୍ଚଳର କୌଣସି ଜଣେ ପ୍ରାର୍ଥୀଙ୍କୁ ଜିତାଇବାକୁ ପ୍ରବର୍ତ୍ତାଉଛନ୍ତି । କାରଣ ଏ ପର୍ଯ୍ୟନ୍ତ ଦକ୍ଷିଣାଞ୍ଚଳ ଓ କେନ୍ଦ୍ରାଞ୍ଚଳର ସଭାପତି ମାନେ ଉତ୍କଳ ସମ୍ମିଳନୀକୁ ନେତୃତ୍ୱ ଦେଇ ଆସିଲେ । ଏବେ କୋଶଳ ଗଠନ ହେବାର ବିରୋଧାଭାଷ କେବଳ ସେହି ଅଞ୍ଚଳର ଲୋକେ ହିଁ କରିପାରିବେ । ମୁଁ ବୁଝି ନେଲି ଯେ ଗତରାତିରେ ସେମାନଙ୍କର ମନ୍ତ୍ରଣା ହୋଇ ମୋତେ ହରାଇବାକୁ ଏହି ଉପାୟ ନିର୍ଦ୍ଧାରଣ କରାଯାଇଛି । ଏହାର ସୂତ୍ରଧର ହେଉଛନ୍ତି ଜଣେ ପୂର୍ବତନ ବିଧାୟକ ଯିଏକି ନିର୍ବାଚନ ରାଜନୀତିରେ ଧୂରନ୍ଧର ।

ମୁଁ କୃଷିମହାବିଦ୍ୟାଳୟ ପ୍ରେକ୍ଷାଳୟ ଭିତରକୁ ପଶିବା ମାତ୍ରେ ରାଉରକେଲା ଶାଖାର ସଭାପତି ଡକ୍ଟର ଭାବଗ୍ରାହୀ ମହାପାତ୍ର ମୋ ପାଖକୁ ଆସି ବସିଲେ । ସେ ମଧ୍ୟ ବର୍ତ୍ତମାନ ଜଣେ ଉପସଭାପତି ଅଛନ୍ତି । ସେ କହିଲେ, ଆମେ ରାଉରକେଲା ଶାଖାର ସଦସ୍ୟମାନେ ଆପଣଙ୍କୁ ନିର୍ବାଚିତ କରିବାକୁ ଆସିଛୁ । ମାତ୍ର ଗତକାଲି ରାତିରେ ଆପଣଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ମୋତେ ବାଧ କରୁଛନ୍ତି । ଆପଣ ଯଦି ଅନୁମତି ଦେବେ ତାହେଲେ ମୁଁ ଏହା କରିପାରିବି । କହିଲି, ମୋ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ପୁଣି ମୋ ଅନୁମତି କ'ଣ ଚାହୁଁଛନ୍ତି ? ସେ କହିଲେ ଆମ ଶାଖାର ସମସ୍ତ ସଦସ୍ୟ ଆପଣଙ୍କୁ ଶ୍ରଦ୍ଧା କରନ୍ତି । ଉତ୍କଳ ସମ୍ମିଳନୀ ପାଇଁ ଆପଣଙ୍କର ଅବଦାନ ତୁଳନାରେ ଅନ୍ୟ କେହି ଆପଣଙ୍କ ସମକକ୍ଷ ନୁହଁନ୍ତି । କହିଲି, ମହାପାତ୍ର ବାବୁ, ଯାହା ସବୁ ଘଟିଯାଉଛି, ତାହା ମୋତେ ପ୍ରବଳ କ୍ଷତାକ୍ତ କରୁଛି । ମୋ ପ୍ରତି ଏମାନଙ୍କର ଏଭଳି ମନୋବୃତ୍ତି ପୂର୍ବରୁ ଜାଣିଥିଲେ ମୁଁ ବ୍ରହ୍ମପୁର ନିର୍ବାଚନକୁ ବିରୋଧ କରିନଥାନ୍ତି । ଏ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର ନିର୍ବାଚନ କେବଳ ହାତଟେକାରେ ହେଉଥିଲା । ମାତ୍ର ଉତ୍କଳ ସାହିତ୍ୟ ସମାଜ ଏହି ଅନୁଷ୍ଠାନରୁ ଜନ୍ମ ନେଇ ଯେପରି ଗଣତାନ୍ତ୍ରିକ ପଦ୍ଧତିରେ ଚାଲିଛି, ଉତ୍କଳ ସମ୍ମିଳନୀରେ ଏ ପର୍ଯ୍ୟନ୍ତ

ତାହା ହୋଇନାହିଁ । ତେଣୁ ମୁଁ ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚନ କରାଇବାକୁ ଚାହୁଁଛି । ହୁଏତ ଏହା ଫଳପ୍ରଦ ନ ହୋଇପାରେ । ମାତ୍ର ମୁଁ ପ୍ରତିଦ୍ୱନ୍ଦିତା କରି ହାରିଗଲେ ମଧ୍ୟ ଯିଏ ଜୟଯୁକ୍ତ ହେବ ତାର ନେତୃତ୍ୱକୁ ସ୍ୱୀକାର କରିନେବି । ଭାବଗ୍ରାହୀବାବୁ ପୁଣି ଥରେ ପଚାରିଲେ ତାହେଲେ ମୁଁ ପ୍ରତିଦ୍ୱନ୍ଦିତା କରିବି ତ? କହିଲି ମୋ ବିରୁଦ୍ଧରେ ଯେପରି ମିଥ୍ୟା ଅପପ୍ରଚାର ଚାଲିଛି, ନିର୍ବାଚନରେ ଜିଣିଲେ ମଧ୍ୟ ମୁଁ ସୁଖୀ ହୋଇ ପାରିବି ନାହିଁ । ଶତ୍ରୁମାନଙ୍କ ଗହଣରେ କାର୍ଯ୍ୟ କରିବା କଷ୍ଟକର ହୋଇପଡ଼ିବ । ଆପଣ ପ୍ରାର୍ଥୀହୁଅନ୍ତୁ, ମାତ୍ର ଯଦି ବସନ୍ତ ପାଣିଗ୍ରାହୀ ଆସନ୍ତି ତାହେଲେ ତାଙ୍କୁ ଦେଇଥିବା କଥା ରକ୍ଷା କରି ମୁଁ ପ୍ରାର୍ଥୀତ୍ୱ ପ୍ରତ୍ୟାହାର କରିନେବି ।

ଏବେ ପ୍ରଶ୍ନ ଉଠିଲା ନିର୍ବାଚନ ଅଧିକାରୀ କିଏ ହେବ ? ମୁଁ ପୂର୍ବରୁ ସାହିତ୍ୟିକ ଶ୍ରୀ ସାତକଡ଼ି ହୋତାଙ୍କୁ ଏହି କାର୍ଯ୍ୟ କରିବାକୁ ଅନୁରୋଧ କରିଥିଲି । ତାଙ୍କୁ ଫୋନ୍ କଲି । ପ୍ରଥମେ ସେ ଅନ୍ୟ କାର୍ଯ୍ୟର ଦ୍ୱାହି ଦେଇ ମନା କରୁଥିଲେ । ତାଙ୍କୁ ଅନୁରୋଧ କରି ଅତିଶୀଘ୍ର ଆସିବାପାଇଁ କହିଲି । କାରଣ ତାଙ୍କ ଭରସାରେ ଆଉ କାହାକୁ ମୁଖ୍ୟ ନିର୍ବାଚନ ଅଧିକାରୀ କରିବାର ବ୍ୟବସ୍ଥା ନଥିଲା । ପ୍ରାୟ ସାଢ଼େ ଦଶଟା ସୁଦ୍ଧା ସେ ଆସି ପହଞ୍ଚିଲେ । ଏ ପର୍ଯ୍ୟନ୍ତ ବସନ୍ତ ପାଣିଗ୍ରାହୀଙ୍କର ଦେଖା ନାହିଁ । ତାଙ୍କୁ ଫୋନ୍ କରି ବୁଝିଲି ଯେ ସେ ଭୁବନେଶ୍ୱର ନ ଆସି କଟକ ଚାଲିଯାଇଛନ୍ତି । ଆଉ ଡେରି ନକରି ନିର୍ବାଚନ କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲା ।

ସଭାପତି ପଦପାଇଁ ପ୍ରାର୍ଥୀ ପତ୍ର ଦାଖଲ ହେଲା । ମୋତେ ହରାଇବା ପାଇଁ ଯେପରି ଯୋଜନା ହୋଇଥିଲା, ତଦନୁଯାୟୀ ମୋତେ ଛାଡ଼ି ଆଉ ଚାରିଜଣ ପ୍ରାର୍ଥୀ ପତ୍ର ଦାଖଲ କଲେ । ତାପରେ ଅନ୍ୟ ପଦବୀଗୁଡ଼ିକ ପାଇଁ ଗତ ରାତିରେ ଷଡ଼ଯନ୍ତ୍ରକାରୀମାନେ ଯେଉଁ ପ୍ରାର୍ଥୀମାନଙ୍କୁ ଠିକ୍ କରିଥିଲେ ସେମାନେ ପ୍ରାର୍ଥୀପତ୍ର ଦାଖଲ କଲେ । ଫଳରେ ସେମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ନ ଥିଲା । ଏପରିକି ମୋତେ ନିର୍ବାଚିତ କରିବା ପାଇଁ ଆସିଥିବା ଜିଲ୍ଲା ସଭାପତିମାନଙ୍କ ମଧ୍ୟରୁ ଦୁଇ ତିନିଜଣଙ୍କୁ ଉପସଭାପତି ପଦ ଦିଆଯାଇ ହାତ କରି ନିଆଯାଇଥିଲା । ଜଗତସିଂହପୁରରୁ ମୋର ଦୁଇଜଣ ଘନିଷ୍ଠ ବନ୍ଧୁ ମଧ୍ୟ ମୋ ବିରୁଦ୍ଧରେ ଚାଲିଗଲେ । ସଭାପତି ପଦ ଲାଗି ନିର୍ବାଚନ ହେବା ପୂର୍ବରୁ ତିନିଜଣ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେଇ ସେମାନେ ମୋ ବିରୁଦ୍ଧରେ ପ୍ରଚାର ଚଳାଇଲେ । ଭୋଟ ଗଣତି ହୋଇ ଦେଖାଗଲା ଯେ ଭାବଗ୍ରାହୀ ମହାପାତ୍ର ମୋ ଠାରୁ ତେରଟି ଅଧିକା ଭୋଟ ପାଇ ଜୟଯୁକ୍ତ ହୋଇଛନ୍ତି । ତାଙ୍କୁ ଅଭିନନ୍ଦନ ଜଣାଇ ମୁଁ କଟକ ଫେରି ଆସିଲି ।

ମୋର ସମର୍ଥନକାରୀ ଲୋକମାନଙ୍କ ମନରେ ମଧ୍ୟ ଏପରି ଷଡ଼ଯନ୍ତ୍ର ହେବାର ଦୁଃଖ କେତେଜଣ ମୋ ଆଗରେ ବ୍ୟକ୍ତ କରିଥିଲେ । ସେମାନଙ୍କ ପାଇଁ ମୋ ପାଖରେ କୌଣସି

ଉତ୍ତର ନଥିଲା । ଏହି ନିର୍ବାଚନ ଠିକ୍ ଭାବେ କରାଇବା ପାଇଁ ମୁଁ ପ୍ରାୟ ପନ୍ଦରଦିନ ଧରି ଯେତେ ପରିଶ୍ରମ କରିଛି ସେସବୁ କଥା ଉଠାଇ ମୋର ହିତାକାଂକ୍ଷୀ ବନ୍ଧୁମାନେ ମୋତେ ଉଲୁଗୁଣା ଦେଉଥିଲେ । ଏସବୁ କଥା ଭାବି ମାନସିକ ସ୍ତରରେ ମୁଁ ବହୁ କଷ୍ଟ ପାଉଥିଲି । ବିଚାର କଲି ଯେ, ଏବେ ଉତ୍କଳ ସମ୍ମିଳନୀରୁ ଅବ୍ୟାହତି ନେଇଯିବି । କଟକରେ ମଧ୍ୟ ସଭାପତି ପଦରୁ ମୋତେ ବାଦ ଦେଇ ବିଜୟ ଚକ୍ରବର୍ତ୍ତୀଙ୍କୁ ଜିଲା ସଭାପତି କରିଦେବା କଥା ଖବରକାଗଜରୁ ପଢ଼ିଥିଲି । ମୋର ଶୁଭାର୍ଥୀ ବନ୍ଧୁମାନଙ୍କଠାରୁ ଏ ବିଷୟରେ ଯାହା ବୁଝିଲି, ପନ୍ଦର-କୋଡ଼ିଏ ଜଣ ଲୋକଙ୍କ ଉପସ୍ଥିତିରେ ସଭାକରି ଏପରି ପଦକ୍ଷେପ ନିଆଯାଇଥିଲା । ତେଣୁ କଟକର ଦୁଇଶହ ଉତ୍କଳ ସମ୍ମିଳନୀ ସଦସ୍ୟ ସଦସ୍ୟାଙ୍କୁ ଚିଠି ଲେଖି ଗୋଟିଏ ସାଧାରଣ ସଭା ଡାକି ସେମାନଙ୍କ ଉପସ୍ଥିତିରେ ମୁଁ ଉତ୍କଳ ସମ୍ମିଳନୀରୁ ଅବ୍ୟାହତି ନେବି ବୋଲି ନିଷ୍ପତ୍ତି ନେଲି । ତଦନୁଯାୟୀ ଦଶଦିନିଆ ନୋଟିସ ଦେଇ ଖାନ୍‌ନଗର ଶ୍ରୀ ପୁରୁଷୋତ୍ତମଜୀଉ (ଜଗନ୍ନାଥ) ମନ୍ଦିର ପ୍ରାଙ୍ଗଣରେ ଏକ ସଭା ଡକାଇଲି ।

ରବିବାର ସକାଳ ନଅଟା ସମୟରେ ଏ ସଭା ହେବାର ଥାଏ । ଅଗଷ୍ଟମାସର ଝଡ଼ିବର୍ଷା ଲାଗି ରହିଥାଏ । ଭାବିଲି ଏତେ ସକାଳୁ କେହି ଆସିବେ ନାହିଁ । ତଥାପି ଯିଏ ଆସିବେ ସେମାନଙ୍କ ଠାରୁ ବିଦାୟ ନେଇ ଆସିବା ଉଚିତ ହେବ । ଠିକ୍ ନଅଟାବେଳକୁ ସଭାବହିଟି ଧରି ମୁଁ ଜଗନ୍ନାଥ ମନ୍ଦିରକୁ ଗଲି । ଟିପ୍ ଟିପ୍ ବର୍ଷା ଝରୁଥାଏ । ନଇବନ୍ଧରୁ ପାହାଚରେ ଓହ୍ଲାଇଲା ବେଳକୁ ଦେଖିଲି ଦଶବାର ଜଣ ଲୋକ ମନ୍ଦିର ପ୍ରାଙ୍ଗଣରେ ଥିବା ଆନନ୍ଦବଜାର ଘରେ ଠିଆ ହୋଇଛନ୍ତି । ସେ ଘର ଭିତରେ ବର୍ଷ ପାଣି ପଡ଼ି ଓଦା ହୋଇଥାଏ । ସେମାନେ କହିଲେ ଆସନ୍ତୁ ସଭା ଆରମ୍ଭ କରିବା । କହିଲି, ଏ ଘରେ ବସି ହେବ ନାହିଁ ଟିକେ ଶୁଖିଲାଜାଗା ଦେଖି ବସିବା । ହନୁମାନ ମନ୍ଦିରଟି ଶୁଖିଲା ଥିଲା । ନନାଙ୍କୁ କହି ଦୁଇଟା ଦରି ନେଇ ପକାଇବା ପରେ ସମସ୍ତେ ବସିଗଲେ । କହିଲେ ଏବେ ସଭା ଆରମ୍ଭ ହେଲା । ଆପଣଙ୍କର କ'ଣ କହିବାର ଅଛି କହନ୍ତୁ । କହିଲି, ଆଉ ଅଧାଘଣ୍ଟା ଅପେକ୍ଷା କରିବା । କେହି ଆସି ନାହାନ୍ତି । ବିଜୟବାବୁ କହିଲେ, କିଏ ଆସୁ ନ ଆସୁ ଆପଣ ସକାଳ ୯ଟା ବେଳେ ସଭା ଡାକିଛନ୍ତି । ତେଣୁ ଯଥା ସମୟରେ ଆମେ ସବୁ ଆସିଯାଇଛୁ । ଏଣିକି ସଭା ଚାଲିବ । ସରୋଜ ସିଂ କହିଲେ, କଟକ ଜିଲାର ନୂଆ ସଭାପତି ବିଜୟ କୁମାର ଚକ୍ରବର୍ତ୍ତୀ ସଭା ପରିଚାଳନା କରିବେ । ମୋର କିଛି କହିବାର ନଥିଲା । ବିଜୟବାବୁ ବକ୍ତୃତା ଆରମ୍ଭ କରି କେଉଁ ପରିସ୍ଥିତିରେ ମୋତେ ବହିଷ୍କାର କରାଗଲା କହି ଚାଲିଲେ । ବହୁତ ଅଡୁଆରେ ମୁଁ ପଡ଼ିଲି । ସେମାନେ ପ୍ରାୟ ଚଉଦ ପନ୍ଦରଜଣ ମୋର ବିପକ୍ଷବାଦୀ ଲୋକ । ମୁଁ ଚୁପ୍‌ଚାପ୍ ବସିଥାଏ । ପ୍ରାୟ ପନ୍ଦର ମିନିଟ୍ ଭିତରେ ସାତ ଆଠ ଜଣ ଲୋକ ଆସିଲେ । ସେମାନେ ସମସ୍ତେ ବସି ତାଙ୍କ କଥା ଶୁଣୁଥାନ୍ତି ।

ଟୁପ୍ ଟୁପ୍ ବର୍ଷା ଛାଡ଼ିଯାଇ ଟିକେ ଖରାପଡ଼ିଗଲା । ଆଉ କିଛି ଲୋକ ଆସି ପହଞ୍ଚିଗଲେ । ବନ୍ଧୁ ଅକ୍ଷୟ କୁମାର ଦାସ ପଚାରିଲେ ଏ ସଭା କିଏ ଡାକିଛି ? କହିଲି, ମୁଁ ଡାକିଛି । ସେ କହିଲେ, ତା ହେଲେ ଆପଣ ଏ ସଭା ଡାକିବାର ଉଦ୍ଦେଶ୍ୟ କହନ୍ତୁ । ସରୋଜବାବୁ କହିଲେ ଏ ଜିଲାର ନୂଆ ସଭାପତି ବିଜୟବାବୁଙ୍କ ଅନୁମତି ନେଇ ସେ ଯାହା କହିବେ । ଅଧିବକ୍ତା ବୈଷ୍ଣବ ଚରଣ ଦାସ ଓ ଦିବ୍ୟସିଂହ ମିଶ୍ର ଦୁହେଁ ପଚାରିଲେ, ତାଙ୍କୁ କିଏ ସଭାପତି କଲା ? ଗୁରୁବାବୁଙ୍କ ଚିଠି ପାଇ ଆମେ ଆସିଛୁ । ସେ ଏପର୍ଯ୍ୟନ୍ତ କଟକ ଜିଲା ଉତ୍କଳ ସମ୍ମିଳନୀ ଶାଖାର ସଭାପତି ଅଛନ୍ତି । ଶ୍ରୀ ପିତାମ୍ବର ଜେନା ଓ ଅଧିବକ୍ତା ଜଗଦୀଶ ମହାନ୍ତି ମଧ୍ୟ ଏହି କଥାକୁ ସମର୍ଥନ କରି ମୋର ବକ୍ତବ୍ୟ ଦାବୀ କଲେ ।

ଧୀରେ ଧୀରେ ଲୋକସଂଖ୍ୟା ପ୍ରାୟ ଅଶୀ ପାଖାପାଖି ହୋଇଗଲା । ସେ ଘରେ ବସିବା ପାଇଁ ଜାଗା ନଥିଲା । ଲୋକମାନେ ବାହାରେ ଠିଆ ହୋଇଥାନ୍ତି । ରାଜୀବ କୁମାର ଷଡ଼ଙ୍ଗୀଙ୍କ ସହିତ ଯୁବଗୋଷ୍ଠିର ପ୍ରାୟ ଆଠଦଶଜଣ ମୋତେ ପଚାରିଲେ "ଆପଣ କାହିଁକି ଅବ୍ୟାହିତ ନେବେ ବୋଲି ଚିଠି ଦେଇଛନ୍ତି ?" ବିଜୟ ବାବୁ କହିଲେ, ତାଙ୍କୁ ବହିଷ୍କାର କରାଯାଇଛି । ଏକଥା ଶୁଣି ବହୁ ସଦସ୍ୟ ସେମାନଙ୍କୁ ପ୍ରବଳ ବିରୋଧ କଲେ । ରାଜୀବ ମଧ୍ୟ ବିରକ୍ତ ହୋଇ ପଚାରିଲେ, ଜିଲା ସଭାପତିଙ୍କୁ ବହିଷ୍କାର କରିବାର ଅଧିକାର କିଏ ତୁମକୁ ଦେଲା ? ତାଙ୍କ ପ୍ରଶ୍ନରେ କ୍ଷୁବ୍ଧ ହୋଇ ଅପରପକ୍ଷ ତାଙ୍କୁ ଅପମାନିତ କଲାଭଳି କେତେପଦ ରୁକ୍ଷକଥା କହିଲେ । ସେମାନଙ୍କ ମଧ୍ୟରେ କଳିଗୋଳ ଲାଗିଗଲା । ଏପରି ବାଦାନୁବାଦ ମଧ୍ୟରେ ଅଧିବକ୍ତା ଚକ୍ରଧର ବେହେରା ମୋତେ ସେ ସ୍ଥାନ ଛାଡ଼ି ଚାଲି ଆସିବାକୁ କହିଲେ । ସେତେବେଳକୁ ଅପରପକ୍ଷର ଜଣେ ସମର୍ଥକ ମୋ ନେଇଥିବା ସଭାବହି ଧରି ବସିଥାନ୍ତି । ମୁଁ ତାଙ୍କ ଠାରୁ ସଭାବହିଟା ମାଗିଆଣି ସେ ସ୍ଥାନ ପରିତ୍ୟାଗ କଲି । ଅପରପକ୍ଷର ପ୍ରତି କଥାକୁ ଅତି ଦୃଢ଼ ଭାବରେ କାଟି ଚାଲିଥାନ୍ତି ରାଜୀବ ବାବୁ । ଆମେ ସବୁ ନଈବନ୍ଧରେ ଠିଆ ହୋଇ ସେମାନଙ୍କୁ ଅପେକ୍ଷା କଲାବେଳେ ବୈଷ୍ଣବ ବାବୁ, ଅକ୍ଷୟ ବାବୁ ଓ ଦିବ୍ୟସିଂହ ବାବୁ ମୋତେ କହିଲେ, ଆପଣ କଟକ ଜିଲାର ସଭାପତି ଅଛନ୍ତି । ଯଦି ଆପଣ ଛାଡ଼ିବାକୁ ଚାହିଁବେ ତାହେଲେ ବିଧିବଦ୍ଧ ଭାବେ ନିର୍ବାଚନ ହେବ । କେହି ଆପଣଙ୍କୁ ବହିଷ୍କାର କରିବା ଯୁକ୍ତିଯୁକ୍ତ କଥା ନୁହେଁ । ଆପଣ ଯେଉଁ ଚିଠି ଦେଲେ, ସେ ଚିଠି ପାଇ ପାଖାପାଖି ଅଶୀ ଜଣ ସଦସ୍ୟ / ସଦସ୍ୟା ସକାଳ ୯ଟା / ୧୦ଟା ଭିତରେ ଏଠିକି ଆସିଛନ୍ତି । ସେମାନଙ୍କ ମତ ଅନୁସାରେ ଉତ୍କଳ ସମ୍ମିଳନୀ କଟକ ଜିଲା ଶାଖା ପରିଚାଳିତ ହେବ । ଆମ୍ଭେମାନେ ଆପଣଙ୍କୁ ଏହି ସଂଗଠନର ମୁଖ୍ୟଭାବେ କାର୍ଯ୍ୟକରିବାକୁ ଚାହୁଁ । ଆପଣ ଦୀର୍ଘ ଦଶବର୍ଷ ଧରି କଟକ ଶାଖାକୁ ଯେପରି

ପରିଚାଳିତ କରି ଆସୁଛନ୍ତି; ସେ କଥା ସମସ୍ତେ ଜାଣନ୍ତି । ତେଣୁ ଆପଣଙ୍କ ପ୍ରତି ସମସ୍ତଙ୍କର ସମର୍ଥନ ରହିଛି । ମାତ୍ର ଏପରି ବିରୋଧୀ ଗୋଷ୍ଠୀର ଲୋକଙ୍କ ପାଇଁ ନୁହେଁ ।

ଉତ୍କଳ ସମ୍ମିଳନୀରୁ ପରିତ୍ରାଣ ପାଇବାର ଯୋଜନା ଏବେ ଫଳପ୍ରଦ ହେଲା ନାହିଁ । ହେଲେ ଆଉ ଭୁବନେଶ୍ୱର ଯାଇ ସମ୍ମିଳନୀର କାର୍ଯ୍ୟାଳୟରେ ବସିବାର ଆକର୍ଷଣ ମୋ ପାଇଁ ନଥିଲା । ବ୍ରହ୍ମପୁର ଠାରେ ନିର୍ବାଚନ କରାଇନଦେବା ସହିତ ଭୁବନେଶ୍ୱର ଠାରେ ସାଧାରଣ ସଭା ଡକାଇବା ପଛରେ ମୋର ଯେଉଁ ଭୂମିକା ଥିଲା ସେଥିଲାଗି ଭୁବନେଶ୍ୱର ଶାଖାର ସଭ୍ୟମାନେ ମୋତେ ଧନ୍ୟବାଦ ଦେବା ଦୂରେ ଥାଉ ମୋ ପ୍ରତି ଯେଉଁଭଳି ବ୍ୟବହାର କଲେ ତାହା ମୋ ପକ୍ଷରେ ଅତି ଦୁଃସହ ଥିଲା । ତେଣୁ ସେମାନଙ୍କ ସହିତ ଶେଷଦେଖା କରି ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରୁ ଦୂରେଇ ରହିବା ପାଇଁ ଚିନ୍ତାକଲି । ରାଧାନାଥ ପ୍ରହରାଜଙ୍କ ଫୋନ୍ ବାର୍ତ୍ତା ପାଇ ମୁଁ ଦିନେ କାର୍ଯ୍ୟାଳୟକୁ ଯାଇ ସେଠାରେ ଥିବା କେତେଜଣ ସଭ୍ୟଙ୍କ ଉପସ୍ଥିତିରେ ମୋର ପ୍ରତିକ୍ରିୟା ପ୍ରକାଶ କରିବା ପରେ ଯାହା ସବୁ ଘଟିଗଲା ସେଥିଲାଗି ପ୍ରହରାଜବାବୁ ଦୁଃଖ ପ୍ରକାଶ କଲେ । କହିଲେ ଆମେସବୁ ଇତି ମଧ୍ୟରେ ନିଷ୍ପତ୍ତି ନେଇଛୁ ଆପଣଙ୍କୁ ଉତ୍କଳ ସମ୍ମିଳନୀର ପରାମର୍ଶଦାତା ଭାବେ ନେବା ପାଇଁ । ଆପଣଙ୍କର ମୂଲ୍ୟବାନ ପରାମର୍ଶ ଆମ ପାଇଁ ନିତାନ୍ତ ଆବଶ୍ୟକ । ତେଣୁ ଆପଣ ଦୂରେଇ ରହିବା ଚିନ୍ତା ପରିହାର କରନ୍ତୁ । ତାଙ୍କ କଥା ନଶୁଣିଲା ପରି ମୁଁ ଉଠି ଆସିବା ବେଳକୁ ସେ ମୋ ସାଙ୍ଗେ ବାହାରକୁ ଆସି କହିଲେ, ଯାହା କିଛି ଘଟିଗଲା ସେଥିପାଇଁ ମୁଁ ଦୁଃଖିତ । ଆପଣ ସେ ସବୁ ଭୁଲିଯାଇ ଉତ୍କଳ ସମ୍ମିଳନୀର ପ୍ରତି ବୈଠକରେ ଯୋଗ ଦେବାକୁ ମୁଁ ଅନୁରୋଧ କରୁଛି । ତାଙ୍କ ମୁହଁକୁ ଚାହିଁ ବୁଝି ପାରିଲି ଯେ, ଏହା ତାଙ୍କ ହୃଦୟର ଭାଷା । କହିଲି ଠିକ୍ ଅଛି ଏସବୁ ମୋତେ ଭୁଲିବାକୁ ହେବ।

ପ୍ରତିବର୍ଷ କାର୍ତ୍ତିକପୂର୍ଣ୍ଣିମାକୁ କଟକରେ ବାଲିଯାତ୍ରା ହୁଏ । କଟକଜିଲା ଉତ୍କଳ ସମ୍ମିଳନୀ ପକ୍ଷରୁ ବାଲିଯାତ୍ରାରେ ଉତ୍କଳ ସମ୍ମିଳନୀ ମଞ୍ଚ ହେବା ୨୦୦୦ ମସିହା ଠାରୁ ପ୍ରଚଳିତ ରହିଛି । ଏଥର ବିରୋଧିମାନଙ୍କ ପକ୍ଷରୁ ମଞ୍ଚ ହେବା କଥା ଶୁଣାଗଲା । ପ୍ରସ୍ତୁତି କମିଟିରେ ସ୍ଥିର ହେଲା ଯେ, ଅନ୍ୟ କେହି ଏହି ମଞ୍ଚ ନ କରିବା ପାଇଁ ଅଦାଲତରେ ମକଦ୍ଦମା ଦାଏର୍ କରାଯିବ । ଇତି ମଧ୍ୟରେ ଉତ୍କଳ ସମ୍ମିଳନୀ କେନ୍ଦ୍ର କମିଟିରେ କେନ୍ଦ୍ରୀୟ ଅନୁମୋଦନ ନ ନେଇ ମହାନଗର ଶାଖା ଗଠନ କରିବା, ତଥା ଅନ୍ୟ ଜଣକୁ କଟକ ଜିଲା ସଭାପତି ଘୋଷଣା କରିବା ଯୋଗୁଁ ଏଥିରେ ସଂପୃକ୍ତ ଥିବା ଦୁଇ ଜଣ ସଭ୍ୟ (ଶ୍ରୀ ସରୋଜ ସିଂ ଓ ଶ୍ରୀ ବିଜୟ ଚକ୍ରବର୍ତ୍ତୀ)ଙ୍କୁ ଉତ୍କଳ ସମ୍ମିଳନୀରୁ ବହିଷ୍କାର କରାଯାଇଥାଏ । ତେଣୁ କୌଣସି ବହିଷ୍କୃତ ସଦସ୍ୟ ଉତ୍କଳ ସମ୍ମିଳନୀ ବ୍ୟାନର ବ୍ୟବହାର କରିବା ଉପରେ ସବ୍‌ଜଜ୍ କୋର୍ଟ୍‌ରେ ନିଷେଧାଦେଶ ପ୍ରାର୍ଥନା କରାଗଲା । ଏହି ମକଦ୍ଦମାର ବିଚାର କରି କଟକର ଅତିରିକ୍ତ ଜିଲାଜଜ୍ ରହିତାଦେଶ ଜାରୀ କଲେ ।

କଟକ ଜିଲା ଶାଖାପକ୍ଷରୁ ଉତ୍କଳ ସମ୍ମିଳନୀ ମଞ୍ଚ ଗଠନ କରିବାକୁ ଯିବା ବେଳକୁ ସେହି ମଞ୍ଚକୁ ବିରୋଧିମାନେ ଦଖଲ କରି ସାରିଥିଲେ । ତେଣୁ ସଭ୍ୟସଭ୍ୟାମାନେ ଜିଲାପାଳଙ୍କୁ କୋର୍ଟଙ୍କ ଆଦେଶ ଦେଖାଇ ସେହି ମଞ୍ଚ ଗଠନରୁ ତାଙ୍କୁ ନିବୃତ୍ତ କରିବାକୁ ଆପତ୍ତି କଲେ । ଜିଲାପାଳ ଏହାର ମିମାଂଶା କରିବାକୁ ଉଭୟପକ୍ଷଙ୍କୁ ଡକାଇ ଆଲୋଚନା ଆରମ୍ଭ କରିବାମାତ୍ରେ ବିରୋଧୀ ପକ୍ଷରୁ ପ୍ରବଳ ପାଟିତୁଣ୍ଡ ହୋଇ କାହାରିକୁ କଥା କୁହାଇ ଦିଆଗଲା ନାହିଁ । ଜିଲାପାଳ କୌଣସି ନିଷ୍ପତ୍ତି ନେଇ ନପାରି କହିଲେ ବାଲିଯାତ୍ରାର ଦୁଇ ମୁଣ୍ଡରେ ଦୁଇଟି ମଞ୍ଚ ହେଉ । ଗୁରୁ ମହାନ୍ତି ଗୋଟିଏ ମଞ୍ଚ ପରିଚାଳନା କଲାବେଳେ ତାଙ୍କ ବିରୋଧିଦଳ ଅନ୍ୟ ମଞ୍ଚରୁ ଉତ୍କଳ ସମ୍ମିଳନୀ ବାର୍ତ୍ତା ପ୍ରଚାର କରନ୍ତୁ । କହିଲି ଏ ପର୍ଯ୍ୟନ୍ତ ବାଲିଯାତ୍ରାରେ ଗୋଟିଏ ଉତ୍କଳ ସମ୍ମିଳନୀ ମଞ୍ଚ ହେଉଥିଲା । ସେହି ଗୋଟିଏ ମଞ୍ଚ ହିଁ ରହିବ । ଯଦି କେହି ଜବରଦସ୍ତ ଆମ ମଞ୍ଚକୁ ମାଡ଼ି ବସନ୍ତି, ତେବେ ଆମେ ଆଉ ଗୋଟିଏ ଉତ୍କଳ ସମ୍ମିଳନୀ ବ୍ୟାନର ଲଗାଇବୁ ନାହିଁ । ଏବେ ବିରୋଧିମାନେ ମଞ୍ଚଟିକୁ ମାଡ଼ି ବସିଲେ । ମାତ୍ର ଅଦାଲତଙ୍କ ଆଦେଶ ଅନୁସାରେ ଉତ୍କଳ ସମ୍ମିଳନୀ ବ୍ୟାନର୍ ନ ବାନ୍ଧି ଅନ୍ୟ ଏକ ନାମରେ ମଞ୍ଚ ଆରମ୍ଭ କଲେ । ଏଥି ସହିତ ହାଇକୋର୍ଟରେ ଏହି ସ୍ଥଗିତାଦେଶ ଉଠାଇ ଦେବା ପାଇଁ ମଧ୍ୟ ସେମାନେ ଆପତ୍ତି କଲେ । ହାଇକୋର୍ଟରୁ ଆମେ ନୋଟିସ ପାଇବାର ମାତ୍ର ଗୋଟିଏ ଦିନ ବ୍ୟବଧାନରେ ଏହି ମକଦ୍ଦମା ପଡ଼ିଲା । ଆମ ପକ୍ଷ ଓକିଲ ଉପସ୍ଥିତ ହୋଇ ପାରିଲେ ନାହିଁ । ତଳକୋର୍ଟରେ ଜବାବସୁଆଲ କରିଥିବା ବୈଷ୍ଣବଚରଣ ଦାସ ହାଇକୋର୍ଟରେ ହାଜର ହୋଇ ଆମପକ୍ଷର ଯୁକ୍ତି ଉପସ୍ଥାପନ କରିବାସତ୍ତ୍ୱେ ବିରୋଧୀଙ୍କ ଉପରୁ ରହିତାଦେଶ ଉଠାଇଦିଆଗଲା ।

## ପରବର୍ତ୍ତୀ ଅବସ୍ଥା

୨୦୦୮ ମସିହାରେ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ ପରିସରରେ ଉତ୍କଳ ସମ୍ମିଳନୀର ଯେଉଁ ନିର୍ବାଚନ ହୋଇଥିଲା ସେଥିରେ ଡକ୍ଟର ଭାବଗ୍ରାହୀ ମହାପାତ୍ର କେନ୍ଦ୍ର ସଭାପତି, ରାଧାନାଥ ପ୍ରହରାଜ ସାଧାରଣ ସମ୍ପାଦକ ଓ ଦିଲ୍ଲୀପ ଦାଶ ଶର୍ମା କୋଷାଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଥିଲେ । ମାତ୍ର ସମ୍ପାଦକ ଓ କୋଷାଧ୍ୟକ୍ଷଙ୍କ ମଧ୍ୟରେ ଭଲ ପଡ଼ିଲା ନାହିଁ । କାର୍ଯ୍ୟାଳୟରେ ଅଧିକାଂଶ ଦିନ ପରସ୍ପର ମଧ୍ୟରେ ଯୁକ୍ତିତର୍କ ଓ ଉଚ୍ଚବାଚରେ ଦିନ କଟୁଥିଲା । ଦିଲ୍ଲୀପ୍‌ବାବୁ କୋଷାଧ୍ୟକ୍ଷ ପଦବୀରୁ ଇସ୍ତଫା ଦେଲେ । ପରବର୍ତ୍ତୀ କାର୍ଯ୍ୟନିର୍ବାହୀ ବୈଠକରେ ତାଙ୍କ ଇସ୍ତାଫା ଗ୍ରହଣ କରିବା ବିଷୟ ଚର୍ଚ୍ଚା ହେବା ସମୟରେ ସାଧାରଣ ସମ୍ପାଦକଙ୍କ ବିରୁଦ୍ଧରେ ମଧ୍ୟ ସେ ଅନେକ ଅଭିଯୋଗ ଆଣିଲେ । ଅଧିକାଂଶ ସଦସ୍ୟ ମତ ଦେଲେ, ଦୁଇଜଣଙ୍କୁ ସେମାନଙ୍କ ଦାୟିତ୍ୱରୁ ଅବ୍ୟାହତି ଦେଇ ନୂଆ କର୍ମକର୍ତ୍ତାଙ୍କୁ

ଦାୟୀତ୍ୱ ଦିଆଯିବ । ଏହା ଶୁଣି ସେ ଦୁହେଁ ହାତ ମିଳାଇବା ପାଇଁ କେତେକ ସଭ୍ୟ ପ୍ରସ୍ତାବ ଦେଲେ । ମାତ୍ର କୋଷାଧ୍ୟକ୍ଷ ଦିଲିପ ବାବୁ ତାଙ୍କ ଇସ୍ତଫା ଗୃହୀତ ହେବା ଉପରେ ଜୋର୍ ଦେଲେ । ଆଉ ଦିନକ ପାଇଁ ମଧ୍ୟ ସେ କୋଷାଧ୍ୟକ୍ଷ ଦାୟୀତ୍ୱ ନେବାପାଇଁ ରାଜି ନ ଥିଲେ । ତେଣୁ ତାଙ୍କ ବଦଳରେ କେନ୍ଦ୍ରପଡ଼ା ଶାଖାର ପ୍ରତିନିଧି ଗୌରାଙ୍ଗ ବେହେରାଙ୍କୁ କୋଷାଧ୍ୟକ୍ଷ ଦାୟିତ୍ୱ ଦିଆଗଲା ।

ଓଡ଼ିଶା ସରକାରଙ୍କ ପ୍ରଚଳିତ ନିୟମ ଅନୁସାରେ ସରକାରୀ ଚାକିରୀରେ ବ୍ୟକ୍ତି ଅଠାବନବର୍ଷ ବୟସ ପର୍ଯ୍ୟନ୍ତ ରହି ପାରିବ । ଅଠାବନ ବର୍ଷ ପରେ ସରକାରୀ କର୍ମଚାରୀ ଅବସର ଗ୍ରହଣ କରେ । ମାତ୍ର ଆଜିକାଲି ଭାରତୀୟ ମାନଙ୍କର ହାରାହାରି ଆୟୁ ସତୁରୀ ବର୍ଷରୁ ଅଧିକ ହେଲାଣି । ସାଧାରଣତଃ ଉତ୍ତମ ସ୍ୱାସ୍ଥ୍ୟ ବିଶିଷ୍ଟ ଲୋକ ଅଶୀବର୍ଷ ପର୍ଯ୍ୟନ୍ତ ବେଶ୍ ସୁସ୍ଥସବଳ ଓ କାର୍ଯ୍ୟକ୍ଷମ ରହିପାରୁଛି । ତେଣୁ ଅବସର ପରେ ଲୋକ ସମାଜ ସେବାରେ ବ୍ରତୀ ହେବାକୁ ଇଚ୍ଛା କରୁଛି । ଏଭଳି ବ୍ୟକ୍ତିମାନେ ବିଭିନ୍ନ ସଂଗଠନର ସଭ୍ୟ/ସଭ୍ୟା ରହି ସେ ସବୁ ସଂଗଠନ ଚଳାଇବାକୁ ଆଗଭର ହେଉଛନ୍ତି । ଏପରି ବର୍ଷାଧିକକାଳ ସଭ୍ୟ ରହିବା ପରେ ସଂପୃକ୍ତ ସଂଗଠନର ରାଜନୈତିକ ଦିଗ ପ୍ରତି ଆକୃଷ୍ଟ ହୋଇ ବହୁ ବ୍ୟକ୍ତି କାର୍ଯ୍ୟ କରୁଛନ୍ତି ମାତ୍ର ପରେ ପରସ୍ପର ମଧ୍ୟରେ ବିତୃଷ୍ଣା ବୃଦ୍ଧି ପାଇବାର ଦେଖାଯାଉଛି । ଗୋଷ୍ଠିକନ୍ଦଳ ବୃଦ୍ଧି ହେବା ଫଳରେ ବହୁ ସଙ୍ଗଠନ ଅଶାନ୍ତ ବାତାବରଣ ମଧ୍ୟରେ ଆନ୍ଦୋଳିତ ହୋଇ ଲକ୍ଷ୍ୟ ହାସଲ ଠାରୁ ଦୂରେଇ ଯାଉଛନ୍ତି । ଉତ୍କଳ ସମ୍ମିଳନୀରେ ସେହିଭଳି କେତେକ କ୍ଷମତାପ୍ରେମୀ ବ୍ୟକ୍ତିଙ୍କ ଯୋଗୁ ପରବର୍ତ୍ତୀ କାଳରେ କେତେକ ସଭ୍ୟଙ୍କ ରୁକ୍ଷ ବ୍ୟବହାର ପାଇଁ ବାତାବରଣ ଅଶାନ୍ତ ହୋଇ ଉଠିଲା ।

ପୂର୍ବତନ ସଭାପତି ବସନ୍ତ କୁମାର ପାଣିଗ୍ରାହୀ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟକୁ ଆଉ ଆସିବେ ନାହିଁ ବୋଲି ନିଷ୍ପତ୍ତି ନେଇଥିଲେ । ଏହା ପରେ ଭାବଗ୍ରାହୀ ବାବୁଙ୍କ ସଭାପତିତ୍ୱରେ ଦିଲ୍ଲୀପ ଦାଶ ଶର୍ମା ମଧ୍ୟ କାର୍ଯ୍ୟାଳୟ ଛାଡ଼ିଲେ । ଏବେ ପାଳି ପଡ଼ିଲା ଖୋଦ ସଭାପତି ଡକ୍ଟର ଭାବଗ୍ରାହୀ ମହାପାତ୍ରଙ୍କର । କାର୍ଯ୍ୟାଳୟରେ ତାଙ୍କ ସହିତ ଯୁକ୍ତିତର୍କ ଓ ଅଶାଳୀନ ବ୍ୟବହାର ଆରମ୍ଭ ହୋଇଯିବାର ଅନୁଭବ କରି ସେ ମଧ୍ୟ କ୍ଷୁବ୍ଧ ହୋଇପଡ଼ିଲେ । କେବଳ ଜଣେ କର୍ମକର୍ତ୍ତାଙ୍କର ବିରକ୍ତିକର ଆଚରଣ ଯୋଗୁ ଉପରୋକ୍ତ ବ୍ୟକ୍ତିମାନେ ଅତିଷ୍ଠ ହୋଇପଡ଼ିଥିଲେ ।

କ୍ରମଶଃ ଅଶାନ୍ତି ବଢ଼ି ଚାଲିବା ଫଳରେ ସଭାପତି ଡଃ ମହାପାତ୍ର ସାଧାରଣ ସମ୍ପାଦକଙ୍କୁ ତାଙ୍କ ପଦବୀରୁ ବହିଷ୍କାର କରିଦେଲେ । ତାଙ୍କଠାରୁ ଏହି ଚିଠି ପାଇବା ପରେ ସାଧାରଣ ସମ୍ପାଦକ ଭୁବନେଶ୍ୱରସ୍ଥ ସିନିୟର୍ ସିଭିଲ୍ ଜଜ୍‌ଙ୍କ ଅଦାଲତରେ ଡଃ ମହାପାତ୍ରଙ୍କ ବିରୁଦ୍ଧରେ ମକଦ୍ଦମା କଲେ । ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରେ ଏବେ ସଭାପତି ଓ ସମ୍ପାଦକ ଦୁହେଁ

ବସି କାର୍ଯ୍ୟ କରିବା ଅସମ୍ଭବ ହୋଇ ପଡ଼ିଲା । ଭୁବନେଶ୍ୱର ଶାଖାର ବହୁ ସଦସ୍ୟ ସଦସ୍ୟା ସଭାପତି ଡଃ ମହାପାତ୍ରଙ୍କୁ ସମର୍ଥନ କଲେ । ଉତ୍କଳ ସମ୍ମିଳନୀପରି ଓଡ଼ିଆଜାତିର ଆଦ୍ୟମିଳନ ମଞ୍ଚରେ ଏ ପ୍ରକାର କ୍ଷମତା ରାଜନୀତି ଆଦୌ ସ୍ପୃହଣୀୟ ନୁହେଁ । ଉତ୍କଳମଣି ଗୋପବନ୍ଧୁ ଚକ୍ରଧରପୁରଠାରେ ଯେତେବେଳେ ଜାତୀୟ କଂଗ୍ରେସଙ୍କ ନୀତିକୁ ଉତ୍କଳ ସମ୍ମିଳନୀର ଦାୟିତ୍ୱ ଭାବେ ଘୋଷଣା କଲେ ସେତେବେଳେ ଉତ୍କଳ ଗୌରବ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀରୁ ଇସ୍ତଫା ଦେଇ ତାଙ୍କ ହାତଗଢ଼ା ଅନୁଷ୍ଠାନ ଠାରୁ ଦୂରେଇ ରହିଲେ । ସେ ଚାହିଁଥିଲେ ସମ୍ମିଳନୀ କାର୍ଯ୍ୟରେ ବହୁ ବାଧାବିଘ୍ନ ଉପୁଜି ଥାଆନ୍ତା । ମାତ୍ର ସେ କ୍ଷମତା ରାଜନୀତିରେ ବିଶ୍ୱାସ କରୁ ନଥିଲେ । ସେ ସମୟ ଥିଲା ଅଲଗା । ଉତ୍କଳ ସମ୍ମିଳନୀ ସେତେବେଳେ ଏକ ଓଡ଼ିଆ ରାଜ୍ୟ ଗଠନ ପାଇଁ ପ୍ରାଣପାତ ଉଦ୍ୟମ କରୁଥିଲା । ମାତ୍ର ଏବେ ଉତ୍କଳ ସମ୍ମିଳନୀକୁ ବଞ୍ଚାଇ ରଖିବାର ଉଦ୍ୟମ ହେଉଛି ମୁଖ୍ୟ । ପରିସ୍ଥିତିର ସମ୍ମୁଖୀନ ହେବାକୁ ଡଃ ଭାବଗ୍ରାହୀ ମହାପାତ୍ର ଚେଷ୍ଟା କରୁଥିଲେ । ମାତ୍ର କୌଣସି ନିଷ୍ପତ୍ତି ହୋଇପାରିଲା ନାହିଁ ।

କେନ୍ଦ୍ର କାର୍ଯ୍ୟାଳୟ ବିରୋଧୀ ଗୋଷ୍ଠୀଙ୍କ ଅଧିକାରରେ ରହିଲା । ସେମାନେ ଡଃ ଭାବଗ୍ରାହୀ ମହାପାତ୍ରଙ୍କୁ କାର୍ଯ୍ୟାଳୟ ପରିସରରେ ପ୍ରବେଶ କରାଇ ଦେଲେ ନାହିଁ । ଫଳରେ ଶ୍ରୀ ମହାପାତ୍ର ଭୁବନେଶ୍ୱର ପୋଲିସ କମିଶନରେଟ୍‌ରେ ଆପତ୍ତି କରି କାର୍ଯ୍ୟାଳୟରେ ୧୪୪ ଧାରା ଜାରୀ କଲେ । ସେହିଦିନଠାରୁ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରେ ଡଃ ମହାପାତ୍ରଙ୍କ ଆଧିପତ୍ୟ ରହିଲା । ଏସବୁ ଗଣ୍ଡଗୋଳ ଭିତରେ ଉତ୍କଳ ସମ୍ମିଳନୀର କାର୍ଯ୍ୟ ହୋଇ ପାରୁନଥିଲା ।

୨୦୦୮ ନିର୍ବାଚନ ପରେ ଇତି ମଧ୍ୟରେ ଚାରିବର୍ଷ ସମୟ ବିତିଯାଇଥିଲା । ତେଣୁ ଡଃ ମହାପାତ୍ର କାର୍ଯ୍ୟକାରୀକମିଟି ବୈଠକ ଡକାଇ ନିର୍ବାଚନ ପ୍ରସ୍ତୁତିରେ ଲାଗି ପଡ଼ିଲେ । ଯେଉଁ ସ୍ଥାନରେ ନିର୍ବାଚନ ହେବ ସେ ଜିଲା କମିଟି ପକ୍ଷରୁ ନିମନ୍ତ୍ରଣ ପାଇଲେ ବିଚାର କରାଯିବାକୁ ସ୍ଥିର ହୋଇଥିଲା । ମାତ୍ର କେବଳ ଝାଡ଼ଖଣ୍ଡରାଜ୍ୟସ୍ଥ ପୂର୍ବ ସିଂହଭୂମି ଶାଖା ପକ୍ଷରୁ ନିମନ୍ତ୍ରଣ ମିଳିଲା । ସେଠାରେ ପରିଷଦ ବୈଠକ ଓ ନିର୍ବାଚନ କରାଯିବାକୁ ସ୍ଥିର ହେଲା । ଏହି ନିର୍ବାଚନକୁ ଭଣ୍ଡୁର କରିବାଲାଗି ଅପରପକ୍ଷରୁ ବହୁ ଚେଷ୍ଟା ହୋଇଥିଲା । ମାତ୍ର ୨୦୧୨ ମସିହା ଜୁଲାଇ ୧୩ ତାରିଖରେ ପ୍ରାୟ ବାଇଶିଟି ଉତ୍କଳ ସମ୍ମିଳନୀ ଶାଖାର ପରିଷଦ ସଦସ୍ୟ/ସଦସ୍ୟାମାନେ ପୂର୍ବସିଂହଭୂମିର ଜାମସେଦପୁର ଠାରେ ପହଞ୍ଚିଗଲେ । ଏମାନଙ୍କ ପାଇଁ ପୂର୍ବସିଂହଭୂମି ଶାଖା ପକ୍ଷରୁ ଦୁଇ ତିନିଟି ହୋଟେଲରେ ରହିବାର ବ୍ୟବସ୍ଥା ହୋଇଥିଲା ଏବଂ ଉତ୍କଳ ଆସୋସିଏସନ୍ ପରିସର ମଧ୍ୟରେ ଖାଇବା ପିଇବାର ଓ ସଭା କରିବାର ବ୍ୟବସ୍ଥା ମଧ୍ୟ ହୋଇଥିଲା ।

ତା.୧୫-୭-୨୦୧୨ ତାରିଖରେ ସାଧାରଣ ସଭା ଅନୁଷ୍ଠିତ ହେଲା । ପାଖାପାଖି ଦୁଇଶହ ସଦସ୍ୟ ଉତ୍କଳ ସମ୍ମିଳନୀର ବର୍ତ୍ତମାନ ସ୍ଥିତି ସମ୍ପର୍କରେ ଆଲୋଚନା କଲେ । ସେଦିନ ରାତିରେ ମଧ୍ୟ କୋରାପୁଟ, ଜୟପୁର, ମାଲକାନାଗିରି ଓ ନବରଙ୍ଗ ପୁର ଆଦି ଜିଲାରୁ ପରିଷଦ ସଦସ୍ୟମାନେ ଆସି ପହଞ୍ଚିଲେ । ଭୁବନେଶ୍ୱରରୁ ଟେଲିଫୋନ୍ ଯୋଗେ ଖବର ମିଳିଲା ଯେ, ବିରୋଧୀ ପକ୍ଷ ଗତକାଲି ହାଇକୋର୍ଟରେ ଏହି ନିର୍ବାଚନକୁ ଅସିଦ୍ଧ ଘୋଷଣା କରିଛନ୍ତି ଓ ରାତିରେ ଭୁବନେଶ୍ୱରସ୍ଥ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟର ସବୁତକ ତାଲାଭାଙ୍ଗି କାର୍ଯ୍ୟାଳୟକୁ ଜବରଦଖଲ କରିଛନ୍ତି । ଏକଥା ଶୁଣି ବହୁ ଲୋକ ଚିନ୍ତା ବ୍ୟକ୍ତ କଲେ । ମାତ୍ର ପୂର୍ବ ସିଂହଭୂମି ଶାଖାର ସଭାପତି ଅଧିବକ୍ତା ରବିନ୍ଦ୍ରନାଥ ଶତପଥି କହିଲେ, ଓଡ଼ିଶା ହାଇକୋର୍ଟଙ୍କ ଆଦେଶ ଏଠାରେ ଜାରୀ ହୋଇ ପାରିବ ନାହିଁ । ତେଣୁ ନିର୍ବାଚନ କରାଯିବାରେ କୌଣସି ଅସୁବିଧା ନାହିଁ । ନିର୍ବାଚନ ପରେ ଓଡ଼ିଶା ହାଇକୋର୍ଟରେ ଉତ୍କଳ ସମ୍ମିଳନୀ ପକ୍ଷରୁ ଦର୍ଶାଇ ଦିଆଯାଇ ପାରିବ ଯେ, ଇତିମଧ୍ୟରେ ଆମର ନିର୍ବାଚନ କାର୍ଯ୍ୟ ସରିଯାଇଛି । ତିନିବର୍ଷ ବ୍ୟବଧାନରେ ନିର୍ବାଚନ ହେବାକଥା । ଏବେ ଚାରିବର୍ଷ ପରେ ଯେଉଁ ନିର୍ବାଚନ କରାଗଲା ତାହା ବୈଧ ବୋଲି ଘୋଷଣା କରାଯିବାକୁ ପ୍ରାର୍ଥନା କରାଯିବ । ସାଧାରଣ ସଭାରେ ଏପରି ନିଷ୍ପତ୍ତି ନିଆଯିବା ପରେ ତା ୧୫-୭-୨୦୧୨ ଦିନ ପୂର୍ବାହ୍ଣ ଦଶଟା ବେଳେ ନିର୍ବାଚନ ସଭାହେଲା । ଏପର୍ଯ୍ୟନ୍ତ ବ୍ରହ୍ମପୁରରୁ ବସନ୍ତକୁମାର ପାଣିଗ୍ରାହୀ ଆସିବେ ବୋଲି ଅପେକ୍ଷା ରହିଥିଲା । କାରଣ ସେ ସଭାପତି ହେବାକୁ ଚାହୁଁଥିଲେ । ମୁଁ ମଧ୍ୟ ତାଙ୍କୁ କଥା ଦେଇଥିଲି, ଯେ ଆପଣ ନିର୍ବାଚନ ବେଳେ ଉପସ୍ଥିତ ରହିଲେ ଆପଣଙ୍କୁ ସଭାପତି କରାଯିବ । କେହି ଆପଣଙ୍କୁ ବିରୋଧ କରିବେ ନାହିଁ । ମାତ୍ର ବସନ୍ତବାବୁ ଆସିଲେ ନାହିଁ ।

ଝାଡ଼ଖଣ୍ଡ ରାଜ୍ୟର ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ତଥା ସେଠାକାର ବରେଣ୍ୟ ଓଡ଼ିଆ ନେତା ଡାକ୍ତର ଦିନେଶକୁମାର ଷଡ଼ଙ୍ଗୀ ପ୍ରସ୍ତାବ ଦେଲେ ଯେ, ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷାଦେବା କ୍ଷେତ୍ରରେ ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କ ଅବଦାନ ତଥା ଉତ୍କଳ ସମ୍ମିଳନୀକୁ ଦରିଆପାରି ଦେଶମାନଙ୍କରେ ପ୍ରସାରିତ କରିବାରେ ତାଙ୍କର ଭୂମିକାକୁ ବିଚାର କରି ତାଙ୍କୁ ଉତ୍କଳ ସମ୍ମିଳନୀର ସଭାପତି ପଦରେ ଅପ୍ରତିଦ୍ୱନ୍ଦ୍ୱୀ ଭାବେ ନିର୍ବାଚିତ କରାଯାଉ । ଡାକ୍ତର ଷଡ଼ଙ୍ଗୀଙ୍କ ପ୍ରସ୍ତାବ କରତାଳି ଦ୍ୱାରା ଗୃହୀତ ହୋଇଗଲା । ତାପରେ ଜୟପୁରର ଶ୍ରୀ ବିନୋଦ ମହାପାତ୍ର, ଭୁବନେଶ୍ୱରର ଅନନ୍ତ ପ୍ରସାଦ ଜେନା, ଯାଜପୁରର ପ୍ରଫୁଲ୍ଲ କୁମାର ମାହାଲା, ରାଉରକେଲାର ବିଚିତ୍ରାନନ୍ଦ ସାହୁ, ଜାମସେଦପୁରର ରବୀନ୍ଦ୍ର କୁମାର ଶତପଥି, ଫୁଲବାଣୀର ଶ୍ରୀ କୌଶିକ ସାହୁ ଓ କଟକର ଡକ୍ଟର ବିଜୟାନନ୍ଦ ସିଂହଙ୍କୁ ଉପସଭାପତି ଭାବେ, ନିର୍ବାଚିତ କରାଗଲା । ପ୍ରଫେସର ଅଦ୍ୱୈତ କୁମାର ପାତ୍ରଙ୍କୁ ସାଧାରଣ ସମ୍ପାଦକ ଭାବେ,

ଖୋର୍ଦ୍ଧାର ବିମଳ କୁମାର ଷଡ଼ଙ୍ଗୀ, ପାରଦ୍ୱୀପର ସୁରେନ୍ଦ୍ର ମୋହନ ମିଶ୍ର, ସୁନ୍ଦରଗଡ଼ର ପଦ୍ମନାଭ ସାମଲ, ଜାମସେଦପୁରର ରବୀନ୍ଦ୍ର କୁମାର ମିଶ୍ର, ହୀରାକୁଦର ଦାଶରଥି ଦାଶ, ପୁରୀର ଯାମିନୀକାନ୍ତ ନାୟକ ଓ ବୈଦ୍ୟନାଥ ମିଶ୍ରଙ୍କୁ ସାତଜଣ ସମ୍ପାଦକ ଭାବେ ବଛାଗଲା । ଶ୍ରୀମତୀ ଉଷାରାଣୀ ମହାନ୍ତି ହେଲେ କୋଷାଧ୍ୟକ୍ଷ ।

ଉତ୍କଳ ସମ୍ମିଳନୀ ଉପଦେଷ୍ଟା ଭାବେ ବ୍ରହ୍ମପୁରର ବସନ୍ତ କୁମାର ପାଣିଗ୍ରାହୀ, ବରୀ ଆଶ୍ରମର ପଦ୍ମଚରଣ ନାୟକ, ଝାଡ଼ଖଣ୍ଡର ଡାକ୍ତର ଦୀନେଶ କୁମାର ଷଡ଼ଙ୍ଗୀ, ଭୁବନେଶ୍ୱରର ସାତକଡ଼ି ହୋତା ଓ ପୂର୍ବତନ ସଭାପତି ଡକ୍ଟର ଭାବଗ୍ରାହୀ ମହାପାତ୍ରଙ୍କୁ ନିଆଗଲା । ପ୍ରତି ଜିଲାରୁ ଜଣେ ଲେଖାଏଁ ଜିଲା ପ୍ରତିନିଧିଙ୍କୁ କେନ୍ଦ୍ର ପରିଚାଳନା ସଭାକୁ ମନୋନୀତ କରାଯିବା ପରେ ନିର୍ବାଚନ କାର୍ଯ୍ୟ ଶେଷ କରି ଆମେ ସମସ୍ତେ ଓଡ଼ିଶା ଫେରି ଆସିଲୁ ।

ଜାମସେଦପୁର ଠାରେ ଆମର ନିର୍ବାଚନକୁ ମାନ୍ୟବର ହାଇକୋର୍ଟ ଅସିଦ୍ଧ ଘୋଷଣା କରିଥିବାରୁ ଆମ ପକ୍ଷରୁ ଜବାବ ଦିଆଗଲା ଓ ଏହି ନିର୍ବାଚନକୁ ସିଦ୍ଧ ଘୋଷଣା କରିବାକୁ ନିବେଦନ କରାଗଲା । ସେହି ଦରଖାସ୍ତର ଶୁଣାଣି କରି ମାନ୍ୟବର ହାଇକୋର୍ଟ ଭୁବନେଶ୍ୱର ସିନିୟର ଡିଭିଜନର ବିଚାରପତିଙ୍କ କୋର୍ଟରେ ଡକ୍ଟର ଭାବଗ୍ରାହୀ ମହାପାତ୍ରଙ୍କ ବିରୁଦ୍ଧରେ ଶ୍ରୀ ପ୍ରହରାଜ କରିଥିବା ମକଦ୍ଦମାର ବିଚାର ଉପରେ ନିର୍ବାଚନ ଫଳାଫଳ ନିର୍ଭର କରିବ ବୋଲି ନିର୍ଦ୍ଦେଶ ଦେଲେ । ଏହି ନିର୍ଦ୍ଦେଶ ପାଇ ମାନ୍ୟବର ସିଭିଲ୍ ଜଜ୍ ମକଦ୍ଦମା ବିଚାର କରି ନ୍ୟାୟଦେଲେ ଯେ, ଇତି ମଧ୍ୟରେ ଉତ୍କଳ ସମ୍ମିଳନୀର ନିର୍ବାଚନ ହୋଇସାରିଛି ଏବଂ ସେହି ନିର୍ବାଚନ କାଏମ୍ ରହିଲା । ଡକ୍ଟର ଗୁରୁ ପ୍ରସାଦ ମହାନ୍ତି, ସଭାପତି ଏବଂ ଡକ୍ଟର ଅଦ୍ୱୈତ କୁମାର ପାତ୍ର ସାଧାରଣ ସମ୍ପାଦକ ଭାବେ ଉତ୍କଳ ସମ୍ମିଳନୀ ଦାୟୀତ୍ୱରେ ରହିବେ ବୋଲି ମାନ୍ୟବର ଅଦାଲତ ନିର୍ଦ୍ଦେଶ ଦେଲେ । ମାନ୍ୟବର ସିନିୟର ସିଭିଲ୍ ଜଜ୍‌ଙ୍କର ଏହି ଆଦେଶକୁ ଓଡ଼ିଶା ସରକାର ତଥା ବିଧାନସଭାକୁ ଜଣାଇ ଦିଆଗଲା । ଏହା ଜାଣିବା ପରେ ଓଡ଼ିଶା ସରକାରଙ୍କ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ପକ୍ଷରୁ ଆମ ଦୁହିଁଙ୍କୁ ଭାରତୀୟ ଷ୍ଟେଟବ୍ୟାଙ୍କରେ ଆକାଉଣ୍ଟ ଖୋଲି ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ଦେଉଥିବା ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ୨୦୧୧-୧୨ ବର୍ଷ ପାଇଁ ଦରମା ଅର୍ଥରାଶି ମିଳିଗଲା ।

ଏକ ଗଣତାନ୍ତ୍ରିକ ଅନୁଷ୍ଠାନକୁ ତା ବାଟରେ ଚାଲିବାକୁ ନଦେଇ ତାକୁ ନିଜ କବ୍‌ଜାରେ ରଖିବାକୁ କେହି ଜଣେ ଚାହିଁଲେ କିଛି ଲୋକଙ୍କୁ ହାତରେ ରଖି କିଛିଦିନ ପାଇଁ ସେପରି କରିପାରିବେ । ମାତ୍ର ସବୁଦିନ ପାଇଁ ଏହା ସମ୍ଭବ ନୁହେଁ । ଆମ ଦେଶର ଆଇନ୍ କାନୁନ୍ ବ୍ୟବସ୍ଥାକୁ ନେଇ ମକଦ୍ଦମା କରି ନ୍ୟାୟଖୋଜିଲେ ଦଶନ୍ଧି ଦଶନ୍ଧି ବିତିଯିବ । ତେଣୁ ଭୁବନେଶ୍ୱର ସିନିୟର୍ ସିଭିଲ୍ ଜଜ୍ ଯେଉଁ ରାୟ ଦେଲେ ତାହା ଓଡ଼ିଶା ସରକାର ସାଙ୍ଗେସାଙ୍ଗେ ଗ୍ରହଣ କରି ନଥିଲେ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର କାର୍ଯ୍ୟ ମଧ୍ୟ ବନ୍ଦ

ହୋଇ ଯାଇଥାନ୍ତା । ସେତକ ହେବା ଫଳରେ ଝାଡ଼ଖଣ୍ଡ, ଛତିଶଗଡ଼, ଆନ୍ଧ୍ର ଓ ପଶ୍ଚିମ ବଙ୍ଗର ମେଦିନୀପୁର ଅଞ୍ଚଳରେ ଦୀର୍ଘ ତିନିବର୍ଷ ଧରି ଶିକ୍ଷକ ଶିକ୍ଷୟିତ୍ରୀମାନେ ଦରମା ନ ପାଇ ଯେପରି ହତୋତ୍ସାହିତ ହୋଇଯାଇଥିଲେ; ତାର ପରିସମାପ୍ତି ଘଟିଲା । ୨୦୧୩ ମସିହା ଜାନୁୟାରୀ ମାସଠାରୁ ୨୦୧୪ ମସିହା ଜୁନ୍ ମାସ ଭିତରେ ବିଚ୍ଛିନ୍ନାଞ୍ଚଳ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ତିନିବର୍ଷର ବାକିଆ ଦରମା ମିଳିଗଲା । ତେଣୁ ଓଡ଼ିଆ ଶିକ୍ଷା ପ୍ରସାର କାର୍ଯ୍ୟରେ ଉନ୍ନତି ଘଟିଲା । ଏହାପରେ ନିୟମିତ ଭାବେ ଶିକ୍ଷକ ଦରମା ଦିଆଯାଉଛି ଓ ଏବେ ଶିକ୍ଷକମାନଙ୍କ ଦରମା ମାସକୁ ଟ.୧୫୦୦/- ବଦଳରେ ଟ.୩୦୦୦/- ଏବଂ ଶିକ୍ଷା ପରିଦର୍ଶକମାନଙ୍କୁ ମାସିକ ଟ.୨୦୦୦/- ବଦଳରେ ଟ.୫୦୦୦/- ଦିଆଯାଉଛି ।

ସିଂହଭୂମିରେ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବା ପାଇଁ ଉତ୍କଳମଣି ଗୋପବନ୍ଧୁ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ, ତାଙ୍କ ପରେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଶ୍ରୀ ଅନନ୍ତ ମିଶ୍ର ସେ ଦିଗରେ ୧୯୩୬ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ମାତ୍ର ବିହାର ସରକାର ସିଂହଭୂମିରୁ ଓଡ଼ିଆ ଭାଷା ଉଚ୍ଛେଦ କରି ହିନ୍ଦି ପ୍ରଚଳନ କାର୍ଯ୍ୟ ଜୋରଦାର କରିଦେଲେ । ଫଳରେ ପୁରୁଣା ଓଡ଼ିଆ ବିଦ୍ୟାଳୟଗୁଡ଼ିକ ବନ୍ଦ ହୋଇଗଲା । ପୁଣି ୧୯୯୮ ମସିହାରୁ ଉତ୍କଳ ସମ୍ମିଳନୀ ପକ୍ଷରୁ ସେ ଅଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର କାର୍ଯ୍ୟ ଆରମ୍ଭ ହୋଇ ଏ ପର୍ଯ୍ୟନ୍ତ ବଢ଼ି ବଢ଼ି ଚାଲିଛି । ମାତ୍ର ଏ ଦିଗରେ ଝାଡ଼ଖଣ୍ଡ ସରକାରଙ୍କର କୌଣସି ସ୍ୱୀକୃତି ରହିଲା ନାହିଁ । ଫଳରେ ପୁଣି କେତେବେଳେ ସେ ରାଜ୍ୟରେ ଓଡ଼ିଆ ଭାଷା ବିପନ୍ନ ହୋଇ ପଡ଼ିବ ସେ ଭୟ ସବୁବେଳେ ରହିଛି । ତେଣୁ ସେଠାରେ 'ଓଡ଼ିଆ ଭାଷାକୁ ଦ୍ୱିତୀୟ ରାଜଭାଷା କରିବା ଆନ୍ଦୋଳନ ଚିନ୍ତା କରାଗଲା ।

୨୦୦୪ ମସିହାରୁ ବିଭିନ୍ନ ସ୍ଥାନରେ ସଭାସମିତି କରି ଝାଡ଼ଖଣ୍ଡରେ ଓଡ଼ିଆ ଭାଷାକୁ ସେ ରାଜ୍ୟର ଦ୍ୱିତୀୟ ରାଜଭାଷା ଭାବେ ମାନ୍ୟତା ଦିଆଇବାକୁ ଉଦ୍ୟମ ଜାରି ରହିଲା । ୨୦୧୧ ମସିହାରେ ଝାଡ଼ଖଣ୍ଡ ବିଧାନସଭାରେ ବଙ୍ଗଳା ଓ ଉର୍ଦ୍ଦୁ ଭାଷା ଦୁଇଟିକୁ ଦ୍ୱିତୀୟ ରାଜଭାଷା କରାଯିବାର ଆଲୋଚନା ହେବା ଖବର ପାଇ ଭୁବନେଶ୍ୱରସ୍ଥ ବିଜୁ ପଟ୍ଟନାୟକ କମ୍ପ୍ୟୁଟର ଏକାଡ଼େମୀରେ ଏକ ମନ୍ତ୍ରଣା ବୈଠକର ଆୟୋଜନ କରାଗଲା । ଉତ୍କଳ ସମ୍ମିଳନୀ ପକ୍ଷରୁ ଡଃ ଭାବଗ୍ରାହୀ ମହାପାତ୍ର, ଡଃ ଅଦ୍ୱୈତ କୁମାର ପାତ୍ର, ଶ୍ରୀ ଦିଲ୍ଲୀପ ଦାଶଶର୍ମା ଓ ମୁଁ ସେହି ବୈଠକରେ ଯୋଗ ଦେଲୁ । ଓଡ଼ିଆ ଭାଷା ପ୍ରତି ଝାଡ଼ଖଣ୍ଡ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ କେତେକ ପଦକ୍ଷେପ ନିଆଯିବାକୁ ସ୍ଥିର ହେଲା । ଯଥା-(୧) ଓଡ଼ିଶା ବିଧାନସଭା ଜରିଆରେ ଝାଡ଼ଖଣ୍ଡ ସରକାରଙ୍କ ଉପରେ ଚାପ ପକାଇବା, (୨) ଓଡ଼ିଶା ବିଧାନ ସଭା ସମ୍ମୁଖରେ ଧାରଣାଦେବା । (୩) ଝାଡ଼ଖଣ୍ଡ ବିଧାନସଭା ସମ୍ମୁଖରେ ଧାରଣାଦେବା । (୪)ଝାଡ଼ଖଣ୍ଡର ମୁଖ୍ୟମନ୍ତ୍ରୀ ଏବଂ ଅନ୍ୟ ମନ୍ତ୍ରୀମାନଙ୍କୁ ଭେଟି ଓଡ଼ିଆ ମାନଙ୍କର ଦାବୀ ଜଣାଇବା ।

ଏହାଥିଲା ୨୦୧୧ ମସିହା ଅଗଷ୍ଟ ୨୪ ତାରିଖ ଦିନର କଥା । ସେ ଦିନ ଓଡ଼ିଶା ବିଧାନ ସଭା ସାମନାରେ ମାଷ୍ଟର  କ୍ୟାଣ୍ଟିନ୍ ଛକରୁ ପିଏମ୍‌ଜି ଛକ ପର୍ଯ୍ୟନ୍ତ ରାଜରାସ୍ତା କଡ଼ରେ ଆମେ ଧାରଣା ଦେଲୁ ।

୨୦୦୪ ମସିହା ଠାରୁ ଝାଡ଼ଖଣ୍ଡରେ ଓଡ଼ିଆଭାଷାକୁ ଦ୍ୱିତୀୟ ରାଜଭାଷାର ମର୍ଯ୍ୟଦା ଦାବୀ ହୋଇଥିଲା । ସେହି ବର୍ଷ ଚକ୍ରଧର ପୁରର ମାରଓ୍ୱାଡ଼ି ଉଚ୍ଚବିଦ୍ୟାଳୟ ହଲ୍‌ରେ ଉତ୍କଳ ସମ୍ମିଳନୀ ପକ୍ଷରୁ ସଭାକରାଯାଇ ଏହି ଦାବୀ କରାଯାଇଥିଲା । ସେହି ସଭାକୁ ଶ୍ରୀ ସରୋଜ ପ୍ରଧାନ, ରୁଦ୍ର ପ୍ରତାପ ଷଡ଼ଙ୍ଗୀ ପ୍ରବୋଧ କୁମାର ମିଶ୍ର ଓ ଅନ୍ୟ କେତେଜଣ ସ୍ଥାନୀୟ ନେତା ମୋତେ ମୁଖ୍ୟ ଅତିଥି ଭାବେ ଆମନ୍ତ୍ରିତ କରିଥିଲେ । ଏହା ପରେ ପଶ୍ଚିମ ସିଂହଭୂମିର ସୋଣୁଆଁ ଠାରେ ମଧ୍ୟ ଏଥିଲାଗି ଆଉ ଗୋଟିଏ ସଭା ହୋଇଥିଲା । ସେଥିରେ ଉତ୍କଳ ସମ୍ମିଳନୀ କଟକ ଜିଲା ପକ୍ଷରୁ ଅଭୟ ସାମନ୍ତରାୟ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ୨୦୦୫ ମସିହାରେ ଜାମସେଦପୁରସ୍ଥ ଉତ୍କଳ ଆସୋସିଏସନ୍ ପ୍ରେକ୍ଷାଳୟରେ ରବିନ୍ଦ୍ର କୁମାର ଶତପଥିଙ୍କ ସଭାପତିତ୍ୱରେ ଓଡ଼ିଆ ଭାଷାକୁ ଦ୍ୱିତୀୟ ରାଜଭାଷାର ଦର୍ଜା ଦାବୀରେ ସଭା ହୋଇଥିଲା । ସେହି ସଭାରେ ମୁଁ ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲି । ଅଧିବକ୍ତା ରବୀନ୍ଦ୍ର ନାଥ ଶତପଥୀଙ୍କ ନେତୃତ୍ୱରେ ଶ୍ରୀ ତାରାଚାନ୍ଦ ମହାନ୍ତି, ରବୀନ୍ଦ୍ର କୁମାର ମିଶ୍ର, କାଶୀନାଥ ଗୌଡ଼ ଓ ସରୋଜ କୁମାର ପ୍ରଧାନ ଆଦି ଉକ୍ତ ସଭାରେ ଏହି ଦାବୀ ଜଣାଇବା ପରେ ରାଞ୍ଚି ଯାଇ ମୁଖ୍ୟମନ୍ତ୍ରୀ ଶ୍ରୀ ଅର୍ଜୁନମୁଣ୍ଡାଙ୍କୁ ଭେଟିଥିଲେ ।

୨୦୦୬ ମସିହାରେ ଷଢ଼େଇକଳା ଠାରେ ଏକ ବଡ଼ ସଭା କରାଯାଇ ଓଡ଼ିଆମାନଙ୍କର ଏହି ଦାବୀ ଉପସ୍ଥାପନ କରାଯାଇଥିଲା । ଶ୍ରୀ ସୁମନ୍ତ ମହାନ୍ତି, ଜ୍ୟୋତିଲାଲ୍ ସାହୁ, ଅଧିବକ୍ତା ଗୋଲକ ବିହାରୀ ପତି ଆଦି ସ୍ଥାନୀୟ ନେତାମାନଙ୍କ ସହିତ ମୁଖ୍ୟବକ୍ତା ଭାବେ ମୁଁ ଯୋଗ ଦେଇଥିଲି । ଏହାପରେ ଉତ୍କଳ ସମ୍ମିଳନୀ ଦ୍ୱାରା ଗଠିତ ଝାଡ଼ଖଣ୍ଡ ଓଡ଼ିଆ ଶିକ୍ଷା ପ୍ରସାର ସମିତି, ଓ ଝାଡ଼ଖଣ୍ଡ ଓଡ଼ିଆ ଶିକ୍ଷକ ସଂଘ ପକ୍ଷରୁ ମଧ୍ୟ ଦାବୀ ପତ୍ରମାନ ମଝିରେ ମଝିରେ ଝାଡ଼ଖଣ୍ଡ ସରକାରଙ୍କୁ ଦିଆଯାଇ ଥିଲା ।

୨୦୧୩ ମସିହା ଅଗଷ୍ଟ ମାସ ୨୮ ତାରିଖରେ ଝାଡ଼ଖଣ୍ଡ ବିଧାନ ସଭା ସମ୍ମୁଖରେ ଧାରଣା ଦେବାକୁ ଭୁବନେଶ୍ୱର ପି.ଏମ୍.ଜି. ଛକରୁ ପୂର୍ବାହ୍ନ ୧୧ଟା ବେଳେ ଆମର ବାହାରିବାକୁ ଥିଲା । କଟକରୁ ଶ୍ରୀ ମାଧବ ମିଶ୍ର, ଅମିତା ବେହେରା, ବସନ୍ତ ମଞ୍ଜରୀ ନନ୍ଦ ଓ କାଶୀନାଥ ସ୍ୱାଇଁଙ୍କୁ ନେଇ ମୁଁ ଭୁବନେଶ୍ୱରସ୍ଥ ପି.ଏମ୍.ଜି. ଛକକୁ ଗଲି । ସେଠାରେ ଭୁବନେଶ୍ୱର ଶାଖାର ଡଃ ଅଦ୍ୱୈତ କୁମାର ପାତ୍ର, ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସମେତ ପାଞ୍ଚଜଣ ବ୍ୟକ୍ତିଙ୍କ ସହିତ ବିଜୁ ପଟ୍ଟନାୟକ କମ୍ପ୍ୟୁଟର ଏକାଡେମୀ ପକ୍ଷରୁ ମଧ୍ୟ

ଛଅଜଣ ବ୍ୟକ୍ତି ରାଞ୍ଚି ଯିବା ପାଇଁ ଉପସ୍ଥିତ ଥିଲେ । ବିଜୁ ପଟ୍ଟନାୟକ କମ୍ପ୍ୟୁଟର ଏକାଡ଼େମୀ ପକ୍ଷରୁ ରାଞ୍ଚି ଯିବା ପାଇଁ ଗୋଟିଏ ବସ୍‌ର ବ୍ୟବସ୍ଥା କରାଯାଇଥିଲା ।

ରାଞ୍ଚିରେ ପହଞ୍ଚି କେଉଁ ସ୍ଥାନରେ ଆମେ ଧାରଣା ଦେବୁ ବୋଲି ମୁଁ ଝାଡ଼ଖଣ୍ଡର ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ଡାକ୍ତର ଦୀନେଶ କୁମାର ଷଡ଼ଙ୍ଗୀଙ୍କୁ ଏଥିଲାଗି ତମ୍ବୁ ଘେରାଇ ମାଇକ୍ ଆଦି ବନ୍ଦୋବସ୍ତ କରିବା ପାଇଁ ପୂର୍ବରୁ ଅନୁରୋଧ କରିଥିଲି । ତାଙ୍କ ପରିବାର ସହିତ ମୋର ସମ୍ପର୍କ ହୋଇ ସାରିଥିବା ଦୃଷ୍ଟିରୁ ଟଙ୍କା ପଇସା ନ ଦେଇ ମଧ୍ୟ ଏ ସବୁର ଦାୟୀତ୍ୱ ତାଙ୍କ ଉପରେ ଲଦି ଦେବାର ସାହସ ମୋର ଥିଲା । ତାଛଡ଼ା, ସେ ଥିଲେ ଝାଡ଼ଖଣ୍ଡର ଅଦ୍ୱିତୀୟ ଓଡ଼ିଆ ନେତା । ଏପରି ଏକ ଜାତୀୟ ଦାବୀ ଉପସ୍ଥାପନକାରୀ ସଭାର ଆୟୋଜନ ସେ କରିଥିଲେ । ଧାରଣାରେ ବସିବାକୁ ବହୁ ଲୋକଙ୍କର ଆବଶ୍ୟକତା ରହିଛି । ଚକ୍ରଧରପୁରକୁ ଫୋନ୍ କରି ଶ୍ରୀ ସରୋଜ କୁମାର ପ୍ରଧାନଙ୍କୁ ସେଠାକାର ଓଡ଼ିଆ ଶିକ୍ଷକମାନଙ୍କୁ ତିନୋଟି ଜିପ୍ ଭଡ଼ା କରି ରାଞ୍ଚି ନେବା ପାଇଁ ଅନୁରୋଧ କଲି । ସେହିପରି ଷଢ଼େଇକଳାର ସୁମନ୍ତ ମହାନ୍ତି ଓ ସୁଶୀଲ କୁମାର ଷଡ଼ଙ୍ଗୀଙ୍କୁ ଦୁଇଟି ଗାଡ଼ିରେ ସେଠାକାର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଧାରଣା ସ୍ଥଳକୁ ନେବା ପାଇଁ ମଧ୍ୟ ଦୁଇଦିନ ପୂର୍ବରୁ କହିଥିଲି । ଜିପ୍ ଗୁଡ଼ିକର ଭଡ଼ା ବାବଦ ପରେ ବ୍ୟବସ୍ଥା କରାଯିବ ବୋଲି ମୋ ପକ୍ଷରୁ ସୂଚାଇ ଦିଆଯାଇଥିଲା । ଅବଶ୍ୟ ପରେ ଏହି ବସ୍‌ଭଡ଼ା ଯୋଡ଼ାଠାରେ ଥିବା ଡାକ୍ତର ଲକ୍ଷ୍ମୀକାନ୍ତ ମହାନ୍ତି ପଇଠ କରିଥିଲେ ।

ଅବଶ୍ୟ ପରେ ଏସବୁ ଗାଡ଼ି ପାଇଁ ଭଡ଼ାବାବଦ ସମସ୍ତ ଅର୍ଥ କେନ୍ଦୁଝର ଜିଲ୍ଲାର ଯୋଡ଼ାଠାରେ ଥିବା ଡାକ୍ତର ଲକ୍ଷ୍ମୀକାନ୍ତ ମହାନ୍ତି ଦାନ କରିଥିଲେ । ଡାକ୍ତର ମହାନ୍ତି ଝାଡ଼ଖଣ୍ଡରେ ଓଡ଼ିଆ ଶିକ୍ଷାଦାନ ପାଇଁ ସହଯୋଗର ହାତ ବଢ଼ାଇବା ସହିତ ସେସବୁ ଅଞ୍ଚଳରେ ସ୍ୱାସ୍ଥ୍ୟ ଶିବିରମାନ ଆୟୋଜନ କରିବାରେ ବ୍ରତୀ ଅଛନ୍ତି । ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ପି.ଏମ୍.ଜି ଛକ ପାଖରେ ଥିବା ଓଡ଼ିଶାର ବାଚସ୍ପତିଙ୍କ ବାସଭବନକୁ ଯାଇ ତାଙ୍କୁ ଦେଖା କରିବାର କଥା ହେଲା । ସାମ୍ବାଦିକ ଶ୍ରୀ ପ୍ରଭୁ କଲ୍ୟାଣ ମହାପାତ୍ର (ମୋର ସମ୍ବନ୍ଧୀ) ଯାଇ ବାଚସ୍ପତି ଶ୍ରୀଯୁକ୍ତ ଅମାତ୍ୟଙ୍କୁ ଏ ଖବର ଜଣାଇବାରୁ ସେ ଆମ ସମସ୍ତଙ୍କୁ ଭେଟିବା ପରେ ଝାଡ଼ଖଣ୍ଡର ବାଚସ୍ପତିଙ୍କ ପାଖକୁ ଏକ ଚିଠି ଲେଖି ଓଡ଼ିଆଭାଷାକୁ ଦ୍ୱିତୀୟ ରାଜଭାଷା କରିବା ପାଇଁ ସମସ୍ତ ପ୍ରକାର ସାହାଯ୍ୟ କରିବାକୁ ଅନୁରୋଧ କଲେ ।

ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ଉତ୍କଳ ଆସୋସିଏସନ୍‌ର ସଭାପତି ରବିନ୍ ଶତପଥିଙ୍କୁ ଅନୁରୋଧ କରି ପ୍ରାୟ ଚାଳିଶ ଜଣ ଲୋକଙ୍କ ପାଇଁ ଖାଇବାର ବ୍ୟବସ୍ଥା କରିବାକୁ ଜଣାଇ ଦେଇଥିଲି । ଆମ୍ଭେମାନେ ପ୍ରାୟ ରାତି ବାରଟା ସୁଦ୍ଧା ଉତ୍କଳ ଆସୋସିଏସନ୍‌ରେ ପହଞ୍ଚି ଖାଇ ପିଇ ବିଶ୍ରାମ ନେବା ପରେ ଭୋର ସାତଟା ସୁଦ୍ଧା ରାଞ୍ଚି ବାହାରି ଯିବା କଥା

ସର ହୋଇଥିଲା । ମାତ୍ର ଜାମସେଦପୁରରେ ପହଞ୍ଚିଲା ବେଳକୁ ରାତି ପ୍ରାୟ ତିନିଟା ହେଲା । ଉତ୍କଳ ଆସୋସିଏସନକୁ ବାଟ ଖୋଜି ଖୋଜି ଆହୁରି ଘଣ୍ଟାଏ ବିତିଗଲା । ଭୋର ଚାରିଟା ସୁଦ୍ଧା ସେଠାରେ ପହଞ୍ଚି ଅଳ୍ପ କିଛି ଖାଇ ସାରି ଦୁଇ ଘଣ୍ଟା ଶୋଇଯିବା ପରେ ନିତ୍ୟକର୍ମ ସାରି ଉତ୍କଳ ଆସୋସିଏସନ୍ ଦ୍ୱାରା ଆୟୋଜିତ ଚା, ଜଳଖିଆ ଖାଇ ସାରି ପୁଣି ବସ୍‌ରେ ବସିଲୁ । ଆମ ସହିତ ଜାମସେଦପୁର ଠାରୁ ଉତ୍କଳ ସମ୍ମିଳନୀ ପୂର୍ବ ସିଂହଭୂମି ଶାଖାର ପ୍ରାୟ ପନ୍ଦର କୋଡ଼ିଏ ଜଣ ସଭ୍ୟ ଧାରଣାରେ ଯୋଗ ଦେବାକୁ ଆମ ବସ୍‌ରେ ରାଞ୍ଚି ଯାତ୍ରାକଲେ ।

ଧାରଣା ସ୍ଥଳରେ ପହଞ୍ଚିଲା ବେଳକୁ ଚକ୍ରଧର ପୁର ଓ ଷଢ଼େଇକଳାରୁ ଶିକ୍ଷକ ଶିକ୍ଷୟିତ୍ରୀମାନେ ସେଠାରେ ଉପସ୍ଥିତ ଥିଲେ । ଡାକ୍ତର ଦୀନେଶ କୁମାର ଷଡ଼ଙ୍ଗୀ ପୂର୍ବରୁ ତମ୍ବୁ ପକାଇ ମାଇକ୍ ବାନ୍ଧି, ଉତ୍କଳ ସମ୍ମିଳନୀ ବ୍ୟାନର ଲଗାଇ ଆମ ଅପେକ୍ଷାରେ ଥିଲେ । ଝାଡ଼ଖଣ୍ଡରେ ଓଡ଼ିଆମାନଙ୍କର ପ୍ରାଧାନ୍ୟ ତଥା ପୋଡ଼ାହାଟ, ଷଢ଼େଇକଳା, ଖରସୁଆଁ ଓ କେରା ଆଦି ଓଡ଼ିଆ ରାଜାମାନଙ୍କର ଐତିହାସିକ ବିବରଣୀ ଦେଇ ଏ ରାଜ୍ୟରେ ଥିବା ଲକ୍ଷ ଲକ୍ଷ ମୂଳବାସିନ୍ଦା ଓଡ଼ିଆଙ୍କ ଭାଷାକୁ ମାନ୍ୟତା ଦେବାକୁ ଦାବୀ କରି ବକ୍ତୃତା ଆରମ୍ଭ ହୋଇଗଲା । ଏତିକିବେଳେ ଷଢ଼େଇକଳାର ରାଜା ଓ ଖରସୁଆଁ ଯୁବରାଜ ଆସି ଏହି ଧାରଣାରେ ଆମ ସହିତ ଯୋଗ ଦେଲେ । ଦିନେଶ ବାବୁଙ୍କ ସାଙ୍ଗରେ ଆମେ କେତେ ଜଣ ନେତୃସ୍ଥାନୀୟ ବ୍ୟକ୍ତି ଝାଡ଼ଖଣ୍ଡ ବିଧାନସଭାକୁ ଯାଇ ବାଚସ୍ପତି ଶ୍ରୀଯୁକ୍ତ ଭି.ପି.ସିଂହଙ୍କୁ ଦେଖାକଲୁ । ସେ ମନୋହରପୁର ବିଧାୟକ ଶ୍ରୀ ଗୁରୁ ଚରଣ ନାୟକଙ୍କୁ ଡକାଇ ଆମ୍ଭମାନଙ୍କ ସହିତ ପରିଚିତ କରିବା ପରେ ଆସନ୍ତା କାଲି ଶୂନ୍ୟକାଳରେ ଏହି ପ୍ରଶ୍ନ ଉଠାଇବା ପାଇଁ ନିର୍ଦ୍ଦେଶ ଦେଲେ । ଗୁରୁ ଚରଣ ବାବୁ ବିଧାନ ସଭାରେ ମୁଖ୍ୟମନ୍ତ୍ରୀ ଅର୍ଜୁନ ମୁଣ୍ଡାଙ୍କୁ ଆମର ଧାରଣା କଥା କହି ତାଙ୍କୁ ଭେଟିବାର ସମୟ ମାଗିବାରୁ ସେ ସନ୍ଧ୍ୟା ୫ଟା ବେଳକୁ ଆମ୍ଭମାନଙ୍କୁ ତାଙ୍କ ବାସଭବନକୁ ଡକାଇଲେ । ଅପରାହ୍ନ ପ୍ରାୟ ତିନିଟା ସୁଦ୍ଧା ଧାରଣାରେ ବସିଥିବା ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଫେରିଯିବାକୁ କହି ଆମେ ସବୁ ମୁଖ୍ୟମନ୍ତ୍ରୀଙ୍କ କୋଠିକୁ ଗଲୁ । ଆମ୍ଭମାନଙ୍କ ପାଇଁ ସେଠାରେ ସୁସ୍ୱାଦୁ ଲଞ୍ଚ୍ ପ୍ୟାକେଟ୍ ରଖାଯାଇଥିଲା । ଖାଇସାରି କଫି ପିଇ ସାରିବା ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ଅର୍ଜୁନ ମୁଣ୍ଡା ଆମ ସହିତ ଆସି କଥା ହେଲେ । ସେ କହିଲେ ଆଜି ଆପଣମାନେ ଝାଡ଼ଖଣ୍ଡର ଦୁଇଜଣ ଉପମୁଖ୍ୟମନ୍ତ୍ରୀଙ୍କ ସହିତ ଦେଖାକରି ସେମାନଙ୍କୁ ଏକଥା କହି ଦିଅନ୍ତୁ । କାଲି ବିଧାନ ସଭାରେ ଏହି ବିଲ୍ ପାରିତ କରିବାକୁ ଚେଷ୍ଟା କରାଯିବ । ଆମେ ଝାଡ଼ଖଣ୍ଡ ମୁକ୍ତି ମୋର୍ଚ୍ଚାଦଳର ଉପମୁଖ୍ୟମନ୍ତ୍ରୀ ହେମନ୍ତ ସୋରେନ୍ ଓ ବିଜେପି ଉପମୁଖ୍ୟମନ୍ତ୍ରୀ ସୁଦେଶ ମାହାତୋଙ୍କୁ ଯାଇ ଭେଟିଲୁ । ଆମ ସହିତ ଦୀନେଶ ବାବୁ, ଷଢ଼େଇକଳା ରାଜା ଓ ଖରସୁଆଁ ଯୁବରାଜ ପ୍ରାୟ ରାତି ୧୨ଟା ପର୍ଯ୍ୟନ୍ତ ଥାଆନ୍ତି । ସବୁକାମ ସାରି ଫେରିଲା ବେଳକୁ ଆମକୁ ଦୀନେଶ ବାବୁ, ଗୁରୁଚରଣ ନାୟକ ଓ ଷଢ଼େଇକଳାର ରାଜା ବିଦାୟ ଦେଲେ । ବାଟରେ ଗୋଟିଏ ଢାବାରେ ଖାଇସାରି

ଜାମସେଦପୁର ଠାରେ ପହଞ୍ଚିଲାବେଳକୁ ଭୋର ପାଞ୍ଚଟା ହୋଇଯାଇଥିଲା । ଆମ ସହିତ ଯାଇଥିବା ଜାମସେଦପୁର ସଭ୍ୟମାନେ ଓହ୍ଲାଇ ଯିବାପରେ ଭୁବନେଶ୍ୱର ଅଭିମୁଖେ ଆମେ ବାହାରି ଆସିଲୁ । ସେଦିନ ବାରଟା ସୁଦ୍ଧା ଆମେ ଭଦ୍ରକ ପହଞ୍ଚିବା ବେଳକୁ ଦୂରଭାଷ ଯୋଗେ ସୁସମ୍ବାଦ ମିଳିଲା ଯେ ଝାଡ଼ଖଣ୍ଡ ବିଧାନ ସଭାରେ ଅନ୍ୟ କେତେକ ଭାଷା ସହିତ ଓଡ଼ିଆ ଭାଷାକୁ ଦ୍ୱିତୀୟ ରାଜଭାଷା ଭାବେ ସ୍ୱୀକୃତି ମିଳିଯାଇଛି । ଉତ୍କଳମଣି ଗୋପବନ୍ଧୁ ୧୯୧୬ ମସିହାଠାରୁ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ, ଆଜି ତାର ସାଫଲ୍ୟ ଅନୁଭୂତ ହେଲା । ଏଥିପାଇଁ ୧୯୯୮ ମସିହାରୁ ଝାଡ଼ଖଣ୍ଡରେ ଓଡ଼ିଆ ଶିକ୍ଷା ପ୍ରସାର କାର୍ଯ୍ୟ ଚାଲୁ ରହିବା ଯେ ନିହାତି ଜରୁରୀ ଥିଲା ତାହା ସ୍ପଷ୍ଟ ଭାବେ ଅନୁଭୂତ ହେଲା ।

## ଅନ୍ୟ ପଡ଼ୋଶୀ ରାଜ୍ୟମାନଙ୍କର ଅବସ୍ଥା

ଏହାପରେ ଆମର ଲକ୍ଷ୍ୟ ଅଛି ଛତିଶଗଡ଼ ରାଜ୍ୟରେ ଓଡ଼ିଆ ଭାଷାକୁ ଦ୍ୱିତୀୟ ରାଜଭାଷାର ମାନ୍ୟତା ଦିଆଇବା । ଛତିଶଗଡ଼ର ରାୟପୁର, ମହାସମୁନ୍ଦ, ଯଶପୁର, ରାୟଗଡ, ଜଗଦଳପୁର ଓ ବସ୍ତର ଆଦି ଜିଲ୍ଲାମାନଙ୍କର ପ୍ରାୟ କୋଟିଏ ଓଡ଼ିଆ ଲୋକ ବସବାସ କରୁଥିବାର ଜଣା ଅଛି । ସେମାନଙ୍କର ଓଡ଼ିଆ ଭାଷାରେ ଶିକ୍ଷା ପାଇବାର ସୁବିଧା ନାହିଁ । ମାତ୍ର ଘରେ ହିନ୍ଦୀ ମିଶା ଓଡ଼ିଆ, ସମ୍ବଲପୁରୀ ବା ନରିଆ ଭାଷାରେ ସେମାନେ କଥା ହୁଅନ୍ତି । ଛତିଶଗଡ଼ରେ ଉତ୍କଳ ସମ୍ମିଳନୀ ପକ୍ଷରୁ ଦୁଇ ଶହ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ/ଶିକ୍ଷୟିତ୍ରୀ ମାନେ ଓଡ଼ିଆ ପଢ଼ାଉଛନ୍ତି । ଓଡ଼ିଶା ବିଧାନସଭା ପକ୍ଷରୁ ବିଧାୟକ ଅମର ଶତପଥୀଙ୍କ ନେତୃତ୍ୱରେ ଗୃହ କମିଟି ୨୦୧୪ ଅଗଷ୍ଟ ମାସରେ ସେହି ଅଞ୍ଚଳ ପରିଦର୍ଶନ କରି ସ୍ଥାନୀୟ ଓଡ଼ିଆମାନଙ୍କ ସହତ ଆଲୋଚନା କଲାବେଳେ ସମସ୍ତେ ଓଡ଼ିଆ ଭାଷା ଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କ ସହିତ କଣ୍ଟାବାଂଝି ବିଧାୟକ ଶ୍ରୀ ସନ୍ତୋଷ ସିଂ ସାଲୁଜା ମଧ୍ୟ ଏହି କାର୍ଯ୍ୟରେ ସହଯୋଗୀ ଥିଲେ । ଗୃହ କମିଟି ସହିତ ଉତ୍କଳ ସମ୍ମିଳନୀ ପକ୍ଷରୁ ସଭାପତି ଭାବେ, ମୁଁ, ସାଧାରଣ ସମ୍ପାଦକ ପ୍ରଫେସର ଅଦ୍ୱୈତ କୁମାର ପାତ୍ର, କୋଷାଧ୍ୟକ୍ଷା ଉଷାରାଣୀ ମହାନ୍ତି ଓ ମଞ୍ଚେଶ୍ୱର ଶାଖା ସଭାପତି ଦିଲ୍ଲୀପ ଦାଶ ଶର୍ମା ଏବଂ ଛତିଶଗଡ଼ ଓଡ଼ିଆ ଶିକ୍ଷା ପରିଦର୍ଶକ କ୍ଷମା ସାଗର ଭୁଇ ବୁଲି ବୁଲି ସେଠାକାର ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷା କାର୍ଯ୍ୟ ଦେଖାଇବା ସହିତ ଶିକ୍ଷକ / ଶିକ୍ଷୟିତ୍ରୀମାନଙ୍କ ସଭା କରାଇ ସେମାନଙ୍କର ସୁବିଧା-ଅସୁବିଧା ବିଷୟ ବୁଝିବା ପରେ ଛତିଶଗଡ଼ ମୁଖ୍ୟମନ୍ତ୍ରୀ ଶ୍ରୀ ରମଣ ସିଂ ଏବଂ ସେଠାକାର ଶିକ୍ଷାମନ୍ତ୍ରୀଙ୍କ ସହିତ ଆଲୋଚନା କରି ଓଡ଼ିଆ ଭାଷାକୁ ଛତିଶଗଡ଼ର ଦ୍ୱିତୀୟ ରାଜଭାଷା କରାଇବା ବିଷୟରେ ଆଲୋଚନା କଲା ବେଳେ ସେ ଆମ ପ୍ରସ୍ତାବରେ ସମ୍ମତି ପ୍ରଦାନ କରିଥିଲେ । ଏପରି ଗୁରୁତ୍ୱପୂର୍ଣ୍ଣ

କାର୍ଯ୍ୟ ଏତେ ସହଜରେ ସମାହିତ ହେବା ଅସମ୍ଭବ । ସଂପୃକ୍ତ ରାଜ୍ୟ ସରକାର ଅନ୍ୟ ଏକ ରାଜ୍ୟର କୌଣସି ସଂଗଠନ ଦ୍ୱାରା ଯେ ପ୍ରଭାବିତ ହୋଇ ପାରିବେ, ସେପରି ଭାବିବା ଠିକ୍ ନୁହେଁ । ଉଭୟ ରାଜ୍ୟର ସରକାର ତଥା ନେତୃବୃନ୍ଦଙ୍କ ପାରସ୍ପରିକ ବନ୍ଧୁତା ସହଯୋଗ ବା ବୁଝାମଣା ଉପରେ ଏପରି ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ବହୁମାତ୍ରାରେ ନିର୍ଭରଶୀଳ। ମାତ୍ର ଏ ଦିଗରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରାନଗଲେ ସେ ଦିଗରେ ଆଗେଇବା ଅସମ୍ଭବ ।

ଆନ୍ଧ୍ରପ୍ରଦେଶରେ ରହିଯାଇଥିବା ଶ୍ରୀକାକୁଲମ, ବିଜୟ ନଗରମ୍ ଓ ବିଶାଖା ପାଟଣା ଜିଲ୍ଲାମାନଙ୍କରେ ଥିବା ଓଡ଼ିଆ ଉଚ୍ଚ ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଶିକ୍ଷା କାର୍ଯ୍ୟ ଚାଲୁ ରହିଛି । ଏସବୁ ଉଚ୍ଚ ବିଦ୍ୟାଳୟରେ ଛାତ୍ରସଂଖ୍ୟା ବୃଦ୍ଧି କରିବା ପାଇଁ ପ୍ରାଥମିକ ବିଦ୍ୟାଳୟ ସ୍ତରରୁ ଛାତ୍ରଛାତ୍ରୀମାନଙ୍କୁ ଓଡ଼ିଆ ଶିକ୍ଷା ଦେବାକୁ ଉତ୍କଳ ସମ୍ମିଳନୀ ପକ୍ଷରୁ ବର୍ତ୍ତମାନ ଦୁଇଶହ ଶିକ୍ଷକ/ଶିକ୍ଷୟିତ୍ରୀ କାର୍ଯ୍ୟ କରୁଛନ୍ତି । ସେଠାକାର ଓଡ଼ିଆ ଲୋକଙ୍କ ମାତୃଭାଷା ପ୍ରେମ ଅନୁଯାୟୀ ଭବିଷ୍ୟତରେ ଏହି ସଂଖ୍ୟା ଆହୁରି ବଢ଼ି ଚାଲିବା ଆଶା କରାଯାଏ ।

ସେହିଭଳି ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାରେ ବଙ୍ଗୀୟ ମାନଙ୍କର ପ୍ରଚଣ୍ଡ ବିରୋଧ ସତ୍ତ୍ୱେ ୨୦୦୪-୦୫ ଶିକ୍ଷାବର୍ଷରୁ ମୁଁ ଯେପରି ଉଦ୍ୟମଆରମ୍ଭ କରିଆସିଛି ତା'ର ସୁଫଳ ଧୀରେ ଧୀରେ ଅନୁଭୂତ ହେଉଛି । ଏବେ ସେ ରାଜ୍ୟରେ ୧୨୦ଟି ଚାଟଶାଳି ଓ ଗୋଟିଏ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକରୁଛି । ସେଠାକାର ଯେଉଁ ଓଡ଼ିଆମାନେ ବଙ୍ଗାଳୀ ବୋଲି ପରିଚୟ ଦେଇ ଓଡ଼ିଆଭାଷାକୁ ଘୃଣା କରୁଥିଲେ, ସେମାନେ ଏବେ ତାଙ୍କ ପିଲାଙ୍କୁ ଓଡ଼ିଆ ପଢ଼ିବାକୁ ପଠାଉଛନ୍ତି । ଉତ୍କଳ ସମ୍ମିଳନୀ ପକ୍ଷରୁ ନିଷ୍ଠାପର ଉଦ୍ୟମ ଚାଲୁ ରହିଲେ ମେଦିନୀପୁର ଜିଲ୍ଲାରେ ଥିବା ଓଡ଼ିଆମାନଙ୍କର ମାତୃଭାଷା–ଓଡ଼ିଆ କହିବା, ପଢ଼ିବା ଓ ଲେଖିବା କ୍ଷେତ୍ରରେ କ୍ରମଶଃ ଉନ୍ନତି ହେବା ନିଶ୍ଚିତ । ହେଲେ ସବୁଠାରୁ ଦୁଃଖାବହ ବିଷୟ ହେଉଛି; ଓଡ଼ିଶାରେ ନିଜ ମାତୃଭାଷା ଓଡ଼ିଆ ପ୍ରତି ଲୋକମାନଙ୍କର କ୍ରମଶଃ ଆଗ୍ରହ କମିବାର ପ୍ରବୃତ୍ତି । ଓଡ଼ିଆ ଲୋକେ ମାତୃଭାଷା ଓଡ଼ିଆକୁ କେତେ ଭଲ ପାଉଛନ୍ତି ତାହା ଏବେ ସମୀକ୍ଷା କରିବାର ସମୟ ଆସିଛି । ବିବାହ, ବ୍ରତ ବା ସାଂସ୍କୃତିକ ଉତ୍ସବ ମାନଙ୍କରେ ଏବେ ଓଡ଼ିଆ ବଦଳରେ ଇଂରାଜୀ ନିମନ୍ତ୍ରଣ ପତ୍ର ଛାପିବା ଅପସଂସ୍କୃତି ପରମ୍ପରାର ସୂଚନା ଦେଉଛି । ଓଡ଼ିଆ ଲୋକେ ବହୁ ଇଂରାଜୀ ଓ ହିନ୍ଦୀ ଶବ୍ଦ ବ୍ୟବହାର କରୁଥିବାରୁ ପୂର୍ବରୁ ବ୍ୟବହୃତ ଶତାଧିକ ଓଡ଼ିଆ ଶବ୍ଦ ଏବେ ଆମଠାରୁ ଦୂରେଇ ଗଲାଣି ।

ଓଡ଼ିଆ ଜାତି ପକ୍ଷରେ ଗର୍ବ ଓ ଗୌରବର ବିଷୟ ହେଉଛି, ଗତ ତା.୧୧.୩.୨୦୧୪ ଦିନ ଭାରତ ସରକାର ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେଇଛନ୍ତି । ତାମିଲ, ତେଲୁଗୁ, କାନାରିଜ, ମାଲାୟାଲମ୍ ଓ ସଂସ୍କୃତ ଭାଷା ପରେ ଦ୍ୱିତୀୟ ଆର୍ଯ୍ୟଭାଷା ଭାବେ ଓଡ଼ିଆ ଭାଷା ଏହି ଗୌରବର ଅଧିକାରୀ ହୋଇଛି । ଫଳରେ ଯେଉଁମାନେ ଓଡ଼ିଆଭାଷାକୁ

ନ୍ୟୁନ ବୋଲି ଭାବୁଥିଲେ ସେମାନଙ୍କର ମୁହଁ କଳା ପଡ଼ିଯାଇଛି । ଏବେ ପ୍ରମାଣିତ ହୋଇଛି ଯେ, ଇଂରାଜୀ ବା ହିନ୍ଦୀ ପରି କୋଟି କୋଟି ଲୋକଙ୍କର କଥିତ ଭାଷାଠାରୁ ଓଡ଼ିଆ ଭାଷା ବହୁ ପୁରାତନ ଆର୍ଯ୍ୟ ଭାଷା । ଏହି ଗୌରବ ପ୍ରତ୍ୟେକ ଓଡ଼ିଆ ଅନୁଭବ କରିବା ଉଚିତ । ତଥାପି ଏ ପର୍ଯ୍ୟନ୍ତ ଓଡ଼ିଆ ଭାଷାକୁ ଆମରି ଲୋକେ ସରକାରୀ ଭାଷା ଭାବେ ମାନ୍ୟତା ଦେବାକୁ ବୀତସ୍ପୃହ । ମୋ ଜୀବନକାଳ ଭିତରେ ଏହା ଯେ ସମ୍ଭବ ହୋଇପାରିବ ସେକଥା ଚିନ୍ତା କରିହେଉ ନାହିଁ ।

# ପତ୍ନୀ ବିୟୋଗ

ସାଂସାରିକ କ୍ଷେତ୍ରରେ ଦାମ୍ପତ୍ୟ ଜୀବନର ମୂଲ୍ୟ ଯଥେଷ୍ଟ ବେଶୀ । ଏକ ସୁସ୍ଥ ଦାମ୍ପତ୍ୟ ଜୀବନ ପାରିବାରିକ କ୍ଷେତ୍ରରେ ପୂର୍ଣ୍ଣତା ଆଣିଦିଏ । ସେହି ପୂର୍ଣ୍ଣତାର ଅନୁଭବ ହିଁ ଦାମ୍ପତ୍ୟ ସୁଖ । ବୟସ ବଢ଼ିବା ସହିତଏହି ଅନୁଭବ ଗାଢ଼ରୁ ଗାଢ଼ତର ହୋଇଥାଏ । ସେଥିଲାଗି ବୃଦ୍ଧାବସ୍ଥାରେ ସ୍ୱାମୀ ବା ସ୍ତ୍ରୀଙ୍କର ପାରସ୍ପରିକ ବିଚ୍ଛେଦାତ୍ମକ ଦୁଃଖ ଅସହ୍ୟ ହୋଇଉଠେ ।

ଅଳ୍ପ ବୟସରେ ବିବାହ କରି ପ୍ରଥମେ ପ୍ରଥମେ ମୁଁ ଦାମ୍ପତ୍ୟ ଜୀବନର ମୂଲ୍ୟ ବୁଝି ପାରି ନଥିଲି । ସ୍ନେହଲତା ଥିଲେ ଜଣେ ଶାନ୍ତ, ସରଳ ଓ ନିରୀହା ଝିଅ । ମୋ ବୋଉ ତାଙ୍କୁଦେଖିବା ମାତ୍ର ମୁଗ୍ଧ ହୋଇଯାଇଥିଲା । ତେଣୁ ସେଇ ଝିଅଟି ଛଡ଼ା ଅନ୍ୟ କେଉଁଠି ମୋର ବିବାହ ହୋଇ ପାରିବ ନାହଁ ବୋଲି ନିଷ୍ପତ୍ତି ନେଇଥିଲା ସେ । ମୁଁ ଚାହିଁଥିଲି କଲେଜ ପାଠ ଶେଷ କରି ଚାକିରୀ କରି ସ୍ୱାବଲମ୍ବୀ ହୋଇ ସାରିବା ପରେ ବିବାହ କରିବି । ମାତ୍ର ମୋ ବାପା ବୋଉ ତାହା କରାଇଦେଲେ ନାହିଁ । ମନକଥା କେବଳ ମାଆକୁ ମୁଁ କହୁଥିଲି । ଆଉ ଦୁଇ ତିନି ବର୍ଷ ଅପେକ୍ଷା କରିବାକୁ କହିଲାବେଳେ ମାଆ କହୁଥିଲା, ଏ ବିବାହରେ ତୋର ଭବିଷ୍ୟତ ସୁଖ ନିହିତ ଅଛି । ଚାକିରୀ କ୍ଷେତ୍ରରୁ ଅବସର ନେବା ପୂର୍ବରୁ ତୋ ପିଲାମାନେ ମଣିଷ ହୋଇଯାଇଥିବେ । ତେଣୁ ପରିଣତ ବୟସରେ ପିଲାମାନଙ୍କ ଚିନ୍ତା ତୋ ମୁଣ୍ଡରେ ନ ଥବ । ମାଆ କଥା ସତ ହେଲା, ମୋତେ ପଚାଶ ବୟସ ହେବା ପୂର୍ବରୁ ତିନି ପିଲାଙ୍କର ଶିକ୍ଷା ସମାପ୍ତ ହୋଇ ସାରିଥିଲା ଓ ଝିଅ ଦେବଶ୍ରୀ ବିଭା ହୋଇ ଯୁକ୍ତରାଷ୍ଟ୍ର ଆମେରିକାରେ ଚାକିରୀ କରିଥିଲା । ଝିଅ ଆମେରିକା ଯିବାର ଦୁଇ ବର୍ଷ ପରେ ସାନ ପୁଅ ଗୋପାଳ ମଧ୍ୟ ଉଚ୍ଚଶିକ୍ଷା ପାଇଁ ଆମେରିକା ଚାଲିଗଲା । ବଡ଼ ପୁଅ ବିଭୂତି ଜଣେ କଣ୍ଟ୍ରାକ୍ଟର ଭାବେ ମହାନଦୀ ବ୍ୟାରେଜ ନିର୍ମାଣ କ୍ଷେତ୍ରରେ କାମ କରୁଥିଲା ।

୨୦୦୯ ମସିହାରେ ପିଲା ତିନିହେଁ ମୋର ବିବାହର ସୁବର୍ଣ୍ଣ ଜୁବୁଲି ଉତ୍ସବ ପାଳନ ପାଇଁ ଯୋଜନା କରିଥିଲେ ବି ଏକଥା ଆମେ ଘରେ ପ୍ରଘଟ କରିନଥିଲେ । ସେତିକିବେଳେ ମୋ ସାନଶାଳି ପୁଷ୍ପାଞ୍ଜଳିଙ୍କ ପୁଅର ବିବାହରେ ଯୋଗ ଦେବାକୁ ମୋ ପିଲାମାନଙ୍କ ସହିତ ବଡ଼ଶାଳି ସ୍ୱର୍ଣ୍ଣଲତାଙ୍କ ଦୁଇ ଝିଅ ନବନୀତା ଓ ମଧୁମିତା ଆମେରିକାରୁ ଆସି ପହଞ୍ଚିଗଲେ । ସେହି ବିବାହ ଉତ୍ସବ ବେଳେ ଆମ ବିବାହର ପଚାଶ ବର୍ଷ ପୂର୍ତ୍ତି ଉତ୍ସବ ପାଇଁ ସବୁ ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ କରିବାରେ ଘଟଣାଟା ମୋ କାନକୁ ଆସିଲା । ମୁଁ ସ୍ନେହଲତାଙ୍କୁ ଡାକି ଏସବୁ ନ କରିବା ପାଇଁ ପିଲାମାନଙ୍କୁ ଜଣାଇଦେବାକୁ କହିବାରୁ ସେ କହିଲେ, ପିଲାମାନଙ୍କ ଖୁସିରେ ଆମର ଖୁସି । ସେମାନେ ଯାହା କରିବାକୁ ନିଷ୍ପତ୍ତି ନେଇଛନ୍ତି ତୁମେ ଏହାର ବିରୋଧ କଲେ ସେମାନଙ୍କର ମନଦୁଃଖ ହେବ । କହିଲି, ଏଇଟା ଆମର ପରମ୍ପରା ନୁହେଁ । ତେଣୁ ଏପରି କରିବାକୁ ମୁଁ ପସନ୍ଦ କରୁନାହିଁ । ସ୍ନେହଲତା କହିଲେ ଆମ ପରମ୍ପରାରେ ପିତୃଦିବସ, ମାତୃଦିବସ ବା ଭାଲେଣ୍ଟାଇନ୍ ଡେ' ପାଳନ କରିବା କଥା କେବେଠୁ ଯୋଡ଼ି ହୋଇଗଲାଣି । ପୁଣି ତୁମ ପିଲାମାନେ ଯୁକ୍ତରାଷ୍ଟ୍ର ଆମେରିକାରେ ଦୁଇ ଦଶନ୍ଧି ଧରି ରହିଛନ୍ତି । ସେମାନଙ୍କ ନିଷ୍ପତ୍ତିଉପରେ କୌଣସି ବିରୁଦ୍ଧାତ୍ମକ ମତ ଦିଅନା । ଏହି ଉତ୍ସବ ପାଳନ ବିଷୟରେ ସେମାନଙ୍କ ଭିତରେ ତିନି ଚାରିମାସ ହେଲାଣି ଆଲୋଚନା ହେବା କଥା ମୁଁ ଜାଣିପାରିଛି । ମୋର ଆଉ କିଛି କହିବାର ନ ଥିଲା । ପିଲାମାନେ ତାଙ୍କ ଯୋଗାଡ଼ରେ ଲାଗିପଡ଼ିଲେ ।

କଟକର ଏକ ବଡ଼ ହୋଟେଲ ପରିସରରେ ଆମର ଏହି ଉତ୍ସବ ପାଳିତ ହେଲା । ମୋର ସମୁଦି ରାସବିହାରୀ ବାବୁ କହିଲେ, ଆଉ ଦଶ ବର୍ଷ ପରେ ହୀରକ ଜୁବୁଲି ପାଳିତ ହେବ । ସେତେବେଳକୁ ଆହୁରି ଧୂମ୍‌ଧାମ୍‌ରେ ଏ ଉତ୍ସବ ହେବ । କହିଲି, ସେତେଦିନ ଯାଏ ଆମେ ବଞ୍ଚିଲେ ହେଲା । ସେ କହିଲେ ଆଜିକାଲି ୮୦/୮୧ ବର୍ଷ ବଞ୍ଚିବାଟା ଏକ ମାମୁଲି କଥା । ଯାହାର ଡାଇବେଟିସ, ରକ୍ତଚାପ ବା କୌଣସି କ୍ରନିକ୍ ବେମାରୀ ନାହିଁ, ସେ ଅତିକମ୍‌ରେ ନବେ ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହୁଛି ।

ସେ ଯେତେବେଳେ ଏ କଥା କହୁଥିଲେ, ହୁଏତ ନେପଥ୍ୟରେ କାଳ ଏହା ଶୁଣି ହସୁଥିଲା । କବି ଲେଖିଛନ୍ତି –

ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ<br>
ସମସ୍ତଙ୍କ ଭାଗ୍ୟ ଡୋରି<br>
ନିଜ ଭାଗ୍ୟ ଡୋରି କାଳହସ୍ତେ ତାହା<br>
ପକାନ୍ତି ହେଲେ ପାଶୋରି ।

ସେହି ଉତ୍ସବଠାରୁ ଠିକ୍ ପାଞ୍ଚବର୍ଷ ନ ପୁରୁଣୁ ସ୍ନେହଲତା ଯେ ଇହଧାମ ତ୍ୟାଗ କରିବେ ସେ କଥା ମୋ କଳ୍ପନାରେ ନ ଥିଲା । ସେଦିନ ଥିଲା ୨୦୧୪ ମସହି ମାର୍ଚ୍ଚ ୩୧ ତାରିଖ । ମୁଁ ସେଦିନ ଥିଲି ମୁମ୍ବାଇରେ । ଠିକ୍ ତା' ପରଦିନ 'ଉତ୍କଳ ଦିବସ' । ମାତ୍ର ୩୦ ତାରିଖ ସକାଳ ଫ୍ଲାଇଟ୍ ଧରି ମୋ ସାନମଝିଆଁ ଶାଳି ଗୀତାଞ୍ଜଳି ସହିତ ମୋତେ ବମ୍ବେ ଆସିବାକୁ ପଡ଼ିଲା । ସ୍ୱୟଂ ସ୍ନେହଲତା ମୋର ମୁମ୍ବାଇ ଯିବା ପାଇଁ ପୂର୍ବରୁ ଟିକେଟ କରି ରଖିଥିଲେ । କାରଣ ତାଙ୍କ ତଳ ଭଉଣୀ ସ୍ୱର୍ଣ୍ଣଲତା ଦୁଇବର୍ଷ ହେଲାଣି କର୍କଟ ରୋଗରେ ପୀଡ଼ିତା । ପ୍ରାୟ ଆଠ ଦିନ ପୂର୍ବରୁ ତାଙ୍କର ଅବସ୍ଥା ଖରାପ ଆଡ଼କୁ ଯିବାରୁ ତାଙ୍କୁ ଟାଟା କ୍ୟାନ୍ସର ହସ୍ପିଟାଲ ଆଇ.ସି.ୟୁରେ ଭର୍ତ୍ତି କରାଯାଇଥିଲା । ସ୍ନେହଲତା ମୋତେ ମୁମ୍ବାଇ ଯିବାକୁ କହିବାରୁ ମୁଁ 'ଉତ୍କଳ ଦିବସ' କାମ ସାରିଦେଇ ଯିବି ବୋଲି କହିଲି । ସେ ଭୀଷଣ ବିରକ୍ତ ହୋଇ କହିଲେ, ପୂର୍ବରୁ ସବୁ ଉତ୍କଳଦିବସ ତୁମେ ପାଳନ କରିଛ ଓ ଆସନ୍ତା ବର୍ଷ ମଧ୍ୟ କରିବ । ଆଜି ମୋ ଭଉଣୀର ବିପଦ ବେଳେ ତୁମେ ଠିଆ ହେବାକୁ ଟାଳଟୁଳ କରିବାଟା ନିହାତି ଅନ୍ୟାୟ କଥା । ଶ୍ରୀମତୀଙ୍କର ତୃତୀୟ ଭଉଣୀ ଗୀତାଞ୍ଜଳି ମଧ୍ୟ ମୋ ସହିତ ମୁମ୍ବଇ ଯିବାକୁ ଟିକେଟ କରି ଦେଇଥାନ୍ତି । ମାର୍ଚ୍ଚ ୩୦ ତାରିଖ ସକାଳ ୮ଟାରେ ଭୁବନେଶ୍ୱରରୁ ବିମାନ ଯୋଗେ ମୁମ୍ବାଇ ଯିବା କଥା ।

ପୂର୍ବଦିନ ସ୍ନେହଲତା କହିଥିଲେ, "ମୋର ଗ୍ୟାସ ହେଲା ପରି ବୋଧ ହେଉଛି । ମୋତେ ଗ୍ୟାସ ଔଷଧ ଆଣି ଦିଅ ।" କହିଲି, ମଝିରେ ମଝିରେ ତୁମର ଗ୍ୟାସ ହେବା କଥା କହୁଛ । ମାତ୍ର ଡାକ୍ତର ଦେଖାଇବା କଥା କହିଲେ ବିରକ୍ତ ହେଉଛ । ଚାଲ ଡାକ୍ତର ଦେଖାଇ ଗ୍ୟାସ ହେବାର କାରଣଟା ବୁଝିନେବା । ତାପରେ ମୁଁ ବମ୍ବେ ଯିବି । ସେ ପୁଣି ବିରକ୍ତ ହୋଇ କହିଲେ ମୋର ଯାହା ହେଉଛି ମୁଁ ଭଲ ଭାବେ ଜାଣେ । ଡାକ୍ତର ଦେଖାଇଲେ ସେ ମଧ୍ୟ ସେୟା କହିବେ । ସେ ସବୁର ଆବଶ୍ୟକତା ନାହିଁ । ତୁମେ ମୋତେ ଗ୍ୟାସ ଔଷଧ ଦେଇସାରି ବମ୍ବେ ଚାଲିଯାଅ । ପୂର୍ବରୁ ମଧ୍ୟ ବହୁବାର ଏଇଭଳି ତାଙ୍କର ଗ୍ୟାସ ହୁଏ ଓ ତାଙ୍କ ପାଖରେ ଥିବା ଔଷଧ ଖାଇ ସେ ସୁସ୍ଥ ହୁଅନ୍ତି । ତେଣୁ ଗ୍ୟାସ ଔଷଧ ଆଣି ତାଙ୍କୁ ଦେଲି ।

ପରଦିନ ସଅାଳ ଆଠଟା ବେଳେ ଗୀତାଞ୍ଜଳିଙ୍କ ସହିତ ଭୁବନେଶ୍ୱରରୁ ବିମାନ ଯୋଗେ ବମ୍ବେ ଯାଇ ଆମେ ଦୁହେଁ ପୂର୍ବାହ୍ନ ୧୧ଟା ସୁଦ୍ଧା ଟାଟା କ୍ୟାନସର ହସ୍ପିଟାଲରେ ପହଞ୍ଚିଲୁ । ଦେଖିଲୁ ସ୍ୱର୍ଣ୍ଣଲତାଙ୍କ କ୍ୟାବିନ୍ ଖାଲି ପଡ଼ିଛି । ସେଠି କେହି ନାହାନ୍ତି । ଆଶ୍ଚର୍ଯ୍ୟ ଲାଗିଲା । ଏମାନେ ଗଲେ କୁଆଡ଼େ ? ଭୁବନେଶ୍ୱରରୁ ସଢ଼ୁ ରାଜେନ୍ଦ୍ର ସହିତ କଥା ହୋଇଥିଲି । ଆମେ ଦୁହେଁ ପ୍ରାୟ ପାଞ୍ଚମିନିଟ କାଳ ଅପେକ୍ଷା କରିବା ଭିତରେ ସ୍ୱର୍ଣ୍ଣଲତାଙ୍କୁ ଚଳନ୍ତି ଷ୍ଟ୍ରେଚରରେ ଶୁଆଇ ଆଇ.ସି.ୟୁ. କର୍ମଚାରୀମାନେ କ୍ୟାବିନ୍‌କୁ ଆଣି ଆସିଲେ ।

ଆମ ଦୁହିଁଙ୍କୁ ଦେଖି ସେ ଏତେ ଖୁସି ହୋଇଗଲେ ଯେ, ସାଙ୍ଗେ ସାଙ୍ଗେ ଉଠି ବସି ପଡ଼ିଲେ । ତାଙ୍କୁ ବେଶ୍ ଭଲ ଲାଗୁଥିଲା । ତାଙ୍କର ଏ ଅବସ୍ଥା ଦେଖି ମୁଁ ଈଶ୍ୱରଙ୍କୁ ଧନ୍ୟବାଦ ଦେଉଥିଲି । ସେ କହିଲେ ତୁମକୁ ଦେଖି ମୋତେ ଖୁବ୍ ଭଲ ଲାଗୁଛି । ବସିବାକୁ ମନ ହେଉଛି । ବଡ଼ ଭଉଣୀ ସ୍ନେହଲତାଙ୍କ ବିଷୟରେ ଅନେକ କଥା ସେ ପଚାରିଲେ । କହିଲି, ତାଙ୍କରି ଯୋଗୁଁ ଆଜି ଆସିବାକୁ ବାଧ୍ୟ ହେଲି । ଉତ୍କଳଦିବସ ପାଳନ କରି ତାପରଦିନ ଆସିଥିଲେ ହୋଇଥାନ୍ତା । ସେ କହିଲେ, ତୁମମାନଙ୍କୁ ଦେଖି ମୋର ରୋଗ ଉପଶମ ହେଲା ପରି ଲାଗୁଛି । ତୁମେ ଏଠି କିଛି ଦିନ ରହିଲେ ମୋ ଦେହ ଅନେକଟା ଭଲ ଆଡ଼କୁ ଆସିବ । ଏ କଥା ଶୁଣି କହିଲି ତୁମ ମନକଥା ଜାଣି ତୁମ ଭଉଣୀଏଠିକି ଆସିବାକୁ ମୋତେ ବାଧ୍ୟ କଲେ । ସେ ସବୁବେଳେ ତୁମ କଥା ଭାବି ହେଉଛନ୍ତି ।' ବଡ଼ ଭଉଣୀର ସ୍ନେହ ଶ୍ରଦ୍ଧା କଥା ଭାବି ସ୍ୱର୍ଣ୍ଣଲତାଙ୍କ ଆଖିରୁ ଲୁହ ବୋହି ଆସିଲା ।

କଥାର ମୋଡ଼ ବଦଳାଇ ମୁଁ ଓ ଗୀତାଞ୍ଜଳି ଅନ୍ୟ ସବୁ ପାରିବାରିକ ପ୍ରସଙ୍ଗ ଆଲୋଚନା କରି ବସିଲୁ । ଆମେ ଦୁହେଁ ପାଖରେ ବସିଲା ବେଳେ ସ୍ୱର୍ଣ୍ଣଲତା ରୋଗ ବୈରାଗ କଥା ପ୍ରାୟତଃ ଭୁଲି ଯାଉଥିଲେ । ୩୦ ତାରିଖ ଦିନଟା ଏପରି ଗପସପରେ କଟିଗଲା । ପରଦିନ ପୁଣି ତାଙ୍କ ପାଖରେ ବସି ଗପସପ କରୁକରୁ ଦିନଟା କେତେବେଳେ ସରି ଆସିଲା ଜାଣି ହେଉନଥାଏ । ସନ୍ଧ୍ୟା ହୋଇ ଆସୁଥାଏ । ମୋବାଇଲ୍ ବାଜି ଉଠିବା ମାତ୍ରେ ମୁଁ କ୍ୟାବିନ୍ ବାହାରକୁ ଚାଲି ଆସିଲି । କଟକରୁ ବୋହୂ ମୋତେ କହିଲା, ଆପଣ ଶୀଘ୍ର ଘରକୁ ଫେରି ଆସନ୍ତୁ । ତା କଥା ଶୁଣି ବିରକ୍ତ ଲାଗିଲା । କହିଲି, କାଲିଆସି ପହଞ୍ଚି ମାତ୍ର ଗୋଟିଏ ଦିନ ନ ଯାଉଣୁ ଫେରିଯିବାକୁ କାହିଁକି କହୁଛୁ ? ସେ କହିଲା, ବୋଉଙ୍କ ଦେହ ଖରାପ ହୋଇଯାଇଛି । ତାଙ୍କୁ ଆମେ ମେଡ଼ିକାଲ ନେଇ ଯାଉଛୁ। ଆପଣ ଯେତେ ଶୀଘ୍ର ପାରନ୍ତି ଫେରି ଆସନ୍ତୁ । ଏକଥା ଶୁଣି ମନଟା ଚଞ୍ଚଳ ହୋଇ ଉଠିଲା । ଏସବୁ ବିଷୟରେ ରୋଗ ଶଯ୍ୟାରେ ଥିବା ସ୍ୱର୍ଣ୍ଣଲତାଙ୍କୁ କିଛି କହିବାର ନୁହେଁ । ଗୀତାଙ୍କୁ ହାତଠାରି ବାହାରକୁ ଆସିବାକୁ ଡାକିଲି । ସବୁ କଥା ଶୁଣି ସେ କହିଲେ, ଚାଲ କାଲି ସକାଳ ଫ୍ଲାଇଟରେ କଟକ ଫେରିଯିବା ।

ମନକୁ ମୋର ପାପ ଛୁଇଁଲା । ବମ୍ବେ ଆସିଲା ପୂର୍ବରୁ ଶ୍ରୀମତୀଙ୍କୁ ଗ୍ୟାସ ଔଷଧ ଦେଇ ଆସିଥିଲି । ଏମିତି ଅଧିକାଂଶ ଦିନ ତାଙ୍କର ଗ୍ୟାସ ହୁଏ ଓ ସେ ଔଷଧ ଖାଆନ୍ତି । ଡାକ୍ତରଙ୍କୁ ଭେଟି ସ୍ୱାସ୍ଥ୍ୟ ପରୀକ୍ଷା କରିବାକୁ ସେ ଆଦୌ ରାଜି ହୁଅନ୍ତି ନାହିଁ । ଆଜି ପୁଣି ଏପରି କଅଣ ହେଲା ଯେ, ତାଙ୍କୁ ଡାକ୍ତରଖାନା ନେବାକୁ ପଡ଼ିଲା ? ଅଧିକାଂଶ କ୍ଷେତ୍ରରେ ହୃଦ୍‌ଘାତ ହେବା ବେଳକୁ ଗ୍ୟାସ ହେବା ପରି ଲାଗେ । କାଳେ ସେପରି ହୋଇଥିବ

କି ? କଥାଟା ଭଲକରି ବୁଝିବାକୁ ସାଙ୍ଗେ ସାଙ୍ଗେ ଘରକୁ ଫୋନ୍ କଲି । ମାତ୍ର ଘର ଫୋନ୍‌ଟା ବ୍ୟସ୍ତ ଅଛି । ଏତିକିବେଳେ ଗୀତାଞ୍ଜଳିଙ୍କ ପାଖକୁ ଯୁକ୍ତରାଷ୍ଟ୍ର ଆମେରିକାରୁ ଝିଆରି ଫୋନ୍ କଲା । କ୍ୟାବିନ୍ ବାହାରକୁ ଯାଇ ସେ କଥା ହେଲେ । କିଛି ସମୟ ବିତିଯିବା ସତ୍ତ୍ୱେ ସେ ଆଉ ଫେରିଲେ ନାହିଁ । ତାଙ୍କୁ ଖୋଜିବାକୁ ଯାଇ ଦେଖିଲି, ସେ କାନ୍ଥକୁ ଆଉଜି କାନ୍ଦୁଛନ୍ତି । ମୁଁ ତାଙ୍କ ପାଖକୁ ଯାଇ କାରଣ ବୁଝିବାକୁ ପଚାରିବା ମାତ୍ରେ ସେ ମୋ ହାତ ଧରି ପାଖରେ ଥିବା ଚୌକୀ ପାଖକୁ ମୋତେ ଟାଣି ନେଇ କମ୍ପିତ କଣ୍ଠରେ କହିଲେ, ଦେଈ ଦେହ ଭଲ ନାହିଁ । ତାଙ୍କୁ ଡାକ୍ତରଖାନା ନେଇଛନ୍ତି । ଚାଲ କାଲି ସକାଳେ କଟକ ଫେରିଯିବା । ବୁଝିଗଲି ଯେ, ଘଟଣାଟା ସେତିକିରେ ସୀମିତ ନୁହେଁ । ହୁଏତ ମୋର ସବୁକିଛି ସରିଯାଇଛି । ଛାତି ଥରାଇ ଗୋଟାଏ ଦୀର୍ଘଶ୍ୱାସ ବାହାରିଗଲା । ଅମାନିଆଁ ଆଖି ଦୁଇଟାରୁ ବୁନ୍ଦା ବୁନ୍ଦା ଲୁହ ଝରି ଆସିଲା । ମୁଣ୍ଡଟା କେମିତି ବୁଲେଇ ଦେବା ପରି ଲାଗୁଥାଏ । ସତରେ କ'ଣ ସ୍ନେହଲତା ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି ? ମୋ ଫେରିବା ବାଟକୁ ସେ କ'ଣ ଚାହିଁ ରହିନାହାନ୍ତି ? କାଲି ଘରକୁ ଫେରି ତାଙ୍କ ସହିତ କ'ଣ ଦୁଇପଦ କଥା ହୋଇ ପାରିବିନି ?

ଗୀତାଞ୍ଜଳି ମୋତେ ହଲାଇ ଦେଇ କହିଲେ, "ତୁମେ ଏମିତି କ'ଣ ହେଉଛ ? କିଛି ନ ବୁଝି ନ ଶୁଝି ଧୈର୍ଯ୍ୟ ହରାଇବାକୁ ଯାଉଛ । କହିଲି, ତୁମେ ବି ତ କାନ୍ଦୁଥିଲ ? ସେ କହିଲେ, ଆମେ ସ୍ତ୍ରୀଲୋକ । ଆମ ସହିତ ତୁମେ କାହିଁକି ସମାନ ହେଉଛ ? ଏବେ ଆମେ ଯେଉଁ କ୍ୟାନସର୍ ପୀଡ଼ିତା ରୋଗୀଟି ପାଖକୁ ଆସିଛେ ସେ ଯଦି ଆମକୁ ଏପରି ଅବସ୍ଥାରେ ଦେଖେ, ତାହେଲେ ତା ଅବସ୍ଥା କଅଣ ହେବ ? ଏବେଚାଲ ତା ପାଖରେ ବସିବା । ସେ ଯେମିତି ଏସବୁ କିଛି ନ ଜାଣେ, ସେଥିପ୍ରତି ସଜାଗ ରହିବାକୁ ହେବ । କହିଲି, ତୁମେ ଯାଅ । ମୁଁ ଟିକେ ଛାଡ଼ି ଯାଉଛି । ଗୀତାଞ୍ଜଳି କହିଲେ, ତୁମକୁ ଛାଡ଼ି ମୁଁ ଯିବି ନାହିଁ । ଚାଲ ତା ପାଖରେ ବସିବା । ଏତେ ବେଳ ଯାଏ ତାକୁ ଛାଡ଼ି ବାହାରେ ରହିଲେ ତା ମନରେ ସନ୍ଦେହ ହେବ ।

ଦୁହେଁ ଯାଇ ସ୍ୱର୍ଣ୍ଣଲତାଙ୍କ ପାଖରେ ବସିଲୁ । ସେ ପଚାରିଲେ, କାହାଠାରୁ ଫେନ୍ ପାଇ ଦୁହେଁ ଉଠିଗଲ ? ଗୀତାଞ୍ଜଳି କହିଲେ କଟକରୁ ଫୋନ୍ ଆସିଥିଲା । ଦେଈର ପ୍ରବଳ ଗ୍ୟାସ ହୋଇ ତାଙ୍କୁ ଡାକ୍ତରଖାନା ନିଆଯାଇଛି । ସ୍ୱର୍ଣ୍ଣ କହିଲେ, ଆହା, ତାର ବି ପୁଣି ଏପରି ଅବସ୍ଥା ହେଲା ? ତାହେଲେ କାଲି ସକାଳୁ ବୁଢ଼ାଭାଇ ଚାଲିଯାଆନ୍ତୁ । ଗୀତା କହିଲେ, ମୁଁ ଆଉ କାହିଁକି ରହିବି ? ତାଙ୍କ ସାଙ୍ଗରେ ଆସିଥିଲି । ସାଙ୍ଗ ହୋଇ ଫେରିଯିବୁ । ତୋ ଦେହ ତ ଭଲ ଲାଗୁଛି, ତେଣେ ଦେଈର ଅବସ୍ଥା କଅଣ ହେଲା, ଟିକେ ବୁଝିବାକୁ ହେବ । ସ୍ୱର୍ଣ୍ଣଲତା ତାଙ୍କ ପୁଅକୁ ଡାକି ଆମ ପାଇଁ କାଲି ସକାଳ ଭୁବନେଶ୍ୱର ଫ୍ଲାଇଟ୍‌ରେ ଦୁଇଟା ଟିକେଟ କରିବାକୁ କହିଦେଲେ ।

ସେଇ କାଳ ରାତିଟା କେମିତି ପାହିବ ମୁଁ ଭାବି ପାରୁ ନଥିଲି । ମନ ହେଉଥିଲା ଏଇ ରାତି ଭିତେର ବମ୍ବେରୁ ଯାଇ କଟକ ପହଞ୍ଚିଯିବାକୁ । ସ୍ୱର୍ଣଲତାଙ୍କ ଘରେ ତାଙ୍କ ପୁଅ ପିଙ୍କୁ ଓ ଆମେରିକାରୁ ଆସି ସଦ୍ୟ ପହଞ୍ଚିଥିବା ତାଙ୍କର ଦୁଇ ଝିଅ ନବନୀତା (ଲିଚି) ଓ ମଧୁମିତା (ମାମୁନି) ମୋତେ ସ୍ନେହଲତାଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ଅନେକ ପ୍ରଶ୍ନ ପଚାରି ବସିଲେ । ଲିଚି କହିଲା, ଆମେରିକାରୁ ତା ସ୍ୱାମୀ ଅଶୋକ ଫୋନ୍ କରି କହିଲେ ଯେ, ବଡ଼ମାଉସୀ ସନ୍ଧ୍ୟା ଦେବା ପାଇଁ ଠାକୁର ଘରକୁ ଯିବା ପରେ ଦୀପ ଲଗାଇ ସାରି ଆଉ ଠିଆ ହୋଇ ପାରିଲେ ନାହିଁ । ତାଙ୍କୁ କଟକ ମେଡ଼ିକାଲକୁ ନେଇ ଯାଇଛନ୍ତି । ମାମୁନି କହିଲା, ତାକୁ ଆଇ.ସି.ୟୁ.ରେ ରଖିଥିବେ । ତୁମେ ହୁଏତ ବିମାନଘାଟୀରୁ ସିଧା କଟକ ବଡ଼ ଡାକ୍ତରଖାନାକୁ ଚାଲିଯିବ । ପିଙ୍କୁ ପଚାରିଲା, ବଡ଼ମାଉସୀ କାହିଁକି ଦିନ ଥାଇ ସଞ୍ଜ ଦିଏ ? ଗୀତାଞ୍ଜଳି କହିଲେ, ସେ ଜଣେ ଶିବ ଉପାସକ । ତା ମତରେ ସନ୍ଧ୍ୟା ହେବା ପୂର୍ବରୁ ମହାଦେବ କୈଳାସ ପର୍ବତକୁ ଚାଲିଯାଆନ୍ତି । ତେଣୁ ସନ୍ଧ୍ୟା ପୂର୍ବରୁ ସେ ସଞ୍ଜ ଦିଏ ।

ଏସବୁକଥା ମୋ କାନରେ ବାଜୁଥାଏ । ସେମାନେ ହୁଏତ ସଠିକ୍ ଖବରଟା ମୋତେ ଲୁଚାଇବାକୁ ଏସବୁ ଆଲୋଚନା କରି ରାତିଟା କଟାଇ ଦେବାକୁ ଚେଷ୍ଟା କରୁଥାନ୍ତି । ହେଲେ, ମୁଁ ଭାବୁଥାଏ କେମିତି ଏ କାଳରାତି ପାହିଯାଇ ସକାଳ ହେବ । ମୁଁ ଯାଇ ସ୍ନେହଲତାଙ୍କୁ ଦେଖି ପାରିବି । ସତରେ କ'ଣ ସେ ଆଉ ନାହାନ୍ତି ?

ସୂର୍ଯ୍ୟାସ୍ତ ପୂର୍ବରୁ ସେ ଠାକୁର ଘରକୁ ଯାଇ ସନ୍ଧ୍ୟା ଦିଅନ୍ତି । ସେଥିପାଇଁ ତାଙ୍କୁ ଆମେ ଥଟ୍ଟା କରୁ । ତାଙ୍କର ଦୃଢ଼ ବିଶ୍ୱାସ ଯେ ସନ୍ଧ୍ୟା ପରେ ଦେବ ଦେବ ମହାଦେବ ତାଙ୍କ ନିବାସ ସ୍ଥଳ କୈଳାସ ପୁରୀକୁ ଚାଲିଯାଆନ୍ତି । ତେଣୁ ରୁଦ୍ରାଭିଷେକ ବା ଶିବ ବରଣ ଆଦି ପୂଜା ରାତ୍ରିକାଳରେ ହୁଏ ନାହିଁ । ଆମ ପାଖ ପଡ଼ିଶା, ବନ୍ଧୁବାନ୍ଧବ ବା ତାଙ୍କର ସାଙ୍ଗସାଥୀମାନେ ଏଥିପାଇଁ ବେଳେ ବେଳେ ସ୍ନେହଲତାଙ୍କୁ ଥଟ୍ଟା କରନ୍ତି । ତଥାପି ସେ କାହା କଥାକୁ ଖାତିର କରନ୍ତି ନାହିଁ । କେବେ କେମିତି ମୋତେ ସେ କୈଳାସ ପର୍ବତ ବିଷୟରେ ପଚାରନ୍ତି । ଭାରତବର୍ଷର ଉତ୍ତର ସୀମାରେ ଘେରି ରହିଥିବା ବିଶାଳ ହିମାଳୟ ପାର୍ବତମାଳାର ୨୮ଟି ଶୃଙ୍ଗ ମଧ୍ୟରୁ କୈଳାସ ପର୍ବତ ଅନ୍ୟତମ । ତନ୍ମଧ୍ୟରୁ ଏଭରେଷ୍ଟ, କାଞ୍ଚନଜଙ୍ଘା, ନନ୍ଦାଦେବୀ, କୃଷ୍ଣ ପର୍ବତ, ଶ୍ୱେତ ପର୍ବତ, ନଙ୍ଗାପର୍ବତ, ଅନ୍ନପୂର୍ଣ୍ଣା, ମତ୍ସ୍ୟପୁଚ୍ଛ ଆଦି ମୁଖ୍ୟ ଶୃଙ୍ଗ ଗୁଡ଼ିକ ଜଣାଶୁଣା । ପୃଥିବୀର ସର୍ବୋଚ୍ଚ ଶୃଙ୍ଗ ଏଭରେଷ୍ଟର ଉଚ୍ଚତା ୨୯୦୨୯ ଫୁଟ ହୋଇଥିବା ସ୍ଥଳେ କୈଳାସ ଶୃଙ୍ଗର ଉଚ୍ଚତା ୨୧୭୭୮ ଫୁଟ । ହିମାଳୟ ପାର୍ବତମାଳାର ସମସ୍ତ ୨୮ଟି ଶୃଙ୍ଗ ମଧ୍ୟରୁ କୈଳାସ ସବୁଠାରୁ ସାନ । ତେବେ ଶାସ୍ତ୍ର ପୁରାଣ ବା ହିନ୍ଦୁ ଧର୍ମ ମତାନୁସାରେ କୈଳାସ ପର୍ବତ ହେଉଛି ଦେବଭୂମି ଯେଉଁଠି

ପ୍ରଭୁ ଶିବ ଓ ମାଆ ପାର୍ବତୀ ସେମାନଙ୍କର ଅନୁଚରମାନଙ୍କ ସହିତ ରହିଛନ୍ତି । ତାଙ୍କ ଦର୍ଶନ ଲାଗି ସ୍ୱର୍ଗର ଦେବାଦେବୀ ମାନଙ୍କ ସହିତ ଋଷିମୁନି ଓ ଚତୁର୍ଦ୍ଦଶ ଭୁବନରୁ ଶିବଭକ୍ତମାନେ ଆସିଥାନ୍ତି । ସ୍ନେହଲତାଙ୍କ ଇଚ୍ଛା ଥିଲା, କୈଳାସ ର୍ପବତ ଦର୍ଶନ କରିବାକୁ । ତାଙ୍କୁ କହିଥିଲି ଆଜି ପର୍ଯ୍ୟନ୍ତ କୈଳାସ ପର୍ବତ ଦର୍ଶନାର୍ଥେ କେହି ଯିବା କଥା ମୁଁ ଶୁଣିନାହିଁ । ଏପରି ସ୍ଥଳେ ସେ ବିଷୟରେ ଚିନ୍ତା କରିବା ଅମୂଳକ । ତଥାପି କୈଳାସ ପର୍ବତ ବିଷୟକ ଅନେକ ପ୍ରଶ୍ନ ସେ କରନ୍ତି । ମାତ୍ର ଏସବୁର କୌଣସି ବିଜ୍ଞାନସମ୍ମତ ଭିତ୍ତିଭୂମି ନ ଥିବା ଯୋଗୁଁ ଏସବୁ ପ୍ରଶ୍ନର ଉତ୍ତର ମୋ ପାଖେ ନଥାଏ। ସବୁ କଥା ଚଳଚ୍ଚିତ୍ରର ବିଭିନ୍ନ ଦୃଶ୍ୟାବଳି ପରି ରାତି ସାରା ମୋ ମନର ପରଦା ଉପରେ ଭାସି ଉଠୁଥାଏ । ହୁଏତ ମୋ ଅଜାଣତରେ ସେ କୈଳାସ ପର୍ବତ ଦର୍ଶନରେ ଚାଲିଯିବା ଅସମ୍ଭବ ନୁହେଁ । ଯଦି ସେଇଆ ହୋଇଥିବ, ତାହେଲେ ମୋ ସାଂସାରିକ ଜୀବନର ଏଇଠି ଅନ୍ତ ହେଲା । ରାତି ପାହିବା ମାତ୍ରେ ପିଙ୍କୁକୁ ଡାକି ଆମର କଟକ ଫେରିବା ପାଇଁ ବ୍ୟବସ୍ଥା କରିବାକୁ କହିଲି । ସେ ମଧ୍ୟ ରାତିରେ ଭଲ କରି ଶୋଇ ନଥାଏ ।

ବିମାନଯାତ୍ରା ସମୟର ଅନେକ ଆଗରୁ ମୁଁ ଓ ଗୀତାଞ୍ଜଳି ବିମାନଘାଟୀରେ ପହଞ୍ଚିଗଲୁ । ମଧ୍ୟାହ୍ନ ବାରଟା ସୁଦ୍ଧା ଆମେ ଭୁବନେଶ୍ୱର ପହଞ୍ଚି ଘରେ ପାଦ ଦେଲା ବେଳକୁ ଛାତିଟା କେମିତି ଥରି ଉଠୁଥାଏ । ସେତେବେଳେ ଆମେ ବନ୍ଧୁବାନ୍ଧବମାନଙ୍କର ଗହଳି । ସ୍ନେହଲତାଙ୍କ ପାଖକୁ ଯାଇ ଦେଖିଲି, ଫ୍ରିଜର ଭିତରେ ସେ ମହାନିଦ୍ରାରେ ଶୋଇ ଯାଇଛନ୍ତି । ତାଙ୍କୁ ଟିକେ କୋଳେଇ ନେବା ପାଇଁ ଇଚ୍ଛା ହେଉଥିଲେ ମଧ୍ୟ ଫ୍ରିଜର ଖୋଲିବା ପାଇଁ ସମସ୍ତେ ବାରଣ କଲେ । କାଲି ପୁଣି ଏତିକି ବେଳ ପର୍ଯ୍ୟନ୍ତ ସେଇଠି ସେ ଶୋଇ ରହିବେ । ମୋ ପୁଅ ଓ ଝିଅ ଯୁକ୍ତରାଷ୍ଟ୍ର ଆମେରିକାରୁ ଆସି ପହଞ୍ଚିବାକୁ ଆଉ ଚବିଶି ଘଣ୍ଟା ଲାଗିବ । ସେମାନେ ଆସି ତାଙ୍କ ମାଆର କ୍ରିୟାକର୍ମ କରିବେ ।

ସ୍ୱାମୀ-ସ୍ତ୍ରୀର ସମ୍ପର୍କ ଏତେ ଶୀଘ୍ର ତୁଟିଯିବ ବୋଲି ଆଶା କରିନଥିଲି । ଫ୍ରିଜର ଭିତରେ ଶୋଇ ଯାଇଥିବା ସ୍ନେହଲତାଙ୍କ ମୁହଁକୁ ମୁଁ ଚାହୁଁଥିଲି । ସତେ ଯେପରି ଏଇ କେତେ ମିନିଟ ହେଲା ସେ ଶୋଇ ପଡ଼ିଛନ୍ତି । ମୁହଁ ତାଙ୍କର ବେଶ୍ ସତେଜ ଦିଶୁଥାଏ । ମୋତେ ବମ୍ବେ ପଠାଇବା ପୂର୍ବରୁ ସାନ ଭଉଣୀର ସ୍ୱାସ୍ଥ୍ୟ ବିଷୟରେ ସେ ଯେଭଳି ବ୍ୟସ୍ତ ବିବ୍ରତ ହୋଇ ପଡୁଥିଲେ ତାଙ୍କ ମୁହଁରେ ଆଉ ସେସବୁର ଚିହ୍ନବର୍ଣ୍ଣ ନାହିଁ । ସାମାନ୍ୟ ଗରମ ସେ ସହି ପାରୁନଥିଲେ । ଏବେ ଫ୍ରିଜର ଭିତରେ ସେ ଖୁବ୍ ଶାନ୍ତିରେ ଶୋଇ ଯାଇଛନ୍ତି । ତାଙ୍କର ଆଉ ଘରଦ୍ୱାର ପୁଅଝିଅ, ନାତିନାତୁଣୀ ବା ବନ୍ଧୁବାନ୍ଧବଙ୍କ ଚିନ୍ତା ନାହିଁ । ଆଜି ପର୍ଯ୍ୟନ୍ତ ପରିବାରର ଦାୟିତ୍ୱ ତାଙ୍କ ଉପରେ ଥିଲା । ସବୁ ଆଡ଼କୁ ତାଙ୍କର ଦୃଷ୍ଟି ଥିଲା । କିଏ ଆସିଲା, କିଏ ଗଲା, ଯୁକ୍ତରାଷ୍ଟ୍ର ଆମେରିକାରେ ପୁଅ ଓ ଝିଅ କିପରି

ଅଛନ୍ତି, ସେଠାରେ ନାତିନାତୁଣୀମାନଙ୍କର ପାଠପଢ଼ା, ଜନ୍ମଦିନ ଓ ସ୍ୱାସ୍ଥ୍ୟ ଆଦି ବିଷୟରେ ଟିକିନିଖି ଖବର ରଖିବାକୁ ସେ ଚାହାନ୍ତି । ପ୍ରତି ସପ୍ତାହର ଶନିବାର ଓ ରବିବାର ଦୁଇଦିନ ଆମେରିକାରେ ଥିବା ଝିଅ, ପୁଅ, ପୁତୁରା ଓ ଝିଆରୀମାନଙ୍କ ସହିତ ଘଣ୍ଟା ଘଣ୍ଟା ଧରି ଦୂରଭାଷରେ ସେ କଥା ହୁଅନ୍ତି । ଏତେ ସମୟ ଧରି ସେମାନଙ୍କ ସହିତ ଗପ କରିବାକୁ ମୁଁ ବିରୋଧ କରେ । ହେଲେ, ସେ ମୋ କଥାକୁ ଖାତିର କରନ୍ତି ନାହିଁ । କହନ୍ତି, ପିଲାଙ୍କଠାରୁ ମୋର କିଛି ପାଇବାର ନାହିଁ । ମାତ୍ର ତାଙ୍କ ସହିତ କଥା ହୋଇ ମୁଁ ଅନୁଭବ କରୁଛି ଯେ ସେମାନେ ମୋ ପାଖରେ ଅଛନ୍ତି । ତାଙ୍କ ବିଷୟରେ ସବୁ କଥା ମୁଁ ଜାଣିପାରୁଛି ।

ସାନପୁଅ ଗୋପାଳ ଆମ ଘରେ ଗୋଟିଏ ସ୍କାଇବ ଆଣି ଦେଇଥିଲା । ସ୍କାଇବ ସହିତ କମ୍ପ୍ୟୁଟର ଲଗାଇ ପ୍ରତି ଶନିବାର ପୂର୍ବାହ୍ନ ଦଶଟା ସୁଦ୍ଧା ଆମେ୍ ବସିଯାଉ । ଆମେରିକାରେ ପୁଅର ପରିବାର ସେହି ସ୍କାଇବ୍ ପାଖରେ ବସିପଡ଼ି ଆମ ସହିତ କଥା ହୁଅନ୍ତି । ସେମାନେ ଆମକୁ ଦେଖନ୍ତି ଓ ଆମେ ସେମାନଙ୍କୁ ଦେଖିପାରୁ । ସ୍ନେହଲତାଙ୍କର ସେଦିନ ବେଶ୍ ଆନନ୍ଦ । ପୁଅବୋହୂ ଓ ଦୁଇ ନାତିଙ୍କୁ ପାଖରେ ପାଇବା ପରି ତାଙ୍କୁ ଲାଗେ । ହେଲେ ଆଜି ସମସ୍ତେ ତାଙ୍କୁ ଘେରି ରହିଥିବା ବେଳେ କାହା ସହିତ ସେ କଥା ହୋଇ ପାରୁନାହାନ୍ତି । ମହାନିଦ୍ରାରେ ଶୋଇ ପଡ଼ିଛନ୍ତି ସେ ।

ମହାଯାତ୍ରାର ସମୟ ଆସିଗଲା । ତାଙ୍କୁ ଫ୍ରିଜର ଭିତରୁ ଆଣି ଉଷ୍ମ ଜଳରେ ଶରୀରଟା ପୋଛି ଦେଇସାରି ତାଙ୍କର କେଶ ବିନ୍ୟାସ କରାଗଲା । ଶାଢ଼ୀ ଓ ଶଙ୍ଖା ପିନ୍ଧାଇ ସାରି ତାଙ୍କ ସିନ୍ଥିରେ ସିନ୍ଦୂର ଦେବା ପାଇଁ ମୋତେ ଡକାଗଲା । ମୁଁ ତାଙ୍କ ମୁହଁକୁ ଚାହିଁଲି । ସେତିକି ଥିଲା ତାଙ୍କର ଶେଷ ଅଭିଳାଷ । ବିବାହ ସମୟରେ ଯେଉଁ ଶଙ୍ଖା ସିନ୍ଦୂର ପିନ୍ଧି ସେ ଏ ଘରକୁ ଆସିଥିଲେ ଆଜି ସେଇ ବେଶରେ ସଜ୍ଜିତ ହୋଇ ସେ କୈଳାସ ଯାତ୍ରା କରିବେ । ଶିବଲୋକକୁ ଯିବା ପୂର୍ବରୁ ତାଙ୍କର ନଶ୍ୱର ଦେହଟାକୁ ଏଇଠି ତ୍ୟାଗ କରିବାକୁ ପଡ଼ିବ । ତା'ପୂର୍ବରୁ ମୋ ସହିତ ତାଙ୍କର ଏଇଟା ଶେଷ ସାକ୍ଷାତ । ବନ୍ଧୁବାନ୍ଧବ ଓ ପାଖ ପଡ଼ିଶାଙ୍କ ଭିଡ଼ ଭିତରେ ମୋର ଭାବାବେଗକୁ ସମ୍ଭାଳି ନେବାକୁ ହେଲା । ଖଇ କଉଡ଼ି ଓ ପଇସା ବିଞ୍ଚି ବିଞ୍ଚି ତାଙ୍କ ଶବାଧାର ଆଗେ ଆଗେ ମୁଁ ଚାଲିଥିଲି । କିଛି ବାଟ ଯିବା ପରେ ମୋର କେତେଜଣ ସମ୍ପର୍କୀୟ ମୋତେ ଅଟକାଇ ଘରକୁ ଫେରି ଯିବାକୁ କହିଲେ । ମୋ ବଡ଼ପୁଅ ବିଭୂତି ଖଇ କଉଡ଼ି ବିଞ୍ଚିବା କାର୍ଯ୍ୟ ସମ୍ଭାଳି ନେଲା । ତା ସହିତ ମୁଁ ଯିବାକୁ ଚାହୁଁଥିଲି ମାତ୍ରେ ସେମାନେ କହିଲେ, ଏଣିକି ଯାହା ସବୁ କାମ ବାକି ରହିଲା, ସେସବୁ ଆପଣ ଦେଖି ପାରିବେ ନାହିଁ । ଫେରି ଯାଆନ୍ତୁ ।

# ଶେଷ କଥା

ମଣିଷ ଜୀବନରେ ବହୁ ଅନୁଭୂତି । କଥା କହୁଥିଲେ ସରିବନି । ଶେଷରେ ସବୁଠାରୁ ସ୍ମରଣୀୟ ଘଟଣା କେବଳ ମୋ ଜୀବନରେ କାହିଁକି, ସମଗ୍ର ଓଡ଼ିଆ ଜାତି ଇତିହାସରେ ଘଟିଗଲା । ଓଡ଼ିଆ ବୋଲି ଲୋକେ ନିଜକୁ ନ୍ୟୁନ ଭାବୁଥିଲେ । ଅନ୍ୟ ଜାତିର ଲୋକେ ଆମ ମାତୃଭାଷାକୁ ଏକ ଉପଭାଷା ବୋଲି ଇଂରେଜ ପ୍ରଶାସକମାନଙ୍କୁ ଦର୍ଶାଇଥିଲେ । ମାତ୍ର ସ୍ୱାଧୀନତା ପରେ ସବୁ ଭାରତୀୟ ଭାଷା ମାନଙ୍କ ମଧ୍ୟରେ ଓଡ଼ିଆ ଭାଷା ଏ ଦେଶର ଅନ୍ୟତମ ମୁଖ୍ୟଭାଷା ଭାବେ ସାମ୍ବିଧାନିକ ମାନ୍ୟତା ପାଇଲା । ଓଡ଼ିଶା ପ୍ରଦେଶ ଗଠନର ପ୍ରାୟ ଆଠ ଦଶନ୍ଧି ପରେ ୨୦୧୪ ମସିହା ଫେବୃୟାରୀ ୨୦ ତାରିଖରେ କେନ୍ଦ୍ର ସରକାର ଆମ ମାତୃଭାଷା "ଓଡ଼ିଆ"କୁ ସଂସ୍କୃତ ପରେ ଦ୍ୱିତୀୟ ଆର୍ଯ୍ୟ ଭାଷା ଭାବେ ଶାସ୍ତ୍ରୀୟ ମାନ୍ୟତା ଦେଲେ । ଏଥି ପୂର୍ବରୁ ତାମିଲ, ତେଲୁଗୁ, କନ୍ନଡ଼ ଓ ମାଲୟାଲମ୍ ଆଦି ଚାରିଗୋଟି ଦ୍ରାବିଡ଼ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଥିଲା । ତାପରେ ପୁରାତନ ଆର୍ଯ୍ୟ ଭାଷା ଭାବେ ସଂସ୍କୃତ ଭାଷାକୁ ଏହି ମାନ୍ୟତା ମିଳିଲା । ଏହା ପରେ ଓଡ଼ିଆ ହେଲା ପୃଥିବୀର ଛଅକୋଟି ଲୋକଙ୍କର ମାତୃଭାଷା ଯାହାକି ଦେଶର ଅନ୍ୟ ସମସ୍ତ ଭାଷା ତୁଳନାରେ ବହୁ ପୁରାତନ ଆର୍ଯ୍ୟ ଭାଷାର ମାନ୍ୟତା ପାଇଲା । ଯେଉଁମାନେ ଆମ ଭାଷାକୁ ନ୍ୟୁନ ବୋଲି ଭାବୁଥିଲେ ସେମାନଙ୍କ ମୁହଁ କଳା ପଡ଼ିଗଲା । ଦେଶର ଯେଉଁ ସବୁ ସ୍ଥାନରେ ଓଡ଼ିଆମାନେ ଅଛନ୍ତି, ସେମାନେ ନିଜ ମାତୃଭାଷା ଓ ଜାତିକୁ ନେଇ ଗର୍ବ କରିବାର ବେଳ ଆସିଗଲା । ଏଥିଲାଗି ଯେଉଁମାନେ ଉଦ୍ୟମ କରିଥିଲେ, ସେମାନେ ହେଲେ, ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ, ଡାକ୍ତର ଦେବୀ ପ୍ରସନ୍ନ ପଟ୍ଟନାୟକ, ଅନ୍ତର୍ଯ୍ୟାମୀ ମିଶ୍ର, ଯତୀନ୍ଦ୍ର ନାୟକ, କୈଳାଶ ଚନ୍ଦ୍ର ଟୀକାୟତ ରାୟ ପ୍ରମୁଖ । ଓଡ଼ିଆ ଭାଷା ଇତିହାସରେ ସେମାନଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ଏଥିପୂର୍ବରୁ ୧୯୫୮ ମସିହାରେ ଓଡ଼ିଶୀ ନୃତ୍ୟ ପାଇଥିଲା ଶାସ୍ତ୍ରୀୟ ମାନ୍ୟତା । ଏଥିଲାଗି ଉଦ୍ୟମ କରିଥିଲେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ । ସର୍ବଭାରତୀୟ ସ୍ତରରେ ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟ ଭାବେ ପ୍ରତିପାଦିତ କରିବା ଲାଗି କାଳୀବାବୁଙ୍କ ଐକାନ୍ତିକ ଉଦ୍ୟମ ବିଷୟରେ ସାଧାରଣ ଲୋକେ ଭୁଲିଗଲେଣି । ଏବେ ବାକି ରହିଛି "ଓଡ଼ିଶୀ ସଙ୍ଗୀତ" । ଯେଉଁ ସଙ୍ଗୀତର ତାଳେ ତାଳେ ମନୋମୁଗ୍ଧକର ଆକର୍ଷଣୀୟ ଓଡ଼ିଶୀ ନୃତ୍ୟ ପରିବେଷିତ ହୁଏ, ସେହି ସଙ୍ଗୀତକୁ ଶାସ୍ତ୍ରୀୟ ମାନ୍ୟତା ଦେବା ପାଇଁ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ମଧ୍ୟ ଚେଷ୍ଟା କରିଥିଲେ । ମାତ୍ର ଆମରି କେତେକ ଓଡ଼ିଆ ଲୋକ ତାଙ୍କର ସ୍ୱପ୍ନକୁ ସାକାର କରିବାକୁ ଦେଲେ ନାହିଁ ।

ସେଭଳି ଜାତିଦ୍ରୋହୀ ବା ଭାଷାଦ୍ରୋହୀ ଲୋକଙ୍କ ସଂଖ୍ୟା ଆମ ରାଜ୍ୟରେ କିଛି କମ୍ ନୁହେଁ । ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଥିଲେ ମଧ୍ୟ ଆମ ଲୋକମାନଙ୍କ

ଉପରେ ଏହାର ପ୍ରଭାବ ଆଦୌ ନାହିଁ । ଆମ ଲୋକେ ଇଂରାଜୀ ବା ହିନ୍ଦି ପଛରେ ଧାଇଁଛନ୍ତି । କାରଣ ଓଡ଼ିଆ ଭାଷା ଏକ ରୋଜଗାରକ୍ଷମ ଭାଷା ନୁହେଁ । ସେଥିଲାଗି ଅଧିକାଂଶ ଲୋକ ସେମାନଙ୍କ ପିଲାମାନଙ୍କୁ ଓଡ଼ିଆ ବିଦ୍ୟାଳୟରେ ନପଢ଼ାଇ ଇଂରାଜୀ ମାଧ୍ୟମ ଶିକ୍ଷାଦାନର ବ୍ୟବସ୍ଥା କରୁଛନ୍ତି । ଇଂରାଜି ମାଧ୍ୟମ ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ପଢ଼ାଇବାର ସରକାରୀ ନିର୍ଦ୍ଦେଶ ଥିଲେ ମଧ୍ୟ ଓଡ଼ିଆ ପିଲାମାନେ ମାତୃଭାଷା ଓଡ଼ିଆ ବଦଳରେ ସଂସ୍କୃତ ବା ଇଂରାଜୀ ପଢ଼ି ଅଧିକ ନମ୍ବର ରଖିବାକୁ ଚେଷ୍ଟା କରୁଛନ୍ତି । କାରଣ ଓଡ଼ିଆ ପରୀକ୍ଷକ ମାନେ କମ୍ ନମ୍ବର ଦେବାର ଭୟ ରହିଛି । ତେଣୁ ଓଡ଼ିଆ ଜ୍ଞାନ ନ ଥିବା ଯୋଗୁଁ ଆଜିର ଯୁବଗୋଷ୍ଠୀ ଓଡ଼ିଆ ବଦଳରେ ହିନ୍ଦି ବା ଇଂରାଜିରେ କଥା ହେବାକୁ ଶ୍ରେୟ ମଣୁଛନ୍ତି । ଓଡ଼ିଆରେ କଥା ହେଲା ବେଳେ ମଧ୍ୟ ମଝିରେ ମଝିରେ ଇଂରାଜି ଓ ହିନ୍ଦି ଶବ୍ଦମାନ କହିବାକୁ ସେମାନେ ବାଧ୍ୟ ହେଉଛନ୍ତି । ଆଜିକାଲି ଓଡ଼ିଆ କହି ନ ପାରିବା ଏକ ଖାନ୍‌ଦାନୀର ସୂଚନା ଦେଉଛି ।

୧୯୫୪ ମସିହାଠାରୁ ଓଡ଼ିଆ ଭାଷାକୁ ସରକାରୀ ଭାଷା ଭାବେ ମାନ୍ୟତା ଦିଆଯାଇଥିଲେ ମଧ୍ୟ ରାଜ୍ୟ ସରକାର ଏଥିପ୍ରତି ଗୁରୁତ୍ୱ ଦେଉନାହାନ୍ତି । କେବଳ ଲୋକବାଦରୁ ରକ୍ଷା ପାଇବା ପାଇଁ ପ୍ରତି ପାଞ୍ଚ ସାତବର୍ଷ ବ୍ୟବଧାନରେ ଓଡ଼ିଆକୁ ସରକାରୀ ଭାଷା କରିବାର ଆଦେଶନାମା ମଝିରେ ମଝିରେ ଜାରୀ କରିଦେଇ ସରକାର ଏହା ବିପକ୍ଷରେ କାର୍ଯ୍ୟ କରୁଛନ୍ତି । ଯଦି ରାଜ୍ୟ ସରକାର ଆନ୍ତରିକତା ସହକାରେ ଏହି ନିୟମ ପାଳନ କରିବାକୁ ତତ୍ପର ହୁଅନ୍ତେ ତେବେ ମାତ୍ର ଏକ ସପ୍ତାହ ଭିତରେ ପ୍ରତ୍ୟେକ ସରକାରୀ କର୍ମଚାରୀ ଓଡ଼ିଆରେ ନଥିପତ୍ର ଓ ଚିଠିଲେଖିବାରେ ସଫଳକାମ ହୋଇ ପାରନ୍ତେ । ଫଳରେ ଓଡ଼ିଆ ମାଧ୍ୟମରେ ଶିକ୍ଷା ପାଇଥିବା ଯୁବଗୋଷ୍ଠୀଙ୍କ ପାଇଁ ସରକାରୀ ଚାକିରି ସହଜ ଲଭ୍ୟ ହୋଇ ପାରନ୍ତା ଏବଂ ଓଡ଼ଆ ମାଧ୍ୟମରେ ଶିକ୍ଷା ପାଇବାର ଆଗ୍ରହ ବୃଦ୍ଧି ପାଆନ୍ତା । ମାତ୍ର ସରକାରଙ୍କ ଆନ୍ତରିକତା ବା ନିଷ୍ଠାର ଅଭାବ ହେତୁ ଉତ୍କଳ ସମ୍ମିଳନୀ ପକ୍ଷରୁ ସମସ୍ତ ଆନ୍ଦୋଳନାତ୍ମକ ପଦକ୍ଷେପ ନିଷ୍ଫଳ ହେଉଛି ।

ଓଡ଼ିଶାର ସରକାରୀ କାର୍ଯ୍ୟାଳୟମାନଙ୍କରେ କାର୍ଯ୍ୟ କରୁଥିବା ଲକ୍ଷ ଲକ୍ଷ ଓଡ଼ିଆ ଲୋକ ଓଡ଼ିଆ ଭାଷାକୁ ସରକାରୀ କାର୍ଯ୍ୟରେ ବ୍ୟବହାର କରିବାକୁ ବିରୋଧ କରନ୍ତି । ସେମାନେ ପ୍ରାୟ ସମସ୍ତେ ଓଡ଼ିଆ ପରିବର୍ତ୍ତେ ଇଂରାଜୀ ଭାଷାର ସପକ୍ଷବାଦୀ। ସେମାନେ ନିଜ ଘରେ ବାହାରେ ଓ କାର୍ଯ୍ୟାଳୟରେ ପରସ୍ପର ସହିତ ଓଡ଼ିଆ ଭାଷାରେ କଥା ହେଉଥିବା ସ୍ଥଳେ ନଥିପତ୍ରରେ ଓଡ଼ିଆ ନ ଲେଖିବା ଅତ୍ୟନ୍ତ ଆଶ୍ଚର୍ଯ୍ୟ କଥା ।

ଓଡ଼ିଶାର ଶିକ୍ଷିତ ଲୋକ ନିଜ ମାତୃଭାଷା ପ୍ରତି ବିଦ୍ୱେଷ ଭାବ ପ୍ରଦର୍ଶନ କରୁଥିବା ସ୍ଥଳେ ବିଛିନ୍ନାଞ୍ଚଳର ଓଡ଼ିଆମାନେ ଓଡ଼ିଆ ଭାଷାର ସୁରକ୍ଷା ଲାଗି ବିକଳ ହେଉଛନ୍ତି । ତେଣୁ ଉତ୍କଳ ସମ୍ମିଳନୀ ପକ୍ଷରୁ ବିଛିନ୍ନାଞ୍ଚଳରେ ଏ ଦିଗରେ କାର୍ଯ୍ୟ କରିବା ପାଇଁ ପଦକ୍ଷେପ ନିଆଯାଇଛି । ମାତ୍ର ଓଡ଼ିଶାର ଭୌଗୋଳିକ ପରିସୀମା ମଧ୍ୟରେ ମାତୃଭାଷା ଓଡ଼ିଆ ପାଇଁ କିଛି କରିବା ଆଦୌ ସହଜସାଧ୍ୟ ହେଉନାହିଁ ।

୧୯୯୮ ମସିହାରେ ପ୍ରଥମ କରି ଝାଡ଼ଖଣ୍ଡ ପରିଦର୍ଶନ କରିବା ପରେ ସେଠାକାର ଓଡ଼ିଆମାନଙ୍କୁ ମାତୃଭାଷା ଓଡ଼ିଆର ସୁରକ୍ଷା ଦିଗରେ ସାହାଯ୍ୟ କରିବାକୁ ମୁଁ ଉଦ୍ୟମ ଆରମ୍ଭ କରିଥିଲି । ସେତେବେଳେ ଝାଡ଼ଖଣ୍ଡ ରାଜ୍ୟ ସୃଷ୍ଟି ହୋଇ ନଥିଲା । ବିହାର ସରକାରଙ୍କ ଓଡ଼ିଆ ବିଦ୍ୱେଷ ନୀତି ଯୋଗୁଁ ସିଂହଭୂମି ଓ ଷଢେଇକଳା-ଖରସୁଆଁର ଓଡ଼ିଆମାନେ ଅତ୍ୟନ୍ତ ଅସହାୟ ହୋଇପଡ଼ିଥିଲେ । ୧୯୫୦ ମସିହା ପୂର୍ବରୁ ସେ ଅଞ୍ଚଳରେ ଥିବା ପ୍ରାୟ ତିନିଶହ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟକୁ ବିହାର ସରକାର ହିନ୍ଦି ବିଦ୍ୟାଳୟରେ ପରିଣତ କରି ଦେଇଥିଲେ । ଅବଶ୍ୟ ବିହାରୀ ଦୌରାତ୍ମ୍ୟ ଆରମ୍ଭ ହେବାର ବହୁ ପୂର୍ବରୁ ସିଂହଭୂମି ଅଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷା ଲାଗି କାର୍ଯ୍ୟ ଚାଲିଥିଲା । ଉତ୍କଳମଣି ଗୋପବନ୍ଧୁ ଦାଶ ଅବିଭକ୍ତ ସିଂହଭୂମି ଜିଲ୍ଲାରେ ଓଡ଼ିଆ ଭାଷା ପ୍ରସାରଣ ଲାଗି କାର୍ଯ୍ୟ ଆରମ୍ଭ କରିଥିଲେ । ତାଙ୍କର ବହୁ ଜ୍ଞାନୀଗୁଣୀ ଶିଷ୍ୟ ସେତେବେଳେ ଏହି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରୁଥିଲେ । ସେମାନଙ୍କ ମଧ୍ୟରୁ ଶ୍ରୀ ତାରାପଦ ଷଡ଼ଙ୍ଗୀ, କାହ୍ନୁ କିଶୋର ପାଣି, ଈଶ୍ୱରଚନ୍ଦ୍ର ହୋତା, କମଳ କୃଷ୍ଣ ପ୍ରଧାନ, କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଗତିକୃଷ୍ଣ ଷଡ଼ଙ୍ଗୀ ଓ ସୁରେନ୍ଦ୍ର ଚନ୍ଦ୍ର ଷଡଙ୍ଗୀ ଆଦି ବ୍ୟକ୍ତିମାନଙ୍କର ନାମ ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ ପିଢ଼ୀରେ ଶ୍ରୀ ରୁଦ୍ର ପ୍ରତାପ ଷଡ଼ଙ୍ଗୀ, ଡାଃ ବିଶ୍ୱନାଥ କର, ଘନିରାମ ହାଁସଦା, ବିଜୟ କୁମାର ପାଣି, ଅଙ୍କୁରା ହୋ ଏବଂ ମୁକୁନ୍ଦରାମ ତନ୍ତୀ ଆଦି ଓଡ଼ିଆ ନେତାମାନେ ବିହାରୀ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଉତ୍କଳମଣିଙ୍କ ପରେ ଓଡ଼ିଶାରୁ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ପ୍ରଚାରକ ଅନନ୍ତ ମିଶ୍ର ଦୁହେଁ ସିଂହଭୂମି ଓ ଷଢେଇକଳା ଖରସୁଆଁ ଅଞ୍ଚଳରେ ଓଡ଼ିଆ ଶିକ୍ଷା ପ୍ରସାର ଲାଗି କାର୍ଯ୍ୟ କରିବା ସତ୍ତ୍ୱେ ବିହାର ସରକାର ୧୯୫୦ ମସିହାଠାରୁ ଷଢେଇକଳା ଓ ଖରସୁଆଁ ରାଜ୍ୟ ଦୁଇଟିକୁ ମାଡ଼ିବସି ଓଡ଼ିଆ ମାରଣ ନୀତି ଚଳାଇବା ଫଳରେ ଓଡ଼ିଆ ଲୋକେ ହିନ୍ଦୀ ପଢ଼ିବାକୁ ବାଧ୍ୟ ହେଲେ ଓ ସରକାରୀ ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସେମାନଙ୍କ ପକ୍ଷରେ ଦୁରୂହ ବ୍ୟାପାର ଥିଲା ।

ସେଠାକାର ଓଡ଼ିଆମାନଙ୍କ ମୁହଁରୁ ମାତୃଭାଷା ଓଡ଼ିଆକୁ ଜବରଦସ୍ତ ଛଡ଼ାଇ ନେଇ ସେମାନଙ୍କ ଉପରେ ହିନ୍ଦି ଭାଷାକୁ ଲଦି ଦେବାର ପ୍ରଚେଷ୍ଟା ବିହାରୀମାନଙ୍କ ପକ୍ଷରୁ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ଧରି ଚାଲିଲା । ୧୯୯୮ ମସିହାରୁ ଉତ୍କଳ ସମ୍ମିଳନୀ ପକ୍ଷରୁ ମୁଁ ସେଠାରେ କାର୍ଯ୍ୟ କରିବା ଫଳରେ ବହୁ ବାଧାବିଘ୍ନ ସତ୍ତ୍ୱେ ଓଡ଼ିଆ ଭାଷାର ପ୍ରସାରଣ କାର୍ଯ୍ୟ ଆଗେଇ ଚାଲିଛି । ଏବେ ସେଠାକାର ଓଡ଼ିଆମାନେ ନିଜକୁ ସୁରକ୍ଷିତ ମନେ କରୁଛନ୍ତି । ଉତ୍କଳ ସମ୍ମିଳନୀ ସହିତ ମିଶି ସେମାନେ ଦୃଢ଼ ଦାବୀ କରିବା ଫଳରେ ଝାଡ଼ଖଣ୍ଡରେ ଓଡ଼ିଆ ଭାଷା ପାଇଛି ଦ୍ୱିତୀୟ ରାଜଭାଷାର ମର୍ଯ୍ୟାଦା ।

ଝାଡ଼ଖଣ୍ଡରେ କାର୍ଯ୍ୟ କରିବା ପାଇଁ ମୋତେ ଯେଉଁମାନେ ସାହାଯ୍ୟ କରିଛନ୍ତି ସେମାନଙ୍କ ମଧ୍ୟରେ ବାହାଡ଼ାଗୋଡ଼ାର ଡାକ୍ତର ଦିନେଶ କୁମାର ଷଡ଼ଙ୍ଗୀ, ଜାମସେଦପୁରର ରବୀନ୍ଦ୍ର କୁମାର ମିଶ୍ର, ଅଧିବକ୍ତା ରବୀନ୍ଦ୍ରନାଥ ଶତପଥୀ, କାଶୀନାଥ ଗୌଡ଼, ତାରାଚାନ୍ଦ

ମହାନ୍ତି, ଚକ୍ରଧରପୁରର ସରୋଜ କୁମାର ପ୍ରଧାନ, ରବୀନ୍ଦ୍ର କୁମାର ଷଡ଼ଙ୍ଗୀ, ପ୍ରବୋଧ କୁମାର ମିଶ୍ର, ଖଇରପାଳର ୰ଜଗଦୀଶ ମହାପାତ୍ର; ଷଢେିକଳାର ଶ୍ରୀ ହଳଧର ଦାସ, କାର୍ତ୍ତିକ ଚନ୍ଦ୍ର ପରିଛା ଓ ଖରସୁଆଁର ଶ୍ରୀ ସୁମନ୍ତ ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କର ଅକୁଣ୍ଠ ସାହାଯ୍ୟ ପାଇ ମୁଁ ଝାଡ଼ଖଣ୍ଡରେ ଓଡ଼ିଆ ଶିକ୍ଷା ପ୍ରସାର କାର୍ଯ୍ୟ କରିଥିଲି ଓ ଏବେ ମଧ୍ୟ ସେହି କାର୍ଯ୍ୟ କ୍ରମଶଃ ବିସ୍ତାର ଲାଭ କରୁଛି ।

ଝାଡ଼ଖଣ୍ଡରେ ମୁଁ ୧୯୯୮ଠାରୁ ପାଞ୍ଚବର୍ଷ କାର୍ଯ୍ୟ କରିବା ପରେ ମେଦିନୀପୁରରେ ଓଡ଼ିଆ ଶିକ୍ଷା ପ୍ରସାର କରିବାକୁ ଚିନ୍ତା କଲି । ତତ୍‌କାଳୀନ କେନ୍ଦ୍ର ସଭାପତି ବସନ୍ତ କୁମାର ପାଣିଗ୍ରାହୀ ଏ ଦିଗରେ ମୋତେ ନିରୁତ୍ସାହିତ କରିଥିଲେ ମଧ୍ୟ ମୁଁ ବାରିପଦା ଯାଇ ମୟୂରଭଞ୍ଜର ଉତ୍କଳ ସମ୍ମିଳନୀ ଜିଲା ସଭାପତି ଅଧ୍ୟାପକ ଦୀପକ କୁମାର ଷଡ଼ଙ୍ଗୀଙ୍କର ସାହାଯ୍ୟ ପାଇଁ ଅନୁରୋଧ କଲି । ମେଦିନୀପୁରରେ ଓଡ଼ିଆମାନେ ବଙ୍ଗଳା ଭାଷାକୁ ମାତୃଭାଷା ରୂପେ ଗ୍ରହଣ କରି ନେଇଥିବା ଦୃଷ୍ଟେ ସେମାନଙ୍କର ସହଯୋଗ ମିଳିବା କଷ୍ଟକର ହେବ ବୋଲି ଦୀପକ ବାବୁଙ୍କର ମଧ୍ୟ ଧାରଣା ଥିଲା । ମାତ୍ର ବାରିପଦାର ଅନ୍ୟତମ ବାସିନ୍ଦା ଶ୍ରୀ ସରୋଜ କୁମାର ମହାନ୍ତିଙ୍କ ପୈତୃକ ଘର ପଶ୍ଚିମ ମେଦିନୀପୁର ଜିଲ୍ଲାର ପଣ୍ଡାଛେଆଁଠାରେ ଥିବାରୁ ତାଙ୍କ ଗ୍ରାମ ପାଖାପାଖି ଅଞ୍ଚଳରେ ଓଡ଼ିଆ ଚାଟଶାଳି ପରୀକ୍ଷାମୂଳକ ଭାବେ ଖୋଲି ଦେଖିବାକୁ ମୋର ଅନୁରୋଧ ସେ ଏଡ଼ାଇ ପାରିଲେ ନାହିଁ । ଏଥିଲାଗି ଆବଶ୍ୟକ ଅର୍ଥ ମୁଁ ଝାଡ଼ଖଣ୍ଡ ପାଇଁ ମିଳିଥିବା ଟଙ୍କାରୁ ଖର୍ଚ୍ଚ କରିବାକୁ ନିଷ୍ପତ୍ତି ନେଲି । କାରଣ ପଶ୍ଚିମବଙ୍ଗ ପାଇଁ ଉଦ୍ଦିଷ୍ଟ ଅର୍ଥକୁ ବସନ୍ତବାବୁ କଲିକତାର ପ୍ରବାସୀ ଓଡ଼ିଆ ସ୍କୁଲମାନଙ୍କରେ ଖର୍ଚ୍ଚ କରୁଥିଲେ । ସରୋଜବାବୁଙ୍କ ସାନଭାଇ ଶିଶିର କୁମାର ମହାନ୍ତି ଓ ତାଙ୍କର ବନ୍ଧୁ ପ୍ରଭାସ ଚନ୍ଦ୍ର ମହନ୍ତଙ୍କ ସାହାଯ୍ୟରେ ସେଠାରେ ଓଡ଼ିଆ ଚାଟଶାଳୀ ସ୍ଥାପନ ଦିଗରେ କାର୍ଯ୍ୟ ଆରମ୍ଭ ହେଲା ଓ ବହୁ ବାଧାବିଘ୍ନ ସତ୍ତ୍ୱେ ଦୁଇବର୍ଷ ଭିତରେ ଏହି କାର୍ଯ୍ୟ ପଶ୍ଚିମ ମେଦିନୀପୁରର ପାଞ୍ଚଟି ବ୍ଲକ୍‌କୁ ପ୍ରସାରିତ ହେଲା । ଇତି ମଧ୍ୟରେ ଏହି କାର୍ଯ୍ୟ ଆଠଟି ବ୍ଲକକୁ ପ୍ରସାରିତ ହୋଇ ଦେଢ଼ଶହରୁ ଉର୍ଦ୍ଧ୍ୱ ଓଡ଼ିଆ ଚାଟଶାଳି ଖୋଲାଯାଇ ପ୍ରାୟ ପାଞ୍ଚ ହଜାର ପିଲାଙ୍କୁ ଓଡ଼ିଆ ଶିକ୍ଷା ଦିଆଯାଉଛି । ଏଥିଲାଗି ମୁଁ ବାରିପଦାର ଶ୍ରୀ ଦୀପକ କୁମାର ଷଡ଼ଙ୍ଗୀ, ୰ସରୋଜ କୁମାର ମହାନ୍ତି, ପଣ୍ଡାଛେଆଁର ଶିଶିର କୁମାର ମହାନ୍ତି, ପ୍ରଭାସ ଚନ୍ଦ୍ର ମହାନ୍ତ ଓ ଦାନ୍ତୁଣର ଶ୍ରୀ ସୁବାଷଚନ୍ଦ୍ର ବେରାଙ୍କୁ ଧନ୍ୟବାଦ ଜଣାଉଛି । ସେମାନଙ୍କ ସାହାଯ୍ୟ ବିନା ମେଦିନୀପୁରୀ ଓଡ଼ିଆମାନଙ୍କୁ ମାତୃଭାଷା ଓଡ଼ିଆ ବିଷୟରେ ସଚେତନ କରାଯାଇ ପାରିନଥାନ୍ତା ।

ଚକ୍ରଧରପୁରଠାରେ ଥିବା ଏକ ପୁରାତନ ଓଡ଼ିଆ ବିଦ୍ୟାଳୟର ବାର୍ଷିକ ଉତ୍ସବକୁ ତତ୍‌କାଳୀନ ଗଣଶିକ୍ଷାମନ୍ତ୍ରୀ ସୁରେନ୍ଦ୍ର ନାଥ ନାୟକଙ୍କୁନେଇ ଆମେରିକାରୁ ସାହାଯ୍ୟ ଆଣି ଓଡ଼ିଆ ଚାଟଶାଳୀ ଖୋଲୁଥିବା କଥା ନ ଜଣାଇଥିଲେ ସେ ଏଥିଲାଗି ସରକାରୀ ଅନୁଦାନ ଦେବା ପାଇଁ ପ୍ରଭାବିତ ହୋଇ ନଥାନ୍ତେ । ତାଙ୍କ ଯୋଗୁଁ ଏକକାଳୀନ ପଚାଶ ଲକ୍ଷ ଟଙ୍କା

ଓଡ଼ିଆ ଶିକ୍ଷା ପ୍ରସାରଣ ଲାଗି ମିଳିଲା ଓ ସେଇ ଟାଙ୍କାକୁ ଝାଡ଼ଖଣ୍ଡ, ଛତିଶଗଡ଼, ଆନ୍ଧ୍ର ଓ ପଶ୍ଚିମବଙ୍ଗରେ ଥିବା ଓଡ଼ିଆ ବିଚ୍ଛିନ୍ନାଞ୍ଚଳ ମାନଙ୍କରେ ଓଡ଼ିଆ ଶିକ୍ଷା ଦେବାପାଇଁ ଆବଣ୍ଟନ କରି ମୁଁ କାର୍ଯ୍ୟ ଆରମ୍ଭ କରିଥିଲି । ଫଳରେ ଦୀର୍ଘ ଚଉଦବର୍ଷ ଧରି ଏ ଦିଗରେ କାର୍ଯ୍ୟ ଚାଲିଛି ଏବଂ ଉକ୍ତ ଚାରି ରାଜ୍ୟରେ ଏବେ ପ୍ରାୟ ପଚାଶ ହଜାର ଓଡ଼ିଆ ଛାତ୍ରଛାତ୍ରୀ ମାତୃଭାଷା ଓଡ଼ିଆ ପଢ଼ିବାର ସୁଯୋଗ ପାଉଛନ୍ତି । କ୍ରମଶଃ ଏହି କାର୍ଯ୍ୟ ବଢ଼ି ଚାଲିଛି । ଓଡ଼ିଶା ବିଧାନସଭା ପକ୍ଷରୁ ଏ ବିଷୟରେ ଦୃଢ଼ ପଦକ୍ଷେପ ନିଆଗଲାଣି । ଝାଡ଼ଖଣ୍ଡ, ଛତିଶଗଡ଼, ଆନ୍ଧ୍ର ଓ ପଶ୍ଚିମବଙ୍ଗରେ ଥିବା ବିଚ୍ଛିନ୍ନାଞ୍ଚଳ ମାନଙ୍କ ପାଇଁ ଅଲଗା ଅଲଗା ଗୃହ କମିଟି ମାନ ଗଠିତ ହୋଇଛି । ଏହି କମିଟି ସଂପୃକ୍ତ ଅଞ୍ଚଳ ସବୁ ଗସ୍ତକରି ଓଡ଼ିଆ ଶିକ୍ଷା ପ୍ରସାର କାର୍ଯ୍ୟ ତନଖି ଦେଖୁଛନ୍ତି । ସଂପୃକ୍ତ ରାଜ୍ୟ ସରକାରଙ୍କର ଶିକ୍ଷାମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବା ସଚିବମାନଙ୍କ ସହିତ ଆଲୋଚନା କରି ଏ ଦିଗରେ ଅଭାବ ଅସୁବିଧା ଦୂର କରିବାକୁ ପ୍ରୟାସ କରୁଛନ୍ତି । ସେସବୁ ରାଜ୍ୟକୁ ଲାଗି ଓଡ଼ିଶାର ଉପାନ୍ତ ଜିଲ୍ଲା ଗୁଡ଼ିକର ଶିକ୍ଷାମଣ୍ଡଳାଧୀଶ, ଜିଲ୍ଲା ଶିକ୍ଷା ଅଧିକାରୀ ଓ ସେହି ବିଭାଗର କର୍ମଚାରୀମାନଙ୍କୁ ମଧ୍ୟ ଏ କାର୍ଯ୍ୟରେ ସାହାଯ୍ୟ କରିବା·ପାଇଁ ସରକାରୀ ନିର୍ଦ୍ଦେଶ ଜାରି ହେଲାଣି ।

ଯେତେଦିନ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀ ପକ୍ଷରୁ ଏହି କାର୍ଯ୍ୟ ଠିକ୍ ଭାବେ ଚାଲିଥିବ, ସେ ପର୍ଯ୍ୟନ୍ତ ଏହାର ପ୍ରସାରଣ ବଢ଼ି ବଢ଼ି ଚାଲିବ । ତେଣୁ ଉତ୍କଳ ସମ୍ମିଳନୀ ପରି ଏକ ଗଣତାନ୍ତ୍ରିକ ଅନୁଷ୍ଠାନ ଦାୟୀତ୍ୱରେ ଭବିଷ୍ୟତରେ ଯେଉଁମାନେ ରହିବେ ସେମାନଙ୍କ ଉପରେ ଏହାର ଉନ୍ନତି ନିର୍ଭର କରିବ । କର୍ତ୍ତବ୍ୟନିଷ୍ଠ, ସାଧୁ ଓ ସଚ୍ଚୋଟ ପ୍ରକୃତିର ଲୋକମାନେ ଏହି ଅନୁଷ୍ଠାନକୁ ନେତୃତ୍ୱ ଦେଲେ ବିଚ୍ଛିନ୍ନାଞ୍ଚଳରେ ଶିକ୍ଷା ପ୍ରସାର କାର୍ଯ୍ୟ ଠିକ୍ ଭାବେ ଆଗେଇ ଚାଲିବ । ମାତ୍ର ସାମାନ୍ୟ ସ୍ୱାର୍ଥ ଲାଗି ଏଥିରୁ ଲାଭ ଉଠାଇବାକୁ ବସିଲେ ଅନୁଷ୍ଠାନର କ୍ଷତି ହେବା ସହିତ ଏହି ପବିତ୍ର କାର୍ଯ୍ୟରେ ବାଧା ସୃଷ୍ଟି ହେବା ନିଶ୍ଚିତ । ହେଲେ, ଏହି କାର୍ଯ୍ୟ ଯେତେ ଲୋକପ୍ରିୟ ହୋଇଗଲାଣି ଏ ଦିଗରେ ରାଜ୍ୟ ସରକାରଙ୍କ ପକ୍ଷରୁ ତତ୍ପରତା ଜାରୀ ରହିବ ବୋଲି ଆଶା କରାଯାଏ ।

୧୯୯୬ ମସିହା ଅକ୍ଟୋବର ଶେଷରେ ସରକାରୀ କାର୍ଯ୍ୟରୁ ଅବସର ନେବା ପରେ ଅଣ ସରକାରୀ ସୂତ୍ରରୁ ଆକର୍ଷଣୀୟ ପଦବୀରେ ପୁନଃ ସଂସ୍ଥାନ ପାଇଁ ସୁଯୋଗ ପାଇଥିଲେ ମଧ୍ୟ ସେ ଆଡ଼େ ଦୃଷ୍ଟି ନ ଦେଇ ଉତ୍କଳ ସମ୍ମିଳନୀ ପାଇଁ କାର୍ଯ୍ୟ କରିବାକୁ ମୁଁ ଯେଉଁ ନିଷ୍ପତ୍ତି ନେଇଥିଲି ତାହା ଈଶ୍ୱରଙ୍କର ଏକ ଆଶୀର୍ବାଦ ବୋଲି ମୁଁ ଅନୁଭବ କରେ । ତଦ୍ୱାରା ଓଡ଼ିଆ ଜାତି ପାଇଁ କିଛି କରିବାର ସୌଭାଗ୍ୟ ମୁଁ ପାଇପାରିଲି । ବିଚ୍ଛିନ୍ନାଞ୍ଚଳରେ ନିଜ ମାତୃଭାଷା ସହିତ ସ୍ୱାଭିମାନ ହରାଇବା ଭୟରେ ଦୁଃଖ କାତର ଓଡ଼ିଆ ଭାଇ ଭଉଣୀମାନଙ୍କୁ ସାହାଯ୍ୟ ସହଯୋଗର ହାତ ବଢ଼ାଇବାର ସୌଭାଗ୍ୟ ସମସ୍ତଙ୍କ ଭାଗ୍ୟରେ ଯୁଟେ ନାହିଁ । ଯେତେବେଳେ ଉତ୍କଳ ସମ୍ମିଳନୀ ପକ୍ଷରୁ ବିଚ୍ଛିନ୍ନାଞ୍ଚଳ ପାଇଁ କୌଣସି କାର୍ଯ୍ୟକ୍ରମ ନ ଥିଲା, ସେତେବେଳେ ପ୍ରଥମେ ଝାଡ଼ଖଣ୍ଡର ଓଡ଼ିଆ ଗାଁମାନଙ୍କରେ ବୁଲି

ବୁଲି ଓଡ଼ିଆ ଚାଟଶାଳି ଖୋଲିବାର ପ୍ରଚେଷ୍ଟା କରାଯିବା କଷ୍ଟସାଧ୍ୟ ହେଲେ ହେଁ ମୋ ପକ୍ଷରେ ଏକ ଆହ୍ୱାନ ଥିଲା । ସେଥିଲାଗି ଯୁକ୍ତରାଷ୍ଟ୍ର ଆମେରିକାକୁ ଯାଇ ସେଠାରେ ସାତଟି ଉତ୍କଳ ସମ୍ମିଳନୀ ଶାଖା ପ୍ରତିଷ୍ଠା କରିବା ପରେ ସେମାନଙ୍କ ଠାରୁ ଆର୍ଥିକ ସହଯୋଗ ପାଇ ବିଚ୍ଛିନ୍ନାଞ୍ଚଳ ଶିକ୍ଷା ପ୍ରସାର କାର୍ଯ୍ୟ ଆରମ୍ଭ ହୋଇଥିଲା । ଫଳରେ ଆଜି ଝାଡ଼ଖଣ୍ଡ, ଛତିଶଗଡ଼, ଆନ୍ଧ୍ର ଓ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାରେ ଏହି କାର୍ଯ୍ୟ ଆଗେଇ ଚାଲିଛି । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତିର ସୁରକ୍ଷା ସାଙ୍ଗକୁ ଓଡ଼ିଶାର ସୀମା ସୁରକ୍ଷା ଦିଗରେ ମଧ୍ୟ ଉତ୍କଳ ସମ୍ମିଳନୀ ସ୍ୱର ଉତ୍ତୋଳନ କରୁଛି । ଓଡ଼ିଶା ରାଜ୍ୟର ପରିସୀମା ଅତିକ୍ରମ କରି ଏବେ ପଡ଼ୋଶୀ ରାଜ୍ୟ ମାନଙ୍କରେ ଏହାର ଶାଖା ମାନ ପ୍ରତିଷ୍ଠା କରିବା ସହିତ ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ାରେ କାୟା ବିସ୍ତାର କରି ଏହି ସମ୍ମିଳନୀ ଏକ ଆନ୍ତର୍ଜାତିକ ସଂଗଠନ ଭାବେ ପରିଚିତ ହୋଇଛି । ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ଓଡ଼ିଆ ପ୍ରେମୀମାନେ ଏହାର ସଭ୍ୟସଭ୍ୟା ହୋଇ ରହିଛନ୍ତି ।

ଆଜକୁ ଦୁଇଦଶନ୍ଧି ପୂର୍ବେ କେବଳ କଟକ, ବ୍ରହ୍ମପୁର ଓ ରାଉରକେଲା ସହରାଞ୍ଚଳରେ ଲୋକେ ଏହି ସଂଗଠନ ବିଷୟରେ ଜାଣିଥିଲେ । ଏହା ସହିତ ଉତ୍କଳ ଗୌରବ ମଧୁସୂଦନ ଓ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ସ୍ମୃତି ମଧ୍ୟ ବିଲୁପ୍ତ ପ୍ରାୟ ହୋଇଥିଲା । ଉତ୍କଳ ଦିବସ ଆଜି ଭଳି ଏକ ଜାତୀୟ ଦିବସ ଭାବେ ପାଳିତ ହେଉ ନଥିଲା । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକର ଇଦ୍‌ଗା ପଡ଼ିଆଠାରେ ହୋଇଥିବା ବିଷୟରେ କୌଣସି ସ୍ମୃତି ରଖାଯିବା ପ୍ରତି କାହାର ହେଲେ ଚିନ୍ତା ନ ଥିଲା । ବହୁ କଷ୍ଟରେ ଏବେ ସେହି ଐତିହାସିକ ସ୍ମୃତିର ସୁରକ୍ଷା ହେବାର ପ୍ରୟାସ ଜାରୀ ରହିଛି । ମୋ ଜୀବନର ଦୁଇ ଦଶନ୍ଧି କାଳ ଏହି କାର୍ଯ୍ୟରେ ବିନିଯୋଗ କରି ମାଆ ଉତ୍କଳ ଜନନୀଙ୍କର ଯତ୍ ସାମାନ୍ୟ ସେବା ସୌଭାଗ୍ୟ ମୁଁ ପାଇ ପାରିଛି । ସେଥିଲାଗି ମୁଁ ଈଶ୍ୱରଙ୍କୁ ଶତ ଧନ୍ୟବାଦ ଜ୍ଞାପନ କରୁଛି । ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଭାଷାରେ -

"ମାତୃଭୂମି ମାତୃଭାଷା ଉଭୟ ଜନନୀ
ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।"

ଏହି ଉକ୍ତିଟି ଯେ କେତେ ମାତ୍ରାରେ ମୋ ପକ୍ଷରେ କରଣୀୟ ହୋଇ ପାରିଛି, ଜାଣିନି । ତଥାପି ମାତୃଭୂମି ଉତ୍କଳର ଯେଉଁ ପବିତ୍ର ମାଟିରେ ମୁଁ ଜନ୍ମ ଗ୍ରହଣ କରି ତାର ପାଣି ପବନରେ ବଢ଼ି ଆସିଲି, ସେ ଋଣ ଏ ଜନ୍ମରେ ଶୁଝିବା ସମ୍ଭବପର ନୁହେଁ । ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ କୃପାରୁ ଏ ଜନ୍ମ ପରେ ଆଉ ଯଦି ଏ ପବିତ୍ର ମାଟିରେ ପୁଣି ମୁଁ ଜନ୍ମ ନେବାର ସୌଭାଗ୍ୟ ପାଏ, ତାହେଲେ ସେହି ମାଟି ମାଆର ସେବା କରି ହୁଏତ ଆଉ କିଛି ମାତୃଋଣ ଶୁଝି ପାରିବି । ସେତିକି କାମନା ।





ଆଳିପିଙ୍ଗଳ ଘରେ ପିତା ରାମଚନ୍ଦ୍ର, ମା' ପାଶୋରା ଦେବୀ, ବୋଉ ଅଧରମଣୀ
ପଛରେ ସ୍ତ୍ରୀ ସ୍ନେହଲତା, ଶାଳୀ ଗୀତାଞ୍ଜଳି, ଭାଉଜ ଲକ୍ଷ୍ମୀପ୍ରିୟା



ଝିଅ ଓ ପୁଅବୋହୂଙ୍କ ସହିତ ବାମରୁ ଜ୍ୱାଇଁ ବାଣୀପ୍ରସନ୍ନ, ଗୁରୁପ୍ରସାଦ, ପତ୍ନୀ ସ୍ନେହଲତା
ଝିଅ ଦେବଶ୍ରୀ, ପଛପଟରେ ସାନପୁଅ ଗୋପାଳ, ସାନବୋହୂ କୃଷ୍ଣା, ବଡ଼ ବୋହୂ ଶିବାନୀ
ବଡ଼ପୁଅ ବିଭୂତି



ଜନ୍ମଦାତ୍ରୀ ମା' ଉମାଦେବୀଙ୍କ ପାଖରେ ଗୁରୁପ୍ରସାଦ



ସାନପୁଅ ଗୋପାଳପ୍ରସାଦ, ଗୁରୁପ୍ରସାଦ, ନାତୁଣୀ ଶ୍ୱେତପଦ୍ମା, ସ୍ନେହଲତା (ସ୍ତ୍ରୀ)
ବଡ଼ପୁଅ ବିଭୂତି



୧୯୯୬ ମସିହା ସରସ୍ୱତୀ ପୂଜା ଦିନ ଆଲିପିଙ୍ଗଳରେ
ଇଷ୍ଟଦେବ ଶ୍ରୀ ଗୋପାଳଜୀଉଙ୍କ ମନ୍ଦିର ପ୍ରତିଷ୍ଠା ଉତ୍ସବରେ ପୁରୀ ଗଜପତି ମହାରାଜା ।
ଗୁରୁପ୍ରସାଦଙ୍କ ସାମନାରେ ଗୁରୁଦେବ ଅଦ୍ୱୈତପ୍ରସାଦ ମିଶ୍ର



ଓଡ଼ିଆବଜାରସ୍ଥ ନେତାଜୀ ଜନ୍ମସ୍ଥାନ ସଂଗ୍ରହାଳୟ ଟ୍ରଷ୍ଟରେ ଥିବା ନେତାଜୀଙ୍କ ପ୍ରଧାନ ଶିକ୍ଷକ
ନାରାୟଣ ପ୍ରସାଦ ମହାନ୍ତିଙ୍କ ତୈଳଚିତ୍ରରେ ମାଲ୍ୟାର୍ପଣ କରୁଛନ୍ତି ଯୋଗଗୁରୁ
ଆଚାର୍ଯ୍ୟ ରାମଦେବ । ପାଖରେ ନାରାୟଣଙ୍କ ନାତି ଗୁରୁପ୍ରସାଦ



ଆମେରିକାର ସାଉଥ୍
ଡାକୋଟା ବିଶ୍ୱବିଦ୍ୟାଳୟର
ବତୀଖୁଣ୍ଟ କାମ୍ପେନିଲେ
ପାଖରେ ଗୁରୁପ୍ରସାଦ



ଯୁକ୍ତରାଷ୍ଟ୍ର ଆମେରିକାର
ସାଉଥ୍ ଡାକୋଟାସ୍ଥ ଏକ
ଚର୍ଚ୍ଚରେ ବିବାହ ଉତ୍ସବରେ
ଯୋଗଦେଇଥିବବା
ଗୁରୁପ୍ରସାଦ



ଯୁକ୍ତରାଷ୍ଟ୍ର ଆମେରିକାର
ଆର୍କାନ୍‌ସା ରାଜ୍ୟର
ସିନେଟ୍ ବିଲ୍‌ଡ଼ିଂ ସାମନାରେ
ଗୁରୁପ୍ରସାଦ



ବଲାଙ୍ଗିର ଜିଲ୍ଲାର
ସଇଁତଲା ଦୁଗ୍‌ଧ କାରଖାନା
ଉଦ୍‌ଘାଟନ ଉତ୍ସବରେ
ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କ ସହିତ
ନିର୍ଦ୍ଦେଶକ ଗରୁପ୍ରସାଦ



ସାଉଥ ଡାକୋଟା ବିଶ୍ୱବିଦ୍ୟାଳୟର ଦୁଗ୍ଧ ବିଜ୍ଞାନ ବିଭାଗୀୟ ଦୁଗ୍ଧଜାତ ପଦାର୍ଥ
ପ୍ରସ୍ତୁତି କାରଖାନାରେ ପୂର୍ବତନ ଛାତ୍ର ଗୁରୁପ୍ରସାଦ



ଯୁକ୍ତରାଷ୍ଟ୍ର ଆମେରିକାର ମିନିଆପ୍ଲିସ ଜଗନ୍ନାଥ ମନ୍ଦିରରେ ଗୁରୁପ୍ରସାଦଙ୍କୁ ସମ୍ବର୍ଦ୍ଧନା ।
ବାମରୁ ଡକ୍ଟର ଶରତ ମହାପାତ୍ର, ଗୁରୁପ୍ରସାଦ, ଡକ୍ଟର ଶୀତକଣ୍ଠ ଦାଶ
ଓ ମନ୍ଦିର ସେବକଗଣ



ବିଭାଗୀୟ ପ୍ରଦର୍ଶନୀ କକ୍ଷରେ ବାମରୁ ଡାକ୍ତର ରମେନ୍ଦ୍ର ଦାଶ, ଡାକ୍ତର ଅଶ୍ୱିନୀ କୁମାର ମହାନ୍ତି, ନିର୍ଦ୍ଦେଶକ ଗୁରୁପ୍ରସାଦ, ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଓ ବାଚସ୍ପତି ଯୁଧିଷ୍ଠିର ଦାଶ



ପଶୁପାଳନ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତା ଓ ନିର୍ଦ୍ଦେଶକ ଗୁରୁପ୍ରସାଦ (୧୯୯୬)



ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟର ଦୁଗ୍ଧ ବିଜ୍ଞାନ ବିଭାଗର
ଫାକଲ୍ଟିମାନଙ୍କ ସହିତ ଗୁରୁପ୍ରସାଦ



ଡଲାସ୍ ରାଜ୍ୟର ଏକ ସରକାରୀ କୋଠା ଆଗରେ ସିମେଣ୍ଟ ତିଆରି ଘୋଡାମାନଙ୍କ
ପାଖରେ ଗୁରୁପ୍ରସାଦ




ଲଣ୍ଡନ୍‌ର ଲାଙ୍କାସାୟାର ବିଶ୍ୱବିଦ୍ୟାଳୟରେ ଗୁରୁପ୍ରସାଦ



ନିର୍ଦ୍ଦେଶକ ଭାବେ ତାଙ୍କ କାର୍ଯ୍ୟାଳୟରେ ଗୁରୁପ୍ରସାଦ



ବାଲିଯାତ୍ରାରେ ପଶୁପାଳନ ଷ୍ଟଲ୍ ବୁଲି ଦେଖୁଛନ୍ତି ନିର୍ଦ୍ଦେଶକ ଗୁରୁପ୍ରସାଦ ।
ବାମରୁ ଡାହାଣକୁ-ରାସବିହାରୀ ମହାପାତ୍ର(ସମୁଦୀ), ପସନ୍ନ ମହାରଣା, ନାତୁଣୀ ରାଗିଣୀ
ଡାଃ ଅଶ୍ୱିନୀ କୁମାର ପହାନ୍ତି, ଗୁରୁପ୍ରସାଦ, ସ୍ନେହଲତା ଓ ବୋହୂ ଶିବାନୀ



ଭୁବନେଶ୍ୱର ଭୋଟି କେନ୍ଦ୍ରରେ ବିଭାଗୀୟ ନିର୍ଦ୍ଦେଶକ ଗୁରୁପ୍ରସାଦଙ୍କୁ ସ୍ୱାଗତ କରୁଛନ୍ତି
ଡାଃ ଅଶ୍ୱିନୀ କୁମାର ମହାନ୍ତି, ତାଙ୍କ ପାଖରେ ଡାଃ ରମେନ୍ଦ୍ର ଦାସ



ଉତ୍କଳ ଗ୍ରାମ ସ୍ୱରାଜ୍ୟ ପକ୍ଷରୁ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ
ପ୍ରତିମୂର୍ତ୍ତି ଉନ୍ମୋଚନ ଉତ୍ସବ ଅବସରରେ ଗୁରୁପ୍ରସାଦଙ୍କୁ ସମ୍ବର୍ଦ୍ଧନା



ଉତ୍କଳ ଗ୍ରାମ ସ୍ୱରାଜ୍ୟ ପକ୍ଷରୁ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ
ପ୍ରତିମୂର୍ତ୍ତି ଉନ୍ମୋଚନ ଉତ୍ସବ ଅବସରରେ ଅନ୍ୟମାନଙ୍କ ସହ ଗୁରୁପ୍ରସାଦ



ଆଗଧାଡି - ବଡନାତି ସୌମ୍ୟସ୍ୱରୂପ, ଜ୍ୱାଇଁ ବାଣୀପ୍ରସନ୍ନ, ଗୁରୁପ୍ରସାଦ,ସାନ ନାତି ମୁକୁଲ୍
ସ୍ତ୍ରୀ ସ୍ନେହଲତା, ଝିଅ ଦେବଶ୍ରୀ, ମଝିଆଁ ନାତି ଗୋକୁଲ୍
ପଛଧାଡି - ସାନପୁଅ ଗୋପାଳ, ସାନ ନାତୁଣୀ ଅମୃତା, ସାନବୋହୂ କୃଷ୍ଣା, ବଡବୋହୂ ଶିବାନୀ
ମଝିଆଁ ନାତୁଣୀ ରାଗିଣୀ, ବଡ ନାତୁଣୀ ମୀନାକ୍ଷୀ, ବଡପୁଅ ବିଭୂତି



ଡଃ ଖଗେଶ୍ୱର ପ୍ରଧାନ (କୁଳପତି OUAT), ଶ୍ରୀମତୀ ବିଶ୍ୱାଳ, (ପୂର୍ବତନ ନିର୍ଦ୍ଦେଶକ
ଡଃ ଗଣେଶ୍ୱର ବିଶ୍ୱାଳଙ୍କ ପତ୍ନୀ) ଓ ନିର୍ଦ୍ଦେଶକ ଗୁରୁପ୍ରସାଦ




ଫୁଲନଖରାସ୍ଥ ଲକ୍ଷେଶ୍ୱର ହାଇସ୍କୁଲରେ ଶ୍ରୀମତୀ ସ୍ନେହଲତା ମହାନ୍ତି
କୃତି ଛାତ୍ରଙ୍କୁ ସିଲ୍ଡ ଦେଉଛନ୍ତି



ସ୍ୱାମୀଙ୍କର ଚାରି ଭଉଣୀ - ଗୀତାଞ୍ଜଳି, ସ୍ନେହଲତା, ସ୍ୱର୍ଣ୍ଣଲତା ଓ ପୁଷ୍ପାଞ୍ଜଳି



ଝାଡଖଣ୍ଡର ଚକ୍ରଧରପୁର ରେଳ ଷ୍ଟେସନରେ ଗଣଶିକ୍ଷା ମନ୍ତ୍ରୀ ସୁରେନ୍ଦ୍ରନାଥ ନାୟକ ଅଭୟ ସାମନ୍ତରାୟ ଓ ଗୁରୁପ୍ରସାଦଙ୍କୁ ସ୍ଥାନୀୟଲୋକଙ୍କ ସମ୍ବର୍ଦ୍ଧନା । ଗୁରୁପ୍ରସାଦଙ୍କ ହାହାଣକୁ ଶ୍ରୀ ସରୋଜ କୁମାର ପ୍ରଧାନ (ସ୍ଥାନୀୟ ଯୁବନେତା) ଓ ଶ୍ରୀ ପ୍ରବୋଧ କୁମାର ମିଶ୍ର (ନେତା) ଅକ୍ଟୋବର ୨୦୦୩



କଟକ ବରିଷ୍ଠ ନାଗରିକ ସଂଘ - ସଭାପତି ଡାକ୍ତର କୃପାସିନ୍ଧୁ ପଣ୍ଡା, ସଂପାଦକ ଶ୍ରୀ ବିଷ୍ଣୁ ମୋହନ ଦାସ ସାମନ୍ତ, ଗୁରୁପ୍ରସାଦ ଓ ନୀଳଚକ୍ର ସଭାପତି ନମିତା ପଣ୍ଡା




ସହପାଠୀ ବନ୍ଧୁ ସ୍ୱାମୀ ଶିବଚିଦାନନ୍ଦ ସରସ୍ୱତୀଙ୍କ ଗହଣରେ ଗୁରୁପ୍ରସାଦ



ଆର୍‌କାନ୍ସା ରାଜ୍ୟରେ ହଟ୍‌ସ୍ପ୍ରିଂରେ ଥିବା ୱାକ୍ସ ମ୍ୟୁଜିୟମରେ ଜନ୍ ଏଫ୍ କେନେଡି, ରବର୍ଟ କେନେଡି ଓ ଏଡ୍‌ୱାର୍ଡ କେନେଡିଙ୍କ ମହମ ମୂର୍ତ୍ତି ପାଖରେ ଗୁରୁପ୍ରସାଦ (୧୯୯୮)



ଇଷ୍ଟଦେବତା ଶ୍ରୀ ଗୋପାଳଜୀଉ



ଏକ ବିଭାଗୀୟ ପ୍ରଦର୍ଶନୀରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁପଟ୍ଟନାୟକଙ୍କ ସହିତ
ନିର୍ଦ୍ଦେଶକ ଗୁରୁପ୍ରସାଦ

୧୯୩୮ ମସିହା କୁମାର ଉତ୍ସବ (ଅକ୍ଟୋବର ୧୮ ତାରିଖ) ଦିନ ଉତ୍କଳର ପବିତ୍ର ମାଟିରେ ଜନ୍ମ ଗ୍ରହଣ କରି ଡକ୍ଟର ଗୁରୁପ୍ରସାଦ ମହାନ୍ତି ଜଣେ ବିଜ୍ଞାନ ଛାତ୍ର ଭାବେ ଯୁକ୍ତରାଷ୍ଟ୍ର ଆମେରିକାର ଓହିଓ ବିଶ୍ୱବିଦ୍ୟାଳୟରୁ ଏମ୍.ଏସ୍. ଓ ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି ଲାଭ କରି ଗବେଷଣାତ୍ମକ କୃତିତ୍ୱ ଲାଗି ସମ୍ମାନିତ ହେବା ପରେ ଜନ୍ମଭୂମିକୁ ଫେରିଆସି ଗବେଷକ, ଅଧ୍ୟାପକ, ପ୍ରଶାସକ, ଲେଖକ, ସାହିତ୍ୟସେବୀ ଓ ସମାଜସେବୀ ଭାବେ ଉତ୍କଳ ସମ୍ମିଳନୀ, କଟକ ଲେଖକ ସହଯୋଗ ସମିତି, ଜୀବେ ହିତୈଷୀ ସଂଘ, ଉତ୍କଳ ସାହିତ୍ୟ ସମାଜ, ସର୍ବଭାରତୀୟ ଜୀବପୁଷ୍ଟି ତତ୍ତ୍ୱ ବିଜ୍ଞାନ ସଂଘ, ଓଡ଼ିଶା ବିଜ୍ଞାନ ପ୍ରଚାର ସମିତି, ଶ୍ରୀକୃଷ୍ଣ ଏକାଡେମୀ, ରେଭେନ୍ସା କଲେଜ ଏବଂ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ପୁରାତନ ଛାତ୍ରସଂଘ ସହିତ ବହୁ ଭାବରେ ସଂପୃକ୍ତ ।

ଜଣେ ସୁଲେଖକ ଭାବେ ତାଙ୍କର ଭ୍ରମଣ କାହାଣୀ 'ପାତାଳପୁରୀର ହାଲଚାଲ୍' ପୁସ୍ତକ ୧୯୯୦ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଓ ୨୦୧୪ ମସିହାରେ ତାଙ୍କ ରଚିତ 'ମୋହନବଂଶୀ' ପୁସ୍ତକଟି ସମ୍ମାନଜନକ ଓଁକାର ଫାଉଣ୍ଡେସନ ପକ୍ଷରୁ ପୁରସ୍କୃତ ।




ISBN 93-84763-99-3